କବିସମ୍ରାଟ ଉପେନ୍ଦ୍ରଭଞ୍ଜ

# ଲାବଣ୍ୟବତୀ

ଟୀକା ଓ ବ୍ୟାଖ୍ୟାକାର

ପଣ୍ଡିତ ନୀଳକଣ୍ଠ ଦାସ

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ

# ଲାବଣ୍ୟବତୀ

ଉପୋଦ୍‌ଘାତ, ପାଠାନ୍ତର
ଟୀକା ଓ ବ୍ୟାଖ୍ୟା
ପଣ୍ଡିତ ନୀଳକଂଠ ଦାସ

ପ୍ରକାଶିକା
ଶ୍ରୀମତୀ ଇନ୍ଦିରା ଦେବୀ
୩୦୩, ଖାରବେଳ ନଗର
ଭୁବନେଶ୍ୱର-୭୫୧୦୦୧

# ଲାବଣ୍ୟବତୀ

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ

ବ୍ୟାଖ୍ୟା ଓ ଟୀକାକାର

ପଣ୍ଡିତ ନୀଳକଂଠ ଦାସ

ପ୍ରଥମ ସଂସ୍କରଣ–୧୯୮୩

ମୁଦ୍ରାକାର—

ଉଦ୍ୟୋଗ ପ୍ରିଣ୍ଟର୍ସ

ଭୁବନେଶ୍ୱର–୧

ମୂଲ୍ୟ–ଷାଠିଏ ଟଙ୍କା

# LABANYABATI

**KABI SAMRAT UPENDRA BHAN**

*Edited & annotated by:*

**Pandit Nilakantha Das**

*Publisher :*

**Smt. Indira Devi**

303, Kharvela Nagar

Bhubaneswar-751001

**First Edition--1983**

*Printed at* :

**Udyog Printers**

Bhubaneswar—1

**Price—Rupees Sixty only**

---

This book is published mostly with the paper supplied the Govt. of India at concessional rate.

# ନିବେଦନ

ଆଜିକି ୫୩ ବର୍ଷ ତଳେ ପଣ୍ଡିତ ନୀଳକଂଠ (ମୋ ନନା)ଙ୍କୁ (ପିତାଙ୍କୁ ଆମେମାନେ ନନା ଡ଼ାକନ୍ତି) ଲବଣ ସତ୍ୟାଗ୍ରହ ନିମନ୍ତେ ୧୯୩୦ ମସିହା ଜୁନ୍ ୧୦ ତାରିଖରେ ୬ ମାସ ଜେଲଦଣ୍ଡ ଆଦେଶ ହେଲା । ସେ ହଜାରିବାଗ ଜେଲରେ 'କ' ଶ୍ରେଣୀ ବନ୍ଦୀରୂପେ ରହିଲେ । ବନ୍ଦୀ ଜୀବନ ଭିତରେ ସେ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ'ର ଟୀକା ଲେଖିଥିଲେ । ଶ୍ରୀଯୁକ୍ତ କମଳାକାନ୍ତ ମହାପାତ୍ର B. A. ସେଇ ଜେଲରୁ ମୁକ୍ତି ପାଇବା ପରେ ସେଥିରେ ବନ୍ଦୀ ଥିବା ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ସମେତ ଓଡ଼ିଶାର ନେତାମାନଙ୍କ ବନ୍ଦୀ ଜୀବନ ବିଷୟରେ ଗୋଟିଏ ବିବୃତି ଦେଇ ସେଥିରେ "ପଣ୍ଡିତ ନୀଳକଣ୍ଠ ଦାସ ଲାବଣ୍ୟବତୀର ଟୀକା କରୁଅଛନ୍ତି ଏବଂ ସେଥି ସହିତ ରାଜନୈତିକ ଓ ସାହିତ୍ୟିକ ଆଲୋଚନାରେ ସମୟ ଅତିବାହିତ କରୁଛନ୍ତି" ବୋଲି ଉଲ୍ଲେଖ କରିଥିଲେ । ଏ ସମ୍ବାଦଟି ତା ୧୫।୧୦।୧୯୩୦ ରିଖ 'ଉତ୍କଳ ଦୀପିକା'ରେ ବାହାରିଥିଲା ।

କମଳାକାନ୍ତ ବାବୁଙ୍କର ଉପରୋକ୍ତ ବିବୃତି ବ୍ୟତୀତ ଏଇ ଟୀକା ଲେଖାଯିବା ବିଷୟରେ ଗୋଟିଏ ଅତି କୌତୁହଳ ପୂର୍ଣ୍ଣ ଘଟଣା ମଧ୍ୟ ଶୁଣିବାକୁ ମିଳେ । ନନାଙ୍କ ସହିତ ତାଙ୍କ ସତ୍ୟବାଦୀ ବିଦ୍ୟାଳୟର ଛାତ୍ର ପୁରୀ ଜିଲ୍ଲା କାଳିଆକେଗର ଶ୍ରୀଯୁକ୍ତ ଜଗନ୍ନାଥ ରଥ ହଜାରିବାଗ ଜେଲରେ 'ଗ' ଶ୍ରେଣୀ ବନ୍ଦୀରୂପେ ରହୁଥିଲେ । ଦିନେ ନନା ତାଙ୍କୁ ଚକିରେ ଗହମ ପେଷୁଥିବାର ଦେଖି ପଚାରିଲେ, "କିଓ ଜଗନ୍ନାଥ, କ'ଣ କରୁଚ ?" ରଥେ ଉତ୍ତରରେ କହିଲେ, "ହରଡ଼ ଘଣା ପକାଉଚି, ଆଉ କ'ଣ କରିବି ?" ନନା କହିଲେ, "ହଁ,ଦେଶ ପାଇଁ ତ ଏସବୁ କରିବାକୁ ପଡ଼ିବ ।" ଏହାପରେ ସେ ଜେଲ କର୍ତ୍ତୃପକ୍ଷଙ୍କୁ ଦେଖି କହିଲେ, 'ହଇଓ, ମୁଁ ଟିକିଏ ଲେଖାପଢ଼ି କରେ, ଜାଣ ?" ଜେଲର କହିଲେ, "ଆଜ୍ଞା,ଆମେ ତା ଜାଣୁ । ଆପଣ ତ ପଣ୍ଡିତ ଲୋକ—ପଣ୍ଡିତ ନୀଳକଣ୍ଠ ଦାସ ।" ନନା କହିଲେ, "ହଁ ଯେ, ମୁଁ

କିନ୍ତୁ ନିଜ ହାତରେ ବେଶି ଲେଖି ପାରେନି—ମତେ ଲେଖାରେ ସାହାଯ୍ୟ କରିବା ପାଇଁ ପିଲଟିଏ ଦେଇ ପାରିବ ? ” ଜେଲର ଜଣେ ଷେନୋ ଯୋଗାଡ଼ କରିବେ ବୋଲି କହିବାରୁ ନନା ଜେଲରେ ଥିବା ଜଗନ୍ନାଥ ରଥଙ୍କ ଦ୍ୱାରା ତାଙ୍କ କାମ ଚଳିଯିବ ବୋଲି କହିଲେ । ତହୁଁ ଜେଲର ଶ୍ରୀଯୁକ୍ତ ରଥଙ୍କୁ ପଠାଇଲେ ଓ ତହିଁ ସଙ୍ଗେ ନନାଙ୍କ ଆବଶ୍ୟକତା ଅନୁସାରେ ଲେଖିବା ନିମନ୍ତେ ଖଣ୍ଡିଏ ଲେଖାଏଁ ଖାତା ପୃଷ୍ଠାଙ୍କ କରି ଏବଂ ଖାତା ଉପରେ ଦସ୍ତଖତ କରି ପଠାଇ ଦେଉଥିଲେ । ‘ଲାବଣ୍ୟବତୀ’ ଲେଖା ଗ୍ଲିଲା । ନନାଙ୍କ ଜେଲ ଜୀବନର ୫ ମାସ ବା ତହିଁରୁ କମ୍ ସମୟ ଭିତରେ ଏହା ଲେଖା ଯାଇଥିଲା ବୋଲି ଧରି ନିଆଯାଇପାରେ ।

ସେଇବର୍ଷ, ଡ଼ିସେମ୍ବର ମାସରେ ନନା ଜେଲରୁ ଖଲାସ ହେଲେ । ସେତେବେଳକୁ ଉପୋଦ୍‌ଘାତ ସହ ଏ ବିରାଟ ଗ୍ରନ୍ଥଟିର ପଞ୍ଚମ ଛାନ୍ଦ ଶେଷଯାଏ ସମ୍ପୂର୍ଣ୍ଣ ଲେଖା ଯାଇଥିଲା । ମାତ୍ର ତା’ ପରର ଛାନ୍ଦ ଗୁଡ଼ିକର କେବଳ ଟୀକା ଓ ବ୍ୟାଖ୍ୟା ଲେଖା ଯାଇ ମୂଳକାବ୍ୟରେ ପାଠାନ୍ତରର ସୂଚନା ଦିଆଯାଇଥିଲା । ମୂଳକାବ୍ୟ ସହିତ ପାଠାନ୍ତର, ଟୀକା ଓ ବ୍ୟାଖ୍ୟା ଓ ପାଣ୍ଡୁଲିପିକୁ ମିଶାଇ ପ୍ରକାଶ ଉପଯୋଗୀ କରିବା ଲାଗି ନନା ଶ୍ରୀଯୁକ୍ତ ରଥଙ୍କୁ ସମସ୍ତ କାଗଜପତ୍ର ଦେଇଥିଲେ । ମାତ୍ର ସେତିକି ହୋଇପାରି ନ ଥିଲା, ନନାଙ୍କର ବହୁ ଉଦ୍ୟମ ସତ୍ତ୍ୱେ ଏପରିକି ୧୯୫୭ ମସିହାରେ ନନା ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଥିବାବେଳେ ମଧ୍ୟ ପୁସ୍ତକଟି ଛପାଇବା ଲାଗି ତାଙ୍କର ପ୍ରବଳ ଆକାଂକ୍ଷା ଥିଲେହେଁ ଶ୍ରୀଯୁକ୍ତ ରଥ ନିଜର ରାଜନୀତିକ ଜୀବନ ଭିତରେ ମୂଳକାବ୍ୟ ଓ ପାଣ୍ଡୁଲିପିଟି କେଉଁଠାରେ ରଖି ଦେଇଥିବାରୁ ତାହା ମିଳିପାରି ନଥିଲା ।

ଅବଶେଷରେ ନନାଙ୍କ ସାନ ଜ୍ୱାଇଁ ପୁରୀର ଆଡ଼ଭୋକେଟ ଶ୍ରୀ ଦ୍ୱାରକା ନାଥ ଦାଶ ଓ ଶ୍ରୀ ଚିନ୍ତାମଣି ମହାପାତ୍ର ବହୁ ଚେଷ୍ଟାକରି ନନାଙ୍କର ୧୯୬୭ ମସିହାରେ ଦେହାବସାନ ହେବାର ପ୍ରାୟ ୩ ବର୍ଷ ପୂର୍ବରୁ କୌଣସି ମତେ ଉକ୍ତ ମୂଳକାବ୍ୟ ଓ ପାଣ୍ଡୁଲିପିଟି ଜଗନ୍ନାଥ ରଥଙ୍କ ନିକଟରୁ ସଂଗ୍ରହ କରି ସେହିପରି ଅବସ୍ଥାରେ ଆଣି କଟକଠାରେ ତାଙ୍କୁ ଦେଇଥିଲେ । ଦୁର୍ଭାଗ୍ୟକୁ ନନା ସେତେବେଳକୁ ପୁସ୍ତକଟି ଦେଖି

ଆଉ ପ୍ରକାଶ କରଇବାର ଅବସ୍ଥାରେ ନ ଥିଲେ । ତାଙ୍କର ଏହି ରୁଗ୍ଣ ଓ ବୃଦ୍ଧାବସ୍ଥା ଲାଗି ମୁଁ ମଧ୍ୟେ ମଧ୍ୟେ କଟକ ଯାଇ ନାନୀ (ମୋ ବଡ଼ଭଉଣୀ) ଘରେ ୨।୪ ଦିନ ତାଙ୍କ ପାଖେ ରହୁଥିଲି । ଥରେ କଟକ ଯାଇଥିବା ବେଳେ ମତେ ସେ ପାଣ୍ଡୁଲିପିଟି ନମା ପ୍ରକାଶ ଆଶାରେ ଦେଲେ । କିନ୍ତୁ ମୁଁ ତାକୁ ଯେଉଁଠି ରଖି ଦେଇଥିଲି, ତାହା ମୋ ସ୍ୱାମୀଙ୍କର ସରକାରୀ ଚାକିରୀରେ ନାନା ସ୍ଥାନକୁ ବଦଳି ଭିତରେ ଅନ୍ୟାନ୍ୟ କାଗଜପତ୍ର ସହିତ କେଉଁଠି ରହି ଯାଇଥିଲା, ତାହା ଜାଣି ନ ପାରି ସେ କଥା ପ୍ରାୟ ଭୁଲି ଯାଇଥିଲି ।

ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତି ଗଠିତ ହେବା ପରେ ବହୁ ସଭା ସମିତିରେ ଡ଼ଃ ମହତାବଙ୍କଠାରୁ ଆରମ୍ଭ କରି ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ଓ ଅଧ୍ୟାପକ ରଜତ କୁମାର କର ପ୍ରଭୃତିଙ୍କର ଏହି 'ଲବଣ୍ୟବତୀର ଟୀକା' ପ୍ରକାଶ ଉପରେ ଜୋର ଦାବୀ ହେବା ଫଳରେ ମୁଁ ବହୁତ ଖୋଜା ଖୋଜି କରି ଏବେ ପ୍ରାୟ ୩ ବର୍ଷ ତଳେ ସେଇଟି ପାଇଛି । ପାଇବା ପରେ ମୋ ବୋଉ (ମାତା) ଶ୍ରୀମତୀ ରାଧାମଣି ଦେବୀ ଏହାର ପ୍ରକାଶନ ପାଇଁ ମଧ୍ୟ ବଡ଼ ଆଗ୍ରହ ପ୍ରକାଶ କରି କହିଥିଲେ ।

ହେଲେହେଁ, ନନାଙ୍କର ଲେଖିବାର ଅର୍ଦ୍ଧଶତାବ୍ଦୀ ପରେ ଏହାର ପ୍ରକାଶନର ଆବଶ୍ୟକତା ସମ୍ବନ୍ଧରେ ଆମ ମନରେ ସନ୍ଦେହ ଉପୁଜିଲା । ଆମେ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ସହିତ ଏଥିଲାଗି ପରାମର୍ଶ କଲୁ । ତାଙ୍କଠାରୁ ଅନୁକୂଳ ମତ ମିଳିବାରୁ ମୂଳକାବ୍ୟ ସହିତ ପାଠାନ୍ତର, ଟୀକା ଓ ବ୍ୟାଖ୍ୟା ମିଶାଇ ଏହି ବିରାଟ ଗ୍ରନ୍ଥଟିକୁ ମୁଦ୍ରଣ ଉପଯୋଗୀ କଲି । ପୁଣି ପାଠକମାନଙ୍କୁ 'ଲବଣ୍ୟବତୀ'ର କବି ତଥା 'ଲବଣ୍ୟବତୀ'କାବ୍ୟ ବିଷୟରେ ପଣ୍ଡିତ ନୀଳକଣ୍ଠଙ୍କ ଦୃଷ୍ଟିକୋଣ ସମ୍ବନ୍ଧରେ ଅବହିତ କରାଇବା ନିମନ୍ତେ ସେ ୧୯୧୭ ମସିହାରେ ସତ୍ୟବାଦୀ ସ୍କୁଲର ହେ. ମା. ଥିବାବେଳେ 'ସତ୍ୟବାଦୀ' ମାସିକ ପତ୍ରିକାରେ କ୍ରମାନ୍ୱୟରେ ପ୍ରକାଶିତ ପ୍ରବନ୍ଧ ଗୁଡ଼ିକ ଓ ୧୯୫୭ ମେ' ମାସରେ କଟକଠାରେ ଅନୁଷ୍ଠିତ ୧୪ଶ ଭଞ୍ଜ ଜୟନ୍ତୀ ଉପଦେଷ୍ଟା ସମିତିର ଅଧ୍ୟକ୍ଷ ଭାବେ ଦେଇଥିବା ଅଭିଭାଷଣଟି ମଧ୍ୟ ଏଥି ସହିତ ସନ୍ନିବେଶିତ କଲି ଓ ଅଧ୍ୟାପକ ବ୍ରହ୍ମାଙ୍କର

ଏ-ପୁସ୍ତକର ଗୁଣାତ୍ମକ ବିଗ୍ଭର ଓ ତା' ଉପରେ ପାଣ୍ଡିତ୍ୟପୂର୍ଣ୍ଣ ମନ୍ତବ୍ୟ ସମ୍ବଳିତ 'ଗ୍ରନ୍ଥ ପ୍ରବେଶ' ସହିତ ଆଜି ତାହା ପ୍ରକାଶ ପାଉଚି । ଏଥିପାଇଁ ଅଧ୍ୟାପକ ବ୍ରହ୍ମାଙ୍କ ନିକଟରେ ମୁଁ ଅବଶ୍ୟ ବହୁ ଭବରେ ଋଣୀ । ତେବେ ନନାଙ୍କ ଜୀବଦଶାରେ ପ୍ରକାଶ ପାଇଥିଲେ ଗ୍ରନ୍ଥଟି ଯେ ଅଧିକ ତଥ୍ୟ ସମ୍ବଳିତ ଓ ସୁରୁଚି ସମ୍ପନ୍ନ ତଥା ତ୍ରୁଟି ଶୂନ୍ୟ ହୋଇ ପାରିଥାନ୍ତା, କହିବା ନିଷ୍ପ୍ରୟୋଜନ । ତାହା ଓଡ଼ିଆ ପାଠକମାନଙ୍କର ଦୁର୍ଭାଗ୍ୟ !

ଡ଼ଃ ମହତାବ ପୁସ୍ତକର ପ୍ରକାଶନ ନିମନ୍ତେ ଉପରୋକ୍ତ ଅଭିଳାଷ ପ୍ରକାଶ କରିବା ବ୍ୟତୀତ ବହୁ ସମୟରେ ଏଥିପାଇଁ ଆମକୁ ନାନା ପ୍ରେରଣା ଓ ଉତ୍ସାହ ପ୍ରଦାନ କରି ଅଛନ୍ତି । ଏ ପୁସ୍ତକରେ ତାଙ୍କର 'ଅଭିମତ' ଦେବା ଲାଗି ତାଙ୍କୁ ଅନୁରୋଧ ଜଣାଇବାରେ ସେ 'ସ୍ମୃତି ତର୍ପଣ' ଶିରୋ-ନାମାରେ ତାଙ୍କର ଯେଉଁ ଅଭିମତ ପ୍ରକାଶ କରିଚନ୍ତି, ତାହା ଏଥିସଙ୍ଗେ ପ୍ରକାଶ ପାଉଚି । ଏ ସବୁ ଲାଗି ତାଙ୍କ ନିକଟରେ ମୁଁ ଚିର କୃତଜ୍ଞ । ପୁସ୍ତକଟିର ପ୍ରକାଶନରେ ମୋତେ ବହୁ ଭବରେ ସାହାଯ୍ୟ କରି ଥିବାରୁ ସୁସାହିତ୍ୟିକ ଡ଼ଃ ଭବଗ୍ରାହୀ ମିଶ୍ର, ଅଧ୍ୟାପକ ରଜତ କୁମାର କର ଓ ଅଧ୍ୟାପକ ଦେବରାଜ ପାଠୀଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଚି ।

ପରିଶେଷରେ ଏ ଗ୍ରନ୍ଥ ପ୍ରକାଶନରେ ବିଶେଷ ଆର୍ଥିକ ଅନାଟନତା ବେଳେ ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତିକ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ଯୁଗଳ କିଶୋର ପଟ୍ଟନାୟକ ତାଙ୍କ ବିଭାଗରୁ ଟ୫,୦୦୦ ଙ୍କା ମଞ୍ଜୁର କରିବାର ପ୍ରତିଶ୍ରୁତି ଦେଇଥିବାରୁ ତାଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଚି ।

କହିବା ଅନାବଶ୍ୟକ ଯେ ମୋ ସ୍ୱାମୀ ଇ. ମଧୁସୂଦନ ଦାଶଙ୍କର ଅତନ୍ଦ୍ରିତ ଉଦ୍ୟମ ବିନା ଏ ପୁସ୍ତକଟି ଯେ ଆଜି ଲୋକଲୋଚନକୁ ଆସି ପାରି ନ ଥାନ୍ତା, ଏହା ନିଃସନ୍ଦେହ । ତାଙ୍କ ଉପରେ ଏ ପୁସ୍ତକର ପ୍ରଣେତା ପଣ୍ଡିତ ନୀଳକଣ୍ଠଙ୍କର ଆଶୀର୍ବାଦ ବର୍ଷଣ କାମନା କରୁଚି ।

ଇନ୍ଦିରା ଦେବୀ

ତା ୧୫।୪।୮୩, ଅକ୍ଷୟ ତୃତୀୟା

ବୃଷ ସଂକ୍ରାନ୍ତି – ୧୩୯୧ ସାଲ

# ସ୍ମୃତି ତର୍ପଣ

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ଲବଣ୍ୟବତୀ'' କାବ୍ୟର ଟୀକା କରିଛନ୍ତି ପଣ୍ଡିତ ନୀଳକଣ୍ଠ ଦାସ । ପୁଣି 'ଗ୍ରନ୍ଥପ୍ରବେଶ' ଲେଖିଛନ୍ତି ଉତ୍କଳ ବାଚସ୍ପତି ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା । ଏହାପରେ ମୋତେ କିଛି ଲେଖିବାକୁ ଅନୁରୋଧ କରାହୋଇଛି । ମୋର ମନେ ପଡ଼ି-ଯାଉଛି ଯଦୁମଣିଙ୍କ ଉକ୍ତି ''ଅନ୍ଧ ଦେଶକୁ ଗଲି ଦର୍ପଣ ବିକି, କନ୍ଧ ହସ୍ତରେ ଦେଲି ଗୋଧନ ଟେକି'' ଇତ୍ୟାଦି । ବାସ୍ତବିକ୍ କାହିଁ ଭଞ୍ଜ, କାହିଁ ନୀଳକଣ୍ଠ; କାହିଁ ମୁଁ ହରେକୃଷ୍ଣ । ମୋ ପକ୍ଷରେ ଭଞ୍ଜ ସାହିତ୍ୟ ସମ୍ବନ୍ଧରେ କିଛି କହିବା ଅପ୍ରାସଙ୍ଗିକ ହେବ । ତେବେ ମୁଁ ଭଞ୍ଜ ସାହିତ୍ୟର କିଛି ଅଧ୍ୟୟନ କରି ଯାହା ଅନୁଭବ କରିଥିଲି, ତାହାହିଁ ନୀଳକଣ୍ଠଙ୍କ ମତ ଜାଣି ଆତ୍ମ ସନ୍ତୋଷ ଲଭ କଲି । ନୀଳକଣ୍ଠ ଉପୋଦ୍‌ଘାତରେ ଲେଖିଛନ୍ତି—

''ଉପେନ୍ଦ୍ର ଭଞ୍ଜ ସାହିତ୍ୟକୁ ଆଦର୍ଶ କାବ୍ୟ କଳା ବୋଲି କେହି କହୁ ନାହାନ୍ତି । ଏହା ଅଳଂକାର ଶାସ୍ତ୍ରର ମଣ୍ଡନ ବିବୃତିରେ, ବରଂ ଅତିମଣ୍ଡନ ପ୍ରୟାସରେ ପୂର୍ଣ୍ଣ । ମଣ୍ଡନ ଯେ ଏଥିରେ କେବଳ ଅନୁପାତ ହରାଇ ବସିଛି ସେତିକି ନୁହେଁ, ଗଠନ କଳା ଏଥିରେ ଅଦୃଶ୍ୟ ଓ ବିଲୀନ ।''
ଏହି ମତ ଭିନ୍ନ ଭାଷାରେ ବୈଦେହୀଶ ବିଳାସ ସମ୍ବନ୍ଧରେ ଜଣେ ବିଖ୍ୟାତ ହିନ୍ଦି ପଣ୍ଡିତ ବ୍ୟକ୍ତ କରିଥିଲେ । ମଣ୍ଡନ ପ୍ରତି ଦୃଷ୍ଟି ଦେଇଥିଲେ ''ବୈଦେହୀଶ ବିଳାସ'' ତୁଳସୀ ଦାସ ରାମାୟଣ ପରି ଜନପ୍ରିୟ ହୋଇ ପାରିଥାନ୍ତା । ଯେଉଁ ସମୟରେ ''ଇନ୍ଦଧନୁ'' ଓ 'ବିଜୁଳି'' ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦିତା ଚାଲିଥିଲା ଏବଂ ପୁରାତନ ସବୁ କିଛି ଅଗଣ୍ୟ ଓ ତ୍ୟାଜ୍ୟ ବୋଲି ମତପ୍ରକାଶ ପାଉଥିଲା, ସେତେବେଳେ ଗୋପବନ୍ଧୁ ପ୍ରାଚୀନ ପକ୍ଷକୁ ଦୃଢ ଭାବରେ ସମର୍ଥନ କରି ସିନା ଲେଖିଥିଲେ —

''ଗାଏ ତୁମ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।''

ଏହା ଯେ ଅତିରଞ୍ଜିତ ଏଥିରେ ସନ୍ଦେହ ନାହିଁ । "କାଦମ୍ବରୀ" ଯେଉଁ ଶ୍ରେଣୀରେ ଆଦୃତ, ସେହି ଶ୍ରେଣୀରେ ଭଞ୍ଜ ସାହିତ୍ୟ ଆଦୃତ । ମାର୍କସ୍‌ପନ୍ଥୀଙ୍କ ଭାଷାରେ ଏହା "ଦରବାରୀ ସାହିତ୍ୟ" । ଜନସାଧାରଣଙ୍କ ପକ୍ଷରେ ବୋଧଗମ୍ୟ ନୁହେଁ ।

କିନ୍ତୁ ସମାଲୋଚନା ବେଳେ ମନେ ରଖିବାକୁ ହେବ ଲେଖକଙ୍କ ପରିସ୍ଥିତି ଓ ପରିବେଶ । ଭଞ୍ଜ ରାଜପ୍ରାସାଦରେ ବର୍ଦ୍ଧିତ ଏବଂ ସେହି ସଂସ୍କୃତିରେ ତାଙ୍କ ଜୀବନ ଗଢ଼ା । ସେ ସମୟରେ କେବଳ ଯେ ବିଧର୍ମୀ ଶାସନ ତାହା ନୁହେଁ, ସ୍ଥାନୀୟ ରଜା ମହାରାଜାମାନଙ୍କ ଅକଥନୀୟ ଅତ୍ୟାଚାର, ଯେଉଁଥିରେ ଉପେନ୍ଦ୍ର ଭଞ୍ଜ ନିଜେ ମଧ୍ୟ ଭୁକ୍ତଭୋଗୀ । ଏହି ଅବସ୍ଥାରେ ବିଶାଳ ପାଣ୍ଡିତ୍ୟର ଅଧିକାରୀ ଜଣେ ସାହିତ୍ୟିକ ଯେପରି ଲେଖନୀ ଚାଳନା କରିବା ସ୍ୱାଭାବିକ, ଭଞ୍ଜ ତାହାହିଁ କରିଛନ୍ତି । ସେ ଯୁଗ ମଧ୍ୟ ଏ ଶ୍ରେଣୀର ସାହିତ୍ୟର ପରିପୋଷକ ଥିଲା । ଶ୍ରୀ ଚୈତନ୍ୟଙ୍କ "ରାଗାନୁଗା" ଭକ୍ତିରେ ବୁଡ଼ିରହି ଅଭିମନ୍ୟୁ ସାମନ୍ତସିଂହାର ତାଙ୍କର "ପ୍ରେମଚିନ୍ତାମଣି"ରେ ଯେପରି ରାଧା ଏବଂ କୃଷ୍ଣଙ୍କ ଲୀଳା ବର୍ଣ୍ଣନା କରିଛନ୍ତି, ତାହା ଭଞ୍ଜଙ୍କ ଲାବଣ୍ୟବତୀ ସହିତ ତୁଳନୀୟ ।

ମୋର ମନେ ହୁଏ, ଉପେନ୍ଦ୍ର ଭଞ୍ଜ କେବଳ କବି ସମ୍ରାଟ ନ ଥିଲେ । ସେ ସଙ୍ଗୀତ ସମ୍ରାଟ ମଧ୍ୟ ଥିଲେ । ଯେତେ ସ୍ୱର ରାଗ ରାଗିଣୀ ସେ ବ୍ୟବହାର କରିଛନ୍ତି, ଆଜି ତାହାହିଁ ଓଡ଼ିଶାର ସଙ୍ଗୀତ ହିସାବରେ ପ୍ରସିଦ୍ଧି ଲାଭ କରିଛି । ଉପେନ୍ଦ୍ର ଭଞ୍ଜଙ୍କ ପାଣ୍ଡିତ୍ୟ ବର୍ଣ୍ଣନାତୀତ । ମୋର ମନେ ହୁଏ, ସଂସ୍କୃତ ଭାଷାରେ ଯେତେ ଅଭିଧାନ ଅଛି, ସବୁ ସେ ଜିହ୍ୱାଗ୍ରେ ରଖିଥିଲେ । ଏଥିପାଇଁ ତାଙ୍କ କାବ୍ୟ ବୁଝିବା ଲାଗି ବହୁ ଅଭିଧାନ ଆବଶ୍ୟକ ହୁଏ । ଉଦାହରଣ ସ୍ୱରୂପ "ବାରଣ ଶିରେ ପଦ ଦେଇ ଆସୁ"

ଏହାର ଗୂଢ଼ ଅର୍ଥ ହେଉଛି ଗଣେଶଙ୍କ ଶିରରେ ଖଇ ଦେଇ ଆସ ।''
ଏଠାରେ 'ପଦ'ର ଅର୍ଥ ଖଇ ବା ଉଖୁଡ଼ା । ଏହା ସାଧାରଣ ଅଭିଧାନରେ
ମିଳେ ନାହିଁ ।

ଉପେନ୍ଦ୍ର ଭଞ୍ଜଙ୍କ ପାଣ୍ଡିତ୍ୟ ସହିତ ପଣ୍ଡିତ ନୀଳକଣ୍ଠଙ୍କ
ପାଣ୍ଡିତ୍ୟ ତୁଳନୀୟ । ଭଞ୍ଜ ରାଜ୍ୟରୁ ନିର୍ବାସିତ ହୋଇ କାବ୍ୟ ଲେଖିଥିଲେ ।
ନୀଳକଣ୍ଠ କାରାରୁଦ୍ଧ ଅବସ୍ଥାରେ ଟୀକା ଲେଖିଛନ୍ତି । "ବେନି ଜନେ ପଡ଼ିଛି
ଏକ ଦଶା ।''

ନୀଳକଣ୍ଠଙ୍କ ସହିତ ମୁଁ ମଧ୍ୟ ଅନ୍ୟମାନଙ୍କ ସହିତ ହଜାରି-
ବାଗ ଜେଲରେ ବନ୍ଦୀ ଥିଲି । ମୁଁ ଦେଖିଛି, କିପରି ଖଟ ଉପରେ ପଡ଼ିରହି
ଦିନରାତି ପରିଶ୍ରମ କରି, ଅଧ୍ୟୟନ କରି ଜଗନ୍ନାଥ ରଥଙ୍କ ଦ୍ୱାରା ଲେଖାଉ-
ଥିଲେ । କେବଳ 'ଲବଣ୍ୟବତୀ' ଟିକା ନୁହେଁ ସେ ସମୟରେ ସେ ପ୍ରଗାଢ
ଅଧ୍ୟୟନ କରି ବହୁ ଗବେଷଣା ପୁସ୍ତକ ମଧ୍ୟ ଲେଖିଛନ୍ତି ଯଥା,'ଗୀତାଭାଷ୍ୟ'

ନୀଳକଣ୍ଠ ଭାଗ୍ୟବାନ । ତାଙ୍କର ପିତୃଭକ୍ତି ପରାୟଣା ସୁଯୋଗ୍ୟା
କନ୍ୟା ଏବଂ ତାଙ୍କର ଏକାନ୍ତ ଗୁଣାନୁଗ୍ରଧ ଜାମାତା ପଣ୍ଡିତ ନୀଳକଣ୍ଠଙ୍କ
ସ୍ମୃତି ରକ୍ଷା ପାଇଁ ଯେଉଁ ଉଦ୍ୟମ ଚଳାଇଛନ୍ତି, ତାହା ବହୁ ପ୍ରତିଷ୍ଠିତ
ବ୍ୟକ୍ତିଙ୍କ ଭାଗ୍ୟରେ ଘଟେ ନାହିଁ । କନ୍ୟା ଶ୍ରୀମତୀ ଇନ୍ଦିରା ଦେବୀ ଓ
ଜାମାତା ଶ୍ରୀ ମଧୁସୂଦନ ଦାସଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି ।

ହରେକୃଷ୍ଣ ମହତାବ

# ସୂଚୀପତ୍ର

## ପୀଠିକା



## କାବ୍ୟ

| ଛାନ୍ଦ | ବିଷୟ | ପୃଷ୍ଠା |
|---|---|---|

| ଛାନ୍ଦ | ବିଷୟ | ପୃଷ୍ଠା |
|---|---|---|



ଲାବଣ୍ୟବତୀର ଟୀକା ଓ ବ୍ୟାଖ୍ୟାକାର ପଣ୍ଡିତ ନୀଳକଣ୍ଠ

ଆବିର୍ଭାବ — ୫ । ୮ । ୧୮୮୪

ତିରୋଭବ — ୬ । ୧୧ । ୧୯୬୭

# ଗ୍ରନ୍ଥ ପ୍ରବେଶ

## ପଣ୍ଡିତ ନୀଳକଂଠଦାସ :

ପଣ୍ଡିତ ନୀଳକଂଠ ଦାସ ଜଣେ ଯୋଗଜନ୍ମା ପୁରୁଷ । ତାଙ୍କର ପ୍ରତିଭା ଥିଲା ବହୁମୁଖୀ ଅଧ୍ୟୟନ–ପଟୁତା ଥିଲା ଅସାଧାରଣ, ବହୁଶାସ୍ତ୍ର ଦର୍ଶିତାଥିଲା ଅନୁପମ, ତତ୍ତ୍ୱ-ଜିଜ୍ଞାସା ଥିଲା ବିସ୍ମୟକର ଏବଂ ସ୍ୱ–ମତ ଉପସ୍ଥାପନରେ ମୌଳିକତା ଥିଲା ଅନାନ୍ୟ ସାଧାରଣ । ଗତ ପ୍ରାୟ ଏକଶତ ବର୍ଷ ମଧ୍ୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜ୍ଞାନ ସମ୍ପନ୍ନ ଯେତେ ବ୍ୟକ୍ତି ଉତ୍କଳରେ ଜନ୍ମ ଗ୍ରହଣ କରିଛନ୍ତି, ସେମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଂଠ ଦାସ କାହାରି ଠାରୁ ନ୍ୟୂନ ନୁହନ୍ତି । ଏକଥା ତାଙ୍କୁ ପ୍ରତ୍ୟକ୍ଷ ଭାବରେ ଜାଣିଥିବା ବ୍ୟକ୍ତି ମାତ୍ରେ ଉପଲବ୍ଧି କରିଥାନ୍ତି । ତାଙ୍କର 'ଆତ୍ମଜୀବନୀ' ପ୍ରକାଶ ପାଇଛି । ତାହା ପାଠ କଲେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ, ବରେଣ୍ୟ ମନୀଷା ଏବଂ ଅତୁଳନୀୟ ସୃଷ୍ଟିଶକ୍ତି ସମ୍ପର୍କରେ ଆମର ଯେଉଁ ଧାରଣା ଜାତହୁଏ, ତାହା ତାଙ୍କର ଗ୍ରନ୍ଥ ସମୂହର ଅଧ୍ୟୟନ ଦ୍ୱାରା ପୂର୍ଣ୍ଣତା ଲାଭ କରିଥାଏ ।

ପଣ୍ଡିତ ନୀଳକଂଠ ତାଙ୍କର ' କୋଣାର୍କେ ' କାବ୍ୟର ଦ୍ୱିତୀୟ ସଂସ୍କରଣର ମୁଖବନ୍ଧରେ ପ୍ରସଙ୍ଗ କ୍ରମେ ଲେଖିଛନ୍ତି–

" ସଙ୍ଗେ ସଙ୍ଗେ ମୋର ସାହିତ୍ୟ ଚର୍ଚ୍ଚା ବି ବଢ଼ିଲା । × × × × ଯେଥିରେ ପ୍ରାଚୀନ କବି ଜଗନ୍ନାଥ ଦାସଙ୍କ ଠାରୁ ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ ବାଟେ ସାମନ୍ତ ସିଂହାରଙ୍କ ପର୍ଯ୍ୟନ୍ତ ବଂଗଳା ସାହିତ୍ୟ, ତଥା ମଧ୍ୟେ ମଧ୍ୟେ ପୋପଙ୍କଠାରୁ ଟେନିସନ୍‌ଙ୍କ ପର୍ଯ୍ୟନ୍ତ ଇଂରେଜୀ ସାହିତ୍ୟରୁ ତୁଳନାତ୍ମକ ଉଦାହରଣମାନ ଧରି, କାବ୍ୟ କବିତାର ପରିସ୍ଥିତି, ପରମ୍ପରା, ପୁରୋଦୃଷ୍ଟି ସହିତ ମାନବ ସମାଜର ପ୍ରଗତିରେ ପୁଣି ନିତ୍ୟତାର ସଂକେତ ଓ କାବ୍ୟ କଳାରେ କବିର ଦୃଷ୍ଟ ସୁଲଭ ଦର୍ଶନ ପ୍ରଭୃତିର ଚର୍ଚ୍ଚା ଖୁବ୍ ହେଲା ।"

ଏଥିରେ ସାହିତ୍ୟିକ ମୂଲ୍ୟାୟନର ଯେଉଁ ସୂଚନା ଦିଆ ଯାଇଛି, ତହିଁରୁ ପଣ୍ଡିତ ନୀଳକଂଠଙ୍କ ଭୂୟୋଦର୍ଶିତା ଓ ପୁରୋଦୃଷ୍ଟିର ବରେଣ୍ୟ ସଙ୍କେତ ମିଳେ ।

ବାସ୍ତବରେ, ସତ୍ୟବାଦୀରେ ସେ ଯେଉଁ ସାଧକ ଜୀବନ ଯାପନ କରିଥିଲେ ତାହା, ଉଚ୍ଚତର ସାହିତ୍ୟିକ ଅନୁଶୀଳନ ଲାଗି, ତାଙ୍କୁ ସୁଯୋଗ ଦେଇଥିଲା ; ପ୍ରାଚ୍ୟ–

ପାଶ୍ଚାତ୍ୟ ଉଭୟ ଦେଶର ଦର୍ଶନ, ସଂସ୍କୃତି, ସାହିତ୍ୟ ଓ କଳା ପ୍ରଭୃତିର ଆଲୋଚନା କରିବା ଭିତରେ ତାଙ୍କର ଗଭୀର ଦୃଷ୍ଟି ନିପତିତ ହେଲା ଉତ୍କଳର ସଂସ୍କୃତି ଉପରେ । ସେତେବେଳକୁ ଭାରତର ରାଜନୈତିକ ଜୀବନ ଥିଲା ନୈରାଶ୍ୟ ପୂର୍ଣ୍ଣ । ପ୍ରବଳ–ପ୍ରତାପୀ ଗୋରା ସରକାର ବିରୁଦ୍ଧରେ ସାମାନ୍ୟତମ ପ୍ରତିବାଦ କରିବା ପାଇଁ କୋଟିକରେ ଗୋଟିଏ ଲୋକ ବାହାର କରିବା କଷ୍ଟକର ହେଉଥିଲା । ଉତ୍କଳମଣି ଗୋପବନ୍ଧୁ ଥିଲେ ଉଗ୍ର ଜାତୀୟ ବାଦୀ । ମହାତ୍ମାଗାନ୍ଧୀ ଉତ୍କଳରେ ପଦାର୍ପଣ କରି, ତାଙ୍କର ବାର୍ତ୍ତା ପ୍ରଚାର କରିବା ପୂର୍ବରୁ ମଧ୍ୟ, ଗୋପବନ୍ଧୁ ସେ ଦିଗରେ ପଦକ୍ଷେପ ଗ୍ରହଣ କରିଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ପରି ଜ୍ଞାନନିଷ୍ଠ ଓ ତେଜସ୍ୱୀ ପୁରୁଷ ପୁଙ୍ଗବଙ୍କୁ ନିଜର ସହକର୍ମୀ ରୂପେ ପାଇ ଗୋପବନ୍ଧୁ ରଚନାତ୍ମକ କର୍ମକ୍ଷେତ୍ରରେ ଅଧିକ ସକ୍ରିୟ ହୋଇଥିଲେ ।

ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଏବଂ ପଣ୍ଡିତ ଗୋଦାବରୀଶ ପ୍ରମୁଖ ସତ୍ୟବାଦୀର ପଞ୍ଚସଖା କେବଳ ମହାଜାତୀୟବାଦ ( Nationalism ) ପ୍ରଚାର କରି ନ ଥିଲେ । ତା' ସହିତ ପ୍ରଚାର କରିଥିଲେ ଜାତୀୟ ଚେତନା(Patriotism) । ସେମାନେ କହୁଥିଲେ, ଆମେ ଭାରତକୁ ପରାଧୀନତାରୁ ମୁକ୍ତ କରିବା, ସତ, କିନ୍ତୁ ଭାରତର କେତେକ ଉନ୍ନତ ଅଞ୍ଚଳ ତୁଳନାରେ ଓଡ଼ିଶା ଭଳି କେତେକ ପ୍ରଦେଶ ଦୟନୀୟ ଅବସ୍ଥାରେ ପଡ଼ିଥିବା ପର୍ଯ୍ୟନ୍ତ ଭାରତର ସାମୂହିକ ଅଗ୍ରଗତି ହୋଇ ପାରିବ ନାହିଁ । ସେଥିପାଇଁ ସେମାନେ ଚାହୁଁଥିଲେ, ଦୀନହୀନ ଭାବରେ କାଳ ଯାପନ କରୁଥିବା ଓଡ଼ିଆମାନଙ୍କୁ ସୁଦୂର ଅତୀତର ଓଡ଼ିଆ ମାନଙ୍କ ପରି ସମୁନ୍ନତ ଅବସ୍ଥାରେ ପ୍ରତିଷ୍ଠାପିତ କରିବାପାଇଁ । ତେଣୁ, ପୁରୀ ପଲ୍ଲୀରେ ରଚନାତ୍ମକ କାର୍ଯ୍ୟକଳାପ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ, ଓଡ଼ିଆ ଜାତିର ଗୌରବବହ ସାଂସ୍କୃତିକ ଐତିହ୍ୟ ( Cultural heritage ) ପ୍ରତି ସର୍ବ ସାଧାରଣଙ୍କର ଦୃଷ୍ଟି ଆକୃଷ୍ଟ କରିବା ପାଇଁ, ପଣ୍ଡିତ ନୀଳକଣ୍ଠ ଏକ ବିଧିବଦ୍ଧ ଯୋଜନା କାର୍ଯ୍ୟକାରୀ କରଥିଲେ । ସେ ଯୋଜନା ମଧ୍ୟ ଥିଲା ବହୁମୁଖୀ; ବହୁ ଧାରାରେ ତାହାର ପ୍ରାଣ ପ୍ରାଚୁର୍ଯ୍ୟ ଫୁଟି ଉଠିଥିଲା । ବହୁ ଧାରା ମଧ୍ୟରୁ ପ୍ରସଙ୍ଗୋଚିତ ଭାବରେ ଦୁଇଟି ଧାରା ଏଠାରେ ଉଲ୍ଲେଖଯୋଗ୍ୟ । ଗୋଟିଏ ଧାରା ହେଉଛି, ଜଗନ୍ନାଥ ସଂସ୍କୃତିର ବୈଶିଷ୍ଟ୍ୟ ପ୍ରତିପାଦନ ଏବଂ ଆଉ ଗୋଟିଏ ହେଉଛି, ପ୍ରାଚୀନ ଓଡ଼ିଆ ସାହିତ୍ୟର ମହତ୍ତ୍ୱ ବିବେଚନା । ପ୍ରଥମଟି ପାଇଁ ସେ ଯେଉଁ ଶ୍ରମ ସ୍ୱୀକାର କରିଥିଲେ, ଶ୍ରୀମଦ୍ ଭଗବଦ୍ ଗୀତାର ସୁବିସ୍ତୃତ ମୁଖବନ୍ଧ ହେଉଛି ତାହାର ଅମୃତମୟ ଫଳ । ପୁଣି, ଓଡ଼ିଆ ସାହିତ୍ୟର ମାନ-ନିର୍ଦ୍ଧାରଣ କରିବା ପାଇଁ ବହୁଯାଠୀ ନୀଳକଣ୍ଠ ଯେଉଁ କୃତିତ୍ୱ ପୂର୍ଣ୍ଣ

ଅଧ୍ୟବସାୟ କରିଥିଲେ , ତାହା ଦୁଇଟି ପର୍ଯ୍ୟାୟରେ ବିକଶିତ ହୋଇଥିଲା । ପ୍ରଥମ ପର୍ଯ୍ୟାୟରେ, ସାହିତ୍ୟ ମାଧ୍ୟମରେ ସମାଜରେ ସଂଯମ ଧର୍ମ ପ୍ରତିଷ୍ଠିତ କରିବା ପାଇଁ ଉପେନ୍ଦ୍ରଭଞ୍ଜ ଯେଉଁ ପ୍ରଚେଷ୍ଟା କରିଥିଲେ ତହିଁରେ ଅଭିଭୂତ ହୋଇ ସେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଅସାଧାରଣ ଜନପ୍ରିୟ ପ୍ରେମକାବ୍ୟ ( Poetic Romance ) ଉପରେ ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା ଓ ବିଦଗ୍ଧତା–ବିଜସିତ ଟୀକା–ପ୍ରଣୟନ କରିଥିବା ଏକାନ୍ତ ଉଲ୍ଲେଖ ଯୋଗ୍ୟ । ଦ୍ୱିତୀୟ ପର୍ଯ୍ୟାୟରେ, ତାଙ୍କର ପ୍ରୌଢ ବୟସରେ ପ୍ରକାଶ ପାଇଥିଲା ଦୁଇଭାଗ ବିଶିଷ୍ଟ " ଓଡ଼ିଆ ସାହିତ୍ୟର କ୍ରମ ପରିଣାମ " । ଏ ଦୁଇଖଣ୍ଡି ଆଲୋଚନା ଗ୍ରନ୍ଥରେ ସାରଳା, ଜଗନ୍ନାଥ, ବଳରାମ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ ପ୍ରମୁଖ ବରେଣ୍ୟ ଓଡ଼ିଆ କବିମାନଙ୍କ ସାହିତ୍ୟିକ ମୂଲ୍ୟାୟନ କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଯେଉଁ ସାଂସ୍କୃତିକ ତୋରଣ ଉଦ୍‌ଘାଟନ କରି ଦେଇଛନ୍ତି, ତାହା ଏ ପର୍ଯ୍ୟନ୍ତ ଅନନୁକରଣୀୟ ହୋଇ ରହିଛି । ତାଙ୍କ ଦୃଷ୍ଟି ଭଙ୍ଗୀର ମୌଳିକତା ଓ ଗଭୀରତାର ଅବବୋଧ ପାଇଁ ଯେଉଁ ଜ୍ଞାନ ଗାମ୍ଭୀର୍ଯ୍ୟ ଆବଶ୍ୟକ, ତାହା ସମସାମୟିକ ଉତ୍କଳରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ଭଞ୍ଜ ସାହିତ୍ୟର ଅନୁଶୀଳନ ପାଇଁ ସେ କାହିଁକି ପ୍ରବୃତ୍ତ ହୋଇଥିଲେ, ସେ କଥା ୧୯୪୩ ଠାରୁ ତାଙ୍କ ଜୀବନ ଶେଷ ସମୟ ପର୍ଯ୍ୟନ୍ତ ବହୁ ସଭା ସମିତିରେ, ଗଭୀର ଆତ୍ମବିଶ୍ୱାସ ଭରା ବାଣୀରେ ସେ ପ୍ରକାଶ କରି ଅଛନ୍ତି । ପୁଣି, ଭଞ୍ଜଙ୍କର ଜାତୀୟ ଚରିତ୍ର ଗଠନ ମୂଳକ ମହନୀୟ ପ୍ରୟାସ କଥା ଆଲୋଚନା କରି, ତାଙ୍କର " ଓଡ଼ିଆ ସାହିତ୍ୟର କ୍ରମ ପରିଣାମ " ରେ ଲିପିବଦ୍ଧ କରିଛନ୍ତି ।

ଆଳଙ୍କାରିକ ମାନେ ମହାକବି ଭାରବିଙ୍କର ସୁବିଖ୍ୟାତ କାବ୍ୟ "କିରାତାର୍ଜୁନୀୟମ୍" ସଂପର୍କରେ କହିଲା ବେଳେ ନାରୀକେଳ ଫଳର ଦୃଷ୍ଟାନ୍ତ ଦେଇଥାନ୍ତି । କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ରସ ଗ୍ରହଣ ଶକ୍ତି ହୀନ ପାଠକମାନଙ୍କ କଥା କହିଲା ବେଳେ, ନିଜର କାବ୍ୟ ଗୁଡ଼ିକୁ ନାରୀକେଳ ଫଳସଙ୍ଗେ ତୁଳନା କରିଛନ୍ତି । ତାଙ୍କ ଭାଷାରେ–

ନାରିକେଳ ଯେ ଫଳସାର
ତା ସ୍ୱାଦୁ ନ ଜାଣେ ବାନର ।

ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଂପର୍କରେ ମଧ୍ୟ ଏହି ନାରିକେଳ ଫଳର ଦୃଷ୍ଟାନ୍ତ ଉଲ୍ଲେଖ ଯୋଗ୍ୟ । ତାଙ୍କର ଚିତ୍ତସଂଯମ, ନୈତିକ ଆଦର୍ଶ ବେଳେ ବେଳେ କଟୁ କଠୋର ମନ୍ତବ୍ୟ ପ୍ରକାଶ ଓ ରାଜନୈତିକ ସଂଘର୍ଷମୟ ଜୀବନର ଅଶାନ୍ତ ପରିସ୍ଥିତି ତଥା ଦାର୍ଶନିକ ତତ୍ତ୍ୱ ବିବେଚନା ପ୍ରଭୃତି ଦେଖିଲେ ମନେ ହେଉଥିଲା, ସତେ ଯେପରିକି,

ଶୃଙ୍ଗାର ରସ ପୂର୍ଣ୍ଣ ଭଞ୍ଜ ସାହିତ୍ୟ ତଥା ବିଶ୍ୱମାନବର ପ୍ରୀତି ପ୍ରଦାୟକ ରସ ସାହିତ୍ୟ ପ୍ରତି ସେ ଥିଲେ ଏକାବେଳକେ ପରାଙ୍ମୁଖ, ଅନନୁରକ୍ତ । ନାରିକେଳ ଫଳର ବହିର୍ଭାଗ ଅତ୍ୟନ୍ତ କଠୋର, କିନ୍ତୁ ସେହି ଆବରଣକୁ ଭେଦ କରି ପାରିଲେ, ସୁମିଷ୍ଟ ରସ ସହଜ-ଲଭ୍ୟ ହୁଏ । ଭାରବି ଏବଂ ଭଞ୍ଜ ପ୍ରଭୃତିଙ୍କ କାବ୍ୟମାନ ଯଦିଓ ଚମତ୍କାର ଚିନ୍ତାରେ ପରି-ପୂର୍ଣ୍ଣ, ତଥାପି ସାଧାରଣ ପାଠକ ଭିତରେ ପ୍ରବେଶ କରିପାରେ ନାହିଁ ଓ ସେହି ସରସ ଚିଂତାର ସ୍ୱାଦ ଉପଲବ୍ଧି କରିପାରେ ନାହିଁ । ପଣ୍ଡିତ ନୀଳକଂଠଙ୍କ ସମ୍ବନ୍ଧରେ ମଧ୍ୟ ଏହି ଦୃଷ୍ଟାନ୍ତ ଉଲ୍ଲେଖନୀୟ । ଆପାତତଃ ସେ ଜଣେ ରୁକ୍ଷ ଦାର୍ଶନିକ, ଓ ସଂଗ୍ରାମଶୀଳ ଯୋଦ୍ଧା ଭାବରେ ପ୍ରତିଭାତ ହେଉଥିଲେ ହେଁ ଏବଂ ତାଙ୍କର ବହୁକାବ୍ୟ କବିତାର ସ୍ୱାଦ ମଧ୍ୟ ସାଧାରଣ ପାଠକମାନଙ୍କ ନିକଟରେ ସହଜ ଲଭ୍ୟ ହେଉ ନ ଥିଲେହେଁ, ସେ ଆମ୍ଭ ମାନଙ୍କୁ ଲାବଣ୍ୟବତୀର ଟୀକା ଦାନ କରି ଏହି ଶ୍ରେଣୀର ପାଠକମାନଙ୍କ ନିକଟରେ ଭଞ୍ଜଙ୍କର ଦୁର୍ବୋଧ୍ୟ କାବ୍ୟଟିକୁ ଯେ କେବଳ ସୁଖ ପାଠ୍ୟ ଓ ଚିତ୍ତ ଅହ୍ଲାଦକାରୀ କରି ଯାଇ ଅଛନ୍ତି, ତାହା ନୁହେ, ତାଙ୍କର ଅନ୍ତରରେ ଯେ ସାହିତ୍ୟିକ ରସ ଧାରା କଲରବ ଭାବରେ ପ୍ରବାହିତ ହେଉଥିଲା, ଏହା ପ୍ରମାଣିତ କରିଯାଇ ଅଛନ୍ତି । ଲାବଣ୍ୟବତୀର ଟୀକାହିଁ ତହିଁର ସର୍ବଶ୍ରେଷ୍ଠ ଦୃଷ୍ଟାନ୍ତ ।

## ଭଞ୍ଜଙ୍କ ଲାବଣ୍ୟବତୀର ଟୀକା :

ପଣ୍ଡିତ ନୀଳକଂଠ ବିଖ୍ୟାତ ଲାବଣ୍ୟବତୀ କାବ୍ୟ ଉପରେ ଯେଉଁ ଟୀକା ଲେଖି-ଥିଲେ, ତାହା ତାଙ୍କର ପରଲୋକ ପ୍ରାପ୍ତିର ବହୁ ବର୍ଷ ପରେ ଏବେ ପ୍ରକାଶ ପାଉଛି । ବ୍ୟକ୍ତିଗତ ଭାବରେ ଏହି ଟୀକା କଥା ମୁଁ ଜାଣିଥିଲି ଶ୍ରୀ ବନମାଳୀ ମିଶ୍ରଙ୍କ ଠାରୁ । ଆଜିକି ପ୍ରାୟ ୩୩ ବର୍ଷ ପୂର୍ବେ ଶ୍ରୀ ବନମାଳୀ ମିଶ୍ର କଟକ ଖ୍ରୀଷ୍ଟ କଲେଜରେ ମୋର ଛାତ୍ରଥିଲେ । ସେ ପୁଣି ସେତେବେଳେ କଟକ ବାଙ୍କା ବଜାରରେ ଥିବା ପଣ୍ଡିତ ନୀଳ-କଂଠଙ୍କ " ନବଭାରତ " ପ୍ରେସର ପରିଚାଳକ ଥିଲେ । ପଣ୍ଡିତଜୀଙ୍କ ପାଖରେ ରହି ରହି ସେ ନିର୍ଭୁଲ ଓଡ଼ିଆ ଲେଖିବାରେ ଏଭଳି ଦକ୍ଷତା ଅର୍ଜନ କରିଥିଲେ ଯେ, ମୁଁ ତାଙ୍କର ଅଧ୍ୟାପକ ଭାବରେ ମଧ୍ୟ ବିସ୍ମିତ ହେଉଥିଲି । ତାଙ୍କଠାରୁ ପଣ୍ଡିତଜୀଙ୍କର ଲାବଣ୍ୟବତୀ ଟୀକା କଥା ଶୁଣିବା ପରେ ମୁଁ କେତେକ ସଭାରେ ଏ ଟୀକାର ପ୍ରକାଶନ ପାଇଁ ନିବେ-ଦନ କରିଥିଲି । ତଥାପି ସମୟ ଗଡ଼ି ଚାଲିଲା । କିନ୍ତୁ ଟୀକାର ସମୁଦ୍ଧରଣ ହୋଇ ପାରିଲା ନାହିଁ । ସୌଭାଗ୍ୟ କ୍ରମେ ପଣ୍ଡିତଜୀଙ୍କର ସୁଯୋଗ୍ୟ ଜାମାତା ଏବଂ କବି ଶ୍ରୀ ମଧୁସୂଦନ

ଦାଶ ତଥା ତାଙ୍କର ଧର୍ମପତ୍ନୀ ଶ୍ରୀମତୀ ଇନ୍ଦିରା ଦାସ (ପଣ୍ଡିତଜୀଙ୍କର ମଧ୍ୟମା କନ୍ୟା) ଏ ଦିଗରେ ଦୃଷ୍ଟି ଦେଇ, ଆମ୍ଭ ମାନଙ୍କର ଚିରପୋଷିତ ଆଶାର ଉପାୟନ ଦିଗରେ ପଦକ୍ଷେପ ଗ୍ରହଣ କଲେ । ଶ୍ରୀମତୀ ଦାସ ପଣ୍ଡିତ ନୀଳକଂଠଙ୍କ ପୁରୁଣା କାଗଜରେ ଲେଖା ଯାଇଥିବା ଟୀକାଟିକୁ ନିଜ ହାତରେ ଅମୂଲ୍ୟ ଉତାରି ଦେଇ, ଗ୍ରନ୍ଥ ପ୍ରବେଶ ଲେଖିବା ନିମନ୍ତେ ମୋ ନିକଟକୁ ପଠାଇଦେଲେ । ମଧୁବାବୁ ମଧ୍ୟ ବ୍ୟକ୍ତିଗତ ଆଲୋଚନା ପ୍ରସଙ୍ଗରେ ଏକାଧିକ ଥର ପଗ୍ଭରିଛନ୍ତି–" ଏଇ ଟୀକାରେ କିଛି ନୂତନତା ଅଛି କି ?" ଇତ୍ୟାଦି । ଭାରତୀୟ ପଣ୍ଡିତ ପରମ୍ପରାରେ ଗୋଟିଏ ବଡ଼ କଥା ହେଉଛି ଟୀକା ପ୍ରଣୟନ ମେଘଦୂତ, କୁମାର ସମ୍ଭବ ରଘୁବଂଶ ଇତ୍ୟାଦି ଇତ୍ୟାଦି କାବ୍ୟ ଉପରେ ଗଣି ଗଣି ଟୀକା ଲେଖା ଯାଇଛି । ଆସେତୁ ହିମାଚଳ ଶତ ଶତ ପଣ୍ଡିତ ଗୋଟିଏ ଗୋଟିଏ ବହି ଉପରେ, ( ବହୁ ଟୀକା ଆଗରୁ ଲେଖା ଯାଇଥିବା ଜାଣି ମଧ୍ୟ ) ନୂଆ ଟୀକା ଲେଖିବା ପାଇଁ ଚେଷ୍ଟା କରିଛନ୍ତି । କାରଣ, ମୂଳ ରଚନାର ପଂକ୍ତିମାନଙ୍କରୁ ନିତ୍ୟ–ନୂତନ ଅର୍ଥ ପ୍ରକାଶ କରିବା ପାଇଁ କୌଣସି ଜଣେ ବ୍ୟକ୍ତିଙ୍କର ଚିନ୍ତା, ପାଣ୍ଡିତ୍ୟ ବା ସାଧନା ଯଥେଷ୍ଟ ନୁହେ । କାହା ମନରେ କେଉଁ ବାକ୍ୟ କି ଭଳି ଅର୍ଥ ସଂପଦରେ ପ୍ରତି–ଭାତ ହୁଏ ତାହା କଳ୍ପନା ମଧ୍ୟ କରଯାଇ ନ ପାରେ । ନୈଷଧ ଚରିତର ନାରାୟଣୀ ଟୀକା ଯେଉଁମାନେ ପଢ଼ିଛନ୍ତି, ସେମାନେ ଏହି ମନ୍ତବ୍ୟର ସତ୍ୟତା ଉପଲବ୍ଧି କରି ପାରିବେ । ସ୍ୱନାମଧନ୍ୟ ମଲ୍ଲିନାଥ ବହୁ ଗ୍ରନ୍ଥର ଟୀକା ଲେଖିଛନ୍ତି । କିନ୍ତୁ କେତେକ ସ୍ଥଳରେ ତାଙ୍କ ପ୍ରତିପାଦିତ ଅର୍ଥଠାରୁ ଅଧିକ ସରସ, ସୁନ୍ଦର ଓ ସୁସଙ୍ଗତ ଅର୍ଥ ପ୍ରକାଶ କରି, ପରବର୍ତ୍ତୀ କାଳର କେତେକ ଟୀକାକାର ବିଦଗ୍ଧ ପାଠକ ସମାଜରେ ତରଙ୍ଗଭଙ୍ଗ କରି ଅଛନ୍ତି । ପଣ୍ଡିତ ନୀଳକଂଠ ୧୯୩୦ ମସିହା ବେଳେ ତାଙ୍କ ଜେଲ ଜୀବନରେ ଲାବଣ୍ୟବତୀର ଟୀକା ଲେଖିଥିଲେ । ଏହା ମଧ୍ୟରେ ପ୍ରାଚୀ ସମିତି ଓ ଅନ୍ୟ କେତେକ ଟୀକା ପ୍ରକାଶ ପାଇଥିଲେ ମଧ୍ୟ ପଣ୍ଡିତ ନୀଳକଂଠଙ୍କ ଅସାଧାରଣ ଅନୁସନ୍ଧିତ୍ସାର ପ୍ରଖର ଆଲୋକରେ ଲାବଣ୍ୟବତୀର ପଦଭଣ୍ଡାର ଅନ୍ତର୍ଗତ ନବରସ ରୂପକ ନବ–ରତ୍ନ କି ଭଳି ମୋହନ ମାଦକତାରେ ଅବଲୋକିତ ହୋଇଥିଲା, ତାହା ଜାଣିବା ପାଇଁ, ପ୍ରାଚୀନ ଓଡ଼ିଆ ପାଠକର ମନରେ କୌତୂହଳ ଜାତ ହେବା ସ୍ୱାଭାବିକ । ପରମ ପୂଜ–ନୀୟ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରଣୀତ ଲାବଣ୍ୟବତୀ ଟୀକା ପ୍ରକାଶ ପାଇଥିଲା –୧୯୪୪ ଖ୍ରୀଷ୍ଟାବ୍ଦରେ, ଆଜିର ସ୍ୱନାମଧନ୍ୟ 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥ ମୁଦ୍ରାକର ଭାବରେ, କଟକ ' ସତ୍ୟବାଦୀ ' ପ୍ରେସରୁ ଏହା ମୁଦ୍ରଣ କରିଥିଲେ । ଆର୍ତ୍ତ–ବାବୁଙ୍କ ଏହି ଟୀକାଛଡ଼ା ଆହୁରି ଅନ୍ୟ କେତୋଟି ଟୀକା ମଧ୍ୟ ପ୍ରଣୀତ ହୋଇଅଛି । କୌଣସି କୌଣସି ଟୀକାରେ ଏଭଳି ଭ୍ରମପୂର୍ଣ୍ଣ ଅର୍ଥ ପ୍ରକାଶ କରା ଯାଇଛି ଯେ ପଢ଼ିଲେ

ନ ହସି ରହିହୁଏ ନାହିଁ । ମନେହୁଏ ଶିବ ରାତ୍ରିଦିନ ଉଜାଗର ରହିବା ପାଇଁ ଏଭଳି ଭ୍ରମପୂର୍ଣ୍ଣ ଟୀକା ହୁଏତ ବିଶେଷ ଆଦରଣୀୟ ହେବ ଏବଂ ନିଦ୍ରାଦେବୀ ଏଭଳି ଟୀକାର ଆଲୋଚକଙ୍କ ପାଖକୁ ଆସି ପାରିବେ ନାହିଁ । କିନ୍ତୁ ପଣ୍ଡିତ ନୀଳକଂଠଙ୍କ ଖ୍ୟାତିପରି ତାଙ୍କର ଟୀକା ମଧ୍ୟ ବିଦଗ୍ଧ–ମନୋରଂଜିନୀ ।

## ନୀଳକଂଠଙ୍କ ଟୀକାର ବିଶେଷତ୍ୱ :

ବର୍ତ୍ତମାନ ଏଠି ପୂର୍ବରୁ ଉଲ୍ଲିଖିତ ହୋଇଥିବା ମଧୁବାବୁଙ୍କ ପ୍ରଶ୍ନ ଉପରେ ଦୃଷ୍ଟି ରଖି ପଣ୍ଡିତ ନୀଳକଂଣ୍ଠଙ୍କ ଟୀକାର ବିଶେଷତ୍ୱ ସଂପର୍କରେ କେତୋଟି ସୂଚନା ମାତ୍ର ଦେଉଅଛି ଏ ପର୍ଯ୍ୟନ୍ତ ଲାବଣ୍ୟବତୀର ଯେଉଁ ସବୁ ଟୀକା ପ୍ରକାଶ ପାଇଛି, ସେ ମଧ୍ୟରେ ଆର୍ତ୍ତବାବୁଙ୍କ ଟୀକା ଯେ ସର୍ବଶ୍ରେଷ୍ଠ, ଏଥିରେ ସନ୍ଦେହ ନାହିଁ । ତେବେ, ଆର୍ତ୍ତବାବୁଙ୍କ ଟୀକା ଥିବା ସତ୍ତ୍ୱେ ପଣ୍ଡିତ ନୀଳକଂଣ୍ଠଙ୍କ ପ୍ରଣୀତ ଏହି ଟୀକା ପ୍ରକାଶ କରାଗଲେ ପାଠକ ମାନଙ୍କର ତଥା ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରେମିକଙ୍କର କାବ୍ୟ-ପଠନରେ କି ଉପକାର ସାଧିତ ହେବ, ତାହା ମୋ ପ୍ରଦତ୍ତ ସୂଚନାବଳୀରୁ ସ୍ପଷ୍ଟ ପ୍ରତିଭାତ ହେବ । ଆର୍ତ୍ତବାବୁଙ୍କ ଟୀକା ଏବଂ ନୀଳକଂଣ୍ଠଙ୍କ ଟୀକାର ତୁଳନାତ୍ମକ ଅଧ୍ୟୟନ ପାଇଁ ଯେଉଁ ଦୀର୍ଘ ସମୟ ଓ ନିଷ୍ଠା ଆବଶ୍ୟକ ତାହାର ଶତାଂଶ ସୁଦ୍ଧା ମୋ ପକ୍ଷରେ ସହଜଲଭ୍ୟ ହୋଇନାହିଁ । ନୀଳକଂଣ୍ଠଙ୍କ ଟୀକା ଉପରେ କେବଳ ବିହଙ୍ଗମ ଦୃଷ୍ଟି ନିକ୍ଷେପ କରି ଓ ଅଳ୍ପ କେତେ ଗୋଟି ସ୍ଥଳରେ ଟୀକା ପାଠ କରି, ଏହି ସୂଚନାର ତାଲିକା ପ୍ରସ୍ତୁତ କଲି । ତଥାପି ଏ ଏ ପ୍ରସଙ୍ଗରେ ମୁଁ ଗଭୀର ଆତ୍ମ ବିଶ୍ୱାସର ସହିତ କହି ପାରିବି ଯେ, ଉଭୟ ଟୀକାର ତୁଳନାତ୍ମକ ଆଲୋଚନା କରାଯାଇ ପାରିଲେ, ଉଭୟ ପଣ୍ଡିତ ପ୍ରବରଙ୍କର ମନୀଷା, ଜାତିର ମହାକବି ଉପେନ୍ଦ୍ର ଭଞ୍ଜଙ୍କୁ ମହୀୟାନ ରୂପେ ପ୍ରତିଷ୍ଠାପିତ କରିବା ପାଇଁ କିପରି ବିଶେଷ ସହାୟକ, ତାହା ଉତ୍ତମ ରୂପେ ପ୍ରଦର୍ଶିତ ହୋଇ ପାରନ୍ତା । ଜଣେ ମହାକବିଙ୍କର ଜ୍ଞାନ–ଗମ୍ଭୀର ରଚନା ଉପରେ ଯେ କେହି ଟୀକାକାର ଟୀକା ଲେଖି ସାରିବା ପରେ ଏଭଳି ନିଃସଙ୍କୋଚରେ କହିବା ଉଚିତ ହେବ ନାହିଁ ଯେ–"ମୁଁ ଯାହା ଟୀକା କରିଗଲି, ତା' ଠାରୁ ଅଧିକ କଥା କେହି କହିପାରିବ ନାହିଁ ।" ଏଭଳି ଅହଙ୍କାର ବା ଅଭିମାନ ଯାହାଠାରେ ଅଛି, ସେ କେବେହେଲେ ଉଚ୍ଚକୋଟୀର ଟୀକାକାର ହୋଇ ପାରିବ ନାହିଁ । ଭଗବାନ କୌଣସି ଜଣେ ବ୍ୟକ୍ତିକୁ ଏଭଳି ଶକ୍ତି ଦେଇ ନାହାନ୍ତି, ଯାହାର ମତ ଉପରେ ପ୍ରଶ୍ନ କରାଯାଇ ପାରିବ ନାହିଁ । ଏଥିପାଇଁ ଭାରତର ପଣ୍ଡିତ ପରମ୍ପରାରେ ଦୁଇଟି ପ୍ରବଚନ ଆଜି ସୁଦ୍ଧା ଉଜ୍ଜୀବିତ ରହିଅଛି । ଗୋଟିଏ ପ୍ରବଚନ ହେଉଛି–

"ନ ହି ସର୍ବଃ ସର୍ବଂ ବେତ୍ତି" ।

ପୁଣି ଆଉ ଗୋଟିଏ ହେଉଛି–

"ପ୍ରାୟେଣ ସାମଗ୍ର୍ୟ ବିଧୌ ଗୁଣାନାଂ
ପରାଙ୍ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ" ।

ଟୀକା–କ୍ଷେତ୍ରରେ ଏ କଥା ସର୍ବ ପ୍ରଥମେ ସ୍ମରଣୀୟ ଯେ, ପ୍ରତ୍ୟେକ ଟୀକାକାର କେତେକ ସ୍ଥଳରେ ନିଜର ପାଣ୍ଡିତ୍ୟ ଓ ପ୍ରଖର ଚିନ୍ତାଶକ୍ତି ବଳରେ, ମୂଳ ରଚନା ଉପରେ ନୂତନ ଆଲୋକପାତ କରିବାକୁ ଚେଷ୍ଟା କରିଥାନ୍ତି । କେତେକ ସ୍ଥଳରେ ଦେଖାଯାଏ, ଗୋଟିଏ ପଦକୁ ନେଇ ଜଣେ ପ୍ରସିଦ୍ଧ ଟୀକାକାର, ଗୋଟିଏ ବିଶିଷ୍ଟ ଓ ବିଚିତ୍ର ଅର୍ଥ ବୁଝାଇଛନ୍ତି ତ, ଆଉ ଜଣେ ପ୍ରଖ୍ୟାତ ଟୀକାକାର, ସେହି ପଦଟିକୁ ନେଇ ଅନ୍ୟଏକ ବିସ୍ମୟକର ବ୍ୟାଖ୍ୟାନ ପ୍ରଦାନ କରି ଶ୍ରୋତା ମାନଙ୍କୁ ବିମୁଗ୍ଧ କରି ଅଛନ୍ତି । ଉଭୟଙ୍କର ଟୀକା ପାଠକଲେ ମନରେ ରସାନୁଭୂତି ଜନ୍ମି ଥାଏ । ପୁଣି, କବିଙ୍କର ଚାତୁର୍ଯ୍ୟ ବା ଚିନ୍ତାର ଚତୁରିମା ନିରୀକ୍ଷଣ କରି ପାଠକ ଭାବ ବିହ୍ୱଳ ହୁଏ ଏବଂ କବିଙ୍କ ପ୍ରତି ଅଧିକ ଭାବରେ ଆକୃଷ୍ଟ ହୁଏ । ଏଭଳି ସ୍ଥଳ–ମାନଙ୍କରେ ଉଭୟ ଟୀକାକାର ଯଦିଓ–ଅର୍ଥସର–ବିରୋଧୀ, ତଥାପି ନିଜର ଅଭିନନ୍ଦିତ କବିଙ୍କୁ ମହା ମହିମ ଭାବରେ ପ୍ରତିଷ୍ଠା କରିବା ଦିଗରେ, ଉଭୟେ ପାଠକ ମାନଙ୍କର ଅଭିବନ୍ଦନୀୟ ।

ଲାବଣ୍ୟବତୀର ଟୀକାରେ ଅନେକ ସ୍ଥଳରେ ଲକ୍ଷ୍ୟ କଲି, ଆର୍ତ୍ତବାବୁ ଗୋଟାଏ ପ୍ରକାର ଅର୍ଥ କରି ଥିବା ବେଳେ, ପଣ୍ଡିତ ନୀଳକଂଣ୍ଠ ଆଉ ଏକ ଭଙ୍ଗୀରେ ଅର୍ଥ କରି ଅଛନ୍ତି । ବିଦଗ୍ଧ–ପାଠକ ନିଶ୍ଚୟ ଅନୁଭବ କରିବେ ଯେ ଉଭୟ ଟୀକାକାରଙ୍କ ଦ୍ୱାରା କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର ମହତ୍ତ୍ୱ ବୃଦ୍ଧି ଲାଭ କରିଅଛି । ବର୍ତ୍ତମାନ ମୁଁ ନୀଳକଂଣ୍ଠଙ୍କ ଟୀକାର ବୈଶିଷ୍ଟ୍ୟ ସାତ ଗୋଟି ପର୍ଯ୍ୟାୟରେ ଉପସ୍ଥାପନ କରୁଅଛି । ପ୍ରତ୍ୟେକ ପ୍ରକାର ବୈଶିଷ୍ଟ୍ୟରୁ ମାତ୍ର ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଉଅଛି ।

## ଛାନ୍ଦର ମୋଟ ପଦ ସଂଖ୍ୟା ନିର୍ଣ୍ଣୟ :

ଆର୍ତ୍ତବାବୁଙ୍କର ପ୍ରାଚୀ–ଲାବଣ୍ୟବତୀର ପ୍ରଥମ ଛାନ୍ଦରେ ୭୧ ( ଏକସ୍ତରି ) ଟି ପଦ ଅଛି । ଅଥଚ ନୀଳକଂଠ ବାବୁଙ୍କ ପାଠରେ ୭୨ ( ବାଅସ୍ତରି ) ଗୋଟି ପଦ ଅଛି । କି କାରଣରୁ ପ୍ରାଚୀ ଟୀକାରେ ତଳ ଲିଖିତ ପଦଟି ରହିଲା ନାହିଁ, ତାହା ଜାଣିବାର ଉପାୟ ନାହିଁ । ପଦଟି ହେଉଛି–

" ଦୋଷଥିଲେ ରସ ବସ୍ତୁ କରିବେ ଆଦର
ଏଣୁ ଅତିଶୟ ସଂଶୟକୁ କରି ଦୂର " । ୧୨।

ବଜାରରେ ମିଳୁଥିବା ଅନ୍ୟ ଲବଣ୍ୟବତୀରେ ମଧ୍ୟ ଏଇ ପଦଟି ଅଛି । ତତ୍ତ୍ୱ ଦୃଷ୍ଟିରୁ, ଏଇ ପଦଟିକୁ ଗ୍ରହଣ କରଯିବା ଦ୍ୱାର ହୁଏତ ପ୍ରମାଣ କରି ହେବ ଯେ, କୌଣସି ସଂସ୍କୃତ କାବ୍ୟରେ ଏହି ମର୍ମରେ ଏକ ଶ୍ଳୋକ ଥିଲା, ଯାହାର ଅନୁସରଣରେ ଉପେନ୍ଦ୍ର ଭଞ୍ଜ ଏପରି ଲେଖିଥିଲେ । ହୁଏତ "ବିଦଗ୍ଧ-ମାଧବ ନାଟକର' ପ୍ରସିଦ୍ଧ ଶ୍ଳୋକ " ମମାସ୍ମିନ୍ ସନ୍ଦର୍ଭେ " ( ଶ୍ଳୋକ ) ଅନୁସାରେ ଏହା ସେ ଲେଖିଛନ୍ତି । ବୈଦେହୀଶ ବିଳାସ ମୂଳରେ କବି ନିଜକୁ ଜ୍ୟୋତିରିଙ୍ଗଣ ( ଜୁଳୁ ଜୁଳିଆ ପୋକ ) ସଙ୍ଗେ ତୁଳନା କରିଛନ୍ତି । ପଣ୍ଡିତମାନେ କହନ୍ତି, ଓଡ଼ିଶାର ବିଖ୍ୟାତ ସଂସ୍କୃତ କବି କୃଷ୍ଣାନନ୍ଦଙ୍କ ବିରଚିତ " ସହୃଦୟାନନ୍ଦ" କାବ୍ୟରୁ ଭାବ ଗ୍ରହଣ କରି, ଉପେନ୍ଦ୍ର ଏଭଳି ଲେଖିଛନ୍ତି । ଏଥିରୁ ଜଣାଯାଏ, ଉପେନ୍ଦ୍ର ଭଞ୍ଜଙ୍କର ଅଧ୍ୟୟନ ପଟୁତା ଓ ବହୁ ଶାସ୍ତ୍ରଦର୍ଶିତା । ତେଣୁ ପ୍ରାଚୀ ଲବଣ୍ୟବତୀରେ ପରିତ୍ୟକ୍ତ ହୋଇଥିବା ପଦଟି ( ଯାହାକି ଉପରେ ଉଦ୍ଧୃତ ହୋଇଛି ) ଉପେନ୍ଦ୍ର ଭଞ୍ଜଙ୍କର ବୋଲି ଗ୍ରହଣ କରଗଲେ, ହୁଏତ ଦିନେ ଗବେଷଣାରୁ ଜଣାଯିବ ଯେ, ଏହା ମଧ୍ୟ ତାଙ୍କର ଅନ୍ୟଗ୍ରନ୍ଥ ଅଧ୍ୟୟନର ଫଳ ।

ସେହିପରି ଆର୍ତ୍ତ ବାବୁଙ୍କ ପ୍ରାଚୀ ଲବଣ୍ୟବତୀର ୪୮ଶ ଛାନ୍ଦରେ ମାତ୍ର ୫୯ଟି ପଦ ଥିବା ସ୍ଥଳେ ନୀଳକଂଠଙ୍କ ଲେଖାରେ ୬୮ଟି ପଦ ଅଛି । ଏ ସମ୍ବନ୍ଧରେ ପଣ୍ଡିତ ନୀଳକଂଠ ପୁସ୍ତକ ଶେଷରେ ଏଇ ସବୁ ବ୍ୟତିକ୍ରମ ଓ ଛପା ପୁସ୍ତକ ତଥା ତାଳପତ୍ର ପୋଥିରେ ଲେଖା ଯାଇଥିବା ବିଭିନ୍ନ ଛାନ୍ଦର ପଦସଂଖ୍ୟା ସଂପର୍କରେ କେତେକ ସୂଚନା ମଧ୍ୟ ଦେଇଛନ୍ତି ।

ଏ ଭଳି ଭବରେ ସମସ୍ତ ଛାନ୍ଦର ପଦ ସଂଖ୍ୟା ଗଣନା କରି ଦେଖାଯାଇ ପାରେ ଅନ୍ୟ ଉଦାହରଣ ନ ମିଳିଲେ ମଧ୍ୟ ସାହିତ୍ୟର ଆଲୋଚନା କ୍ଷେତ୍ରରେ ଏଇ କେତୋଟି ପଦର ସ୍ୱୀକୃତି କମ୍ ଗୁରୁତ୍ୱ ପୂର୍ଣ୍ଣ ନୁହେଁ । କାରଣ କବି ନିଜର ଦୋଷ ସଂପର୍କରେ ମଧ୍ୟ ସଚେତନ ଥିବା ଏଥିରୁ ଜଣାଯାଏ ।

## ୬. ଓଡ଼ିଆ ଛାନ୍ଦର ଆଲୋଚନା ପାଇଁ ସଂକେତ :

ଏଠି ଚାରିଗୋଟି ପର୍ଯ୍ୟାୟରେ ଏ ବିଷୟର ସୂଚନା ଦେଉଛି ।

(କ) ଓଡ଼ିଆ ଛାନ୍ଦର କ୍ରମବଦ୍ଧ ବୈଜ୍ଞାନିକ ଆଲୋଚନା ଏ ପର୍ଯ୍ୟନ୍ତ ହୋଇ ନାହିଁ—ସ୍ୱର୍ଗତ ଶ୍ୟାମ ସୁନ୍ଦର ରାଜଗୁରୁଙ୍କଠାରୁ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ବାଟେ ଏ ପର୍ଯ୍ୟନ୍ତ ଯେତେ

ଯେତେ ଆଲୋଚନା ହୋଇ ଗଲଣି, ତହିଁରୁ ଓଡ଼ିଆ ରାଗରାଗିଣୀ ମାନଙ୍କର କ୍ରମ ବିକାଶ ନିରୂପଣ କରିବା ସହଜ ସାଧ୍ୟ ହୋଇନାହିଁ । ପୁଣି, କେତେକ ରାଗକୁ କେତେକ 'ବାଣୀ' ରେ ଗାଇବା ପାଇଁ ମଧ୍ୟ ଯୁଗ କାବ୍ୟ ସାହିତ୍ୟରେ ନିର୍ଦ୍ଦେଶ ଦିଆ ଯାଇଛି । 'ବାଣୀ' କୌଣସି ରାଗ ବା ରାଗିଣୀ ନୁହେ । କୌଣସି ଏକ ରଚନାକୁ ( ବିଶେଷତଃ ଜନପ୍ରିୟ ରଚନାକୁ ) ଯେ ଭଙ୍ଗି ଭଙ୍ଗୀରେ ବୋଲାଯାଏ ପରବର୍ତ୍ତୀ କାଳର ଅନ୍ୟ ଏକ ରଚନାକୁ ସେ ଭଙ୍ଗି ଭଙ୍ଗିରେ ବୋଲିବାର ବା ଗାଇବାର କ୍ରମହିଁ " ବାଣୀ " ନିର୍ଦ୍ଦେଶର ତାତ୍ପର୍ଯ୍ୟ । ତେଣୁ ଯେଉଁଠାରେ ' ବାଣୀ "ର ସଂକେତ ଥାଏ, ସେଠାରେ ବୁଝିବାକୁ ହୁଏ ଯେ, ବାଣୀ ଶବ୍ଦ ସହିତ ଆଉ ଯାହା ଶବ୍ଦ ତହିଁରେ ଅଛି, ତାହା ଅନ୍ୟ ଏକ ରଚନାର ସୂଚକ ମାତ୍ର । ଉଦାହରଣ ସ୍ୱରୂପ, " ରସକୁଲ୍ୟା ବାଣୀ " । ଦାମୋଦର ଦାସ ନାମକ କବି, " ରସକୁଲ୍ୟା ଚଉତିଶା " ଲେଖିଥିଲେ । ତାହାର ଅନୁକରଣରେ ବୋଲାଯିବା ପାଇଁ ପରବର୍ତ୍ତୀ କାଳର ଅନ୍ୟ ଏକ ରଚନାକୁ ସ୍ଥିର କରାଗଲା ଓ ସେତେବେଳେ କବି ଲେଖିଲେ " ରସକୁଲ୍ୟା ବାଣୀରେ ଗାଇବ " । କ୍ରମେ, ଭ୍ରମବଶତଃ, ଏହି " ବାଣୀ " କୁ କେହି ରାଗ ରସକୁଲ୍ୟା ବୋଲି ଲେଖି ଦେଲେ । ଏବେ ଓଡ଼ିଆ ରାଗ ତାଲିକାରେ ରସକୁଲ୍ୟାର ନାମ ଅନ୍ତର୍ଭୁକ୍ତ ହୋଇ ଯାଇଛି । ତାହା ହେଲେ, ରାଗରାଗିଣୀ ଅର୍ଥରେ ପ୍ରଯୁକ୍ତ ହେଉଥିବା " ବାଣୀ " କୁ ଭିତ୍ତି କରି (ବର୍ତ୍ତମାନ ଅନୁପଲବ୍ଧ ହେଲେ ହେଁ ଏକ ସମୟରେ ଜନପ୍ରିୟ ହୋଇ ଉଠିଥିବା ) କୌଣସି କବିଙ୍କର କୌଣସି ରଚନା ଥିଲା ବୋଲି ଜଣା ଯାଇଥାଏ । ଯେତେବେଳେ ଆମେ " ଗ୍ରନ୍ଥ ଲବଙ୍ଗଲତା ବାଣୀ, " " ସଙ୍ଗମ—ତିଆରି—ବାଣୀ " ଏବଂ " କଳା କଳେବର ଚୌତିଶା ବାଣୀ " ବୋଲି କୌଣସି କାବ୍ୟରେ ନିର୍ଦ୍ଦେଶ ଦେଖୁ, ସେତେବେଳେ ଏ କଥା ବୁଝିବା ଉଚିତ ଯେ, ବାଣୀ ପୂର୍ବରୁ ଉପରର ତିନୋଟି ଉଦାହରଣରେ ଯେତେ ଶବ୍ଦ ଅଛି, ତହିଁରୁ, ପୂର୍ବବର୍ତ୍ତୀ ଅନ୍ୟ ତିନିଗୋଟି ରଚନାର ସଙ୍କେତ ମିଳିଥାଏ । ଏହା ଓଡ଼ିଆ ଛାନ୍ଦର ଇତିହାସ ଗବେଷଣା କ୍ଷେତ୍ରରେ ଗୋଟିଏ ଗୋଟିଏ ଶଙ୍କୁ ରୂପେ ଗ୍ରାହ୍ୟ ।

ପଣ୍ଡିତ ନୀଳକଂଠଙ୍କ ' ଲାବଣ୍ୟବତୀ'ର ଟୀକା ଏ ଦୃଷ୍ଟିରୁ ଆମର ଏକାନ୍ତ ଅଭିନନ୍ଦନୀୟ । ଉଦାହରଣ ସ୍ୱରୂପ—ପ୍ରାଚୀ ଲାବଣ୍ୟବତୀର ପଞ୍ଚମ ଛାନ୍ଦର "ରାଗ ବସନ୍ତ" ବୋଲି ଲେଖାଅଛି । କିନ୍ତୁ ପଣ୍ଡିତ ନୀଳକଂଠଙ୍କ ଲାବଣ୍ୟବତୀରେ, ପଞ୍ଚମ ଛାନ୍ଦ ମୂଳରେ ଲେଖା ଅଛି—" ରାଗ ବସନ୍ତ—ଚନ୍ଦନ ଛଗ ବାଣୀ " । ଏଥିରୁ ଜଣାଯାଏ, ଉପେନ୍ଦ୍ର ଲାବଣ୍ୟବତୀ ଲେଖିଲା ବେଳକୁ ତାଙ୍କ ପୂର୍ବବର୍ତ୍ତୀ କୌଣସି ଜଣେ କବିଙ୍କର କୌଣସି ଏକ

ରଚନା ବା କବିତା ଜନପ୍ରିୟ ହୋଇ ୁଠିଥିଲା ଏବଂ ସେଇ ରଚନା ବା କବିତାର ମୂଳରେ ଥିଲା, ' ଚନ୍ଦନ ଛର " । ପ୍ରାଚୀ ଲବଣ୍ୟବତୀଙ୍କୁ ଏହି ସଂକେତ ମିଳେ ନାହିଁ । ତେଣୁ ନୀଳକଂଠଙ୍କ ଲବଣ୍ୟବତୀରେ ଥିବା ଏହି ସଂକେତ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

(ଖ) ଏହାଛଡ଼ା ଏ ପ୍ରସଙ୍ଗରେ ଆଉ ଗୋଟିଏ ଗୁରୁତର ବିଷୟ ପ୍ରତି ଆମର ଦୃଷ୍ଟି ଆକୃଷ୍ଟ ହୋଇଥାଏ । ପ୍ରାଚୀନ ସାହିତ୍ୟରେ ରାଗ ସହିତ ବାଣୀର ସଙ୍କେତ ଦେଖି ବଡ଼ ଅସୁବିଧାରେ ପଡ଼ିବାକୁ ହୁଏ । ଆମେ ସାଧାରଣତଃ ପାଦ (Quatrain ) ମାନଙ୍କର ଅକ୍ଷର ସଂଖ୍ୟା ଦେଖି ସେମାନଙ୍କର ଛନ୍ଦବଦ୍ଧତା ଗ୍ରହଣ କରିଥାଉ, ଅର୍ଥାତ୍ ଗୋଟିଏ ପଦରେ କେତେ ଧାଡ଼ି ରହିଲେ ଓ ପ୍ରତି ଧାଡ଼ିରେ କେତେ ଅକ୍ଷର ରହିଲେ ତାହା ଏକ ନିର୍ଦ୍ଦିଷ୍ଟ ବୃତ୍ତ ରୂପେ ଗ୍ରାହ୍ୟ, ସେ କଥା ଆମେ ଧରି ନେଇଥାଉ । କିନ୍ତୁ ରାଗକୁ "ବୃତ୍ତ " ବୋଲି ମାନିନେବା କଥା ତତ୍ତ୍ୱ ଦୃଷ୍ଟିରୁ ଦୋଷାବହ । ଅଥଚ ରାଗ ଓ ବୃତ୍ତକୁ ଏକାର୍ଥ ବାଚକ ଶବ୍ଦ ରୂପେ ଗ୍ରହଣ କରିବାରେ ଆମେ ଏକ ପ୍ରକାର ପାରମ୍ପରିକ ସ୍ୱୀକୃତି ପାଇ ଯାଇଛୁ । ଏ ପରିସ୍ଥିତିରେ ଆଜି ଓଡ଼ିଆ ଛନ୍ଦର ବୈଜ୍ଞାନିକ ବିକାଶ କଥା ଆଲୋଚନା କଲାବେଳେ, ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ । ଉଦାହରଣ ସ୍ୱରୂପ, ଦୁଇଟି ଅଲଗା ଅଲଗା ପ୍ରକାରର ଅକ୍ଷର ବିଶିଷ୍ଟ ଓ ପାଦ ବିଶିଷ୍ଟ ରଚନା ପାଇଁ ଦୁଇଟି ଅଲଗା ଅଲଗା ରାଗ ନିର୍ଦ୍ଦେଶ କରାଯିବା ସତ୍ତ୍ୱେ ଗୋଟିଏ ନିର୍ଦ୍ଦିଷ୍ଟ ବାଣୀରେ ତାକୁ ଗାଇବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଏହା କିପରି ସମ୍ଭବପର ହୋଇପାରେ ଏବଂ କି କାରଣରୁ ଏଭଳି ଏକ ପରମ୍ପରା ଗଢ଼ି ଉଠିଲା, ତାକୁ ଖୋଜି ବାହାର କରିବାକୁ ପଡ଼ିବ । ପଣ୍ଡିତ ବିନାୟକ ମିଶ୍ର ଏଥିର ସାମାନ୍ୟ ଆଲୋଚନା କଲା ପରେ, ପ୍ରାଚୀ ଲବଣ୍ୟବତୀ ମୁଖବନ୍ଧର ଶେଷ ଭାଗରେ ଅଧ୍ୟାପକ ଆର୍ତ୍ତବାବୁ ମଧ୍ୟ ଏଥିର ସୂଚନାତ୍ମକ ଆଲୋଚନା କରିଛନ୍ତି । ଏ ସଂପର୍କରେ ୧୯୫୪ ଖ୍ରୀଷ୍ଟାବ୍ଦରେ କଟକ ନାରୀସଂଘ ସଦନରେ ଓଡ଼ିଶାର ଅର୍ଦ୍ଧ ଶତାଧିକ ସଙ୍ଗୀତଜ୍ଞଙ୍କ ସହିତ ମୋର ଅଗ୍ରଜକଳ୍ପ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କର ଏବଂ ମୋର ( ମିଳିତ ଭାବରେ ) ଦୁଇଦିନ ଧରି ପ୍ରବଳ ଯୁକ୍ତି ତର୍କ ଚାଲିଥିଲା । ବିଷୟର ମୀମାଂସା ହୋଇ ନ ପାରିବାରୁ ପୁରୀ ନିକଟବର୍ତ୍ତୀ ବୀରନରସିଂହପୁରର ସୁବିଖ୍ୟାତ ଗାୟକ ଓ ଛାନ୍ଦାର୍ଥୀ ✓ ମଧୁସୂଦନ ରଥଙ୍କୁ ତୃତୀୟ ଦିନ ସ୍ୱତନ୍ତ୍ର ଭାବରେ ଆମନ୍ତ୍ରଣ ପୂର୍ବକ ଅଣା ଯାଇଥିଲା । ଆଶ୍ଚର୍ଯ୍ୟର କଥା, ସମସ୍ତ ସଙ୍ଗୀତଜ୍ଞଙ୍କର ମିଳିତ ମତ ବିରୁଦ୍ଧରେ ଜୟୀ ବାବୁଙ୍କର ଏବଂ ମୋର ଯେଉଁ ସ୍ୱର ଉତ୍ତୋଳନ, ତାହା ପଣ୍ଡିତ ମଧୁସୂଦନଙ୍କ ଦ୍ୱାରା ସମର୍ଥିତ ହୋଇଥିଲା । ଏ କଥା ମୁଁ ପଣ୍ଡିତ ନୀଳକଂଠଙ୍କୁ ଜଣାଇବାରେ ସେ ମତେ ଆଶୀର୍ବାଦ ଦେବା ସଙ୍ଗେ ସଙ୍ଗେ ଏହି ଛନ୍ଦତତ୍ତ୍ୱକୁ ନେଇ ଗବେଷଣା କରିବାକୁ ନିର୍ଦ୍ଦେଶ ଦେଇଥିଲେ ।

ଏବେ ତାଙ୍କର ଲାବଣ୍ୟବତୀ ଉପରେ ଆଖି ପକାଇଲ ବେଳେ, ତହିଁରୁ ସୂଚିତ ଗବେଷଣା ପାଇଁ ମୁଁ ବହୁତାଡ଼ୀ ପ୍ରମାଣ ପାଇଲ ଭଳି ଅନୁଭବ କରୁଛି । ଉଦାହରଣ ସ୍ୱରୂପ, ତାଙ୍କ ଲବଣ୍ୟବତୀର ତୃତୀୟ ଛାନ୍ଦର ରାଗ ହେଉଛି "କେଦାର" । କିନ୍ତୁ ବାଣୀ ହେଉଛି "ଚକ୍ରକେଳି । ତାହା ହେଲେ ଆମେ ଯେଉଁଠାରେ "ରାଗ–ଚକ୍ରକେଳି" ବୋଲି ଲେଖୁଛୁ, ସେଠାରେ, ପଣ୍ଡିତ ନୀଳକଣ୍ଠଙ୍କ ଉକ୍ତ ଛାନ୍ଦର ରାଗ ନିର୍ଦ୍ଦେଶ ଦୃଷ୍ଟିରୁ, ଧରି-ନେବା ଯୁକ୍ତିଯୁକ୍ତ ହେବ ଯେ, ଏଭଳି ଏକ ରଚନା ଥିଲ, ଯାହାକି 'ଚକ୍ରକେଳି', ଏହି ଶବ୍ଦରେ ଆରମ୍ଭ ହୋଇଥିଲ । ଗବେଷଣାରେ ଏହା ଯଦି ପ୍ରମାଣିତ ହୋଇ ପାରିବ, ତାହା ହେଲେ ଆମର ଅଜ୍ଞାତ ଥିବା ବିସ୍ମୟକର ତଥ୍ୟ ଲୋକ ଲୋଚନକୁ ଆସି ପାରିବ । କାରଣ, 'ଚକ୍ରକେଳି''କୁ ଆମେ ସାଧାରଣତଃ ରାଗ ବୋଲି ଧରି ନେଉଥାଉ ।

ଏଥି ସହିତ 'ରାଗ-କେଦାର' ଏବଂ 'ଚକ୍ରକେଳି ବାଣୀ'–ଏ ଦୁଇଟିର ଏକତ୍ର ଉଲ୍ଲେଖ ଥିବାରୁ ନୀଳକଣ୍ଠଙ୍କ ଲବଣ୍ୟବତୀରୁ ଗବେଷଣା ପାଇଁ ଅନ୍ୟ ଏକ ସଙ୍କେତ ମିଳେ । ତାହା ହେଉଛି ଏହିପରି–କେଦାର ରାଗର ରଚନାକୁ ଯଦି ଚକ୍ରକେଳି ବାଣୀରେ ଗାଇବାକୁ ହେବ, ତାହା ହେଲେ ଦୀନକୃଷ୍ଣ ଦାସଙ୍କ ସୁବିଖ୍ୟାତ ଗୋପୀ ଭାଷାର ରାଗ କ'ଣ "କେଦାର" ବୋଲି ଧରି ନେବାକୁ ହେବ ? ପୁଣି, ମଧ୍ୟ ଯୁଗର ଗଣି ଗଣି କାବ୍ୟ ମାନଙ୍କରେ ଯେଉଁଠାରେ "କେଦାର" ରାଗର ନିର୍ଦ୍ଦେଶ ଅଛି, ସେଠାରେ କ'ଣ "ଚକ୍ରକେଳି ବାଣୀ" ଭଙ୍ଗୀରେ ତାକୁ ବୋଲାଯାଇ ପାରିବ ? ଏଇ ସୂତ୍ର ଧରି ଚମତ୍କାର ଗବେଷଣା କରାଯାଇ ପାରିବ ।

(ଗ) ଦୁଇଟିରେ ପ୍ରାଚୀ ଲବଣ୍ୟବତୀ ଏବଂ ନୀଳକଣ୍ଠଙ୍କ ଲବଣ୍ୟବତୀ, ଏ ଦୁଇ ଲବଣ୍ୟବତୀର କେତେକ ନିର୍ଦ୍ଦିଷ୍ଟ ଛାନ୍ଦର ରାଗରେ ଅସାମଞ୍ଜସ୍ୟ ଦେଖାଯାଏ । ଏହା କାହିଁକି ହେଲା ବା କିପରି ଭାବରେ ସମ୍ଭବପର ହେଲା, ତାହା ଗଭୀର ଅନୁଧ୍ୟାନର ବିଷୟ । ଉଦାହରଣ ସ୍ୱରୂପ, ପ୍ରାଚୀ ଲବଣ୍ୟବତୀର ଅଷ୍ଟମ ଛାନ୍ଦର ରାଗ 'ମଙ୍ଗଳ ଗୁଜ୍ଜରୀ' ବୋଲି ଲେଖା ଥିବା ବେଳେ ନୀଳକଣ୍ଠଙ୍କ ଲବଣ୍ୟବତୀରେ "ରାଗ ଦେଶାକ୍ଷ" ବୋଲି ଲେଖା ଅଛି । ଏହା ମଧ୍ୟ କିପରି ଅବା ସମ୍ଭବ ପର ? ସେହିପରି, ପ୍ରାଚୀ ଲବଣ୍ୟବତୀର ନବମ ଛାନ୍ଦର ରାଗ "ସାମ ଗୁଜ୍ଜରୀ" ବୋଲି ଲେଖାଅଛି । କିନ୍ତୁ ସେ ସ୍ଥଳରେ ନୀଳକଣ୍ଠଙ୍କ ଲବଣ୍ୟବତୀରେ "ମଙ୍ଗଳ ଗୁଜ୍ଜରୀ" ବୋଲି ଲେଖା ଅଛି । ଓଡ଼ିଆରେ ନିର୍ଦ୍ଦିଷ୍ଟ ସଂଖ୍ୟକ ପାଦ ବିଶିଷ୍ଟ ରଚନା ନାମରେ ନାମିତ ହୋଇ ଏଭଳି ଏକ

ପରଂପର ସୃଷ୍ଟି କରିଛି ଯେ, ସମାନ ଅକ୍ଷର ଓ ପାଦ ବିଶିଷ୍ଟ ରଚନା ଯଦି ଦୁଇଟି ନାମରେ ପରିଚିତ ହୁଏ, ତେବେ ଗାନକ୍ରମ ଦୃଷ୍ଟିରୁ ସେ ଦୁଇଟିର ପାର୍ଥକ୍ୟ ବା ସ୍ୱତନ୍ତ୍ରତା ଅବଧାନ କରିବାକୁ ପଡ଼ିବ । କିନ୍ତୁ ଏ କ୍ଷେତ୍ରରେ ଆମର କୌଣସି ତାତ୍ତ୍ୱିକ ଆଲୋଚନା ହୋଇନାହିଁ । ପ୍ରତି ଧାଡ଼ିରେ ଚଉଦ ଚଉଦ ଅକ୍ଷର ଥାଇ ନିର୍ଦ୍ଦିଷ୍ଟ ପାଦ ବିଶିଷ୍ଟ ରଚନାର ରାଗ ନିର୍ଦ୍ଦେଶରେ, ଗୋଟିଏ ବା ଦୁଇଟି ନୁହେଁ, ବହୁ ରାଗର ନାମ ଦେଖିବାକୁ ମିଳେ । ଏ ସଂପର୍କରେ ଦକ୍ଷିଣ ଭାରତର ମହୀଶୂର ଠାରେ ଥିବା ଭାରତ ସରକାରଙ୍କର "ଭାରତୀୟ ଭାଷା ପ୍ରତିଷ୍ଠାନ"ର ଡ଼ାଇରେକ୍ଟର ଡ଼କ୍ଟର ଦେବୀ ପ୍ରସନ୍ନ ପଟନାୟକ, ଓଡ଼ିଶା ସାହିତ୍ୟ ଏକାଡ଼େମୀର, "ଡ଼କ୍ଟର ଆର୍ତ୍ତ ବଲ୍ଲଭ ମହାନ୍ତି ସ୍ମାରକୀ-ବକ୍ତୃତା ମାଳା" ପାଇଁ ଲେଖିଥିବା ତାଙ୍କର ଭାଷଣରେ ଏଇ ଧରଣର ରାଗ ତତ୍ତ୍ୱ ସଂପର୍କରେ ଆଲୋଚନା କରିଥିବା କଥା ନିକଟରେ ମତେ କହୁଥିଲେ । ପଣ୍ଡିତ ନୀଳକଣ୍ଠଙ୍କର ଲାବଣ୍ୟବତୀରେ ସୁପ୍ରସିଦ୍ଧ ପ୍ରାଚୀ ଲାବଣ୍ୟବତୀ ତୁଳନାରେ ରାଗ ନିର୍ଦ୍ଦେଶ ମୂଳକ ଏଇ ଯେଉଁ ବିଭିନ୍ନତା ଦେଖାଯାଏ, ତାହା ପରବର୍ତ୍ତୀ ଗବେଷଣା ପାଇଁ ମାର୍ଗ ପରିଷ୍କାର କରିଦେବ ।

(ଘ) ଚତୁର୍ଥରେ, ଆଉ ଗୋଟିଏ ନୂତନ ଦିଗ ପ୍ରତି ଓଡ଼ିଆ ଛନ୍ଦର ଆଲୋଚକ ମାନଙ୍କର ଦୃଷ୍ଟି ଆକର୍ଷଣ କରାଯାଇ ପାରେ । ସ୍ୱର୍ଗତ ବଳଭଦ୍ର ବହିଦାରଙ୍କ "ଯତିପାତ" ପୁସ୍ତକରେ ତଥା ପ୍ରକାଶିତ ଅନ୍ୟାନ୍ୟ ଆଲୋଚନାରେ ଏ ବିଷୟ ସମାହିତ ହୋଇ ପାରି-ନାହିଁ । ପ୍ରାଚୀ ଲାବଣ୍ୟବତୀର ତୃତୀୟ ଛାନ୍ଦର ମୋଟ ପଦ ସଂଖ୍ୟା ହେଉଛି ୬୩ (ତେଷଠି) କିନ୍ତୁ ନୀଳକଣ୍ଠଙ୍କ ଲାବଣ୍ୟବତୀ ତୃତୀୟ ଛାନ୍ଦ ପଦ ସଂଖ୍ୟା ହେଉଛି ୧୨୬ (ଏକଶହ ଛବିଶ) । ଏହା କିପରି ହେଲା ଏ କଥା ଭାବିଲେ ହଠାତ୍ ବିସ୍ମିତ ହେବାକୁ ପଡ଼େ । କିନ୍ତୁ ଟିକିଏ ଚିନ୍ତା କଲେ ଜଣାଯିବ ଯେ, ନୀଳକଣ୍ଠଙ୍କ ପାଠର ପଦସଂଖ୍ୟା ଆର୍ତ୍ତବାବୁଙ୍କ ପାଠର ପଦସଂଖ୍ୟାର ଦୁଇଗୁଣ ଏବଂ ହୁଏତ ତତ୍ତ୍ୱତଃ ସମାନ ।

ଏ ସଂପର୍କରେ ପାଠକ ମାନଙ୍କର ଅବଗତି ଲାଗି ସୂଚାଇ ଦେବା ଦରକାର ଯେ, କେତେକ ଛନ୍ଦର ପାଦ ନିର୍ଦ୍ଦେଶ ଏ ପର୍ଯ୍ୟନ୍ତ ଏକ ବିବଦମାନ ଅଥବା ଅନାଲୋଚିତ ଅବସ୍ଥାରେ ଅଛି । ରାଗ ବଙ୍ଗଳାଶ୍ରୀ କହିଲେ ଆମେ, ଛଅ-ଛଅ-ଆଠ, ଛଅ-ଛଅ-ଆଠ ଅକ୍ଷର ବିଶିଷ୍ଟ ଛନ୍ଦ ବୋଲି ଧରି ନେଇ ଥାଉ । କିନ୍ତୁ ଆଉ କେତେକ ସ୍ଥଳରେ, "ରାଗ-ବଙ୍ଗଳାଶ୍ରୀ" ବୋଲି ଲେଖା ଥିଲେ ମଧ୍ୟ, ସେଠାରେ ପ୍ରତି ପଦର ପାଦ ସଂଖ୍ୟା ଏହି ବଙ୍ଗଳାଶ୍ରୀର ଦୁଇଗୁଣ । ଏହା ପ୍ରକୃତରେ ବୈଜ୍ଞାନିକ ଭିତ୍ତି ପ୍ରତିଷ୍ଠିତ କିମ୍ବା

"ପୋକ କାଟୁ କାଟୁ ଗ୍ରରି ଅଙ୍କ" ନ୍ୟାୟରେ, ଅଜ୍ଞ ଅନୁଲେଖକ ମାନଙ୍କ ହେତୁ ଏକ ପରଂପରାରେ ପଡ଼ି ଯାଇଛି, ତାହାର ଆଲୋଚନା ଏ ପର୍ଯ୍ୟନ୍ତ ହୋଇ ନାହିଁ । ଅତଏବ ପ୍ରାଚୀ ଲବଣ୍ୟବତୀର ପଦ ସଂଖ୍ୟା ନୀଳକଣ୍ଠଙ୍କ ଲବଣ୍ୟବତୀର ପଦ ସଂଖ୍ୟା ତୁଳନାରେ ଠିକ୍ ଅଧା ହୋଇ ଥିବାରୁ ଏ କ୍ଷେତ୍ରରେ କୌଣସିଟିକୁ ଅସଙ୍ଗତ ଓ ଅବୈଜ୍ଞାନିକ କୁହାନ ଯାଇ, ଏହା କିପରି ଭାବରେ ସମ୍ଭବପର ହୋଇଅଛି, ସେ ସମ୍ପର୍କରେ ଅଧିକ ଆଲୋଚନା କରାଯିବା ଉଚିତ । ଉପର ସୂଚିତ ବଙ୍ଗଳାଶ୍ରୀ ରାଗ ଏ କ୍ଷେତ୍ରରେ ମାର୍ଗ ପ୍ରଦର୍ଶକ ।

ଲବଣ୍ୟବତୀରେ ୪୮ ( ଅଠଚାଳିଶ )ଟି ଛାନ୍ଦ ଅଛି ଓ ସୂଚନାତ୍ମକ ଭାବରେ ଅଳ୍ପ କେତେଗୋଟି ଛାନ୍ଦ ଉପରେ ଆଖି ପକାଇ ଓଡ଼ିଆ ଛାନ୍ଦର ତାତ୍ତ୍ୱିକ ବିଚାର ଦୃଷ୍ଟିରୁ ଚାରିଗୋଟି ଦୃଷ୍ଟିକୋଣର ସଂକେତ ଦେଲି । ଏହି ସୂତ୍ରଧରି ଅନ୍ୟାନ୍ୟ ଛାନ୍ଦମାନଙ୍କର ରାଗରାଗିଣୀର ଆଲୋଚନା ମଧ୍ୟ କରିବାକୁ ହେବ । ସୁତରାଂ ନୀଳକଂଠଙ୍କ ଲବଣ୍ୟବତୀର ମୂଲ୍ୟ କଳନାରେ, ରାଗରାଗିଣୀ ଭିତ୍ତିକ ତାଙ୍କର ବିଶିଷ୍ଟତା ଏକାନ୍ତ ଅଭିନନ୍ଦନୀୟ ।

## ୩-ଶୁଦ୍ଧ ପାଠ ନିରୂପଣ

ପ୍ରାଚୀନ କାଳର କବିମାନେ ଯାହା ଲେଖିଥିଲେ, ତାହା ଅବିକୃତ ଭାବରେ ଆମ ପାଖରେ ପହଞ୍ଚିପାରି ନାହିଁ । ପ୍ରାୟ ଶହେ ଦୁଇଶହ ବର୍ଷ ପରେ ପୋଥି ପୁରୁଣା ହୋଇ ଗଲେ ଲୋକେ ତାକୁ ଅନୁଲେଖକମାନଙ୍କ ଦ୍ୱାରା ଉତାରି ଦେଅନ୍ତି । ଏହା ଛଡ଼ା ଅନୁରାଗୀ ଲୋକେ, ଲେକ ପଠାଇ ଗୋଟିଏ ପୋଥିକୁ ଉତାରିଦେଇ ନିଜ ବ୍ୟବହାର ପାଇଁ ନିଅନ୍ତି । ଏହି ଉତାରିବା ଅବସ୍ଥାରେ ନାନା ବିକୃତି, ମୂଳ ପାଠ ଭିତରକୁ ପଶିଆସେ । ସେଥିପାଇଁ, ଆଜିକ ପଣ୍ଡିତମାନେ ପୁରାତନ ରଚନାର ଶୁଦ୍ଧପାଠ (correct reading) ସ୍ଥିର କରିବା ଦିଗରେ ବିଶେଷ ଶ୍ରମ ସ୍ୱୀକାର କରିଥାନ୍ତି । ୧୯୨୬ ଖ୍ରୀଷ୍ଟାବ୍ଦରେ ଆର୍ତ୍ତବାବୁ ବିଦଗ୍ଧ ଚିନ୍ତାମଣିର ଶୁଦ୍ଧପାଠ ନିରୂପଣ କରିବାକୁ ଯାଇ ଯେଉଁ ଶ୍ରମ ସ୍ୱୀକାର କରିଥିଲେ, ତାହା ତାଙ୍କ ପାଣ୍ଡିତ୍ୟ ଏବଂ ସାହିତ୍ୟ–ପ୍ରୀତିର ଆଲୋକସ୍ତମ୍ଭ ରୂପେ ଦଣ୍ଡାୟମାନ ହୋଇ ରହିଛି । ବିଦଗ୍ଧ ଚିନ୍ତାମଣିର ୩୨୦ ଶ ଛାନ୍ଦରେ ଶରତ କାଳୀନ ସଂଧ୍ୟା ବର୍ଣ୍ଣନା କରା ଗଲା ବେଳେ ଅଭିମନ୍ୟୁ କହିଛନ୍ତି ।–

"ସହଜରେ ଶରତ କାଳ
ରତୁ ମୁଖ ଜାତ ତିଥି ନିଶି ମଞ୍ଜୁଳ ।"

ଏ ସ୍ଥଳରେ ଆର୍ତ୍ତବାବୁ ବିଭିନ୍ନ ପୋଥିରୁ ମିଳିଥିବା ବିଭିନ୍ନ ପାଠ ତାଙ୍କ ପାଦଟୀକା ( Foot note ) ରେ ଦେଇଛନ୍ତି ଯେ ଉପର ଉଦ୍ଧୃତ ଦ୍ୱିତୀୟ ଧାଡ଼ିଟିକୁ ଏଭଳି ମଧ୍ୟ କେହି କେହି ଗ୍ରହଣ କରିଛନ୍ତି ଯଥା–

(କ) ଋତୁ–ମୁଖ ଜାତ ତିଥି ଦିଶି ମଞ୍ଜୁଳ
(ଖ) ଋତୁ–ମୁଖ ଜାତ ତିଥି ମିଶି ମଞ୍ଜୁଳ
(ଗ) ଋତୁ–ମୁଖ ଜାତ ତିଥି ଅତି ମଞ୍ଜୁଳ

କହିବା ବାହୁଲ୍ୟ ଯେ, ଏଭଳି ପାଠ ପାଠାନ୍ତର ଦ୍ୱାରା ଆଲୋଚନାର ପରିସର, ରସାଳ ଓ ବିଶାଳ ହୋଇଉଠେ ।

ନୀଳକଣ୍ଠ ବାବୁଙ୍କ ଲାବଣ୍ୟବତୀ ଉପରେ ଆଖି ପକାଉ ପକାଉ ତାଙ୍କ ପାଠର ବହୁବିଧ ନୂତନତା ମତେ ଅଭିଭୂତ କରିଦେଲା ଏବଂ ଆର୍ତ୍ତବାବୁଙ୍କ ଲାବଣ୍ୟବତୀକୁ ଅଧିକ ଶ୍ରଦ୍ଧାର ସହିତ ଅନୁଧ୍ୟାନ କରିବା ପାଇଁ ମତେ ପ୍ରେରଣା ଦାନ କଲା । ତଳେ କେତୋଟି ଉଦାହରଣ ଦେଉଛି–

(କ) ପ୍ରାଚୀ ପାଠ–ପଦ **ସ୍ୱରଳ** ଧ୍ୱନିରେ ଶ୍ରବଣ ମୋହିବ
ନୀଳକଂଠଙ୍କ ପାଠ–ପଦ **ଶ୍ରବଣ** ଧ୍ୱନିରେ ଶ୍ରବଣ ମୋହିବ
(ଖ) ପ୍ରାଚୀ ପାଠ–ଖଳ ଖର ଚୂତାଙ୍କୁର **ପ୍ରାପ୍ୟେକ ଗ୍ରାସିବ**
ନୀଳକଂଠଙ୍କ ପାଠ–ଖଳ ଖର ଚୂତାଙ୍କୁର **ପ୍ରାପ୍ୟେ ନ ଗ୍ରାସିବ**
(ଗ) ପ୍ରାଚୀ ପାଠ–ତପତୀ ଅକଥନୀୟ ଦିବ୍ୟନାରୀ **ଶ୍ରଦ୍ଧେ**
ନୀଳକଂଠଙ୍କ ପାଠ–ତପତୀ ଅକଥନୀୟ ଦିବ୍ୟ ନାରୀ **ଲବ୍ଧେ**
(ଘ) ପ୍ରାଚୀ ପାଠ–ପଞ୍ଚାଗ୍ନି **ସ୍ଥାପନ** କରେ ତପ ଋତୁ ମଧ୍ୟେ
ନୀଳକଂଠଙ୍କ ପାଠ–ପଞ୍ଚାଗ୍ନି **ତାପନ** କରେ ତପଋତୁ ମଧ୍ୟେ

ଏ ଗୁଡ଼ିକ ପ୍ରଥମ ଛାନ୍ଦର ପଙ୍କ୍ତି ଏବଂ ସମଗ୍ର କାବ୍ୟରୁ ଏଭଳି ଶତ ଶତ ପଙ୍କ୍ତି ଉଦ୍ଧାର କରାଯାଇ ପାରେ । ପ୍ରାଚୀନ ସାହିତ୍ୟ ଯେଉଁମାନେ ଅଧ୍ୟୟନ କରୁଛନ୍ତି, ସେମାନେ ନୀଳକଂଠଙ୍କ ଲାବଣ୍ୟବତୀରେ ଏଭଳି ବହୁ ଶତ ପାଠାନ୍ତର ଦେଖି କେବଳ ଆନନ୍ଦିତ ହେବେ ନାହିଁ, ଓଡ଼ିଆ ଭାଷାରେ ଇତିହାସ ଦୃଷ୍ଟିରୁ ଏବଂ ବ୍ୟାକରଣ ଦୃଷ୍ଟିରୁ, ନୂତନ ତଥ୍ୟ ଲାଭକଲା ପରି ଅନୁଭବ କରିବେ । ଉଦାହରଣ ସ୍ୱରୂପ ଉପରର "ଗ" ଦୃଷ୍ଟାନ୍ତରେ, ପ୍ରାଚୀପାଠରେ "ଶ୍ରଦ୍ଧେ" ଥିବାସ୍ଥଳେ, ନୀଳକଂଠଙ୍କ ପାଠରେ "ଲବ୍ଧେ" ଅଛି । ପ୍ରସଙ୍ଗୋଚିତ ଅର୍ଥ ଦୃଷ୍ଟିରୁ "ଶ୍ରଦ୍ଧେ" ଓ "ଲବ୍ଧେ" ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ ବୋଲି ହୁଏତ କୁହାଯାଇ ପାରେ । କିନ୍ତୁ ଓଡ଼ିଆ ବ୍ୟାକରଣ ଦୃଷ୍ଟିରୁ, "ଲବ୍ଧେ" ପାଠ ଅତ୍ୟନ୍ତ ଗୁରୁତ୍ୱ ପୂର୍ଣ୍ଣ । ଗତ ବର୍ଷ (୧୯୮୦) ନୀଳକଂଠଙ୍କ ଶ୍ରାଦ୍ଧସଭାରେ ଡ଼କ୍ଟର ହରେକୃଷ୍ଣ ମହତାବ କହିଥିଲେ,–ଓଡ଼ିଆ ବ୍ୟାକରଣର ମୌଳିକତା ଦେଖାଇବା ଦିଗରେ ନୀଳକଂଠଙ୍କର ଯେଉଁ ଆଭିମୁଖ୍ୟ ଥିଲା ତାହା ଅନ୍ୟତ୍ର ଦେଖିବାକୁ ମିଳେନାହିଁ । ବାସ୍ତବରେ ଏ କ୍ଷେତ୍ରରେ ନୀଳକଂଠଙ୍କର ମନୀଷା ଅନନ୍ୟ–ସାଧାରଣ । " ମୁଁ ଆନ-

ନ୍ଦିତ ହେଲି " ବଦଳରେ " ମୁଁ ଆନନ୍ଦ ହେଲି ", ଏଥିରେ ହିଁ ଓଡ଼ିଆ ଭାଷାର ସ୍ଵତନ୍ତ୍ରତା ରହିଛି ବୋଲି ପଣ୍ଡିତ ନୀଳକଂଠଙ୍କର ଦୃଢ଼ମତ । ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଭାଷାକୁ ପ୍ରସରଣ ଶୀଳ କରିବାକୁ ଯାଇ ଏବଂ ସଂସ୍କୃତ ବ୍ୟାକରଣର ନିଗଡ଼ ବନ୍ଧନରୁ ତାକୁ ମୁକ୍ତ କରିବାକୁ ଯାଇ. କିଭଳି ଲୋକ ମୁଖର ଭାଷାକୁ ନେଇ ସାହିତ୍ୟିକ ମର୍ଯ୍ୟାଦା ଦେଇଛନ୍ତି, ତାହା ଆର୍ତ୍ତବାବୁ ଲାବଣ୍ୟବତୀ ମୁଖବନ୍ଧରେ ସୂଚିତ କରିଛନ୍ତି । ଏଥିପାଇଁ ଆର୍ତ୍ତବାବୁ ଆମର ନମସ୍ୟ । ଥରେ ପୁରୀଠାରେ ଅନୁଷ୍ଠିତ, " ନିଖିଳ–ଉତ୍କଳ–ମଠମନ୍ଦିରଧୀଶ–ମହା ସମ୍ମେଳନ "ର ପ୍ରଥମ ଦିନ ସଭାରେ ଭାଷଣ ଦେଇ ଆର୍ତ୍ତବାବୁ " ସମ୍ମିଳନୀ " ଶବ୍ଦ ଉଚ୍ଚାରଣ କରିବାରୁ ପୁରୀର ଜଣେ ସଂସ୍କୃତ ବ୍ୟାକରଣ ପଣ୍ଡିତ ତାର ପ୍ରତିବାଦ କରି-ଥିଲେ । କାରଣ ତାଙ୍କ ମତରେ " ସମ୍ମେଳନ " ଶବ୍ଦ ଠିକ୍ ଏବଂ ' ସମ୍ମିଳନୀ ' ଶବ୍ଦ ଭ୍ରମପୂର୍ଣ୍ଣ । ଦ୍ଵିତୀୟ ଦିନ ଏହି ଲେଖକ ଭାଷଣ ଦେବା ଆଗରୁ ପୂର୍ବ ଦିନର ଏହି ଘଟଣା କଥା ଜାଣିପାରି, ପ୍ରଥମେ କହିଥିଲ,–"ଆଜି ଏଠାରେ ମହନ୍ତ ମାନଙ୍କର ବିରଟ ସମାଗମ ହୋଇଅଛି । ଓଡ଼ିଆ ଅନଭିଜ୍ଞ ସଂସ୍କୃତ ବ୍ୟାକରଣ ପଣ୍ଡିତଙ୍କର ଭାଷାରେ ଆଜିର ଏହି " ସମ୍ମେଳନ " ତଥା ଓଡ଼ିଆ ଭାଷା ଭାଷୀଙ୍କର ଚିର ଅନୁମୋଦିତ ଭଙ୍ଗୀରେ କହିବାକୁ ଗଲେ ଆଜିର ଏହି " ସମ୍ମିଳନୀ " ଦେଖି ମୁଁ ବିଶେଷ ଆନନ୍ଦିତ " । ଏହାପରେ ସଭା ଗୃହ ହର୍ଷଧ୍ଵନିରେ କଂପି ଉଠିଥିଲ । ପଣ୍ଡିତ ନୀଳକଂଠଙ୍କ ଦୃଷ୍ଟିରେ ଓଡ଼ିଆ ଭାଷାର ଯେଉଁ ମୌଳିକତା ଅଛି ସଂସ୍କୃତ ବ୍ୟାକରଣର ଅନ୍ଧ ଅନୁସରଣ ଦ୍ଵାରା ତାକୁ ଭାରାକ୍ରାନ୍ତ କରିବା କିମ୍ବା ମୁମୂର୍ଷୁ ଅବସ୍ଥାକୁ ଠେଲିଦେବା ଆଦୌ ଯୁକ୍ତିଯୁକ୍ତ ନୁହେ । ସେଥିପାଇଁ ତାଙ୍କ ଟୀକାରେ ସେ ଲବ୍‌ଧେ' ଶବ୍ଦକୁ ସମର୍ଥନ କରିବାକୁ ଯାଇ ଲେଖିଛନ୍ତି–"ଏହିପରି ବିଶେଷଣରେ ବିଭକ୍ତି ଉପେନ୍ଦ୍ର ଭଞ୍ଜଙ୍କର ଏକ ସାଧାରଣ ପ୍ରୟୋଗ । ଏ ସବୁକୁ ଭାବ ବାଚ୍ୟରେ 'କ୍ତ' ପ୍ରତ୍ୟୟାନ୍ତ ବିଶେଷ୍ୟ ବୋଲି ମଧ୍ୟ ଧରା ଯାଇପାରେ । " ଏଭଳି ଭାବରେ ଦେଖିଲେ ନୀଳକଂଠଙ୍କର ଓଡ଼ିଆ ଭାଷା ପ୍ରୀତି ଏବଂ ଓଡ଼ିଆ ବ୍ୟାକରଣର ସ୍ଵତନ୍ତ୍ରତା ପ୍ରତିପାଦନ ଦିଗରେ ତାଙ୍କର ମନୀଷା ପ୍ରଶଂସନୀୟ ଭାବରେ ପ୍ରତିଭାତ ହୁଏ ।

## ୪– ଅର୍ଥର ସ୍ପଷ୍ଟୀକରଣ

ଲାବଣ୍ୟବତୀର ବହୁ ସ୍ଥଳରେ ଅର୍ଥଗତ ଜଟିଳତା ବା ଅସ୍ପଷ୍ଟତା ଅନୁଭୂତ ହୁଏ । ଟୀକାକାରଙ୍କର କର୍ତ୍ତବ୍ୟ ଏ ସ୍ଥଳରେ ସୁସ୍ପଷ୍ଟ । ଯାହାଙ୍କ ଟୀକା ଅସ୍ପଷ୍ଟ ସେ ଯେ ତାହାର ପ୍ରକୃତ ଅର୍ଥ ବୁଝି ନ ଥିଲେ, ସବୁ ସ୍ଥଳରେ ଏକଥା କୁହାଯାଇ ପାରିବ ନାହିଁ । କିନ୍ତୁ ସେ ଭଳି ଭାବରେ ସେ ଟୀକା କରି ଗଲେ ତାହା ଅଧିକ ପ୍ରାଞ୍ଜଳ ହୋଇଥିଲେ ଭଲ ହୋଇ ଥାଆନ୍ତା । ଉଦାହରଣ ସ୍ଵରୂପ–ଆର୍ତ୍ତବାବୁଙ୍କ ଲାବଣ୍ୟବତୀ ଟୀକାର ଷଷ୍ଠ ଛାନ୍ଦର

ଶେଷ ପଦର ଅର୍ଥ ଯେପରି କରାଯାଇଛି, ତାହା ଏକା ବେଳକେ ବିସ୍ମୟକର । ସେଠାରେ ଉପେନ୍ଦ୍ର 'ବଳୀ' ଶବ୍ଦ ପ୍ରୟୋଗ କରିଛନ୍ତି । ଆର୍ତ୍ତବାବୁ ଏହ ବଳୀ ଶବ୍ଦରୁ "ଉପେନ୍ଦ୍ର" ନାମକ ବିଷ୍ଣୁଙ୍କର ଏକ ଅବତାର ବା ଜନ୍ମ କଥା ସୂଚାଇଛନ୍ତି । ଏଣେ କବିଙ୍କ ନାମ "ଉପେନ୍ଦ୍ର" । ତେଣୁ "ଉପେନ୍ଦ୍ର" ନାମକ ବିଷ୍ଣୁଙ୍କ ଅବତାର କଥାର ସୂଚନା ଦେଇ; ପାଠକ ମାନଙ୍କ ହର୍ଷ ବର୍ଦ୍ଧନ କରିଛନ୍ତି ।

ନୀଳକଂଠ ବାବୁଙ୍କ ଟୀକାରେ ମଧ୍ୟ ଏଭଳି ଅନେକ କଥା ଦେଖିବାକୁ ମିଳେ । ଠାଏ ମୟୂର କଥା ଲେଖିଲା ବେଳେ, ସେମାନଙ୍କର ପ୍ରଣୟ ସୁଖ ସମ୍ଭୋଗର ବିବରଣ ଦେବାକୁ ଯାଇ ନୀଳକଂଠ ବାବୁ ଯାହା ଲେଖିଛନ୍ତି, ତାହା ବଡ଼ ଉପାଦେୟ ଓ ଉପଭୋଗ୍ୟ । ଆଉ ଗୋଟିଏ ଉଦାହରଣ ଦେଉଛି । ଦ୍ୱିତୀୟ ଛାନ୍ଦର ପଞ୍ଚଦଶ ଓ ଷୋଡ଼ଶ ପଦର ଟୀକା ବହୁ ସ୍ଥଳରେ ଅନ୍ୟମାନେ ସୁସ୍ପଷ୍ଟ କରିପାରି ନାହାନ୍ତି । ନୀଳକଂଠ ବାବୁ ଏଠାରେ କଥାଟାକୁ ଅତ୍ୟନ୍ତ ପ୍ରାଞ୍ଜଳ କରି ଦେଇଛନ୍ତି । ସେ ଦୁଇ ପଦରେ ଯାହା ବର୍ଣ୍ଣିତ, ତାହା ଭଞ୍ଜଙ୍କର ଚିରପରିଶୀଳିତ ନୈଷଧ କାବ୍ୟର ପ୍ରଥମ ସର୍ଗ ଅନ୍ତର୍ଭୁକ୍ତ "ବୈଦର୍ଭୀ- କେଳି ଶୈଳେ" ଶ୍ଳୋକର ଆଧାର ଉପରେ ଲିଖିତ । କଥାଟା ହେଉଛି ଏହିପରି–

ଘାସ କାଟିବାକୁ ଯେଉଁ ପଶୁ ପାଳକ ମାନେ ବଣକୁ ଯାଆନ୍ତି, ସେମାନେ ଡାହାଣ ହାତରେ ଦା' ଧରିଥାନ୍ତି । ଯାଉ ଯାଉ ଦେଖନ୍ତି ଯେ, ଲମ୍ବା ଲମ୍ବା ଘାସ ସବୁ ଉପରକୁ ବଢ଼ି ଯାଇଛି । ମନ ଖୁସିରେ ସେମାନେ ସେହି ସାଗୁଆ ବର୍ଣ୍ଣର ଲମ୍ବା ଲମ୍ବା ଘାସକୁ ବାମ ହାତରେ ଧରି ପକାଇ ଡାହାଣ ହାତର ଦା'ରେ କାଟି ପକାନ୍ତି । ଅଥଚ, ବିସ୍ମୟର କଥା, ବାମ ହାତରେ ଘାସ ଆଦୌ ଆସେ ନାହିଁ । ସେତିକିବେଳେ ଘାସ କଟାଳୀମାନେ ନିଜ ନିଜର ଭୁଲ ବୁଝି ପାରନ୍ତି । ସେମାନେ ଜାଣି ପାରନ୍ତି ଯେ, ପ୍ରକୃତରେ ତାହା ଘାସ କିଆରୀ ନୁହେ । ପ୍ରକୃତ କଥା ଏହି ଯେ ସେ ସ୍ଥାନରେ ଶାଗୁଆ ବର୍ଣ୍ଣର ମର୍କତମଣିର ଏକ ବିରାଟ ଚାଅଡ଼ା ଅଛି । ତା' ଉପରେ ଯେତେବେଳେ ସୂର୍ଯ୍ୟ କିରଣ ପଡ଼ିଛି, ପଥର ଦେହର ଲମ୍ବା ଲମ୍ବା ଘାସ ପରି ନୀଳକାନ୍ତିର ପ୍ରବାହ ଉପରକୁ ଉଠିଛି । ତେଣୁ ଦା'ରେ ତାକୁ କାଟିଲେ ମଧ୍ୟ ବାମ ହାତରେ ଘାସ ପୁଳା ଆସି ପାରୁ ନାହିଁ । ନୀଳକଂଠହିଁ ଏହି ଅର୍ଥ ପ୍ରକାଶନରେ ସର୍ବାଧିକ ଭାବରେ ପ୍ରାଞ୍ଜଳ ।

ଏହିଭଳି ଭାବରେ ନୀଳକଂଠଙ୍କ ଟୀକା ଉପରେ ଆଖି ପକାଇ ଦେଇ ଦେଖିଲି, ପ୍ରତି ଛାନ୍ଦରେ ଏହି ପରି ଅସ୍ପଷ୍ଟ ଅର୍ଥ ବିଶିଷ୍ଟ ପଦ ମାନଙ୍କର ସ୍ପଷ୍ଟୀକରଣ କରି ନୀଳକଣ୍ଠ ଭଞ୍ଜ ସାହିତ୍ୟର ଅବବୋଧ ପାଇଁ ନିଜର ପ୍ରତିଭା ବହୁ ଭାବରେ ଖେଳାଇଛନ୍ତି ।

## ୪- ଅର୍ଥ ବ୍ୟାଖ୍ୟାନରେ ଚମତ୍କାରିତା

ଭଞ୍ଜ ସାହିତ୍ୟ ବଡ଼ ଗଭୀର । ତାହାର ଭକ୍ତ ଯେତିକି, ପୋଡା ସେତିକି । ପୁରୀ ଜିଲ୍ଲା ଡିମିରି ସେଣାର ଭଞ୍ଜ ସାହିତ୍ୟ ରଥୀ ସ୍ୱର୍ଗତ ଚନ୍ଦ୍ରଶେଖର ପଟ୍ଟନାୟକ ଲବଣ୍ୟବତୀ ଷଷ୍ଠ ଛାନ୍ଦରେ ଥିବା 'ଉଭିରା' ଶବ୍ଦକୁ ବ୍ୟାଖ୍ୟାନ କରି, ଓଡ଼ିଶୀ ସଙ୍ଗୀତର ମୌଳିକତା ଯେପରି ପ୍ରତିପାଦନ କରିଥିଲେ, ତାହା ସେଦିନ ପୁରୀଠାରେ ଅନୁଷ୍ଠିତ ଭଞ୍ଜ ଜୟନ୍ତୀ ସଭାରେ ସମସ୍ତଙ୍କୁ ବିସ୍ମିତ କରି ଦେଇଥିଲା । ସେ ପ୍ରସଙ୍ଗରେ "ବିଦଗ୍ଧ ଚିନ୍ତାମଣି"ର "ମଧୁପକୁ ମାଧବିକା" ପଦଟିକୁ ଅର୍ଥ କରି, ସେ ହାସ୍ୟରୋଳ ସୃଷ୍ଟି କରିଥିଲେ । ସେ ସଭାରେ ମୁଁ ତାଙ୍କର, ଏହି ବ୍ୟାଖ୍ୟାନରେ ବିମୁଗ୍ଧ ହୋଇ, ପଣ୍ଡିତ ନୀଳକଣ୍ଠଙ୍କର ଗୋଟିଏ ବ୍ୟାଖ୍ୟାନ ଉପସ୍ଥାପନ କରିଥିଲି । ସେହି ବ୍ୟାଖ୍ୟାନଟି ଲବଣ୍ୟବତୀର ଗୋଟିଏ ପଦ ଉପରେ ଆଧାରିତ । ପଣ୍ଡିତ ନୀଳକଣ୍ଠ ଆଜକୁ ପ୍ରାୟ ୪୫ବର୍ଷ ତଳେ ତାଙ୍କ ସମ୍ପାଦିତ 'ନବଭାରତ' ପତ୍ରିକାରେ ତାକୁ ପ୍ରକାଶ କରିଥିଲେ । ପଦଟିର ସାଧାରଣ ଅର୍ଥ ହେଉଛି ଏହିପରି । ରାଜପୁତ୍ର ଚନ୍ଦ୍ରଭାନୁ ନିରୋଳାରେ ବସି ତାହାର ପ୍ରଣୟିନୀ ଲବଣ୍ୟବତୀ କଥା ଚିନ୍ତା କରୁଛି । ସେ ମନକୁ ମନ କହୁଛି, ଦିନେ ମୁଁ ମାଳତୀ ଫୁଲର ଗୋଟିଏ ମାଳ ଗୁନ୍ଥିଲି ଏବଂ ମାଳଟିକୁ ଲବଣ୍ୟବତୀ ହାତକୁ ବଢ଼ାଇ ଦେଇ, ତାକୁ ବିନୟରେ କହିଲି-"ଏଇ ନିଅ ମାଳତୀ ଫୁଲର ମାଳ । ଆଜି ଠାରୁ ଆମେ ପରସ୍ପରକୁ 'ମାଳତୀ' ବୋଲି ଡ଼କାଡ଼କି ହେବା, (ଯେପରିକି ଲୋକେ 'ମକର', 'ବେଲପତ୍ର' ଇତ୍ୟାଦି ବସନ୍ତି), ଅର୍ଥାତ୍ ତୁମେ ମୋତେ "ମାଳତୀ" ବୋଲି ଡ଼ାକିବ । ମୁଁ ଭାବିଥିଲି, ଲବଣ୍ୟବତୀ ମୋ କଥାକୁ ଗ୍ରହଣ କରିବ । କିନ୍ତୁ ସେ ତାହା କଲା ନାହିଁ । ତା' ବଦଳରେ ସେ ନିଜ ମୁଣ୍ଡରେ ଲଗାଇଥିବା କୁରୁଣ୍ଟକ(ଦାସ କେରେଣ୍ଡା)ଫୁଲଟିଏ ବାହାର କରି କହିଲା-" ନାହିଁ ନାହିଁ, ତୁମେ ମୋତେ 'ମାଳତୀ" ବୋଲି ନ ଡ଼ାକି ଏ ଯେଉଁ ଫୁଲଟି ମୁଁ ତୁମକୁ ବଢ଼ାଇଲି, ଏହି ନାମରେ ମୋତେ ଡ଼ାକ "।

ଏଥିରୁ ପାଠକ ତାହାର ରସାନୁଭୂତି ପାଇଁ ସେପରି କିଛି ଉପାଦାନ ପାଇ ପାରେ ନାହିଁ। ଏ ସ୍ଥଳରେ ଆର୍ତ୍ତବାବୁଙ୍କ ପ୍ରାଚୀ ଲବଣ୍ୟବତୀର ଟୀକା ଆମର ବିଶେଷ ସହାୟକ । ଆର୍ତ୍ତବାବୁ ସ୍ପଷ୍ଟ ଦେଖାଇଛନ୍ତି ଯେ, ଏଥିରେ ଲବଣ୍ୟବତୀର ଉନ୍ନତ ଚରିତ୍ର ମୂଳକ ସୁନ୍ଦର କଥାଟିଏ ପ୍ରକାଶ ପାଇଛି । କାରଣ, ଲବଣ୍ୟବତୀ ଯେଉଁ ଫୁଲଟି ତା'ର ପ୍ରେମିକ ଚନ୍ଦ୍ରଭାନୁ ହାତକୁ ବଢ଼ାଇ ଦେଲା ଏବଂ ସେହି ନାମରେ ଡ଼ାକିବାକୁ କହିଲା, ସେହି ଫୁଲଟି ହେଲା 'କୁରୁଣ୍ଟକ' । ତାହାର ଅନ୍ୟ ନାମ ହେଉଛି ଦାସୀ ପୁଷ୍ପ ଅର୍ଥାତ୍ ଫୁଲଟିର ନାମ ହେଲା ଦାସୀ । ତେଣୁ ସଙ୍କେତରେ ଲବଣ୍ୟବତୀ କହିବାକୁ ଚାହିଁଛି--

"ମୁଁ ତୁମର ସମାନ ନୁହେ ଯେ, ତୁମେ ଆଉ ମୁଁ ଏକ ନାମରେ ଡ଼କା ଡ଼କି ହେବା । ମୁଁ ହେଉଛି ତୁମର ଚରଣ ସେବିକା, ଦାସୀ । ତେଣୁ ତୁମେ ମୋତେ "ଦାସୀ" ବୋଲି ଡ଼ାକିଲେ ଆନନ୍ଦିତ ହେବି ।"

ଏଥିପାଇଁ ଆର୍ତ୍ତବାବୁ ଅଭିନନ୍ଦନୀୟ । ପଣ୍ଡିତ ନୀଳକଂଠ କିନ୍ତୁ ଆଉ ପାଦେ ଆଗକୁ ଅଗ୍ରସର ହୋଇ, ତହିଁରୁ ଅତି ଚମତ୍କାର ଅର୍ଥ ବାହାର କରିଛନ୍ତି, ଠିକ୍ ଯେଉଁପରି ଚନ୍ଦ୍ରଶେଖର ପଟ୍ଟନାୟକ, "ମଧୁପକୁ ମାଧବିକା" ପଦରୁ ବାହାର କରିଥିଲେ । ନୀଳକଣ୍ଠଙ୍କର ଅର୍ଥଟି ହେଲା—

"ଚନ୍ଦ୍ରଭାନୁ ତା'ର ପ୍ରଣୟିନୀ ଲାବଣ୍ୟବତୀ ହାତକୁ ମାଳତୀ ଫୁଲର ମାଳା ବଢ଼ାଇ ଦେଇ କହିଲା, 'ଆମେ ଆଜିଠାରୁ ଏହି ନାମରେ ଡ଼କା ଡ଼କି ହେବା' । କିନ୍ତୁ ଲାବଣ୍ୟବତୀ ନାୟକ ଠାରୁ ଅଧିକ ବୁଦ୍ଧିମତ୍ତାର ସହିତ ଉତ୍ତର ଦେଇ କହିଲା—"ଏଇ ନିଅ କୁରୁଣ୍ଟକ ଫୁଲ ଏବଂ ଏଇ ନାମରେ ତୁମେ ମୋତେ ଆଜିଠାରୁ ଡ଼ାକ" । ଏହାର ଅସଲ ଅର୍ଥ ହେଉଛି ଏହିପରି । ମାଳତୀ ଫୁଲର ଢ଼େମ୍ପଟି ମାନ ବିସ୍ତାରିତ । 'ଫୁଲର ପ୍ରେମିକ' ଭ୍ରମର ଆସି ଯେତେବେଳେ ମାଳତୀ ଫୁଲ ଉପରେ ବସେ, ଫୁଲ ତା'ର ଦେହର ଭାର ସହିପାରେ ନାହିଁ । ତେଣୁ ଭ୍ରମର ବସିବା ଅବସ୍ଥାରେ ତଳ ମୁହାଁ ହୋଇ ରହେ । ଏଥିରୁ ଲାବଣ୍ୟବତୀ ବୁଝିଲା ଯେ, ଚନ୍ଦ୍ରଭାନୁ ତା' ଠାରୁ ବିପରୀତ ରତି ଲୋଡ଼ୁ ଅଛନ୍ତି । କାରଣ, ମାଳତୀ ଫୁଲ ତଳମୁହାଁ ହୋଇଗଲେ, ଭ୍ରମର ରହେ ତଳେ ଏବଂ ଫୁଲ ରହେ ଉପରେ । ପରମ ବୁଦ୍ଧିମତୀ ଲାବଣ୍ୟବତୀ 'ଦାସକେରେଣ୍ଟା' ଫୁଲକୁ ସଙ୍ଗେ ସଙ୍ଗେ ଦେଖାଇ ଦେଲା, କାରଣ, ଏହି ଫୁଲର ତଳ ଅଂଶଟା ଟାଣ ଓ ଉପରର ପାଖୁଡ଼ା ଅଂଶ କୋମଳ । ଏହା ଉପରେ ଭ୍ରମର ବସିଲେ ଫୁଲ ଓଲଟି ଯାଏ ନାହିଁ । ଅର୍ଥାତ୍ ସ୍ୱାଭାବିକ ରତି କ୍ରିୟାରେ ସ୍ତ୍ରୀ-ପୁରୁଷର ଯାହା ଘଟି, ତାହା ଏହି ଫୁଲର ଉଦାହରଣରେ ଫୁଟି ଉଠେ । ଖଣ୍ଡେ ପୁରୁଣା 'ନବ ଭାରତ'ରେ ମୁଁ ଏହା ପଢ଼ିଥିଲି ଓ ନିଜେ କଥାଟାକୁ ନ କହି, ଗୋଟାଏ ଭଞ୍ଜ ଜୟନ୍ତୀ ସଭା ଉପଲକ୍ଷେ, ମୋର ଶ୍ୱଶୁର ସ୍ୱର୍ଗତ ଗୋଦାବରୀଶ ମହାପାତ୍ରେ ତାଙ୍କ ପାଖରେ ଥିବା ସେହି ପୁରୁଣା 'ନବଭାରତ' ପତ୍ରିକାଟି ମତେ ଦେଇ ଉହିଁରେ, "ନୀଳକଣ୍ଠ ବାବୁଙ୍କର କ'ଣ ଗୋଟାଏ ଆଲୋଚନା ବାହାରିଛି, ଦେଖ" ବୋଲି କହିଥିଲେ । ଗତ ପ୍ରାୟ ୪୦ ବର୍ଷ ମଧ୍ୟରେ ଶତାଧିକ ଭଞ୍ଜ ଜୟନ୍ତୀ ସଭାରେ ନୀଳକଣ୍ଠ ବାବୁଙ୍କର ଏହି ବିସ୍ମୟକର ଅର୍ଥଟିକୁ ମୁଁ ପ୍ରକାଶ କଲାବେଳେ, ହଠାତ୍ କରତାଳି ଧ୍ୱନି ଶୁଣିବାକୁ ପାଇଛି । ଏବେ ଲାବଣ୍ୟବତୀ ଟୀକାରେ ତାଙ୍କର ସେହି ଅର୍ଥଟିକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲି ।

## ୭-କବିଙ୍କ ମହତ୍ତ୍ୱ ବୃଦ୍ଧିମୂଳକ ଟୀକାଗତ ପାଣ୍ଡିତ୍ୟ

ଅନେକେକ ସ୍ଥଳରେ ଟୀକାକାର ମାନେ ଏଭଳି ବୁଦ୍ଧିମତ୍ତାର ସହିତ ଅର୍ଥ କରନ୍ତି, ଯାହାକି ଉତ୍ତର ପୁରୁଷ ମାନଙ୍କୁ ପ୍ରଭୂତ ଆନନ୍ଦ ଦେବା ସଙ୍ଗେ ସଙ୍ଗେ କବିଙ୍କର ଶବ୍ଦ ପ୍ରୟୋଗ ମୂଳକ ଏବଂ ଚାତୁର୍ଯ୍ୟ ବିକାଶ ସୂଚକ ମହତ୍ତ୍ୱ ବୃଦ୍ଧି ଦିଗରେ ସହାୟକ ହୋଇଥାଏ । ତଳେ ଗୋଟିଏ ଉଦାହରଣ ଦେଉଛି । ଲାବଣ୍ୟବତୀର ୨୪ ଛାନ୍ଦରେ କାବ୍ୟନାୟକ 'ଚନ୍ଦ୍ରଭାନୁ'ର ମୃଗୟା କାଳୀନ ଭୟଙ୍କର ଦୃଶ୍ୟ ବର୍ଣ୍ଣିତ ହୋଇଛି । ଊନବିଂଶ ସଂଖ୍ୟକ ପଦରେ ଯାହା କୁହାଯାଇଛି, ତାହାର ଅର୍ଥ ଆର୍ତ୍ତବାବୁଙ୍କ ଟୀକାରେ ଗୋଟାଏ ପ୍ରକାର ଥିବାବେଳେ ନୀଳକଣ୍ଠ ବାବୁଙ୍କ ଟୀକାରେ ଆଉ ଏକ ପ୍ରକାର ଅଛି । ସେହି ପଦରେ ଥିବା "ବାତ-ଅଶନ" ଶବ୍ଦଟିକୁ "ମୃଗ" ଅର୍ଥରେ ଗ୍ରହଣ କରି, ଆର୍ତ୍ତବାବୁ ତାହାର ସୁସଙ୍ଗତ ଅର୍ଥ କଲାବେଳେ, ନୀଳକଣ୍ଠବାବୁ, ସେହି ଅର୍ଥଟିକୁ 'ସର୍ପ' ଅର୍ଥରେ ଗ୍ରହଣ କରି, ମନୋରମ ଭଙ୍ଗୀରେ ଅର୍ଥ ବୁଝାଇଛନ୍ତି । ସେହି ପଦରେ ଥିବା "ଶଶାଙ୍କକର" ଶବ୍ଦକୁ ଆର୍ତ୍ତବାବୁ ଓ ନୀଳକଣ୍ଠ ବାବୁ ଅଲଗା ଅଲଗା ପ୍ରକାରେ ଅର୍ଥ କରିଥିଲେ ମଧ୍ୟ, ଅର୍ଥର ଅସଙ୍ଗତି କାହାଠାରେ ପ୍ରକାଶ ପାଇନାହିଁ । ଏଭଳି ଶତସଂଖ୍ୟକ ଦୃଷ୍ଟାନ୍ତ ଦିଆଯାଇ ପାରେ ।

ଏଠାରେ ଆଉ ଗୋଟିଏ ମାତ୍ର ଉଦାହରଣ ଦେଉଛି । ଲାବଣ୍ୟବତୀର ୪୧ ଛାନ୍ଦର ୨୭ ଶ ପଦରେ ନାୟକର ଗୋଟିଏ ବର୍ଷାନୁଚିନ୍ତା ଦେଖିବାକୁ ମିଳେ ।

ପଦଟିର ଟୀକା କରିବାକୁ ଯାଇ, ଆର୍ତ୍ତବାବୁ ଓ ନୀଳକଣ୍ଠ ବାବୁ ଅଲଗା ଅଲଗା ପ୍ରକାର ଅର୍ଥ କରିଛନ୍ତି, ସତ, କିନ୍ତୁ ଉଭୟଙ୍କ ଟୀକା କବିଙ୍କର ଗୌରବ ବର୍ଦ୍ଧକ ହୋଇଅଛି । ତଳେ ପ୍ରଥମେ ପ୍ରାଚୀ ଲାବଣ୍ୟବତୀର ଟୀକା ଉଦ୍ଧାର କରି ଦେଉଛି । ପାଠକମାନେ ଏଥିରୁ ବୁଝିବେ ଯେ ( ୧ ) ଲାବଣ୍ୟବତୀ ଚନ୍ଦ୍ରଭାନୁକୁ ଗାଢ ଆଲିଙ୍ଗନ କଲା ନାହିଁ ଏବଂ ( ୨ ) ସେ ତା ତୁଣ୍ଡର ପାନବୋଳ ଅଧରକୁ ଆଣି ନ ଥିଲା । ଟୀକାଟି ହେଉଛି—

"ନୂଆ କାଚ ସେ ଚୁଡ଼ି ହେଲା—ତାକୁ ସେ ହସ୍ତରେ ଲଗାଇଥିଲା—ଗାଢ଼ରେ ଆଲିଙ୍ଗନ କଲା—କିନ୍ତୁ ସଞ୍ଚା କି ଦାଗ ମୋ ଦେହରେ ଦିଶିଲା ନାହିଁ—ଗାଢରେ ଆଲିଙ୍ଗନ ନ କରିବାରୁ ଦୃଢହସ୍ତ ବଳି ପଡ଼ିଲା—ତହୁଁ ସଞ୍ଚା ଦିଶିଲା ନାହିଁ । ସାଧବୀ ଲକ୍ଷଣକୁ ଦୃଷ୍ଟି ଦେଇ କାଚ ଭଙ୍ଗି ଅମଙ୍ଗଳ ସୂଚକ ହେବ । ତହୁଁ ହସ୍ତ ବଳି ପଡ଼ିଲା । ପାନ କଳରେ ଥିଲେ ହେଁ ବୋଳ ମୋ ଗଣ୍ଡେ ଲାଗିଲା ନାହିଁ—କାରଣ ସେ ପାନ ବୋଳ ଅଧରକୁ ଆଣି ନ ଥିଲା । ସ୍ତ୍ରୀର ପାନ ବୋଳ ପୁରୁଷ ଗଣ୍ଡରେ ଲାଗିବା ଅନ୍ୟାୟ—ପୁରୁଷର ସ୍ତ୍ରୀ ଗଣ୍ଡରେ

ଲଗିବା ଯୁକ୍ତ–ଏ ଲେଖାଗ୍ରର ପ୍ରସିଦ୍ଧ । ସେ ଏ ସବୁ ବିଷୟ ମନରେ ପକାଉ–ତାର ଗୁଣ ଭାବୁଁ ହଠାତ୍ ତାର ହେତୁ–ଜ୍ଞାନ ବୁଡ଼ିଲା–ନଷ୍ଟ ହେଲା ।

ବର୍ତ୍ତମାନ ପାଠକ ମାନେ ପଣ୍ଡିତ ନୀଳକଂଠଙ୍କର ଟୀକା ଦେଖନ୍ତୁ । ପ୍ରାଚୀ ଟୀକାରେ ଅଛି ଲବଣ୍ୟବତୀ ଗାଢ ଆଲିଙ୍ଗନ କର୍ ନ ଥିବାରୁ କାଚର ଦାଗ ଦେହରେ ଉଠିଲା ନାହିଁ । କିନ୍ତୁ ନୀଳକଂଠଙ୍କ ଟୀକାରେ ଅଛି, ଗାଢ ଆଲିଙ୍ଗନ କରିଥିଲେ ମଧ୍ୟ ଦେହରେ ଦାଗ ଉଠି ନ ଥିଲା । ପାନ ବୋଳ ସଂପର୍କରେ ମଧ୍ୟ ନୀଳକଂଠଙ୍କ ଟୀକା ଆମର ବେଶ୍ ଆନନ୍ଦ ଦାୟକ । ନୀଳକଂଠଙ୍କ ଟୀକାଟି ହେଉଛି–

"କାଚ ଚୂଡ଼ୀ–ମାଇପେ ହାତରେ ପିନ୍ଧିବା କାଚ । ସେ କାଳେ ବୋଧହୁଏ ଏହା ବଡ଼ ଦୁର୍ମୂଲ୍ୟ ଥିଲା । ସଞ୍ଚା–ଚିହ୍ନ;–ଏପରି ଭାବେ ମୋତେ କାକିଲା ଯେ ମୋ ଦେହରେ ଚିହ୍ନ ବସିଲା ନାହିଁ । ଅଥଚ ଯାକିବା ହୁଗୁଳା ନୁହେଁ । ତାହା ତୁଣ୍ଡରେ ପାନ ଥିଲେ ମଧ୍ୟ ମୋ ଗାଲରେ ପାନ ବୋଳ ଲଗିଲା ନାହିଁ । [ଏ ସବୁ ସ୍ୱାମୀ ପ୍ରତି କୁଳବଧୂର ପ୍ରସିଦ୍ଧ ଶ୍ଳିଷ୍ଟାଗ୍ରର । ] ହେତୁ–ଜ୍ଞାନ ।"

ଏଠାରେ ଦେଖାଯାଏ, ଅର୍ଥ ଉପବନର ଗୋଟିଏ ବ୍ୟାଖ୍ୟାନୁରୂପକ ପୁଷ୍ପ ଆର୍ତ୍ତବାବୁଙ୍କ ଟୀକାକୁ ସୁରଭିତ କରୁଥିବା ବେଳେ ନୀଳକଂଠଙ୍କ ଟୀକା ଉପବନର ଆଉ ଗୋଟିଏ ଅର୍ଥ–ପୁଷ୍ପ ଆମକୁ ତାହାର ସ୍ୱତନ୍ତ୍ର ସୌରଭରେ ବିମୁଗ୍ଧ କରୁଅଛି । ମୁଁ ଆଖି ପକାଇବା ମାତ୍ରେ ଏଭଳି ଅନେକ ପଦ ମତେ ଆକୃଷ୍ଟ କରିଅଛି ।

## ୬– ଟୀକାକାରଙ୍କର ବରେଣ୍ୟ ମୌଳିକତା

ପଣ୍ଡିତ ନୀଳକଂଠ ତାଙ୍କର ଟୀକା ମଧ୍ୟରେ ଠାଏ ଠାଏ ବିଲକ୍ଷଣ ମୌଳିକତା ଦେଖାଇଛନ୍ତି । ଅର୍ଥାତ୍ କେତେକ ସ୍ଥଳରେ ସେ ଉପେନ୍ଦ୍ରଭଞ୍ଜଙ୍କର ନିଜ ଉକ୍ତିକୁ ମଧ୍ୟ ସ୍ୱୀକାର କରି ନାହାନ୍ତି । ତହିଁର କେତୋଟି ଉଦାହରଣ ମୁଁ ପ୍ରଦାନ କରୁଅଛି ଏବଂ ସେଥିପାଇଁ ୬ଷ୍ଠ ଛାନ୍ଦର ୫୪ ଓ ୫୫ ପଦର ଟୀକା ଉଦ୍ଧାର କରି ଦେଉଛି । ନୀଳକଂଠ ଲେଖିଛନ୍ତି–

"ଉପେନ୍ଦ୍ର ଭଞ୍ଜ ଏଠାରେ ଯମକର ଭିନ୍ନ ଭିନ୍ନ ପଦକୁ ଭିନ୍ନ ଭିନ୍ନ ପ୍ରକାର ଅର୍ଥ କରିବାରେ ଶ୍ଳେଷାର୍ଥ ଅଛି ବୋଲି କଳ୍ପନା କରି ଏ ଛାନ୍ଦରେ ତ୍ରିଭଙ୍ଗୀ ଶ୍ଳେଷ ଅଛି ବୋଲି କହିଛନ୍ତି । କିନ୍ତୁ ଯେଉଁଠାରେ ଯମକ ରହିଲା, ସେଠାରେ ଭିନ୍ନ ଭିନ୍ନ ଅର୍ଥ ନ ରହିଲେ ଯମକ ନାହିଁ । ତାହା ପୁନରୁକ୍ତି ହେଲା । ଅତଏବ ଏକ ପଦର ଦୁଇ ଭାବରେ ଦୁଇ ଅର୍ଥ ନ ହେଲେ ଶ୍ଳେଷ ହୁଏ ନାହିଁ । ଏହି ଛାନ୍ଦରେ ଶେଷ ପଦରେ 'ବଳି ଛଳି' ( ୧. ଗମ

ରୂପରେ ବାଳିକୁ ଠକି, ୨. ବାମନ ରୂପରେ ବଳିକି ଠକି ) ପଦ ଛଡ଼ା ଅନ୍ୟ କୁତ୍ରାପି ଶ୍ଳେଷ ନାହିଁ । କିନ୍ତୁ ଏ କାବ୍ୟରେ ଶ୍ଳେଷାର୍ଥ ବହୁତ ଜାଗାରେ ଅଛି । ଦୃଷ୍ଟାନ୍ତ ସ୍ୱରୂପ ଶେଷର ବିରହର ଋତୁ ବର୍ଣ୍ଣନା ମାନଙ୍କରେ ଶ୍ଳେଷମାନ ସ୍ପଷ୍ଟ । ଯଥା:–୪୦ ଛାନ୍ଦ ଗ୍ରୀଷ୍ମ ବର୍ଣ୍ଣନାରେ, ୨ୟ ପଦରେ 'ଘନରସ,' 'ମହିଷୀ ଆଲିଙ୍ଗନ,' 'ରସନା,' ପତ୍ରାବଳୀ ପ୍ରଭୃତି ଅଭଙ୍ଗ ଶ୍ଳେଷ । ତୃତୀୟ ପଦରେ ( ୧ ଚନ୍ଦ୍ରରେ, ୨ କର୍ପୂରରେ ଓ କନ୍ଦର୍ପରେ ) ଏହିପରି ଅର୍ଥ ହେଲେ ଅଭଙ୍ଗ ଶ୍ଳେଷ । ଏହିପରି ଯେଉଁଠାରେ ଏକାଧିକ ପଦରେ ଶ୍ଳେଷ ଥାଇ ଶ୍ଳେଷାର୍ଥରେ କୌଣସି ପଦ ଭଙ୍ଗିବ ଓ କୌଣସି ପଦ ନ ଭଙ୍ଗିବ, ତେବେ 'ଭଙ୍ଗାଭଙ୍ଗ' ଶ୍ଳେଷ ହେବ । ଏହି ଛାନ୍ଦର ୨୩ ପଦ ଦୁଇଧାଡ଼ି ନ ହୋଇ ଯଦି ଗୋଟିଏ ଧାଡ଼ି ଥାଇ ଦୁଇ ଅର୍ଥ ବୁଝାଉଥାନ୍ତା, ତେବେ " ଅହି ମକର " ଶବ୍ଦ ଭଙ୍ଗିଗଲ ଓ ଅନ୍ୟାନ୍ୟ ଶବ୍ଦ ନ ଭଙ୍ଗିଲା ବୋଲି ' ଭଙ୍ଗା ଭଙ୍ଗ " ଶ୍ଳେଷ ହୋଇ ଥାଅନ୍ତା । ମାତ୍ର ଏଠାରେ ଯୋଡ଼ି ଧାଡ଼ି ଥାଇ ସର୍ବ ଯମକ ହେବାରୁ ଶ୍ଳେଷାର୍ଥ ଅଛି ବୋଲି କୁହାଯିବ ନାହିଁ । ୪୮ ଛାନ୍ଦର ୩ୟ ପଦ ଏହାର ଉଦାହରଣ । "

ସେହପରି ୧୯ ଛାନ୍ଦ ପ୍ରଥମ ପଦ,

' ଗ୍ରହିଁ ମହାଦେବ ହସ୍ତରେ ପତ୍ରିକା କରି ପୁଲକିତ ଗାତ୍ରକୁ,
କଲ ଫିଉଛାଡ଼ି ବେନି ନେତ୍ରକୁ
ଚଞ୍ଚଳେ କ୍ଷଣୀ ଅଞ୍ଚଳ କରେ ଭରି ପାହାଡ଼ା କରି ପତ୍ରକୁ ସେ ।"

ଟୀକାକାର ନୀଳକଣ୍ଠ ଲେଖିଛନ୍ତି,

"କବାଟ କୁଣେ ରହି ବ୍ରହ୍ମଗୌରୀଙ୍କି କେମା ନମସ୍କାର କରିବା କଥା ପୂର୍ବ ଛାନ୍ଦରେ କୁହାଯାଇଛି । ଏଠାରେ ହାତରେ ବ୍ରହ୍ମଗୌରୀଙ୍କ ଠାରୁ ଚିଠି ନେବା ତେଣୁ ସଙ୍ଗତ ହୋଇ ନାହିଁ । ବ୍ରହ୍ମଗୌରୀ ସଖୀ ହାତକୁ ଦେଲେ ଓ ସଖୀ କେମାକୁ ସେ ଚିଠି ଦେଲ. ଏପରି କହିଥିଲେ ପୂର୍ବାପର ସଙ୍ଗତି ଠିକ୍ ରହିଥାନ୍ତା !"

ଆଉ ଗୋଟିଏ ପଦ ଦେଖନ୍ତୁ–୨୨ଶ ଛାନ୍ଦ, ୧୭ ପଦ

"ରହିଛନ୍ତି କେରଳ ଦେଶେ, । ନର୍ମଦା ନଦୀ ବୃଦ୍ଧି ବଶେ
ଗୁଣ ମଣିକି ଘୁଣେ ସନ୍ତାପିତ ଦ୍ୱିଗୁଣେ
ଫଗୁଣେ ହେବେ ଗରବେଶେ ସେ ।"

ନୀଳକଣ୍ଠ ଦର୍ଶାଇଛନ୍ତି, "ଫଗୁଣରେ ଗମେଶ୍ୱରରେ ପହଞ୍ଚିବା ପାଇଁ ବର୍ଷା ପୂର୍ବରୁ ବା ବର୍ଷା ଆରମ୍ଭରୁ କାଞ୍ଚିରୁ ବାହାରିବା କିଛି ଦରକାର ନାହିଁ । କିମ୍ବା ପ୍ରେମ ପତ୍ରାଦିରେ ଏତେ ଦୂରରେ ସଙ୍କେତ ଦିନ ରଖିବା ମଧ୍ୟ ସଙ୍ଗତ ନୁହେ, ସମ୍ଭବତଃ କେବଳ ବର୍ଷା ଋତୁର

ନାମ ଧରି କେତେ ଗୁଡ଼ାଏ ବର୍ଣ୍ଣନାର ସୁବିଧା କରିବା ପାଇଁ ଉପେନ୍ଦ୍ରଭଞ୍ଜ କାଳକୁ ଏତେ ପଛକୁ ଘେନି ଆସିଛନ୍ତି ।"

ପଣ୍ଡିତ ନୀଳକଣ୍ଠ ଉପେନ୍ଦ୍ରଭଞ୍ଜଙ୍କୁ ଯେପରି ନିର୍ଭିକ ଭାବରେ ସମାଲୋଚନା କରିଛନ୍ତି, ସେଇପରି ଉପେନ୍ଦ୍ର ଭଞ୍ଜଙ୍କର ପାଣ୍ଡିତ୍ୟ ଓ ବହୁଶାସ୍ତ୍ର ଦର୍ଶିତା ସମ୍ବନ୍ଧରେ ମଧ୍ୟ ଉଦାହରଣ ସହ ଉଲ୍ଲେଖ କରିଛନ୍ତି ।

ଦେଖନ୍ତୁ—୩୦ଶ ଛାନ୍ଦର ୬୫ ପଦ

କାନ୍ତା କାନ୍ତ କର ପଦ୍ମ କୋକନଦ ଶିରି
ଘେରି କରି ଥିଲେ ବୋଲି କୁଶବନ୍ଧ କରି ଯେ ।

ନୀଳକଣ୍ଠ ଲେଖିଛନ୍ତି, "ବରର ହାତ ପଦ୍ମ ଶୋଭାକୁ ଓ କନ୍ୟାର ହାତ କୋକନଦ (ରକ୍ତପଦ୍ମ) ଶୋଭାକୁ ଘେରି କରି ଥିବାରୁ ତାକୁ କୁଶ ରୂପ ଦଉଡ଼ିରେ ବାନ୍ଧି ପକାଇଲେ କି ? ଏହା ଅବିକଳ ନୈଷଧରୁ ଅନୁବାଦ କହିଲେ ଚଳେ । ଏହିପରି ଅନେକ ସ୍ଥଳରେ ନୈଷଧ ଓ ଅଳଙ୍କାର ଶାସ୍ତ୍ରର ଉଦାହରଣ ମାନଙ୍କୁ ଉପେନ୍ଦ୍ରଭଞ୍ଜ ଗ୍ରହଣ କରିଛନ୍ତି । ଏହା ଗୋଟିଏ ଉଦାହରଣ ମାତ୍ର ।"

## ୮—ବିଚିତ୍ର ବ୍ୟାଖ୍ୟାନର ନବ ଦିଗନ୍ତ

ବ୍ୟାଖ୍ୟାନରେ ବିଚିତ୍ରତାହିଁ ଥିଲା ଟୀକାଗତ ବୈଶିଷ୍ଟ୍ୟର ଚରମ ଓ ପରମ ଲକ୍ଷଣ । ଏ କ୍ଷେତ୍ରରେ ପଣ୍ଡିତ ନୀଳକଣ୍ଠ ଯେଉଁ କୃତିତ୍ୱ ଦେଖାଇଛନ୍ତି, ତାହା ଏକାବେଳକେ ବିସ୍ମୟକର । ଏଥିର ଏକ ପ୍ରକୃଷ୍ଟ ଦୃଷ୍ଟାନ୍ତ ହେଉଛି, ଲାବଣ୍ୟବତୀ ୩୬ ତମ ଛାନ୍ଦର ଅର୍ଥ ବିସ୍ତାର । ଏ ଛାନ୍ଦର ପ୍ରଥମ କେତୋଟି ପଦରେ ଋତୁ-ବର୍ଣ୍ଣନା କରା ଯାଇଛି । କିମ୍ବଦନ୍ତୀ କହେ, ଭଞ୍ଜ କୁଆଡ଼େ ଜ୍ୟୋତିଷ ଶାସ୍ତ୍ର ପଢୁଥିଲେ । ଗୁରୁ କହିଲେ—"ବୁଝିଲ ଉପେନ୍ଦ୍ର, ବର୍ଷକରେ ଯେପରି ଛ'ଋତୁ ଅଛି; ଠିକ୍ ସେହିପରି ବର୍ଷରେ ୩୬୦ ଦିନ ଯାକ ପ୍ରତିଦିନ ଛ'ଋତୁ, ବିଭିନ୍ନ ସମୟରେ ଅନୁଭବ କରିହେବ" । ଏହା ଶୁଣି ଉପେନ୍ଦ୍ରଙ୍କ ମନକୁ ଆସିଲା, ଯଦି ଦିନକରେ ଛ' ଋତୁ ରହିପାରେ, ତେବେ ଗୋଟିଏ ପଦରେ ଛ' ଋତୁର ବର୍ଣ୍ଣନା କରି ନ ହେବ କାହିଁକି ? ସମସ୍ତ ପଣ୍ଡିତଙ୍କୁ ପଚାରି ବୁଝିଲେ, ଏଭଳି ଅଦ୍ଭୁତ ପାଣ୍ଡିତ୍ୟ କେହି କେବେ ପ୍ରକାଶ କରିଛି କି ? "ନାହିଁ" ବୋଲି ଉତ୍ତର ମିଳିଲା । ନିଜେ ଚାରିଧାମ ଭ୍ରମଣରେ ଯାଇ ହୁଏତ ଭାରତର ବିଭିନ୍ନ ରାଜ୍ୟରେ ପଣ୍ଡିତଙ୍କୁ ପଚାରିଥିବେ । ସେ ଯାହା ହେଉ ଲାବଣ୍ୟବତୀରେ ଏହା ଚାତୁର୍ଯ୍ୟ ସେ ଫୁଟାଇ ଦେଇଗଲେ ।

ଆଜି ପର୍ଯ୍ୟନ୍ତ ଏହା ବର୍ଣ୍ଣନାର ପ୍ରତି ପଦର ଚାରି ଋତୁ ପକ୍ଷରେ ଚାରୋଟି ଅର୍ଥ କରାଯାଇ ଥିଲା ମାତ୍ର । ମୁଁ ଶୁଣିଛି, ଥରେ ଧରାକୋଟରେ ଜଣେ କେହି ପଣ୍ଡିତ ପ୍ରତି

ପଦର ଛ' ଋତୁ ପକ୍ଷୀୟ ଛ'ଟି ଅର୍ଥ ପ୍ରକାଶ କରିଥିଲେ । କିନ୍ତୁ ଲେଖା ଲେଖିରେ କେବଳ ଗୋଟିଏ ଅର୍ଥ ପ୍ରକାଶ ପାଇଛି । ପଣ୍ଡିତ ନୀଳକଣ୍ଠ କିନ୍ତୁ ଏ ସ୍ଥଳରେ ଆମର ଜ୍ଞାନର ଦିଗ୍‌ବଳୟ ସମ୍ପ୍ରସାରିତ କରି ଦେଇ ଧନ୍ୟବାଦାର୍ହ ହୋଇଛନ୍ତି । ସେ ପ୍ରତି ପଦର ପାଞ୍ଚଟି ଲେଖାଏଁ ଅର୍ଥ କରି ଟୀକା କ୍ଷେତ୍ରରେ ସ୍ୱକୀୟ ମନନଶୀଳତା ଏବଂ ବିଶିଷ୍ଟତା ପ୍ରତିଷ୍ଠା କରି ଯାଇଛନ୍ତି ।

ଅନେକ ସର୍ବ ଭାରତୀୟ ସଭାରେ ମଧ୍ୟ ଯୁଗୀୟ ସାହିତ୍ୟରେ ଏଭଳି ଏକ ବର୍ଣ୍ଣନା କଥା କହିଲା ବେଳେ ତଦ୍‌ବିଦ୍ ପଣ୍ଡିତ ମାନେ ବିସ୍ମିତ ହେବା ମୁଁ ଦେଖିଛି । ତେଣୁ ପଣ୍ଡିତ ନୀଳକଣ୍ଠଙ୍କର ଏହି ନବୀନତା ଏକାନ୍ତ ଅଭିନନ୍ଦନୀୟ ।

ଶେଷରେ ମୋର ବକ୍ତବ୍ୟ ଯେ, ହିମାଳୟର ପୁତ୍ରୀ ମନ୍ଦାକିନୀ ଏବଂ ପୁତ୍ର ରୂପକ ବ୍ରହ୍ମପୁତ୍ର ଯେପରି ନାଗାଧିରାଜଙ୍କର ଅତୁଳ ଐଶ୍ୱର୍ଯ୍ୟ ଘେନି ପ୍ରବାହିତ, ଓଡ଼ିଶାର ମହାନ୍ ପଣ୍ଡିତ ନୀଳକଣ୍ଠଙ୍କ ମାନସ କନ୍ୟା ରୂପିଣୀ ଏହି ଟୀକା ମଧ୍ୟ କାବ୍ୟ 'କୋଣାର୍କ' ପରି ସେହିପରି ବିଚିତ୍ର ଗୁଣା ଗୁଣ ଶାଳିନୀ । ଏ ଟୀକା ଶୀଘ୍ର ପ୍ରକାଶ ପାଉ, ଭଞ୍ଜ ସାହିତ୍ୟ ସେବକଙ୍କର ମଦ ବର୍ଦ୍ଧନ କରୁ ଏହାହିଁ ମୋର କାମନା ।

ଶ୍ରୀ ଗୌରୀ କୁମାର ବ୍ରହ୍ମା
ତା ୩ । ୩ । ୮୧

# ଉପୋଦ୍‌ଘାତ

ମୋ ପିଲଦିନେ ଉଚ୍ଚ ଇଂରେଜୀ ବିଦ୍ୟାଳୟ ବା କଲେଜ ପ୍ରଭୃତିରେ ଓଡ଼ିଆ ପଢ଼ା ହେବାର କିଛି ବ୍ୟବସ୍ଥା ନ ଥିଲା । ଓଡ଼ିଆ ପଢ଼ା ମଧ୍ୟ ଦରକାର ନ ଥିଲା । ମଧ୍ୟ ଓଡ଼ିଆ ଓ ମଧ୍ୟ ଇଂରେଜୀ ବିଦ୍ୟାଳୟରେ ମଧ୍ୟ ଯେଉଁ ଓଡ଼ିଆ ପଢ଼ା ଯାଉଥିଲା, ତାହା ବସ୍ତୁତଃ ଓଡ଼ିଆ ନୁହେ । ବଙ୍ଗଳା, ସଂସ୍କୃତ ଏବଂ କେତେକ ପରିମାଣରେ ଇଂରେଜୀର ଅନୁକରଣ ସେ । ମନେ ଅଛି, ସେ କାଳ ଛାତ୍ରମାନେ ପଢ଼ିବାର ଓଡ଼ିଆକୁ ଏତେ ମାର୍ଜିତ ଓ ଅନ୍ୟ ପ୍ରକାରର ମନେ କରୁଥିଲେ ଯେ ତାଙ୍କ ଲେଖା ବା କଥା ସାଧାରଣ ଲୋକ ନ ବୁଝିଲେ ସେମାନଙ୍କର ଭାରି ଗର୍ବ ଓ ଆହ୍ଲାଦ ହେଉଥିଲା । ବାସ୍ତବିକ ଏବେ ମଧ୍ୟ ସେଥିପାଇଁ ଅନେକ ଶିକ୍ଷିତ ଓଡ଼ିଆଙ୍କର ଲେଖା ଓ ବକ୍ତୃତାର ଶୈଳୀ ତଥା ବିନ୍ୟାସ ଲୋକେ ବୁଝନ୍ତି ନାହିଁ ଏବଂ ସେଥିରେ ଶିକ୍ଷିତ ଅଶିକ୍ଷିତ ଭିତରେ ଗୋଟିଏ ଜାତିଭେଦ ସୃଷ୍ଟି ହୋଇଛି କହିଲେ ଚଳେ ।

ମୋ ମତରେ ଏହାର ଗୋଟିଏ ପ୍ରଧାନ କାରଣ, ଓଡ଼ିଆ ପ୍ରାଚୀନ ସାହିତ୍ୟର ଚର୍ଚ୍ଚା ନ କରିବା । ଉପେନ୍ଦ୍ର ଭଞ୍ଜଙ୍କ ଲେଖା ପରି କଠିନ ଶବ୍ଦ ଗହନ ଓ ଅଳଙ୍କାର ପୂର୍ଣ୍ଣ ଲେଖା ସମ୍ବନ୍ଧରେ ମଧ୍ୟ କବି ଗୋପବନ୍ଧୁ ଯଥାର୍ଥ କହିଛନ୍ତି:—

" ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା ।
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟ ରଙ୍ଗେ ବାରାଙ୍ଗନା । "

କିନ୍ତୁ ରାଧାନାଥଙ୍କ ମହାଯାତ୍ରା ସମ୍ବନ୍ଧରେ ଏଭଳି ଆଜି କିଛି କୁହାଯାଇ ପାରିବ କି ? ନା ! ଏ 'ନା'ର କିନ୍ତୁ କାରଣ ଯଥେଷ୍ଟ ଓ ଯଥାର୍ଥ ମଧ୍ୟ । କିନ୍ତୁ ସେ ସବୁର ଆଲୋଚନା ନିମନ୍ତେ ଏଠାରେ ଅବକାଶ ନାହିଁ ।

କହିବାର ଉଦ୍ଦେଶ୍ୟ ଏତିକି ଯେ ଜାତୀୟ ଭାଷା ଜାତୀୟ ସଂସ୍କୃତିର ବିଗ୍ରହ । ପୃଥିବୀରେ ଆଜି ମଧ୍ୟ ଏପରି ଅନେକ ଜାତି ଅଛନ୍ତି, ଯେଉଁମାନଙ୍କର ମୂଳ ସଂସ୍କୃତି ନଗଣ୍ୟ । ପାଦ୍ରିମାନେ ସେମାନଙ୍କୁ ବର୍ଣ୍ଣମାଳା ଭାଷାଠାରୁ ଟୋପି କୁର୍ତ୍ତା ପର୍ଯ୍ୟନ୍ତ ଦେଇ ତାଙ୍କ ସଂସ୍କୃତି ତିଆର କରିବାର ଉଦ୍ୟମ କରୁଛନ୍ତି । ପ୍ରାୟ ତିନିଶ ବର୍ଷର ରାଜନୈତିକ ନିଷ୍ପେଷଣରେ ଓଡ଼ିଆ କଥଞ୍ଚିତ୍ ଆତ୍ମ ବିସ୍ମୃତ ହେଲେ ମଧ୍ୟ ଭାରତ ଜାତୀୟତାରେ ଓଡ଼ିଆର ସ୍ୱଚ୍ଛ ସଂସ୍କୃତି କାଳେ କାଳେ ନିଜର ପ୍ରଭାବ ମିଶାଇ ଆସିଅଛି—ସେହି

ସଂସ୍କୃତିର ବିଗ୍ରହ ସ୍ୱରୂପ ସେହି ଇତିହାସର ଆଧ୍ୟାତ୍ମିକ ପୀଠ ସ୍ୱରୂପ ତାହାର ଭଷା ଅଛି ଏବଂ ସେହି ଭଷାରେ ହିଁ ଆଶା ଅଛି ।

ଏହି ସଂସ୍କୃତିର ଅନୁଧାବନ ଉଦ୍ଦେଶ୍ୟରେ ମୁଁ ବହୁ ପୂର୍ବେ ୧୯୦୮ । ୯ରୁ ପ୍ରାଚୀନ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିଥିଲି । କାବ୍ୟ ମଧ୍ୟରେ ଲବଣ୍ୟବତୀ ଅପେକ୍ଷାକୃତ ସରଳ ଓ ସେଥିରେ ସମସ୍ତ ମଧ୍ୟ ଯୁଗ ସାହିତ୍ୟ ଚର୍ଚ୍ଚାର ପ୍ରାୟେ ଏକତ୍ର ସମାବେଶ ବୋଲି ତହିଁରୁ କେତେକ ବାଦ ଦେଇ ଗୋଟିଏ ବାଳକ ପାଠ୍ୟ ସଂସ୍କରଣ କରିବି ବୋଲି ତିଆର କରି-ଥିଲି । ସେତେବେଳେ ଭକ୍ତ କବି ମଧୁସୂଦନଙ୍କ ସଙ୍ଗେ ଏ ବିଷୟରେ ପରାମର୍ଶ ମଧ୍ୟ କରିଥିଲି । ସେ ମୋ ସଙ୍ଗେ ଏକମତ ହୋଇଥିଲେ । ତା ପରେ ସତ୍ୟବାଦୀ ସ୍କୁଲରେ ଥିଲାବେଳେ ମୁଁ ନିଜେ ପ୍ରାଚୀନ ସାହିତ୍ୟ ଚର୍ଚ୍ଚା କରୁଥିଲେ ମଧ୍ୟ ସେ ସଂସ୍କରଣଟି ପ୍ରକାଶ କରିବା ସୁବିଧା ହୋଇ ନାହିଁ । ଏହାର ବିଶିଷ୍ଟ କାରଣ କୌଣସି ପୁସ୍ତକ ପ୍ରକାଶକ ଏପରି ଖଣ୍ଡିତ ଲବଣ୍ୟବତୀର ପ୍ରକାଶ ଭର ନେବାକୁ ରାଜି ହେଲେ ନାହିଁ ।

ତା ପରେ ଅସହଯୋଗ ଆନ୍ଦୋଳନ । ଏଥିରେ ରାଜା-ପ୍ରଜା, ଧନୀ-ଦରିଦ୍ର, ପଣ୍ଡିତ-ମୂର୍ଖ, ଶିକ୍ଷକ-ଛାତ୍ର, ସମସ୍ତେ ଏକାକାର । ରାଜନୀତିର ପ୍ରବଳ ବନ୍ୟା । ସାହିତ୍ୟ ଚର୍ଚ୍ଚାର ଆଉ ତାଦୃଶ ଅବକାଶ କାହିଁ ? ମାତ୍ର ଢିଙ୍କି ସ୍ୱର୍ଗକୁ ଗଲେ ମଧ୍ୟ ଯେପରି ଧାନ କୁଟେ, ସେହିପରି ବେଳେ ବେଳେ ସାହିତ୍ୟ ଆଡ଼କୁ ଦୃଷ୍ଟି ଦେଇଥାଏ । କେଉଁ ଠାରେ କି ସାହିତ୍ୟ ଉଦ୍ୟମ ହେଉଅଛି ସେ ସବୁ ଦେଖିବାକୁ ଯାଇ ନବୀନ ଉଦୀୟମାନ ଶ୍ରଦ୍ଧେୟ ଅଧ୍ୟାପକ ଆର୍ତ୍ତବଲ୍ଲଭ, ବିନାୟକଙ୍କ ଠାରୁ ଉଦ୍ୟମୀବର ବାଳକୃଷ୍ଣଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ଉପରେ ଦୃଷ୍ଟି ପକାଇ ଥାଏ । ଗଞ୍ଜାମର ଅବକାଶ ସେବୀ ଉଦ୍ୟମ ଏଥିରେ ଅନ୍ୟତମ । ମୁଁ ନିଜେ ମଧ୍ୟ ଏହି ସମୟ ମଧ୍ୟରେ ପିଲାଙ୍କ ପାଇଁ ଅତ୍ୟନ୍ତ ଘରୋଇ ଭଷା କିପରି ସାଧୁ ଯୋଜନାରେ ଉପଯୋଜିତ ହୋଇ ପାରେ ତାହାର ଦୃଷ୍ଟାନ୍ତ ଦେଖାଇବା ପାଇଁ କେତେକ ଗଦ୍ୟ, ପୁସ୍ତକ ଲେଖିଅଛି ।

ପ୍ରାୟ ଦଶ ବର୍ଷ ଗଲା । କିନ୍ତୁ ବେଳେ ବେଳେ ମନେ ହୁଏ, ପ୍ରାଣ ଯାହା ଲୋଡୁଛି ତାହା ଯେପରିକି ପାଉ ନାହିଁ । ଅନେକ ଲେଖକ ଲେଖିବାର ଉଦ୍ୟମ କରୁଛନ୍ତି । କିନ୍ତୁ ଅଧିକାଂଶ ଭଷା ହିସାବରେ ଯେପରି କି ଓଡ଼ିଆ ପ୍ରାଣରୁ ଅଲଗା ହୋଇ ପଡୁଛି । ମୂଳ ସଂସ୍କୃତି ଉପରେ ବଢୁ ନାହିଁ । ଗଛ ବାହାରରୁ ଉପାଦାନ ଆହରଣ କରି ନୂଆ ପତ୍ରଟିଏ କାଢେ ଫୁଲଟିଏ ଫୁଟାଏ, ଫଳ ଧରେ ସେଥିରେ ନୂତନ ଉପାଦାନରେ ବୃକ୍ଷ ଜୀବନର ଶ୍ରୀବୃଦ୍ଧି ହୁଏ । କିନ୍ତୁ ଉପାଦାନ ଗୁଡ଼ିକ ବାଟି କରି ଗଛ ଉପରେ ବୋଳି ଦେଲେ ତାହା ହୁଏ ନାହିଁ ।

ଉପନ୍ୟାସ ସାହିତ୍ୟରେ ଗୋଟିଏ ନୂଆ ଜିନିଷ । ଓଡ଼ିଆରେ ନିତାନ୍ତ ନୂତନ ନ ହେଲେ ମଧ୍ୟ ପ୍ରାଚୀନ ନୁହେ । ଗଳ୍ପ ଉପନ୍ୟାସର ଲେଖା ଲୋକେ ବହୁତ ପଢ଼ିବାର କଥା । ସେଥିରେ ଜାତିର ଭାଷା ଓ ଭାବ ଶୀଘ୍ର ମାର୍ଜିତ ଓ ଶ୍ରୀବୃଦ୍ଧି ହେବାର ଆଶା କରଯାଏ । ଓଡ଼ିଆର ଗତ କେତେ ବର୍ଷର ଉଦ୍ୟମ ଭିତରେ ଏହି ଉପନ୍ୟାସ ଲେଖା ଅନେକଙ୍କ ମନକୁ ଯାଇଛି । ସୁଖର କଥା । ମୁଁ ଏଠାରେ ଉପନ୍ୟାସ ମାନଙ୍କର ଚରିତ୍ର ଚିତ୍ର ବା ଭାବୋନ୍ମେଷ ସମାଲୋଚନା କରୁ ନାହିଁ । କିନ୍ତୁ ଲେଖାର ଶୈଳୀ ଓ ଶବ୍ଦାଦିର ଯୋଜନାରେ ଯେଉଁ ନୂତନତ୍ୱ ଦେଖା ଯାଉଛି, ସେଥିରେ ଯଥାର୍ଥ ଓଡ଼ିଆ ପ୍ରାଣକୁ ତାହା ହଠାତ୍ ଘେନିବ ବୋଲି ମନେ ହେଉ ନାହିଁ । ବେଳେ ବେଳେ ମନେ ହୁଏ, ଯେପରି ଓଡ଼ିଆ ତାହା ସବୁ ଲେଖୁ ନାହାନ୍ତି । ମୁଁ ନୂତନତ୍ୱର ବିରୋଧରେ ଏ କଥା କହୁ ନାହିଁ । ନୂତନତ୍ୱ ହେୟ ନୁହେ । ବରଂ ସର୍ବଥା ଉପାଦେୟ । ମାତ୍ର ସେ ସବୁ ନୂତନତ୍ୱ ଭାଷାର ଗଣ୍ଡି ଭିତରୁ ଫୁଟି ଉଠିବା ଦରକାର । ଆଜି ଯାହା ନୂତନ, କାଲି ତାହା ପ୍ରାଚୀନ ହୋଇଯିବା ଭଳି ନୂତନତ୍ୱର ବିକାଶ ହେବା ଉଚିତ । ସେଥିପାଇଁ ତାତ୍ତ୍ୱିକ ଭାବରେ ଜାତିର ପୂର୍ବ ସଂସ୍କୃତି ତଥା ଭାଷାର ପ୍ରତିଷ୍ଠିତ ଶୈଳୀ ଅନୁଧାବନ କରିବାକୁ ହେବ । ତାହା ନ ହେଲେ ଉପର୍ଯ୍ୟୁପରି ବିଜାତୀୟ ଘାପ ପ୍ରଡ଼ି ବିକାଶ ହ୍ରସ୍ୱ ହେବାର ସମ୍ଭାବନା । ଭାଷାର ଗଣ୍ଡି ମଧ୍ୟରେ ନୂତନତ୍ୱ କେତେ ଦିନ ପରେ ସ୍ୱାଭାବିକ ହୋଇ ପଡ଼ିଲେ, ପରେ ନୂତନତ୍ୱ ପ୍ରାଚୀନତ୍ୱକୁ ଲୋକେ ହୁଏତ ଏତେ ବାରିବେ ନାହିଁ । ମାତ୍ର ପ୍ରଥମରୁ ଓଡ଼ିଆକୁ ଓଡ଼ିଆ କରି ବଢ଼ାଇବାକୁ ହେବ—ଏହାହିଁ କହିବାର ଉଦ୍ଦେଶ୍ୟ । ବଙ୍ଗଳାରେ ହେଉଛି, ଇଂରେଜୀରେ ହେଉଛି, ଦଳ ଦଳ ହୋଇ ସେଥିରେ ବାଦାନୁବାଦ କରୁଛନ୍ତି । ତଥାପି ପ୍ରାଚୀନ ନୂତନର ଏହି ସଂଘର୍ଷରେ ଭାଷା ଦିନକୁ ଦିନ ବୃଦ୍ଧିମନ୍ତ ଓ ପୁଷ୍ଟଳ ହେଉଛି । ସେ ଯୁକ୍ତି ହଠାତ୍ ଏଠାରେ ଲଗାଇଲେ ଚଳିବ ନାହିଁ । ତାହାର ଅନେକ କାରଣ ଅଛି । ସେ ସବୁର ଆଲୋଚନା ନିମନ୍ତେ ଏଠାରେ କିନ୍ତୁ ଅବକାଶ ନାହିଁ । ଗୋଟିଏ ମାତ୍ର ପ୍ରଧାନ କାରଣ ଏତିକି ଏଠାରେ ସୂଚନା ଦିଆଯାଇ ପାରେ ଯେ ଓଡ଼ିଶାରେ କଲିକତା ବା ଲଣ୍ଡନ ନାହିଁ । ଜୀବନ୍ତ, ବିଶାଳ, ଅଖଣ୍ଡିତ ବଙ୍ଗୀୟ ଜାତି ବା ଇଂରେଜ ସାମ୍ରାଜ୍ୟ ନାହିଁ ।

ଉଦାହରଣ ଦେଇ କଥାଟି ଟିକିଏ ସ୍ପଷ୍ଟତର କରି ଦେବା ପୂର୍ବରୁ କହି ରଖିବା ଉଚିତ ଯେ ଗୋଟିଏ ବିଶିଷ୍ଟ ପଦାର୍ଥ ବା ଭାବ ପାଇଁ ନୂତନ ଶବ୍ଦଟାଏ ଆମଦାନି କଲେ ଭାଷାର ପ୍ରକୃତିରେ ତାହା ଆଘାତ ଦିଏ ନାହିଁ । କିନ୍ତୁ ସେହି ଶବ୍ଦ ଚୟନରେ ଭାଷାର ଶୈଳୀ ପ୍ରତିହତ ହେବା ଉଚିତ ନୁହେଁ ଏବଂ ଭାଷାରେ ଶବ୍ଦ ନ ଖୋଜି ବୃଥାରେ ହଠାତ୍ ନୂଆ ଶବ୍ଦ ଗୁଞ୍ଜି ଦେବା ମଧ୍ୟ ଏ ଅବସ୍ଥାରେ ତାଦୃଶ ସମୀଚୀନ ନୁହେ । ପୁଣି ନୂତନତ୍ୱର ଆମଦାନି

ଫୁଟାଇବା ନିତାନ୍ତ ଦରକାର ହେଲେ ଶୈଳୀର ଅଙ୍ଗ ମଧ୍ୟରେ ତାହାକୁ ସ୍ୱାଭାବିକ ବିକାଶ ପରି ଫୁଟାଇ ଦେବାରେ ଲେଖକ ଯେପରି ଅତର୍କିତ ନ ହୁଅନ୍ତି । ଉଦାହରଣ ସ୍ୱରୂପ ନିମ୍ନଲିଖିତ ଗୁଡ଼ିକ ହଠାତ୍ ଆଖିରେ ପଡ଼ି ପାରେ ।

କାବ୍ୟ ଭାବରେ ଆଲୋଚନା କଲେ ଉପେନ୍ଦ୍ର ଭଞ୍ଜ ଯୁଗର କାବ୍ୟ ତଥା ଲାବଣ୍ୟବତୀରେ ବର୍ତ୍ତମାନର ଅନୁକରଣୀୟ କାବ୍ୟ କଳା ନାହିଁ । କିନ୍ତୁ ଏତିକି କହି ତାକୁ ଫିଙ୍ଗି ଦେବା କଦାପି ଉଚିତ ନୁହେ । ଇଂରେଜୀ କାବ୍ୟ କଳାରେ ଆଜି ଚସରଙ୍କ କଥା ଦୂରେ ଥାଉ ଡ୍ରାଇଡେନ ମଧ୍ୟ ଅନୁକରଣୀୟ ନୁହନ୍ତି । ସପ୍ତଦଶ ଶତାବ୍ଦୀର ଶେଷ ଭାଗର ଅନେକ ଇଂରେଜ କବି ଆଜି ରୁଚି ହିସାବରେ ଜଘନ୍ୟ ଓ ହେୟ । କିନ୍ତୁ ତଥାପି ତାଙ୍କ ଲେଖାରୁ ବାଛି ବାଛି କଲେଜ ପାଠ୍ୟ ମଧ୍ୟରେ କବିତା ମାନ ବରାବର ଦିଆଯାଏ । କାହିଁକି ? ଏହା ଅବଶ୍ୟ ଛାତ୍ରର ରୁଚି ବିକୃତି କରାଇବା ପାଇଁ ନୁହେ । ଜାତୀୟ ସାହିତ୍ୟର ଗତିର କ୍ରମିକ ବିକାଶ ଅନୁଧାବନ କରିବାରେ ଏ ସବୁ ସାହାଯ୍ୟ କରେ । ଜାତୀୟ ଜୀବନର ସ୍ୱାଭାବିକ ଉନ୍ମୁଖତା ଓ ଭୂୟୋ ବିକାଶ ଏଥିରେ ସ୍ପଷ୍ଟ ହୁଏ । ଫଳରେ ପ୍ରାଚୀନ ସଂସ୍କୃତିର ମୂଳଦୁଆ ଉପରେ ନୂତନ ସଂସ୍କୃତି ପ୍ରତିଷ୍ଠିତ ହୁଏ ।

ଉପେନ୍ଦ୍ର ଭଞ୍ଜ ପଢ଼ିଲା ବେଳେ ମଧ୍ୟଯୁଗ (ନୈଷଧ ଯୁଗ)ର ସଂସ୍କୃତ ସାହିତ୍ୟର କାବ୍ୟ କଳା ସେଥିରେ ସ୍ପଷ୍ଟ ଦେଖାଯାଏ । ନୈଷଧ ପ୍ରଭୃତିରେ କାଳିଦାସ, ଭବଭୂତି କଳାର ସ୍ୱଚ୍ଛନ୍ଦ ସ୍ୱାଧୀନତା ନାହିଁ । ଯେହିପରି କେଶବ କୋଇଲି ପ୍ରଭୃତି କବିତାର ସରଳ ସୁନ୍ଦର ଉଚ୍ଛ୍ୱାସ ଉପେନ୍ଦ୍ର ଭଞ୍ଜରେ ମଧ୍ୟ ନାହିଁ । ବିକ୍ରମାଦିତ୍ୟ ଯୁଗର ବିଶାଳ ଭାରତୀୟ ଜୀବନ ଲୀଳା ଜୟଚନ୍ଦ୍ର ପୃଥ୍ୱୀରାଜ ଯୁଗକୁ ମୁହାଁଇ ଥିବା ଭାରତର କ୍ଷୁଦ୍ର ରାଜ୍ୟ ମାନଙ୍କର ଘୋର ଅସୂୟା ଓ ଅନ୍ତର୍ବିବାଦ ମଧ୍ୟରେ କାହୁଁ ମିଳିବ ? ସେହିପରି ଉତ୍କଳ ବିକ୍ରମାଦିତ୍ୟ, କପିଳେନ୍ଦ୍ର କାଳର ବିଶାଳ ବିକାଶ ଉନ୍ମୁଖ ଓଡ଼ିଆ ଜୀବନ ମୁସଲମାନ ମରହଟ୍ଟା ରାଜତ୍ୱର ତୀବ୍ର ବାତ୍ୟା ମଧ୍ୟରେ ଦେଖିବାକୁ ଇଚ୍ଛା କରିବାହିଁ ବିଡ଼ମ୍ବନା । କୋଣାର୍କର ସଂଶ୍ଳେଷଣ ପ୍ରବଣ ଶିଳ୍ପ କଳା କ୍ରମେ ଯେପରି ବିଶ୍ଳେଷଣ ପ୍ରବଣ ଶିଳ୍ପାଂଶର ଅଳଙ୍କାର ମାତ୍ରାରେ ପର୍ଯ୍ୟବସିତ ହୋଇ କ୍ରମେ ଭିନ୍ନ ଓ ବିଧ୍ୱସ୍ତ ହେଲା, ଗଠନର ବିଶାଳତା ଛାଡ଼ି ମଣ୍ଡନର ଅଂଶ ଓ ଅଙ୍ଗ ବିବୃତି ଯେପରି କ୍ରମେ ଉତ୍କଳର କାରୁଶିଳ୍ପ ଓ ସ୍ଥାପତ୍ୟର ଜୀବନ ଶୁଷ୍କ ଓ ନୀରସ କରିଥିଲା, ସାହିତ୍ୟର ଚର୍ଚ୍ଚା ମଧ୍ୟ ଉପେନ୍ଦ୍ର ଭଞ୍ଜରେ ଠିକ୍ ସେହିପରି ଦେଖାଯାଏ ।

ସ୍ୱୀକାର କରିବାକୁ ହେବ, ଗଠନ ପାଇଁ ମଣ୍ଡନ । ମଣ୍ଡନ ଗଠନର ଯଥାର୍ଥ ସମନ୍ୱୟରେ ଜୀବନ୍ତ ଶିଳ୍ପ ବିକାଶ ପାଏ । ମଣ୍ଡନ ପାଇଁ ଗଠନ ହେଲେ ମଣ୍ଡନ ହ୍ରସ୍ୱ ହୁଏ । ଗଠନ ମଧ୍ୟ ନିଜର ଅନୁପାତ ହରାଇ ବେଳେ ବେଳେ ବିଭତ୍ସ ହୁଏ । ବିଶାଳ

ସ୍ୱାଧୀନ ଜୀବନ ଗଠନର ଉପଯୋଗୀ । ଜୀବନ ଧାରା ସେଥିରେ ସହଜ ପ୍ରବାହିତ ହୁଏ । ପରାଧୀନତାର ସଂକୋଚରେ ମନୁଷ୍ୟ ଜୀବନର ନୀତି ଓ ନିୟତି ଛାଡ଼ି କ୍ରମେ ରୀତି ଓ ପଦ୍ଧତିର ଅଧୀନ ହୁଏ । ଉଦାହରଣ ସ୍ୱରୂପ ସ୍ୱାଧୀନ ଆର୍ଯ୍ୟ ଜୀବନରେ ଯେଉଁ ସ୍ୱାଭାବିକ ଜାତି ବିଭାଗ ଫୁଟିଥିଲା, ତାହା କ୍ରମେ ବିରୋଧ ଓ ବିଜାତୀୟ ବାତ୍ୟାର ସଂକୋଚରେ କୁତ୍ସିତ ଜାତିଭେଦ ସ୍ପର୍ଶ ରୀତି ବା ଛୁତ୍‌ମାର୍ଗରେ ପରିଣତ ହେଲା । ସେଥିପାଇଁ ଯେଉଁ-ମାନେ ଆର୍ଯ୍ୟର ଅତି ସଂକୁଚିତ ଛୁତ୍‌ମାର୍ଗ ଜୀବନ ଉପରେ ଆକ୍ଷେପ କରନ୍ତି, ସେମାନେ ଅନୁଷ୍ଠାନଟିର ଭିତ୍ତି ନ ଜାଣି ବେଳେ ବେଳେ ହିନ୍ଦୁକୁ ମୁସଲମାନ ଓ ଖ୍ରୀଷ୍ଟିୟାନ ହେବାରେ ହିନ୍ଦୁର ଉଦ୍ଧାର ଦେଖନ୍ତି । ଯଥାର୍ଥ ସଂସ୍କାର ସେମାନଙ୍କର କର୍ମ ନୁହେ । ବିଧ୍ୱଂସ ଓ ବିଜାତୀୟ ପରିଣତିରେ ଜୀବନର ଭିତ୍ତି ବଦଳାଇ ମାନବୀୟତା ଓ ସଂସ୍କୃତି ସେମାନେ ଧ୍ୱଂସ କରନ୍ତି ମାତ୍ର । ସଂସ୍କୃତି ସର୍ବଦା ଐତିହାସିକ ଭିତ୍ତି ଉପରେ ପ୍ରତିଷ୍ଠିତ । ସେହି ଭିତ୍ତିର ଅବଲମ୍ବନରେ ବିକାଶ ନ ହେଲେ ମାନବର ସଂସ୍କୃତି ତଥା ଯୁଗ ଯୁଗାନ୍ତର ପରଂପରା ନଷ୍ଟ ହୁଏ । ମାନବ ଜାତିର ବିକାଶ ସେଥିରେ ରୁଦ୍ଧ ହୁଏ ।

ସାହିତ୍ୟରେ ମଧ୍ୟ ସେହିପରି । ଉପେନ୍ଦ୍ର ଭଞ୍ଜ ସାହିତ୍ୟକୁ ଆଦର୍ଶ କାବ୍ୟ କଳା ବୋଲି କେହି କହୁ ନାହାନ୍ତି । ଏହା ବରଂ ଅଳଙ୍କାର ଶାସ୍ତ୍ରର ମଣ୍ଡନ ବିକୃତିରେ—ବରଂ ଅତିମଣ୍ଡନ ପ୍ରୟାସରେ ପୂର୍ଣ୍ଣ । ମଣ୍ଡନ ଯେ ଏଥିରେ କେବଳ ଅନୁପାତ ହରାଇ ବସିଛି ସେତିକି ନୁହେ, ଗଠନ କଳା ଏଥିରେ ଅଦୃଶ୍ୟ ଓ ବିଲୀନ । ସଂସ୍କୃତ ସାହିତ୍ୟର ଗଠନ ଯୁଗରେ ଗଠନ ସଙ୍ଗେ ମଣ୍ଡନର ସ୍ୱତୋବିକାଶ ଶିଳ୍ପରେ ଫୁଟିଥିଲା । ଶିଳ୍ପର ବିଜ୍ଞାନ କ୍ରମେ ଆଲୋଚିତ ହୋଇ ଅଳଙ୍କାର ଶାସ୍ତ୍ରର ସୃଷ୍ଟି ହେଲା । ସେଥିରେ ଗଠନ ସଙ୍ଗେ ମଣ୍ଡନ କିପରି ରହିବ, ଆଲୋଚିତ ହୋଇଥିଲେ ହେଁ ଗଠନର ଆଲୋଚନା ବିଜ୍ଞାନରେ କଦାପି ସ୍ପଷ୍ଟ ହୋଇ ନ ପାରେ । 'ସ୍ମିତହାସିନୀ' ଏହି କଥାଟିରେ ଯେଉଁ ଗଠନର ସୂଚନା ଅଛି, ତାହା କୌଣସି ବିଜ୍ଞାନସୂତ୍ରରେ ଲେଖା ହେବ ନାହିଁ । ଏଥିପାଇଁ ଶିଳ୍ପର ପ୍ରତିଭା ଏକାନ୍ତ ଉପଯୋଗୀ । ନାକ କେତେ ଲମ୍ବ କଲେ ଏବଂ ସେହି ଅନୁପାତରେ ଓଠକୁ କେତେ ଓସାରି ଚିତ୍ରକଲେ ଏବଂ ଦାନ୍ତକୁ କେତେ ଦେଖାଇ ଦେଲେ ସ୍ମିତହାସ ଫୁଟିବ, ଏହା କେହି କହି ପାରିବେ ନାହିଁ । ଏହି ଗଠନର ଉପାଦାନକୁ ସେଥିପାଇଁ ଆଳଙ୍କାରିକ-ମାନେ ଧ୍ୱନି କହିଛନ୍ତି । ଏହା ବ୍ୟଞ୍ଜନା ବା ଇଙ୍ଗିତ । ଏଥିରେ ବିଶ୍ଳେଷଣର ଶୂଲ୍ୟ ଯନ୍ତ୍ର ନିରର୍ଥକ ।

ମାତ୍ର ମଣ୍ଡନର ସୌନ୍ଦର୍ଯ୍ୟ ସର୍ବଥା ବର୍ଣ୍ଣନୀୟ । ନାକ କେତେ ଲମ୍ବ କଲେ, ଓଠ କିପରି କଲେ, ଚିତା କେଉଁଠାରେ ଘେନାଇଲେ, କି ଅଳଙ୍କାର କେଉଁଠାରେ ଖଞ୍ଜିଲେ ମୂର୍ତ୍ତି

ସୁନ୍ଦର ହେବ, ତାହା ସମସ୍ତେ ଲେଖି ପାରିବେ ଏବଂ ଅଳଙ୍କାର ଶାସ୍ତ୍ରରେ ତାହା ଯଥେଷ୍ଟ ହୋଇଅଛି ।

ବିଶ୍ୱନାଥ ସାହିତ୍ୟ ଦର୍ପଣରେ ନିର୍ଣ୍ଣୟ କରିଛନ୍ତି "ବାକ୍ୟଂ ରସାତ୍ମକଂ କାବ୍ୟଂ"। ଅର୍ଥାତ୍ ରସାତ୍ମକ ବାକ୍ୟ ହିଁ କାବ୍ୟ । ଏହି ରସ ପ୍ରାଣର ସ୍ଥାୟୀ ଭାବକୁ କୌଣସି ଅନୁଭୂତିର ଉନ୍ମେଷ ବା ଆସ୍ୱାଦରେ ପ୍ରାଣ ଭାବାନ୍ୱିତ ହେଲେ ସେହି ସ୍ଥାୟୀ ଭାବକୁ ରସ କହନ୍ତି । ଏହା ଅନୁଭୂତିମାନରେ ମଧ୍ୟ ହୁଏ । ଏହାକୁ ବୁଝାଇବା କଠିନ । ଇନ୍ଦ୍ରଧନୁର ଶୋଭା ଦେଖି, ଦୁର୍ଭିକ୍ଷ କଙ୍କାଳର ବିଭିଷିକା ଦେଖି, ମୁର୍ଦାରର ମାଂସ ଓଟାରି ଖାଇବାରେ ଶ୍ୱାନ ଶକୁନି ତାଣ୍ଡବର ବିଭତ୍ସତା ଦେଖି, ଦେଶାତ୍ମବୋଧରେ ବୀରର ଆତ୍ମଦାନ ଦେଖି, ପୁତ୍ର ଶୋକରେ ଜନନୀର ହୃଦୟ ବିଦାରଣ ଦେଖି, ଆକବରଙ୍କ ସଙ୍ଗରେ ବୀରବଳଙ୍କ ଥଟ୍ଟିଲି କଥାର ବିବରଣ ପଢ଼ି, ହଟ ହଟା ଦିନ ଦିପହରେ ନ୍ୟାୟ ବିଚାର ନାମରେ ପୁଲିସର ଲୋକକୁ ଧକା କରିବାର ଦେଖି, ପୁଅ ମୁହଁ ଶୁଖି ଯାଇଥିଲେ ମାଆର ବ୍ୟାକୁଳତା ଦେଖି, ଯୁବତୀ ଚିଲ୍ଲି ଗୃହଭିତରେ ଯୁବ ପ୍ରାଣ ଥରି ଉଠିବାର ଅନୁଭବ କରି, ପ୍ରାଣରେ ଯେ କଣ ହୋଇଯାଏ, ତାହା କିଏ ଲେଖି ବୁଝାଇବ ? କାବ୍ୟରେ ମଧ୍ୟ ସେ କଥା ହେବ ନାହିଁ । କେବଳ ଘଟଣାର ସମାବେଶ ଲେଖି ସେ ସବୁ ସ୍ଥାୟୀଭାବ ପ୍ରତି ଇଙ୍ଗିତ, ସୂଚନା ବା ଆଳଙ୍କାରିକ ଭାଷାରେ ଧ୍ୱନିହିଁ ଦିଆଯାଇ ପାରେ । ଏହି ଘଟନା ବା ଚଳଣି ମାନଙ୍କର ସମାବେଶରେ ଏହି ଧ୍ୱନି ଫୁଟାଇବା ହିଁ କାବ୍ୟର ପ୍ରାଣ । ଅନୁଭୂତି ସର୍ବଦା ଅନନ୍ତ । ତାହା ଯୁକ୍ତିର ବିଶ୍ଳେଷଣରେ ଆବଦ୍ଧ ହୋଇ ନ ପାରେ । ତେଣୁ ତାହାର ସୂଚନା ଛଡ଼ା ବିବୃତି ଅସମ୍ଭବ । ଏହି ସୂଚନାରେ ସ୍ଥାୟୀଭାବ ବା ରସ ସ୍ଫୁଟ ଓ ଉଦ୍ଭିନ୍ନ ହୁଏ ।

ଏ କାବ୍ୟରେ ଯଥାର୍ଥ ଗଠନ ଶିଳ୍ପ । ଏହି ଗଠନରେ ଘଟନା ବା ଚଳଣିର ସାଧୁ ସମାବେଶ ଦ୍ୱାରା ପାଠକକୁ ଅବସ୍ଥା ଭେଦରେ ପକାଇ ତାହାର ରସାନୁଭୂତି ଫୁଟାଇବାକୁ ହୁଏ । ଅଳଙ୍କାର ଶାସ୍ତ୍ର ଏହି କଥା ଉଦାହରଣରେ ବ୍ୟାଖ୍ୟା କରିବାକୁ ଯାଇ ସେହି ସେହି ଘଟଣା ଓ ଚଳଣିର ସମାବେଶ ବର୍ଣ୍ଣନା କରି ଦେଖାଇ ଦେବାକୁ ଚେଷ୍ଟା କଲେ । କ୍ରମେ କାବ୍ୟ କଳା ସୂଚନାର ଗଠନ ଛାଡ଼ି ଘଟନା ସମାବେଶର ମଣ୍ଡନ ଆଡ଼କୁ ଖସି ଆସିଲା ।

ଶୃଙ୍ଗାର ଆଦିରସ । ଯେତେ ପ୍ରକାର ରସ ବା ସ୍ଥାୟୀଭାବ ଅଛି ତା ମଧ୍ୟରେ ଯୁବକ ଯୁବତୀର ମିଳନ ଭାବ ସବୁଠାରୁ ବିଶେଷ ସ୍ଥାୟୀ ଏବଂ ସୃଷ୍ଟିର ନିତ୍ୟ ନିୟମର ଅଙ୍ଗୀଭୂତ । ସ୍ଥାବର ଜଙ୍ଗମ ଜୀବମାତ୍ରର ଏହା ପ୍ରକୃତିଗତ । ଏଥିରେ ହିଁ ବିଶ୍ୱର୍ଯ୍ୟ ସ୍ଥିତିର ଯଥାର୍ଥ ସ୍ଥିତିତ୍ୱ । ଭୂତ ସଂଘର୍ଷରେ ପରିଣତ ହୋଇ ଧ୍ୱଂସ ପାଇବା ଜୀବର ନିୟତି ।

ମାତ୍ର ସେହି ସଂଘର୍ଷରେ ଚିରନ୍ତନ ସଂଗ୍ରାମ ମଧ୍ୟ ତାର ପ୍ରକୃତି । ପୂର୍ଣ୍ଣ ବିକଶିତ ଜୀବ ଏହି ସଂଗ୍ରାମ ଲଗାଇ ରଖିବାକୁ ଯେପରିକି ଅଜ୍ଞାତ ବିଶ୍ୱ ନିୟମରେ ବୀଜ ବିକ୍ଷେପରେ ପ୍ରୟାସୀ ହୁଏ । ଏହିଠାରେ ହିଁ ଶୃଙ୍ଗାର ରସର ଆବିର୍ଭାବ ବା ଅନୁରାଗର ଉନ୍ମେଷ ।

ଏହି ରସର ସ୍ଥାୟିତ୍ୱ ମଧ୍ୟ ଅତି ମହୀୟାନ । ଏହି ଶୃଙ୍ଗାରରେ ହିଁ ଜୀବ ପୂର୍ଣ୍ଣ ଆତ୍ମବିସ୍ମୃତି ଅନୁଭବ କରେ । ଏଥିପାଇଁ ପୁରାଣର ବିଲ୍ୱମଙ୍ଗଳ ବର୍ଦ୍ଧି ନଦୀ କିମ୍ବାର ଧରି ପହରି ଯାଇ, ସାପ ଧରି ପାଚେରୀ ଡେଇଁ ଯୁବତୀର ସଂଗମ ଲୋଡ଼ିଥିଲେ । ସେ ବିଲ୍ୱମଙ୍ଗଳ କେବଳ ପୁରାଣର କଳ୍ପନା ନୁହେ । ଯୁଗେ ଯୁଗେ ଯୁବ ପ୍ରାଣରେ ପୂର୍ଣ୍ଣ ବିଲ୍ୱ-ମଙ୍ଗଳର ଆବିର୍ଭାବ ହୋଇ ଆସୁଅଛି । ସେଥିପାଇଁ ଏହି ବିଲ୍ୱମଙ୍ଗଳ ଭାବରେ ଭକ୍ତ ପ୍ରଭୁର ଉପାସନା କରିବା ପାଇଁ ସମସ୍ତ ବୈଷ୍ଣବ ବ୍ରଜଲୀଳା ଦର୍ଶନର ସୃଷ୍ଟି କରି ଅଛି ଏବଂ କବି ମାତ୍ରେ ଏହି ସ୍ଥାୟୀ ବିଶ୍ୱଭାବ ଚିତ୍ରଣରେ ଆତ୍ମ ନିୟୋଗ କରି ଅଛନ୍ତି ।

କାବ୍ୟରେ ଶୃଙ୍ଗାର ସଙ୍ଗେ ସଙ୍ଗେ ଘଟନା ସମାବେଶରେ ଅନ୍ୟାନ୍ୟ ରସ ମଧ୍ୟ ଫୁଟି ଉଠେ । କିନ୍ତୁ ଅଳଙ୍କାର ଯୁଗର ମଣ୍ଡନ କାବ୍ୟ ଶିଳ୍ପରେ ତାହା ତାଦୃଶ ହୋଇ ନାହିଁ । ନ ହେବାର କଥା । ଗଠନ ଛାଡ଼ି ମଣ୍ଡନରେ ଆତ୍ମବିସ୍ମୃତ ହେଲେ ସଂଶ୍ଳେଷଣ ଓ ସୃଷ୍ଟି ଛାଡ଼ି ବିଶ୍ଳେଷଣ ଓ ବିନାଶ ପନ୍ଥାରେ ନିଜକୁ ଭସାଇ ଦେଲେ ଗଠନର ଯେଉଁ ଉପାଦାନଟି ସ୍ୱଷ୍ଟ ଆଖିରେ ପଡ଼େ, ସେହିଥିରେ ହିଁ ଶିଳ୍ପୀ ଭୁଲି ରହିବା ସ୍ୱାଭାବିକ । କାହିଁକିନା ଉପାଦାନର ସମନ୍ୱୟରେ ଗଢ଼ିବାର ଭାବ ନ ଆସିବାରୁ ଯେଉଁ ଉପାଦାନଟି ବେଶି ଆଖିରେ ପଡ଼େ ଓ ବେଶି ପ୍ରୀତିକର ବୋଧହୁଏ ସେହିଟିରେ ଯଥେଚ୍ଛା ଶିଳ୍ପ ଯନ୍ତ୍ର ଚଳାଇବା ସ୍ୱାଭାବିକ ।

ଖୋଦନ ବା ଚିତ୍ର ଶିଳ୍ପରେ କଥାଟିର ଉଦାହରଣ ଦେଖାଇବା ପାଇଁ ଶିଳ୍ପର ଗଠନ ଯୁଗରେ ନାରୀ ପୁରୁଷର ଭିନ୍ନ ଭିନ୍ନ ଅବସ୍ଥାନରେ ପେଶି ସମାବେଶ ଫୁଟାଇ ଦିଆଯାଇ ପାରେ । ଏଥିରେ ଅସ୍ୱାଭାବିକତା କିଛି ନାହିଁ ।

# 'ଲାବଣ୍ୟବତୀର' କଥା *

## ସାହିତ୍ୟରେ ବ୍ୟକ୍ତିତ୍ୱ:—

ବ୍ୟକ୍ତି ଓ ଜାତିପରି ସାହିତ୍ୟର ମଧ୍ୟ ଗୋଟିଏ ବ୍ୟକ୍ତିତ୍ୱ ଅଛି । ଯେ ବ୍ୟକ୍ତିତ୍ୱର ଉପାଦାନ ତିନୋଟି । ଏକ—ପରମ୍ପରା, ଦୁଇ—ପୂର୍ବଦୃଷ୍ଟି, ତିନି—ପରିସ୍ଥିତି । କୁକୁର କାଲି ଦୁଧ ଉଡ଼ି ଦେଇଥିଲେ ଆଜି ତାକୁ ମାରି ଲାଭ କିଛି ନାଇ, କାରଣ ତାର ବ୍ୟକ୍ତିତ୍ୱ ନାଇ। କାଲି ଦୁଧ ଉଡ଼ି ଥିବା ତାର ମନେ ନାଇ—ତାର ପରମ୍ପରା ନାଇ । ପୁଣି ଦୁଧ ଉଡ଼ିଲେ କଣ ହେବ, ତାହା ତାକୁ ଜଣା ନାଇ—ତାର ପୂର୍ବଦୃଷ୍ଟି ନାଇ । ଆଜି ଦୁଧ ଉଡ଼ିବି କି ନାହିଁ ସେ ତାହା ଜାଣୁନାଇ—ତାର ପରିସ୍ଥିତି-ଜ୍ଞାନ ନାଇ । କିନ୍ତୁ ମନୁଷ୍ୟ ପଚାଶ ବର୍ଷ ତଳେ ଚୋରି କରିଥିଲେ ହେଁ ଆଜି ଅନୁତାପ କରୁଚି ଓ ଦଣ୍ଡ ମଧ୍ୟ ପାଉଚି । ସାହିତ୍ୟରେ ସେହିପରି । ଆମ ସାହିତ୍ୟରେ ଆଗ ଦେଖିବାକୁ ହବ ପରମ୍ପରା କଣ ? ତା ପରେ ପୂର୍ବଦୃଷ୍ଟି । ସେହି ପୂର୍ବଦୃଷ୍ଟିକୁ ଧରି ଆମର ବର୍ତ୍ତମାନର ପରିସ୍ଥିତିକୁ ଦେଖିବାକୁ ହବ ।

ଏ କ୍ଷେତ୍ରରେ ସାହିତ୍ୟ କଥା ବିଚାର କଲାବେଳେ ଆମକୁ ଇତିହାସ ଆଡ଼କୁ ଟିକିଏ ଆଖି ଦେବାକୁ ହବ । ସାହିତ୍ୟ ବୋଇଲେ ମାନବ ବିକାଶର ପ୍ରକାଶ । ଲେଖା ବହିରୁ ମାନବ ବିକାଶର ପ୍ରକାଶ ଜଣା ପଡ଼େ । ଏପରି ସ୍ଥଳେ ଇତିହାସ ହେଉଚି ଏ ବିଚାରରେ ପ୍ରଧାନ ଉପାଦାନ । ଭଞ୍ଜୀୟ ସାହିତ୍ୟରେ ଅଶ୍ଳୀଳତାର ଆକ୍ଷେପ ଯେଉଁମାନେ କରନ୍ତି, ସେମାନଙ୍କର ବୁଝିବା ଉଚିତ ଯେ, ଭାରତୀୟ ସାହିତ୍ୟରେ ଠିକ୍ ଉପେନ୍ଦ୍ରଭଞ୍ଜଙ୍କ ଭଳି ଅଶ୍ଳୀଳତା ଆରମ୍ଭ କରିଥିଲେ ଆଗେ ପୂର୍ବସୂରୀ ମାନେ । ଉଦାହରଣ ସ୍ୱରୂପ'ନୈଷଧ'କୁ ଦେଖ । 'ନୈଷଧ' କାବ୍ୟର ଲେଖକ ଶ୍ରୀହର୍ଷ କେଉଁଠାର ବ୍ୟକ୍ତି, ତାହା ଅବଶ୍ୟ କହି ହେଉ ନାଇ । କିନ୍ତୁ 'ନୈଷଧ' ଯାହା ଉପରେ ପ୍ରତିଷ୍ଠିତ, 'ନୈଷଧ'ର ଶୈଳୀ ସୌଷ୍ଠବ ଫୁଟାବାରେ ସେଇ ମୁଖ୍ୟ ଅବଲମ୍ବନ ହେଉଚି ଭାରତର ଅଳଙ୍କାର ତତ୍ତ୍ୱ । ଭାରତର ମଧ୍ୟ ଯୁଗରେ ଆମର ପ୍ରଧାନ ଅବଲମ୍ବନ ହେଉଚି ଅଳଙ୍କାର । ନରସିଂହ ଦେବଙ୍କ 'ଏକାବଳୀ' ତଥା ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ-ଦର୍ପଣ' ପ୍ରଭୃତି ମହାଗ୍ରନ୍ଥ ମାନ ଏ କ୍ଷେତ୍ରରେ ବିଶେଷ ରୂପେ ସ୍ମରଣୀୟ । ଏହି ମଧ୍ୟ ଯୁଗରେ ଏହି ଅଳଙ୍କାର ଶାସ୍ତ୍ରକୁ ଧରି ସାହିତ୍ୟକୁ ବଞ୍ଚାଇ ରଖିବା ଏପରିକି ଉଠାଇବାର କଳ୍ପନା ପଣ୍ଡିତ ମାନଙ୍କ ମଧ୍ୟରେ ସାଧାରଣ ଥିଲା । ଏଇଥାକୁଇ କାର୍ଯ୍ୟରେ ପ୍ରକାଶ କରି ଦେଖାଇ ଆଳଙ୍କାରିକ ମାନେ କାବ୍ୟରେ ଧ୍ୱନି ବା ସଙ୍କେତ ଚର୍ଚ୍ଚା

* ୧୯୫୩ ସାଲ୍‌ର ଭଞ୍ଜ ଜୟନ୍ତୀରେ ୧୬ । ୫ । ୫୭ ତାରିଖରେ ଦେଇଥିବା 'ଅଭିଭାଷଣ'ରୁ ସଙ୍ଗୃହୀତ ।

କରୁଥିଲେ । 'ଧ୍ୱନ୍ୟା ଲୋକ' ବୋଲି ସେଥିପାଇଁ ଅଳଙ୍କାର ଶାସ୍ତ୍ର ସୃଷ୍ଟି ହୋଇଥିଲା । 'ନୈଷଧ' ପ୍ରଭୃତିର ଟୀକାକାର ମାନେ ସେହି ଧ୍ୱନି ବା ସଙ୍କେତ ଆଲୋଚନାରେ ବହୁ ପ୍ରଯତ୍ନ ପ୍ରକାଶ କରି ସାହିତ୍ୟକୁ ଜୀବନ୍ତ କରିଥିଲେ । ଏହି ଧ୍ୱନି ବା ସଙ୍କେତ ହେଉଚି ସାହିତ୍ୟର ପ୍ରାଣ । ଉଦାହରଣ ସ୍ୱରୂପ ଉପେନ୍ଦ୍ର ଭଞ୍ଜରେ ଦେଖ–'ଲାବଣ୍ୟବତୀ' ଆଦ୍ୟ ଯୌବନର ସଙ୍କେତ ଲାଭ କରି ଶଯ୍ୟାରୁ ଉଠି ବାହାରି ଆସିଲା ବେଳେ ସଖୀମାନେ ଥଟା କରି କହୁ ଅଛନ୍ତି–

"ବାଣୀ କୋକିଳୁ ମଧୁର ହେବାରୁ
ନଖ ନିଆଳୀ ଛବି ବହିବାରୁ
ହୃଦ ନଦରେ ଚିତ୍ତ ରଞ୍ଜିବାରେ
ସ୍ତନ କମଳ କଳି ବଢିବାରେ
କାନ୍ତି କେତକୀ ଦିନୁ ଦିନୁ ଗ୍ରହୁ
ଗ୍ରହିଁ ଆମ୍ଭେମାନେ ମନେ ବିଗ୍ରହୁଁ ।
ପୁଷ୍ପ–ସମୟ ହେଲଣି ନିକଟ
ସତ କହ ହୋଇଲା କି ପ୍ରକଟ ।"

ଏହି ପରମ୍ପରର ସଙ୍କେତକୁ କି ପୁରୋଦୃଷ୍ଟିରେ କେଉଁଠାରେ ମାପି ପରିସ୍ଥିତିର ପ୍ରକାଶରେ 'ବିଜୁଳି'ରେ କବିବର ରାଧାନାଥ ଯେପରି କହିଛନ୍ତି, ଆଧୁନିକତାର ଆଉ ବିଶେଷ ଉଦାହରଣ ନ ଦେଇ, ତା ଏଠାରେ ଉଦ୍ଧାର କରାଯାଉ–' ଏ ବାଳାକୁ ବନବାସ ସହାଇଲେ ବିଧି ଆହା କି ବିଗ୍ରହରେ । ସମୀ ଛେଦିବାକୁ ଲୋଡ଼ିଲେ ସିନା ସେ ନୀଳୋତ୍ପଳ ଦଳ ଧାରେ" ସଙ୍କେତଟି ମନ୍ଦ ନୁହେ । ତେଣୁ ଧ୍ୱନି ହୁଏତ ଏଥିରେ ଖୁବ୍ ଅଛି । କିନ୍ତୁ ରାଧାନାଥ କାହାକୁ ନ ଜଣାଇ ଅନ୍ୟାନ୍ୟ ଅନେକ ଶ୍ଳୋକ ଭଳି ପରି ଏହାକୁ କାଳିଦାସରୁ ଅନୁବାଦ କରିଛନ୍ତି । କାଳିଦାସଙ୍କ 'ଶକୁନ୍ତଳା'ରେ ଦୁଷ୍ମନ୍ତ ଶକୁନ୍ତଳାକୁ ଦେଖି କହୁଛନ୍ତି—

'ଇଦଂ କିଲା ବ୍ୟାଜ ମନୋହର ବପୁଃ,
ତପକ୍ଷମଂ ସାଧୟିତୁଂ ଯ ଇଚ୍ଛତି ।
ନୂନଂ ସ ନୀଳୋତ୍ପଳ ପତ୍ର ଧାରୟା,
ସମୀଲତାଂ ଛେତୁ ମୃଷିର୍ବ୍ୟବସ୍ୟତି "

ଇତିହାସର କି ପ୍ରେରଣା, ପୁରୋଦୃଷ୍ଟିର କି ନିକର୍ଷରେ ଉପର୍ଯ୍ୟୁପରି ପରିସ୍ଥିତି ତିଆରି କରି ଆସିଚି ତା ଦେଖିବାର କଥା । ଅବଶ୍ୟ ପରିସ୍ଥିତିଟା ସର୍ବଦା ନିଜେ ନିଜେ ତିଆରି ହୁଏ ନାହିଁ । ପୁରୋଦୃଷ୍ଟିରେ ମଧ୍ୟ ଦ୍ରଷ୍ଟା ସୁଲଭ ବିଚକ୍ଷଣତା ବେଳେ ବେଳେ

ପରିସ୍ଥିତିର ଯୋଜନାରେ ବହୁ ସାହଯ୍ୟ କରେ । ବ୍ୟକ୍ତିତ୍ୱର ବିକାଶରେ ସେଥିପାଇଁ ପରିସ୍ଥିତି ନିଜ କୃତ । ଏପରି ନିଜକୃତ ପରିସ୍ଥିତି ବ୍ୟକ୍ତିର ସ୍ୱାଧୀନ ବିକାଶରେ. ବହୁତ ଦେଖାଯାଏ । ଏଠାରେ ବ୍ୟକ୍ତି ବୋଇଲେ ମାନବିକ ତଥା ସେହିପରି ସାହିତ୍ୟିକ । ଓଡ଼ିଶାରେ ସେହି ବିକାଶ କିପରି କରିଚି, ତାହା ଇତିହାସର ଆଲୋଚନାରେ ମଧ୍ୟେ ମଧ୍ୟେ ସଂକେତରେ ଦେଖିବାକୁ ହେବ ।

## ଓଡ଼ିଆ ସାହିତ୍ୟର ପ୍ରଥମ ବିକାଶ:—

• ଓଡ଼ିଆ ସାହିତ୍ୟର ପ୍ରଥମ ବିକାଶ ଦେଖାଯାଏ 'ଶ୍ରୀମଦ୍‌ଭଗବଦ୍‌ଗୀତା' ରେ । ଭଗବାନ କହିଛନ୍ତି–" ଅତୋଽହଂ ଲୋକେ ବେଦେଚ ପ୍ରଥିତଃ ପୁରୁଷୋତ୍ତମଃ ! " ଅର୍ଥାତ୍, ଅତଏବ ଲୋକରେ ବା ଜନମାନଙ୍କ ମଧ୍ୟରେ ଓ ବେଦରେ ଅର୍ଥାତ୍ ଜ୍ଞାନରେ ମୁଁ ପୁରୁଷୋତ୍ତମ ବୋଲି ପ୍ରତିଷ୍ଠିତ । ଏଠାରେ ଅର୍ଥ କରିବାରେ କୌଣସି ସନ୍ଦେହ ଅଛି ବୋଲି ମନେ ହେଉନାହିଁ ଯେ ଲୋକରେ ଉପାସ୍ୟ ରୂପେ ପ୍ରତିଷ୍ଠିତ ପୁରୁଷୋତ୍ତମ ସେତେବେଳେ କେଉଁଠାରେ ? କିଏ ? ପୁରୁଷୋତ୍ତମ ବୋଲି ଉପାସ୍ୟ ଦେବତା ପୂର୍ବେ ଭାରତବର୍ଷରେ କଳିଙ୍ଗର ଏଇ ପୁରୁଷୋତ୍ତମ ( ପୁରୀ ସହର )ଛଡ଼ା ଆଉ କେଉଁଠାରେ ନ ଥିଲା । ଅତଏବ ସେତେବେଳେ ମଧ୍ୟ ଏ ସ୍ଥାନଟି ସମସ୍ତ ଭାରତରେ ନ ହେଲେହେଁ 'ଶ୍ରୀମଦ୍‌ଭଗବଦ୍‌ଗୀତା' ଲେଖକଙ୍କ ପାଖେ ସୁପରିଚିତ ଥିଲା । ହେଲେହେଁ ଏହା କେତେବେଳର କଥା, ପୁଣି ସେତେବେଳେ ଏଠାରେ ପ୍ରାକୃତ ଭାଷା କଣ ଥିଲା, କହି ହେଉନାଇ । ହେଲେହେଁ ଏହା ନିଶ୍ଚୟ ଶଙ୍କରାଚାର୍ଯ୍ୟଙ୍କ ପୂର୍ବ କାଳର କଥା । ଶଙ୍କରାଚାର୍ଯ୍ୟଙ୍କ ବେଳକୁ 'ଗୀତା' ବହୁ କାଳରୁ ପ୍ରତିଷ୍ଠିତ ସାହିତ୍ୟ ଥିଲା ।

ଦ୍ୱିତୀୟତଃ ଖ୍ରୀଷ୍ଟ ଅଷ୍ଟମ ଶତାବ୍ଦୀର ପ୍ରଥମ ଭାଗରେ ଉଡ୍‌ଡ଼ୀୟାନର ରାଜା ଇନ୍ଦ୍ରଭୂତି ଲେଖିଥିଲେ 'ଜ୍ଞାନସିଦ୍ଧି' । 'ଜ୍ଞାନସିଦ୍ଧି' ର ପ୍ରଥମ ନମସ୍କାର ଶ୍ଳୋକ ହେଉଚି–

" ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ଶୁଦ୍ଧଂ ବ୍ୟାପିନୋ ଗଗନୋପମମ୍ "

ଅର୍ଥାତ୍, ଜଗନ୍ନାଥଙ୍କୁ ପ୍ରଣିପାତ କରି ମୁଁ ଏ ପୁସ୍ତକ ଲେଖୁଚି । ସେ ଜଗନ୍ନାଥ ହେଉଛନ୍ତି ସବୁ ଜିନଶ୍ରେଷ୍ଠ ମାନଙ୍କର ଅର୍ଚ୍ଚିତ । ପୁଣି ସେ ହେଉଛନ୍ତି ପୂର୍ଣ୍ଣ ବୁଦ୍ଧ ସ୍ୱରୂପ । ସେ ହେଉଚନ୍ତି ଶୁଦ୍ଧ ଓ ଆକାଶ ପରି ସର୍ବବ୍ୟାପୀ ।

ଏହିଠାରେ ଦେଖିବାର ଅଛି ଏହି ଇନ୍ଦ୍ରଭୂତି ହେଉଚନ୍ତି ପୂର୍ବ ଭାରତୀୟ ବଜ୍ରଯାନ ସାଧନାର ଏକ ସିଦ୍ଧ । ଯେତେ ଦୂର ଜଣାଯାଏ ତାଙ୍କର ଭକ୍ଷାଭକ୍ଷ ଓ ଗମ୍ୟାଗମ୍ୟାଦି ବିଚାର ନଥିଲା । ଉଡ୍‌ଡ଼ୀୟାନ ପୀଠକୁ ଓଡ଼ିଶା ବୋଲି ହରପ୍ରସାଦ ଶାସ୍ତ୍ରୀ ଓ ବିନୟ

ଭଟାଚାର୍ଯ୍ୟଙ୍କ ଭଳି ପଣ୍ଡିତମାନେ ସ୍ଥିର କରିଚନ୍ତି । ମାତ୍ର ଏହି ଉଡ୍ଡୀୟାନ ପୀଠର ପୁରୀ ବା ଜଗନ୍ନାଥଙ୍କ ସହିତ ଯଦି କିଛି ସମ୍ପର୍କ ଥାଏ, ସେଥିରେ ବ୍ରଜଯାନର ଗମ୍ୟାଗମ୍ୟାଦି ବିଗ୍ଭର ପ୍ରକାଶ ପଡ଼ି ନଥିଲା । ପରବର୍ତ୍ତୀ କାଳରେ ମଧ୍ୟ କଦାପି ସେ ରୀତିର ଶରୀର ସାଧନା ଉତ୍କଳଭୂମିରେ ପ୍ରକାଶ ପାଇ ନାଇ । ମାତ୍ର ଏହି ଭକ୍ଷାଭକ୍ଷ ଗମ୍ୟାଗମ୍ୟାଦି ବିଗ୍ଭରକୁ ସାଧୁ ବୋଲି ପ୍ରଗ୍ଭର କରିବା ପାଇଁ ପୂର୍ବଭାରତରେ ବ୍ରଜଯାନୀ ତଥା ସହଜ ଯାନୀମାନେ ଉଡ୍ଡୀୟାନ ବା ଓଡ଼ିଶାକୁ ନିଜର ଆଦିପୀଠ ପରି ପ୍ରଗ୍ଭର କରିଚନ୍ତି । ଏଥିରୁ ବାହାରିଥିବା ଅନ୍ୟ ତିନୋଟି ପୀଠ ହେଇଚି—କାମାକ୍ଷା, ଶ୍ରୀହଟ୍ଟ ଓ ପୂର୍ଣ୍ଣଗିରି । ଏ ସବୁ ପୂର୍ବୋତ୍ତର ଭାରତର ସ୍ଥାନ । ଏସବୁ ଶରୀର ସାଧନାରେ ପଞ୍ଚମକାରଙ୍କୁ ଯୋଡ଼ି ରଖିଥିଲେ । ଉଡଡ଼ୀୟାନର ଶରୀର ସାଧନା ସଂଯମଭିତ୍ତିପରେ ପୁରାପୁରି ପ୍ରତିଷ୍ଠିତ ଥିଲା । ତେଣୁ ବ୍ରଜଯାନର ତନ୍ତ୍ର ପରମ୍ପରା ଏହି ଉଡ୍ଡୀୟାନରୁ ବାହାରି ଥିଲା ବୋଲି ସେମାନେ ପ୍ରଗ୍ଭର କରି ନିଜର ପଞ୍ଚମକାରଗତ ଶରୀରସାଧନା ଓ ତହିଁ ସଙ୍ଗେ ସିଦ୍ଧପରମ୍ପରା ତିଆରି କରିଥିଲେ । ସେହି କାରଣରୁ ମଧ୍ୟ ମନେହୁଏ ସେତେବେଳର ଉଡ୍ଡୀୟାନ ବା ଓଡ଼ିଶା ପ୍ରାକୃତ, ପୂର୍ବଭାରତର ବଜ୍ରଯାନୀ ବୌଦ୍ଧଙ୍କର ଧର୍ମ ଭାଷା ଥିଲା । ହରପ୍ରସାଦ ଶାସ୍ତ୍ରୀ ନେପାଳରୁ ବୌଦ୍ଧଯାନ ବା ଦୋହାଁ ବୋଲି ଯେଉଁ ସବୁ ଗାନ ବାହାର କରିଚନ୍ତି, ତାହା ସେ କାଳର ପ୍ରାକୃତ ବୋଲି ପ୍ରକାଶିତ ହୋଇଚି ଓ ସେଥିରେ ଅନେକ ଲେଖକ ତଥା ସିଦ୍ଧ ଓଡ଼ିଆ ଅଛନ୍ତି ବୋଲି ପଣ୍ଡିତମାନେ ପୂର୍ଣ୍ଣ ସନ୍ଦେହ କରୁଚନ୍ତି । ପଣ୍ଡିତ ବିନାୟକ ମିଶ୍ର କହନ୍ତି, ସେ ସମସ୍ତେ ଥିଲେ ଓଡ଼ିଆ ଓ ତାଙ୍କ ଭାଷା ଥିଲା, ସେକାଳ ଓଡିଆ ପ୍ରାକୃତ ।

## ଭୌମମାନଙ୍କ ଲେଖାର ଶୈଳୀ:-

ଠିକ୍ ସେହି ସମୟରେ ଓଡ଼ିଶାରେ ଥିଲା ଭୌମବଂଶ ବା ଉତ୍କଳକୁଳର ରାଜତ୍ୱ । ଭୌମମାନେ ଥିଲେ ଖୁବ ସମ୍ଭବ ଏହି ଭୂମିର । ସେମାନଙ୍କର କେତେକ ଲେଖ ମିଳୁଚି । ସେ ସବୁର ଶୈଳୀ, ଠିକ୍ ' ନୈଷଧ '' ପରି । ମନେହୁଏ, ସେତେବେଳକୁ ମଧ୍ୟ ଓଡ଼ିଶାରେ ଅଳଙ୍କାର ଶାସ୍ତ୍ରର ବିକାଶ ପ୍ରତିଷ୍ଠିତ ଥିଲା ଓ ପଣ୍ଡିତମାନେ ସେହି ଅଳଙ୍କାରକୁ ଧରି ନିଜର କବିତା ଲେଖୁଥିଲେ । ଗୋଟିଏ ଭୌମ ଲେଖ ଶ୍ଳୋକ ଦେଖ - ଏଥିରେ ସେ କାଳର ରାଜଧାନୀ ' ଗୁହେଶ୍ୱର ପାଟକ ' କୁ ଶରତ ଋତୁ ସଙ୍ଗେ ସମାନ ବୋଲି ବର୍ଣ୍ଣିତ ହୋଇଚି ।

" ( ଓଁ ) ସ୍ୱସ୍ତି ବ୍ୟସ୍ତଜଳାଭ୍ର ବିଭ୍ରମଧରୈଃ
ଶ୍ୱେତା ପେତଭ୍ରାତ୍ କରୈ ।

ରଣ୍ଡୀଯୈଃ ଶ୍ରୁତିଗ୍ରମରୈଷ୍ଟ
ହସିତ ବ୍ୟାକୋଷ କାଶୋଦୟୈଃ ।।
ଉଦାମୈର୍ମ୍ମଦ ସୌରଭୈଷ୍ଟ
କରିଣା ମାକ୍ଷିପ୍ତସପ୍ତଚ୍ଛଦା ମୋଦୈଃ
ସର୍ନ୍ନିହିତାଂ ସଦୈବ ଶରଦାରଂଭ ଶ୍ରୟବିଭତଃ । ’’

ଅର୍ଥାତ୍ କବି ଯାହା ଲେଖିଚନ୍ତି ତା’ର ମର୍ମ ହେଉଚି, ( ଯେଉଁ ଗୁହେଶ୍ୱର ପାଟ-କଣ୍ଟୁ ସମ୍ରାଟ ଏ ଦାନ ଦେଉଚନ୍ତି ସେହି ଗୁହେଶ୍ୱର ପାଟକ ଶରତ ଋତୁ ଆରମ୍ଭର ଶୋଭକୁ ଧାରଣ କରିଚି ) କିପରି ନା ଧଳା ଗଜଛତ୍ର ସବୁ ସହରରେ ବ୍ୟାପ୍ତ ହୋଇଚି ( ବହୁତ ଛତ୍ରଧାରୀ ବିଜିତ ରଜା ସେ ସହରରେ ଅଛନ୍ତି ) । ସେ ସବୁ ଶରତ କାଳରେ ବର୍ଷାରେ ଜଳଶୂନ୍ୟ ହୋଇ ଆକାଶରେ ଘସୁଥିବା ଧଳା ବଉଦ ପରି ହୋଇଚି । ତା ପରେ ଘୋଡ଼ାମାନଙ୍କର ମୁଣ୍ଡରେ ଯେଉଁ ଧଳା ଚାମର ସବୁ ଅଛି କିମ୍ବା ଧଳାଘୋଡ଼ାଙ୍କ ବେକର ଶ୍ୱେତ କେଶର ସବୁ ଶରତ କାଳରେ ଫାଟି କରି ବାହାରି ପଡ଼ିଥିବା କାଶତଣ୍ଡୀ ଫୁଲମାନଙ୍କ ପରି ଦିଶୁଚି । ତାପରେ ଶରତ-କାଳରେ ଛଇତନା ଗଛରେ ଫୁଲ ହୁଏ ଓ ସେହି ଫୁଲ ଓ ତା କ୍ଷିରରୁ ଯେଉଁ ଆମୋଦ ବାହାରେ ଏଠାରେ ଥିବା ଅତି ଉଦାମ ମଦ-ବାରି ସୁବାସିତ ହସ୍ତୀମାନଙ୍କ ଗଣ୍ଡରୁ ବାହାରୁ ଥିବା ସୁବାସ ତାହାରି ପରି ହୋଇଚି । ପୁଣି ଦେଖ, ଭୌମ ବଂଶର ଶେଷ ନାରୀ ସମ୍ରାଟ ଦଣ୍ଡୀ ମହାଦେବୀଙ୍କ ଲେଖାରେ ଅଛି—

“ଉଦ୍ୟନେଷୁ ଶିଳୀମୁଖା ବଳିରବୋ ହାରେଷୁ ମୁକ୍ତା ସ୍ଥିତି
ର୍ଦୋଷାସଙ୍ଗରୁଚି ସ୍ତୁଷାର କିରଣେ ବିଙ୍କେଷୁ ସଦ୍ୱେଷତା
ଗହୌ ତୀକ୍ଷ୍ଣକର ଗ୍ରହଃ କୁମଣିଷୁ ଦ୍ରାସୋଦୟଃ କେବଳଂ
କାନ୍ତା କୁନ୍ତଳ ସନ୍ତତୌ କୁଟିଳତା ଯସ୍ୟାଃ ପ୍ରଭୁତ୍ୱଂ ଭୁବି”

ଏହାର ଅର୍ଥ ହେଉଚି, ଏହାଙ୍କ ରାଜତ୍ୱରେ ଶିଳୀ ମୁଖା ବଳିରବୋ (ଶର-ମାନଙ୍କର ଶନ ଶନ ଶବ୍ଦ, ବା ଶ୍ଳେଷାର୍ଥେ ଭ୍ରମରମାନଙ୍କ ଶବ୍ଦ, ଶିଳୀ ମୁଖ=ଶର, ଭ୍ରମର) କେବଳ ଉଦ୍ୟାନରେ ଅଛି (ଯୁଦ୍ଧ ନାଇ) । ମୁକ୍ତା (ସ୍ୱୈରିଣୀ ନାରୀ, ମୋତି) କେବଳ ହାରରେ ଅଛି (ନାରୀଙ୍କର ଯୌନ ଚରିତ୍ର ସ୍ଖଳନ ନାଇ) । ଦୋଷା (ଦୋଷ ଯୁକ୍ତା ନାରୀ ବା ବିଟପୀ; ରାତ୍ରି) ସଙ୍ଗ କରିବାର ରୁଚି କୌଣସି ପୁରୁଷଠାରେ ନାଇ । ଏହା କେବଳ ତୁଷାର କିରଣ (ଚନ୍ଦ୍ର) ଠାରେ ଅଛି । ଶିଷ୍ଟଙ୍କ ଉତ୍ତମ ବେଶ ପରିଧାନ

ମାତ୍ରାରେ ସଦ୍ବେଷତା ଅଛି(ଦ୍ୱେଷ ନାଇ) । ତୀକ୍ଷ୍ଣକର ଗ୍ରହ (ତୀବ୍ରତାରେ ଖଣ୍ଡଣା ନେବା, ସୂର୍ଯ୍ୟକୁ ଗ୍ରାସ କରିବା) କେବଳ ରାହୁ ଠାରେ ଅଛି (ଦେଶରେ କର ଖର୍ଚ୍ଚ ନାଇ) । ତ୍ରାସୋଦୟ (ଭୟ) କେବଳ କୁମଣି ବା ଖଗପ ରତ୍ନରେ ଅଛି (ଭୟ ଆଉ କୁତ୍ରାପି ନାଇ, ଲୋକେ ସମସ୍ତେ ଧନୀ ଥିବାରୁ କେବଳ ଖଗପ ମଣି କିଣା ହୋଇ ପାରିବ ନାଇ ବୋଲି ଡ଼ରୁଚି) । କୁଟିଳତା (ଖଳ ପ୍ରକୃତି, କୁଞ୍ଚୁ କୁଞ୍ଚିଆ ଭାବ) କେବଳ ସୁନ୍ଦରୀ ରମଣୀ ମାନଙ୍କର ବାଳରେ ଅଛି (କୁଟିଳ ଚରିତ୍ରର ଲୋକ କେହି ନାହାନ୍ତି) ।

## 'ଉଡ୍ଡୀୟାନ'ରେ ପଞ୍ଚମକାର ସେବା:-

ଏହି ଶୈଳୀ ସଙ୍ଗେ ଠିକ୍ ସେତିକି ବେଳେ ପୂର୍ବ ଭାରତ ବଜ୍ରଯାନର ଧର୍ମ ଭାଷା ହେଉଚି 'ଉଡ୍ଡୀୟାନ' ବା ଓଡ଼ିଶାର ପ୍ରାକୃତ । ଏହିଠାରେ ଓଡ଼ିଶାର ସଂଯମ ପନ୍ଥା ଯେଉଁ ନିଜର ପଞ୍ଚମକାର ସେବିତ ଶରୀର ସାଧନାକୁ ପ୍ରତିଷ୍ଠା ଦେବାର ଉଦ୍ୟମ ସଙ୍ଗେ ସଙ୍ଗେ ଓଡ଼ିଆ ସାଧନାକୁ ସେହି ପଞ୍ଚମକାରର ଜିହ୍ୱା ଯୋନି ସେବାରେ ଯେ ପ୍ଲାବିତ କରି-ବାର ଉଦ୍ୟମ ହୋଇଥିଲା କିମ୍ବା ଅଧୁରି ନରମ କରି କହିଲେ, ସେହି ସୂତ୍ରରେ ଓଡ଼ିଶାର ସାଧନା ଯେ ଜିହ୍ୱା ଯୋନି ସେବାର ପ୍ରଭାବରେ ପ୍ରଭାବିତ ହୋଇଥିଲା, ଏହା ବୁଝିବାରେ ଅସୁବିଧା କିଛି ନାଇ । ଏତିକି ବେଳେ କୋଶଳ କେଶରୀମାନଙ୍କ ଅଳ୍ପ କାଳର ଓଡ଼ିଶା ଅଧିଷ୍ଠାନ କଥା ସାହିତ୍ୟ ବିକାଶ ଧାରରେ କିଛି କହିବାର ସାଧନ ନାଇ, ମାତ୍ର ସେ କାଳ ବଡ଼ ଅଳ୍ପ । ଦେଖାଯାଉ ଅଛି ଏହି କୋଶଳ କେଶରୀମାନେ ପ୍ରଥମରୁ ବହୁକାଳ ଯାଏ ସୋନପୁରରୁ ସମଗ୍ର ଓଡ଼ିଶାକୁ ଶାସନ କରୁଥିଲେ । ଏତିକି ମାତ୍ର ଦେଖାଯାଏ ଯେ, ସେତେବେଳେ ହୁଏତ ତାନ୍ତ୍ରିକତାର ପ୍ରବେଶ ବଡ଼ ବେଶି ନ ଥିଲା । କାହିଁକି ନା, ସେ କାଳରେ ଶିବଙ୍କ ସଙ୍ଗେ ଦେବୀ ଏ ପ୍ରଦେଶରେ ବିଶେଷ ପ୍ରବେଶ କରିବାର ଦେଖା ଯାଉ ନାଇ । ଦେବୀ ବା ତନ୍ତ୍ର ନ ଥିଲେ ଜିହ୍ୱା ଯୋନି ସେବା କଥା ଭାବିବା ଏବେ କାଠି-କର ପାଠ । ଏହି ପ୍ରାଚୀନ କାଳର ଲିଖିତ ବା କଥିତ ସାହିତ୍ୟ ସ୍ପଷ୍ଟ ଜଣା ପଡୁ ନ ଥିଲେ ମଧ୍ୟ ଦେଖା ପଡୁଚି ଶିଳ୍ପ । ଅତି ପ୍ରାଚୀନ କାଳରୁ ଏଠାରେ ବୌଦ୍ଧଙ୍କୁ ଛାଡ଼ି ଶିବ ଓ ବୈଷ୍ଣବ ମନ୍ଦିର ମାନ ପ୍ରତିଷ୍ଠିତ ହୋଇଥିଲା । ଅଶୋକ ସ୍ତମ୍ଭ ଂଭାଙ୍ଗି ଭୁବନେଶ୍ୱରର ମେଘେଶ୍ୱର ତିଆରି କରିବା ଏହି ସମୟର କଥା । ମାତ୍ର ଏହି ସମୟର ଆଦିମ ମନ୍ଦିର ପରଶୁରାମେଶ୍ୱର ଓ ତାହାର ପରବର୍ତ୍ତୀ ମୁକ୍ତେଶ୍ୱର ପ୍ରଭୃତିର ମନ୍ଦିର ଦେଖିଲେ ଶିଳ୍ପର ସରଳତା ଓ ଅତି ଶୋଭନ ସମାବେଶ ଦର୍ଶକର ଦୃଷ୍ଟିକୁ ଦିବ୍ୟ ଭାବରେ ପ୍ରଭାବିତ କରେ । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଏହାରି ଶେଷ ପ୍ରସ୍ତ (Stage)ର କୀର୍ତ୍ତି । ଏଥିରେ ଅଶ୍ଳୀଳ ମୂର୍ତ୍ତି ପଶି ପଶିନାଇ କହିଲେ ହୁଏ ।

## ଗଙ୍ଗ ବଂଶର ରାଜୁତ୍ୱରେ ଶିଳ୍ପରେ ଅଶ୍ଳୀଳତା:-

ଏହାପରେ ଆସିଥିଲେ ଗଙ୍ଗମାନେ । ଅଳଙ୍କାର–ସାହିତ୍ୟ ସଙ୍ଗେ ଜଗନ୍ନାଥ, କୋଣାର୍କ ପ୍ରଭୃତିର ଶିଳ୍ପ କୌଶଳ ଏତିକି ବେଳର କାମ । ଯାହାକୁ ଅଶ୍ଳୀଳତା କହନ୍ତି; ସେ ସବୁ ଅତି ବିସ୍ତୀର୍ଣ୍ଣ ଭାବରେ ଏତିକି ବେଳେ ଶିଳ୍ପରେ ପ୍ରକାଶ ପାଇଥିଲା । ଅଳଙ୍କାର ଶାସ୍ତ୍ରକୁ ଧରି ଓଡ଼ିଆରେ ସେତେବେଳେ ବି କାବ୍ୟ କବିତା ଲେଖାଯାଇ ଥିଲା, ତାହା ଏବେ ବି ମିଳିନାଇ । କିନ୍ତୁ ଗୋଟିଏ କଥା ଜଣାଯାଇଚି, ତାହା ହେଉଚି ଗଙ୍ଗ ମାନଙ୍କର ଦକ୍ଷିଣୀ ବା କର୍ଣ୍ଣାଟୀ ସଙ୍ଗୀତ ।

ଆମର ସମସ୍ତ ଛାନ୍ଦ ଫୁଟିଚି ଏଇ ସଙ୍ଗୀତରୁ । ଏଇ ସଙ୍ଗୀତରୁ ଛାନ୍ଦ ସବୁ ଆମ ପୂର୍ବ ପୁରୁଷେ କିପରି ଫୁଟାଇଛନ୍ତି ତାହା ପୁଙ୍ଖାନୁ ପୁଙ୍ଖ ପ୍ରକାଶ କରି ଗ୍ରନ୍ଥମାନ ଲେଖା ଯାଇଚି । ସେହି ଗ୍ରନ୍ଥ ମାନଙ୍କର ନାମ 'ପ୍ରବନ୍ଧ' । କିନ୍ତୁ ସେ ସବୁର ବିଶେଷ ଆଲୋଚନା ବୋଧହୁଏ ଓଡ଼ିଶାରେ ଏ ପର୍ଯ୍ୟନ୍ତ ହୋଇ ନାଇ । ସେ ଯାହା ହେଉ, କର୍ଣ୍ଣାଟୀ ସଙ୍ଗୀତର ପ୍ରଭାବରେ ଅଳଙ୍କାର ତଥା ଭାବ ବିକାଶର ଧାରା ଧରି ଛାନ୍ଦ ପରି ସାହିତ୍ୟ ଫୁଟାଇବା ସଂସ୍କୃତ ପ୍ରଭାବିତ ଓଡ଼ିଆ ପ୍ରାକୃତର ଅତି ମହନୀୟ ବିଶେଷତ୍ୱ । ଭୌମ ଲେଖା ତଥା 'ନୈଷଧ'ରୁ ଛାନ୍ଦ ପରି ଅଦ୍ଭୁତ ଜିନିଷ ଫୁଟାଇ ସାହିତ୍ୟ ଚିନ୍ତା ତଥା ଶିଳ୍ପର ସ୍ୱାତନ୍ତ୍ର୍ୟ ପ୍ରକାଶ କରିବା ଏକା ଓଡ଼ିଆଠାରେ ସମ୍ଭବ ହୋଇଚି ।

ଓଡ଼ିଶା ଅବଶ୍ୟ ସେତେବେଳେ ରାଜନୀତିକ ଭାବରେ ସ୍ୱାଧୀନ ନ ଥିଲା । ମାତ୍ର ମନେ ରଖିବାର ଅଛି, ସେତେବେଳେ ରାଜନୀତି ସଙ୍ଗେ ଜୀବନ କ୍ରିୟାର ବିଶେଷ ସମ୍ପର୍କ ନ ଥିଲା କିନ୍ତୁ ଗୋଟିଏ କଥାରେ ସମ୍ପର୍କ ଯେ ଥିଲା ତାହା ଅସ୍ୱୀକାର କରି ହେବ ନାଇ । ତାହା ହେଉଚି ଧର୍ମ, ଭୌମ କାଳର ଧର୍ମ ବିଶ୍ୱାସ ଓ ଧର୍ମ ପ୍ରଭାବ ଏବେ ଆଉ ନ ଥିଲା । ଗଙ୍ଗମାନେ ଓଡ଼ିଶାକୁ ଆସିବା ସଙ୍ଗେ ସଙ୍ଗେ ଧର୍ମରୁ ଦର୍ଶନ ସମ୍ପର୍କ ଉଠିଯାଇ ମୁସଲମାନର ଅବାନ୍ତର ବା ଅପ୍ରତ୍ୟକ୍ଷ ପ୍ରଭାବରେ ଏହା ହେଲା ପୁରା ପୂରି ଭକ୍ତି ଧର୍ମ । 'କ୍ଷେତ୍ର ମହାତ୍ମ୍ୟ' ପଢ଼ିଲେ ଦେଖାଯାଏ, ଖାଲି ଈଶ୍ୱରଙ୍କ ସ୍ତୁତି ଓ ସେଇ ସୂତ୍ରରେ ଅତି ଅବାନ୍ତର ଅସଂଗତ କଥାସବୁ ସ୍ତୁତି କରି କରି ହେବ ସହସ୍ରେ ଅଶ୍ୱମେଧର ଫଳ । ଦାନ କରି ରାଜାଙ୍କ ଖୁରା-ଘାତରେ ହେବ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ । ମୋଟ କଥା,ସେହିଠାରୁ ଭାରତର ଦର୍ଶନ ଉପରେ ପ୍ରତିଷ୍ଠିତ ଧର୍ମ, ସେ ଜଗନ୍ନାଥର ନାଥ ବା ଜୈନ୍ୟ ଧର୍ମର କୈବଲ୍ୟ ହେଉ ବା ବଜ୍ରଯାନର ଜିହ୍ୱା ଯୋନି ସେବାରେ ସିଦ୍ଧି ହେଉ, ଏକପ୍ରକାର ଲୋପ ପାଇଲା । ପତିତପାବନ ଧର୍ମର ସ୍ତୁତି ମାତ୍ରରେ ଭାରତ ଧର୍ମ ତଥା ଓଡ଼ିଶାର ଧର୍ମ ପର୍ଯ୍ୟବସିତ ହେଲା ।

ଏତିକି ବେଳେ ଦାର୍ଶନିକତା ବି ଶରୀର ସାଧନାର ଛାୟା ଧରି ଶୂନ୍ୟ ଧର୍ମୀ ବଜ୍ର-ଯାନୀ ମାନଙ୍କର ପରିଣତି ହେଲା ହିନ୍ଦୁ ତନ୍ତ୍ରରେ । ଗଙ୍ଗମାନଙ୍କ ସମୟରେ ମୁଖ୍ୟତଃ ଏଇ ତନ୍ତ୍ର ପ୍ରଭାବ ଓଡ଼ିଶାରେ ବ୍ୟାପିଲା । ଶିଳ୍ପରେ ତାହା ସ୍ପଷ୍ଟ ମାତ୍ର ଅନ୍ୟ ଦିଗରେ ମୁଖ୍ୟ ଭାବରେ ଦେବ ଦାସୀଙ୍କ ସଙ୍ଗୀତ ସୂତ୍ରରେ ପଶିଲା, ସ୍ଥିର ଶିଳ୍ପ । ଓଡ଼ିଆମାନେ ଠିକ୍ ସେହି ପ୍ରଭାବରେ ଛାନ୍ଦମାନ ଚାହାର କଲେ । ଭକ୍ତି ଧର୍ମର ଛାୟା ଏଥିରେ କଥଞ୍ଚିତ ଥିଲେହେଁ, ଏହା ପୂରାପୂରି ସେ ବାଟ ଧରିଥିଲା ପରି ମନେ ହେଉ ନାଇ । ପଣ୍ଡିତମାନେ ଛାନ୍ଦର ବିଭିନ୍ନ ଅଭିବ୍ୟକ୍ତିରେ ମନ ଦେଲେ । ତାନ୍ତ୍ରିକ ଅଶ୍ଳୀଳତା ପ୍ରତି ତାଙ୍କର ସେ ସାହିତ୍ୟର କି ଦୃଷ୍ଟି ଥିଲା କହିବାର ସାଧନ ନାଇ । ଦେଖୁଥିବ, ଏତେ ବଡ଼ ଗାନ୍ଧୀ ଯୁଗ ଚାଲିଗଲା, କିନ୍ତୁ ଗାନ୍ଧୀଙ୍କ ଜୀବଦ୍ଦଶାରେ ତାଙ୍କ ଘେନି ପ୍ରାୟ ସାହିତ୍ୟ ପ୍ରକାଶ ପାଇ ନାଇ । ମାତ୍ର ଏବେ ତା'ର ପରିଣାମରେ ଆମେ ଚିରକାଳର ଦାର୍ଶନିକ ଉପାସନା ଛାଡ଼ି ପ୍ରତି ସ୍କୁଲରେ ଆଜି 'ପ୍ରାର୍ଥନା'ରେ ତଥା 'ରାମଧୂନ୍'ରେ ମନ ଦେବା ଆରମ୍ଭ କଲୁଣି । ଏ କଥା ଠିକ୍ ସେହିପରି । ଗଙ୍ଗକାଳରେ ଯାହା କିଛି ତାନ୍ତ୍ରିକ ଅଶ୍ଳୀଳତା ଥିଲା ତାହା ସବୁ ଶିଳ୍ପରେ, ହୁଏତ ଛାନ୍ଦରେ ନୁହେଁ; କିନ୍ତୁ ପରବର୍ତ୍ତୀ କାଳରେ ଛାନ୍ଦରେ ତନ୍ତ୍ର ପ୍ରଭାବ ଯେ ପଶିଥିଲା, ସେଥିରେ ନାହିଁ କରିବାର କିଛି ନାଇ ।

## ସାରଳା ଦାସଙ୍କ ଯୁଗ ଯଥାର୍ଥ ଉଦ୍‌ବୋଧ ଯୁଗ:-

ଠିକ୍ ଏତିକି ବେଳେ ଆସିଲା ସାରଳା ଦାସ ଯୁଗ । ଏହି ଯୁଗହିଁ କପିଳେନ୍ଦ୍ର ଦେବ ଯୁଗ । ଓଡ଼ିଆ କପିଳା ଗଉଡ଼ ହେଲେ କପିଳେନ୍ଦ୍ର ଦେବ ନାମରେ ସମ୍ରାଟ ଓ ଓଡ଼ିଆ 'ଶୂଦ୍ର' ବା 'ସୁଧ' ସିଦ୍ଧେଶ୍ୱର ପରିଡ଼ା ହେଲେ ମହା କବି ସାରଳା ଦାସ । କପିଳେନ୍ଦ୍ର ଦେବ ବିରାଟ ସମ୍ରାଟ ହେଲେ ହେଁ ଜନ ଶିଳ୍ପରେ ତାଙ୍କର ଆଉ ତାଦୃଶ ମମତା ନାଇ । ସେ ଜଗନ୍ନାଥ ସେବୀ ହେଲେହେଁ ଗଙ୍ଗ ଯୁଗରେ ଦେଶରେ ଯେଉଁ ସ୍ପଷ୍ଟ ଭକ୍ତି ଧର୍ମ ପଶିଥିଲା ସେ ଜଗନ୍ନାଥଙ୍କର ସେହିପରି ଭକ୍ତ ଅଥଚ ସେ ଭକ୍ତିରେ ଦେହ ସାଧନାର ପୁଣ୍ୟ ନାଇ କି ସିଦ୍ଧିର ମୁକ୍ତି ନାଇ । ଏ ସବୁରେ ହୁଏତ ଲିଖିତ ସାହିତ୍ୟ ହିସାବରେ ବହୁତ କଥା ଅଲେଖା ଅଛି । କେତୋଟି ଶିଳାଲେଖ ଛଡ଼ା ଜାଣିବାର ଅନ୍ୟ ସାଧନ ନାଇ ।

କିନ୍ତୁ ମହାକବି ସାରଳା ଦାସଙ୍କ ସମ୍ବନ୍ଧରେ ତାହା ନୁହେଁ । ବହୁ 'ପ୍ରକ୍ଷେପ' ଭିତରେ ସାରଳା ଦାସ ଆଜି ଜାଜ୍ୱଲ୍ୟମାନ ହୋଇ ଅଛନ୍ତି । ଦେବୀ ସ୍ତୁତି ତାଙ୍କ କାବ୍ୟରେ ଯତ୍ର ତତ୍ର ଅଛି; କିନ୍ତୁ ସେଥିରେ ତନ୍ତ୍ରର ବିଭତ୍ସତା ନାଇ । ଏହି ବିଭତ୍ସତା ଓ ଅଶ୍ଳୀଳତାକୁ ସେ ଯେ କି ପୁରେ ଦୃଷ୍ଟିରେ ପ୍ରତିରୋଧ କରିବା ପାଇଁ ଅସମାନ୍ୟ ନାରୀ ଚରିତ୍ର ଫୁଟାଇ-ଛନ୍ତି, ତାହା ଆଜି ଦେଖିଲେ ବୁଝି ପାରିବା କଷ୍ଟ । ଏ ହିସାବରେ ସାରଳାଙ୍କ ଯୁଗ ଓଡ଼ିଆଙ୍କର ଏକ ଯଥାର୍ଥ ଉଦ୍‌ବୋଧ ଯୁଗ ।

ରାଜନୀତିକତା ତଥା ଧର୍ମ ପରାଧୀନତା ଏଥିରେ ଆଦୌ ନାଇ । ସ୍ତରଶିଳ୍ପ ପ୍ରତି ଦୃଷ୍ଟି ନାଇ । ସାରଳାଙ୍କ ଲେଖା ପୁରା ଓଡ଼ିଆ । ଅଶ୍ଳୀଳତାର ଏଥିରେ ସ୍ପର୍ଶ ନାଇ । ଏହା ତାଙ୍କର ନାରୀ ଚରିତ୍ର ଚିତ୍ରଣରେ ସ୍ପଷ୍ଟ ।

## 'ବଜ୍ରଯାନ' ଓ 'ସହଜଯାନ'ରେ ।ହିତ୍ୟ ଶିଳ୍ପ ଓ ବ୍ୟବହାରରେ ଅଶ୍ଳୀଳତା:–

ପୂର୍ବ ଭାରତର ଯେଉଁ 'ବଜ୍ରଯାନ', ତନ୍ତ୍ର ସଙ୍ଗେ ମିଶି ଏକାକାର ହୋଇ 'ସହଜଯାନ' ତଥା 'କୌଳଧର୍ମ'ରେ ଆତ୍ମ ପ୍ରକାଶ କରି ଜୈନ ନାଥ ନାମରେ ନାଥ ପନ୍ଥୀଙ୍କ ରହସ୍ୟ ଧର୍ମରେ ପରିଣତ ହୋଇ ଘୋର ଶୂନ୍ୟ ସାଧନା ତଥା ସିଦ୍ଧି ବା ମୁକ୍ତି ସାଧନାର ଦର୍ପ କରୁଥିଲା, ସେଥିରେ ଯଥାର୍ଥରେ ନାରୀ ମନୁଷ୍ୟ ନ ଥିଲା । ସେ ବିବାହରେ ସହଧର୍ମିଣୀ ନ ଥିଲା । ସେ ଥିଲା ପୁରୁଷର ଭୋଗ୍ୟ ବସ୍ତୁ । ନିଜେ ଖ୍ରୀଷ୍ଟ ସପ୍ତମ ଶତାବ୍ଦୀ ଶେଷ ବା ଅଷ୍ଟମ ଶତାବ୍ଦୀ ପ୍ରାରମ୍ଭରେ ପୂର୍ବ ମଗଧର ପାଳ ସମ୍ରାଟ ପୁତ୍ର ତଥା କଥିତ ସିଦ୍ଧ ଅନଙ୍ଗ ବଜ୍ର ନିଜ 'ପ୍ରାଜ୍ଞୋ ପ୍ରାୟ ବିନିଶ୍ଚୟ' ସିଦ୍ଧିରେ ଲେଖୁଛନ୍ତି:–

"ପ୍ରଜ୍ଞାପାରମିତା ସେବ୍ୟା ସର୍ବଥା ମୁକ୍ତି କାଂକ୍ଷିଭିଃ
ପରମାର୍ଥେ ସ୍ଥିତା ସୁଦ୍ଧା ସଂବୃତ୍ୟା ତନୁ ଧାରିଣୀ
ଲଲନା ରୂପମାସ୍ଥାୟ ସର୍ବେତ୍ରେବ ବ୍ୟବସ୍ଥିତା
ବ୍ରାହ୍ମଣାଦି କୁଳୋତ୍ପନ୍ନାଂ ମୁଦ୍ରାଂ ବୈ ଅନ୍ତ୍ୟଜୋଦ୍ ଭବାଂ
ଜନୟନ୍ତୀଂ ସ୍ୱସାରଂ ଚ ସ୍ୱପୁତ୍ରୀଂ ଭଗିନେୟିକାଂ
କାମୟନ ତତ୍ତ୍ୱ ଯୋଗେନ ଲଘୁ ସିଧ୍ୟେତ ସାଧକଃ ।"

(ପୃଷ୍ଠା ୨୨–୨୪) ଏଠାରେ 'ମୁଦ୍ରା'ର ଅର୍ଥ ମାଇକିନିଆ । (ଅଧ୍ୟାପକ ବିନୟ ତୋଷ ଭଟ୍ଟାଚାର୍ଯ୍ୟଙ୍କ 'ସାଧନାମାଳା' ମୁଖବନ୍ଧ ୩୯ ପୃଷ୍ଠା ଦ୍ରଷ୍ଟବ୍ୟ ।)

ଉପର ଶ୍ଳୋକ ଶେଷକୁ କୁହାଗଲା ଏହି ଲିଖିତ ମାଇକିନିଆ ମାନଙ୍କୁ ତତ୍ତ୍ୱ ଯୋଗରେ କାମନା କଲେ ସାଧକ ଅତି ବେଗରେ ଓ ସହଜରେ ସିଦ୍ଧ ହୁଏ । ଏହି ତତ୍ତ୍ୱ ଯୋଗର ପ୍ରଣାଳୀ ଓ ପ୍ରକ୍ରିୟାକୁ ବର୍ଣ୍ଣନା କରି ଠିକ୍ ପର ପୃଷ୍ଠାରେ ସେହି ଗ୍ରନ୍ଥରେ ସେହି ଅନଙ୍ଗବଜ୍ର ଲେଖୁଛନ୍ତି–

"ମୁଦ୍ରାଲିଙ୍ଗନତ୍ ସଂଯୋଗାତ୍ ବଜ୍ରାବେଶ ପ୍ରବର୍ତ୍ତନାତ୍
ସକ୍ଷୀରଧର ପାନାତ୍ ଚ ତତ୍ କଣ୍ଠ ଧ୍ୱନି ଦୀପନାତ୍
ବିପୁଳା ନନ୍ଦ ସଂଭୋଗାତ୍ ତଦୂରୁ ସ୍ଫୋଟନାତ୍ ଧ୍ରୁବଂ
ନ ଚିରତ୍ ମନ୍ତ୍ରୀଥୋ ରଜା ସତ୍ତ୍ୱଃ ପ୍ରସିଦ୍ଧ୍ୟତି ।"

ଏଠାରେ 'ବଜ୍ର' ବୋଇଲେ ପୁରୁଷର ଜନନେନ୍ଦ୍ରିୟ ।

ଏହି 'ସହଜ ଯାନ' ଓ 'କୌଳ' ଧର୍ମରେ ନାରୀ କଥା ଏତେ ଭୁହାଗଲେ ମଧ୍ୟ ଏଥିରେ ନାରୀର ସ୍ୱାତନ୍ତ୍ର୍ୟ ନାହିଁ । ପୁରୁଷ ନିଜର ମୁକ୍ତି ପାଇଁ, ସିଦ୍ଧି ପାଇଁ ବା ହଠଯୋଗରେ ଫଳ ଲାଭ ପାଇଁ ଯନ୍ତ୍ର ତନ୍ତ୍ର ନାରୀକୁ କାମନା କରିବ ମାତ୍ର । ଏହା କେବଳ ସାହିତ୍ୟ ବା ଶିଳ୍ପରେ ଅଶ୍ଳୀଳ ନୁହେଁ, ଏହା ବ୍ୟବହାରରେ ମଧ୍ୟ ଅଶ୍ଳୀଳ ଓ ବୀଭତ୍ସ ।

## ସାରଳାଙ୍କ ନାରୀ ପୁରୁଷର ସହଧର୍ମିଣୀ ଓ ସମାଜର ନେତୃ ରୂପିଣୀ-

ଏହାରି ପାଖେ ସ୍ୱାଧୀନ ଓଡ଼ିଆ ସାରଳା ଦାସଙ୍କ ନାରୀଚରିତ୍ରର ଚିତ୍ର କି ସ୍ପଷ୍ଟ, କି ଉନ୍ନତ ! ହୁଏତ ପରିସ୍ଥିତି ଏଥିରେ ଆପେ ଆପେ ତିଆରି ହୋଇ ସାରଳା କପିଳେନ୍ଦ୍ରଙ୍କ ଆଗେ ସାଂଖ୍ୟର ପ୍ରକୃତି ପରିବେଶ ଦେଖାଇ ନାଚୁନାଇ । ଓଡ଼ିଆ ମହାକବି ହୁଏତ ଜ୍ଞାତ ବା ଅଜ୍ଞାତ ଭାବରେ ଇତିହାସ ଓ ପୁରେଦୃଷ୍ଟିର କଳ୍ପନାରେ ପାରିପାର୍ଶ୍ୱିକତାର ଯଥାର୍ଥ ଅବବୋଧ ଧରି ଜାତିପାଇଁ ଏ ପରିସ୍ଥିତି ତିଆରି କରିଚନ୍ତି । ସାରଳାଙ୍କ ନାରୀ କେବଳ ସହଧର୍ମିଣୀ ନୁହେ, ସେ ଯେପରିକି ହେଉଛି ଏକମାତ୍ର ଧର୍ମିଣୀ । ପୁରୁଷ ହେଉଚି ତାର ସହଧର୍ମୀ । ସେଇ ନାରୀ ହେଉଚି ସମାଜର ନେତୃରୂପିଣୀ । ପୁରୁଷ ଏହାକୁ କାମନା କରିବାର ଆରମ୍ଭ କଲେ ତାର ସର୍ବଶକ୍ତି ନଷ୍ଟହୁଏ । ତନ୍ତ୍ର ଯୋଗରେ କାମନା କରି ସେ ସର୍ବସିଦ୍ଧି ପାଏ ନାଇ ।

ଉଦାହରଣ ମାନ ଏଠାରେ ସ୍ପଷ୍ଟ:-- ମହାଭାରତରେ ଭୀଷ୍ମ ଶିଖଣ୍ଡୀକୁ ଦେଖିବା ମାତ୍ରେ ତାଙ୍କ ମନେ ପଡ଼ିଲ, ଯୁବତୀ ଅମ୍ବା । ଅମ୍ବା ତାଙ୍କୁ ପତିରୂପେ ପାଇବ ବୋଲି କାମନା କରି, ନ ପାଇ ଆତ୍ମହତ୍ୟା କରିଥିଲ ଓ ପରେ ଶିଖଣ୍ଡୀରୂପେ ଜନ୍ମ ପାଇଥିଲ । ଏହା ଭୀଷ୍ମ ଜାଣିଥିଲେ । ସେଇ ଶିଖଣ୍ଡୀଙ୍କୁ ଅତି ବୃଦ୍ଧ ବୟସରେ ରଣକ୍ଷେତ୍ରରେ ଦେଖିବା ମାତ୍ରେ ତାଙ୍କ ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ହୋଇଯାଇଥିଲ ଓ ସେ ଅତି ସହଜରେ ଅର୍ଜୁନଙ୍କ ଶରବ୍ୟ ହୋଇଥିଲେ ।

ତା'ପରେ ଦେଖ ଚଣ୍ଡୀପୁରାଣ' । ସେଠାରେ ବି ସେଇଆ । ମହୀଷାସୁର ପରି ଦୁର୍ଦାନ୍ତ ବୀରପୁରୁଷ ହତବୀର୍ଯ ହୋଇ ନିରସ ହେବାର କାରଣ ହେଉଚି ସ୍ୱରୂପିଣୀ ଦେବୀଙ୍କ ଜନନେନ୍ଦ୍ରିୟର ଦର୍ଶନ । ପୁଣି ଦେଖ-ବିଲଙ୍କା ରାମାୟଣର ସହସ୍ରମୁଖା ରାବଣ । ରାମ ତାଙ୍କୁ ପାରିଲେ ନାହିଁ । ସୀତାଙ୍କୁ ଡ଼ାକି କ'ଣ କରିବେ ବୋଲି ପ୍ରାର୍ଥନା କଲେ । ସୀତା ସୁନ୍ଦରୀ ଯୁବତୀ ରୂପରେ ତା' ଆଗେ ଠିଆ ହୋଇଗଲେ । ସେତିକି ଦେଖି ତା'ର ବୀରତ୍ୱର ଅବସାନ । ତେଣିକି ରାମ ତାକୁ ମାରିବାରେ ଆଉ କିଛି ଅସୁବିଧା ହେଲ ନାଇ ।

ଏ ସବୁ ପୁଣି କାହାର ? ଓଡ଼ିଆର ନାରୀ । ସେ ନାରୀ ସତୀ ହେଲେ ହେଁ ଏକ ପତିବ୍ରତ ତା'ର ଅକାଟ୍ୟ ଧର୍ମ ନୁହେଁ । ଚିରକାଳ ଓଡ଼ିଆ ସାଧବ ନାରୀଙ୍କର ବିଧବା ବିବାହ ବା 'ଦୁତିଅ' ଅଛି । ଅନ୍ତତଃ ସାମାଜିକ ଭାବରେ ଏହାର ନିଷେଧ ନାଇ । କିନ୍ତୁ ଯଥାର୍ଥ

ସତୀତ୍ୱ ଏହିପରି ସମାଜରେହିଁ ସମ୍ଭବ । ବ୍ୟତୀୟ ପାଇଁ ଅବକାଶ ନିରୁଦ୍ଧ ହେଲେ ସାଧ୍ୱୀତାର କୌଣସି ଅର୍ଥ ବା ମୂଲ୍ୟ ନାଇ । ଏହା ସମୁଦ୍ର ପାରରେ ବାଣିଜ୍ୟପ୍ରବଣ ଓଡ଼ିଆ ବୁଝିଥିଲା । ଏବେ ବି ସମୁଦ୍ର ପାରରେ ବାଣିଜ୍ୟ ନ ଥିଲେ ମଧ୍ୟ କର୍ପୂର ଗଲଣି, ହୁଏତ କନାଖଣ୍ଡ ପଡ଼ିଚି ।

## ସାରଳାହିଁ ଯଥାର୍ଥ ଓଡ଼ିଆ :

ସାରଳା ଦାସଙ୍କ ଏହି ନାରୀ ଚିତ୍ର ଏକାବେଳକେ ଭାରତ ଇତିହାସରେ ଅନନ୍ୟ-ସାଧାରଣ । ସାରଳା ଯଥାର୍ଥ ଓଡ଼ିଆ ଥିବାର ଅନ୍ୟ ପ୍ରମାଣମାନ ମଧ୍ୟ ଅତି ସ୍ପଷ୍ଟ । ସେ ହୁଏତ ଉତ୍ତର ବା ଦକ୍ଷିଣ ଭାରତ ଦେଖି ନଥିଲେ । ଓଡ଼ିଶାର ପଞ୍ଚକଟକ ହିଁ ତାଙ୍କର ହସ୍ତିନା, ଇନ୍ଦ୍ରପ୍ରସ୍ଥ, ବାରାଣସୀ ପ୍ରଭୃତି କଟକ ବା ସହରମାନ ବୋଲି ସେ ବୁଝିଥିଲେ ବା ବର୍ଣ୍ଣନା କରିଥିଲେ । ଢେଙ୍କାନାଳର କପିଳାସ ତାଙ୍କର କୈଳାସ । ପୁରୀର ଜଗନ୍ନାଥ ତାଙ୍କର କୃଷ୍ଣ । ଯୁଧିଷ୍ଠିର ସ୍ୱର୍ଗାରୋହଣ କଲାବେଳେ ଯାଜପୁର ବାଟେ ଯାଇଥିଲେ ଓ ସେଠାରେ ରଘୁ ସାହୁଙ୍କ ଝିଅ 'ସିଂଘାଣି'କୁ ବିଭା ହୋଇ ବାସ୍ତରୀ ବର୍ଷ ଘରଦ୍ୱାର କରିଥିଲେ । ଯାଜପୁରର 'ଭଇଦା'ଙ୍କୁ ଭୀମ ଚୁଟି ଧରି ଘେନି ଆସି ନାନା ଦଣ୍ଡ ଦେଇଥିଲେ । ଏଇପରି ଉଦାହରଣ ଅସଂଖ୍ୟ । ଏହା ଛଡ଼ା ତାଙ୍କର ମହାଭାରତ ସ୍ପଷ୍ଟ ଓଡ଼ିଆ ଜୀବନର ଅଭିବ୍ୟକ୍ତି । ଓଡ଼ିଆର କିମ୍ବଦନ୍ତୀ ସଂଗ୍ରହରେ ଏହା ପୂର୍ଣ୍ଣ । ହିନ୍ଦୁତ୍ୱର ସ୍ପଷ୍ଟ ଓ ସ୍ୱାଧୀନ ବିକାଶ ଏଥିରେ ସୁନ୍ଦର ଦେଖାଯାଇ ପାରେ । ପୁନର୍ଜନ୍ମ ଓ କର୍ମଫଳ ଭୋଗରେ ଏହା ଛତ୍ରେ ଛତ୍ରେ ପୂରି ରହିଚି । ଏ ହିସାବରେ ଏକ ପ୍ରକାର ଭାରତ ସାହିତ୍ୟରେ, ବିଶେଷତଃ ପୂର୍ବ-ଭାରତ-ସାହିତ୍ୟରେ ଏହା ଅଦ୍ୱିତୀୟ ।

## ଓଡ଼ିଶାର ସ୍ୱାଧୀନତା ଲୋପ ଓ ଚୈତନ୍ୟଙ୍କ ଭକ୍ତିଧର୍ମ :

ମାତ୍ର ଏ ସ୍ୱାଧୀନତାର ବସନ୍ତ ଓଡ଼ିଶାରେ ବେଶି ଦିନ ସ୍ଥାୟୀ ହେଲା ନାଇ । ତେଣେ ପୂର୍ବ-ଭାରତର ବଜ୍ରଯାନ ଓ ସହଜିଆ ଧର୍ମ ଗୌଡ଼ୀୟ ବୈଷ୍ଣବ ଧର୍ମର ରାଧାକୃଷ୍ଣ ରତି ବା ପରକୀୟା ପ୍ରେମରେ ପରିଣତ ହେଲା । ଏଣେ ସ୍ପଷ୍ଟ ଭାବରେ ସଙ୍ଗୀତର ମୂର୍ଚ୍ଛନା ଭିତରେ ଆଳଙ୍କାରିକ ସାହିତ୍ୟର ବିକାଶ କ୍ରମେ ଫୁଟି ଉଠିଲା ।

ଏତିକି ବେଳକୁ ଆସିଲେ ବଙ୍ଗଳାରୁ ଚୈତନ୍ୟ ଦେବ । ସଙ୍ଗେ ସଙ୍ଗେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା । ଧର୍ମ ଓ ଭାଷାର ପରାଧୀନତା ସାହିତ୍ୟକୁ ପ୍ରଚଣ୍ଡ ଉଦ୍ଦାମତାରେ ଗ୍ରାସ କରି ବସିଲା । ଭକ୍ତି ଧର୍ମରେ ଯାହା ସମ୍ଭବ ସେ ସବୁ ଓଡ଼ିଶାର ଦ୍ୱାରରେ ଭୀଷଣ ଭାବରେ ଆଘାତ କଲା । ଏବେ ବି ମହିମା ଗୋସେଇଁଙ୍କଠାରୁ ପାଗଳାବାବାଙ୍କ ପର୍ଯ୍ୟନ୍ତ ଓଡ଼ିଶାରେ ଏଇ ଭକ୍ତି ଧର୍ମପ୍ରେରିତ ଅଦ୍ଭୁତ କ୍ରିୟାର ପରିସୀମା

ନାହିଁ କହିଲେ ଚଳେ । ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧ ଓ ଊନବିଂଶ ଶତାବ୍ଦୀର ଆଦି କାଳରେ 'ବାତ୍ୟତା-ଭକ୍ତି' ପରି ଗ୍ରନ୍ଥ କି ପ୍ରଭାବ ଓ ପ୍ରେରଣାରେ ଦୂର ଗଞ୍ଜାମର 'ଡୁଗ' ଗ୍ରାମରେ ସମ୍ଭବ ହୋଇଛି , ତା ବୁଝାଇବା ଦରକାର ନାଇ । ଆମେ ଜାଣିବା ପାଇଁ ଚୈତନ୍ୟ ହେଉଛନ୍ତି ଏହାର ମୂଳ । ଚୈତନ୍ୟଙ୍କ ସମ୍ବନ୍ଧୀୟ ଲେଖା ଭକ୍ତମାନଙ୍କ ଦ୍ୱାରା ବହୁ ପରେ ପ୍ରଚାରିତ ହୋଇଛି । ଚୈତନ୍ୟ ନିଜ ଜୀବନରେ ସଂସ୍କୃତ ଓ ତର୍କଶାସ୍ତ୍ର ପ୍ରଭୃତି ଜାଣିଥିଲେ ବୋଲି କୌଣସି ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାଇ । କେବଳ ସଂକୀର୍ତ୍ତନରେ ତାଙ୍କର, ସେଦିନ ଓଡ଼ିଶାରେ ଆସି ଲୋକଙ୍କୁ ଗୌଡ଼ୀୟ ଧର୍ମରେ ମତାଉଥିବା ଚରଣଦାସ ବା ରାଧାରମଣ ଦେବଙ୍କ ପରି ଭାବାବେଶ ହେଉଥିଲେ ଓ ସେଥିରେଇ ଲୋକଙ୍କର ଘୋର ଭକ୍ତିର ଉଦ୍ରେକ ହୋଇ ଲୋକେ ଧନଧାନ୍ୟ, ପୁତ୍ର ପଶୁଠାରୁ ହୁଏତ ତଥା କଥିତ ମୁକ୍ତି ପର୍ଯ୍ୟନ୍ତ ସହଜରେ ପାଇଯିବା ପାଇଁ ଭକ୍ତିରେ ଆତ୍ମ ସମର୍ପଣ କରୁଥିଲେ ।

## ଗୌଡ଼ୀୟ ବୈଷ୍ଣବ ଧର୍ମରେ ପରକୀୟା ପ୍ରେମ :

ଏହି ଗୌଡ଼ୀୟ ଧର୍ମର ହାଓ୍ୱା ହୁଏତ ଚୈତନ୍ୟଙ୍କ କିଛିକାଳ ପୂର୍ବରୁ ଓଡ଼ିଶାକୁ ଆସିଥିଲା ଓ ପ୍ରତାପରୁଦ୍ରଙ୍କ ଠିକ୍-ପରେ ଓଡ଼ିଆ ବୈଷ୍ଣବମାନେ ରାଧାଙ୍କୁ ବିଶ୍ୱପୁରୁଷଙ୍କର ହ୍ଲାଦିନୀ ଶକ୍ତିର ଅବତାର ବୋଲି ଧାରଣା କରି ନ ପାରି ଜଗନ୍ନାଥଙ୍କ ତ୍ରିମୂର୍ତ୍ତିର ମାତୃଶକ୍ତି ସୁଭଦ୍ରାଙ୍କୁ ହୁଏତ ରାଧା ବୋଲି ଧାରଣା କରି ଜଗନ୍ନାଥଙ୍କଠାରେ ରାଧାକୃଷ୍ଣ ଯୁଗଳମୂର୍ତ୍ତି ଦେଖି ନିଜର ଧର୍ମକୁ ଯୋଗ ବୈଷ୍ଣବ ବୋଲି କହି ଏକ ନୂତନ ବିଭ୍ରାଟ ସୃଷ୍ଟି କରିଥିଲେ । ଦିବାକର ଦାସ 'ଜଗନ୍ନାଥ ଚରିତାମୃତ' ପୁସ୍ତକର ଚତୁର୍ଥ ଅଧ୍ୟାୟରେ ସ୍ପଷ୍ଟ କରିଛନ୍ତି.—

"ରାଧାନ୍ତି ସ୍ୱୟଂ ଜଗନ୍ନାଥ" ( ଶ୍ଳୋକ—୭୧ ), "ରାଧାରୁ କ୍ଷରୁଚି ଜଗତ" ( ଶ୍ଳୋକ—୭୫ ) । କିନ୍ତୁ ଏଥିରେ ସାଧ୍ୟ ପରକୀୟା ଧର୍ମର ସ୍ରୋତ ଆଉ ନିବାରି ହେଲା ନାଇ । କ୍ରମେ କ୍ରମେ ଦେଶରେ ଓ ମନ୍ଦିରେ ମନ୍ଦିରେ ତଥା ଗ୍ରାମେ ଗ୍ରାମେ ସର୍ବତ୍ର ବାବାଜୀ ମାତାଜୀଙ୍କର ବୀଭତ୍ସ ଯୌନଲୀଳା ଓ ପରକୀୟା ପ୍ରେମଧର୍ମ ମାତି ଉଠିଲା ।ଏହି ଧର୍ମହିଁ ବଡ଼ ସାଧ୍ୟ ଓ ସହଜ । ଏହାହିଁ ପୂର୍ବଭାରତର ସହଜିଆ ଧର୍ମର ଏକ ଭକ୍ତିମୂଳକ ପରିଣତି । କୃଷ୍ଣଙ୍କ ପରକୀୟା ବା ମାଇଁ ରାଧା ଏହି ଧର୍ମରୁ ବାହାରିଛନ୍ତି । ଯମୁନା କୂଳରେ ଯୁବତୀଙ୍କର ବସ୍ତ୍ରହରଣ କଳ୍ପନା ଏହି ଧର୍ମର ଏକ ପ୍ରକାଶ । ଏବର ବୃନ୍ଦାବନର କୃଷ୍ଣ ତଥା ବୈଷ୍ଣବ ଏହି ଧର୍ମର ପ୍ରସାରରେ ଆତ୍ମପ୍ରକାଶ କରିଛନ୍ତି । ଏହି ଧର୍ମ ପ୍ରଭାବରେ ଆଜି ପବିତ୍ର ପୁରୀର ଜଗନ୍ନାଥ ମନ୍ଦିରରେ ସ୍ୱାର୍ଥମାନେ ଅଯଥା ଆତ୍ମ-ପ୍ରୌଢ଼ିରେ ଅସ୍ପୃଶ୍ୟଙ୍କୁ ପ୍ରବେଶ ନିଷେଧ କଲେ ମଧ୍ୟ ବୀଭତ୍ସ ବାମାଚାରୀ ତଥା କାମାଚାରୀ ବୈଷ୍ଣବ ବାବାଜୀ ମାତାଙ୍କ ମନ୍ଦିର ପ୍ରବେଶ ପାଇଁ ଦ୍ୱାର ମୁକ୍ତ କରି

ଦେଇଛନ୍ତି । ଏଇ ଧର୍ମରେ ପଡ଼ି ଆଜି ଓଡ଼ିଶା ଶିଷ୍ଟ ପରିବାରମାନଙ୍କର ସହସ୍ର ସହସ୍ର ବିଧବା ବାବାଜୀଙ୍କ ସଙ୍ଗେ ମାତା ହୋଇ ପୁରୀରୁ ନବଦ୍ୱୀପ ଓ ସେଠାରୁ ବୃନ୍ଦାବନକୁ ଯାଇ ଉଦର ପୋଷଣ କରୁଚନ୍ତି । ଏହି ଭକ୍ତି ଧର୍ମରେ ପ୍ରଭାବିତ ହୋଇ ବଙ୍ଗାଳୀ ତଥା ସ୍ୱଦେଶୀ ଓଡ଼ିଆ ମହାପୁରୁଷମାନେ ସ୍ଥାନେ ସ୍ଥାନେ ବାହାରି ଭକ୍ତ ନରନାରୀଙ୍କୁ ଧନଧାନ୍ୟ ଗୋପଲକ୍ଷ୍ମୀ ଠାରୁ ସନ୍ତାନ ସମ୍ପଦ ପର୍ଯ୍ୟନ୍ତ ଅଜାତରେ ବିତରଣ କରୁଛନ୍ତି ।

ଏହିପରି ବର୍ଣ୍ଣନା କଲେ ସୀମା ରହିବ ନାହିଁ । ମାତ୍ର ଲକ୍ଷ୍ୟ କରିବାର ଅଛି, ଏହି-ଠାରୁ ସ୍ପଷ୍ଟ ଭାବରେ ଧର୍ମର ଏଇ ଭାବଧାରା ଯେ କୌଣସି ନାରୀର ଏହି ସ୍ୱାଦ୍ୟ ସମାଗମ ସାହିତ୍ୟରେ ପ୍ରବେଶ କଲା । 'ରସ କଲ୍ଲୋଳ' ଠାରୁ ବିଦଗ୍ଧ ଚିନ୍ତାମଣୀ ତଥା ବଳଦେବ କବି ସୂର୍ଯ୍ୟଙ୍କ ଚମ୍ପୂର 'ଭାଗ ରତି' ପର୍ଯ୍ୟନ୍ତ ସର୍ବତ୍ର ଏହା ଦେଖି ବସିଲେ ବୀଭତ୍ସତାରେ ସାଧୁ ଓ ଶିଷ୍ଟ ପାଠକକୁ ଭେଟଣା ହେବାକୁ ପଡ଼େ ।

## ଭଞ୍ଜ ସାହିତ୍ୟର ମହୀୟସ୍ତା :—

ଏତିକି ବେଳେ ସାହିତ୍ୟରେ ଯଥା ସାଧ୍ୟ ଲୋକ ରୁଚିକୁ ଟେକି ରଖିବା ପାଇଁ ଅର୍ଥାତ୍ ସମାଜର ସଂଯମ ଧର୍ମ ପ୍ରତିଷ୍ଠିତ କରିବା ପାଇଁ ଭଞ୍ଜ—ସାହିତ୍ୟର ଆବିର୍ଭାବ । ଭଞ୍ଜ—ସାହିତ୍ୟ ବୋଇଲେ ଉପେନ୍ଦ୍ର ଭଞ୍ଜଙ୍କର ଲେଖାଠାରୁ ଏହାର ମୂଳ ନୁହେ । ହୁଏତ ଉପେନ୍ଦ୍ର ଭଞ୍ଜ ଏ କ୍ଷେତ୍ରରେ ଅତି ବିରାଟ ସାହିତ୍ୟିକ ଥିବାରୁ ତାଙ୍କ ନାମରେ ଅର୍ଥାତ୍ ସଙ୍କେତରେ ଏ ପ୍ରକାର ସାହିତ୍ୟ ସୂଚିତ ହୁଏ । ମାତ୍ର ଏ ସାହିତ୍ୟର ଆରମ୍ଭ ବହୁ ପୂର୍ବରୁ । ଏହା ଗଙ୍ଗ କାଳୀନ ଛାନ୍ଦ ଓ ଅଳଙ୍କାର ସାହିତ୍ୟର ଧାରା ଧରି ଶିଷ୍ଟମାନଙ୍କ ମଧ୍ୟରେ ଆଲୋଚନାର ସ୍ରୋତରେ ପିଟିଗଲା । ଏଥିରେ ସାରଳା ଦାସଙ୍କ ନାରୀ ଚରିତ୍ରର ପ୍ରତିଷ୍ଠା ଓ ତତ୍ପରେ ତାନ୍ତ୍ରିକ ନରନାରୀ ସମାଗମର ଅବରୋଧ ହେଉଚି ସାହିତ୍ୟର ପ୍ରାଣ । ଛାନ୍ଦ ଓ ଅଳଙ୍କାର ଏହାର ଥିଲା ଅବଲମ୍ବନ ।

ଏହି ଛାନ୍ଦ ଓ ଅଳଙ୍କାର ଗୌଡ଼ୀୟ ଅର୍ଥାତ୍ ସହଜିଆ ବୈଷ୍ଣବ ସାହିତ୍ୟରେ ଅଭାବ ନ ଥିଲା । ପରିପ୍ରକାର ପାଇଁ ଏହାର ଆବଶ୍ୟକତା ଖୁବ ଥିଲା । କିନ୍ତୁ ପ୍ରଭେଦଟି ସେଠାରେ ନୁହେଁ; ଏହା ଥିଲା ଭାବ—ରାଜ୍ୟରେ । ଏହି ଭାବ—ରାଜ୍ୟରେ ଖାଲି ଆଳଙ୍କାରିକ ଯୌନ ଚିତ୍ର ବା ଭୋଗ ଯୋଜନାର ବିଶ୍ଳେଷଣ ଅଶ୍ଳୀଳ ନୁହେ । ଅଶ୍ଳୀଳତା ପାଇଁ ସାମନ୍ତ ସିଂହାରଙ୍କର-ଦୂତୀ ହରଣ ପରି—ବୀଭତ୍ସ ସାହିତ୍ୟକୁ ତୁଳନାରେ ଦେଖ ।

ନାରୀ ଚରିତ୍ର ପ୍ରକାଶରେ ଠିକ୍ ସମ୍ଭୋଗ କ୍ରିୟାରେ ମଧ୍ୟ ନିଜେ ଉପେନ୍ଦ୍ର-ଭଞ୍ଜ ହିନ୍ ହୋଇ ଯିବାରୁ 'ରସିକ ହାର ବଳୀ'ରେ ପର ନାରୀ ମୁହଁରେ କୁହାଇଛନ୍ତି—

"ହସ ହସ ହୋଇ ବୋଲଇ, ଏ ପୁଣ କିସ, ହେଲଣି ଦିବସ"

(ଦଶମ ଛାନ୍ଦ, ୧୪ ପଦ)

ପୁଣି 'ପ୍ରେମସୁଧା ନିଧି'ରେପ୍ରେମ-ସୁଧାନିଧି ମଧ୍ୟ ନିଜ କାନ୍ତକୁ ସ୍ପଷ୍ଟ ନିର୍ଦ୍ଦେଶ ଦେଲପରି କହି ମନା କରିଚି-"ଦିବସରେ ରତି କଲେ ପୁରୁଷକୁ ହାନି ।" ଏହିପରି କଥା ଓ ଅନ୍ୟାନ୍ୟ ଅନେକ ସାମାଜିକ ବ୍ୟବହାରରେ ବ୍ରୀଡ଼ା ସଙ୍ଗେ ପତ୍ନୀର ପାତିବ୍ରତ୍ୟ ଧର୍ମ ଓ ନିଃସଙ୍କୋଚରେ ସ୍ୱାମୀର ସହଧର୍ମିଣୀ ଭବରେ ସ୍ୱାମୀ ସଙ୍ଗେ ମିଶିବା ପ୍ରଭୃତି ଦେଖିଲେ ଭଞ୍ଜ-ସାହିତ୍ୟର ମହାୟତାରେ ସେ କାଳ ଓଡ଼ିଆ ସମାଜ ତଥା ସାହିତ୍ୟକୁ କଳନାରେ ଆଣି ମୁଗ୍ଧ ହେବାକୁ ହୁଏ ।

**ଭଞ୍ଜ ସାହିତ୍ୟରେ ଯଥେଚ୍ଛା ବୀଭତ୍ସତାର ପ୍ରତିରୋଧ କରା ହୋଇଛି:-**

ଶ୍ଳୀଳ ଅଶ୍ଳୀଳ ବିଗ୍ଭର ଏଠାରେ କରିବାର ଅବକାଶ ନାହିଁ । ପରକୀୟାକୁ ମୁଖ ଫେରାଇ ସମାଜ ଧର୍ମ ରକ୍ଷା କରିବାରେ କାଳର ସଙ୍କେତ ଘେନି ପରିସ୍ଥିତିର ପ୍ରେରଣାରେ ବର୍ଣ୍ଣନାର ଯେ ଗ୍ଭତୁରୀ ନିତାନ୍ତ ଆବଶ୍ୟକ, ତାହାହିଁ ଏଠାରେ ଅଛି ।

ଅଶ୍ଳୀଳ କଥାଟିର ଯଥାର୍ଥ ଅର୍ଥ ହେଉଚି ଅ-ଶ୍ଳୀଳ ଅର୍ଥାତ୍ ଯାହା 'ଶ୍ରୀ' ଯୁକ୍ତ ବା ସୁନ୍ଦର ନୁହେଁ । ସମାଜରେ ସମ୍ଭୋଗ କଦାପି ହେୟ ନୁହେଁ । ଗୀତାରେ ଭଗବାନ କହିଚନ୍ତି-

'ଯୁକ୍ତା ହାର ବିହାରସ୍ୟ ... ... ... ଯୋଗୋ ଭବତି ଦୁଃଖହା"; ଅର୍ଥାତ୍, ଯେ ଯଥୋପଯୁକ୍ତ ଆହାର, ବିହାର ବା ଭୋଗାଦି ବ୍ୟବହାର କରେ ତା'ରି ଯୋଗ ଏକା ଦୁଃଖ ନାଶକର ହୁଏ । ବୁଦ୍ଧଦେବ ମଧ୍ୟ ନିଜର ମଧ୍ୟ ପନ୍ଥା ପ୍ରଗ୍ଭର କରିବାରେ ଠିକ୍ ଏଇ କଥା କହିଥିଲେ । ସେ କହିଥିଲେ, ଅତି କୃଚ୍ଛ୍ର ବ୍ରତୋପବାସାଦିର ତପସ୍ୟା ଛାଡ଼ । ଅନ୍ୟ ଦିଗରେ ଭୋକାର୍ଯ୍ୟତର ଅତି ଭୋଗପ୍ରେପ୍‌ସା ଛାଡ଼ । ଅର୍ଥାତ୍, ଯେତିକି ଦରକାର ସେତିକି ଭୋଗ କର; ସମାଜରେ ଠିକ ରହ ।

ସଂଯମରେ ସମ୍ଭୋଗ କରିବାହିଁ ସମାଜ । ତାହାହିଁ ମାନବର ସ୍ପୃହଣୀୟ ଚରିତ୍ର । ଏହା ସମସ୍ତେ ସ୍ୱୀକାର କରିବେ । ସେ ହିସାବରେ ଦେଖିଲେ ଭଞ୍ଜ ସାହିତ୍ୟରେ ଆଦର୍ଶର ଆଦୌ ଅପଳାପ ନାଇ । ଲବଣ୍ୟବତୀର ମଧୁଶଯ୍ୟା ଅଶ୍ଳୀଳ ନୁହେ । ସମାଜରେ ଏହା ଭୋଗ୍ୟ ବସ୍ତୁ । ଏହି ନିତ୍ୟ ଭୋଗ୍ୟ ବସ୍ତୁକୁ ବର୍ଣ୍ଣନା କରିବାରେ ଆଦର୍ଶର ଅପଳାପ ହୋଇ ନାଇ, ବରଂ ଯଥେଚ୍ଛା ବୀଭତ୍ସତାର ପ୍ରତିରୋଧ କରା ହୋଇଚି । ଏ ସବୁ ସେତେବେଳର ପରିସ୍ଥିତି କଳ୍ପନାରେ ସାରଳା ଦାସ ପ୍ରଭୃତିଙ୍କ ପରମ୍ପରା ପ୍ରକାଶରେ ଯଥାର୍ଥ ବିକାଶର ପନ୍ଥା । ଆଜି ସିନେମାରେ ନଗ୍ନ ଯୁବତୀ ନୃତ୍ୟ ଦେଖାଇ ଦିଆ ଯାଉଚି । ସେଥିପାଇଁ ଗାଢ଼ ନିୟନ୍ତ୍ରଣ ଦରକାର ହେଲେ ମଧ୍ୟ, ଏଥି-

ପାଇଁ ଠାଏ ଠାଏ ଏକାନ୍ତ ଦାବୀ ହେଲେ ମଧ୍ୟ ଆଜିର ସମାଜରେ ତଥା ସାହିତ୍ୟରେ ସେ ଶୃଙ୍ଖଳା ହୁଏତ ରହୁନାଇ । ଶୃଙ୍ଖଳାର ଆବଶ୍ୟକତା ଯେଉଁଠାରେ ଏତେ ଦୃଢ଼ ଭାବରେ ଅନୁଭବ କରାଯାଉଛି, ଅଶ୍ଳୀଳତା ସେଇଠାରେ । ଲାବଣ୍ୟବତୀର ମଧୁଶଯ୍ୟା ବାହୁଡ଼ାରେ ତା'ର ଲେଶ ମାତ୍ର ନାଇ । ଆଉ ବିଶେଷ ବର୍ଣ୍ଣନା କରିବା ଦରକାର ନାଇ। ପଣ୍ଡିତମାନେ ପରିସ୍ଥିତିର ଯଥା ବିଗ୍ରହରେ ଏହାର କଳନା କରନ୍ତୁ । ଦେଖିବେ, ସାମାଜିକ ଜୀବନର ମଧୁର ସମ୍ଭୋଗରେ ଏ ସବୁ ଶ୍ଳୀଳ, ଏ ସବୁ ଯଥାର୍ଥରେ ସୁନ୍ଦର ।

ତା' ପରେ ଓଡ଼ିଶାରେ ଛାନ୍ଦ ଭଳି ଅନନ୍ୟସାଧାରଣ ଗୃହଶିଳ୍ପ ଓ ସେଥି ସଙ୍ଗେ ଆଳଙ୍କାରିକ ରୀତିର ଯେ ପ୍ରୟୋଗ, ସେଥିରେ ପ୍ରକୃତ ଦାୟାଦ ହେଉଚନ୍ତି ଭଞ୍ଜ ଓ ଭଞ୍ଜ-ପନ୍ଥୀମାନେ । ନିଜର ସମାଜ ଓ ଧର୍ମ ଧାରଣାକୁ ଜଳାଞ୍ଜଳି ଦେଇ ଯେଉଁମାନେ ଲୋକରେ ଅପଧର୍ମ ଓ ବାମମାର୍ଗ ପ୍ରଚାର କରିବା ପାଇଁ ଛାନ୍ଦ ଓ ହୁଏତ ଅଳଙ୍କାରକୁ ପରିପ୍ରଚାରରେ ଅବଲମ୍ବନ କରିଥିଲେ, ସେମାନେ ବରଂ ଓଡ଼ିଆ ସାହିତ୍ୟରେ ପରିପନ୍ଥୀ–ପୋଷକ ନୁହନ୍ତି ।

## ଓଡ଼ିଆଙ୍କର ତତ୍କାଳୀନ ଧର୍ମ ଭାଷା:-

ଆଉ ଗୋଟିଏ ମାତ୍ର କଥା ଲକ୍ଷ୍ୟ କରିବାର ଅଛି । ପରକୀୟା ପ୍ରେମଧର୍ମର ପରିପ୍ରଚାର ଆରମ୍ଭ ହେଲା ବେଳକୁ ତତ୍କାଳୀନ ନବଦ୍ୱୀପର ଭାଷା ହେଲା କେତେକ ଓଡ଼ିଆଙ୍କର ଧର୍ମଭାଷା । ସେତେବେଳେ ଓଡ଼ିଆ ବଙ୍ଗଳାର ବିଶେଷ ଭେଦ ହୁଏତ ନ ଥିଲା । ତଥାପି 'ବିଦଗ୍ଧ ଚିନ୍ତାମଣି'ରେ 'ହେରି' ପରି ଶବ୍ଦ ଦେଖିବାକୁ ମିଳେ । ତା' ଛଡ଼ା ଭାଷା ହେଉଚି ଭାବର ପ୍ରକାଶ । ସାରଳା ଦାସ, ଏପରିକି ଅଚ୍ୟୁତାନନ୍ଦ ଦାସଙ୍କ ଭାଷା ମଧ୍ୟ ସହଜିଆ ବୈଷ୍ଣବଙ୍କ ରାଧାକୃଷ୍ଣ କଥୋପକଥନ କୀର୍ତ୍ତନାଦିରେ ନାଇ । 'ଦାତ୍ୟତାରତ୍ନ' ରସାମୃତ ପରି ଗ୍ରନ୍ଥଟାଯାକ ଓଡ଼ିଆରେ ଲେଖା ହେଲେହେଁ ଏହା ବଙ୍ଗଳା –ସାହିତ୍ୟ । ସେହି ସୂତ୍ରରେ ଦେଶର ଅନେକ ଜାଗାରେ ସଙ୍ଗୀତ ମଧ୍ୟ ସହଜିଆ ଭାବରେ ଭୂୟ ପ୍ରଭାବିତ ହୋଇଥିଲା । କ୍ରମେ ସେ ପ୍ରଭାବ ଅତ୍ୟନ୍ତ ପ୍ରସାରିତ ହୋଇ–ଥିବାର ଦେଖାଯାଏ । "ଭୃଙ୍ଗ ନୀଳ ଭୁଜଙ୍ଗ ଭ୍ରମର ଜୀବେଙ୍ଗୀ, ଗ୍ରହାଁ ଏ ମୋହନର ଭଙ୍ଗୀ" ପ୍ରଭୃତି ଅଯଥା କଠିନ ଶବ୍ଦ ବିନ୍ୟାସଠାରୁ "ମାଇଁ ମାଇଁ ଡ଼ାକୁଥିଲା, ପଣତ ଧରି ଭିଡ଼ିଲା" ପରି ସହଜ ଗୀତ ପର୍ଯ୍ୟନ୍ତ ସର୍ବତ୍ର ଏହି ବଙ୍ଗଳା ସାହିତ୍ୟ ଦେଖିବାକୁ ମିଳେ । ମାତ୍ର ଏଠାରେ ମଧ୍ୟ ଦେଖିବାର ଅଛି, ଭଞ୍ଜ ସାହିତ୍ୟ ପ୍ରଭାବରେ ଏହା ପୂର୍ଣ୍ଣତଃ ବଙ୍ଗ–ସାହିତ୍ୟରେ ପରିଣତ ହୋଇ ନାଇ । ଆଳଙ୍କାରିକ ଛାନ୍ଦ ରୀତିର ମୌଳିକତା ଏହିଠାରେ ସ୍ପଷ୍ଟ । ଓଡ଼ିଶୀ ସଙ୍ଗୀତ ବୋଲି ଯାହା ଲୋକରେ ପ୍ରଚାରିତ, ତାହା ଏହିସବୁ ଗୀତ–

ମଧ୍ୟରେ ବହୁପରିମାଣରେ ଦେଖାଯାଏ, ତେଣୁ ଏ ସବୁ ସହଜିଆ ସାହିତ୍ୟ ହୋଇ ପାରିନାଇ । ଏବେ ମଧ୍ୟ ଏ ସବୁ ଗୀତରେ ସ୍ୱତନ୍ତ୍ର ଓଡ଼ିଶୀ ସଙ୍ଗୀତର ପ୍ରଭାବ ଦେଖିବାକୁ ମିଳେ ।

ପୁଣି ଭୌଗଳିକ ଭାବରେ ଭଞ୍ଜୀୟ ସାହିତ୍ୟର ବ୍ୟାପ୍ତି ଟିକିଏ ଦେଖାଯାଉ । ପୂର୍ବୋତ୍ତର ଓଡ଼ିଶାର ଭଞ୍ଜଭୂମି କେନ୍ଦୁଝର, ମୟୂରଭଞ୍ଜ ପ୍ରଭୃତିର ରଜାମାନେ ଏଇ ଭଞ୍ଜରୀତିରେ କାବ୍ୟମାନ ଲେଖିଚନ୍ତି । 'ନୈଷଧ'ର ଯଥା ବ୍ୟବହାର ସଙ୍ଗେ ଆଳଙ୍କାରିକତା ସେଥିରେ ଅତି ସ୍ପଷ୍ଟ । ସେ ସବୁ ଅନେକ ଏବେ ମୁଦ୍ରାଯନ୍ତ୍ରରୁ ବାହାରିଚି, ମାତ୍ର ସେ ସବୁର ବିଶେଷ ଆଲୋଚନା ହୋଇଚି ବୋଲି ମନେ ହେଉନାଇ । ତେଣୁ ଭଞ୍ଜଭୂମି କେବଳ ଗଞ୍ଜାମ ଓ ପାର୍ଶ୍ୱବର୍ତ୍ତୀ ଗଡ଼ଜାତ ନୁହେ, ଏହା କେତେକ ଉପକୂଳ ଭୂମି ଛଡ଼ା ସମସ୍ତ ଓଡ଼ିଶା ବୋଲି ବୁଝିବାରେ ହୁଏତ ଆପତ୍ତି ହେବ ନାଇ ।

## ଭଞ୍ଜଙ୍କ ଅଶ୍ଳୀଳତା କ'ଣ ଓ କାହିଁକି:—

ଅନେକେ ଭଞ୍ଜୀୟ ସାହିତ୍ୟରେ ଅଶ୍ଳୀଳତାର ଆକ୍ଷେପ କରିଥାନ୍ତି । ସୂଚନାରେ କୁହା ଯାଇଚି, ଭଞ୍ଜ—ସାହିତ୍ୟରେ ଅଶ୍ଳୀଳତା ନାଇ, ତଥାପି ଭଞ୍ଜଙ୍କର ଏ ଅଶ୍ଳୀଳତା ତେବେ କଅଣ ? କେତେକ ପ୍ରଚ୍ଛନ୍ନ କ୍ରିୟା ଓ ପ୍ରଚ୍ଛନ୍ନ ସୂଚନାକୁ ବର୍ଣ୍ଣନାରେ ଅପ୍ରଚ୍ଛନ୍ନ କରି ଦେବାଇ ଏଇ ଅଶ୍ଳୀଳତା । ଏହା ସେ କଲେ କାହିଁକି ? ଏଥିରେ ବ୍ୟକ୍ତିର ବା ସମାଜର କି ଭୋଗ, ଲାଭ ବା କି ସଂକେତର ପ୍ରୟୋଜନ ଅଛି ? ଏ କଅଣ ଖାଲି ମୂର୍ଖତା ? ଲକ୍ଷ୍ୟ କରିବାର ଅଛି, ଏ ସବୁ ବର୍ଣ୍ଣନା ପୁଣି ବରଭାର୍ଯ୍ୟାଙ୍କ ଭିତରେ, କଠୋର ସାମାଜିକତା ଓ ସତୀତ୍ୱ ତଥା ସତୀସେବୀର ଘୋର ସଂଯମ ଭିତରେ । ଅକାଟ୍ୟ ପୂର୍ବଜନ୍ମ ଓ ଫଳଭୋଗ ଉପରେ ଏହା ପୂର୍ଣ୍ଣ ପ୍ରତିଷ୍ଠିତ । ଏହା ପୁଣି ନରନାରୀର ସ୍ୱଚ୍ଛନ୍ଦ ସମାଗମ ଆଦୌ ନୁହେ । ଏହା ପ୍ରଚଳିତ ପରମ୍ପରା, ଲୋକବିଧି ତଥା ସମାଜନୀତିରେ ପୂରାପୂରି ଶୃଙ୍ଖଳିତ । ଏପରିକି ଆଠମଙ୍ଗଳା ଦିନ ବରଭାର୍ଯ୍ୟାର ଦେଖା ପର୍ଯ୍ୟନ୍ତ ହେଉ ନାଇ । ସମସ୍ତ ସଂଭୋଗ ଭିତରେ ଭାର୍ଯ୍ୟାଇ ଭୋଗ୍ୟା—ସେ ଅନ୍ୟ ନାରୀ ନୁହେ—ସେ ସହଧର୍ମିଣୀ । ସେଇ ଭାବରେ ସେ ମୁହିଁରେ ନିଜକୁ ଦାସୀ ବୋଲି କହିଲେ ସୁଦ୍ଧା ସେ ଯଥାର୍ଥ ନାରୀସମ୍ମାନରେ ସମଳଂକୃତା । ତେବେ ବର୍ଣ୍ଣନାରେ ଏ ଅନାବଶ୍ୟକ ପ୍ରକାଶ କାହିଁକି ? କେହି ହୁଏତ କହି ପାରନ୍ତି ଏ ସବୁ ବନ୍ଧାନୀବିଦ୍ଧି କାମଶାସ୍ତ୍ରର ଜ୍ଞାନ ଓ ପ୍ରୟୋଗ ଓ ସେଇ ପ୍ରୟୋଗର କୌଶଳ—ପ୍ରକାଶ । କିନ୍ତୁ ତା ନୁହେ । କାମଶାସ୍ତ୍ରର ପ୍ରୟୋଗ ଦେଖାଇବା ପାଇଁ କେବଳ ଭାର୍ଯ୍ୟା କାହିଁକି ଲୋଡ଼ା ହେବ । ଉପେନ୍ଦ୍ରଭଞ୍ଜଙ୍କୁ ବର୍ଣ୍ଣନା ପାଇଁ କଅଣ ସାଧାରଣ ନାରୀ କିମ୍ବା ବେଶ୍ୟା ମିଳୁ ନ ଥିଲେ ? କାମ ସଂଭୋଗ

ନିମନ୍ତେ ବିବାହିତାଠାରୁ 'କରମଙ୍ଗା' ସାଧନା ଓ ସାଧାରଣୀ ଅଧିକ କୌଶଳନିପୁଣା ଓ ପ୍ରୀତିଦାୟିନୀ ଏହା କିଏ ନ ଜାଣେ ? ଜଳା ଦୃଷ୍ଟିରେ ଏବେ ବିବାହ ବୋଲି ଯାହା ଫୁଟୁଚି, ତାର ଆରମ୍ଭ ଯୁବକ-ଯୁବତୀର ସ୍ୱୈର ସମାଗମରେ ନୁହେ କି ? କଥାରେ ଯେତେ ଆଦର୍ଶ ପ୍ରୀତି ଦେଖାଇଲେ ମଧ୍ୟ ସେ ମଧୁର ସମାଗମରେ ନାରୀ ଭୋଗ୍ୟା-ସହଧର୍ମିଣୀ ନୁହେ । ଅନ୍ତତଃ ସେ ଭାବରେ ବା ସେ ସଙ୍କେତରେ ସେ ସମାଗମଟିର ଆରମ୍ଭ ନୁହେ । ବରଂ ତାର ପରମ୍ପରା ଦେଖାଯାଇପାରେ ଦୁଷ୍ମନ୍ତଙ୍କ ଗାନ୍ଧର୍ବ ବିବାହରେ । ପରେ ସେ ସହଧର୍ମିଣୀ ହୋଇପାରେ । ସେ ସ୍ୱତନ୍ତ୍ର କଥା । ଦୃଢ ପୁନର୍ଜନ୍ମ ବା କର୍ମଫଳ ବିଶ୍ୱାସର ସେ ସବୁଥିରେ କୌଣସି ସମ୍ପର୍କ ନାହିଁ ।

ହେଲେହେଁ ପାରିପାର୍ଶ୍ୱିକ ପରିସ୍ଥିତିରେ ଏଇ ସ୍ୱୈର ସମାଗମର ଉତ୍କଟତା ତଥା ବୀଭତ୍ସ ଅଶ୍ଳୀଳତା ଦେଖିଲେ ଏକା ଭଞ୍ଜ ଓ ଭଞ୍ଜୀୟମାନଙ୍କୁ ଚିହ୍ନିବାର ସୁବିଧା ହେବ । ଦମୟନ୍ତୀର ବର୍ଣ୍ଣନା ସଙ୍ଗେ ଭଞ୍ଜକଳ୍ପିତ ନାରୀଙ୍କର କେତେକ ସାମଞ୍ଜସ୍ୟ ଥିଲେ ହେଁ ନୈଷଧର ଶ୍ରୀହର୍ଷ, ଭଞ୍ଜଙ୍କର ଆଦର୍ଶ ନୁହନ୍ତି । ନଳ ଦମୟନ୍ତୀଙ୍କ ବିବାହ ପର ଭୋଜି ପ୍ରଭୃତି ସ୍ୱଚ୍ଛନ୍ଦ ନାରୀ ସମାଗମ ତଥା ପରଦାର ସଙ୍ଗମର ସଙ୍କେତରେ ପୂର୍ଣ୍ଣ । ଭଞ୍ଜ ତହିଁରେ ବିଳାସୀ ନୁହନ୍ତି । ପୁଣି ସମସ୍ତ ଆଳଙ୍କାରିକତା ସତ୍ତ୍ୱେ ସାରଳାଦାସଙ୍କ ପୂର୍ବଜନ୍ମ, ଫଳଭୋଗ ଓ ନାରୀ ସମ୍ମାନ 'ନୈଷଧ'ରେ ନାଇ ।

ଏତେ ସଂଯତ ସୁନ୍ଦର ପାରମ୍ପାରିକ ଓ ସାମାଜିକ ଭାବଧାରା ଓ ପ୍ରେରଣା ଭିତରେ ସଂଯତ ଓ ଶୃଙ୍ଖଳିତ ଗାର୍ହସ୍ଥ୍ୟର ନିର୍ଦ୍ଦିଷ୍ଟ ଓ ଦୃଢ ସୀମା ଭିତରେ ରହି ବର ଭାର୍ଯ୍ୟା ସମାଗମର ପ୍ରଚ୍ଛନ୍ନକ୍ରିୟାକୁ ବର୍ଣ୍ଣନାରେ ଏପରି ପ୍ରକାଶ କରିବାର ହେତୁ ତେବେ କଣ ? ଏ ହେତୁ ଖୋଜିବାରେ ଆସ ଇତିହାସକୁ ଟିକିଏ ଦୃଷ୍ଟି ଦିଆଯାଉ ।

ପ୍ରାଚୀନ କାଳରୁ ପୂର୍ବ ଓ ଉତ୍ତର ଭାରତରେ ବ୍ୟାପି ଯାଇଥିଲା ତନ୍ତ୍ର ଓ କୌଳ ଧର୍ମ । ସେଥିରେ ପଞ୍ଚମକାରାଦି ସୂତ୍ରରେ ଯତ୍ରତତ୍ର ନାରୀଠାରେ ଯଥେଚ୍ଛା ବ୍ୟବହାରଇ ମହା ଧର୍ମ କାର୍ଯ୍ୟ ଥିବା କଥା ସୂଚିତ ହୋଇଛି । କୁଳୀନର ଏଇ କୌଳ ତନ୍ତ୍ର ସାଧନା ଖ୍ରୀ. ୧୬୩୦ ପରେ ଅର୍ଥାତ୍ ଖୋରଧାର ଭୋଇ ବଂଶୀୟ ନରସିଂହ ଦେବଙ୍କଠାରୁ ସ୍ୱଷ୍ଟାନୁକରଣରେ ଉତ୍କଳର ଶ୍ରେଷ୍ଠ ଓ ନିୟାମକ ପୁରୀ ବ୍ରାହ୍ମଣ ସମାଜରେ ପଶିବାରେ ଲାଗିଥିଲା । ତେଣେ ଅନ୍ୟତର ସମାଜ ଶ୍ରେଷ୍ଠ, ରାଜ ପ୍ରତିଷ୍ଠିତ କରଣମାନେ ମଧ୍ୟ ଖୁବ୍ କମରେ ରାୟ ରାମାନନ୍ଦଙ୍କ କାଳରୁ ଆରମ୍ଭ କରି ସହଜିଆ ବୈଷ୍ଣବଙ୍କ ମାର୍ଗରେ ଯତ୍ର ତତ୍ର ସୁନ୍ଦରୀ ଯୁବତୀ ଦେଖି ତାଙ୍କୁ ରାଧାରୂପେ ରତିରେ ଏକାକାର କରି ମହାସୁଖ ରୂପ କୃଷ୍ଣ-ପ୍ରାପ୍ତିର ବନ୍ୟା ସମାଜରେ ଛୁଟାଉଥିଲେ । 'ପ୍ରଜ୍ଞାପାରମିତା' କଥାରେ ତନ୍ତ୍ରର ଅଗମ୍ୟା

ଗମନାଦି ଯୈଉ ନାରୀ ସମାଗମ ଓ ପ୍ରଣାଳୀ ଓ ପ୍ରକ୍ରିୟା ପ୍ରଭୃତି କଥା ସୂଚନାରେ ପ୍ରସଙ୍ଗାନ୍ତରରେ କୁହା ହୋଇଚି । ଏବେ ସହଜିଆ ବୈଷ୍ଣବଙ୍କ ଶାସ୍ତ୍ରଟିକିଏ ଦେଖାଯାଉ ।

## ସହଜିଆ ବୈଷ୍ଣବ ଧର୍ମ ପ୍ରଚାରବେଳେ ଭଞ୍ଜ ଥିଲେ ଦୀପ ସ୍ତମ୍ଭ :–

ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ" ସହଜିଆ ପ୍ରବନ୍ଧରେ ପ୍ରାଚ୍ୟ ବିଦ୍ୟାମହାର୍ଣ୍ଣବ ସ୍ୱର୍ଗତ ନଗେନ୍ଦ୍ର ନାଥ ବସୁଙ୍କ ବଙ୍ଗଳା ଭାଷା କୋଷରୁ ଅନେକ କଥା ମଧ୍ୟରେ ଏହା ଉଦ୍ଧାର କରିଚନ୍ତି :–

"ପରକୀୟା ନାୟିକାଙ୍କ ଦେହକୁ ଶ୍ରୀ ବୃନ୍ଦାବନ ଓ ପରକୀୟା ନାୟିକାଙ୍କ ଠାରେ ଶ୍ରୀ ଶ୍ୟାମସୁନ୍ଦର ଓ ରାଧାରାଣୀଙ୍କ ଅଧିଷ୍ଠାନ ବୋଲି ବିଶ୍ୱାସ କରି ଏମାନେ ତାଙ୍କ ସେବା କରନ୍ତି । ସେମାନେ କହନ୍ତି, ପ୍ରେମ ବିନା ବ୍ରଜେନ୍ଦ୍ର ନନ୍ଦନଙ୍କ ପ୍ରାପ୍ତି ଦୁର୍ଲଭ । ସେମାନେ କହନ୍ତି, ପରକୀୟା ନାରୀଙ୍କ ସଙ୍ଗେ ତାଙ୍କ ଦେହ ବୃନ୍ଦାବନରେ ବିଚରଣ କରି, ଉକ୍ତ ବୃନ୍ଦାବନରେ ନିଜର ଜୀବନ, ଯୌବନ ଓ ଦେହ ଅର୍ପଣ ଓ ତାଙ୍କ ରତିରେ ନିଜ ରତି ମିଶାଇ ଭାବ ଓ ପ୍ରେମକୁ ଏକ କରି 'କାମବୀଜ' ଓ 'କାମଗାୟତ୍ରୀ' ଦ୍ୱାରା ସେଇ କାମିନୀଙ୍କ କାମରତିକୁ ଉତ୍ତେଜିତ କରି, ତାଙ୍କ ଅଧରାମୃତ ପାନ କଲେ ସାଧକ ଓ ପରକୀୟା ଦୁହେଁ ଶ୍ରୀକୃଷ୍ଣଙ୍କୁ ଲାଭ କରିବେ । ଅତଏବ ଏମାନଙ୍କ ମତରେ ସାଧନ ଭଜନ କରିବାକୁ ହେଲେ, ପ୍ରଥମତଃ ଗୋଟିଏ ସୁନ୍ଦରୀ, ନବ ଯୌବନ ସମ୍ପନ୍ନା ପରକୀୟା ରସିକା ରମଣୀ ଲୋଡ଼ା ଇତ୍ୟାଦି ।" ଧର୍ମ ନାମରେ ଏଇ ସବୁ ସହଜ ସୁଖକର ପ୍ରଚାରକୁ ପରିପ୍ରେକ୍ଷୀରେ ରହିଁ ଝଡ଼ ବତାସରେ ଦୀପସ୍ତମ୍ଭ ପରି ଛିଡ଼ା ହୋଇଥିଲେ ଭଞ୍ଜ ।

## ପରକୀୟା ବୈଷ୍ଣବଙ୍କ ରାଧାକୃଷ୍ଣ :–

ସେତିକି ନୁହେ, ଆଉ ଗୋଟିଏ କଥା ମଧ୍ୟ ଏଠି ଦେଖି ବୁଝିବାର ଅଛି । ପୂର୍ବ–ଭାରତର ବୌଦ୍ଧ ଓ ହିନ୍ଦୁର କୌଳତନ୍ତ୍ର ଓ ଚର୍ଯ୍ୟାରୁ ବାହାରି ଥିବା ସହଜିଆ ଧର୍ମ ଯେତେବେଳେ ଆନ୍ଧ୍ରବୀର ନିମ୍ବାର୍କଙ୍କୁ ପରମାଶ୍ରୟ ପାଇ ପରକୀୟା ବୈଷ୍ଣବର ରାଧାକୃଷ୍ଣରେ ପରିଣତ ହେଲା, ପୁଣି ବୃନ୍ଦାବନ ବାଟେ ସମସ୍ତ ଉତ୍ତର–ଭାରତରେ ନାନାଭାବରେ କ୍ରମେ ବ୍ୟାପ୍ତ ହେବାରେ ଲାଗିଲା, ସେତେବେଳେ ସେଇ ନିମ୍ବାର୍କଙ୍କ ପରେ ପରେ ଉତ୍ତର ଓ ପଶ୍ଚିମ ଭାରତରେ ଯେପରିକି ରାଧାକୃଷ୍ଣଙ୍କ ପ୍ରତିକ୍ରିୟାରେ ବାହାରି ଥିଲେ 'ସୀତାରାମ' । ଏ ଆଡ଼ ମନୀଷୀମାନେ ଯଥାର୍ଥରେ ଧର୍ମ ତଥା ସମାଜରେ ସ୍ୱଚ୍ଛନ୍ଦ ବ୍ୟଭିଚାର ପରିବର୍ତ୍ତରେ କଠୋର ସତୀତ୍ୱର ଆଦର୍ଶକୁ ପ୍ରତିଷ୍ଠା କରିବାର ଲୋଡ଼ିଲେ । ଜଗନ୍ନାଥଙ୍କର ଓଡ଼ିଶାରେ ଧର୍ମ ନାମରେ ସ୍ୱଚ୍ଛନ୍ଦ ନାରୀ ସମାଗମର ପ୍ରବଳ ପ୍ରଚାର ସତ୍ତ୍ୱେ ତାନ୍ତ୍ରିକ ଓ ବୈଷ୍ଣବର ଘୋର ପ୍ରଭାବ ଭିତରେ ଏଇ ପବିତ୍ର 'ରାମ' ସ୍ରୋତ ପଶିଥିଲା । ଆଜି ମଧ୍ୟ ଓଡିଶାରେ– ବିଶେଷତଃ, କୋରାପୁଟ, ଗଞ୍ଜାମ, ପୁରୀ କଟକ ପ୍ରଭୃତିରେ ଶବକୁ ଶ୍ମଶାନକୁ ନେଲାବେଳେ

ଲୋକେ 'ହରି ବୋଲ' 'ବୋଲ ହରି' ନ କହି କହନ୍ତି 'ରାମ ନାମ ସତ୍ୟ ହେ' । କ୍ଷୁଦ୍ର ଦୋଷ ଦୁଷ୍ଟ ପ୍ରଭୃତିର ସାମ୍ମୁଖ୍ୟ ବର୍ଜନ କରିବା ପାଇଁ 'ହରି ହରି' ନ କହି କହନ୍ତି 'ରାମ ରାମ' । ଏଇପରି ଆଗ୍ରର ବ୍ୟବହାରରେ ଖୋଜିଲେ ବହୁତ ପ୍ରଭେଦ ଦେଖାଯିବ । ଏଇ ପ୍ରଭେଦର ସ୍ପଷ୍ଟ ଓ ଜୀବନ୍ତ ପ୍ରତୀକ ଥିଲେ ସ୍ୱୟଂ ଉପେନ୍ଦ୍ର ଭଞ୍ଜ । ଏପରି କି ଭଞ୍ଜ ସାହିତ୍ୟରେ ପ୍ରକ୍ଷେପ ବାରିବାର ମଧ୍ୟ ଏ ଗୋଟିଏ ବିଶିଷ୍ଟ ମାନଦଣ୍ଡ ।

## ସମାଜର ଗତି ଫେରାଇବାରେ ଭଞ୍ଜଙ୍କର ପ୍ରଚେଷ୍ଟାଃ-

ଉପେନ୍ଦ୍ର ଭଞ୍ଜ ଥିଲେ ରାମ ଭକ୍ତ । ସେ ନୈଷ୍ଠିକ ଭାବରେ 'ରାମତାରକ', ମନ୍ତ୍ର ଜପ କରିଥିଲେ । ତାଙ୍କର ବିଶ୍ୱାସ ଥିଲା, ତାରି ସିଦ୍ଧିରେ ସେ ହୋଇଥିଲେ କବି । 'ବୈଦେହୀଶ ବିଳାସ' ଥିଲା ତାଙ୍କର ପ୍ରଥମ କାବ୍ୟ ।

ଅତଏବ; ଉପର ସୂଚିତ ଏଇ ଦୂରତିକ୍ରମଣୀୟ ଦୁର୍ଦ୍ଦୈବ ପରି ମାଡ଼ି ଆସୁଥିବା ପ୍ଲାବନୀ ବନ୍ୟା ଓ ବିଧ୍ୱଂସୀ ଝଞ୍ଜା ଭିତରେ ନିଜର ଅଭାବନୀୟ ଅଟଳ ଭଙ୍ଗିମାରେ ଠିଆ ହୋଇଥିଲେ ଉପେନ୍ଦ୍ର ଭଞ୍ଜ । ସେ କାଳ ରାଜନୀତିକ ପରାଧୀନତାର ନିର୍ବେଗ, ନିଃସଙ୍କୋଚ ଓ ଦାୟିତ୍ୱହୀନ ଜୀବନରେ ସହଜିଆ ଓ ତନ୍ତ୍ରର ସ୍ୱଚ୍ଛନ୍ଦ ତଥା ଅବାଧ ଯୌନ ଭୋଗ ଲୋକଙ୍କୁ କ୍ଷୟ ରୋଗ ପରି କୌଶଳରେ ଆକ୍ରମଣ କରି ଭୁଲାଇଲା ବେଳେ ପବିତ୍ର ଦାମ୍ପତ୍ୟ ଜୀବନରେ ବିଧିବଦ୍ଧ ସମ୍ଭୋଗର ପ୍ରଚ୍ଛନ୍ନ କ୍ରିୟାକୁ ଟିକିଏ ଅପ୍ରଚ୍ଛନ୍ନ କରି ଲୋକଙ୍କର ଗତି ଫେରାଇବାର ପ୍ରଚେଷ୍ଟାରେ ଅଶ୍ଳୀଳତା ଯେଉଁମାନେ ଦେଖାନ୍ତି, ସେମାନେ ଯଥାର୍ଥ ବିଷୟବସ୍ତୁ ଦେଖନ୍ତି ନାହିଁ ; କିମ୍ବା ସେହି ବିଷୟବସ୍ତୁର ଯଥାର୍ଥ ପ୍ରଭାବ, ପ୍ରେରଣା ଓ ପରିସର ବୁଝନ୍ତି ନାହିଁ ।

## ଏ ତଥାକଥିତ ଅଶ୍ଳୀଳତା, ଅଶ୍ଳୀଳତା ନୁହେଃ-

ଏ ତଥାକଥିତ ଅଶ୍ଳୀଳତା, ଅଶ୍ଳୀଳତା ନୁହେ । ବିଶେଷରେ ଗୌଡ଼ୀୟ ବୈଷ୍ଣବ ଓ ତାନ୍ତ୍ରିକ ଭାବଭାବିତଙ୍କ ନିମିତ୍ତ, ଏଇ ତଥାକଥିତ ଅଶ୍ଳୀଳତା ଫଳରେ ବରଂ ଆମ ମୈଥିଳୀଦେବ, ଜଗତ୍ ପୁରୁଷ, ପୁରୁଷୋତ୍ତମ ଜଗନ୍ନାଥ ଏବେ ମଧ୍ୟ ପ୍ରଚୁର ଓ ପ୍ରଭାବର ଏତେ ବିଷଦ୍‌ପାତ ସତ୍ତ୍ୱେ ଆମ ବାବାଦୀ ମାତାଙ୍କ 'ରାଧେଶ୍ୟାମ' ହୋଇ ନାହାନ୍ତି । ପୁରୀ, ନବଦ୍ୱୀପ ବା ବୃନ୍ଦାବନ ହୋଇନାହିଁ କିମ୍ବା ଆମ ଭୁବନେଶ୍ୱର ଲିଙ୍ଗରାଜ ଆମ କୌଳଧର୍ମୀ ତାନ୍ତ୍ରିକଙ୍କ ଶିବ ଶକ୍ତିରେ ପରିଣତ ହୋଇ ନାହାନ୍ତି । ଏ ସବୁ ଭିତରେ ଅଛି ପରମ୍ପରାବେଦିତ ପରିସ୍ଥିତିରେ ଆମ ଉପେନ୍ଦ୍ର ଭଞ୍ଜଙ୍କ ନିର୍ମଳ ସ୍ପୃହଣୀୟ ପ୍ରଚେଷ୍ଟା । ଏଇଥିରେ କବି ହୁଏ ଦ୍ରଷ୍ଟା । ଏଇଥି ପାଇଁ ଆମର କବି ବୋଇଲେ ଦ୍ରଷ୍ଟା । ସମସ୍ତ ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଆକ୍ରମଣ ଭିତରେ ଆମ ଘୋର ଗର୍ବିତ ବୈନ୍ୟ ଓ ଜୀବନ୍ୟାସ ମନ୍ତ୍ରର ପ୍ରତୀକ ଏଇ ହେଉଛନ୍ତି- ଆମ ଉପେନ୍ଦ୍ର ଭଞ୍ଜ । ଏହାହିଁ ଆମର ଭଞ୍ଜୀୟ ଜାତୀୟ ସାହିତ୍ୟ ।

—×—

# ଲାବଣ୍ୟବତୀ*

## କାବ୍ୟର ଏକ ଭାତ୍ତ୍ୱିକ ଆଲୋଚନା

### ୧ । ଭଞ୍ଜଙ୍କର ପ୍ରତିଷ୍ଠା :

'ଲାବଣ୍ୟବତୀ' ନାମ ଓଡ଼ିଶାରେ ପ୍ରିୟ ଏବଂ ପରିଚିତ । କବି କଳ୍ପିତ ନାୟିକାର ନାମ ହେଲେହେଁ, ସୁରୁଚି ସମ୍ପନ୍ନ, ସରସ । ଶିକ୍ଷିତ ପରିବାରରେ ଅନେକ କନ୍ୟା ବଧୂମାନଙ୍କୁ ଏଇ ନାମ ଦେଇ କବିଙ୍କ ପ୍ରତି ତଥା ତାଙ୍କ କାବ୍ୟ ପ୍ରତି ଆଜି ଗ୍ରାମେ ଗ୍ରାମେ ଆଦର ଓ ଆସ୍ଥା ଦେଖାଉ ଅଛନ୍ତି । ଉପେନ୍ଦ୍ରଭଞ୍ଜ ଲୋକ ସାଧାରଣଙ୍କ ଭାଷାରେ କାବ୍ୟ ଲେଖି ନାହାନ୍ତି । ତାଙ୍କ କାବ୍ୟରେ ଲଙ୍ଗଳ ହସ୍ତ ଚଷାର ବର୍ଣ୍ଣନା ନାହିଁ । ବଢେଇ କାଠ କରନ୍ତୁ ନାହିଁ । ଗଉଡ଼ ଗୋଠରେ ବେଣୁ ବଜାଉ ନାହିଁ । ଦରିଦ୍ର ପଲ୍ଲି କୁମାରୀ ବିଲରେ ଧାନସୀସା ଗୋଟାଉ ନାହିଁ । କନ୍ଧ ବିବାହ ନାହିଁ, ସାନ୍ତାଳ ନାଚ ନାହିଁ, ଭୁୟାଁ ଧାଙ୍ଗଡ଼ମାନଙ୍କର ଗଡିରେ ଏକତ୍ର ବାସ ନାହିଁ । ପଲ୍ଲି ଦମ୍ପତିର ଆଳାପ ନାହିଁ, ପ୍ରେମ ନାହିଁ କଳହ ନାହିଁ ; ସ୍ଥୂଳରେ ଲୋକ ସାଧାରଣର ଜୀବନ ଛାୟା, ଭାବ ବିକାଶ, ହୃଦୟର ଗତି ଚିନ୍ତା ସ୍ଫୁରଣ, ଆକାଂକ୍ଷା, ଆସକ୍ତି, ଅଭିପ୍ରାୟ ପ୍ରଭୃତିର ସ୍ଥାନ ଭଞ୍ଜୀୟ କାବ୍ୟରେ ନାହିଁ କହିଲେ ଚଳେ । କିନ୍ତୁ ଭଞ୍ଜ ଉତ୍କଳର ସର୍ବତ୍ର ଆଦୃତ ଓ ଉତ୍କଳ କବି ଓ ସାହିତ୍ୟିକ କୁଳର ନମସ୍ୟ । ନବଯୁଗର କବିବର ରାଧାନାଥ ଯଥାର୍ଥ କହି ଅଛନ୍ତି —

"ଭାଗ୍ୟବାନ ବେନି ବାଣୀଙ୍କ କୁମର
କବି ବଳଦେବ ଭଞ୍ଜ ବୀରବର ।"

ରୁଚି ବଦଳି ଯାଉଅଛି, ଲୋକର ଚିନ୍ତା ଓ ଆଦର୍ଶରେ ପରିବର୍ତ୍ତନ ଘଟୁଅଛି, ଭଞ୍ଜ ଯୁଗ ଆଜି ଉତ୍କଳରେ ନାହିଁ । ତଥାପି ଭଞ୍ଜ, ବାଣୀଙ୍କର ବରପୁତ୍ର ହୋଇ ରହିଛନ୍ତି ଏବଂ ଅନେକ ଦିନଯାଏ ରହିବେ । ଜାତୀୟ ହୃଦୟରେ ଏପରି ଆଧିପତ୍ୟ ଏବଂ ପ୍ରତିଷ୍ଠା ବଡ଼ ବେଶି କବିଙ୍କ ଭାଗ୍ୟରେ ଘଟେ ନାହିଁ । ଓଡ଼ିଶାରେ ଆଜି

---

* ୧୯୨୭ ସାଲ ( ୧୯୧୭ ମସିହା ) 'ସତ୍ୟବାଦୀ' ମାସିକ ପତ୍ରିକା ପ୍ରଥମଖଣ୍ଡର ଅଷ୍ଟମ ଓ ନବମ, ଦଶମ ଓ ଏକାଦଶ, ଦ୍ୱାଦଶ ଓ ଦ୍ୱିତୀୟ ଖଣ୍ଡର ପ୍ରଥମ ଓ ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ ।

"ଗାଏ ତୃମ୍ଭ ଗୀତ ସଭରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟ ମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟ ରଙ୍ଗେ ବାରଙ୍ଗନା ।"

**୨ । ଲାବଣ୍ୟବତୀ ଭଞ୍ଜଙ୍କର କାବ୍ୟ କଳା କଳ୍ପନାର ଆଦର୍ଶ କାବ୍ୟ–**

ଲାବଣ୍ୟବତୀ ଭଞ୍ଜଙ୍କର ସର୍ବୋତ୍କୃଷ୍ଟ କାବ୍ୟ ନ ହୋଇ ପାରେ , କାରଣ ସେ ବିଷୟରେ ମତଭେଦ ଅଛି । କିନ୍ତୁ ଏହା ଯେ ତାଙ୍କର କାବ୍ୟକଳା କଳ୍ପନାର ଆଦର୍ଶ ବା ଛାଞ୍ଚ, ସେଥିରେ ଦ୍ୱିରୁକ୍ତି ହୋଇ ନ ପାରେ । ରାମାୟଣ ପ୍ରଭୃତି ପ୍ରାଚୀନ ଆର୍ଷ କାବ୍ୟର ବିଷୟ ଅବଲମ୍ବନରେ ଭଞ୍ଜ ଯେ ସମସ୍ତ କାବ୍ୟ ଲେଖିଛନ୍ତି, ତାହା ଛାଡ଼ିଦେଲେ ତାଙ୍କର ଅନ୍ୟାନ୍ୟ ବା ମୌଳିକ କାବ୍ୟ ସବୁର ଲାବଣ୍ୟବତୀ ନିରାପଦ ମାନଦଣ୍ଡ ବା ମାପକାଠି ହୋଇପାରେ । ତେଣୁ ଲାବଣ୍ୟବତୀର ସମାଲୋଚନା ଭଞ୍ଜୀୟ କାବ୍ୟମାନଙ୍କର ପ୍ରକୃତି ପ୍ରକ୍ରିୟା ଓ ଆଦର୍ଶ ନିର୍ଦ୍ଦେଶ କରିବାରେ ବହୁ ପରିମାଣରେ ସାହାଯ୍ୟ କରିବ ।

**୩. ସମାଲୋଚନାରେ ବର୍ତ୍ତର ସମାଲୋଚକ କବିଙ୍କ ପ୍ରତି ସହାନୁଭୂତିଶୀଳ ହେବା ଆବଶ୍ୟକ–**

ସୁଦକ୍ଷ ସମାଲୋଚକ ସ୍ୱର୍ଗୀୟ ରାମ ନାରାୟଣ ରାଉ ଏଥି ପୂର୍ବେ ଉପେନ୍ଦ୍ର ଭଞ୍ଜଙ୍କର ସମାଲୋଚନା କରିଥିଲେ । ତହିଁର ଫଳରେ ଉତ୍କଳର ସାହିତ୍ୟ ଜଗତରେ ଯେ ଝଡ଼ ତୋଫାନ ହୋଇଥିଲା, ତାହା ଅନେକଙ୍କର ଏବେ ବି ଅରାନିଭ କଥା ହୋଇ ରହିଅଛି । ଦଳଗତ ଭାବରେ ଗ୍ରଥିତ ହୋଇ ସମାଲୋଚନା କଲେ ଅନେକ ତଥ୍ୟ ପ୍ରକାଶ ପାଇ ପାରେ, କିନ୍ତୁ ନିରପେକ୍ଷତା ଅଭାବରୁ ସମ୍ପୂର୍ଣ୍ଣ ସତ୍ୟ ମିଳେ ନାହିଁ, କିମ୍ବା ସହୃଦୟତା ଓ ସହାନୁଭୂତି ପରିସ୍ଫୁଟ ହୁଏ ନାହିଁ । ଏକ ଦିଗରେ ପିତୃ ପୁରୁଷର ନିନ୍ଦାରେ ଯେଉଁ ମାନେ ଆତ୍ମ ପ୍ରତିଷ୍ଠାର ପ୍ରୟାସୀ, ସେମାନେ ଭ୍ରାନ୍ତ । ପକ୍ଷାନ୍ତରରେ ସେ ନିନ୍ଦାର ଯଥା ଅଯଥା ପ୍ରତିବାଦରେ ଆଲୋଚନାରେ ନିରପେକ୍ଷତା ରହିବା ସମ୍ଭବ ନୁହେଁ । କବି ନିଜ ପାଠକମାନଙ୍କ ଠାରୁ ଭାବୁକତା ଏବଂ ସହୃଦୟତା ଆଶା କରନ୍ତି । "ସତ କବି ଆୟୁ" ଭେଳି ଭାବୁକ ପାଠକ ଜନ୍ମ ହେବାର କବି ନିଜେ କାମନା କରିଅଛନ୍ତି । ତେଣୁ ମମତା ଏବଂ ସହାନୁଭୂତିରେ ଅନୁପ୍ରାଣିତ ନ ହେଲେ କବିଙ୍କ ପ୍ରତି ଅନ୍ୟାୟ ଓ ନିଷ୍ଠୁରତା ହୁଏ । ଯେଉଁ କବି–

"ଜନ୍ମି ରାଜକୁଳେ ବଇଭବ କୋଳେ
ଅତୁଳ ସୁଖ ସଦନେ
ତେଜି ସେ ସମ୍ଭୋଗ ଆରମ୍ଭିଲେ ଯୋଗ
ବୀଣା ପାଣି ଆରାଧନେ ।"

ତାଙ୍କ ଅବସ୍ଥା ନ ବୁଝି, ଦେଶ କାଳ ପାତ୍ର ବିବେଚନା ନ କରି ଶତ ଶତ ବର୍ଷ ପରେ ଶ୍ମଶାନରୁ ତାଙ୍କ ଅସ୍ଥି ବାହାର କରି ନିର୍ଦ୍ଦୟ ଭାବରେ ଶୂଳ୍ୟ ପ୍ରୟୋଗ ଦ୍ୱାରା ତାହାର ବ୍ୟବଚ୍ଛେଦ କରିବା କବିତାର ସମାଲୋଚନାରେ ଶୋଭନୀୟ ବା ସହନୀୟ ନୁହେ ।

ଉତ୍କଳର ସାହିତ୍ୟର ଗୌରବ ଓ ବିଶେଷତ୍ୱ ଯେ, ରାଜା ଓ ଧନିକ ସନ୍ତାନମାନେ ସମ୍ପଦ ସେବା ପରିତ୍ୟାଗ କରି ଯୁଗେ ଯୁଗେ ବାଣୀର ଆରାଧନା କରି ଅଛନ୍ତି । ଏ ଶ୍ରେଣୀର ତ୍ୟାଗୀ ସାହିତ୍ୟସେବୀ ମାନଙ୍କ ମଧ୍ୟରେ ଲାବଣ୍ୟବତୀର କବି ଅଗ୍ରଣୀ । ଏ ମଧ୍ୟ ତାଙ୍କର ବଂଶର ଗୌରବ । କବି ନିଜ କାବ୍ୟମାନଙ୍କରେ ନିଜର ପରିଚୟ ଦେଇ ଅଛନ୍ତି । ଆଲୋଚ୍ୟ କାବ୍ୟର ଷୋଡ଼ଶ ଛାନ୍ଦରେ କହି ଅଛନ୍ତି:—

"ଯେ ବଂଶେ ଇଷ୍ଟ ଦୁର୍ଗା ଦେବୀ, ବରହି କୋଷରୁ ସମ୍ଭବୀ ।
ମନୁଷ୍ୟ ଏହି ଅଦଭୁତ, ଭଞ୍ଜାନୁଭଞ୍ଜ ନାମ ସତ ।
ବିଶିଷ୍ଟ ବଶିଷ୍ଟ ପାଳକା, ଆଗମେ ଦତ୍ତ ରାଜଟୀକା ।
ସେ କୁଳେ ରାଜା ଧନଞ୍ଜୟ, ସମସ୍ତ ଗୁଣର ନିଳୟ ।
ଘୁମୁସର ଅଧିପ ପଣେ, ଲୋକେ ବିଖ୍ୟାତ କବି ଗୁଣେ ।
ତଦ୍‌ଗତ ତାହାଙ୍କ ତନୁଜ, ନରେଶ ନୀଳକଣ୍ଠ ଭଞ୍ଜ ।
ତାହାଙ୍କ ଜ୍ୟେଷ୍ଠ ସୁତ ମୁହିଁ, ଉପେନ୍ଦ୍ର ଭଞ୍ଜ ନାମ ବହି ।
ତାରକ ମନ୍ତ୍ର ପରସାଦେ, ମୋହର କବି ପଣ ଉଦେ ।"

ଏକା ଉପେନ୍ଦ୍ରଭଞ୍ଜ ନୁହନ୍ତି, ତାଙ୍କ ପୂର୍ବ ଓ ପରବର୍ତ୍ତୀ କବିମାନେ ମଧ୍ୟ ଏପରି ଆତ୍ମ ପରିଚୟ ଦେଇ ଅଛନ୍ତି । ଆଦିକବି ସାରଳା ଦାସ ମଧ୍ୟ ଏ ଆତ୍ମ ପରିଚୟ ବିଧି ପ୍ରବର୍ତ୍ତାଇ ଥିଲେ ।

## ୪. କବିଙ୍କର ଦୈବ ବିଶ୍ୱାସ ଭାରତୀୟ ଚିନ୍ତାଧାରାର ଏକ ବିଶିଷ୍ଟ ଲକ୍ଷଣ:—

ଉଲ୍ଲିଖିତ ଉଦ୍ଧୃତାଂଶରୁ ଜଣାଯାଏ, ଉପେନ୍ଦ୍ର ଭଞ୍ଜ କେବଳ ରାଜପୁତ୍ର ନ ଥିଲେ । କେବଳ କବିତ୍ୱ ତାଙ୍କର କୁଳ ପରଂପରା ନ ଥିଲା । ଦୈବୀ ଶକ୍ତିରେ ମଧ୍ୟ ତାଙ୍କର ବିଶ୍ୱାସ ଓ ନିର୍ଭର ଥିଲା । ଏହି ଦୈବ ବିଶ୍ୱାସ ଭାରତୀୟ ଚିନ୍ତାବୀର, ଶକ୍ତିଧର ପୁରୁଷମାନଙ୍କର ଗୋଟିଏ ବିଶିଷ୍ଟ ଲକ୍ଷଣ । ବିପୁଳ ପାଣ୍ଡିତ୍ୟ ଓ ପୁରୁଷକାର ସତ୍ତ୍ୱେ, ଦେବତାଙ୍କର ଅନୁଗ୍ରହ ବିନା କୌଣସି ଗୁରୁତର କାର୍ଯ୍ୟରେ ସିଦ୍ଧି ଲାଭ ହୁଏ ନାହିଁ, ଏହା ଆର୍ଯ୍ୟର ଏକ ପ୍ରକାର ସହଜ ଧାରଣା କହିଲେ ଚଳେ । ଏ ଧାରଣାରେ ସମାଲୋଚକର ସମୁଚିତ ଆତ୍ମ ଓ ବିଶ୍ୱାସ ନ ରହିଲେ ସମାଲୋଚନାରେ ଅନେକ ସମସ୍ୟା ଅସମାହିତ ରହିବ ।

## ୫-କବିଙ୍କର ସମୟ ଓ ସେ ସମୟର ଅବସ୍ଥା ବିଚାର:-

କବିଙ୍କର କୁଳ ଓ ବିଶ୍ୱାସ ଛଡ଼ା ଆଉ ଗୋଟିଏ କଥା ସମାଲୋଚକର ସ୍ମରଣ ରଖିବା ଉଚିତ । ତାହା କବିଙ୍କର ସମୟ ଓ ସେହି ସମୟର ଅବସ୍ଥା । ଏହା କିନ୍ତୁ ସମାଲୋଚକ ପକ୍ଷେ ବଡ଼ ସହଜ ବ୍ୟାପାର ନୁହେ । ମାନବ ସାମାଜିକ ପ୍ରାଣୀ । ତାହାର ଚିନ୍ତା ସମାଜର ଚିନ୍ତା ଦ୍ୱାରା ନିୟନ୍ତ୍ରିତ । ଯେ ଯୁଗରେ ଏବଂ ଯେ ସମାଜରେ ତାହାର ଜନ୍ମ, ଯେ ବେଷ୍ଟନୀ ମଧ୍ୟରେ ତାହାର ଜୀବନର ବିକାଶ, ଯେ ଶକ୍ତି ସମୂହ ଦ୍ୱାରା ତାହାର ଚିନ୍ତା, ମନର ଗତି ସଂଗଠିତ, ଯେଉଁ ଅଭ୍ୟାସ ଓ କ୍ରିୟାଦି ଦ୍ୱାରା ତାହାର ରୁଚି ନିର୍ମିତ—ମୂଳତଃ ଯେ ସମସ୍ତ ପ୍ରଭାବ ଓ ପ୍ରକ୍ରିୟା ଦ୍ୱାରା ତାହାର ବ୍ୟକ୍ତିତ୍ୱ ସମ୍ପାଦିତ, ସେ ସବୁରୁ ଆପଣାକୁ ପୃଥକ କରିବା ଏକାବେଳକେ ଅସମ୍ଭବ ନ ହେଲେହେଁ କଦାପି ସୁସାଧ୍ୟ ନୁହେ । ଚଳିତ ଘଟନାପ୍ରବାହର ଗତି ଲକ୍ଷ୍ୟ କରି ଭବିଷ୍ୟତ ଅନୁମାନ କରିବା ଯେପରି ଦ୍ରଷ୍ଟା ଚିନ୍ତାବୀର ପକ୍ଷରେ ଦୁରୂହ, ବର୍ତ୍ତମାନର ନିତ୍ୟ ଅନୁଭୂତି ଘଟନା ଗଣ୍ଡିର ବେଷ୍ଟନୀ ମଧ୍ୟରେ ରହି ଇତିହାସ ବା ପରମ୍ପରାଲବ୍ଧ ଘଟନାମାନଙ୍କର ଅନୁମାନରେ ଅତୀତର ଅବସ୍ଥା ଓ ପ୍ରକୃତିକୁ ଅନୁଭବରେ ଆଣି ସେ ସବୁର ବାସ୍ତବ୍ୟତା ନିର୍ଦ୍ଦେଶ କରିବା ଜ୍ଞାନଜ୍ଞ ଓ ବ୍ୟବହାର ପ୍ରବୀଣ ମନୀଷୀ ପକ୍ଷରେ ସେହିପରି ସୁକଠିନ । କାଲି କଣ ହେବ କେହି କହି ପାରିବେ ନାହିଁ । ଶହେ କିମ୍ବା ପଚାଶ ବର୍ଷ ପରର କଥା ତ ବହୁଦୂର । କିନ୍ତୁ ବିଚକ୍ଷଣମାନେ ନିଜର ଦୂରଦୃଷ୍ଟି ବଳରେ ବର୍ତ୍ତମାନ ଘଟନାରୁ ସମ୍ଭାବ୍ୟ ଗଣନା କରି ଭବିଷ୍ୟତ ନିର୍ଦ୍ଦେଶ କରନ୍ତି । ସମାଜରେ ସେମାନେ ମହାପୁରୁଷ । ସେମାନେ ସର୍ବଜ୍ଞ, ସେମାନେ ଦ୍ରଷ୍ଟା । ସେହିପରି କାଲି ଯାହା ହୋଇଗଲା, ଯାହା ଆମ୍ଭର ଆଖି ଆଗରେ ଘଟି ଯାଇଅଛି, ତାହା ପୁଙ୍ଖାନୁପୁଙ୍ଖ କଳ୍ପନା କରି ନିର୍ଦ୍ଦେଶ କରିବା, ଏବଂ ତାହାର କାରଣ ସ୍ଥିର କରିବା, ଯେଉଁ ସବୁ ଶକ୍ତିର ସମବାୟ କ୍ରିୟା ଫଳରେ ସେ ଘଟନା ଘଟିଅଛି, ତାହା ନିଶ୍ଚୟ କରିବା ବଡ଼ କଠିନ । ଶହେ ଦୁଇଶ ବା ପାଞ୍ଚଶ ହଜାରେ ବା ତହିଁରୁ ବେଶି ବର୍ଷ ତଳର ଘଟନା ପଢ଼ି ଶୁଣି ବା ଅନୁମାନ କରି ତଦାନୀନ୍ତନ ଅବସ୍ଥା ଅନୁଭବରେ ଆଣିବା ସାମାନ୍ୟ ଶକ୍ତିମତ୍ତା ଓ ଗବେଷଣା ବୁଦ୍ଧିମତ୍ତାର କାର୍ଯ୍ୟ ନୁହେ । ପୁଣି ଭବିଷ୍ୟତ ନିର୍ଦ୍ଦେଶ କଲେ, ତାହା ସତ୍ୟ ହେବ କି ନା, ସମୟରେ ଜଣା ପଡ଼ିବ । କିନ୍ତୁ ଅତୀତର ମୀମାଂସା ପରୀକ୍ଷାର ଉପାୟ ନାହିଁ । ବ୍ୟକ୍ତିଗତ କଳ୍ପନା, ଚିନ୍ତା, ଅନୁମାନ ଓ ରୁଚି ଅନୁସାରେ ଏ ମୀମାଂସା ପୃଥକ୍ ପୃଥକ୍ । ଅବିଚଳିତଚିତ୍ତତା, ଅକୁଣ୍ଠିତ ସହାନୁଭୂତି, ଦେଶ କାଳ ପାତ୍ର ନିର୍ବିଶେଷରେ ସାମାଜିକ ଅବସ୍ଥା ଓ ଅନୁଷ୍ଠାନାଦି ପ୍ରତି ଉନ୍ମୁକ୍ତ ଉଦାରତା ଓ ଆଦର ଅତୀତ ତଥ୍ୟ ନିର୍ଦ୍ଦେଶ ପଥରେ କେବଳ ସହାୟ । କବି ଜନ୍ମିଲେ ଦୁଇଶ ବର୍ଷ ପୂର୍ବେ ।

ସମାଲୋଚକ ଆଜିର ଲୋକ । ଏ ଉଭୟଙ୍କ ମଧ୍ୟରେ ବ୍ୟବଧାନ ବିସ୍ତର । କେବଳ ସମୟର ନୁହେ । ଭାବରେ, କାର୍ଯରେ, ଘଟନାରେ ଦେଶର ଅବସ୍ଥା ଓ ସାମାଜିକ ବ୍ୟବହାରରେ—ଏମନ୍ତ କି ଅଶନ, ବସନ, ଭୂଷଣ ଆଦି ବ୍ୟକ୍ତିଗତ ଜୀବନର କ୍ଷୁଦ୍ର କ୍ଷୁଦ୍ର ନିତ୍ୟ କ୍ରିୟାରେ ମଧ୍ୟ ପାର୍ଥକ୍ୟ ରହିଅଛି । ଏ ସମସ୍ତ ପାର୍ଥକ୍ୟ ଓ ଏ ସୁଦୂର ବ୍ୟବଧାନ ଭେଦ କରି ଆଜିର ସମାଲୋଚକ ଦୁଇଶ, ତିନିଶ ବର୍ଷ ତଳର କବିଙ୍କ ବେଷ୍ଟନୀ ମଧ୍ୟରେ ଆପଣାକୁ ରଖି ନ ପାରିଲେ, ତାଙ୍କର ସମାଲୋଚନା ଯଥାର୍ଥରେ କବିଙ୍କ ସମାଲୋଚନା ନୁହେଁ, କିମ୍ବା ତାଙ୍କ କାବ୍ୟର ସମାଲୋଚନା ନୁହେ । ସେ କେବଳ ସମାଲୋଚକଙ୍କ କଳ୍ପିତ କବି ଏବଂ କାବ୍ୟର ସମାଲୋଚନା । ଏ ଶ୍ରେଣୀର ସମାଲୋଚକଙ୍କର କବିଙ୍କ ସହିତ ଚତୁରକ୍ଷ ହୁଏ ନାହିଁ । ଏମାନେ କବିଙ୍କ ହୃଦୟ ତନ୍ତ୍ରୀର ଧ୍ୱନି ଶୁଣନ୍ତି ନାହିଁ । ତାଙ୍କର ଆକାଂକ୍ଷା ଅନୁଭବ କରନ୍ତି ନାହିଁ । ତାଙ୍କର ଅସୁବିଧା ଓ ଆକୁଳତା ବୁଝନ୍ତି ନାହିଁ, ସମସାମୟିକ ଲୋକଙ୍କ ସଙ୍ଗେ ତାଙ୍କ ଆଦାନ ପ୍ରଦାନ ନୀତି ହୃଦୟଙ୍ଗମ କରନ୍ତି ନାହିଁ । ଏମାନେ କେବଳ ବହୁ ଦୂରରେ ରହି ନିଜ ସମୟ ଧ୍ରବର୍ତ୍ତିତ, ନିଜ ରୁଚିର ଅନୁକୂଳ ଦୂରବୀକ୍ଷଣ ପ୍ରତିଚକ୍ଷୁ ବା ଚଶମା ସାହାଯ୍ୟରେ କବିଙ୍କୁ ଯେପରି ଦେଖନ୍ତି, ସେହିପରି ଲେଖନ୍ତି । ପ୍ରତିଚକ୍ଷୁ କାଚର ସ୍ଥୂଳମଧ୍ୟତା ସୂକ୍ଷ୍ମମଧ୍ୟତାଦି ପ୍ରକାର ଭେଦ ଅନୁସାରେ ସେମାନେ କବିଙ୍କ ଆକୃତିର ସାନ ବଡ଼ ବିକଟ ବିମୋହନ ଛବି ଦେଖିଥାନ୍ତି ।

## ୭—ଲାବଣ୍ୟବତୀ କାବ୍ୟରେ ଅଶ୍ଳୀଳତା :

ଲାବଣ୍ୟବତୀର ଗ୍ରନ୍ଥକାର ଉପେନ୍ଦ୍ରଭଞ୍ଜଙ୍କୁ କେହି କେହି ଅଶ୍ଳୀଳ ଓ ରୁଚିହୀନ ଲେଖକ ବୋଲି ଆକ୍ଷେପ ଓ କଟାକ୍ଷ କରନ୍ତି । କରିବାର ଯେ ନିତାନ୍ତ ହେତୁ ନାହିଁ, ତାହା ମଧ୍ୟ ନୁହେଁ । ତାଙ୍କ ଲେଖାରେ ଏପରି ପ୍ରସଙ୍ଗର ଅବତାରଣା ଏବଂ ଏପରି ବିଷୟାଂଶମାନଙ୍କର ସୂକ୍ଷ୍ମ ଚିତ୍ରଣ ଦେଖାଯାଏ, ଯାହା ବର୍ତ୍ତମାନ କାବ୍ୟରୁଚିର ଅନଭିଳଷିତ ଓ ହେୟ । ଆଦିରସ ଘଟିତ ଭାବ, ଇଙ୍ଗିତ ଓ କ୍ରିୟାମାନଙ୍କର ଚିତ୍ର ସେ ବିଶେଷରେ ସେ ବଡ଼ ନିଃସଙ୍କୋଚରେ କରିଥିବାର ଦେଖାଯାଏ । ମାତ୍ର ରୁଚିର ଆଲୋଚନା ବେଳେ କବିଙ୍କ ପ୍ରତି ସମାଲୋଚକର ସେ ସମପ୍ରାଣତା ଓ ସହାନୁଭୂତି ଆବଶ୍ୟକ, ତାହା ଭୁଲିଯିବା ଉଚିତ ନୁହେଁ । କାବ୍ୟ ଦେଖିବା ବେଳେ ସମାଲୋଚକ ଯଥାଶକ୍ତି ଅନୁମାନ ବଳ ପ୍ରୟୋଗ କରି ନିଜକୁ କବିଙ୍କ ସ୍ଥାନରେ ରଖି ବିଚାର କରିବା ବିଧେୟ । କବିଙ୍କର ଆଖପାଖ ଘଟନାବଳି ଓ ସମାଜାଦିର ବ୍ୟବସ୍ଥା ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରିବାକୁ ହେବ । ସମାଜର ରୁଚି ଦିନକୁ ଦିନ ବଦଳି ଯାଉଅଛି ; ଆମ୍ଭକୁ ଆଜି ଯାହା ଅରୁଚିକର ବୋଧହୁଏ, ସବୁ ସ୍ଥାନରେ ସବୁ କାଳରେ

ତାହା ସେପରି ନ ହୋଇପାରେ । ଆମ୍ଭେ ଆଜି ଯାହାକୁ ରୁଚିକର ମନେ କରୁଅଛୁଁ, ଅବସ୍ଥା ପରିବର୍ତ୍ତନରେ ତାହା ଦିନେ ଅନ୍ୟ ପ୍ରକାର ବିବେଚିତ ହୋଇପାରେ । ଫିଜି ପ୍ରଭୃତି ଦ୍ୱୀପରେ ଥିବା ଲୋକମାନେ ଧର୍ମତଃ ନରହତ୍ୟା ଆଚରଣ କରିବାର ଶୁଣାଯାଏ । ସେମାନଙ୍କର ସେଥିରେ ସଙ୍କୋଚ ନାହିଁ । ନରହତ୍ୟାରେ ନୈତିକତା ଅପଚିତ ହୁଏ ବୋଲି ସେମାନେ ଧାରଣା କରି ନାହାନ୍ତି । ସେ ସମାଜର ଲୋକଙ୍କ ପକ୍ଷରେ ଯାହା ସାଧୁ, ଆମ୍ଭ ପକ୍ଷରେ ତାହା ଅସାଧୁ ହୋଇପାରେ ; କିନ୍ତୁ ଏହା ବୋଲି ଆମ୍ଭର ନିଜ ନୈତିକ ମାପକାଠିରେ ମାପି ସେମାନଙ୍କୁ ଏକାବେଳକେ ନୀତିହୀନ ଓ ଜଘନ୍ୟ ବୋଲି ଘୃଣା କରିବା କଦାପି ମନୁଷ୍ୟୋଚିତ ନୁହେ । ସେଠାରେ ମଧ୍ୟ ମାନବ ପ୍ରାଣର ସହାନୁଭୂତିର ଅବକାଶ ଅଛି । ତାଙ୍କ ସ୍ଥାନରେ ନିଜକୁ ରଖି ତାଙ୍କର ନୈତିକ ଜୀବନ ଆଲୋଚନା କଲେ ନରହତ୍ୟାର ନୈତିକ ଜଘନ୍ୟତାର ଯେ ଚିତ୍ର ବର୍ତ୍ତମାନ ଆମ୍ଭକୁ ଦେଖାଯାଉଛି, ସେପରି ଦେଖାଯିବ ନାହିଁ । ପ୍ରତିମା ପୂଜାର ବିଧାନ ଅଛି ବୋଲି ଖ୍ରିଷ୍ଟାନମାନେ ସନାତନ ସୁପ୍ରତିଷ୍ଠିତ ମାନବ ମାତ୍ରର ଉପାଦେୟ ଆର୍ଯ୍ୟ ଧର୍ମକୁ ମଧ୍ୟ ଘୃଣା କରନ୍ତି । ସେହିପରି ଆମ୍ଭେମାନେ ମଧ୍ୟ ଖ୍ରିଷ୍ଟାନଙ୍କର ଗୋମାଂସ ଭକ୍ଷଣ, ଜୀବ ହିଂସାର ବିଧାନ ଓ ଆପାମର ସାଧାରଣଙ୍କର ଘୋର ଧର୍ମହୀନତା ଓ ଅପଚାର ଭାବିଲାବେଳେ ପ୍ରାଣରେ ବିକାର ଉପସ୍ଥିତ ହୁଏ । କିନ୍ତୁ ନିରପେକ୍ଷ ସମାଲୋଚକ କଦାପି ଏପରି ନିଜର ରୁଚି ଅରୁଚି ଘେନି ଧର୍ମ ବା ସମ୍ପ୍ରଦାୟ ବିଶେଷ ନୈତିକ ଜୀବନ ବିଷୟରେ ମତ ଦେବେ ନାହିଁ ।

## (କ) ସମାଲୋଚନାର ମାନଦଣ୍ଡ ନିଜର ରୁଚିର ଊର୍ଦ୍ଧ୍ୱରେ ରହିବା ଉଚିତ :—

ରୁଚି, ବ୍ୟକ୍ତି, ସମୟ ଓ ସାମାଜିକ ଅବସ୍ଥାଦିର ଅପେକ୍ଷା ରଖେ, କିନ୍ତୁ ସମାଲୋଚନାର ମାନଦଣ୍ଡ ଏସବୁ ଭେଦକରି ଉପରକୁ ଉଠିବା ଉଚିତ । ତେବେ ସ୍ୱୀକାର କରିବାକୁ ହେବ, ମନୁଷ୍ୟ ସର୍ବଦା ମନୁଷ୍ୟ । ଯେତେ ନିରପେକ୍ଷ ହେବାକୁ ମନ କଲେ ମଧ୍ୟ ପାରିପାର୍ଶ୍ୱିକ ଘଟନାରାଶି, ସମାଜାଦିର ଅବସ୍ଥା ଓ ନିଜର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ପ୍ରଭୃତିରୁ ସେ କଦାପି ନିଜକୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ କରି ନ ପାରେ । ତଥାପି ମାନବ ସ୍ୱଭାବତଃ ବେଳେ ବେଳେ ସାମୟିକ ରୁଚିରୁ ନିଜକୁ ବିଚ୍ଛିନ୍ନ କରିଥାଏ ଏବଂ ମାନବ ପ୍ରକୃତିର ସର୍ବାଂଶ ପର୍ଯ୍ୟବେକ୍ଷଣ କଲେ ବୋଧହୁଏ ମନର କୌଣସି କୌଣସି ଅବସ୍ଥା ଓ ପ୍ରାଣର କୌଣସି କୌଣସି ଅନୁଭୂତି ଅନ୍ତତଃ ବହୁକାଳ ପର୍ଯ୍ୟନ୍ତ ଅପରିବର୍ତ୍ତିତ ରହେ । ସେଥିପାଇଁ କେତେଗୁଡ଼ିଏ ରୁଚି ଓ କେତେଗୁଡ଼ିଏ ଅନୁଭୂତିକୁ ସାର୍ବଜନୀନ

ବୋଲି କୁହାଯାଏ । ବାତ୍ସଲ୍ୟରେ ପ୍ରାଣର ଆବେଗ ଓ ସମବେଦନା, ଭକ୍ତିର ସଞ୍ଚାରରେ ପ୍ରାଣର ସଚ୍ଛାଭତା ଓ ଆର୍ଦ୍ରତା, ଦାମ୍ପତ୍ୟ ପ୍ରଣୟର ଉନ୍ମେଷ ବେଳେ ପ୍ରାଣର ମଧୁର ଲୋଳ ସ୍ପନ୍ଦନ, ଆଶାର ସଜୀବତା, ଅବବୋଧର ଆତ୍ମବିସ୍ମୃତି, ଆଳସ୍ୟର ଅବସାଦ ଓ ଶମର ସହିଷ୍ଣୁତା ପ୍ରଭୃତି ଏହି ସାର୍ବଜନୀନ ଚିତ୍ତବୃତ୍ତିର ନିଦର୍ଶନ । କାଳିଦାସ, ଭବଭୂତି ପ୍ରଭୃତି ବହୁ ପରିମାଣରେ ମାନବ ପ୍ରକୃତିର ଏହି ସାର୍ବଜନୀନ ବୃତ୍ତିମାନ ଆଶ୍ରୟ କରି କବିତା ଲେଖି ଅଛନ୍ତି । ସମୟ ଓ ସମାଜର ଗତି ଭେଦ କରି ଦୃଷ୍ଟିସ୍ଥଳଭ ମନୀଷା ବଳରେ ବହୁ ପରିମାଣରେ ସେମାନେ କାବ୍ୟ ଚିତ୍ରରେ ଆଦର୍ଶ ଶିଳ୍ପ ଦେଖାଇ ଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କର ସେପରି ଆଦର୍ଶ ଚିତ୍ର ବରାବର ନାହିଁ, ଏହା ଆମ୍ଭେମାନେ କହୁନାହୁଁ । କିନ୍ତୁ ବହୁ ସ୍ଥଳରେ ସେ ସମୟ ଓ ସମାଜର ଇଙ୍ଗିତ ଏଡ଼ି ପାରି ନାହାନ୍ତି ।

## (ଖ) କବି ଶିଳ୍ପୀ:-

କବି ଶିଳ୍ପୀ । ମାନବ ହୃଦୟର ଭବ ତରଙ୍ଗ ଚିତ୍ର କରିବା ତାହାର ଶିଳ୍ପ । ପ୍ରାଣର କୋମଳତା, ଚିତ୍ତବୃତ୍ତିର ଚରଳତା, ଭାବରାଶିର କମ୍ପନ ଅନୁଭବ ଓ ଅନ୍ୱେଷଣ କରିବା ତାହାର ପ୍ରକୃତି । ଭବମୟ ମାନବମାତ୍ରଙ୍କେ ତାହାର ସମପ୍ରାଣତା; ତେଣୁ ତାହାର ପ୍ରାଣ କୋମଳ ଓ କମନୀୟ; ଏବଂ ସେହି ହେତୁରୁ ତରଳ ଓ ଦୁର୍ବଳ । ହୃଦୟର ତରଳତା ଓ ଦୁର୍ବଳତାରେ ସେ ସ୍ୱତଃ ଅନୁପ୍ରାଣିତ ଓ ଆତ୍ମବିସ୍ମୃତ ହୁଏ । ମାନବ ହୃଦୟର ମହାର୍ଘ ଗମ୍ଭୀର ଓ ସ୍ଥିର ଭବରାଶିରେ କବିର ଯେ ବରାବର ସମପ୍ରାଣତା ନାହିଁ, ତାହା କେହି କହିବେ ନାହିଁ । କିନ୍ତୁ ସାଧାରଣତଃ ମାନବ ହୃଦୟର ଦୁର୍ବଳ ତନ୍ତ୍ରୀରେ ଆଘାତ କରି ରସୋଦ୍ରେକ କରିବା କବିର ଗୋଟିଏ ସ୍ୱତନ୍ତ୍ର ପ୍ରକୃତି । କେଉଁ କବି କେଉଁ ଦୁର୍ବଳତାରେ କିପରି ଭବରେ ଆଘାତ କରନ୍ତି, ସେ ସ୍ୱତନ୍ତ୍ର ବିଷୟ । ମାତ୍ର ପ୍ରାଣର କୋମଳତାର ଅଲକ୍ଷ୍ୟ ଇଙ୍ଗିତରେ କବି ଯେ ଘୂର୍ଣ୍ଣିତ ହୁଅନ୍ତି, ଏଥିରେ ପ୍ରମାଣ ଆବଶ୍ୟକ ନାହିଁ । ଆମ୍ଭେ ଆଜି ଯାହାକୁ ଅଶ୍ଳୀଳ ବା ଅରୁଚିବ୍ୟଞ୍ଜକ କହୁ, ସବୁ କବି ଅବଶ୍ୟ ସେ ରସର ଉଦ୍ରେକ ମାନସରେ କ୍ରିୟାର ବ୍ୟାଖ୍ୟାନ କରି ନାହାନ୍ତି, ହେଲେ ମଧ୍ୟ ସେଥିରେ ବରାବର ନିଃସଙ୍କୋଚ ହୋଇ ନାହାନ୍ତି । କିନ୍ତୁ ପ୍ରେମିକ ପ୍ରେମିକା ହୃଦୟର ଭବୋନ୍ମେଷ ବେଳେ ପ୍ରାଣର ଚପଳ ସ୍ପନ୍ଦନ ଓ ଲୋଳତରଙ୍ଗ ଚିତ୍ତାଚିତ୍ତ କରି ଚିତ୍ର କରିବା କେବଳ ଯେ ସାଧାରଣ କବିଙ୍କଠାରେ ଦେଖାଯାଏ, ସେତିକି ନୁହେ । ଏହା ଏକପ୍ରକାର କବି ପ୍ରକୃତିର ସାର୍ବଜନୀନ ସ୍ଥିରାଂଶ କହିଲେ ଚଳେ । ପ୍ରେମିକ କାମୁକର ଭେଦ ଦର୍ଶନ ଶ ସର ଅହଙ୍କାର ହେଲେ ମଧ୍ୟ କବି ସେ ଦାର୍ଶନିକ ଭେଦ ବୁଝନ୍ତି ନାହିଁ । ମହାକବି କାଳିଦାସଙ୍କ ଶ୍ରେଷ୍ଠ ନାୟକ

ଦୁଷ୍ମନ୍ତ ମଧ୍ୟ ଅପରିଚିତା ଯୁବତୀ ଶକୁନ୍ତଳାଙ୍କର ରୂପ-ଲାବଣ୍ୟରେ ମୁଗ୍ଧ, ପ୍ରେମାତୁର ଓ ଆତ୍ମବିସ୍ମୃତ ହୋଇ ନିଜକୁ ବୁଝାଇ ଅଛନ୍ତି :–

" ସତାଂହି ସନ୍ଦେହ ପଦେଷୁ ବସ୍ତୁଷୁ
ପ୍ରମାଣମନ୍ତଃ କରଣ ପ୍ରବୃତ୍ତୟଃ ।"

ଏଥିରେ ତାଙ୍କର କାବ୍ୟ କଳାର ଅଭାବ ହୋଇନାହିଁ ।

## (ଗ) କାବ୍ୟ କଳାର ଶିଳ୍ପ—ଶିଳ୍ପ ନୟନ ଅଶ୍ଳୀଳତା ଦେଖେ ନାହିଁ:–

କାବ୍ୟ ଗୋଟିଏ ଶିଳ୍ପ । ପ୍ରକୃତିକୁ ଯଥାର୍ଥ ଭାବରେ ଚିତ୍ର କରିବାହିଁ ଶିଳ୍ପର ପୂର୍ଣ୍ଣତା । ସେଥିରେ ଶ୍ଳୀଳ ଅଶ୍ଳୀଳ ବିଚାର ଅଛି କି ? ଚିତ୍ରଶିଳ୍ପ ଓ ସ୍ଥାପତ୍ୟର ଦୃଷ୍ଟାନ୍ତରେ କଥାଟି ବିଚାର କରାଯାଉ । ଗ୍ରୀସଠାରୁ ଭାରତ ପର୍ଯ୍ୟନ୍ତ ସର୍ବତ୍ର ଶିଳ୍ପୀମାନେ ନଗ୍ନ ଭାବମୟ ମୂର୍ତ୍ତିର ପ୍ରାକୃତିକ ପେଶି ବିନ୍ୟାସ ଓ ଅଙ୍ଗସୌଷ୍ଠବ ଅଙ୍କନ କରିଯାଇ ଅଛନ୍ତି । ରୁଚି ଯାହା କହୁ ସେ ଶିଳ୍ପର ଆଦର କମିନାହିଁ । ଶିଳ୍ପନୟନ ସେଥିରେ ଅଶ୍ଳୀଳତା ଦେଖିନାହିଁ । ଅବଶ୍ୟ ଆର୍ଯ୍ୟଭୂମି ଭାରତର ଦୁର୍ଦ୍ଦଶା ଯେ, କୃତ୍ରିମ ରୁଚିର ବଶବର୍ତ୍ତୀ ହୋଇ ମନ୍ଦିରଗାତ୍ରରେ ଥିବା ଚିତ୍ରମାନଙ୍କୁ କେହି କେହି ଘୃଣା କରିବାର ଦେଖାଯାଏ । କିନ୍ତୁ କୌଣସି କୌଣସି ରାଜା ଯେଉଁଠାରେ ଲାଟସାହେବଙ୍କପରି ବଡ଼ ବଡ଼ ଲୋକଙ୍କୁ ଭେଟି ଦିଅନ୍ତି, ଯେହି ଘରେ ସଜା ନିମନ୍ତେ ଗ୍ରୀସୀୟ-ରୀତି ନିର୍ମିତ ନଗ୍ନ ନାରୀମୂର୍ତ୍ତିଚୟ ଥିବାର ଦେଖାଯାଏ । ସେଠାରେ ଘୃଣା ଅଛି କି ? କଲିକତା ଯାଦୁଘରର ଶିଳ୍ପମଞ୍ଚରେ ଯେଉଁ ହାତୀଦାନ୍ତର ଶ୍ରେଷ୍ଠକାମ-ସବୁ ସୁରକ୍ଷିତ ହୋଇ ପ୍ରଦର୍ଶିତ ହେଉଅଛି, ତାହା ତ ଅନେକେ ଦେଖିଥିବେ । ଲାବଣ୍ୟବତୀର କବିଙ୍କର ଚିତ୍ର ବିଶେଷ ସଙ୍ଗେ ସେ ସବୁର କିଛି ପାର୍ଥକ୍ୟ ଅଛି କି ? କିନ୍ତୁ ସେଥିରେ ଅଶ୍ଳୀଳତା ଅଛି ବୋଲି କେହି କେବେ ସମାଲୋଚନା କରିବାର ଶୁଣାନାହିଁ ।

## (ଘ) ବ୍ୟବହାରର ରୁଚି ଓ ଶିଳ୍ପର ରୁଚି ଭିନ୍ନ :–

ବ୍ୟବହାରର ରୁଚି, ଶିଳ୍ପର ରୁଚି ଏକ ନୁହେଁ । ଯେଉଁମାନେ କବିତାର ଶିଳ୍ପ ଅନୁଭବ କରନ୍ତି, କବିତାରେ ଅଶ୍ଳୀଳତା ଦେଖିବା ପାଇଁ ସେମାନଙ୍କର ଅବକାଶ କାହିଁ ? ଅଶ୍ଳୀଳତା ସାମାଜିକ ବ୍ୟବହାରର କଥା—କାବ୍ୟ ଶିଳ୍ପର ସେଥିରେ କ୍ଷତି ବୃଦ୍ଧି ନାହିଁ । ଅବଶ୍ୟ ବିଦ୍ୟାଳୟର ଛାତ୍ରମାନଙ୍କ କଥା ସ୍ୱତନ୍ତ୍ର । ସେମାନଙ୍କ ପାଇଁ ଇଂଲଣ୍ଡରେ ସେକ୍ସପିଅରଙ୍କ ନାଟକମାନଙ୍କର ସ୍ୱତନ୍ତ୍ର ସଂସ୍କରଣ ଅଛି ; ଆବଶ୍ୟକ ହେଲେ ଓଡ଼ିଶାରେ ମଧ୍ୟ ଉପେନ୍ଦ୍ର କାବ୍ୟର ସେହିପରି ସଂସ୍କରଣ ରହିବ । ସେମାନେ କବିତାର ଶିଳ୍ପରେ ମୁଗ୍ଧ ହୋଇ କବିତା ପଢ଼ନ୍ତି ନାହିଁ । ଦେଖି ଦେଖି ଆଲୋଚନା କରି

ଷିଳ୍ପର କାରିଗରି ଅନୁଭବ କରି ଶିଖୁଥାନ୍ତି ମାତ୍ର । ସେଥିପାଇଁ ଯେଉଁମାନେ, "ସିର୍ଦ୍ଧିଃ ସାଧ୍ୟେ ସତାମସ୍ତୁ, ପ୍ରସାଦାତସ୍ୟ ଧୂର୍ଜଟେଃ" ପଢନ୍ତି, ସେମାନଙ୍କ ପାଇଁ 'ତରୁଣତା ଚରଣଦ୍ୟୁତି ନିର୍ମିତ, ଦୃଢ଼ିମତତ୍ କୁଚକୁମ୍ଭଯୁଗଂ ତଥା'' ପ୍ରଭୃତି ପାଠ୍ୟ ବୋଲି କେହି ବ୍ୟବସ୍ଥା କରିବେ ନାହିଁ । ତେବେ ଯାହା ଛାତ୍ରମାନଙ୍କର ପଢ଼ିବା ଅନୁଚିତ, ତାହା କଦାପି ସେତିକିରେ ଅପକାବ୍ୟ ବୋଲି ବିବେଚିତ ହୋଇ ନ ପାରେ । ଛାତ୍ରମାନେ ପଢ଼ିବେ ନାହିଁ ବୋଲି ଯେ କାବ୍ୟର କାବ୍ୟତ୍ୱ ନଷ୍ଟ ହେଲା, ଏପରି କହିବା ଅସଙ୍ଗତ । ସମାଲୋଚନା ବେଳେ କେବଳ ଅଶ୍ଳୀଳ ବୋଲି କାବ୍ୟ ବା କବିତାକୁ ମୂଳରୁ ଉପେକ୍ଷା କରିବା କଦାପି ଉଚିତ ନୁହେଁ । ଯେ ଶିଳ୍ପ ଦେଖନ୍ତି ସେ ଅଶ୍ଳୀଳତା ଦେଖିବେ ନାହିଁ ।

## (ଙ) ଭାଷାର କ୍ଲିଷ୍ଟତାଃ—ଉପେନ୍ଦ୍ରଙ୍କ ଭାଷା କୃତ୍ରିମ ନୁହେଃ—

ଭାଷାର କ୍ଲିଷ୍ଟତା ମଧ୍ୟ ଉପେନ୍ଦ୍ର ଭଞ୍ଜଙ୍କର ଆଉ ଗୋଟିଏ ସମାଲୋଚ୍ୟ ବିଷୟ । ଉପେନ୍ଦ୍ର କାବ୍ୟମାନଙ୍କର ଶବ୍ଦର ଦୁର୍ବୋଧ୍ୟତା ହେତୁରୁ ରସୋପଲବ୍ଧିର ଅସୁବିଧା ହୁଏ । 'ବୈଦେହୀଶ ବିଳାସ' ଓ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ଭାଷା ଅତ୍ୟନ୍ତ କ୍ଲିଷ୍ଟ; ସେପରି ଭାଷାରେ ଓଡ଼ିଆରେ ଆଉ କାବ୍ୟ ନାହିଁ । ଶବ୍ଦ ସନ୍ଦର୍ଭ ସଙ୍ଗେ ସଙ୍ଗେ ବେଳେ ବେଳେ ଭାଷାର ଏହି ଦୁରଧିଗମ୍ୟ କ୍ଲିଷ୍ଟତା ଉପେନ୍ଦ୍ର ଭଞ୍ଜଙ୍କର ଗୋଟିଏ ସ୍ୱାତନ୍ତ୍ର୍ୟ କହିଲେ ଚଳେ । ସରଳ ରସୋପଲବ୍ଧିରେ କଥଞ୍ଚିତ୍ ପ୍ରତିବନ୍ଧକ ହେଲେହେଁ ଅବସ୍ଥା ବିଚାରରେ ଏ ବ୍ୟବହାର ମଧ୍ୟ କାରଣ ଅନୁସନ୍ଧାନ କରଯାଇ ପାରେ । ଉପେନ୍ଦ୍ର ଯେତେବେଳେ ଓଡ଼ିଆ ଲେଖିବା ପାଇଁ ଲେଖନୀ ଧରିଥିଲେ , ସେତେବେଳେ ଏ ଦେଶର ମୁଖ୍ୟ ବ୍ୟକ୍ତିମାନଙ୍କ ମଧ୍ୟରେ ସଂସ୍କୃତରହିଁର ଆଦର ଥିଲା । ପ୍ରାକୃତ ବା ପ୍ରଚଳିତ ଭାଷା ବହୁକାଳ ଉପେକ୍ଷିତ ହୋଇଥିଲା । ଓଡ଼ିଆ ପୁଣି ପ୍ରାକୃତ ନୁହେ, ପ୍ରାକୃତର ଆହୁରି ଏକ ବିକାର । ଏଥିରେ ଏହା ଯେ ସମାଜରେ—ବିଶେଷତଃ ପଣ୍ଡିତ ଓ ସମାଜର ଶ୍ରେଷ୍ଠ ବ୍ୟକ୍ତିଙ୍କ ମଧ୍ୟରେ ତାଦୃଶ ଆଦର ନ ପାଉବ ସେଥିରେ ବିଚିତ୍ରତା କଅଣ ? ଉପେନ୍ଦ୍ରଙ୍କ ପୂର୍ବେ ଜଗନ୍ନାଥ ଦାସଙ୍କ ଭାଗବତ ପରି ଶ୍ରେଷ୍ଠ ଓଡ଼ିଆ ଗ୍ରନ୍ଥ ମଧ୍ୟ ପଣ୍ଡିତମଣ୍ଡଳୀରେ ଆଦର ପାଇ ନଥିଲା । ଏପରିକି ଜଗନ୍ନାଥ ଦାସ ଓଡ଼ିଆରେ ଏହି ଗ୍ରନ୍ଥର ଅନୁବାଦ କରି ବହୁ ଲାଞ୍ଛନା ଭୋଗ କରି ଥିବାର ପ୍ରମାଣ ମିଳେ । ସେଥିପାଇଁ ସେ ତାଙ୍କ ଉପାଦେୟ ଗ୍ରନ୍ଥର ଅଧ୍ୟାୟ ଶେଷରେ ବେଳେ ବେଳେ ନିନ୍ଦକମାନଙ୍କୁ ବହୁତ ବିନତି କରି ଅଛନ୍ତି । ଏତେ କରି ମଧ୍ୟ ତାଙ୍କର ଭାଗବତ ଏପର୍ଯ୍ୟନ୍ତ ସମାଜର ମୁଖ୍ୟବ୍ୟକ୍ତିଙ୍କ ମଧ୍ୟରେ ଯଥୋଚିତ ଆଦର ଲଭିଅଛି କି ନା ସନ୍ଦେହ । ସଂସ୍କୃତର ଏହି ଆଦର ବେଳେ ଉପେନ୍ଦ୍ର ଓଡ଼ିଆରେ କାବ୍ୟ ଲେଖିଥିଲେ ।

ସେଥିରେ କେବଳ ଭାଷା କାହିଁକି, ଭାବ ଅଳଙ୍କାରାଦିରେ ମଧ୍ୟ ଯେ ସଂସ୍କୃତର ଅନୁବର୍ତ୍ତନ କରିବେ, ସେଥିରେ ତାଙ୍କର ପ୍ରତିଭାର ହୀନତା ଆଶଙ୍କା କରିବା ଉଚିତ ନୁହେଁ । ବରଂ ଏଥିରେ ମନୀଷାର ପରିଚୟ ମିଳୁଅଛି । ପୁଣି ତାଙ୍କର ଭାଷା କ୍ଲିଷ୍ଟ ହୋଇପାରେ, କୃତ୍ରିମ ନୁହେ । ସଂସ୍କୃତ ଛାଞ୍ଚରେ ଆଳଙ୍କାରିକ ନିଗଡ଼ ମଧ୍ୟରେ ଓ ଦୁର୍ଭେଦ୍ୟ ଶବ୍ଦବ୍ୟୂହରେ ମଧ୍ୟ ସେ ଭାଷାର ସ୍ୱାଭାବିକତା ରଖିଅଛନ୍ତି । ଏ ସମସ୍ତ ସତ୍ତ୍ୱେ ତାଙ୍କର ଭାଷା ଓଡ଼ିଆ । ଏହା ଓଡ଼ିଆର ପ୍ରାଣକୁ ସ୍ପର୍ଶ କରେ । ଏହି ହିସାବରେ ଦେଖିଲେ ଉପେନ୍ଦ୍ରଙ୍କର ଭାବବତ୍ତା ଓ ମାତୃଭାଷା ପ୍ରୀତି ଆଜିଯାଏ ଓଡ଼ିଶାରେ ଦେଖା ଯାଇଅଛି କି ନା, ତାହା ଆଲୋଚନାର ବିଷୟ ।

## (ଚ) ଉପେନ୍ଦ୍ରଙ୍କ ଛନ୍ଦରାଶିର ସୃଷ୍ଟି ଅଦ୍ୱିତୀୟ :-

ଶବ୍ଦସନ୍ଦର୍ଭର ଆପାତ କ୍ଲିଷ୍ଟତା ରସାଣିବା ପାଇଁ, ଭାଷାର କଠୋରତା ମଧ୍ୟରେ ଭାବସନ୍ଦର୍ଭ ଫୁଟାଇବା ପାଇଁ ଦୃଢ଼ନିବଦ୍ଧ ଆଳଙ୍କାରିକ ପଦ୍ଧତିରେ କାବ୍ୟକଳା-କୁଶଳତା ଦେଖାଇବା ପାଇଁ , ବ୍ୟାବହାରିକ ରୁଚିର ଆପାତ ଅପକର୍ଷ ମଧ୍ୟରେ ପାଠକକୁ ରସୋପଲବ୍ଧିରେ ଆତ୍ମବିସ୍ମୃତ କରିବା ପାଇଁ ସେ ଯେଉଁ ଛନ୍ଦ ରାଶିର ସୃଷ୍ଟି କରିଅଛନ୍ତି, ତାହା ତାଙ୍କର ଅଦ୍ୱିତୀୟ ଶକ୍ତିମତ୍ତା ଖ୍ୟାପନ କରୁଅଛି । ସଙ୍ଗୀତର ସ୍ୱର ଲୟ କବିତାର ଗୋଟିଏ ସ୍ୱତନ୍ତ୍ର ଅଙ୍ଗ । ଶବ୍ଦବିନ୍ୟାସର ପାଟବରେ ଭାବ ପରିସ୍ଫୁଟ ହୁଏ । କବିତାର ଯତି ଲୟରେ ହୃଦୟ ରସରେ ପରିପ୍ଲୁତ ହୁଏ । ଅନେକ ସ୍ଥଳରେ ଭାଷାରେ ବର୍ଣ୍ଣବିନ୍ୟାସ-ପାଟବ ଓ ଛନ୍ଦର ଯତି ନିୟମହିଁ ପଦ୍ୟ ଓ ଗଦ୍ୟର ଭେଦ ଦେଖାଇଦିଏ । ସଙ୍ଗୀତ, ଯତିଲୟ ଓ ବର୍ଣ୍ଣବିନ୍ୟାସ-ପାଟବ କବିତାର ବିଗ୍ରହ । ଏଥିରେ କବିତା ଆତ୍ମା ବ୍ୟକ୍ତ ହୁଏ ; ଭାବରାଶି ଯଥାଯଥରୂପେ ଉନ୍ମୀଳିତ ହୁଏ । ଛନ୍ଦର ଚାତୁରୀରେ ବେଳେ ବେଳେ ଭାଷାରେ ଘୋର କର୍କଶତା ଲୁଚିଯାଏ । ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ଓଡ଼ିଆ ଭାଷାରେ ଯାହାକିଛି ଅଳ୍ପ ଲେଖାଥିଲା, ସେଥିରେ ଲେଖକମାନେ ଛନ୍ଦ ଓ ସଂଗୀତଚାତୁରୀର ତାଦୃଶ ଅବକାଶ ଲୋଡ଼ି ନ ଥିଲେ । ଉପେନ୍ଦ୍ରଭଞ୍ଜ କେବଳ ଯେ ଉତ୍କଳରେ ଛନ୍ଦର ପ୍ରବର୍ତ୍ତକ, ତାହା ନୁହେ । ସେ ଏ କ୍ଷେତ୍ରରେ ଅଦ୍ଭୁତ ମୌଳିକ ଶକ୍ତି ଦେଖାଇ ଅଛନ୍ତି । ଭାଷା ଯାହାହେଉ, ଭାବର ଉନ୍ମୀଳନରେ ଯେ ପନ୍ଥା ସେ ଅବଲମ୍ବନ କରନ୍ତୁ ନା କାହିଁକି, ତାଙ୍କର ଛନ୍ଦ ସର୍ବଦା ଭାବର ଅନୁରୂପ । ତାଙ୍କର କବିତା ଛନ୍ଦ ନିୟମରେ ଯେ ଗାଇଅଛନ୍ତି, କିମ୍ବା ଗାଇବାର ଯେ ଶୁଣିଅଛନ୍ତି, ସେ ମୁକ୍ତ ହୃଦୟରେ ସାକ୍ଷ୍ୟ ଦେବେ ଯେ ସ୍ଥଳ ବିଶେଷରେ ଭାଷା ଦୁର୍ଭେଦ୍ୟ ହେଲେ ମଧ୍ୟ, କଳ୍ପିତ ବ୍ୟବହାରାଦିର ଚିତ୍ରଣରେ ଅଶ୍ଳୀଳତା ଥିଲେ ମଧ୍ୟ, କେବଳ ଛନ୍ଦର ମୋହନ ତାନରେ

ରସୋପଲବ୍ଧି ଓ ଭାବର ବିକାଶ ଉଦ୍ଭିନ୍ନ ଓ ପରିସ୍ଫୁଟ ହୁଏ । କାବ୍ୟରେ ଏହି ଛନ୍ଦ-ସବୁ ଉପେନ୍ଦ୍ର ନିଜେ ସୃଷ୍ଟି କରି ଅଛନ୍ତି ଏବଂ ଏହି ସୂତ୍ରରେ ସେ ଏକ କାଳରେ ପଣ୍ଡିତ ଓ ଲୋକସାଧାରଣଙ୍କୁ ଜାତୀୟ ଭାଷା ଓ ଜାତୀୟ ସାହିତ୍ୟ ପ୍ରତି ଟାଣି ଆଣିବାକୁ ସମର୍ଥ ହୋଇ ଅଛନ୍ତି । ବାସ୍ତବିକ୍ ଯେଉଁମାନେ ଉପେନ୍ଦ୍ର ସାହିତ୍ୟର ଆଲୋଚନା କରୁଅଛନ୍ତି, ସେମାନେ ସର୍ବଦା ତାଙ୍କର ଛନ୍ଦରୀତିରେ ସ୍ୱର ମିଳାଇ ଗାଇବାକୁ ଚେଷ୍ଟା କରିବା ଉଚିତ । ଗାଇଲେ ସେମାନେ ଦେଖିବେ ଶବ୍ଦ–ବିନ୍ୟାସର କ୍ଲିଷ୍ଟତା ଓ ଭାବୋନ୍ମୀଳନ ପ୍ରଣାଳୀରେ ଆପାତ ଅଶ୍ଳୀଳତା ନିଜେ ଅନ୍ତର୍ହିତ ହେବ । ଓଡ଼ିଆ ଛନ୍ଦର ଆଉ ଗୋଟିଏ ସ୍ୱାତନ୍ତ୍ର୍ୟ ଯେ, ସେଥିରେ ଯନ୍ତ୍ର ଲୟର ସପ୍ତସ୍ୱର କିମ୍ବା ଗାୟକର ସଂଗୀତ–କଳାଜ୍ଞାନ ତାଦୃଶ ଏକାନ୍ତ ପ୍ରୟୋଜନୀୟ ନୁହେ । ଭାବମୟ ହୃଦୟରେ ଯେ କୌଣସି ଗାୟକ ପ୍ରାକୃତିକ ଆତ୍ମବିନୋଦରେ ସେ ସବୁ ଛନ୍ଦ ଗାଇପାରନ୍ତି । ସଂଗୀତର ତାଳବାନ୍ଧ ନିୟମରେ ଗାଇ ନ ପାରିଲେ ମଧ୍ୟ ତାହା କେବଳ ଯତିପାତର ସାଧାରଣ ନିୟମରେ ଗୀତ ହୋଇପାରେ ।

## ଲାବଣ୍ୟବତୀ କବିଙ୍କର ଶ୍ରେଷ୍ଠକାବ୍ୟ–

### (୧) ନାନା ଦିଗରୁ ଏହା ଶ୍ରେଷ୍ଠ–

ନାନା ହିସାବରୁ ଦେଖିଲେ 'ଲବଣ୍ୟବତୀ' କବିଙ୍କର ଶ୍ରେଷ୍ଠକାବ୍ୟ । ବୈଦେହୀଶ ବିଳାସର ପୌରାଣିକ ଭିତ୍ତି ଅଛି । ଲବଣ୍ୟବତୀର ଘଟନା କଳ୍ପନା ନିଜେ କବିଙ୍କର । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଭାଷାର କ୍ଲିଷ୍ଟତା ଓ ବର୍ଣ୍ଣନାର କୃତ୍ରିମତା ଲବଣ୍ୟବତୀରେ ନାହିଁ । ସ୍ଥଳବିଶେଷରେ ପ୍ରେମସୁଧାନିଧିରେ ଉତ୍କୃଷ୍ଟ କବିତ୍ୱ ଦେଖାଯାଏ ସତ୍ୟ, କିନ୍ତୁ ଏହା ଲବଣ୍ୟବତୀ ପରି ବୃହତ୍ ଓ ବହୁଘଟନାସମ୍ବଳିତ ନୁହେ । ସୁବର୍ଣ୍ଣରେଖା ପ୍ରଭୃତି ଗ୍ରନ୍ଥରେ ସରଳ ବର୍ଣ୍ଣନା ଓ କାବ୍ୟକଳାର ଆଭାସ ମିଳିଲେ ମଧ୍ୟ ସେ ସବୁ ଅତି କ୍ଷୁଦ୍ର ଏବଂ ଲବଣ୍ୟବତୀ ସଙ୍ଗେ ତୁଳନୀୟ ନୁହେ । ଭାଷାର କ୍ଲିଷ୍ଟତା ସଙ୍ଗେ ବିନ୍ୟାସକୌଶଳ, ଆଳଙ୍କାରିକ କୃତିମତା ମଧ୍ୟରେ ସରଳ ଭାବୋନ୍ମେଷ, ବିଷୟ କଳ୍ପନାର ପୌରାଣିକତା ମଧ୍ୟରେ ବିଶ୍ୱାସର ନିଷ୍ଠା ଓ ସ୍ଥାୟୀ ଭାବର ବିକାଶ, ନାନାବିଧ ଘଟନାର ଅଙ୍ଗାଙ୍ଗୀ ଭାବ ଓ ପ୍ରାକୃତିକ ସମନ୍ୱୟ, ପ୍ରଣାଳୀବଦ୍ଧ କଳ୍ପନାରେ ନୂତନତା, ବିଧିବଦ୍ଧ ବର୍ଣ୍ଣନାରେ ସ୍ୱାଭା-ବିକତା, ଅଶ୍ଳୀଳତାର ଉନ୍ମାଦ ମଧ୍ୟରେ ଭାବର ଐକାନ୍ତିକତା, ଚଳିତ ଘଟନାର ଅନୁରୂପ ଚିତ୍ର ମଧ୍ୟରେ ଆଦର୍ଶର ବିକାଶ ପ୍ରଭୃତି ଲବଣ୍ୟବତୀରେ ଯେପରି ଦେଖାଯାଏ, କବି–ଙ୍କର ଅନ୍ୟ କାବ୍ୟମାନଙ୍କରେ ସେପରି ସ୍ପଷ୍ଟ ନୁହେ । ଏକାଦଶ ଛାନ୍ଦରେ କବି ଲେଖିଛନ୍ତିଃ–

" ଅଣିମାଦି ସୁଖଦାୟୀ
ଶ୍ଳୋକଅଛି ଅଣିଆଇ

ପଲ୍ୟଙ୍କ ଅଙ୍କରେ ବିଶେ    ଏମନ୍ତ ଶୋଭା ।
ରସାଣ ରଜତ ବାଡ଼େ
କନକଲତା କି ଜଡ଼େ
ବିଶଦ ଘନରେ କି ସେ    ଚପଳା ପ୍ରଭା ।
ବାମକର କପୋଳ ତଳ
କେନ୍ଦୁ ପଲ୍ଲବେ ଥୁଆ କି    ଫୁଲ୍ଲକମଳ । ”

ଅଣିମାଦି ଦ୍ୱାର ପୌରାଣିକ ଅଷ୍ଟୈଶ୍ୱର୍ଯ୍ୟ କଳ୍ପନାଠାରୁ, ‘ ରସାଣ ରଜତ ବାଡ଼େ କନକଲତା,’ ‘ ବିଶଦ ଘନରେ ଚପଳା ’ ପ୍ରଭୃତି ଆଳଙ୍କାରିକ ଉତ୍ପ୍ରେକ୍ଷାରେ ଏ ପଦଟି ପୂର୍ଣ୍ଣ ହୋଇଅଛି । ତଥାପି ଶବ୍ଦବିନ୍ୟାସର ଔଚିତ୍ୟ କିମ୍ବା ପାଠକର ସହଜ ଅବବୋଧରେ ଅସୁବିଧା ବା କାବ୍ୟରସୋପଲବ୍ଧିରେ ପ୍ରତିବନ୍ଧକ କିଛି ନାହିଁ । ସମସ୍ତ ପଦଟି ମଧ୍ୟରେ କବିତାର ଧାର ଶେଷରେ ‘କେନ୍ଦୁ ପଲ୍ଲବେ ଥୁଆ କି ଫୁଲ୍ଲ କମଳ ’ କଥାଟିରେ ଯେପରି ମଧୁନିସ୍ୟନ୍ଦରେ ପାଠକକୁ ମୁଗ୍ଧ କରୁଅଛି, ତାହା ସାଧାରଣ କବିଙ୍କର ଲେଖନୀରୁ ଆଶା କରାଯାଏ କି ? ଏପରି ଉଦାହରଣ ଲାବଣ୍ୟବତୀରେ ଭୂରି ଭୂରି ମିଳିବ ।

## ୬—ଅନ୍ୟାନ୍ୟ କଳା ପରି କବିତା କଳା ଇଙ୍ଗିତ ଲୋଡ଼େ—

ତୃତୀୟ ଛାନ୍ଦରେ କୃତ୍ରିମ ଆଳଙ୍କାରିକ ଦ୍ୱ୍ୟର୍ଥବୋଧ ବ୍ୟଙ୍ଗରେ ସଖୀମାନେ ଲାବଣ୍ୟବତୀକୁ ପଚାରୁ ଅଛନ୍ତି—

“ ବାଣୀ କୋକିଳୁଁ ମଧୁର ହେବାରୁ ।
ନଖ ନିଆଳୀ ଛବି ବହିବାରୁ ।
ହୃଦନଦରେ ଚିର ରଞ୍ଜିବାରେ ।
ସ୍ତନ କମଳ କଳି ବଢ଼ିବାରେ ।
ଜାତି କେତକୀ ଦିନୁ ଦିନୁ ଗ୍ଳାନୁ ।
ଏହିଁ ଅମ୍ଭେମାନେ ମନେ ବିଚାରୁଁ ।
ପୁଷ୍ପ ସମୟ ହେଲଣି ନିକଟ ।
ସତ କହ ହୋଇଛି କି ପ୍ରକଟ ? ”

ଆଳଙ୍କାରିକ ନିଗଡ଼ ମଧ୍ୟରେ ହୃଦୟରେ ଏ ମୋହନ ଇଙ୍ଗିତ, ରସିକତାର ଏ ସ୍ୱଚ୍ଛ ବ୍ୟଞ୍ଜନା, ଚିତ୍ରଣରେ ଏ ଅଦ୍‌ଭୁତ କଳାପାଟବ ଏକା ଉପେନ୍ଦ୍ର ଭଞ୍ଜଙ୍କର କାହିଁକି ପ୍ରାଚୀନ ଆଧୁନିକ ଯେ କୌଣସି କବିଙ୍କ ପକ୍ଷରେ ଶ୍ଳାଘନୀୟ ନୁହେ କି ? ଅନ୍ୟାନ୍ୟ କଳାପରି କବିତାକଳା ମଧ୍ୟ ଇଙ୍ଗିତ ଲୋଡ଼େ । ଉଦ୍‌ଭିନ୍ନ ଭାବରେ ତନ୍ନ

ତନ୍ତ୍ର ଚିତ୍ରଠାରୁ ସଙ୍କେତ ଓ ଇଙ୍ଗିତରେ ଉପଲବ୍ଧି ଜଗାଇବା ଶିଳ୍ପର ଜୀବନ । ଶିଳ୍ପୀବର ଅବନୀନ୍ଦ୍ର ନାଥ ଠାକୁରଙ୍କ ଚିତ୍ର କଳାରେ ଏହି ବିଭବ ଦେଖାଇ ଆଜି ଜଗତ୍‌ବିଖ୍ୟାତ ହୋଇ ଅଛନ୍ତି । କବିର ଲେଖନୀ ଏବଂ ଚିତ୍ରକର ତୁଳିକା ବାସ୍ତବ୍ୟ-ତାର ଯଥାଯଥ ଚିତ୍ରଣରେ ପାଠକର କଳ୍ପନାକୁ ସୀମାବଦ୍ଧ ନକରି ଭାବର ଇଙ୍ଗିତ ଓ ବିଷୟର ସଙ୍କେତରେ ଗ୍ରାହକର କଳ୍ପନାକୁ ଉପଲବ୍ଧିର ଅନନ୍ତ ଧାରାରେ ଭସାଇ ଦିଏ । ପ୍ରକୃତ ଶିଳ୍ପୀ ଗ୍ରାହକର ମନରେ ଏକାଧିପତ୍ୟ କରିବାକୁ ଇଚ୍ଛା କରନ୍ତି ନାହିଁ । ସେମାନେ ଅନୁଭବ କରନ୍ତି, ଏବଂ ଗ୍ରାହକକୁ ଅନୁଭବ କରିବା ନିମନ୍ତେ ଟିକିଏ ସଙ୍କେତ ଦେଇଯାନ୍ତି ମାତ୍ର ।

## ୩. ଅଳଙ୍କାରରେ କବିଙ୍କର ଚପଳତା ସଂଯତ:—

ସ୍ୱୀକାର କରିବାକୁ ହେବ, ଅଳଙ୍କାରର ଶୃଙ୍ଖଳାରେ ବାନ୍ଧି ଦେଲେ କବିର ମନୀଷାର ଗତି ପ୍ରତିହତ ହୁଏ, ଏବଂ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ସଂସ୍କୃତ କାବ୍ୟ ନାଟକାଦି ପରି ଅଳଙ୍କାରର ଦୃଢ଼ ନିଗଡ଼ ସ୍ପଷ୍ଟ ନ ହୋଇ ପାରେ, କିନ୍ତୁ କାବ୍ୟର ଗତି ସର୍ବଦା ସେହି ଆଡ଼େ । ବିଧି ଅନୁସାରେ ନମସ୍କ୍ରିୟାରେ ଲବଣ୍ୟବତୀର ପ୍ରାରମ୍ଭ । ନବ କବିଙ୍କର ଦୈବଶକ୍ତି ଆବାହନ ପରି ଏ ନମସ୍କ୍ରିୟାରେ ଐଶଭବର ଆବାହନର ଲକ୍ଷଣ ମଧ୍ୟ ଦେଖାଯାଏ । ପ୍ରତ୍ୟେକ ଛାନ୍ଦ ଶେଷରେ ନମସ୍କ୍ରିୟାରେ ଭଣିତା କରିବା ଅବଶ୍ୟ ଗୋଟିଏ ନୂତନତ୍ୱ । ଚନ୍ଦ୍ରଭାନୁରେ କବି "ଅନୁକୂଳ ଧୀରୋଦାତ୍ତ" ନାୟକର ଲକ୍ଷ୍ୟ ରଖିଅଛନ୍ତି । କିନ୍ତୁ ଗଜପୁତ୍ରୋଚିତ ବିଳାସ ଚାପଲ୍ୟରେ ଚରିତ୍ରର 'ଲଳିତ୍ୟ' ସ୍ଥାନେ ସ୍ଥାନେ ଫୁଟି ଉଠିଅଛି । ପ୍ରଣୟର ଆକାଂକ୍ଷାରେ କବିଙ୍କର ଧୈର୍ଯ୍ୟ ନାହିଁ । ଶୃଙ୍ଗାର ବିଳାସରେ ପରିତୃପ୍ତି ନାହିଁ । ପ୍ରେମର ଶୃଙ୍ଗାରେତର ସ୍ଥିର ବିଭବ କବି ଦେଖାଇ ପାରି ନାହାନ୍ତି । କିନ୍ତୁ ଏ ସମସ୍ତ ଭିତରେ ମଧ୍ୟ ଅଳଙ୍କାରରେ କବିଙ୍କର ଚପଳତା ସଂଯତ । କବିଙ୍କର ମନର ଭାବ ଯାହା ହେଉ, ନାୟକଠାରେ ଆଳଙ୍କାରିକ ଧୈର୍ଯ୍ୟତ୍ୱ ଫୁଟାଇବା ପାଇଁ କବି ଯେପରି ସର୍ବଦା ଉଦ୍‌ବିଗ୍ନ । ଚନ୍ଦ୍ରଭାନୁର ପ୍ରେମ ପୂର୍ବ ଭାବର ମର୍ଯ୍ୟାଦାରେ ଯାହାହେଉ, ଆଳଙ୍କାରିକ ସଂଯମରେ ରସାଣିତ । ମନ୍ଦିର ମଧ୍ୟରେ ଚନ୍ଦ୍ରଭାନୁ ଲବଣ୍ୟବତୀର ଦେଖା । ଉଦ୍‌ବେଗ ଓ ଉତ୍କଣ୍ଠା ଦୁହିଁଙ୍କ ପ୍ରାଣରେ ପୂର । କିନ୍ତୁ କାହିଁ ? ଚତୁରକ୍ଷରେ ସେ ଉଦ୍‌ବେଗ ଫୁଟି ନାହିଁ । ସେ ଉତ୍କଣ୍ଠା ଦେଖାଯାଉ ନାହିଁ ।

ଚନ୍ଦ୍ରଭାନୁ ଲବଣ୍ୟବତୀଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ଓ ଇହଜନ୍ମରେ ସ୍ୱପ୍ନ ମିଳନ, ଦୁଇଠାରେ ଉଦ୍‌ବେଗର ମାତ୍ରା ଅତ୍ୟଧିକ । ପ୍ରେମର ପରିଣାମ ପାଶବିକ । କିନ୍ତୁ ସେଥିରେ ଯେଉଁମାନେ କବିଙ୍କର କେବଳ ଦୋଷ ଦେଖନ୍ତି, ସେମାନେ ଉପେନ୍ଦ୍ର ଭଞ୍ଜଙ୍କ

ଚିହ୍ନନ୍ତି ନାହିଁ । ଦେଶର ସ୍ଥାୟୀ ପ୍ରାଚୀନ ଭାବ ମଧ୍ୟ ବୁଝନ୍ତି ନାହିଁ । ଦୈବ୍ୟଶକ୍ତିରେ ଉପେନ୍ଦ୍ର ଭଞ୍ଜ ନିର୍ଭର କରି ସେ ଯୁବକମାନଙ୍କରେ ଆବେଗର ସଂଯମ ଛାଡ଼ି ଅଛନ୍ତି । ଏ ଯୁଗର ଶିକ୍ଷିତ ଲୋକମାନଙ୍କ ମଧ୍ୟରେ ଦୈବ୍ୟ ଓ ପରଜନ୍ମର ବିଶ୍ୱାସ ଥାଉ ବା ନ ଥାଉ, ଏଗୁଡ଼ିକ ସ୍ଥାୟୀ ଭାରତୀୟ ଭାବ । ପ୍ରଜାପତି ଯେଉଁ ବରକୁ ଯେଉଁ କନ୍ୟା ସଙ୍ଗେ ଘଟାଇବେ, ସେ ଯେ ବିଧାନରେ ଘଟାନ୍ତୁ, ହିନ୍ଦୁ ସେ ମିଳନରେ କାବ୍ୟ ସଂଯମ କଳ୍ପନା କରିପାରେ କି ? ପୁଣି ପୂର୍ବଜନ୍ମର ପ୍ରସଙ୍ଗ କାବ୍ୟର ବିଶେଷ ଅଙ୍ଗ ବୋଲି ପ୍ରଚାର କରିବା କବିଙ୍କର ଉଦ୍ଦେଶ୍ୟ ନୁହେ । ପୂର୍ବଜନ୍ମର ସୂଚନା କରି କବି ନାୟକ ନାୟିକାର ଚରିତ୍ରର ଦୃଢ଼ତା ଓ ନାୟକର ଧୀରତା ପ୍ରମାଣ କରି ଅଛନ୍ତି ମାତ୍ର ।

## ୪–ଉପେନ୍ଦ୍ର ଭଞ୍ଜ ରାଜ ପରିବାର ନୁହେଁ, ଉତ୍କଳର ସାଧାରଣ ପାରିବାରିକ ଜୀବନକୁ ଆଦର୍ଶ କରିଅଛନ୍ତି–

କବି ଉତ୍କଳର ରାଜକୁମାର । ଚରିତ୍ରଚପଳତା, ବହୁପତ୍ନୀକତା, ଉତ୍କଳ ରାଜକୁଳରେ ଆଶଙ୍କା କରିବାରେ ଅସ୍ୱାଭାବିକତା କିଛି ନାହିଁ । ଅନେକ ରାଜକୁଳ ସଙ୍ଗେ ଯେଉଁମାନଙ୍କର ପରିଚୟ ଅଛି, ସେମାନେ ଦେଖିଥିବେ, ଅଧିକାଂଶ ସ୍ଥଳରେ ପ୍ରେମିକତା ଓ କାମୁକତାର ପ୍ରଭେଦ ଆମ୍ଭର ରାଜପୁତ୍ରମାନେ କାର୍ଯ୍ୟରେ ବୁଝନ୍ତି କି ନାହିଁ ସନ୍ଦେହ । ଏପରି ସ୍ଥଳରେ ନାୟକ ନାୟିକାଙ୍କର ମିଳନରେ ଯେ ଉଦ୍‌ବେଗ ଓ ଉତ୍କଣ୍ଠା ଆଶଙ୍କା କରାଯାଏ, ଉପେନ୍ଦ୍ର ଭଞ୍ଜଙ୍କ ଚିତ୍ରରେ ତାହା ନାହିଁ । ଉପେନ୍ଦ୍ର ଭଞ୍ଜ ବରଂ ରାଜପରିବାରରୁ ବାହାରି ପ୍ରଣୟର ମିଳନ ଓ ଅନ୍ୟାନ୍ୟ ଅନେକ ତଦ୍‌ବିଧ ଅନୁଷ୍ଠାନାଦିରେ ଉତ୍କଳର ସାଧାରଣ ପାରିବାରିକ ଜୀବନକୁ ଆଦର୍ଶ କରି ପାରିଅଛନ୍ତି । ବିବାହ ରାତ୍ରିରେ ମିଳନ ପୂର୍ବରୁ ଲାବଣ୍ୟବତୀପ୍ରତି ସଖୀମାନଙ୍କର ପରିହାସ ଯେଉଁମାନେ ପଢ଼ିଥିବେ, ସେମାନେ ଏହାର ସତ୍ୟତା ବୁଝି ପାରିବେ । କେବଳ ନାୟକ ନାୟିକାର ଚରିତ୍ର ବିକାଶରେ ନୁହେଁ କାବ୍ୟରେ ଅବାନ୍ତର ଚିତ୍ରମାନଙ୍କରେ ମଧ୍ୟ ଉପେନ୍ଦ୍ର ଭଞ୍ଜ ଯେ ଉତ୍କଳର କବି, ତାଙ୍କର କବିତା ଯେ ଉତ୍କଳବାସୀଙ୍କର ପ୍ରାଣକୁ ସ୍ପର୍ଶ କରେ, ଏକଥା ଭାବ, ଭାଷା, ଇଙ୍ଗିତାଦିରେ ସ୍ପଷ୍ଟ । ୨୩ ଛାନ୍ଦର ୩୧ ପଦରେ

> କେ ଶାଶୁ, ନଣନ୍ଦ ଭୟରେ ପ୍ରିୟକୁ
> କିଛି ନ କହି ତକ୍ଷଣେ ଜାତକରି ଈକ୍ଷଣେ ନିବାରି ପୟକୁ ।

ପ୍ରଭୃତି ପଂକ୍ତି ଉତ୍କଳର ସାମାଜିକ ପ୍ରାଣରେ ଯେ ପ୍ରାଣ ମିଶାଇ ନାହିଁ, ସେ ଲେଖିପାରେ କି ? ଅଧିକ ଉଦାହରଣ ଦେବା ନିଷ୍ପ୍ରୟୋଜନ । ଯେଉଁମାନେ ଏହି ଦୃଷ୍ଟିରେ ଲାବଣ୍ୟବତୀ ପଢ଼ିବେ, ସେମାନେ ଏହାର ଭୂରି ଭୂରି ପ୍ରମାଣ ଏହାର ପ୍ରତ୍ୟେକ ପୃଷ୍ଠାରେ ପାଇବେ ।

## ଲାବଣ୍ୟବତୀ କାବ୍ୟର ଆଦର୍ଶ

### ୧-କାବ୍ୟର ଚରିତ୍ର ଚିତ୍ରର ଆଦର୍ଶ ସୂକ୍ତିର ଉପଦେଶ ଠାରୁ ଶ୍ରେଷ୍ଠ ଓ ସ୍ଥାୟୀ-

କବିତାରେ ଦୁଇ ପ୍ରକାର ଆଦର୍ଶ ଅନୁସନ୍ଧାନ କରଯାଏ । ଗୋଟିଏ କବିତା ମଧ୍ୟରେ ଥିବା ପ୍ରାସଙ୍ଗିକ ସୂକ୍ତି ପ୍ରବଚନ ଓ ଅର୍ଥାନ୍ତର ନ୍ୟାସାଦିରେ । ସେ ଆଦର୍ଶଟି ସର୍ବଦା ସ୍ପଷ୍ଟ ହେଲେହେଁ, ସେଥିରେ ଯେ କେବେ କେବେ କେବଳ କୃତ୍ରିମତା ଦେଖାଯାଏ ତାହା ନୁହେ । ପ୍ରତ୍ୟକ୍ଷ ଉପଦେଶ ଦ୍ୱାରା ପାଠକକୁ ଆଦର୍ଶ ଆଡ଼କୁ ଟାଣିବାରେ କାବ୍ୟର ଗରିମା ନଷ୍ଟ ହୁଏ । ସେପରି ପ୍ରବଚନାଦିରେ କେବଳ ଆଲଙ୍କାରିକ କୌଶଳ ଛଡା ଅନ୍ୟ କୌଣସି ଲକ୍ଷ୍ୟ କରିବା ସବୁବେଳେ ଠିକ୍ ନୁହେଁ । କବିକୁଳତିଳକ କାଳିଦାସ ଏପରି ଅର୍ଥାନ୍ତରନ୍ୟାସ ପ୍ରୟୋଗରେ ସୁପଟୁ । ରାଧାନାଥଙ୍କ ସଂକଳିତ କାଳିଦାସ ସୂକ୍ତି ସବୁ ଯେଉଁମାନେ ପଢ଼ିଅଛନ୍ତି, ସେମାନେ କାଳିଦାସଙ୍କର ଏ କଳା-କୁଶଳତା କିଛି ବୁଝିଥିବେ । ମାତ୍ର ମନେ ରଖିବା ଉଚିତ, ଭର୍ତ୍ତୃହରିଙ୍କ ଶତକମାନଙ୍କ ପରି ସୂକ୍ତିସବୁ କାଳିଦାସଙ୍କର ସର୍ବସ୍ୱ ନୁହେ । କାବ୍ୟର ଅଙ୍ଗ ସୌଷ୍ଠବ ସମ୍ପାଦନ କରିବାରେ ଏମାନଙ୍କର ବିଶେଷ କ୍ରିୟା ଅଛି ସତ୍ୟ, ମାତ୍ର କାଳିଦାସଙ୍କ କାବ୍ୟର ମୁଖ୍ୟ ଆଦର୍ଶ ସୂକ୍ତିରେ ପର୍ଯ୍ୟବସିତ ନୁହେ । କାବ୍ୟ ମଧ୍ୟରେ ଚରିତ୍ର ଚିତ୍ରଣ ଇଙ୍ଗିତରେ ଅଲକ୍ଷିତ ଭାବରେ କାବ୍ୟର ଆଉ ଗୋଟିଏ ଆଦର୍ଶ ବିକଶିତ ହୁଏ । ଏହାରି ଉପାଦେୟତାହିଁ କାବ୍ୟ-ଆଦର୍ଶର ପ୍ରକୃତ ଉତ୍କର୍ଷ ସମ୍ପାଦନ କରେ । ଏହି ଆଦର୍ଶରୁ ମଧ୍ୟ ଅଜ୍ଞାତ ଭାବରେ ପାଠକକୁ ଉପଦେଶ ମିଳେ । ସୂକ୍ତିର ଉପଦେଶଠାରୁ ଏ ଉପଦେଶ ଅଧିକତର ସ୍ଥାୟୀ । ସୂକ୍ତିର ଉପଦେଶ ତ ଅଧିକାଂଶ ସ୍ଥଳରେ ସ୍ପଷ୍ଟ ଉପଦେଶ । ଏହା ଅତ୍ୟନ୍ତ ଉପାଦେୟ ହେଲେହେଁ ପ୍ରାଣ କେବେ କେବେ ଗ୍ରହଣ କରିବାକୁ ଅନିଚ୍ଛୁକ । କିନ୍ତୁ ଚରିତ୍ର ଚିତ୍ରଣ ପାଇଁବରେ ଯେ ଅଜ୍ଞାତ ବ୍ୟକ୍ତିତ୍ୱ ଥାଏ, ତାହା ଅଲକ୍ଷିତ ଭାବରେ ପାଠକର ବ୍ୟକ୍ତିତ୍ୱକୁ ପ୍ରଭାବିତ କରେ । ଇଙ୍ଗିତ ମାତ୍ରରେ ପାଠକର ଭାବ ଓ ରସୋଦ୍ରେକ କରଏ, ଏବଂ ସ୍ଥାୟୀ ଭାବରେ ପାଠକକୁ ପ୍ରଣୋଦିତ କରେ । ଗୁରୁଙ୍କଠାରୁ ଆମ୍ଭେମାନେ ଉପଦେଶ ଶୁଣୁ । ସେଥିରେ ଜୀବନର ଗୋଟିଏ ଆଦର୍ଶ ବିକଶିତ ହେବାର କଥା, କିନ୍ତୁ ଏ ଉପଦେଶର ଆଦର୍ଶଠାରୁ ଅଧିକ ସ୍ଥାୟୀ ଗୁରୁଙ୍କ ବ୍ୟକ୍ତିତ୍ୱର ଆଦର୍ଶ । ଗୁରୁଙ୍କ ଉନ୍ନତ ଜୀବନ ସମ୍ପର୍କରେ ଆସି ଅଜ୍ଞାତ ଭାବରେ ଶିଷ୍ୟ ଯେ ଆଦର୍ଶରେ ପ୍ରଭାବିତ ହୁଏ, ତାହା ଉପଦେଶର ଆଦର୍ଶଠାରୁ ବହୁଗୁଣରେ ଅଧିକ ସ୍ଥିର ଓ ଫଳୋପଧାୟକ ।

କାବ୍ୟର ଚରିତ୍ର ଚିତ୍ରରେ ଯେଉଁ ଆଦର୍ଶ ଅଲକ୍ଷିତ ଭାବରେ ବିକାଶ ପାଏ, ତାହା ସେହିପରି ସୂକ୍ତିର ଆଦର୍ଶଠାରୁ ଶ୍ରେଷ୍ଠ ଓ ସ୍ଥାୟୀ । ଏହାହିଁ କାବ୍ୟର ପ୍ରକୃତ ଜୀବନ । ତାହା କେତେବେଳେ କିପରି ଭାବରେ ପାଠକକୁ କି ଇଙ୍ଗିତ କରେ, ପାଠକ ତାହା ବୁଝିପାରେ ନାହିଁ । ମାତ୍ର ଫଳରେ ନାୟକ ନାୟିକାଦିଙ୍କର ବ୍ୟକ୍ତିତ୍ୱରେ, ପାଠକର ଯେ ଭାବୋଦ୍ରେକ, ରସୋପଲବ୍ଧି ଓ ବେଳେ ବେଳେ ଆତ୍ମବିସ୍ମୃତି ହୁଏ, ଏଥିରେ ସନ୍ଦେହ ନାହିଁ । କହି ବୁଝାଇବାର ଆବଶ୍ୟକତା ନାହିଁ । ଏହା ପ୍ରତ୍ୟେକ ପାଠକ ଅନୁଭବ କରନ୍ତି ଏବଂ ପାଠକମାନେ ଅନେକ ସମୟରେ ଏହି ଭାବୋଦ୍ରେକରେ ଭୁଲି କାବ୍ୟ ପଢନ୍ତି ।

## ୨-ଚନ୍ଦ୍ରଭାନୁର ଏକ ପତ୍ନୀ ବ୍ରତ ଓ ଲାବଣ୍ୟବତୀଙ୍କର ପତିପ୍ରାଣତାହିଁ କାବ୍ୟର ଆଦର୍ଶ :-

କାବ୍ୟରେ ନାୟକ ନାୟକାଦିଙ୍କର ଏହି ଭାବ ଇଙ୍ଗିତାଦି ସୂତ୍ରରେ ବ୍ୟକ୍ତିତ୍ୱ ବିକାଶ ମଧ୍ୟରେ କବିର ଆଦର୍ଶ ଦେଖାଯାଏ, କବିଙ୍କର ବ୍ୟକ୍ତିତ୍ୱ ପରିସ୍ଫୁଟ ହୁଏ । କବି କାବ୍ୟରେ ନାୟକାଦିଙ୍କର ଚିତ୍ର କଲାବେଳେ ନିଜକୁ ଅଜ୍ଞାତ ଭାବରେ ନିଶ୍ଚୟ ବହୁ ପରିମାଣରେ ସେମାନଙ୍କ ସ୍ଥାନରେ ରଖନ୍ତି ଏବଂ ସମାଜରେ ସେ ନିଜ ବ୍ୟକ୍ତିତ୍ୱର ଯେଉଁ ଆଦର୍ଶ ଦେଖାଇବାକୁ ଇଚ୍ଛା କରନ୍ତି, କିମ୍ବା ସମାଜରେ ଯେଉଁ ଆଦର୍ଶ ପ୍ରଚଳିତ ହେବା ଉଚିତ ବୋଲି ସେ କଳ୍ପନା କରନ୍ତି, ନାୟକ ଓ ଉପନାୟକମାନଙ୍କୁ ସେହି ଆଦର୍ଶରେ ଚିତ୍ର କରନ୍ତି । କବି ଯେଉଁ ସମାଜରେ ଜନ୍ମିଥାନ୍ତି, ସେହି ସମାଜର ଆଚାର ବ୍ୟବହାର ଓ ଲୋକଚରିତ୍ରର ଆଦର୍ଶ କାବ୍ୟର ନାୟକ ଉପନାୟକାଦିଙ୍କର ଆଦର୍ଶରେ ପ୍ରତିଫଳିତ ହୁଏ, ଏବଂ ସେ ସବୁ ବହୁ ପରିମାଣରେ କବିଙ୍କର ବ୍ୟକ୍ତିତ୍ୱ ଓ ଆଦର୍ଶରେ ମାଜି ହୋଇଯାଏ । ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ ଆଲୋଚିତ ଗ୍ରନ୍ଥର ନାୟକ ଓ ନାୟିକା । ଚନ୍ଦ୍ରଭାନୁଙ୍କଠାରେ ଏକ ପତ୍ନୀ ବ୍ରତ ଓ ଲାବଣ୍ୟବତୀଙ୍କଠାରେ ଅକାଟ୍ୟ ପତିପ୍ରାଣତା କାବ୍ୟର ମୋଟାମୋଟି ଆଦର୍ଶ କହିଲେ ଚଳେ । କିନ୍ତୁ ଏ ଆଦର୍ଶ ଫୁଟାଇବାରେ ଏ କ୍ଷେତ୍ରରେ କବି ଯେ ପନ୍ଥା ଅବଲମ୍ବନ କରି ଅଛନ୍ତି, ତାହା ବେଳେ ବେଳେ ସାଧାରଣ ପାଠକର ରୁଚିରେ ଆଘାତ ଦିଏ ।

## ୩-ସେତେବେଳର ରାଜକୁଳର ଅବସ୍ଥା-

ଟିକିଏ ଭାବି ଦେଖିଲେ ସ୍ପଷ୍ଟ ବୁଝାଯାଏ, ଉପେନ୍ଦ୍ର ଭଞ୍ଜଙ୍କ ବେଳକୁ ଦେଶର ରାଜା ଆଉ କ୍ଷତ୍ରିୟ ନ ଥିଲେ । ପ୍ରଜାରଞ୍ଜନ ବ୍ରତ ଓ ରାଜକର୍ତ୍ତବ୍ୟର ନିଷ୍ଠା ଆଉ ତାଙ୍କ ପ୍ରାଣକୁ ଅଧିକାର କରି ନଥିଲା । କୁଳ ଗୌରବ ଓ କ୍ଷାତ୍ରଧର୍ମ କେବଳ ପରମ୍ପରାରେ ବଂଶଗତ ପୌରାଣିକ କାହାଣୀରେ ପରିଣତ ହୋଇଥିଲା । ଆଜିକାଲି ଅଧିକାଂଶ ଗଡ଼ପତିବାରରେ

ଯାହା ଦେଖାଯାଏ , ଉପେନ୍ଦ୍ର ଭଞ୍ଜଙ୍କ ବେଳକୁ ରାଜପରିବାରସବୁ ସେହି ଆଦର୍ଶରେ ଢଳା ହୋଇ ସାରିଥିଲ । ରାଜାମାନେ ପାଞ୍ଜିଆ, ଛାମୁଆ, ମନ୍ତ୍ରୀ, ଜଟୁଆଳ ପ୍ରଭୃତି ଖୋସାମଦିଆ ପଦବିଧାରୀଙ୍କ ସାହଚର୍ଯ୍ୟରେ ରହି କାମିନୀ ବିଳାସକୁ ଜୀବନର ସର୍ବଶ୍ରେଷ୍ଠ ସମ୍ଭୋଗ ଓ ସମ୍ପଦ ବୋଲି ବିଗ୍ୱରୁ ଥିଲେ । ପାର୍ଶ୍ୱଚରମାନେ ରାଜପୁରୁଷମାନଙ୍କର ସବୁ କଥାରେ ଅବିଗ୍ୱର ସମ୍ମତି ପ୍ରଦାନ କରି, ସେମାନଙ୍କର ଏହି ସମ୍ଭୋଗ ସାଧନରେ କର୍ତ୍ତବ୍ୟ ଦେଖୁଥିଲେ । ପାରସ୍ତୈଣତା ଓ ବେଶ୍ୟାଶକ୍ତି ଯେପରି କି ରାଜକୁଳର ଭୂଷଣ ହୋଇ ସାରିଥିଲ ।

ପତ୍ନୀ ଆଉ ପୂର୍ବପରି ରାଜାମାନଙ୍କର ସହଧର୍ମିଣୀ ନ ଥିଲେ । ପତ୍ନୀ ବା ପତ୍ନୀମାନେ ଇତରଂ ସାଧାରଣ ରମଣୀ ପରି ବିଳାସର ଭୋଗ୍ୟ ବସ୍ତୁ । ମନ ମାନିଲ ତ ରାଜା ସେଥିରେ ବନ୍ଧା ହୋଇ ରହିଲେ, ମନ ନ ମାନିଲେ ରାଜାଙ୍କର ନିତ୍ୟ ମାଧୁକରୀ ବୃତ୍ତିରେ ବାଧା ଦେବାକୁ କେହି ନାହିଁ ; ଭିତରେ ରାଜକୀୟ କର୍ତ୍ତବ୍ୟର ପ୍ରେରଣା ନାହିଁ, କି ବାହାରରେ ନୀତିଜ୍ଞ ମନ୍ତ୍ରୀ ରାଜଗୁରୁଙ୍କର ଆଉ ପୂର୍ବ କ୍ଷମତା ବା ଅଧିକାର ନାହିଁ । ରାଜାଙ୍କର ଚିତ୍ତବୃତ୍ତି ନିରଙ୍କୁଶ ।

ଅସୂର୍ଯ୍ୟଂପଶ୍ୟା ରାଜଦାର ଓ ରାଜକନ୍ୟାମାନେ ଏଥିରେ କି ଅବସ୍ଥା ଭୋଗୁଥିବେ ତାହା ସହଜରେ ଅନୁମେୟ । ବେଶ ରଚନ ଓ ବିଳାସଭଙ୍ଗୀ ତାଙ୍କ ଜୀବନର ସର୍ବସ୍ୱ । ଆଉ ଜୀବନରେ ଯେପରିକି ମହତ୍ତର ଉଦ୍ଦେଶ୍ୟ କିଛି ନାହିଁ । ତାଙ୍କର ଏବଂ ତାଙ୍କ ପରିଗ୍ୱରିକା ଓ ହିତ ଚିନ୍ତା କରୁଥିବା ସମସ୍ତ ଲୋକମାନଙ୍କର ନିତ୍ୟ ଚିନ୍ତା, କିପରି ରାଜକନ୍ୟା ନିଜର ରୂପଜ ମୋହରେ ସ୍ୱାମୀଙ୍କର ମନ ବାନ୍ଧି ରଖି ପାରିବେ । ତାହା କରି ନ ପାରିଲେ ରାଜକନ୍ୟାଙ୍କର ଆଉ ଗତି ନାହିଁ । ସେ ହୁଏତ ପାପ ପଙ୍କରେ ଇହ ପରକାଳ ନଷ୍ଟ କରିବେ ; ନଚେତ୍ ଅନ୍ତଃପୁରରେ ଅନ୍ତର୍ଦାହରେ ପୋଡ଼ିଯିବେ ।

ଐତିହାସିକ ସତ୍ୟ ମଧ୍ୟ ସମାଜର ଏହି ଅବସ୍ଥାକୁ ସମର୍ଥନ କରୁଅଛି । ଉପେନ୍ଦ୍ର ଭଞ୍ଜଙ୍କ ବେଳକୁ ଦେଶରେ ଆଉ ସ୍ୱାଧୀନତା ନ ଥିଲ । କ୍ଷତ୍ରିୟ ତେଜ ଓ ସଙ୍ଗେ ସଙ୍ଗେ ରାଜକୀୟ କର୍ତ୍ତବ୍ୟନିଷ୍ଠା ଦେଶରୁ ଏକାବେଳକେ ଲୋପ ପାଇଥିଲ । ରାଜାମାନେ ନିଜର ସଙ୍କୁଚିତ ଓ ହେୟଶକ୍ତି ଘେନି ବେଳେ ବେଳେ ବାପ ଭାଇର ଗୁପ୍ତ ହତ୍ୟା କରୁଥିଲେ । ମାତ୍ର ଉଦାରତା ଓ ଉଚ୍ଚ ଅଭିଳାଷ କ୍ଷତ୍ରିୟ ସମାଜରେ ଆଉ ନ ଥିଲ । ନିରୀହ ପ୍ରଜା ପରମ୍ପରାଗତ ସମ୍ମାନ ରଖି ଅଯାଚିତ ଭାବରେ ଯେଉଁ କର ଦେଇ ଆସୁଥିଲେ, ବେଳେ ବେଳେ ଅତ୍ୟାଗ୍ୱରରେ ତାହାର ଆଦାୟ ନାନା ଅପପ୍ରଣାଳୀରେ ବୃଦ୍ଧି କରି ରାଜାମାନେ ନିଜର ବିଳାସ ଚରିତାର୍ଥ କରୁଥିଲେ, ଏବଂ ସଙ୍ଗେ ସଙ୍ଗେ ରାଜା ତଥା ପ୍ରଜାସାଧାରଣର ତେଜସ୍ୱୀତା, ଧର୍ମନିଷ୍ଠା ଓ ଅନ୍ତଃସାର କ୍ଷୟପ୍ରାପ୍ତ ହେଉଥିଲ ।

ଉପେନ୍ଦ୍ର ଭଞ୍ଜ ଏତିକି ବେଢର କବି । ଆଜି କାଲି ପାଠକମାନେ ଉପେନ୍ଦ୍ର ଭଞ୍ଜଙ୍କର ଲେଖାର ରୁଚିହୀନତା ଓ ଅଶ୍ଳୀଳତାଦି ପ୍ରତି କଟାକ୍ଷ କରନ୍ତି । କିନ୍ତୁ ପ୍ରକୃତ ବୁଝିଲେ କବି ଉପେନ୍ଦ୍ର ଭଞ୍ଜ କବି ଥିଲେ । ଦୁଷ୍ପ୍ରାପ୍ୟ ମନୀଷା କବିଙ୍କର ଗୋଟିଏ ବିଶିଷ୍ଟତା । କବି ଭାବର ଇଙ୍ଗିତ କରନ୍ତି, ବିଷୟ ବିଶ୍ଳେଷଣର ଉନ୍ମେଷ ମାତ୍ର ଦେଖାଇ ଦିଅନ୍ତି । କିନ୍ତୁ କବିତା ପଢ଼ି ପାଠକ ଯେଉଁ କାବ୍ୟରସ ଉପଭୋଗ କରେ, କବିଙ୍କ ଲେଖାରେ ସେ ସମସ୍ତ ରସ ଥିବାଭଳି କିଛି ପଦାର୍ଥ ଦେଖିବାକୁ ନ ଥାଏ । ଇଙ୍ଗିତର ମୋହନ ପ୍ରେରଣାରେ ରସୋପଲବ୍ଧିର ଅଗାଧ ଗାମ୍ଭୀର୍ଯ୍ୟ ଦେଖିବା କବିର କାର୍ଯ୍ୟ । ଚଳିତ ବିଷୟ-ରାଶିର ଚିତ୍ରଣରେ ଅଜ୍ଞାତ ଭାବରେ ସ୍ଥାୟୀଭାବ ଓ ଆଦର୍ଶ ଫୁଟାଇବା କବି କେବଳ ପାରନ୍ତି । ସମସ୍ତେ ତାହା ପାରନ୍ତି ନାହିଁ । ସେଥିପାଇଁ ପଦ ପକାଇ ଗୀତ ଯୋଡ଼ିଦେଲେ କେହି କବି ହୁଅନ୍ତି ନାହିଁ ।

## ୪-ଭବ କାବ୍ୟରେ ସରସତା ଲୋଭନ୍ତି:-

ଉପେନ୍ଦ୍ରଭଞ୍ଜ କବି ଥିଲେ । ତାଙ୍କର ଚିତ୍ର ସାମାଜିକ ଅବସ୍ଥାର ପ୍ରତିକୂଳ ନ ଥିଲା । ଲାବଣ୍ୟବତୀ ଭଞ୍ଜ ଯୁଗର ରାଜକନ୍ୟା । ତାଙ୍କର ଚିତ୍ର ସେଥିରୁ ଅନ୍ୟଥା ହୋଇ-ନାହିଁ । ଚନ୍ଦ୍ରଭାନୁ ମଧ୍ୟ ଉତ୍କଳ କବିଙ୍କ କଳ୍ପିତ ରାଜ କୁମାର । ତାଙ୍କ ଚିତ୍ରରେ ବାସ୍ତବିକ ଉତ୍କଳ ରାଜକୁମାରଙ୍କ ଆଲେଖ୍ୟ । ତାହା ନ ହେଲେ ଉପେନ୍ଦ୍ର ଭଞ୍ଜଙ୍କ କବିତାରେ ପାଠକର ଭାବ ବିରୋଧ ହୁଅନ୍ତା । ଆଦର୍ଶର ନୀରସ କଠୋରତାରେ ଦାର୍ଶନିକର ଚିର-ବିନୋଦ ହୋଇପାରେ, କିନ୍ତୁ କାବ୍ୟର ଆଦର୍ଶ ସ୍ୱତନ୍ତ୍ର । କାବ୍ୟରେ କବି ସରସତା ଲୋଡ଼ନ୍ତି । ବାସ୍ତବ ରାଜ୍ୟରେ ରହି କବି ସଂସାରକୁ ସରସ ଓ ପୂର୍ଣ୍ଣ ଦେଖନ୍ତି । ଶୁଷ୍କ ଆଦର୍ଶର ନୀରସତା ସେ ସ୍ଥାନ ପାଆନ୍ତି ନାହିଁ । ବର୍ଷା କାଳରେ ନଦୀ ଦୁଇକୂଳ ଖାଇ ଘୋର ପ୍ରତାପରେ ପୂର୍ଣ୍ଣଗର୍ଭରେ ଆକାଶକୁ ବକ୍ଷ ଉନ୍ମୁକ୍ତ କରି ସମୁଦ୍ର ଆଡ଼କୁ ଧାଇଁ-ଯାଏ । ବାଣିଜ୍ୟ-ଜୀବୀ ମହାନଦୀର ଏ ଶୋଭା ସମୃଦ୍ଧି ଦେଖି କାତର ହୁଏ । ସେ ଲୋଡ଼େ ଶିଶିର ନିଦାଘର ସେହି ସୈକତଗର୍ଭା ଶୁଷ୍କ ତଟିନୀ । ତାହାର ବ୍ୟବହାର, ତାହାର ଆଦର୍ଶ । ବ୍ୟବହାର ପ୍ରତି କବିଙ୍କର କିନ୍ତୁ ଦୃଷ୍ଟି ନ ଥାଏ । ଲାବଣ୍ୟବତୀ ଓ ଚନ୍ଦ୍ରଭାନୁରେ ଉପେନ୍ଦ୍ରଭଞ୍ଜ ଯେଉଁ ଚିତ୍ର ଦେଇ ଅଛନ୍ତି, ତହିଁରେ ନୀରସ ଉପଯୋଗିତାର ଶୁଷ୍କ ଆଦର୍ଶ କାହିଁକି ରହିବ ?

କିନ୍ତୁ ଆଦର୍ଶ ଅଛି । ସେ କବିଙ୍କର ଆଦର୍ଶ । କବି ବେଳେ ବେଳେ ପ୍ରକୃତିର ଉଚ୍ଛୃଙ୍ଖଳ କ୍ରିୟାକଳାପ ମଧ୍ୟରେ ପରିପାଟୀ ଲୋଡ଼ନ୍ତି । ଚିତ୍ରକର ଯେପରି ପ୍ରକୃତିର ଚିତ୍ର କରୁ କରୁ ବେଳେ ବେଳେ ତହିଁରେ ଅପୂର୍ଣ୍ଣତା ଦେଖି କାଳ୍ପନିକ ରଙ୍ଗ ବିନ୍ୟାସରେ

ତାହାର ପୂର୍ଣତା ସମ୍ପାଦନ କରେ, କବି ସେହିପରି ପ୍ରାକୃତିକ ଘଟଣାରାଶିର ଅପୂର୍ଣତା ମଧ୍ୟରେ ବେଳେ ବେଳେ ପୂର୍ଣତା ଦେଖାଇ ଦିଅନ୍ତି ।

**୫–ଲାବଣ୍ୟବତୀରେ ଅତି ବିଳାସର ବିଭତ୍ସତା ନାହିଁ :–**

ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୟାତ୍ମକ ଗଳ୍ପକୁଳର ଭୋଗବିଳାସ ଉପାଦାନରେ ଚିତ୍ରିତ ସତ୍ୟ, କିନ୍ତୁ ସେଥିରେ ଅତି ବିଳାସର ବିଭତ୍ସତା ନାହିଁ । ସେଥିପାଇଁ ଲାବଣ୍ୟବତୀର ଅକାଟ୍ୟ ପତିପ୍ରାଣତା ଓ ଚନ୍ଦ୍ରଭାନୁଙ୍କର କଠୋର ଏକପତ୍ନୀ ବ୍ରତ । ରୂପଜ ମୋହରେ ପ୍ରାଣର ପ୍ରଣୟବନ୍ଧନ କବି ବରାବର ଦେଖାଇ ଅଛନ୍ତି ଏବଂ ସେଥିରେ ପ୍ରେମର ଦୃଢତା ଆଣିବା ପାଇଁ ବେଳେବେଳେ ଆଦିରସ ବିଳାସର ଅତିରଞ୍ଜନ କରିବାକୁ ସେ ବାଧ୍ୟ ହୋଇ ଅଛନ୍ତି । ତଥାପି ଏ ଅତିରଞ୍ଜନ ମଧ୍ୟରେ ତାଙ୍କ ଆଦର୍ଶ ଦେଖିବାକୁ ହେବ । ସେ ଆଦର୍ଶ ଦେଖିଲେ ବେଳେ ଏ ଅତିରଞ୍ଜନ ଆଉ ଦିଶିବ ନାହିଁ । ସେଥିପାଇଁ ଏହି ରୂପଜ ମୋହର କଙ୍କାଳ ମଧରେ ବେଳେ ବେଳେ ଲାବଣ୍ୟବତୀରେ ସ୍ଥାୟୀ ପ୍ରେମଭାବର ଇଙ୍ଗିତ ବିଶଦ ଭାବରେ ଫୁଟିଅଛି । ଉଦାହରଣ ସ୍ୱରୂପ, ଲାବଣ୍ୟବତୀର ୪୦ ଛାନ୍ଦରେ କବି ଲେଖି ଅଛନ୍ତି–

ପରେ ପରେ ଆଣି ପରଚେ କରଇ
ବିଧାତା ବିଧାନ ଦେଖ ।
ପୀରତି ହୋଇ କଥାଏ ଉପୁଜଇ
ପରମ ରମ୍ୟଟି ସୁଖ ।
ପ୍ରାଣରୁ ଅଧିକ ଯେଉଁ ଘେନାଘେନି
ତାହା ଯାହା କରେ ଭିନ୍ନ ।
ପବିତ୍ରତନ କିପାଁ ଶିରେ ନ କନେ
ଜାଣିଲି ଅତି ପିଶୁନ ।
ମନ ଜାଣିବାକୁ ପ୍ରିୟା ସମ ଜଣେ
ଖୋଜିଲେ ନଥିବ କାହିଁ ।
ମୋ ମନେ ଘେନୁଛି ପ୍ରୀତି ଘେନିବାକୁ
ତାହାରି ସମାନ ସେହି ।
ତାହା ପ୍ରତିବିମ୍ବ ସୁନ୍ଦର ପଣକୁ
ତାକୁ ପ୍ରତିତୁଲ୍ୟ ଅଛି ।
ଏମନ୍ତ ପଦାର୍ଥ ପାଇ ହରାଇଲେ
ପଶୁ କି ପାରିବ ମୂର୍ଚ୍ଛି ।

ଜାଣି ନ ଥିଲକୁ ଏ ରସ ଏମନ୍ତ
ସ୍ମରକୁ ଦହିଲେ ହର ।
ଜାଣିଲ ଦିନରୁ ଯୁବତୀକି କଲେ
ଅର୍ଦ୍ଧ ଅଙ୍ଗେ ଅଙ୍ଗୀକାର ।
ଆଜନ୍ମ ବ୍ରହ୍ମଚାରୀ ପଣେ କେ ବଡ଼
ବୃଦ୍ଧ ଋଷ୍ୟଶୃଙ୍ଗ ଠାରୁ ।
ନିଜ ଦୀକ୍ଷା ଛାଡ଼ି ଶିକ୍ଷା କଲେ ରସ
ରୂପାଜୀବା କରି ଗୁରୁ ।
ସୁଧା ସ୍ୱାଦୁ ପାଇ ଶିରଚ୍ଛେଦ ରାହୁ
ନ ଛାଡ଼ିଲ କଦାଚିତ ।
ପ୍ରୀତି ଏମନ୍ତ ଚନ୍ଦ୍ରମଣି ପାଷାଣ
ଚନ୍ଦ୍ର ଚାହିଁ ଦ୍ରବୀଭୂତ ।

ବିରହୀ ଚନ୍ଦ୍ରଭାନୁର ଏ ପରିତାପ ଲକ୍ଷଣରେ ରୂପକ ମୋହର ଗନ୍ଧ ଥାଇପାରେ, କିନ୍ତୁ ରସୋପଲବ୍ଧିର ସ୍ଥାୟୀ ଭାବ, ପ୍ରେମର ପବିତ୍ରତା ଓ ସ୍ଥିରତା ଯେ ଫୁଟି ଅଛି ତାହା ପାଠକ ମାତ୍ରେ ସ୍ୱୀକାର କରିବେ ।

## ୬. ଲାବଣ୍ୟବତୀରେ କବିତାର କଳାପାଟବ ସମୁଦ୍‌ଭିନ୍ନ ଓ ସୁରୁଚିରः—

ଆଧୁନିକ ରୁଚି ଅନୁସାରେ ଦେଖି ବସିଲେ ମଧ୍ୟ ଉପର ଲିଖିତ ପଂକ୍ତି ସବୁରେ କୌଣସି କଳଙ୍କ ନାହିଁ । ଯେ କୌଣସି ଆଧୁନିକ ପଦ୍ୟ ଲେଖକ ଓଡ଼ିଶାରେ ଆଜି ଏପରି ପଦ୍ୟ ଲେଖି ସମ୍ମାନିତ ହେବେ । କାବ୍ୟର ସମୂହ ଚିତ୍ରଣ-ଚାତୁରୀର ଆଲୋଚନା ଛାଡ଼ିଦେଲେ ମଧ୍ୟ ସ୍ଥଳ ବିଶେଷରେ ଲାବଣ୍ୟବତୀରେ କବିତାର କଳା ପାଟବ ସମୁଦ୍‌ଭିନ୍ନ ଓ ସୁରୁଚିର । ଷଷ୍ଠ ଛାନ୍ଦରେ ଲାବଣ୍ୟବତୀ ସ୍ନାନ ସାରି ଉଠିଲ ବେଳେ କବି ଲେଖିଅଛନ୍ତି—

ବିନ୍ଦୁ ବିନ୍ଦୁ ଜଳ ରହିଛି ଚାରୁ କୁଟିଳ ବାଳେ,
ତୁଷାର ବୃଷ୍ଟି କି ହୋଇଛି ନବ ତମାଳ ଦଳେ ।
ନବ ଘନେ କିବା ଲଗିଛି ତାର ତାରକା ଶ୍ରେଣୀ,
ମୋତି ପତନ କି ହୋଇଛି ନୀଳମଣି ଧରଣୀ ।
ଅଙ୍ଗ ଅଙ୍ଗନାରେ ପୋଛିଲେ ସଖୀମାନେ ସତ୍ୱରେ,
କେଶ ପୋଛି ଦେଇ ଗର୍ଣ୍ଣିକି ଦେଲେ ଅଗ୍ରଭାଗରେ ।
ଉର୍ଣ୍ଣି ଦେଲେ ପୀତାମ୍ବରକୁ ଉରୁ ସନ୍ଧିକୁ ରୁନ୍ଧି,
ପିନ୍ଧି ନିତମ୍ବିନୀ ନିବିଡ଼େ ନୀବୀବନ୍ଧକୁ ବାନ୍ଧି ।

ଏଥିରେ ଭାବର ସରଳତା ଓ ସ୍ଥାୟିତ୍ୱ, ବର୍ଣ୍ଣବିନ୍ୟାସର ମୋହନ ବିଭ୍ରମ ଓ ତରଳତା ସୁନ୍ଦର ସୁବୋଧ୍ୟ ଅଳଙ୍କାର ମଧ୍ୟରେ ସହଜ ଭାବରେ କମନୀୟ ବିକାଶ, ସୁତରାଂ ସମସ୍ତ ପଂକ୍ତି ମଧ୍ୟରେ କବିତାରେ ଅମିୟ ବଂଶୀଧ୍ୱନି ପାଠକଙ୍କୁ ମୁଗ୍ଧ କରେ । ଲାବଣ୍ୟବତୀରେ ସର୍ବତ୍ର ମଧ୍ୟେ ମଧ୍ୟେ ଏପରି ସରଳ ସୁନ୍ଦର ପ୍ରାକୃତିକ କବିତାର ଉଦାହରଣ ଅନେକ ଅଛି । ରୂପଜମୋହ ଓ ଶୃଙ୍ଗାରବିଳାସ ଲାବଣ୍ୟବତୀର ବିଶେଷ ଅଙ୍ଗ । ସେଥିରେହିଁ କବି ନିଜର କାବ୍ୟକଳା ଦେଖାଇ ଅଛନ୍ତି ଏବଂ ବେଳେ ବେଳେ ତାହା ଏତେ ମଧୁର, ପ୍ରାକୃତିକ ଓ ସୁରୁଚିସଂପନ୍ନ ଯେ ଦେଖିଲେ ବିସ୍ମିତ ହେବାକୁ ହୁଏ । ସେଥିରେ ବେଳେ ବେଳେ ପ୍ରେମିକ ପ୍ରେମିକାର ହୃଦୟ, ତରଳ ଭାବ, ପବିତ୍ର ସମାଜିକ ବିଧି ଓ ନାରୀର ସ୍ୱଭାବ-ସୁଲଭ ଲଜ୍ଜାରେ ଏପରି ସରସ, ସୁନ୍ଦର ଓ ରୁଚିକର ଭାବରେ ରସାଣିତ ଓ ସଂଯତ ଯେ, ସେଥିରେ କବିଙ୍କର ଅଦ୍ଭୁତ ନାଟକୀୟ ଭାବ ଅସ୍ୱୀକାର କରିବାର ଉପାୟ ନାହିଁ । କବି ପାଠକଙ୍କୁ ସେ ସବୁ ଭାବର ଇଙ୍ଗିତ ଦେଲାବେଳେ ନିଜକୁ ବର୍ଣ୍ଣିତ ନାୟକ ନାୟିକାଦି-ଙ୍କର ସ୍ଥାନ ଅବସ୍ଥାରେ ସମ୍ପୂର୍ଣ୍ଣରୂପେ ସ୍ଥାପନ କରି ପାରି ଅଛନ୍ତି ।

## ୭–ଲାବଣ୍ୟବତୀର କବିଙ୍କ ପରି କବି ଉତ୍କଳର ନବଯୁଗର କବିଙ୍କ ମଧ୍ୟରେ ନାହାନ୍ତି :–

ଯେଉଁମାନେ ଲାବଣ୍ୟବତୀ ପଢ଼ି ଅଛନ୍ତି, ସେମାନେ ଯଦି କବିତାର ଏ ବିଭାବ ପ୍ରତି ଦୃଷ୍ଟି ଦେଇଥିବେ, ତେବେ ସ୍ୱୀକାର କରିବେ ଯେ, ଏପରି ସାମାଜିକତା ଓ ସ୍ୱାଭାବିକତାରେ ଲାବଣ୍ୟବତୀର କବିଙ୍କ ପରି କବି ଉତ୍କଳର ନବଯୁଗର କବିଙ୍କ ମଧ୍ୟରେ ନାହାନ୍ତି । ୨୩ ଛାନ୍ଦରେ କବି ଲେଖି ଅଛନ୍ତି :–

କେ ବୋଇଲା ମୋହପାଇଁ ନ ଭଜିବ
ସାରିବ ବେଳକାଳେ ନୀତି ।
ତମ୍ଭେ ସର୍ବ ଶୁଭେ ଥିଲେ ସବୁ ଅଛି
ନ ମିଳିବେ କେତେ ଯୁବତୀ ।
କେ ସଖି, ଦ୍ୱାରରେ ଏମନ୍ତ କୁହାଇ
ବାହୁଡ଼ି ଆସି ଯାହାକୁ ବିଭାହେବ
ଏ ରୂପେ ନୋହିବ ଅସ୍ନେହୀ ।

## ୮–ବିଭିନ୍ନ ଉଦାହରଣ–

ବିରହଶଙ୍କିନୀ ବିଳାସିନୀଠାରେ ଉପେନ୍ଦ୍ର ଭଞ୍ଜ ଏ ହିନ୍ଦୁଗୃହୀଣୀସୁଲଭ ରସର ସଂଯମ କଳ୍ପନା କରନ୍ତି ବୋଲି ଅନେକ ନବ ଯୁଗର ସାହିତ୍ୟିକ ଭାବି ନ ଥିବେ । ମାତ୍ର

ଉତ୍କଳ କାବ୍ୟର ପିତା ଉପେନ୍ଦ୍ର ଭଞ୍ଜଙ୍କ ଲେଖାରେ ଏଭଳି ଚିତ୍ର ଭୂୟୋଭୂୟ ଦେଖିବାକୁ ମିଳେ ।

ଥରେ ଲାବଣ୍ୟବତୀ ନିଜର ଅନୁରାଗ ଦେଖାଇବା ଉଦ୍ଦେଶ୍ୟରେ କଥାବାର୍ତ୍ତା ପ୍ରସଙ୍ଗରେ କହିଲେ :—

"ସବୁଠାରେ ଜୀବଧନ ପାଇଁ, ପ୍ରିୟା ତେଜଇ ସିନା ଜୀବନ" । ସେଠାରୁ କଥୋପକଥନରେ ଭାବର ବିକାଶ ଦେଖାଇବା ପାଇଁ କବି ଲେଖି ଅଛନ୍ତି :—

"ବିଗ୍ରହି ତରୁଣ ବୋଇଲେ ଦାରୁଣ, ଜୀଅଇ ସିନାରେ ସଖି
କାମ ବିନୁ ରତି ଚନ୍ଦ୍ର ବିନୁ ରତି, ନ ପାରିଲେ ଜୀବ ରଖି ।"

ଏଇପରି ପ୍ରକୃତିର କେତେକ କଥୋପକଥନ ପରେ ବ୍ରୀଡ଼ାବତୀ ପ୍ରାଚ୍ୟଯୁବତୀ ଲାବଣ୍ୟବତୀ ମୁଖରେ କବି କୁହାଇ ଅଛନ୍ତି:—

ଶୁଣି ରସିକା ରମଣୀ ଯେ ବୋଇଲା, ଏ ଭଙ୍ଗୀକି କେ ପାରିବ ?
କାହିଁ କଥା ନେଇ କାହିଁ ଲଗାଇବ, ତହିଁ କି ଉତ୍ତର ଥିବ ?"

ବୋଧହୁଏ ଓଡ଼ିଆ ଗୃହରେ କୌଣସି ବିବାହିତ ଯୁବକଙ୍କୁ ଏ ଆଲେଖ୍ୟର ସ୍ୱାଭାବିକତା ଓ ମାଧୁରୀ ବୁଝାଇଦେବାକୁ ହେବ ନାହିଁ । ବିଶେଷ ଉଦାହରଣ ଦେବା ଅନାବଶ୍ୟକ । ଲାବଣ୍ୟବତୀ ଅନେକ ସ୍ଥଳରେ ବର୍ତ୍ତମାନ ରୁଚିର ବିଗର୍ହିତ । ବିଶେଷ ଉଦାହରଣ ଦେଲେ କୌଣସି କୌଣସି ପାଠକଙ୍କର ରୁଚି ବିରୋଧ ଘଟିପାରେ । ତାହା ଘଟାଇବା ଆମ୍ଭର ଉଦ୍ଦେଶ୍ୟ ନୁହେ । ବିଶେଷତଃ 'ଲାବଣ୍ୟବତୀର' ଆଉ ଗୋଟିଏ ବିଶେଷତ୍ୱ ଯେ, ତାହାର ପ୍ରାକୃତିକତା ଓ ମୌଳିକତା, ଆଲେଖ୍ୟର ନିଷ୍ଠା ଓ କଳ୍ପନାର ବାସ୍ତବ୍ୟତା, ଉକ୍ତିର ମୋହିନୀଶକ୍ତି ଓ ଅବବୋଧର ସ୍ଥାୟିତ୍ୱ, ବର୍ଣ୍ଣନର ବିରୂପତା ଓ ଚିତ୍ରଣର ସରସତା ଏଇପରି ଆଧୁନିକ ରୁଚିବିଗର୍ହିତ ସ୍ଥଳମାନଙ୍କରେ ଅତ୍ୟନ୍ତ ପରିସ୍ଫୁଟ, ବିଶଦ ଓ ହୃଦୟଗ୍ରାହୀ । ସେଠାରେ ଆଉ ଅନୁକରଣ ଓ ଅନୁବାଦରେ କବିଙ୍କର ଆତ୍ମଗୋପନ ନାହିଁ । ଅଳଙ୍କାର କୃତ୍ରିମତାରେ ଭାବ ଆଉ ଶୃଙ୍ଖଳିତ ନୁହେ କିମ୍ବା ଆଭିଧାନିକ ଶବ୍ଦ ସଂଦୋହ—ବିଳାସରେ କବି ଆଉ ମନ ବଳାଇ ପାରି ନାହାନ୍ତି । କବିଙ୍କର ପ୍ରକୃତ କାବ୍ୟରସ , ପ୍ରାଣର ଭାବ ଓ କଳାର କୌଶଳ ଆଉ ବନ୍ଧନ ମାନି ନାହିଁ । ଆପେ ଆପେ ବାହାରି ପଡ଼ିଛି । ଅବଶ୍ୟ ଅନ୍ୟ ସ୍ଥଳମାନଙ୍କରେ କବିଙ୍କର ଏ କୁଶଳତା ଯେ ନାହିଁ, ତାହା ନୁହେ । ଉଦାହରଣ ସ୍ୱରୂପ ମାଳିନୀର ବେଶ ବର୍ଣ୍ଣନା, ଅଳଙ୍କାରର ସମସ୍ତ କୃତ୍ରିମତା ମଧ୍ୟରେ ମଧ୍ୟ ପାଠକର କିପରି ଚିତ୍ତ ବିନୋଦ କରେ, ତାହା ଲବଣ୍ୟବତୀର କୌଣସି ପାଠକ ନିକଟରେ ବ୍ୟାଖ୍ୟା କରିବାକୁ ହେବ ନାହିଁ । ପଞ୍ଚମ ଛାନ୍ଦରେ ବସନ୍ତ ବର୍ଣ୍ଣନା କରି କବି କହି ଅଛନ୍ତି:—

" ମଳୟ ଶିଖରି ଶିରୀ ସ୍ୱୈରିକରି     ବହିଲଣି ମନ୍ଦ ସମୀର
ସୁମନାକୁ ବାଯ ଗେଗଇ ନେବଟି     ବୋଲି କହିଲଣି ଭ୍ରମର ।
କେଶର । କେଶରେ ହେଲେଣି ମଞ୍ଜୁଳ ।
କେଶରେ ମଣ୍ଡନ କରିବା ଭଳିରେ,     ଫୁଟିଲେଣି କେତେ ବଞ୍ଜୁଳ ।
ମଲ୍ଲୀ, ମାଧବୀ, ମକରନ୍ଦ, ସାଧବୀ     ହେଲେଣି ବାନ୍ଧବୀ କାନନେ ।
ତୁଷାର ନାଶ ଗ୍ରହି ହାସ ପ୍ରକାଶ     କଲେଣି ପଙ୍କଜ–ଆନନେ ।
ହେଲଣି । ଚଞ୍ଚରୀ ପ୍ରକଟ କଟକେ ।
ଅତନୁ ଫୁଲର ବିଶିଖ କାର୍ମୁକ     ଘେନି ଚଢ଼ିଲଣି କାମୁକେ । "

ଇତ୍ୟାଦି । ସମସ୍ତ ଆଳଙ୍କାରିକତା ସତ୍ତ୍ୱେ ଏ ସବୁର ଅପୂର୍ବ ମାଧୁରୀ କିଏ ଅସ୍ୱୀକାର କରିବ ?

## ୯–ଲାବଣ୍ୟବତୀରେ ଥିବା ସମସ୍ତ ଚରିତ୍ର ଚିତ୍ରଣ ସର୍ବୋତ ଭାବେ ଆମର୍ତ୍ତକର:–

ଏ ସମସ୍ତ ବର୍ଣ୍ଣନା ମଧ୍ୟରେ ଗୋଟିଏ ସାରସତ୍ୟ ଆମ୍ଭମାନଙ୍କୁ ମନେ ରଖିବାକୁ ହେବ । ଉପେନ୍ଦ୍ର ଭଞ୍ଜ ଯେଉଁ ଯୁଗରେ କବିତା ଲେଖିଥିଲେ ସେ ଯୁଗରେ ଭାରତର ଋଷିଯୁଗ ପୁରାଣର କାହାଣୀ ହୋଇ ସାରିଥିଲା ଏବଂ ନବ ଯୁଗର ପାଶ୍ଚାତ୍ୟ ଭାବ–ପ୍ରଣୋଦିତ ଆଦର୍ଶ ଦେଶକୁ ଗ୍ରାସ କରି ନ ଥିଲା । ସେ ଯାହା ଦେଖିଥିଲେ, କାବ୍ୟ ଚିତ୍ରର ଇଙ୍ଗିତରେ ତାହାହିଁ ଦେଖାଉଥିଲେ । ତେଣୁ ଲାବଣ୍ୟବତୀଠାରୁ ଆମ୍ଭେମାନେ ଆଉ କଣ୍ୱକୁମାରୀ ଶକୁନ୍ତଳା ଦେଖିବାକୁ ଆଶା କରି ନ ପାରୁ । ଓଭିଡ୍‌ରୁ ଗୃହୀତ ' ଉଷା ' ଗୌରୀଶଙ୍କର ସୁଭଦ୍ରା ସୁଲଭ ଦୟିତାପଣ, କିମ୍ବା ପ୍ରେମପଗଲ୍‌ଭ 'ନନ୍ଦିକା' ପରି ବିଂଶ–ଶତାବ୍ଦୀ କଳ୍ପନାସୁଲଭ ଉଚ୍ଛଳ ରଜନନ୍ଦିନୀ କାହିଁ ମିଳିବେ ? କେବଳ ଲାବଣ୍ୟବତୀ ନୁହନ୍ତି, ଲାବଣ୍ୟବତୀର ନାୟକ, ଉପନାୟକ, ସ୍ତ୍ରୀ ପୁରୁଷ, ମୁଖ୍ୟ ଅବାନ୍ତର, ସମସ୍ତ ଚରିତ୍ରରେ ଆମ୍ଭେମାନେ କଠୋର ପ୍ରାଚ୍ୟ ଭାବର ନିଷ୍ଠା, ଭାରତୀୟ ନାରୀର ସ୍ୱଭାବ ସୁଲଭ ବ୍ରୀଡ଼ା, ଏହି ଆର୍ଯ୍ୟଭୂମିର ପୁରୁଷର ଲୋକ ପ୍ରେମରେ ସାମାଜିକ ଭାବର ସଂଯମ, ପୋଇଲିପରିଚାରୀଙ୍କର ଆତ୍ମସମର୍ପଣ, ମାଳିନୀର ପ୍ରାଚ୍ୟ ଧର୍ମ ଭାବ, ଉନ୍ନତ ରାଜ–ପରିବାର ଲୋକଙ୍କର ମଧ୍ୟ ଧର୍ମ ବା ଦେବୋପାସନା ବେଳେ ମାଳିନୀଠାରେ ଆତ୍ମବିକ୍ରୟ, ବିବାହ ଆକାଂକ୍ଷାର ଉନ୍ମୁକ୍ତ ଉଚ୍ଛୃଙ୍ଖଳତା ବେଳେ ପୌରୋହିତ୍ୟ କ୍ରିୟାର ପବିତ୍ର ଭାବ ପ୍ରଭୃତି ଦେଖିବାକୁ ପାଉଁ । ଲାବଣ୍ୟବତୀରେ କିମ୍ବା ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କର ଅନ୍ୟାନ୍ୟ ଗ୍ରନ୍ଥରେ ଯେଉଁ ଗୃହ, ଯେଉଁ ପରିବାର, ପିତାପୁତ୍ର, ଯେଉଁ ଦାମ୍ପତ୍ୟ, ଯେଉଁ ପରିଗ୍ରହ, ଯେଉଁ ସ୍ୱଜନତା ଏବଂ ଏପରିକି ଅଟା ରହସ୍ୟ, ଆଳାପ ବିଳାସ ଦେଖିବାକୁ ମିଳେ, ତାହା ବ୍ୟକ୍ତିବିଶେଷର ମାପକାଠିରେ ଉତ୍ତମ ମଧ୍ୟମ ଅଧମ ହୋଇପାରେ; କିନ୍ତୁ ସେସବୁ

ସର୍ବତୋଭାବରେ ଆମ୍ଭର ନିଜର । ସେଥିପାଇଁ ସେ ସବୁ ଲେଖାର ଦେଶରେ ଏତେ ସବୁ ପ୍ରତିପତ୍ତି । ଆମ୍ଭର ଭାଷା, ଆମ୍ଭର ଆଶା, ଆମ୍ଭର ପ୍ରକୃତି, ଆମ୍ଭର ପ୍ରକ୍ରିୟା, ଆମ୍ଭର ପ୍ରଣୟ, ଆମ୍ଭର ଇଙ୍ଗିତ, ଆମ୍ଭର ଆଳାପ, ଆମ୍ଭର ଆତ୍ମୀୟତା ପ୍ରକାଶ କରି ପାରିଅଛି ବୋଲି ସେ ସବୁର ଆମ୍ଭ ପ୍ରାଣରେ ଏତେ ଅଧିକାର ।

## ୧୦–କାବ୍ୟର ଅଂଗ–ଭାଷା ଏବଂ ଭାବ । ପ୍ରାଚୀନ, କବି ମାନଙ୍କର ଭାଷାଆଡ଼େ ପ୍ରୟାସ ଅଧିକ:–

କାବ୍ୟର ଦୁଇଟି ଅଙ୍ଗ, ଭାଷା ଏବଂ ଭାବ । ତେଣୁ ଅନେକେ କବିଙ୍କୁ ଶବ୍ଦଶିଳ୍ପୀ ଏବଂ କାବ୍ୟକୁ ଶବ୍ଦଚିତ୍ର ବୋଲି କହନ୍ତି । ଉପେନ୍ଦ୍ରଭଞ୍ଜ ବା ତାଙ୍କ ଶ୍ରେଣୀର ପ୍ରାଚୀନ କବିମାନଙ୍କ କାବ୍ୟରେ ଭାବ ଅପେକ୍ଷା ପ୍ରାୟ ଭାଷାଆଡ଼େ ପ୍ରୟାସ ଅଧିକ । ଭାରତର ପ୍ରାଦେଶିକ ସାହିତ୍ୟ ତଥା ସଂସ୍କୃତ ସାହିତ୍ୟରେ ମଧ୍ୟ ଏକ ସମୟରେ ସାହିତ୍ୟାନୁଶୀଳନ ବୋଇଲେ ଭାଷାର କସରତହିଁ ଥିଲା । ବାସ୍ତବିକ କବି ଉପେନ୍ଦ୍ରଭଞ୍ଜଙ୍କର ଏ କ୍ଷେତ୍ରରେ ଶର୍ମିମତା ଏକପ୍ରକାର ଅନନ୍ୟସାଧାରଣ । ଅଧିକ କିଛି ପ୍ରମାଣ ନ ଦେଇ କେବଳ ବୈଦେହୀଶବିଳାସର 'ବ' ନିୟମ ପ୍ରତି ଦୃଷ୍ଟି ଦେଲେ ଆଶ୍ଚର୍ଯାନ୍ୱିତ ହେବାକୁ ହୁଏ ନାହିଁ କି ? ଆମ୍ଭେମାନେ ଆଦ୍ୟରୁ କହିଅଛୁ, ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ଦେଶରେ ଲୋକ-ସାଧାରଣଙ୍କ ଜୀବନଚିତ୍ର ତାଦୃଶ ଫୁଟି ନାହିଁ । ରାଜଭବନର ଚତୁଃପାର୍ଶ୍ୱ ପ୍ରଧାନତଃ ତାଙ୍କର ପର୍ଯବେକ୍ଷଣ କ୍ଷେତ୍ର । ସୁତରାଂ ତାଙ୍କ ଭାଷା ଲୋକସାଧାରଣଙ୍କ ଭାଷା ନୁହେ ଏବଂ କାବ୍ୟ ସାଧାରଣଙ୍କ ନିମନ୍ତେ ଉଦ୍ଦିଷ୍ଟ ନୁହେ । ତାଙ୍କ କାବ୍ୟମାନଙ୍କର ଅଧିକାଂଶ ଛାନ୍ଦ ଆଦ୍ୟରେ ସେ କେବଳ 'ପଣ୍ଡିତ', 'କୋବିଦ', 'ସୁଜ୍ଞ', 'ସୁଜାଣ' ମାନଙ୍କୁ ଶ୍ରୋତୃତ୍ୱରେ ଆମନ୍ତ୍ରଣ କରିଅଛନ୍ତି । କାବ୍ୟର ଭାଷା ସମ୍ବନ୍ଧେ ସେ ଲାବଣ୍ୟବତୀର ପ୍ରଥମରେ ଏହିପରି ସୂଚନା ଦେଇ ଅଛନ୍ତି:–

"ମୂର୍ତ୍ତିମନ୍ତ କରି ମୃଦୁଗୀତ ବିଗ୍ରହଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ ।
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥିଜନ ପ୍ରକରକୁ ଆନନ୍ଦ କରିବ ।
ଡ ର-ଳରେ ସାବର୍ଣ୍ଣ୍ୟ ଯା ବ୍ୟାକରଣେ ଲିହି
ସୁଚିତ୍ରେ କରଇ ଗୀତ ଏଣୁ ହିତ ପାଇଁ ।
ବୁଝାଇଲେ ଜଡ଼ ଜନ ଭାବକୁ ପାଇବ
ଖଳ ଖର ଚୂତାଙ୍କୁର ପ୍ରାୟ ନ ଗ୍ରାସିବ ।"

ଏହି ସୂଚନା ଭଞ୍ଜୀୟ କାବ୍ୟର ଭାଷା ବୁଝିବା ଲାଗି ପ୍ରଧାନ କଞ୍ଚି । କବି ବିଗ୍ରହ ଭାବି ଚିନ୍ତି ତାଙ୍କ ଗୀତକୁ 'ମୂର୍ତ୍ତିମନ୍ତ' କରିବାର ଚେଷ୍ଟା କରିଛନ୍ତି । ତେଣୁ ସେ କବିତା

ଗଢ଼ିଛନ୍ତି; ରାଇ ନାହାନ୍ତି । ତାଙ୍କ କବିତା ସ୍ରୋତପରି ବହି ଯାଇ ନାହିଁ । ସେ ସାଧାରଣତଃ ଆଡ଼ମ୍ବରପୂର୍ଣ୍ଣ ହୋଇ କବିତାସ୍ରୋତରେ ଭାସି ନାହାନ୍ତି । ପାଠକ ବା ଭାସିବ କାହିଁ ? ନାନା ଅଳଙ୍କାରରେ ନାୟିକାର ଆପାଦମସ୍ତକ ବେଶ ରଚନା କଲାପରି ମୂର୍ତ୍ତିମନ୍ତ ଗୀତର ଆଦ୍ୟରୁ ପ୍ରାନ୍ତପର୍ଯ୍ୟନ୍ତ ସର୍ବାଙ୍ଗ ଅଳଙ୍କାରଯୁକ୍ତ କରିବା ଲାଗି କବିଙ୍କର ଏକାନ୍ତ ଯତ୍ନ । ସେ ଯେପରି ସତର୍ପଣରେ କହି ଅଛନ୍ତି :—

"ରସ ବିଷୟ ଶ୍ରବଣ କରିବା
ବନ୍ଧ ପଟଳ ପଟଳୁ ଗ୍ରହିବା
ଦିବ୍ୟ ଅଳଙ୍କାରେ ମଣ୍ଡନ ହେବା
ଏଥି ପାଠକେ ବଶ ହେବେ ଅବା ।"

ଫଳରେ ତାଙ୍କର ସମୟ, ବନ୍ଧ ବିଚିତ୍ର ଅଳଙ୍କାରଯୁକ୍ତ ଗୀତ "ଗଜ ପ୍ରଗଲ୍ଭେ ମନ୍ଥର ଗମନରେ" ଚାଲିଅଛି । ଏ ମନ୍ଥର ଗତି କ୍ୱଚିତ୍ ବେଳେ ବେଳେ ସ୍ରୋତଗତିକୁ ଅନୁସରଣ କରିଛି । ଯେପରି ପୂର୍ବେ କୁହାଯାଇଅଛି:—

"କାନ୍ତି କେତକୀ ଦିନୁ ଦିନୁ ଗ୍ରସ୍ତ,
ରହିଁ ଆମ୍ଭେମାନେ ମନେ ବିଗ୍ରସ୍ତ ।
ପୁଷ୍ପ ସମୟ ହେଲଣି ନିକଟ
ସତ କହ ହୋଇଲା କି ପ୍ରକଟ ?
ଶୁଣି ସଖିଏ କହିଲା ଏସନ,
ନ କହିଲେ କହିଲଣି ବସନ ।
ବନେ ବିକଶିତ ହେଲେ ମାଧବୀ,
ମଧୁପେ କି ନ ଜାଣନ୍ତି ବାନ୍ଧବୀ ।
ପାଟ ସୂତ୍ରରେ ଗୁନ୍ଥିଣ ମୋତିକି,
କେମା ଲୁଚାଇ ଲେଉଟୁ ଜ୍ୟୋତିକି ।

୦ ୦ ୦ ୦

ସହଚରୀ ପରିହାସ ସରିତେ,
ମୃଦୁଭାଷୀ ଭସିଗଲା ତ୍ୱରିତେ ।"

କିନ୍ତୁ ଭଞ୍ଜ ପାଠକମାନେ ଏପରି ସରଳ ଗୀତ—ସରିତରେ ଭାସିବା ଲାଗି କାବ୍ୟରେ ବେଶି ଅବକାଶ ନାହିଁ ।

ଭଞ୍ଜୀୟ କବିତାର ଏ ଗଠନପଦ୍ଧତିର କାରଣ ପୂର୍ବେ ସୂଚିତ ହୋଇଅଛି । ଉପରେ ଉଦ୍ଧାର କରା ଯାଇଥିବା ଡ଼, ର, ଳ ର ସାବର୍ଣ୍ୟ ସୂଚନା, ପାରିଭାଷିକ ଧ୍ୱନୀ, କଥାର ଅବତାରଣା ପ୍ରଭୃତିରୁ ସ୍ପଷ୍ଟ ବୁଝା ଯାଉଅଛି, କେଉଁ ଶ୍ରେଣୀର ପାଠକସାଧାରଣଙ୍କୁ ସନ୍ତୋଷ ଦେବା ପାଇଁ ଉପେନ୍ଦ୍ର କାବ୍ୟ ଲେଖିଥିଲେ । 'ଜଡ଼' ଜନସାଧାରଣଙ୍କୁ କେବଳ ବୁଝାଇ ଦେଲେ ବୁଝିବେ ବୋଲି କବିଙ୍କର ଆଶା । ଉଦାହରଣ ସ୍ୱରୂପ, ନିମ୍ନଲିଖିତ ପଂକ୍ତିଚୟକୁ ସଂସ୍କୃତ ଅଭିଧାନ ବ୍ୟାକରଣାଭିଜ୍ଞ ବ୍ୟକ୍ତିଙ୍କ ବ୍ୟତୀତ ଆଉ କିଏ ବୁଝିବ ?

" ଗମ ଶବ୍ଦ ବହୁବଚନରେ କଲା ଜପ
ରମା ବିପରୀତ ଏ ସମୟେ ବିହି କୋପ ।
ଶରୀର ମଧ୍ୟ-କ୍ଷେପକୁ ଶରୀର ମଧ୍ୟକୁ
ଯୋଖି ପ୍ରହାରିଲା ବିଘ୍ନରିଣ ତା ବଧକୁ ।
ତାକୁ ସ୍ତୁତି କଲା ତୋ ନାରୀରେ ଇଚ୍ଛା ମୋର
ଭବି କି ହେଉନ୍ତୁ ପର ଏ ଅନ ପ୍ରକାର ।
ଜାଣୁ ନାହିଁ ଅଭିଧାନ ବିଧାନ ମାନଙ୍କୁ,
କହନ୍ତି ବିଧୁ ଚନ୍ଦନ ବିଷ୍ଣୁ କର୍ପୂରକୁ । "

## ୧୧-କାବ୍ୟରେ ଉପଧାର ଅସ୍ଥଳ-ଓଡ଼ିଆ କବିତାରେ ଉପଧା ମିଳନ ଅବଶ୍ୟ ପାଳନୀୟ ନୁହେଁ-

ଭଞ୍ଜ ଅଳଙ୍କାରାଦିରେ ଏତେ ଯତ୍ନ କରା ହୋଇଥିଲେ ମଧ୍ୟ ଆଜିକାଲି ସମୟର ନବରୁଚିର ପାଠକମାନେ ଏଥିରେ ଗୋଟିଏ କବିତାଂଶଗତ ଦୋଷ ଅଛି ବୋଲି ପୁଣି କହନ୍ତି । ଏକା ଭଞ୍ଜୀୟ କାବ୍ୟ ନୁହେ, ଓଡ଼ିଶାର ପ୍ରାଚୀନ କବିମାନଙ୍କ ଲେଖା ଦେଖିଲେ ଆଜିର ପାଠକ ଆଖିରେ ଉପଧାର ଅଭାବ ସର୍ବତ୍ର ପଡ଼େ । କାବ୍ୟରେ ଏହା ଗୋଟିଏ ବାସ୍ତବିକ ତ୍ରୁଟି ନା, ଏହା ଏ ଯୁଗର ବିଦେଶାଗତ ଅଭ୍ୟସ୍ତ ଧାରଣା; ଏକଥା ଆମ୍ଭର ପାଠକମାନେ କେବେ ବିଚାର କରନ୍ତି କି ? ଓଡ଼ିଆ ସାହିତ୍ୟର ସୃଷ୍ଟି କାଳରୁ ରାଧାନାଥଙ୍କ ଯୁଗ ପର୍ଯ୍ୟନ୍ତ କେବେ ଏ ପ୍ରଶ୍ନ ଉଠି ନ ଥିଲା ବା ଉଠିବା ଉଚିତ ନୁହେ ।

ଏ ପ୍ରସଙ୍ଗରେ ବିଶଦ ଆଲୋଚନାର ଏହା ସ୍ଥାନ ନୁହେ । କିନ୍ତୁ ପ୍ରାଚୀନ ଓଡ଼ିଆ କବିମାନଙ୍କ ମଧ୍ୟରେ ଭଞ୍ଜ ଶ୍ରେଷ୍ଠ ବୋଲି କଥିତ ହେଉଥିବା ସ୍ଥଳେ ତାଙ୍କ ଶ୍ରେଣୀ ବିରୁଦ୍ଧରେ ଏପରି ଯେ ଆପତ୍ତି ତାହାର ଯୌକ୍ତିକତା ଟିକିଏ ପରୀକ୍ଷା କରିବା ଅସଙ୍ଗତ ହେବ ନାହିଁ । ମିତ୍ରାକ୍ଷରରେ ଶେଷାକ୍ଷରର ସମସ୍ୱରତା ଏକାନ୍ତ ଆବଶ୍ୟକ । ସବୁ ଦେଶର ସାହିତ୍ୟରେ ଏହା ହୁଏତ ସ୍ୱୀକାର୍ଯ୍ୟ । ସଂସ୍କୃତ ପରି ଓଡ଼ିଆର ବିଶେଷତ୍ୱ ଯେ, ଏଥିରେ

ଶବ୍ଦମାନଙ୍କର ଶେଷ ଅକ୍ଷର ସ୍ୱରାନ୍ତ ଏବଂ ସ୍ୱରାନ୍ତ ହୋଇ ଉଚ୍ଚାରିତ ହୋଇଥାଏ । ସ୍ୱର ନିୟମର ସଙ୍ଗୀତ ହିସାବରେ ଉପଧା ମିଳନ ଅଧିକତର ସ୍ୱରମାଧୁର୍ଯ୍ୟ ସମ୍ପାଦନ ଲାଗି ଗୋଟିଏ ଅନୁପ୍ରାସାଦି ପରି ଅଳଙ୍କାର ହୋଇପାରେ; କିନ୍ତୁ ଅପରିହାର୍ଯ୍ୟ ବା ଅବଶ୍ୟ ପାଳନୀୟ ବିଧି ନୁହେ । ଛନ୍ଦ ନିୟମରେ ସଂସ୍କୃତର ବର୍ଣ୍ଣବିନ୍ୟାସ ଶୃଙ୍ଖଳା ଏପରି ପରିପାଟୀର ସହିତ ବିଧିବଦ୍ଧ ହୋଇଅଛି ଯେ, କବିତାର ସ୍ୱରମାଧୁର୍ଯ୍ୟ ବା ସଙ୍ଗୀତ ନିମନ୍ତେ ମିତ୍ରାକ୍ଷରର ତେତେ ପ୍ରୟୋଜନ ହୁଏ ନାହିଁ । ସେଥିରେ ଅତି ଅଳ୍ପ ମିତ୍ରାକ୍ଷର କବିତା ଅଛି । ତଥାପି ସେହି ଅଳ୍ପରେ ମଧ୍ୟ ସଂସ୍କୃତ ଶବ୍ଦକୋଷର ବିପୁଳତା ଓ ବୈଭବ ସତ୍ତ୍ୱେ ଅସାମାନ୍ୟ ଶକ୍ତିଶାଳୀ କବିମାନଙ୍କ ଗୀତରେ ଉପଧାମିଳନ ପ୍ରତି ଏ ଯୁଗର ପ୍ରଣିଧାନ ଦେଖାଯାଏ ନାହିଁ । ନିଜେ ଶଙ୍କର ତାଙ୍କ ସୁଲଳିତ ଗୀତ ମୋହମୁଦ୍ଗରରେ ଏ ନିୟମ ରକ୍ଷି ନାହାନ୍ତି । ନିମ୍ନୋଦ୍ଧୃତ ପଂକ୍ତି ଭଳି ଅନେକ ପଦ୍ୟ ସଂସ୍କୃତ ମିତ୍ରାକ୍ଷରରେ ଦେଖିବାକୁ ମିଳେ ।

ଯଲ୍ଲଭସେ ନିଜ କର୍ମୋପାତ୍ତଂ
ବିତ୍ତଂ ତେନ ବିନୋଦୟ ଚିତ୍ତଂ
ଅର୍ଥ ମନର୍ଥଂ ଭାବୟ ନିତ୍ୟଂ
ନାସ୍ତି ତତଃ ସୁଖଲେଶଃ ସତ୍ୟଂ
କ୍ଷଣମିହ ସଜ୍ଜନ–ସଙ୍ଗତିରେକା
ଭବତି ଭବାର୍ଣ୍ଣବ–ତରଣେ ନୌକା
କରଧୃତ କଂପିତ ଶୋଭିତ ଦଣ୍ଡଂ
ତଦପି ନ ମୁଞ୍ଚତ୍ୟାଶାଭାଣ୍ଡଂ ।

## ୧୨. ଇଂରେଜି ଓ ବଂଗଳାର ଉପଧା ରୀତି ବିଚାରଃ–

ଟିକିଏ ଭାବି ଦେଖିଲେ ଦେଖାଯାଏ ଯେ ଇଂରେଜି ଛନ୍ଦନିୟମରୁ ଏ ଉପଧାରୀତି ଏ ଦେଶର ସାହିତ୍ୟ ଜଗତରେ ସ୍ଥାନ ପାଇଅଛି । କିନ୍ତୁ ମନେ ରଖିବାକୁ ହେବ, ଇଂରେଜିର ଶେଷ ବର୍ଣ୍ଣ ପ୍ରାୟ ହଳନ୍ତ । ଗେଟ୍(Gate) ସଙ୍ଗେ ରେଟ୍ (Rate) ବା ମେଟ୍ (Mate) ନ ପଡ଼ିଲେ ମିତ୍ରାକ୍ଷର ରହିବ ନାହିଁ । କାରଣ, ଶେଷସ୍ୱର ଉଭୟ ପଦରେ ମିଳିବା ମିତ୍ରାକ୍ଷରର ଗୋଟିଏ ଅପରିହାର୍ଯ୍ୟ ଉପାଦାନ । ସେହି ଶେଷ ସ୍ୱର ସଙ୍ଗେ ଗୋଟିଏ ସମାନ ବ୍ୟଞ୍ଜନର ଉଚ୍ଚାରଣ ମିଶିବା ଦରକାର ହୋଇପାରେ । କିନ୍ତୁ ଏ ଦୁଇଟି ଗଲା ପରେ ପୁଣି ଆଉ ଗୋଟିଏ ସ୍ୱର ସମାନ କରିବାରେ କି ଆବଶ୍ୟକତା ଅଛି ? ଇଂରେଜି ପଦ୍ୟ ମଧ୍ୟ ଏ ଆବଶ୍ୟକତା ସ୍ୱୀକାର କରେ ନାହିଁ । ବରଂ ଇଂରେଜିରେ ଶେଷବର୍ଣ୍ଣ ସ୍ୱର ହେଲେ ସେହି ସ୍ୱରଟିର ମିଳନରେ ହିଁ ମିତ୍ରାକ୍ଷର ହୁଏ ।

ଇଂରେଜିରେ ମି (Me) ସଙ୍ଗେ ହି (He), ଦେ (They) ସଙ୍ଗେ ହେ (Hay) କ୍ୱା (Quay) ସଙ୍ଗେ ଗ୍ଲୀ (Glee) ପଡ଼ି ମିତ୍ରାକ୍ଷର ହୁଏ ।

ଇଂରେଜି ଭାଷାରେ ଯେଉଁ ନିୟମ ବଙ୍ଗଳାରେ ଅତ୍ୟଧିକ ପରିମାଣରେ ଏ କ୍ଷେତ୍ରରେ ସେହି ନିୟମ ଚଳିବ । କାରଣ, ବଙ୍ଗଳାରେ ଶବ୍ଦ ସବୁର ଶେଷ ବର୍ଣ୍ଣ ପ୍ରାୟ ହଳନ୍ତ ହୋଇ ଉଚ୍ଚାରିତ ହୋଇଥାଏ । ସେଥିପାଇଁ ବଙ୍ଗଳାରେ ସେ ଅନୁକରଣ ସହଜସାଧ୍ୟ ।

## ୧୩. ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ:-

ଓଡ଼ିଆ ଭାଷାରେ ପୂର୍ବସୂରିମାନଙ୍କ କୃତିର ପ୍ରାକୃତିକ ବିକାଶରେ, କିମ୍ବା ଭାଷାର ପ୍ରକୃତିଗତ ସ୍ୱର ନିୟମରେ, କାହିଁରେ ଏ ଦାସତ୍ୱର ସମର୍ଥନ ନାହିଁ । ଶବ୍ଦ ଓ ବର୍ଣ୍ଣ ବିନ୍ୟାସର ଆଳଙ୍କାରିକ ସୌନ୍ଦର୍ଯ୍ୟହିଁ କେବଳ ଏକ ପ୍ରକାର ଯେଉଁ ଭଞ୍ଜାଦି କବି-ମାନଙ୍କର କବିତାର ମୁଖ୍ୟ ବିଗ୍ରହ, ସେମାନେ ଉପଧା ମିଳନକୁ ଯଦି ମିତ୍ରାକ୍ଷରର ଆବଶ୍ୟ-କୀୟ ଉପାଦାନ ବୋଲି ମନେକରି ଥାନ୍ତେ, ତେବେ ଏ କ୍ଷେତ୍ରରେ ସେମାନଙ୍କୁ ଯେ ବିଶେଷ ଶ୍ରମ କରିବାକୁ ପଡ଼ି ନ ଥାନ୍ତା ଏହା ବୁଝାଇବା ନିଷ୍ପ୍ରୟୋଜନ । କିନ୍ତୁ ସମସ୍ତ ଅଳଙ୍କାରର ପାଣ୍ଡିତ୍ୟ ଓ ସଂସ୍କୃତ ଭାଷା ପରିପାଟୀ ମଧ୍ୟରେ ଉପେନ୍ଦ୍ରଭଞ୍ଜ ଯେ ଓଡ଼ିଆ କବି, ପାଠକ ତାହା ପଦେ ପଦେ ଅନୁଭବ କରନ୍ତି । ସଂସ୍କୃତ ଶବ୍ଦମାନଙ୍କ ସହିତ ଓଡ଼ିଆ ଶବ୍ଦମାନଙ୍କର ଏପରି ବିଚକ୍ଷଣ ଭାବରେ ସମାବେଶ ହୋଇଅଛି ଯେ ଟିକିଏ ମାତ୍ର 'ମହି' ବା 'ମୋରଣ' ସମସ୍ତ ଦୁଧକୁ ଦହିରେ ପରିଣତ କଲାପରି ପାଦ ବା ବାକ୍ୟ ମଧ୍ୟରେ ବେଳେ ବେଳେ ଗୋଟିଏ ଗୋଟିଏ ଓଡ଼ିଆ ଶବ୍ଦ ବାକ୍ୟ ମଧ୍ୟସ୍ଥ ସମସ୍ତ ସଂସ୍କୃତକୁ ଓଡ଼ିଆର ଶକ୍ତିରେ ପ୍ରଭାବିତ କରୁଅଛି ।

> "କି କଲ ବୋଲି ଲଗିଲ ନ ଲଗିଲ ଚେତୁଥାଇ ସେ ନବୀନା"
> "ନାଥ ହାତ ଧରି ଘଟୁଥାଇ ନେବେ 'ତୋତେ" ।
> "ଦରହାସି ହେବୁ ଦର କ୍ଷୁଧାତୁର ପରି" ।
> "କୋଳରେ ହାର କରୁ ବାହାର ଏବେ କାହାର ହେଲି" ।
> "ଦଣ୍ଡି ଯାହାକୁ ମଣ୍ଡି ତାହାକୁ ମୃଦୁ ଦେହାକୁ ଭାଷେ" ।
> "ଖଞ୍ଜି ଅଛି ଗୋଟି ଚମ୍ପା ଧଇର୍ଯ କଂପା" ।
> "ଚରଣକେ ବଳା ପଟେ ନାଦ ପ୍ରକଟେ" ।
> ଅବଳା ବଳା ଫିଟିଗଲେ ଖଞ୍ଜିଲେ ରଞ୍ଜିବା ବିଗୁରୁ ମନ" ।

ଏହିପରି ଉଦାହରଣ ଲାବଣ୍ୟବତୀରୁ ଭୂରି ଭୂରି ଉଦ୍ଧାର କରା ଯାଇପାରେ ।

## ୧୪. ଲାବଣ୍ୟବତୀରେ ଓଡ଼ିଆତ୍ୱ-ଚିନ୍ତାରେ ଓ ଭାଷାରେ:-

ଲାବଣ୍ୟବତୀର ଗୋଟିଏ ବିଶେଷତ୍ୱ ଯେ, କବି ଯେଉଁଠାରେ ସୁନ୍ଦର ଚିତ୍ର ପ୍ରକଟ କରିବାକୁ ଚେଷ୍ଟା କରିଛନ୍ତି, ସେଠାରେ ତାହାକୁ ବିଶୁଦ୍ଧ ଓଡ଼ିଆ ଶବ୍ଦର ଶକ୍ତିରେ ଉଦ୍ଦୀପିତ କରି ଅଛନ୍ତି । ଏଠାରେ ଗୋଟିଏ ମାତ୍ର ଉଦାହରଣ ଦେଲେ ଯଥେଷ୍ଟ ହେବ ।

"ସେହି ଦିନେ ପ୍ରଥମେ କଥା ଶୁଣା
ଦିନେ ଶାରୀ ପଢ଼ାଉ ସୁଲକ୍ଷଣା ।
ଜାଣି ଲୁଚି ମୁଁ ଶୁଣୁଥିଲି ପଛେ
ଶାରୀ ପଢ଼ିଦେଲା ଯେ କାନ୍ତ ପଛେ ।
ସଲଜ୍ଜିତେ ଜିତେନ୍ଦ୍ରିୟ ମୋହିନୀ
ଦେଇ ଗ୍ରନ୍ଥ ଚିବୁକରେ ତର୍ଜନୀ ।
ନାସାପୁଡ଼ାକୁ ଫୁଲାଇଲା କରି
ଅଧୋମୁଖେ ରହିଲା କୃଶୋଦରୀ ।
ନବ ସପତ ବୟସୀକି ମୁହିଁ
ମୋହ ଶପଥ ପକାଇଲି ତହିଁ ।
ମଥା ଟେକି କଥା କହ ବୋଲନ୍ତେ
କିସ କହିବି କହିଦିଅ ମୋତେ" ।

କବିଙ୍କର ସ୍ୱାଭାବିକ ଚିତ୍ରଣରେ ଭାଷାର ଏ ସବୁ ନୈସର୍ଗିକତା ଦେଖି ଲେ ମନେ ହୁଏ ସରଳ ସୁବୋଧ୍ୟ ଓଡ଼ିଆରେ ଚିନ୍ତାକରିବା କବିଙ୍କର ପ୍ରକୃତି । କିନ୍ତୁ ସେ ଯେଉଁ 'କୋବିଦ' ପାଠକମାନଙ୍କ ଉଦ୍ଦେଶ୍ୟରେ କାବ୍ୟ ଲେଖୁଥିଲେ ସେମାନଙ୍କର ମର୍ଯାଦା ଓ ପାଣ୍ଡିତ୍ୟର ଉପଯୋଗୀ କରିବା ନିମନ୍ତେ ବାଧ୍ୟହୋଇ କବି ତାକୁ " ନାରିକେଳ ଫଳର ସଦୃଶ " କରି ଅଛନ୍ତି ।

## ୧୫-ଭଞ୍ଜୀୟ କବିତାରେ ଭାଷା ଶିକ୍ଷାଲାଗି ବିପୁଳ ଉପାଦାନ ଅଛି:-

ଭଞ୍ଜୀୟ କାବ୍ୟର ଭାବରେ ଯେପରି, ଭାଷାରେ ମଧ୍ୟ ଚତୋଽଧିକ ଛଟା ଦେଖିବାକୁ ମିଳେ । ଉପମା, ଅନୁପ୍ରାସ, ଉତ୍ପ୍ରେକ୍ଷା, ଶ୍ଳେଷ, ଧ୍ୱନି ପ୍ରଭୃତି ଅଳଂକାର ଶାସ୍ତ୍ରର ଭିନ୍ନ ଭିନ୍ନ ବିଷୟର ଉଦାହରଣ ଲାଗି ଭଞ୍ଜୀୟ କବିତାରେ ଅସରନ୍ତି ଉପାଦାନ ରହିଅଛି । ଯଥାର୍ଥରେ କବି ଭଞ୍ଜଙ୍କ ମସ୍ତିସ୍କରେ ଯେତେ ଅଳଙ୍କାର ଗଚ୍ଛିତ ଥିଲା ବା ଗଠିତ ହେଉଥିଲା, ଘୁମୁସର ରାଜପରିବାରର ଭଣ୍ଡାରରେ ସେତେ ଅଳଙ୍କାର ଥିଲା କି

ନାହିଁ ସନ୍ଦେହ । ଗତାଗତର ଅଳଙ୍କାର ସବୁ ସେ ଲାବଣ୍ୟବତୀରେ ଗୋଟିଏ ଛାନ୍ଦରେ ମାତ୍ର ପିନ୍ଧାଇ ଦେଇ ଅଛନ୍ତି । କିନ୍ତୁ ତାଙ୍କ ମନଗଢା ଅଳଙ୍କାର ଗୋଟିଏ ଦୁଇଟି ବା ଦଶଟି ଛାନ୍ଦରେ ଶେଷ ହୋଇନାହିଁ । କାବ୍ୟର ଆଦ୍ୟ ପ୍ରାନ୍ତ ଏହା କାହିଁ ମହୀ ବର୍ଣନାରେ, କାହିଁ ପ୍ରଭାତ ବର୍ଣ୍ଣନାରେ, କାହିଁ ରୂପ ବର୍ଣନାରେ, କାହିଁ ବା ମାଳ ଯମକରେ, କାହିଁ ଗୋମୂତ୍ର ଛନ୍ଦରେ, କାହିଁ ଅନ୍ତର୍ଲିପି ବହିର୍ଲିପିରେ ଫୁଟି ଦିଶୁଅଛି । ଏ ସବୁର ଉଦାହରଣ ଦେବା ନିଷ୍ପ୍ରୟୋଜନ । ଏ ବିଷୟ ପ୍ରତି ଦୃଷ୍ଟି ରଖି ଭଞ୍ଜୀୟ କବିତା ପଢ଼ିଲାବେଳେ ସଂସ୍କୃତ ଓ ଓଡ଼ିଆ ଶବ୍ଦକୋଷରେ ତାଙ୍କର କି ଅସାମାନ୍ୟ ଅଧିକାର ଥିଲା, ତାହା ସହଜରେ ଜଣାପଡ଼େ । ସଂସ୍କୃତ ଶବ୍ଦାବଳୀ ଭଞ୍ଜୀୟ ଲେଖନୀର ଦାସାନୁଦାସ ରୂପେ କିପରି ଓଡ଼ିଆ ସାହିତ୍ୟର ଶୋଭା ଓ ଶ୍ରୁତି ମାଧୁର୍ଯ୍ୟ ସମ୍ପାଦନ କରିଅଛି, ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଏ ଯୁଗର ଲେଖକ ବା ପାଠକମାନଙ୍କ ଲାଗି ଭଞ୍ଜୀୟ କବିତାରେ ଆଉ ଯଦି କିଛି ନଥାଏ, ଅନ୍ତତଃ ଭାଷା ଶିକ୍ଷା ଲାଗି ଏଥିରେ ବିପୁଳ ଉପାଦାନ ରହିଅଛି ଓ ବହୁକାଳ ରହିବ ।

କିନ୍ତୁ ସଂସ୍କୃତରେ ଏତେ ଆଧିପତ୍ୟ ସତ୍ତ୍ୱେ ସେ ଓଡ଼ିଆ ଭାଷାକୁ ସଂପୂର୍ଣରୂପେ ସଂସ୍କୃତର ଅନୁଚରୀ କରି ନାହାନ୍ତି । ଓଡ଼ିଆ ଭାଷାର ସ୍ୱତନ୍ତ୍ର ଶକ୍ତି ସେ ବୁଝି ଅଛନ୍ତି ଏବଂ ସଂସ୍କୃତ ସଙ୍ଗେ ତାହାର ସମ୍ବନ୍ଧର ପ୍ରାକୃତିକ ସୀମା ଠିକ୍ ରଖି ଅଛନ୍ତି । ଓଡ଼ିଆରେ ହ୍ରସ୍ୱ, ଦୀର୍ଘ, ଦନ୍ତ୍ୟ, ତାଲବ୍ୟ, ମୂର୍ଦ୍ଧନ୍ୟ, ଅନ୍ତଃସ୍ଥ, ବର୍ଗ୍ୟ ପ୍ରଭୃତି ବର୍ଣଭେଦରେ ପାର୍ଥକ୍ୟ ନାହିଁ । ତାହା ସେ ରଖି ନାହାନ୍ତି । କିନ୍ତୁ ସଂସ୍କୃତରେ ଏଗୁଡ଼ିକ ହୁଏତ ରକ୍ଷଣୀୟ । ଆଜିକାଲି ମଧ୍ୟ ଲୋକେ ଶୁଦ୍ଧକରି କହନ୍ତି, 'ବିବାହ କଲ' । ଏମାନଙ୍କ ମତରେ 'ବିଭାହେଲ' କଥାଟି ବ୍ୟାକରଣ ହିସାବରେ ଅସଂଗତ । କିନ୍ତୁ ଓଡ଼ିଆ ଯେ ସଂସ୍କୃତ ଭାଷା, ରୀତି ଓ ସଂସ୍କୃତ ବ୍ୟାକରଣରେ ପଦେ ପଦେ ବନ୍ଧା ହେବାର ନୁହେ, ଉପେନ୍ଦ୍ର ଭଞ୍ଜ ସେ କଥା ବୁଝିଥିଲେ । ଭାଷାର କିପରି ସ୍ୱଚ୍ଛନ୍ଦ ଓ ପ୍ରାକୃତ ବ୍ୟବହାର ଉପେନ୍ଦ୍ର ଭଞ୍ଜ କରି ଅଛନ୍ତି ଦେଖନ୍ତୁ ।

'ହସିଲା ହସିଲା ହୋଇ ସଜନୀଏ ବୋଲି'

'ଏମନ୍ତରେ ଗଲା ଚହିଁ କେତେ ସମ୍ବତ୍ସର'

'ତପ ତା ଅକଥନୀୟ ବରନାରୀ ଶୁଭେ'

'ଥରିଲା ହେଲା ଜାନୁ'

'କେକୀ ଷଣ୍ଡ ମତ (ପରି)' ।

'ମାନିନୀ ମାନଦମ୍ଭ କୁମ୍ଭ ଘଟି' ।

'ଏକାକେ କୃଗଗ ଦିଅଇ ନାଗଗ'

'ଶୁଣି ନଗ୍ରଜନେ ଭଜନ୍ତି' ।

'ଲେଖିନେଲେ ଅସି ମନ୍ତ୍ରୀ ସନ୍ନିଧକୁ'

'ଥିଲ ଯା ବାକୀ ବରଚନ' ।

'ନୂତନେ, ଝାଳିକରି ଶୂନ୍ୟମାନଙ୍କୁ'

'କି କରାଦିଅଇ କେହୁ ହିଙ୍ଗୁଳାଇ '

'କେ ବନ୍ଧାଇ ଆନ କୋଷକୁ' ।

'ଯଥାକଥା କରି ତାକୁ ଜଣାଣ, ଲେଖବା'

ଇତ୍ୟାଦି ଭଷାର ସ୍ୱାତନ୍ତ୍ର୍ୟ ଶକ୍ତି ଓ ଗଠନ ପ୍ରବଣତାର ଦୃଷ୍ଟାନ୍ତ ଦେଇ ବସିଲେ ବହୁତ ହେବ ।



# ଲାବଣ୍ୟବତୀ

## ପ୍ରଥମ ଛାନ୍ଦ

ରାଗ ନଳିନୀ ଗୌଡ଼ (କଳଶା)

### କୁମାର ଜନ୍ମ

ଜୟ ଜୟ ଜୟ ରାମ ଜନକ ସୁଖଦ,
ଭୀମ ହରଷ ଦାନରେ ସଦା ବିଶାରଦ ହେ । ୧ ।
ଚନ୍ଦ୍ରହାସ ଶୋଭକର ସମସ୍ତ କାଳର,
ଲକ୍ଷଣବନ୍ତ ଅଲକ୍ଷ ମୁଖ ମନୋହର ଯେ । ୨ ।

---

୧–ଜୟ ଜୟ ମଙ୍ଗଳ ସୂଚକ । ଏହି ନମସ୍କ୍ରିୟାକୁ ଟଣାଟଣି କରି ରାମ, ପର୍ଶୁରାମ ଓ ବଳରାମ ଏହିପରି ତିନି ପକ୍ଷରେ ଲୋକେ ଅର୍ଥ କରିଥାନ୍ତି । ମାତ୍ର ଉପେନ୍ଦ୍ର ଭଞ୍ଜ ସର୍ବତୋଭାବେ ରାମ ଭକ୍ତ ଥିବାରୁ ରାମ ପକ୍ଷର ଅର୍ଥ ଏଠାରେ ସୁଗମ ଓ ସୁଖକର । ଜନକ ସୁଖଦ– ସୀତାଙ୍କ ପିତା ଜନକଙ୍କର ସୁଖଦାତା କିମ୍ବା ପିତା ଦଶରଥଙ୍କର ସତ୍ୟ ପାଳନ କରିଥିବାରୁ ତାଙ୍କର ସ୍ୱର୍ଗ ସୁଖଦାତା । (ପର୍ଶୁରାମ ପକ୍ଷରେ) ପିତାଙ୍କ କଥାରେ ନିଜର ମାତା ରେଣୁକାଙ୍କୁ ହତ୍ୟା କରି ଜନକ ଯମଦଗ୍ନିଙ୍କର ସୁଖଦ ଇତ୍ୟାଦି ଅର୍ଥ କରାଯାଇପାରେ । ଭୀମ–ଅର୍ଥାତ୍ ୨ୟ ପାଣ୍ଡବଙ୍କ ହର୍ଷ ଦାନରେ ତତ୍ପର । ଅର୍ଥାତ୍ ନିଷ୍ଠାବାନ (କୃଷ୍ଣାବତାରରେ) । ଏ ଅର୍ଥ ସୁଗମ ନହେଲେ ମଧ୍ୟ ଗ୍ରାହ୍ୟ । ଭୀମ ଅର୍ଥରେ ମହାଦେବ କିମ୍ବା ଭୀଷଣ ପ୍ରଭୃତି ବୁଝିଲେ ଅର୍ଥ ଆହୁରି କ୍ଲିଷ୍ଟ ହେବ । ତେବେ ଭୀମର ଅର୍ଥ ରାକ୍ଷସ ଓ ଦାନର ଅର୍ଥ ଛେଦନ କଲେ ଚଳିଯିବ ।

୨–ଚନ୍ଦ୍ରହାସ–ଖଡ୍‌ଗ କିମ୍ବା ଚନ୍ଦ୍ରପରି ହାସ । ସେଥିରେ ସର୍ବଦା ଶୋଭନ୍ୱିତ । ଲକ୍ଷଣବନ୍ତ–ଲକ୍ଷ୍ମଣ ସେବିତ କିମ୍ବା ଚକ୍ରବର୍ତ୍ତୀ ଲକ୍ଷଣ ଯୁକ୍ତ । ମନୋହର ବା ସୁନ୍ଦର ମୁଖ । ଅଲକ୍ଷ ବା ଅନୁପମ ।

କବି ଭରତୀକୁ ଅଗୋଚର ଛବି ଯାର,
ସୁମନା ବୃନ୍ଦ ବନ୍ଦିତ[୧] ଯେଣୁ ନିରନ୍ତର ଯେ । ୩ ।
ମହାଶୟ ବଳରିପୁ ପରି କୋପକର[୨],
ଛତ୍ରଭଙ୍ଗ କୃତରୁ କାତର ଅରିପୁର ହେ । ୪ ।
ସହସ୍ର କର ଉନ୍ନତିହର ତେଜବାନ[୩],
ହରି ପକ୍ଷ ସଦାନନ୍ଦ ତୋଷ ବିବର୍ଦ୍ଧନ ହେ । ୫ ।
ସେ ପ୍ରଭୁ କଞ୍ଜ ଚରଣେ କରି ତତପର[୪],
ଭଞ୍ଜ ବିରବର କବି ମାନସ ଭ୍ରମର ହେ । । ୬ ।
ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିରଚଇ,
ଏଣକରି ଥିବ ଅଳଙ୍କାରେ ଯୁକ୍ତ ହୋଇ ଯେ । ୭ ।

---

ପାଠାନ୍ତର— (୧) ବନ୍ଦନ, (୨) ତାପକର, (୩) ଉନ୍ନତହର ତେଜୋବାନ, (୪) ହେ ପ୍ରଭୁ ତବ ପଦାବ୍ଜେ କର ତତପର ।

---

୩—କବି (ବାଲ୍ମୀକୀ) ତାଙ୍କର ଭରତୀ (ବଚନ)କୁ ଅଗୋଚର (ଅଜଣା) ଛବି (ଚିତ୍ର ବା ଗୁଣାବଳୀ) ଯାହାର ଏଣୁ (ଅତଏବ) ସୁମନା ବୃନ୍ଦ (ଦେବତାମାନେ) ତାଙ୍କ ଦ୍ୱାରା ନିରନ୍ତର (ସର୍ବଦା) ବନ୍ଦିତ (ପୂଜିତ) ।

୪—ମହାଶୟ—ଉଦାରଚେତା ; ବଳରିପୁ—ବଳବନ୍ତ ଶତ୍ରୁ ପରି କୋପକର ଅର୍ଥାତ୍ କୋପାନ୍ୱିତ ହୋଇ ଛତ୍ରଭଙ୍ଗ କରିଦେବାରୁ ଅରିପୁର (ଲଙ୍କାପୁରର) ରାକ୍ଷସମାନେ କାତର ହେଲେ ।

୫—ସହସ୍ରକର (ସୂର୍ଯ୍ୟ) ତାଙ୍କର ଉନ୍ନତିହର (ତେଜକୁ ହ୍ରସ୍ୱକରି) ତେଜବାନ୍ । ହରି (ମାକଡ଼)ଙ୍କ ପକ୍ଷ (ସଙ୍ଗୀ) ସେହିମାନଙ୍କର ସର୍ବଦା ଆନନ୍ଦ ଓ ତୋଷ ବିବର୍ଦ୍ଧନ (ବଢାଇବାରେ ପଟୁ) ; ସହସ୍ର କର—ସହସ୍ରାର୍ଜ୍ଜୁନ ଓ ବାଣାସୁର—ଅର୍ଥକରି ଏବଂ ହରି ଅର୍ଥରେ ବିଷ୍ଣୁ ଓ କୃଷ୍ଣ ପ୍ରଭୃତି ଅର୍ଥମାନ କରି ପର୍ଶୁରାମ ଓ ବଳରାମ ପ୍ରଭୃତି ଅର୍ଥ ବାହାର କରଯାଇପାରେ ।

୬।୭—ସେ ପ୍ରଭୁର କଞ୍ଜ ଚରଣ (ପଦ୍ମପାଦ)ରେ ଭଞ୍ଜ ବୀରବର କବି ନିଜର ମାନସ ଭ୍ରମର (ମନରୂପ ଭ୍ରମର)କୁ ତତପର (ନିବିଷ୍ଟକରି) ମୂର୍ତ୍ତିମନ୍ତ (ରୂପଯୁକ୍ତ) କରି ମୃଦୁ ଗୀତ କୋମଳ କବିତା ବିରଚଇ। ଏଣୁକରି (ମୂର୍ତ୍ତିମନ୍ତ ହେବାରୁ) ଅଳଙ୍କାର ଯୁକ୍ତ ହୋଇଥିବ । ମୂର୍ତ୍ତି ଓ କବିତା ଦୁଇର ଲକ୍ଷରେ ଅଳଙ୍କାର ଶବ୍ଦର ଶ୍ଳେଷାର୍ଥ ବୁଝିବାକୁ ହେବ ଏବଂ ଏହି ଦୁଇ ଅର୍ଥ ଶ୍ଳେଷ ପର ପଦରେ ରହିଛି ।

ପଦ ଶ୍ରବଣ ଧ୍ୱନିରେ ଶ୍ରବଣ[୫] ମୋହିବ,
ଅର୍ଥିଜନ ପ୍ରକରକୁ ଆନନ୍ଦ କରିବ ହେ । ୮ ।
ଡ଼, ର, ଳ, ଲ, ସାବର୍ଣ୍ଣ୍ୟ ଯା ବ୍ୟାକରଣେ କହି,
ସୂଚିରେ କରୁଛି ଏହି ଗୀତ ହିତ ପାଇଁ ଯେ [୬] । ୯ ।
ବୁଝାଇଲେ ଜଡ଼ ଜନ ଭବକୁ ପାଇବ,
ଖଳ-ଖର ଚୂତାଙ୍କୁର ପ୍ରାୟେ ନ ଗ୍ରାସିବ ହେ । ୧୦ ।
ମଧୁମକ୍ଷି ଉଚ୍ଛିଷ୍ଟ ଅମୃତାଦର ସୁରେ,
କରନ୍ତି ଯେମନ୍ତ ସାଧୁଜନେ ସେ ପ୍ରକାରେ ହେ । ୧୧ ।
ଦୋଷ ଥିଲେ ରସବଶୁଁ କରିବେ ଆଦର,
ଏଣୁ ଅତିଶୟ ସଂଶୟକୁ କରି ଦୂର ହେ । ୧୨ ।
ଏବେ ଚିତ୍ତ ରଞ୍ଜନ ଚରିତ ସୁମଧୁର, [୭]
ଶ୍ରୁତି ବଦନରେ ପାନ-କର ବୁଦ୍ଧ ନର ହେ । ୧୩ ।

---

ପାଠାନ୍ତର—(୫) ମାନସ । (୬) ସୂଚନ୍ତେ କରଇ ଗୀତ ଏଣୁ ହିତ ପାଇଁ ।
(୭) ଏ ବଚନ ଚରିତ୍ର ରଚନ୍ତ ସୁମଧୁର ।

---

୮—ପଦ (ଅଳଙ୍କାରଯୁକ୍ତ ମୂର୍ତ୍ତିର ପାଦ ଓ କବିତାର ଚରଣ) ତାହାର ସରଳ ଧ୍ୱନିରେ (ସୁଶ୍ରାବ୍ୟତାରେ) ସେ ଗୀତ ଶ୍ରବଣ ମୋହିବ (ଆନନ୍ଦିତ କରିବ) । ଅର୍ଥୀଜନ (ଅଭିଳାଷୀ ଲୋକ, କବିତାର ଅର୍ଥଗ୍ରାହୀ ଲୋକ) ପ୍ରକାର (ସମୂହ)କୁ ଆନନ୍ଦ କରିବ ।

୯—ଡ଼, ର, ଳ, ଲ,—ଏ ସବୁର ଏକ ସ୍ଥାନରେ ଅପରର ବ୍ୟବହାର କରାଯିବ । ବ୍ୟାକରଣରେ ଏମାନେ ସବର୍ଣ୍ଣ (ସମାନବର୍ଣ୍ଣ) ।

୧୦—ବୁଝାଇଲେ ଜଡ଼ (ଅଜ୍ଞ) ଜନ ଭବକୁ ପାଇବ—ଅର୍ଥ-ଗ୍ରାହୀ ପଣ୍ଡିତ ନିଜେ ବୁଝିବ ; ଜଡ଼କୁ ବୁଝାଇଲେ ସେ ନିଜେ ବୁଝିବ ; କିନ୍ତୁ ଖଳ (ଦୁଷ୍ଟ) ଲୋକ ଖର (ଗଧ) ଚୂତାଙ୍କୁର ( ଆମ୍ବ ବଉଳ ) ନ ଖାଇଲା ପରି ଏହା ନ ଗ୍ରାସିବ [ଗ୍ରହଣ ନ କରିବ] ।

୧୧—ଅଥଚ ସାଧୁଜନମାନେ ମଧୁମାଛି ଉଚ୍ଛିଷ୍ଟେ [ମହୁମାଛି ଅଇଁଠା ମହୁରେ] ସୁରେ [ଦେବତାନେ] ଅମୃତ ଆଦର କଲପରି ଏଥିରେ ଆଦର କରିବେ ।

୧୨।୧୩—ଦୋଷ ଥିଲେହେଁ ରସବଶୁଁ [ସରସତା ହେତୁରୁ] ଆଦର କରିବେ । ଏଣୁ ସଂଶୟକୁ ଦୂର କରି ଏ ବିଚିତ୍ର ଚରିତ [କାବ୍ୟ] ରଚିତ ହେଲା । ହେ ବୁଦ୍ଧ ନର [ବୁଦ୍ଧିଯୁକ୍ତ ଲୋକ] ଶ୍ରୁତି ବଦନରେ [କାନ ରୂପ ମୁହଁରେ] ଏହାକୁ ପାନ କର ।

ଦିନେ କଇଳାଶେ ବସି ଏକାନ୍ତେ ଗଉରୀ,
ପଶା ରଙ୍ଗେ ରସିବାକୁ ସ୍ୱସଙ୍ଗେ ବିଗ୍ଭରି ହେ । ୧୪ ।
ଏକ କନ୍ୟାଏ ଅଭ୍ରୁତେ ମନୁ ଜାତ ହେଉ,
ସୁଷମରେ ସମରେ ତ୍ରିଲୋକରେ ନ ଥାଉ ଯେ । ୧୫ ।
ଯେ ଜଗତ ଜନନୀ ସେ କଲ ମନୋରଥ,
ଜାତ ଦିବ୍ୟ ସୁନ୍ଦରୀ କାହିଁକି ହେବ ବ୍ୟର୍ଥ ହେ । ୧୬ ।
ଆଉ କି ପ୍ରଶଂସିବା ଉମାରୁ ଜନ୍ମ ଯାର,
ଶାମୁକରୁ ମୁକ୍ତା [୮] ଜାତ ହୋଇଲ ପ୍ରକାର ଯେ । ୧୭ ।
ବାଞ୍ଛାରୁ ଉପତ୍ତି ବାଞ୍ଛାବତୀ ନାମ ଦେଇ,
ଖେଳେ ବଳାଇଲେ ମତି ଦୁହେଁ ବସି ତହିଁ ହେ । ୧୮ ।
ଏ ସମୟେ ଶୁଭିଲ ଡମ୍ବରୁ ଘୋର ନାଦ,
ପାର୍ବତୀ ମତିରେ ଜାତ [୯] ଏମନ୍ତ ବିଷାଦ ଯେ । ୧୯ ।
ହର ନେତ୍ର ପଥ ଗତ ହେଲେ ଏ ଶୋଭଙ୍ଗୀ[୧୦],
ଯିବ ସିନା ମୋହର ସୁଭଗୀ ପଣ ଭଙ୍ଗି ଯେ । ୨୦ ।
ବିଷ ବୃକ୍ଷ ସ୍ଥାପି ନାଶ କରିବାର ଦୋଷ,
ଏ ସଂସାର ଅସ୍ଥ ଖେଳ ଘରର ସଦୃଶ ଯେ । ୨୧ ।

---

ପାଠାନ୍ତର— (୮) ଶାମୁକୁଁ ମୁକ୍ତା । (୯) ମୁଦ୍ଦୁ । (୧୦) ହରନେତ୍ର ପାତ ଯେବେ ହେବ ଏ ଶୋଭଙ୍ଗୀ ।

---

୧୪—ବିଗ୍ଭରି—ବିଗ୍ଭର କଲେ ।

୧୫—ସୁଷମରେ [ସୌନ୍ଦର୍ଯ୍ୟରେ] ।

୧୭—ଶାମୁକା ଭିତରୁ ମୁକ୍ତା ବାହାରେ । ଏ କନ୍ୟା ଉମାଙ୍କଠାରୁ ବାହାରିଲ [ଅର୍ଥାତ୍ ଉମାଙ୍କଠାରୁ ମଧ୍ୟ ଅତ୍ୟନ୍ତ ସୁନ୍ଦରୀ] । [ମାତ୍ର ଏପରି ଉପମା ଦେଇ ଉମାଙ୍କୁ ଶାମୁକ ସଙ୍ଗେ ତୁଳନା କରିବା ଶିଷ୍ଟ ପ୍ରୟୋଗ ସିଦ୍ଧ ନୁହେ ।]

୧୯—ମହାଦେବ ଡମ୍ବରୁ ବଜାଇ ନିଜ ଘର ଆଡ଼କୁ ଆସିଲେ ।

୨୦—ସୁଭଗୀ—ସୋହାଗୀ [ମହାଦେବଙ୍କୁ ଏପରି ଅତି କାମାସକ୍ତ ଓ ବହୁ ନାରୀରତ ବୋଲି କଳ୍ପନା କରି ପାର୍ବତୀ ଈର୍ଷାନ୍ୱିତ ହେବା ହିନ୍ଦୁର ଆଦର୍ଶ ସିଦ୍ଧ ନୁହେଁ । ]

କିଛି କାଳ ଅଗମ୍ୟ ଅରଣ୍ୟେ ଏହୁ ଥାଉ,
ଜନ୍ମାନ୍ତେ ପୁରୁଷ ସଙ୍ଗ ବିଳାସକୁ ପାଉ ଯେ । ୨୨ ।

ଗଣଦେବୀ[୧୯] ଜଣକୁ ଏମନ୍ତ ଆଜ୍ଞା ଦେଲେ,
ସେ ନେଇ ଘୋର କାନନେ ପୁରେକ ରଚିଲେ ଯେ ।୨୩।

ତହିଁ ରଖି କହିଲେ ଲଙ୍ଘିବୁ ଯେବେ ଦ୍ୱାର,
କିଛି କାଳେ ପ୍ରାଣ-ହତ ହୋଇବ ତୋହର ଯେ । ୨୪ ।

ଯେବଣ ପୁରୁଷ କର ଗ୍ରହଣ କରିବ,
ଆନ ତନୁ ପ୍ରାପତିରେ ସେ ପତି ହୋଇବ ଯେ । ୨୫ ।

ଏତେ କହି ସେ ଦେବୀ ହୋଇଲେ ତିରୋହିତ,
ଗହନରେ ବାଞ୍ଛାବତୀ ଦିବ୍ୟପୁରେ ସ୍ଥିତ ଯେ । ୨୬ ।

ଏମନ୍ତରେ ଗଲେ ତହିଁ କେତେ ସମ୍ବତ୍ସର,
ପ୍ରଭଙ୍କର ନାମେ ଏକ କ୍ଷତ୍ରିୟ କୁମାର ଯେ । ୨୭ ।

---

ପାଠାନ୍ତର—(୧୯) ବଣଦେବୀ ।

---

୨୨—ଜନ୍ମାନ୍ତେ—ଅନ୍ୟ ଜନ୍ମରେ—ଜନ୍ମାନ୍ତରେ ।

୨୩—ଗଣ [ଗହଣ] ପାଖରେ ଭିନ୍ନ ଭିନ୍ନ ସେବା ଖଟିବା ପାଇଁ ଯେଉଁ ଦେବୀମାନେ ଥାଆନ୍ତି ।

୨୪—କିଛିକାଳେ—[ଦ୍ୱାର ଲଙ୍ଘିବା ମାତ୍ରେ] ।

୨୫—ଏଥିରୁ ବୁଝା ଯାଉଛି ଯେ କୌଣସି ପୁରୁଷ ହାତ ଧରି ବାଞ୍ଛାବତୀକୁ ବାହାରକୁ ଘେଟି ଯିବାରେ ବାଞ୍ଛାବତୀର ପ୍ରାଣ ନାଶ ହେବ । ଏହା ଗଣଦେବୀ ଇଙ୍ଗିତରେ ଜଣାଇ ଦେଉଅଛି ।

୨୬—ଗହନରେ—[ବନସ୍ତରେ] ଦିବ୍ୟ [ଦେବତା ରଚିତ—ଅତି ସୁନ୍ଦର] ।

ତପ ତା ଅକଥନୀୟ ଦିବ୍ୟ ନାରୀ ଲବ୍ଧେ[୧୨],
ପଞ୍ଚାଗ୍ନି ତାପନ[୧୩] କରେ ତପ ଋତୁ ମଧ୍ୟେ ଯେ ।୨୮।
ପ୍ରାବୃଟ କାଳରେ ଗୁହୋଦରକୁ ନ ଯାଇ,
ଝଞ୍ଜାବାତ ଜଳଘାତ କରକା ସହଇ ଯେ ।୨୯।
ଶୀତେ ଜଳଶାୟୀ ଭୂମି ଶଯ୍ୟା ବସ୍ତହୀନେ,
ମୃତ୍ତିକା ଶଙ୍କର ପୂଜା କରେ ନିତିଦିନେ ଯେ ।୩୦।

ପାଠାନ୍ତର—(୧୨) ଲବ୍ଧେ । (୧୩) ତାପନ ।

୨୮—ତପ [ତପସ୍ୟା], ଅକଥନୀୟ [କହି ନ ହେବା ଭଳି, କଠୋର], ଲବ୍ଧେ [ଲଭ ନିମନ୍ତେ], [ଏହିପରି ବିଶେଷଣରେ ବିଭକ୍ତି ଉପେନ୍ଦ୍ରଭଞ୍ଜଙ୍କର ଏକ ସାଧାରଣ ପ୍ରୟୋଗ, ଏ ସବୁକୁ ଭବ ବାଚ୍ୟରେ ଅକ୍ତ ପ୍ରତ୍ୟୟାନ୍ତ ବିଶେଷ୍ୟ ବୋଲି ମଧ୍ୟ ଧରଯାଇ ପାରେ । ଯଥା—'ନ ବନ୍ଧୁ ମଧ୍ୟେ ଧନହୀନ ଜୀବିତମ୍' । ଏଠାରେ 'ଜୀବିତମ୍' ଭବେ କ୍ତି' ପ୍ରତ୍ୟୟାନ୍ତ ବିଶେଷ୍ୟ ଏବଂ ଏହାର ଅର୍ଥ ଜୀବନଂ] ତପ ଋତୁ [ଗ୍ରୀଷ୍ମ କାଳରେ] ପଞ୍ଚାଗ୍ନି ତାପନ [ଚାରି ଦିଗରେ ଚାରି ଗଦା ନିଆଁ ରଖି ସୂର୍ଯ୍ୟକୁ ଚାହିଁ ତପସ୍ୟା କରିବାର ବିଧି] ଆଚରଣ କରେ ।

୨୯—ପ୍ରାବୃଟ—[ବର୍ଷା] ଗୁହୋଦର [ଗୁହମଧ୍ୟ] କରକା [କୁଆପଥର ବା ଅତ୍ୟନ୍ତ ଶୀତଳ ଜଳଧାର] ।

୩୦—ଶୀତ କାଳରେ ବିନା ବସ୍ତ୍ରରେ ଖାଲି ଭୂମିରେ ଶୋଇ ନିଜକୁ ଜଳଶାୟୀ କରେ ଅର୍ଥାତ୍ ନିଜ ଉପରେ ଅବିରତ ଶୀତଳ ଜଳସ୍ରୋତ୍ ଚଳାଏ ।

ଦ୍ରଷ୍ଟବ୍ୟ—କର୍ମିଷ୍ଠ ବ୍ରାହ୍ମଣମାନେ ମହାଦେବ ମୂର୍ତ୍ତିକୁ ବା ଶିବଲିଙ୍ଗକୁ ଅବିରତ ଜଳଧାରରେ ତିନ୍ତାଇ ଜଳଶାୟୀ କରନ୍ତି ।

ଏକ ହାତରେ ମାଟି ଚକଟି ସେଥିରେ ଶିବଲିଙ୍ଗ ଓ ଶକ୍ତି ଗଢ଼ି ତାହାକୁ ପ୍ରତିଦିନ ପୂଜା କରି ବିସର୍ଜନ କରିବାର ଏକ ପ୍ରକାର ବିଧି ଅଛି ।

ସେ ସୁକୃତ ରାଶି ଆସି ଠୁଳ ହୋଇ ତାର,
କେଦାରେଶ୍ୱର ଦର୍ଶନେ କଲ ବଢ଼ାହାର ହେ । ୩୧ ।
ଯାଉଁ ଯାଉଁ ସେ ଅଗମ୍ୟ ଅରଣ୍ୟେ ମିଳିଲା,
ରତ୍ନମୟ ପୁର ଗୃହିଁ ମନରେ [୧୪] ରଚିଲା ଯେ । ୩୨ ।
କିନ୍ନରୀ କିନ୍ନର କିବା କାହାର ଏ ଘଟି,
ଦେଖିବା ବିଗୃରୁଁ ଦେଖେ ପ୍ରାଙ୍ଗଣେ ଯୁବତୀ ସେ ।୩୩।
ଚନ୍ଦ୍ରକୁ ନିନ୍ଦା କରୁଛି ମୁଖହାସ କାନ୍ତି,
ସାରଙ୍ଗକୁ ନିନ୍ଦୁଛି ନୟନ ଭ୍ରୂରୁ ଗତି [୧୫] ଯେ । ୩୪ ।

---

ପାଠାନ୍ତର—(୧୪) ଚଢ଼ରେ । (୧୫) ପନ୍ତ ।

---

୩୧—ସୁକୃତ ରାଶି [ସୁକୃତମାନେ] ଆସି ଠୁଳ [ଏକାଠି] ହୋଇ କେଦାରେଶ୍ୱର ନାମକ ମହାଦେବ ଦର୍ଶନରେ ତାକୁ ବଢ଼ାହାର [ବାଧ୍ୟ] କଲ । ଭୁବନେଶ୍ୱରର ଗୌରୀ କୁଣ୍ଡ ଉପରେ କେଦାରେଶ୍ୱର ମହାଦେବ ଅଛନ୍ତି ।

୩୩—କିନ୍ନରୀ କିନ୍ନରମାନେ ଦେବତାମାନଙ୍କ ମଧ୍ୟରେ ଗାୟିକା ଓ ଗାୟକ । କିନ୍ନରମାନେ ଦେଖିବାକୁ ଅସୁନ୍ଦର । ସେମାନଙ୍କ ମୁହଁ ଘୋଡ଼ା ମୁହଁ ପରି ବୋଲି ପୁରାଣରେ ଅଛି । ଏଠାରେ କବି ସେ କଥାକୁ ଲକ୍ଷ୍ୟ ନ ରଖି ଖାଲି ସେମାନଙ୍କର ଗାୟକତ୍ୱ ମନେ ପକାଇ ତାଙ୍କୁ ସୁନ୍ଦର ବୋଲି କଳ୍ପନା କରି ଯାଇ ଅଛନ୍ତି । ଘଟି [ସ୍ଥାନ] ପ୍ରାଙ୍ଗଣରେ [ଅଗଣାରେ] ।

୩୪—ମୁଖ ହାସ [ହସ] କାନ୍ତି [ଦେହର ବର୍ଣ୍ଣ ଓ ଉଜ୍ଜ୍ୱଳତା] ଚନ୍ଦ୍ରକୁ [କର୍ପୂରକୁ ବା ଜହ୍ନକୁ] ନିନ୍ଦା କରୁଛି [ସେମାନଙ୍କ ଠାରୁ ଅଧିକ ହୋଇଅଛି] । ନୟନ [ଆଖି] ଭ୍ରୂରୁଗତି [ଭ୍ରୂଲତାର ଆକୃତି] ସାରଙ୍ଗକୁ [ହରିଣ କିମ୍ବା ଧନୁକୁ] ନିନ୍ଦୁଛି [ସେମାନଙ୍କ ଠାରୁ ଅଧିକ ହୋଇଅଛି] ଚଞ୍ଚଳତା ଓ ବିଶାଳତାରେ ଆଖି ହରିଣର ଆଖିଠାରୁ ଅଧିକ ହୋଇଅଛି । ଭ୍ରୂଲତା ଧନୁଠାରୁ ସୁନ୍ଦର ହୋଇଅଛି ।

ନାସା ମଧ୍ୟ ଓଷ୍ଠ ନିନ୍ଦେ ତରୁଣ ହରିକି,
ଅପବାଦ ଅପସରି ଲକ୍ଷଣେ ନାରୀ କି । ୩୫ ।
ଅମର ସମ୍ପତ୍ତି ଲଭି ବିଲୋକନ ମାତ୍ରେ,
ନାରୀ ରୂପ ପିତୁଳା ଲେଖନ ହେଲା ନେତ୍ରେ । ୩୬ ।
ସେ ପ୍ରେମ ମଞ୍ଜରୀ ଶୋଭା ପଞ୍ଜରୀ ହୋଇଲା
ପୁରୁଷ ନେତ୍ର ଖଞ୍ଜନ[୧୭] ତହିଁରେ ରହିଲା ଯେ । ୩୭ ।
ରମ ଶବ୍ଦ ବହୁ ବଚନରେ କଲା ଜପ,
ରମା ବିପରୀତ ସେହି କାଳେ କଲା କୋପ ଯେ । ୩୮ ।
ଶରୀର ମଧ୍ୟ ଲେପକୁ ଶରୀର ମଧ୍ୟକୁ,
ଯୋଖି ପ୍ରହାରିଲା ବିଗ୍ରହିଣ ତା ବଧକୁ ଯେ । ୩୯ ।

---

ପାଠାନ୍ତର—( ୬) ପୁଂସ ନେତ୍ର ।

---

୩୫—ନାସା [ନାକ] ତରୁଣ ହରି [ପୂର୍ଣ୍ଣ ବଢ଼ିଥିବା ଅଥଚ ବୁଢ଼ା ନୁହେଁ ଏପରି ଶୁଆକୁ—ଅର୍ଥାତ୍ ଏପରି ଶୁଆର ଥଣ୍ଟକୁ] ଓଷ୍ଠ [ଓଠ ବା ଅଧର] ତରୁଣ ହରିକି [ବାଳ ସୂର୍ଯ୍ୟ ଅର୍ଥାତ୍ ସକାଳୁ ଉଠି ଆସୁଥିବା ଲାଲ ସୂର୍ଯ୍ୟକୁ] ଜିଣିଛି—ଅର୍ଥାତ୍ ରଙ୍ଗରେ ତା ଠାରୁ ଅଧିକ ସୁନ୍ଦର ହୋଇଛି । ମଧ୍ୟ [ଅଣ୍ଟା] ସରୁ ହେବାରେ ତରୁଣ ହରି [ପେଣ୍ଡା ସିଂହ]କୁ ଜିଣିଛି—ସିଂହ ଅଣ୍ଟାଠାରୁ ଏହାର ଅଣ୍ଟା ଅଧିକ ସରୁ ହୋଇଛି । ଅପସରୀ—[ସ୍ୱର୍ଗ ବେଶ୍ୟା ରମ୍ଭା ମେନକା ପ୍ରଭୃତି] ଲକ୍ଷଣେ [ଉପମା ହିସାବରେ କୁହାଗଲେ] ସେ ନାରୀକି ଅପବାଦ [ନିନ୍ଦା] ଲାଗି ହେବ ।

୩୬—ବିଲୋକନ ମାତ୍ରେ [ଦେଖିଲା କ୍ଷଣି] ଅମର ସମ୍ପତ୍ତି [ସ୍ୱର୍ଗ ସମ୍ପଦ] ଲଭି [ପାଇ]—ଅର୍ଥାତ୍ ଯାହା ମନୁଷ୍ୟକୁ ମିଳେ ନାହିଁ ସେହିପରି ବିଭବ ପାଇଲା । ନେତ୍ରେ [ଆଖିରେ] ସେ ନାରୀ ରୂପର ପିତୁଳା ଲେଖି ହେଲା ପରି ରହିଗଲା ।

ତାକୁ ସ୍ତୁତି କଲା ତୋ ନାରୀରେ ଇଚ୍ଛା ମୋର,
ଭାବି କି ହେଉଛୁ ପର ଏ ଆନ ପ୍ରକାର ଯେ । ୪୦ ।
ଜାଣି ନାହୁଁ [୧୭] ଅଭିଧାନ ବିଧାନ ମାନଙ୍କୁ,
କହନ୍ତି ବିଧୁ ଚନ୍ଦ୍ରମା, ବିଷ୍ଣୁ, କର୍ପୂରକୁ ଯେ । ୪୧ ।
ଏକାଳେ ପୁରୁଷଠାରେ [୧୮] ରମା ଦୃଷ୍ଟି ପାତ,
ଜନ୍ମ ଅନ୍ଧ ନୟନକୁ ଲଭିଲେ ଯେମନ୍ତ ଯେ । ୪୨ ।
ମନମଥ ମଥନେ ଥରିଲା ହେଲା ଜାନୁ,
କଦମ୍ବ କୋରକ ଶୋଭା ଲୁଟି କଲା ତନୁ ଯେ । ୪୩ ।

ପାଠାନ୍ତର— ୭, ଜାଣୁନାହିଁ । ୧୮, ଏ କାଳକୁ ପୁଂସଠାରେ । ୧୯, ବର । ୨୦, ଉରଜ । ୨ , ଫକଟରେ ।

୩୭—ସେ ପ୍ରେମ ମଞ୍ଜରୀ (ବିକାଶ) ର ଶୋଭା ପଞ୍ଜୁରୀ ହେଲା । ପୁରୁଷର ଆଖି ଖଞ୍ଜନ [ କଜ୍ଜଳ ପାଟିଆ ଚଢ଼େଇ ] ପରି ହୋଇ ତହିଁରେ ଅଟକି କରି ରହିଲା ।

୩୮।୩୯—ରମ ଶବ୍ଦ ବହୁ ବଚନରେ [ ସଂସ୍କୃତରେ ] ରମା—ଯାହାର ଅର୍ଥ ବିସର୍ଗ ଲୋପରେ କାମିନୀ । ରମା ବିପରୀତ ମାର [ କନ୍ଦର୍ପ ] ଶରୀର ମଧ୍ୟ ଲୋପ ହେଲେ ଶର [ବାଣ] । ଅର୍ଥାତ୍ ରମା [ସ୍ତ୍ରୀ] କଥା ଗାଢ଼ ଚିନ୍ତା କରିବାରୁ କନ୍ଦର୍ପ କୋପ କରି ତାହାର ଶରୀର [ଦେହ] ଭିତରକୁ ଶର ଯୋଖି ତାକୁ ମାରିବା ପାଇଁ ପ୍ରହାରିଲା ( ବିନ୍ଧିଲା ) ।

୪୦—ତାକୁ [ ମାରକୁ ], ତୋ ନାରୀରେ [ ରତିରେ ] କନ୍ଦର୍ପକୁ ସ୍ତୁତି କଲା "ମୋର ରତିରେ ଇଚ୍ଛା ହେବାର ଭାବି ତୁମେ ପର [ ଶତ୍ରୁ ] ହେଉଛ କି ? କିନ୍ତୁ ଏ ରତି ତୁମ ପତ୍ନୀ ନୁହେ ଏ ଆନ ପ୍ରକାର ।"

୪୧—ଅଭିଧାନର ବିଧାନ [ ଭିନ୍ନ ଭିନ୍ନ ଅର୍ଥ ମାନଙ୍କୁ ] ତୁ ଜାଣି ନାହୁଁ । ସେଥିପାଇଁ ଅବା କୋପ କରୁଚୁ । ମାତ୍ର ଚନ୍ଦ୍ରମା, ବିଷ୍ଣୁ, କର୍ପୂର—ଏ ସମସ୍ତଙ୍କୁତ ବିଧୁ କହନ୍ତି । ସେହିପରି ତୋର ପତ୍ନୀ ଓ କେଳି—ଏହି ଦୁଇ ଅର୍ଥରେ ରତି ଶବ୍ଦ ପ୍ରବର୍ତ୍ତେ । ମୁଁ ରତିକୁ ଇଚ୍ଛା କରୁଛି । ଏହା ଦେଖି ତୋ ପତ୍ନୀକୁ ଇଚ୍ଛା କରୁଛି ଏପରି ଭୁଲ ବୁଝି ମୋଠାରେ କୋପ କରିବା ଠିକ୍ ନୁହେ ।

୪୨-ଏକାଳେ ପୁରୁଷଠାରେ ରମା ( ସେ ନାରୀ—ବାଞ୍ଛାବତୀ )ର ଦୃଷ୍ଟିପାତ ହେଲା ( ଆଖି ପଡ଼ିଲା )। ଜନ୍ମରୁ ଅନ୍ଧଥିବା ଲୋକ ଆଖି ପାଇଲା ପରି ତାକୁ ଲାଗିଲା ।

୪୩—ମନମଥର (କନ୍ଦର୍ପର ) ମଥନେ ( ମନ୍ଥିବାରେ ) ତାର ଜାନୁ ( ଜଙ୍ଘ ) ଥରିଲା ହେଲା ( ଥର ଥର ହେଲା ) କଦମ୍ବ କୋରକ ( କଦମ୍ବ କଢ଼ି )ର ଶୋଭା ତନୁ ( ଶରୀର ) ଲୁଟିକଲା—ଭାବରେ ତାର ରୋମ ଟାଙ୍କୁରୀ ଦେହ ଯାକ କଦମ୍ବ ଫୁଲର କେଶର ପରି ହୋଇଗଲା ।

ନେତ୍ର ବଡ଼ଶୀରେ ସେ ଧଡ଼ସି ଅନୁରାଗେ,
ପୁରୁଷ ମନ ମୀନକୁ ଧରିନେଲା ବେଗେ ଯେ । ୪୪ ।
ସେ କାଳେ ସୁବେଣୀମଣି [୧୯] ଧୀବର ହୋଇଲା,
ଉରୋଜ[୨୦] କୁବେଣୀ ଫପୁଟରେ[୨୧] ପକାଇଲା ଯେ । ୪୫ ।
ସେ ସମୟେ ପୁରୁଷ କହିଲା ଯୋଡ଼ି କର,
ରେ ରସ ଉଦୟା ସୁହୃଦୟା ଦୟା କର ଗୋ । ୪୬ ।
ତପତ ତପନୀୟାଙ୍ଗୀ ତପ ଫଳ ମୋର,
ଦର ହସିତେ ଇଷିତେ ସୁଫଳ ତୁ କର ଗୋ [୨୨] । ୪୭ ।
ଅତି ଦୀନ ଖିନ୍ନ ମୁହିଁ ମଦନ ଶରରେ [୨୩],
ରକ୍ଷା କର କକ୍ଷା କରି ସୁକଟାକ୍ଷା [୨୪] ବାରେ ଗୋ । ୪୮ ।

---

ପାଠାନ୍ତର— ୨୨, ଦରହସିତେ ଇଷିତେ ସଫଳ କରକର । ୨୩, ଅତି ଦୀନ କ୍ଷୀଣ ଖିନ୍ନ ମୁଁ ମଦନଶରେ । ୨୪, କୁଟିଳାକ୍ଷା ।

---

୪୪—ନେତ୍ର ବଡ଼ଶୀ ( ଆଖି ରୂପ ବନସିରେ ) ସେ (ବାଞ୍ଛାବତୀ) ଅନୁରାଗେ ( ପ୍ରୀତିଭାବରେ ) ଧଡ଼ସି ( ଜୋର କରି ଓଟାରି ) ପୁରୁଷର ମନ ରୂପକ ମୀନ ମାଛକୁ ବେଗେ ଧରିନେଲା ।

୪୫—ସେ କାଳେ [ ଏହି ବନସି ଧରା ଉପମାରେ ] ସୁବେଣୀମଣି (ଭଲ ବେଣୀବାନ୍ଧିଥିବା ସୁନ୍ଦରୀ ଭିତରେ ଶ୍ରେଷ୍ଠ—ସେହି ବାଞ୍ଛାବତୀ) ଧୀବର [ ବନସୀବାଲା କେଉଟ ] ହେଲା । ଉରୋଜ[ସ୍ତନ) କୁବେଣୀ [ଖାଳେଇ] ଫପୁଟରେ [ଭିତରେ) ପକାଇଲା, ଅର୍ଥାତ୍ ଆଖି ସ୍ତନରେ ଲାଗି ରହିଲା ।

୪୬—ରସ ଉଦୟା ( ରସ—ଆଦିରସ କାମର ଉଦୟ ଯାହା ହେତୁରୁ ) ସୁହୃଦୟା ( ଦୟାବତୀ ଓ ପ୍ରୀତିମତି ] ।

୪୭—ତପତ ତପନୀୟ ( ତାତିଲା ସୁନାପରି ) ଅଙ୍ଗ [ ଶରୀର କାନ୍ତି ] ଯାହାର । ଦରହସିତେ ( ଦରହାସରେ ) ଇଷିତେ ( ମୋ ଇଚ୍ଛାକୁ ) ସୁଫଳ (ଫଳବତୀ) କର ।

୪୮—ମଦନ ଶରରେ ( କାମ ବିନ୍ଧି ପକାଇବାରେ) ମୁଁ ଅତି ଦୀନ ( ଦୁର୍ବଳ ) ଖିନ୍ନ (ଦୁଃଖୀ) ହେ ସୁକୁଟାକ୍ଷା ( ସୁନ୍ଦର ଚାହାଣି ଯାହାର )—ସେହି ହେତୁ—କକ୍ଷା କରି ( ମଦନ ସଙ୍ଗେ କଟାଳ କରି ଅର୍ଥାତ ମଦନକୁ ଧଡ଼ସାଇ ) ମୋତେ ରକ୍ଷା କର ।

ଏ ବଚନେ ସୀଉକାର [୨୫] କଟାକ୍ଷେ ଆଣିଲା,
ରସିକା ଭଜିଲ [୨୬] ଭବ ରସିକ ଜାଣିଲ ଯେ ।୪୯ ।

ଏକେତ ଏକାନ୍ତ ଦୁଜେ ତରୁଣ ତରୁଣୀ,
ଭେଟ ଯାହା ଲୋଡୁଥାଇ ଫୁଲ ଧନୁ ପାଣି ଯେ । ୫୦ ।
ପଞ୍ଚ ବିଶିଖକୁ କେତେ ଲକ୍ଷ ଅବା କଲ,
ଭଲ ଲଖ [୨୭] ନାଗରୀ ନାଗର ହୃଦ ହେଲ ଯେ । ୫୧ ।
ପୁରୁଷ ହୃଦୟ [୨୮] ଲଭିବାକୁ କୃଶ କଟୀ,
ଭବବତୀ ମନେ କରି ଅଇଲ ପାଛୋଟି ଯେ । ୫୨ ।
ଯୁବା ଦେହ ବହି ଏ ଉଷଁବୁ ବଡ଼ କରି,
ଉହବ ଭେଗ କାହିଁଛି କେ କହୁ ବିଚାରି ଯେ । ୫୩ ।
ଦଇବେ ଦେହଳୀ ବଳି ତ୍ରିବଳୀ ଶୋଭିତା,
ଆଲିଙ୍ଗନ କଲ ହୋଇ ପୁରୁଷ [୨୯] ଲୋଭିତା । ୫୪ ।

---

ପାଠାନ୍ତର –।୨୫, ଏ ବଚନରେ ସ୍ୱୀକାର । ୨୬, ଭଜିବା । ୨୭, ଲକ୍ଷ । ୨୮, ନିକଟ

---

୪୯–ଏ ବଚନେ ( ଏହା କହନ୍ତେ –ବାଞ୍ଛାବତୀ–କଟାକ୍ଷେ–( ଷ୍ନେହ ଚାହାଣିରେ ] ସୀଉକାର ଆଣିଲ [ ହଁ କଲ ] ଭବ ଭଜିଲ [ ପ୍ରୀତିରେ ] ମଜିଲ ।

୫୦–ଏକାନ୍ତ– ( ନିର୍ଜନ , ଦୁଜେ (ପୁଣି) ତରୁଣ ତରୁଣୀଙ୍କର ଭେଟ ହୋଇଛି । ଯାହା ଫୁଲ ଧନୁ ପାଣି (କାମଦେବ) ଲୋଡୁଥାନ୍ତି–ଗୁପ୍ତ କେଳି ନିମନ୍ତେ ଯେଉଁ ସୁବିଧା ଦରକାର ତାହା ହୋଇଛି ।

୫୧-ସେହି ଫୁଲ ଧନୁ ପାଣି ନିଜର ପଞ୍ଚ ବିଶିଖକୁ (ପଞ୍ଚଫୁଲବାଣକୁ କେତେ ଅବା ଅତି ଅଳ୍ପ ମାତ୍ର ଲକ୍ଷ କଲ (ବିନ୍ଧିଲ) ଲଖ (ଲଖ କରିବା ଜାଗା । )

୫୨–(ଆଲିଙ୍ଗନରେ) ପୁରୁଷ ହୃଦୟ (ଛାତିପାଖ) ଲଭିବାକୁ କୃଶ କଟୀ ଭବବତୀ (ସୁନ୍ଦରୀପ୍ରୀତି ଭୋଳା) ମନେ କରି (ଘର ଛାଡ଼ି ) ପାଛୋଟି ଅଇଲ । ( ଆଗେଇ ଅଇଲ ) ।

୫୩–କାହିଁଛି–[କାହିଁଅଛି]–କେଉଁଠାରେ ଅଛି ?

୫୪–ଦଇବେ (ଭଗ୍ୟକୁ) ଦେହଳୀ (ଏରୁଣ୍ଡିବନ୍ଧ) ବଳି [ଡେ଼ଇଁକରି] (ଆସିଥିବା) ତ୍ରିବଳୀ ଶୋଭିତାକୁ ( ତଳି ପେଟରେ ସୁନ୍ଦର ତିନି ଗୋଟି ବଳି ଦେଖାଯାଉ ଥିଲ ଯାହାର ଏ ଭଳି ସୁନ୍ଦରୀକୁ ) ପୁରୁଷ ଲୋଭିତା ହୋଇ [ଲୋଭେଇ ହୋଇ] ଆଲିଙ୍ଗନ କଲ ।

ଚୁମ୍ବିବା ବେଳକୁ ମୁଖ ରଜୀବ ତାହାର,
ଜୀବ ହୀନ ହୋଇ ତା ରହିଲା କଳେବର ଯେ । ୫୫ ।
ରହିଁ ତରୁଣ ଅରୁଣ ଓଷ୍ଠୀର ଏ ରୀତି
ବଦନ ପବନ ଦତ୍ତ କେତେ [30]କଲା ଶ୍ରୁତି ଯେ । ୫୬ ।
ଲୋଚକ ଜଳରେ ଆଗ ଧୋଇଦେଲା ମୁଖ,
ବୋଇଲା ମୁଁ ନମରି ଦେଖିଲି ଏତେ ଦୁଃଖ ଯେ । ୫୭ ।
ଏ ସମୟରେ ଶୁଭିଲା ଅଶରୀର [31] ବାଣୀ,
ଗଙ୍ଗା ସାଗର ସଙ୍ଗମେ ଝାସ ପୁଂସମଣି ଯେ । ୫୮ ।
ଏ ବଲ୍ଲଭୀକୁ ଲଭିବୁ ନୃପସୁତ ହୋଇ,
ଅନଳେ ନ ଦହି ସେହିଠାରେ ଯାଅ ଥୋଇ ଯେ । ୫୯ ।
ଏ ବଚନେ ସନ୍ତାପକୁ କିଛି ଶାନ୍ତି କଲା [32],
ବଙ୍ଗ ଦେଶେ ଯାଇ ଗଙ୍ଗା ସାଗରେ ଝାସିଲା ଯେ । ୬୦ ।
କର୍ଣ୍ଣାଟ ଦେଶରେ କାଞ୍ଚି ନାମେ ନଗ୍ର ସାର,
ଶଶିଶେଖର ନାମରେ ତହିଁ ନରେଶ୍ୱର ଯେ । ୬୧ ।
ଶଶିରେଖା ନାମେ ତା'ର ଯେ ପଟ୍ଟ ମହିଷୀ,
ପୁତ୍ରାର୍ଥେ ଅନେକ ମତେ[33] ତୋଷି କାଶୀବାସୀ ଯେ । ୬୨ ।
ତା ଉଦର ଆକାଶରେ ପ୍ରକାଶ ହୋଇଲା,
ଅକଳଙ୍କ କଳାନିଧି ପରଯ ଶୋହିଲା ଯେ । ୬୩ ।

---

ପାଠାନ୍ତର—୨୯, ଫୁସ ହୋଇଣ । ୩୦, କେତେ ଦଣ୍ଡ । ୩୧, ଅମ୍ବରୁଁ ଏ । ୩୨, ଏ ବଚନ କରୁ ସନ୍ତାପକୁ ଶାନ୍ତକଲା । ୩୩, ବ୍ରତେ ।

---

୫୫—ମୁଖ ରଜୀବ—ମୁଖ ପଦ୍ମ; କଳେବର—ଶରୀର;

୫୬—ତରୁଣ (ଯୁବା ପୁରୁଷ) ଅରୁଣ ଓଷ୍ଠୀ [ବାଳ ସୂର୍ଯ୍ୟପରି ଲାଲ ଓଠ ଯାହାର ] ସେ ସ୍ତ୍ରୀର ତା ଶ୍ରୁତି [କାନ]ରେ କେତେ (ବହୁତ) ବଦନ ପବନ ଦତ୍ତ କଲା (ଫୁଙ୍କିଲା)।

୫୭—କାନ୍ଦି କହିଲା ମୁଁ ନିଜେ ନ ମରି ଏତେ ଦୁଃଖ ଦେଖିଲି ।

୫୮—ଅଶରୀର ବାଣୀ—[ଆକାଶରୁ] [ଦେବବାଣୀ] ଗଙ୍ଗା,ସାଗର ସଙ୍ଗମେ ( ଗଙ୍ଗା ନଦୀ ଓ ସମୁଦ୍ର ଯେଉଁଠା'ରେ ମିଳିଛନ୍ତି ସେହିଠାରେ )

୫୯—[ଆର ଜନ୍ମରେ] ନୃପସୁତ [ ରଜାପୁଅ ] ହୋଇ ଏ ବଲ୍ଲଭୀକି ( ଏ ପ୍ରେମିକାକୁ) ପାଇବୁ ଏ ଶବକୁ ନ ପୋଡ଼ି ଛାଡ଼ିଯାଅ ।

୬୧/୬୨—ନରେଶ୍ୱର—(ରଜା); ପଟ୍ଟ ମହିଷୀ [ପାଟରାଣୀ] କାଶୀବାସୀ [ମହାଦେବ]

୬୩—ତା ସେହି ପାଟରାଣୀର ଉଦର ରୂପ ଆକାଶରେ ପ୍ରକାଶ [ଜନ୍ମ]ହେଲା । ଅକଳଙ୍କ (କଳଙ୍କ ନ ଥିବା) କଳାନିଧି (ଚନ୍ଦ୍ର)

ଆହ୍ଲାଦେ ଚନ୍ଦ୍ର ତେଜେ ଭାନୁ [୩୪] ଭାବି କରି,
ଚନ୍ଦ୍ରଭାନୁ ନାମ ଦେଲେ ବିଚାରି ବିଜ୍ଞରି ଯେ । ୬୪ ।

ବେଦ ବେଦାନ୍ତେ ବିଧାତା ବ୍ୟାକରଣେ ହର,
ସଙ୍ଗୀତରେ ନାରଦ ଶୃଙ୍ଗାର ଶାସ୍ତ୍ରେ ମାର ଯେ । ୬୫ ।
କବିପଣେ ଶେଷ[୩୫] ଜ୍ୟୋତିଷିକେ[୩୬] ବୃହସ୍ପତି,
ଅଶ୍ୱାରୋହେ ମିହିର ଭୈରବ ପରପତି[୩୭] ଯେ । ୬୬ ।
ଧନୁର୍ଦ୍ଧରେ ଅର୍ଜୁନ ଗଦାରେ ବୃକୋଦର,
ଦାନିରେ କର୍ଣ୍ଣ ମାନୀରେ କୁରୁଦଣ୍ଡ ଧର ଯେ । ୬୭ ।
ବଳିଷ୍ଠରେ ବାଳୀ ଧର୍ମିଷ୍ଠରେ ଯୁଧିଷ୍ଠିର,[୩୮]
ସୁନ୍ଦର ପଣେ ତାହାଙ୍କୁ ସେହି ପଟାନ୍ତର ଯେ । ୬୮ ।

---

ପାଠାନ୍ତର—୩୪, ଚନ୍ଦ୍ର, ଭାନୁ, ତେଜ ।୩୫, ଗଣେଶ । ୩୬, ଜ୍ୟୋତିଷେ । ୩୭, ଗତ ।
୩୮, ବାଳି ଧାର୍ମିକରେ

---

୬୪—ଆହ୍ଲାଦରେ ( ଆନନ୍ଦ ଦେବାରେ ) ସେ ଚନ୍ଦ୍ର ଏବଂ ତେଜରେ ଭାନୁ ( ସୂର୍ଯ୍ୟ ) ଏହା ଭାବି କରି ସେ କାଳରେ 'ଚନ୍ଦ୍ରଭାନୁ' ନାମ ଦେଲେ ।

୬୫—୬୮—ସେ ବାଳକ କ୍ରମେ କିପରି ହେଲେ କହୁଛନ୍ତି—ବେଦ ବେଦାନ୍ତ [ ପ୍ରଭୃତିଶାସ୍ତ୍ର ମାନଙ୍କ ] ରେ ବିଧାତା ବ୍ରହ୍ମା ) [ ବ୍ରହ୍ମା ବେଦ କର୍ତ୍ତା ] ପରି, ବ୍ୟାକରଣରେ ( ବ୍ୟାକରଣ ଶାସ୍ତ୍ରରେ ) ହର ( ମହାଦେବ ) [ 'ଅଇଉଣ୍' ଆଦି ପ୍ରଥମ ବ୍ୟାକରଣ ସୂତ୍ର ପ୍ରକାଶକ ] ପରି; ସଙ୍ଗୀତ ବିଦ୍ୟାରେ ନାରଦ [ ବୀଣା ବଜାଇବାରେ ନାରଦ ପ୍ରସିଦ୍ଧ ] ଶୃଙ୍ଗାର ଶାସ୍ତ୍ରେ ( କାମ ଶାସ୍ତ୍ରେ ) ମାର ( କାମଦେବ) ପରି, କବିପଣେ ଶେଷ ( ସହସ୍ରମୁଖରେ ଈଶ୍ୱର ସ୍ତୁତି ଗାଉଥିବା ବାସୁକୀ ) ପରି, ଜ୍ୟୋତିଷିକେ ( ନକ୍ଷତ୍ରାଦିର ତତ୍ତ୍ୱ ଜାଣୁଥିବା ଲୋକମାନଙ୍କ ଭିତରେ ) ବୃହସ୍ପତି ( ଦେବ ଗୁରୁଙ୍କ ) ପରି, ଅଶ୍ୱାରୋହେ ( ଘୋଡ଼ା ଚଢ଼ିବାରେ ) ମିହିର ( ପ୍ରତିଦିନ ସପ୍ତାଶ୍ୱ ରଥରେ ଆକାଶର ଏ ପଟରୁ ସେପଟକୁ ଯାଉଥିବା ସୂର୍ଯ୍ୟ )ଙ୍କ ପରି, ଭୈରବ ( ମହାଦେବ, ପଶୁପତି ) ଙ୍କ ପର ( ପରି ) ପତି ( ସମସ୍ତଙ୍କର ନିୟନ୍ତା ), ଧନୁର୍ଦ୍ଧରେ ( ଧନୁର୍ଦ୍ଧର ମାନଙ୍କ ମଧ୍ୟରେ) ଅର୍ଜୁନ ପରି ଗଦାଚଳାଇବାରେ ବୃକୋଦର ( ଭୀମ ) ପରି, ଦାନୀରେ ( ଦାତା ମାନଙ୍କ ମଧ୍ୟରେ ) କର୍ଣ୍ଣପରି, ମାନୀଙ୍କ ମଧ୍ୟରେ କୁରୁଦଣ୍ଡଧର ( ଦୁର୍ଯ୍ୟୋଧନ )ପରି, ବଳବନ୍ତ ମାନଙ୍କ ଭିତରେ ସୁଗ୍ରୀବ ଭାଇ ବାଳୀ ପରି, ଧାର୍ମିକ ଲୋକମାନଙ୍କ ମଧ୍ୟରେ ଯୁଧିଷ୍ଠିର ପରି । ମାତ୍ର ସୁନ୍ଦର ପଣେ ତାହାଙ୍କୁ ସେହି ଏକା ପଟାନ୍ତର ( ତୁଳନା ) ଅର୍ଥାତ ତାଙ୍କ ସଙ୍ଗେ ସୁନ୍ଦର ପଣରେ ତୁଳା ହେବାକୁ କେହିନାହିଁ ।

ମନ୍ତ୍ରୀ ସାଧୁନ୍ତ ଗଣକ[୩୯] ପୁରୋଧା କୁମାର,
ନାମ ଗୁଣନିଧି, ବସନ୍ତକ, ପୁରନ୍ଦର ଯେ । ୬୯ ।
ରିତୁଧ୍ୱଜ ସହିତରେ ଗ୍ଭରି ମିତ୍ର ହିତ,
ନିଶି ଦିନେ ଭିନ୍ନ ନୋହେ ତାହାଙ୍କ ସଙ୍ଗତ ଯେ । ୭୦ ।
ହେ ରାମ କୃଷ୍ଣ ସୁନ୍ଦର କଳାପ ମଣ୍ଡନ,
ରାଧା ପତି ରୁଚି ହାସ ଅଘ ବିନାଶନ[୪୧] ଯେ । ୭୧ ।
ଉପଇନ୍ଦ୍ର ଭଞ୍ଜ ବୀରବର ମନୋରଥ,
ଏଗୀତ ପୂର୍ଣ୍ଣ ହେବାରେ କରି ଏହା ସାର୍ଥ ଯେ । ୭୨ ।

×    ×    ×    ×

---

ପାଠାନ୍ତର—୩୯, ଜ୍ୟୋତିଷ ସାଧୁନ୍ତ । ୪୦, ରିତୁଧ୍ୱଜ ସହିତେ ଏଗ୍ଭରିମିତ୍ରହିଁତ । ୪୧, ଅଘ ବିଖଣ୍ଡନ ।

---

୬୯ । ୭୦—ମନ୍ତ୍ରୀ ସାଧୁତ ( ସାଧବ ) [ଅର୍ଥାତ ଯେ ଜାହାଜ ପ୍ରଭୃତିରେ ବାଣିଜ୍ୟ କରେ, ବଣିକ, ଶ୍ରେଷ୍ଠୀ ] ଗଣକ ( ଜ୍ୟୋତିଷ ) ପୁରୋଧା ( ପୁରୋହିତ ) ଏହି ଗ୍ଭରିଙ୍କର ପୁଅମାନେ । ସେମାନଙ୍କ ନାମ, ଗୁଣନିଧି, ବସନ୍ତକ, ପୁରନ୍ଦର ଓ ରିତୁଧ୍ୱଜ । ଏ ଗ୍ଭରିହେଁ ମିତ । ଦିନରାତି ଏହାଙ୍କ ସାଙ୍ଗ ରଜା ପୁଅର ଆନ ହୁଏ ନାହିଁ [ ଅର୍ଥାତ ଏ ପାଞ୍ଚଜଣ ସବୁବେଳେ ଏକାଠି ଥାନ୍ତି । ]

୭୧—ଏହି ଭଣିତା ପଦରେ ରାମ ଓ କୃଷ୍ଣ ଦୁହିଁଙ୍କର ସ୍ତୁତି ଏକ ଭଷାରେ କୁହା ଯାଇଛି । ରାମପକ୍ଷ—ହେ ରାମ, କୃଷ୍ଣସୁନ୍ଦର ( ସୁନ୍ଦର ନୀଳକାନ୍ତି ) କଳାପ ମଣ୍ଡନ ( ତୁଣୀର ବା ଶର ମୁଣାରେ ଶୋଭିତ ) ରାଧାପତି ( ଅନୁରାଧା ତାରକା ପତି ଯେ ଚନ୍ଦ୍ର ତାହାରି ପରି ) ରୁଚି ( ସୁନ୍ଦର) ହାସ ଯାହାର, ଅଘ ବିନାଶନ (ପାପ ବିନାଶନ) କୃଷ୍ଣପକ୍ଷ—ହେ ରାମ ( ରମଣୀୟ ) କୃଷ୍ଣ, ସୁନ୍ଦର କଳାପ ମଣ୍ଡନ ( ସୁନ୍ଦର ମୟୂର ପିଛ ଶୋଭିତ ) ରାଧାପତି ରୁଚି ( ସୁନ୍ଦର ) ହାସ ଯାହାର । ଅଘ ବିନାଶନ ( ଅଘ ନାମକ ଅସୁରର ନାଶକର୍ତ୍ତା । )

# ଦ୍ୱିତୀୟ ଛାନ୍ଦ

ରାଗ ପହଟ ମଞ୍ଜରୀ

( କୁମାରୀ ଜନ୍ମ )

ଶୁଣ ହେ ରସିକେ[୧] ରସ କର୍ଣ୍ଣମନ ଲୋଭ,
ରତ୍ନାକର ମଧ୍ୟରେ ସିଂହଳ ଦ୍ୱୀପ ଶୋଭ ଯେ । ୧ ।
କହିବାର ନୋହେ ସେ କଟକ ଛଟକକୁ,
ରତ୍ନ ଝଟକରେ ହସେ[୨] ଆନ କଟକକୁ ଯେ । ୨ ।
ଅଛନ୍ତି ଧନଦସମ ଧନବନ୍ତ ମାନ,
କର୍ଣ୍ଣେ ଶୁଣାଅଛି ସେମାନଙ୍କୁ ଏକା ଦୀନ ଯେ । ୩ ।

---

ପାଠାନ୍ତର—୧, ସୁଜନେ । ୨, ରତନ ଝଟକ ହସେ ।

---

୧—ରସ—ଏହାର ଅର୍ଥ ମନର ଭାବ । ଅଳଙ୍କାର ଶାସ୍ତ୍ରରେ ଏହା ଆଠପ୍ରକାର, ନଅପ୍ରକାର ବା କାହାରି କାହାରି ମତରେ ଦଶ ପ୍ରକାର ବୋଲି କୁହାଯାଏ । ଏହି ପ୍ରକାର ଗଣନାରେ ଶୃଙ୍ଗାର, ବୀର, କରୁଣ ଅଦ୍ଭୁତ, ହାସ୍ୟ ଭୟାନକ, ବିଭତ୍ସ, ରୌଦ୍ର ଓ ଶାନ୍ତି, ପୁଣି ବାତ୍ସଲ୍ୟ । ଏହି ଗଣନାରେ ଶୃଙ୍ଗାର ପ୍ରଥମରେ ଥିବାରୁ ରସ ଅର୍ଥରେ ଶୃଙ୍ଗାର ରସ ମଧ୍ୟ ହୁଏ । ଏହି କାବ୍ୟର ବହୁତ ଛାନ୍ଦର ପ୍ରଥମରେ ରସ ଓ ରସିକ ଶବ୍ଦ ଯଥା—୩ୟ, ୪ର୍ଥ, ୮ମ, ୧୦ମ, ୧୩ଶ, ୧୪ଶ, ୩୨ଶ, ୩୩ଶ, ୩୫ଶ, ଏବଂ କେତେକର ଶେଷରେ ଯଥା ୪ର୍ଥ—ସେହି ଅର୍ଥରେ ବ୍ୟବହୃତ ହୋଇଅଛି । କାବ୍ୟ ମଧ୍ୟରେ ଅଧିକାଂଶ ସ୍ଥଳରେ ଶୃଙ୍ଗାର ଅର୍ଥରେ ରସ ଶବ୍ଦର ପ୍ରୟୋଗ ହୋଇ ଅଛି । ଏହି ରସ ଗୋଟିଏ କାବ୍ୟ ବା କବିତାର ଗୋଟିଏ ପ୍ରଧାନ ଅଙ୍ଗ । ଏପରିକି ସାହିତ୍ୟ ଦର୍ପଣ କାର ବିଶ୍ୱନାଥଙ୍କ ମତରେ ଏହାହିଁ କାବ୍ୟ ବା କବିତାର ଆତ୍ମା । 'ବାକ୍ୟଂ ରସାତ୍ମକଂ କାବ୍ୟଂ'—ତାଙ୍କ ମତରେ ରସାତ୍ମକ କାବ୍ୟ ହିଁ କବିତା । କାବ୍ୟ ପ୍ରକାଶ ମତେ ଏହି ରସ ମାନେ—ଶୃଙ୍ଗାର ହାସ୍ୟ କରୁଣ, ରୌଦ୍ର ବୀର ଭୟାନକା

ବିଭତ୍ସା ଭୂତ ସଙ୍ଗୌ ଚେତଷ୍ଟୌ ନାଟ୍ୟେ ରସାସ୍ମୃତାଃ
ଅପିଚ ନିର୍ବେଦ ସ୍ଥାୟୀ ଭାବୋଽସ୍ତି ଶାନ୍ତୋଽପି ନବମୋରସଃ

କେହି କେହି ବାତ୍ସଲ୍ୟରସ ବୋଲି ୧୦ମ ରସ ମଧ୍ୟ ଏଥିରେ ଯୋଗ କରନ୍ତି । ରତ୍ନାକର—ସମୁଦ୍ର; ଶୋଭ—ସୁନ୍ଦର;

୨—୫—କଟକ ( ନଗର ) [ଏଠାରେ ସିଂହଳ ଦ୍ୱୀପର ରାଜଧାନୀ] ଛଟକ ( ଶୋଭା) ଧନଦ କୁବେର [ ଦେବତା ମାନଙ୍କ ମଧ୍ୟରେ ଧନପତି ] ସେମାନଙ୍କ ଦୀନ ( ଦରିଦ ) ଏକା ( କେବଳ ) କର୍ଣ୍ଣରେ ଶୁଣାଅଛି—ସେମାନେ ଦରିଦ୍ର କେବେ

ଯେତେ କୋଟି ସୁବର୍ଣ୍ଣ ଯାହାକୁ ମିଳେ ତହିଁ,
ତେତେ କୋଟି କଳସ ସେ ମନ୍ଦିରେ ବସାଇ ଯେ । ୪ ।
ଗୋରଚନା ପ୍ରକାରେ ଯହିଁରେ ମୃଗମଦ,
ନିତି ଜୀର୍ଣ୍ଣ ବସନକୁ ବିକନ୍ତି ପୁଳିନ୍ଦ ଯେ । ୫ ।
କୁଙ୍କୁମ ଉକୁଟାଇ ହୁଅନ୍ତି ନାରୀ ଯହିଁ,
ହରିଦ୍ରାରେ ଆଦର କରିବେ କାହିଁ ପାଇଁ ଯେ । ୬ ।
ମାର୍ଗ ମାର୍ଜନେ ରଜ ନିକର ଆଣି ଯାଇ,
ରଜନୀକର ଆଣନ୍ତି ଶକଟରେ ବହି ଯେ । ୭ ।
ହରି-ତକି ପାଇଁ ତିଆରିଲେ ବୈଦ୍ୟକୁଳ,
ଘର ବାହେ ଘରରେ ଆଣନ୍ତି ଜାତିଫଳ ଯେ । ୮ ।

---

ଦେଖିନାହାନ୍ତି । ଦରିଦ୍ର କଥାଟାକୁ କାନରେ ଶୁଣିଛନ୍ତି ମାତ୍ର । ମନ୍ଦିରେ–ଘରେ, କୋଟି ପ୍ରମାଣ ସୁନା ହେଲେ ଗୋଟିଏ ଗୋଟିଏ ମାଠିଆରେ ସେମାନେ ରଖନ୍ତି ।

ଗୋରଚନା–କୌଣସି କୌଣସି ଗୋରୁ ମୁଣ୍ଡରୁ ଏକ ପ୍ରକାର ହଳଦିଆ ଜିନିଷ ବାହାରେ । ତାକୁ ଘୋରି ଚିତା କରନ୍ତି । ମୃଗମଦ–କସ୍ତୁରୀ । ଅର୍ଥାତ ବହୁମୂଲ୍ୟ କସ୍ତୂରୀ ସେଠାରେ ପୁଳିନ୍ଦ ( ଶବର ) ମାନେ ସାମାନ୍ୟ ଗୋରଚନା ପରି ନିତି ଜୀର୍ଣ୍ଣ ବସନକୁ ( ଚିରାଲୁଗା ) ନେଇ ବିକି ଦିଅନ୍ତି ।

୬–ବହୁ ମୂଲ୍ୟ କୁଙ୍କୁମ ବହୁତ ଥିବାରୁ ନାରୀମାନେ ସେହି କୁଙ୍କୁମକୁଇ ଉକୁଟାଇହୁଅନ୍ତି ( ଦେହରେ ଲଗାଇ ସୁନ୍ଦର ହୁଅନ୍ତି ) । ସାମାନ୍ୟ ହରିଦ୍ରା ( ହଳଦୀ ) ରେ କାହିଁ ପାଇଁ ବା ଆଦର କରିବେ ।

୭–[ ଲୋକେ ] ରଜନି କର ( ଧୂଳିସବୁ ) ଆଣିବାକୁ ଯାଇ ମାର୍ଗ ମାର୍ଜନେ ( ବାଟ ଓଳାଇ ) ରଜନୀ କର (କର୍ପୂର) ଶଗଡ଼ରେ ବୋହି ଆଣନ୍ତି । ଅର୍ଥାତ ସେଠାରେ ବାଟରେ କର୍ପୂର ଗୁଣ୍ଡ ବହୁତ ପଡ଼ିଥାଏ ।

୮–ହରିତକୀ–ହରିଡ଼ା; ତିଆରିଲେ–ବତାଇଲେ; ଜାତୀଫଳ–ଜାଇଫଳ;

୯।୧୦–ଶବରୀ (ଶଉରୁଣୀ) ସର୍ବରୀ (ରାତି) ଶେଷରୁ [ପାହିଲାବେଳକୁ] ଅରଣ୍ୟ (ବଣ)କୁ ଯାଇ ହରି (ସିଂହ) ବିଦାରିତ (ଚିରି ପକାଇଥିବା) କରି (ହାତୀ) ମୋତି (ମୁକ୍ତା) ପଡ଼ିଥାଏ । (ସେହି ମୁକ୍ତାକୁ) ବଦରୀ (ବରକୋଳି) ବୋଲି

ଶବରୀ ଶର୍ବରୀ ଶେଷୁଁ ଅରଣ୍ୟକୁ ଯାଉଛ,
ହରି-ବିଦାରିତ କରି-ମୋତି ପଡ଼ି ଥାଇ ଯେ । ୯ ।
ବଦରୀ ଆଦରେ ନେଇ ସରୋବରେ ଥୋଇ,
ବିକା ତା' ନ ଯିବ ବୋଲି ଆସନ୍ତି ପକାଇ ଯେ । ୧୦ ।
ଖଣ୍ଡପରଶୁ ଧାରଣ ପୁର-ପରିଷ୍କାରେ,
ନ ଦହନ୍ତି ଶାମୁକା ମୁକୁତା ବିହୀନରେ ଯେ । ୧୧ ।
ଜଉଁ ହେମୁ କମନୀୟ କମ କରେ ହୋଇ,
ସେ ଗ୍ରହଣେ ବାରବାନେ ଦୃକପାତ ନାହିଁ ଯେ । ୧୨ ।
ଶିଶୁକାଳରୁ ମେଧାବୀ ମଦନ ଶଳାକା,
ଭକ୍ଷନ୍ତି ଲବଙ୍ଗ ନାଗବଲ୍ଲୀ ଦଳ ଏକା ଯେ । ୧୩ ।
ଏଣୁ କଣ୍ଠ ରୋଧ ବାଧହୀନ ଦୀବ୍ୟତାନ,
ଶିଖୁ ବିଷ୍ଣୁ ଚରିତ କରନ୍ତି ଭ୍ରମି ଗାନ ଯେ । ୧୪ ।

---

ପାଠାନ୍ତର—୩, ୭ । *, ଗ୍ରହଣ । *, ଶିଶୁକାଳୁ ମେଧାବନ୍ତା । ),

---

**ଆଦରରେ** ନେଇ **ସରୋବରରେ** (ପୋଖରୀରେ) ଧୋଇ [ଦେଖନ୍ତି ଯେ ବରକୋଳି ନୁହେଁ] ତେଣୁ ତାହା ବିକା ନଯିବ ବୋଲି ପକାଇ (ଫିଙ୍ଗିଦେଇ) ଆସନ୍ତି । ହାତୀ ମୁଣ୍ଡରେ ମୁକ୍ତା ଥାଏ । ସିଂହ ହାତୀ ମୁଣ୍ଡ ଉପରେ ବସି ସେହି ହାତୀମୁଣ୍ଡ (କରୀକୁମ୍ଭ) ଚିରି ହାତୀକୁ ମାଇଲା ବେଳେ ସେହି ମୁଣ୍ଡରୁ ମୁକ୍ତା ସବୁ ଗଳି ପଡ଼େ ବୋଲି ପ୍ରବାଦ ଅଛି ।

୧୧— **ଖଣ୍ଡ ପରଶୁ** (ଚୂନ କାମର କରଣୀ) ଧାରଣ (ତାକୁ ଯେ ଧରେ) ଅର୍ଥାତ୍ ଚୂନ କାମ କରୁଥିବା ଗଜ, ପୁର (ଘର) ପରିଷ୍କାରେ (ସଫା କରିବା ପାଇଁ) [ଚୂନ ତିଆର କରିବାକୁ] ଶାମୁକା ଭିତରୁ ମୁକୁତା ନ କାଢ଼ି ପୋଡ଼ିଦିଏ । ଅର୍ଥାତ୍ ମୁକ୍ତା ଏତେ ବେଶି ଯେ ତାକୁ ଖାତିରି ନଥାଏ ।

୧୨—ଯେଉଁ ହେମ (ସୁନା) (ଏତେ ନରମ ଯେ ) କରେ ( ହାତରେ ] ବିନାହତିଆରରେ କମନୀୟ [ସୁନ୍ଦର] କମ୍ ( ଅଳଙ୍କାର ) ହୁଏ । ସେ ଗ୍ରହଣେ [ତାକୁ ପାଇବାରୁ) ବାରବାନେ ( ଭେଳମିଶା ସୁନାରେ ) ଦୃକ୍‌ପାତ ( ଖାତିରି ] ନାହିଁ । ଖାଣ୍ଟି ସୁନା ବଡ଼ ନରମ ।

୧୩ । ୧୪—ମେଧାବୀ ( ଶୁଆ ] ମଦନ ଶଳାକା [ସାରି] ଶିଶୁ କାଳରୁ (ପିଲାଦିନରୁ ଏକା ( କେବଳ ] ଲବଙ୍ଗ ଓ ନାଗବଲ୍ଲୀ ଦଳ ( ପାନ ) ଖାଆନ୍ତି । ଏଣୁ କଣ୍ଠ-ରୋଧ-ବାଧହୀନ ( ସ୍ୱରା ନଫାଟିବା ରୂପ ବାଧା ନ ଥିବା ] ଦିବ୍ୟତାନ (ସୁନ୍ଦର

ଗଜ, ହୟ, ଉପଜୀବୀ ଭ୍ରମନ୍ତି କେଦାରେ,
ମାରଗ ଜ୍ୟୋତିକି କରି ଜବସମାନରେ[୬] ଯେ । ୧୫ ।
ବାମ କର ଗ୍ରହଣୁଁ ମଣନ୍ତି ଏହୁ ମିଛ,
ଭବନ୍ତି ଏହୁ ପଥରେ ପଥରେକ ସ୍ୱଚ୍ଛ ଯେ । ୧୬ ।
ବଜ୍ର ଜାତି ବିନା ଗଜ ନ ଆଣନ୍ତି ବନ୍ଧୁ,
ଅଶ୍ୱ ଶାଳେ ବନ୍ଧା ନୁହେ ସିନ୍ଧୁ ଜାତି ବିନୁ ଯେ । ୧୭ ।
ମୂଷିକରେ ନେପାଳୀ ପାଳନା ସୁଆଦରେ,
ଗନ୍ଧ ମାର୍ଜାର ପୋଷିତ ବିଡ଼ାଳ ପଦରେ ଯେ । ୧୮ ।
ମାଳି ଆଳି ଦକ୍ଷିଣା ବର୍ତ୍ତକ ବିନା କମ୍ବୁ,
ନ ଘେନନ୍ତି ଦେବାକୁ ହର ଚରଣେ ଅମ୍ବୁ ଯେ । ୧୯ ।
ଏକ ମୁଖୀ ରୁଦ୍ରାକ୍ଷ ଗ୍ରହଣ ଯୋଗୀ କରେ,
ବାଳକେ କିଣନ୍ତି ଦ୍ରାକ୍ଷା କେବଳ କୋଳିରେ ଯେ । ୨୦ ।

---

।ପାଠାନ୍ତର—୬,ଯବ ସମାନରେ ।

---

ସ୍ୱରରେ ) ବିଷ୍ଣୁ ଚରିତ୍ର (' କୃଷ୍ଣ ଦାତା କୃଷ୍ଣ କରତା, କୃଷ୍ଣ କୃଷ୍ଣ ରାମ ରାମ'' ଇତ୍ୟାଦି ] ଶିଖି, ଭ୍ରମି ( ବୁଲି ବୁଲି ) ଗାଆନ୍ତି ଅର୍ଥାତ ଘରେ ପୋଷି ତାଙ୍କୁ କେହି ଖାଇବାକୁ ଦେଇ ଶିଖାଏ ନାହିଁ । ବଣରେ ପାନ ଲବଙ୍ଗ ଖାଇ କଣ୍ଠସ୍ୱର ଫିଟି ଯିବାରୁ ସେମାନେ ଯେପରି କି ମନକୁ ବିଷ୍ଣୁ ଚରିତି ଗାଇ ବୁଲନ୍ତି ।

୧୫।୧୬–ଗଜ (ହାତୀ) ହୟ (ଘୋଡ଼ା) ଉପଜୀବୀ (ରଖିବା ଲୋକେ) [ଅର୍ଥାତ୍ ବେପାରୀ, ଶଇଶ ପ୍ରଭୃତି] (ଘାସ ପାଇଁ) ମାରଗ– (ଶାଗୁଆ ବର୍ଣ୍ଣ ମଣି) ଜ୍ୟୋତିକି (ଝଟକକୁ) ଜବସ (ଘାସ) ମନରେ କରି (ବିଚାରି) କେଦାର (କିଆରିରେ, ପଡ଼ିଆରେ) ଭ୍ରମନ୍ତି (ଭୁଲ କରନ୍ତି) (ମାତ୍ର)–ଘାସ କାଟିବା ପାଇଁ– ବାମ କରେ ଗ୍ରହଣୁ (ଡେବିରି ହାତ ବଢ଼ାଇ ଗୋଛା ଧରି ପକାଇବା ବେଳକୁ) ଏହୁ ମିଛ ବୋଲି ମଣନ୍ତି (ବୁଝନ୍ତି) [ଭବନ୍ତି ଏହା ଘାସ ନୁହେ] ଏହା ପଥରେ (ବାଟରେ) ଏକ ସ୍ୱଚ୍ଛ ପଥର ।

୧୭ ଠାରୁ ୨୦– ବଜ୍ରଜାତି ହାତୀ ଓ ସିନ୍ଧୁ ଜାତି ଘୋଡ଼ା ସବୁଠାରୁ ଭଲ । ସେହିପରି ନେପାଳୀ ମୂଷା ମୂଷା ଭିତରେ ଓ ଗନ୍ଧ ମାର୍ଜାର (ଶିଆଳିଆପତନି) ବିରାଡ଼ି ଭିତରେ, ଦକ୍ଷିଣାବର୍ତ୍ତକ (ଦକ୍ଷିଣ ଆଡ଼କୁ ମୋଡ଼ ଥିବା) କମ୍ବୁ (ଶଙ୍ଖ), ଶଙ୍ଖ ଭିତରେ ଓ ଏକମୁଖୀ ରୁଦ୍ରାକ୍ଷ (ଗୋଟିଏ ଆଖିଥିବା ରୁଦ୍ରାକ୍ଷ ଭିତରେ, ଦ୍ରାକ୍ଷା (ଏକ ପ୍ରକାର କୋଳି) କୋଳି ଭିତରେଶ୍ରେଷ୍ଠ । ସୁଆଦରେ ( ଅତି ସ୍ନେହରେ ) ମାଳି ଆଳି (ମାଳି ସେବକ ମାନେ) ହରଚରଣେ (ଶିବଙ୍କ ପାଦରେ) ଅମ୍ବୁ (ପାଣି) ।

ଖଡଗ ଚର୍ମ ଆଡେଣୀ ଧାରଣର ପାଇଁ,
ଖଡଗ ଚର୍ମରୁ ଆନ ଚର୍ମ ନ ଯୋଗାଇ ଯେ । ୨୧ ।
ଜହିଁ ବହୁ ଜାତି ବଜ୍ର କବଚ ମିଳଇ,
ବଜ୍ର କବଚରେ ଅନୁରାଗ ଥିବ କାହିଁ ଯେ । ୨୨ ।
ପଦ୍ମିନୀ ଜନମ ସ୍ଥାନ ପଦ୍ମା କର ପୁରୀ
ଆନ ଜାତି ନାରୀ ଏ ଜହିଁରେ ପରିଗ୍ରହୀ ଯେ । ୨୩ ।
କିନ୍ନରୀ ଗୀତ ଶ୍ରବଣ ଯହିଁ ନିତି ନିତି,
ମହୀ ମଧ୍ୟେ ସ୍ୱର୍ଗ ସେ ହୋଇଛି ଉତ୍‌ପତି ଯେ । ୨୪ ।
ସେ ନଗର ନରବର ନାମ ରନେଶ୍ୱର,
ବିଦ୍ୟୁଲତା ନାମେ ପଟ୍ଟ ମହିଷୀ ତାହାର ଯେ । ୨୫ ।
ପଞ୍ଚଶର ସମ ପଞ୍ଚସୁତ କଲା ଜାତ,
ଦିବ୍ୟ କୁମାରୀ ପ୍ରାପତେ କଲା ନାନା ବ୍ରତ ଯେ ।୨୬ ।
ଚଇତ୍ର ମଙ୍ଗଳ ବାରେ ଆରମ୍ଭି ପୂଜାକୁ,
ପଞ୍ଚମ ପାଳିରେ ତୋଷ କଲା ଗିରିଜାକୁ ଯେ । ୨୭ ।

ପାଠାନ୍ତର— ୭, ପଦ ।

୨୧– ଖଡଗ ଚର୍ମ ଆଡେଣୀ (ଖଣ୍ଡାରେ ହାଣିଲା ବେଳେ ଦେଖାଇ ଦିଆଯାଏ ଯେଉଁ ଚମର ଆଡେଣୀ ବା ଢାଲ) [ସେଥିପାଇଁ] ଖଡଗ ଚର୍ମ–ଖଡ୍‌ଗଚର୍ମ–(ଗଣ୍ଡାଚମ) (ପ୍ରସିଦ୍ଧ ହେବାରୁ) ସେହି ଗଣ୍ଡା ଚମ ବ୍ୟତୀତ ଅନ୍ୟ ଚର୍ମ ଯୋଗାଏ ନାହିଁ (ସୁଖ ଲାଗେ ନାହିଁ) ।
୨୨– ବହୁ ଜାତି ବଜ୍ର କବଚ (ବହୁ ଜାତି ହୀରାରେ ତିଆରି ହୋଇଥିବା ସାଞ୍ଜୁ) ମିଳିବାରୁ (ସାଧାରଣ ବଜ୍ର କବଚ ବା ଟାଣ ସାଞ୍ଜୁରେ) ଅନୁରାଗ (ଆଦର) ନ ଥାଏ । ବହୁ ଜାତିର ହୀରା ଶ୍ରେଷ୍ଠ ହୀରା ।
୨୩– ପଦ୍ମା କର (ପଦ୍ମା-ଲକ୍ଷ୍ମୀ, ତାଙ୍କର ଆକର–ସ୍ଥାନ) ପୁର (ନଗରୀ) ଏପରି ଯେ ସିଂହଳ ସେ ପଦ୍ମିନୀ (ଶ୍ରେଷ୍ଠନାରୀ)ଙ୍କର ଜନ୍ମସ୍ଥାନ । ସେଠାରେ ଅନ୍ୟ ଜାତି ଶଙ୍ଖିନୀ, ଚିତ୍ରିଣୀ, ହସ୍ତିନୀ ଜାତି ନାରୀମାନେ ପରିଗ୍ରହୀ (ଗ୍ରକିରିଆଣୀ) ।
୨୪– କିନ୍ନରୀ (୧ମ ଛାନ୍ଦ ୩୩ ପଦ ଟୀକା ଦେଖ ।) ସେହି ମାନଙ୍କର ଗୀତ ନିତି ନିତି ଶୁଣା ଯାଉ ଥିବାରୁ ସିଂହଳ ମହୀ ମଧ୍ୟେ (ମର୍ତ୍ତ୍ୟ ମଣ୍ଡଳରେ) ସ୍ୱର୍ଗ ପରି ଉତ୍‌ପତି (ଜାତ) ହୋଇଛି ।
୨୫ ଠାରୁ ୨୭– ନରବର (ରାଜା) ପଟ୍ଟ ମହିଷୀ (ପାଟରାଣୀ) ପଞ୍ଚଶରସମ (କନ୍ଦର୍ପ ପରି ସୁନ୍ଦର), ପଞ୍ଚସୁତ ( ପାଞ୍ଚ ପୁଅ ) ଦିବ୍ୟ କୁମାରୀ ( ସୁନ୍ଦର ଝିଅ ), ଗିରିଜା ( ପାର୍ବତୀ) ଙ୍କର ଚୈତ୍ର ମଙ୍ଗଳବାର ବ୍ରତ ପ୍ରସିଦ୍ଧ । ଚୈତ୍ରରେ ପାଞ୍ଚ ମଙ୍ଗଳବାର ପଡ଼ିଲେ ଭରି ଭଲ ହୁଏ ।

ବାଞ୍ଛାବତୀ ପିଣ୍ଡଥିଲା ଅଗମ୍ୟ କାନନ,
ଆପଣେ ଅମ୍ବିକା ଯାଇ କରି ସଂଜୀବନ ଯେ । ୨୮ ।
ବୋଇଲେ ସୁନ୍ଦରୀ ହୁଅ ତୁ ରସାଳ ଫଳେ,
ଆଜ୍ଞା ଅବଧାରିଲା ସେ ରମା ସେହି କାଳେ ଯେ । ୨୯ ।
କରେ ଘେନି ସ୍ୱପ୍ନ ବେଳେ ମହାଦେବୀ କରେ,
ଦେଇ ଗଲେ ସେ ଆମ୍ବକୁ ପାର୍ବତୀ ସତ୍ୱରେ ଯେ । ୩୦ ।
ଚେତି ଯୁବତୀ ଦେଖିଲା କରେ ଅଛି ଚୂତ,
ତାହା ଭକ୍ଷି ମୃଗାକ୍ଷୀ ନାୟକ ସଙ୍ଗେ ରତ ଯେ । ୩୧ ।
ଶୁଭ ବେଳେ ଗର୍ଭ ଦର୍ଭହାସୀ ପିକ ଭଷୀ,
କେତେ ଦିନେ ଶୋଭା ତାର ଆନ ଆନ ଦିଶି ଯେ । ୩୨ ।
କାନ୍ତି ସୁବର୍ଣ୍ଣେ ଦୋହଦ ପାରଦ ମିଶିଲା,
ରଜତ ପିତୁଳା ତୁଲା ଅବଳା ଦିଶିଲା ଯେ । ୩୩ ।

---

୨୮।୨୯—ଅଗମ୍ୟ [ଅଗମ୍ୟ ଅଗନି ବନସ୍ତ] -ପୂର୍ବ ଛାନ୍ଦରେ ବାଞ୍ଛାବତୀର ପିଣ୍ଡ [ ଦେହ ] ବଣରେ ପଡ଼ିଥିବା କଥା କୁହା ଯାଇଛି । ଆପଣେ ନିଜେ ଅମ୍ବିକା ପାର୍ବତୀ) ସଞ୍ଜୀବନ କଲେ (ଜିଆଇଲେ)-ତାକୁ କହିଲେ ହେ ସୁନ୍ଦରୀ, ତୁ ରସାଳ ଫଳେ (ଆମ୍ବଟିଏ) ହୁଅ । ଆଜ୍ଞା ଅବଧାରିଲା ( ଆଦେଶ ମାନିଲା ) ରମା ନାରୀ ଏଠାରେ ବାଞ୍ଛାବତୀ ।

୩୦—ପାର୍ବତୀ ସେ ଆମ୍ବକୁ ହାତରେ ଘେନି (ଧରି) ସ୍ୱପ୍ନ ବେଳେ (ସ୍ୱପ୍ନ ଘୋଟିଥିବା ବେଳେ)ସ୍ୱପ୍ନରେ ମହାଦେବୀ (ପାଟରାଣୀ) ହାତରେ, ସତ୍ୱରେ [ ସେହିକ୍ଷଣି ] ଦେଇ ଗଲେ ।

୩୧—ମୃଗାକ୍ଷୀ (ମୃଗ ଆଖିପରି ଆଖି ଯାହାର) -ଏହିପରି ଯେ ପାଟରାଣୀ, ନାୟକ—ସ୍ୱାମୀ (ରଜା ରନେଶ୍ୱର) ।

୩୨—୪୦—ଦର୍ଭହାସୀ—(ଦର୍ଭ-ଘାସ, ଘାସର ଧଳା ଫୁଲ ପରି ହାସ ଯାହାର) ପିକ ଭଷୀ ( କୋକିଳର ଶବ୍ଦ ପରି ସୁନ୍ଦର କଥା ଯାହାର ) ସେ ଗର୍ଭ ହେଲା, ତେଣୁ କ୍ରମେ ଭିନ୍ନ ଭିନ୍ନ ଶୋଭା ବାହାରିଲା । ଯଥା—ସୁବର୍ଣ୍ଣପରି ଯେଉଁ ଦେହର କାନ୍ତି ସେଥିରେ ଦୋହଦ (ଗର୍ଭ) ପାରଦ ମିଶିଲା ପରି ହେଲା । ତେଣୁ ଅବଳା (ସ୍ତ୍ରୀ) ରଜତ ( ରୁପା )ପିତୁଳା ତୁଲା (ସମାନ) [ ଫିକା ଦିଶିଲା] [ପେଟ ବଢ଼ିବାରୁ] ରେଜ ସଂଖ୍ୟା (ହାତ ରେଜ ଅର୍ଥାତ ପଂଚ ମୁଠାରେ) [ସମ୍ଭାଳିବା ଭଳି ସରୁ] କଟୀ

କ୍ଷୀଣ ଯାଇ ପୀନ ହେଲା ଗେକେ ସଖ୍ୟା କଟୀ,
ଖସି ନିତମ୍ବ ବିମ୍ବକୁ ଆଶ୍ରେ କଲା ଶାଟୀ ଯେ । ୩୪ ।
ବେଶରେ ଆବେଶ ହେବା କ୍ରମଶେ ତୁଟିଲା,
ଆହାରେ ବିମନା ହୋଇ ଗମନେ ଫୁଟିଲା ଯେ । ୩୫ ।
ବାହାର ହୋଇଲା ପତି ବିହାରଗ୍ଧ ମତି,
ମହିଳା ମହୀ ଶୟନେ ବଢାଇଲା ପ୍ରୀତି ଯେ । ୩୬ ।
ଦିବ୍ୟ ରୁଚିକି ରୁଚିଲା ମୃତ୍ତିକା ଭକ୍ଷଣ,
ଚଞ୍ଚଳ ଚଳନ ମାନ ଛାଡ଼ିଲା ଇକ୍ଷଣ ଯେ । ୩୭ ।
ପୃଥୁ ରୋମା ନୟନୀ ଉଦର ପୃଥୁ ତର,
ମହା ଶୋଭିନୀ ନାଭି ଲୋଉଟିଲା ପ୍ରକାର ଯେ । ୩୮ ।
ନିଷ୍ଠୁର ଦିଶିଲା ଓଷ୍ଠ ତୁଟିଯାଇ ରଙ୍ଗ,
ଘନ ଘନ ଜୃମ୍ଭା ପୁନଃ ପୁନଃ ମୋଡ଼େ ଅଙ୍ଗ ଯେ । ୩୯ ।
ଶ୍ୟାମଳ କୋମଳ ଅଙ୍ଗୀ ସ୍ତନ ଅଗ୍ର ବହି,
ହରଧର ଶୃଙ୍ଗେ ଜଳଧର ପଘ ଶୋହି ଯେ । ୪୦ ।

---

'ଅଣ୍ଟା)ର କ୍ଷୀଣ (ସରୁଆ ଭବ) ଯାଇ (ସେ ଅଣ୍ଟା) ପୀନ (ମୋଟା) ହେଲା । ତେଣୁ ଶାଟୀ (ଶାଢ଼ି) [ପେଟରୁ ଖସି] ନିତମ୍ବ ବିମ୍ବ (ପିଚ୍ଛ) [ଉପରକୁ] ଆଶ୍ରା କଲା । [ଗର୍ଭିଣୀର] ବେଶରେ ଆବେଶ ହେବା (ମଣ୍ଡି ହେବା) କ୍ରମେ ତୁଟିଲା= ସେ ଆହାରେ (ଖାଇବାରେ) ବିମନା ହୋଇ ଗମନେ (ଚାଲିବାରେ) ଫୁଟିଲା (ହାଲିଆ ହେଲା, କଷ୍ଟ ମଣିଲା) ତାରମତି(ମନ) ପତି [ସଙ୍ଗ] ବିହାରରୁ ବାହାର (ଅଲଗା) ହେଲା । ମହିଳା (ସେ ଭଦ୍ରନାରୀ) ମହୀ ଶୟନେ (ମାଟିରେ ଶୋଇବାରେ) ପ୍ରୀତି (ଆଦର) ବଢାଇଲା; ଦିବ୍ୟ ରୁଚି କୁ (ଉତ୍ତମ ପଦାର୍ଥ ରୁଚିହୁଏ– ସୁଖଲଗେ ଯାହାଙ୍କୁ ସେହି ରଣୀଙ୍କୁ) ମୃତ୍ତିକା ଭକ୍ଷଣ (ମାଟିଖାଇବା) ରୁଚିଲା [ତାର] ଇକ୍ଷଣ (ଆଖି) [କଟାକ୍ଷ ଠାର ପ୍ରଭୃତି] ଚଞ୍ଚଳ ଚଳନ ମାନ ଛାଡ଼ିଲା । କ୍ରମେ ପୃଥୁରୋମା ନୟନୀ (ମୀନ ନେତ୍ରୀ)ର ଉଦରୁ ପୃଥୁତର (ବେଶି ମୋଟା) ହେଲା । ରଙ୍ଗ (ତେଜ ବା ରକ୍ତିମା) ତୁଟି ଯାଇ (କମିଯାଇ) ଓଠ ନିଷ୍ଠୁର (ଖରସଣିଆ) ଦିଶିଲା । ଏବେ ସେ ଘନ ଘନ (ବାରମ୍ବାର) ଜୃମ୍ଭା (ହାଇ) [ମାରି] ପନଃ ପୁନଃ ଅଙ୍ଗ (ଦେହ) ମୋଡ଼େ (ମୋଡ଼ିହୁଏ କୋମଳାଙ୍ଗୀ ସ୍ତନ ଅଗ୍ର ଶ୍ୟାମଳ ବହି (ବେଶି କାଳିଆ ହୋଇ ଯିବାରୁ) ହର ଧର ଶୃଙ୍ଗେ (ଶିବ ପର୍ବତ [ତୁଷାର ଶୁକ୍ଳ] କୈଳାସ ଶିଖରରେ) [କାଳିଆ] ଜଳ ଧର (ମେଘ) ପରି ଦିଶିଲା । ଗର୍ଭ ହେଲେ ଏହିପରି ଅବସ୍ଥାମାନ ହୁଏ ।

ଦଶମାସ ଶେଷେ ରସବତୀ ଅଶକତ,
ଉତ୍ତମ ଲଗ୍ନ ମଗ୍ନରେ ସୁତା କଲା ଜାତ ଯେ । ୪୧ ।
କବି ବିଗ୍ରରେ କି ଗ୍ରରିମୁଖ ସଙ୍ଗେବାଦ,
ଆଚରି ମଦନ ମହୀପତି ବହି ମଦ ଯେ । ୪୨ ।
ଉଦର ଶୋଭ ଉଦଧି ମନ୍ଥିଲା ଉଦ୍‌ବେଗେ,
ଉରଜ ମନ୍ଦରୁଁ ବଳି ସର୍ପରଜ୍ଜୁ ଯୋଗେ ଯେ । ୪୩ ।
ତହିଁରୁ ଜାତ ଜଗତ ମୋହିନୀ ସ୍ୱଭବେ,
ଅବଶ୍ୟ ହୋଇବେ ହର ତପୋଭଂଗ ଏବେ ଯେ । ୪୪ ।
ଧାତ୍ରୀ ଧରିତ୍ରୀ ଭୂଷାକୁ ନାଭି ଛେଦ କରି,
ଗଣକ ଗଣ ବସିବା ଜାତକ ବିଗ୍ରରି ଯେ । ୪୫ ।
ସୂତିକା ଗୃହର ଯେତେ ବିଧି ଶେଷ କଲେ,
ଦଶବିଂଶ ଦିନେ ଦୋଳି ଶୟନ ବିହିଲେ ଯେ । ୪୬ ।

---

୪୧—ସେହି ରସବତୀ (ନାରୀ) ଦଶମାସ ଶେଷରେ ଅଶକତ ହୋଇ ( ଆଉ ସମ୍ଭାଳି ନପାରି) ଉତ୍ତମ ଲଗ୍ନ ମଗ୍ନରେ (ଭଲ ଲଗ୍ନରେ ସମୟ ବା ନକ୍ଷତ୍ର ବୁଡ଼ିଥିଲା ବେଳେ-ରହିଥିଲା ବେଳେ) ସୁତା (କନ୍ୟା) ଜାତ କଲା ।

୪୨—୪୪—[ଏଥକୁ] କବି ବିଗ୍ରରେ କି ଗ୍ରରିମୁଖ (ବ୍ରହ୍ମା) ସଙ୍ଗେ ବାଦ କରି ମଦନ ମହୀପତି (କନ୍ଦର୍ପ ରୂପ ରଜା) ମଦ ବହି (ଗର୍ବ କରି) ।

୪୩—୪୪—[ଦେବତା ମାନଙ୍କ ସମୁଦ୍ର ମନ୍ଥନ ଅନୁକରଣ କରିବାର ଉତପ୍ରେକ୍ଷା][କିପରି] [ଗର୍ଭିଣୀର] ଉଦର ଶୋଭ ରୂପ ଉଦଧି (ସମୁଦ୍ର)କୁ ଉଦ୍‌ବେଗରେ ମନ୍ଥିଲା । ସମୁଦ୍ର ମନ୍ଥନରେ ମନ୍ଦର ଖୁଆ ଓ ବାସୁକୀ ସାପ ଦଉଡ଼ି ହୋଇଥିଲା । ସେଥିରୁ ବାହାରି ଥିବା ଅମୃତକୁ ବିଷ୍ଣୁ ମୋହିନୀ ରୂପ ଧରି ମହାଦେବଙ୍କୁ ଭୁଲାଇଥିଲେ । [ଏଠାରେ ଗର୍ଭିଣୀର] ଉରଜ (ସ୍ତନ) ମନ୍ଦର ହେଲା । ପେଟର ତିନି ବଳି ସାପ ପରି ଦଉଡ଼ି ହେଲା । କନ୍ୟା ରୂପରେ ମୋହିନୀ ବାହାରିଲା । ସେ ଏଡ଼େ ସୁନ୍ଦର ଯେ ତାକୁ ଦେଖିଲେ ଅବଶ୍ୟ (ନିଶ୍ଚୟ) ହର (ଶିବ) ତପୋଭଙ୍ଗ ( ତପସ୍ୟାଭ୍ରଷ୍ଟ ) ହେବେ ବୋଲି ମନେ ହୁଏ ।

୪୫—୪୬—ଧାତ୍ରୀ (ଧାଈ) ଧରିତ୍ରୀ ଭୂଷା (ମହୀ ଶୋଭି) ଗଣକ ( ଜ୍ୟୋତିଷ ) ଜାତକ (ଜନ୍ମପତ୍ରିକା-କୋଷ୍ଠି) ସୂତିକା ଗୃହ (ଅନ୍ତୁଡ଼ିଶାଳ) ଦଶବିଂଶ ଦିନେ (ମାସ ଶେଷଦିନ)ଦଶ+ବିଂଶ = ତିରିଶଦିନ।

ଆସିଥିଲେ ବ୍ରହ୍ମଗୌରୀ ଶୋଭ ଗଣି ଚାହିଁ,
ବିଚାରିଲେ କେତେ କଳ୍ପ ଶ୍ରମ କଲା ବିହି ଯେ । ୪୭ ।
ମୁଖ ହେବ ଏମନ୍ତ ବିଚାରି ପଦ୍ମ ବିଧୁ,
ହସ୍ତ ବଳା କରି ଆଗୁଁ ଗଢ଼ି ଥିଲା ସାଧୁ ଯେ । ୪୮ ।
ତହୁଁ ବାସ ଆହ୍ଲାଦ ଦର୍ପଣରୁ ଝଳି,
ଲହରୀରୁ କୁଟିଳ ଅଞ୍ଜନ ପୁଞ୍ଜୁକାଳୀ ଯେ । ୪୯ ।
କୁରଙ୍ଗରୁ ତରଙ୍ଗ ବିଦ୍ରୁମୁ ରଙ୍ଗହରି,
ଲବଣୀ ଶିରିଷରୁ କୋମଳ ବଳେ ଜୁରି ହେ । ୫୦ ।
ସୁବର୍ଣ୍ଣର ବର୍ଣ୍ଣ ଗଜହଂସ ଠାରୁ ଗତି,
ଏ ରୂପେ ଉପମା ବର୍ଗ ଯେମନ୍ତ ଅଛନ୍ତି ଯେ । ୫୧ ।
ବିହି ସବୁ ଠାରୁ ସାର ସାର ଭଗ ଆଣି,
ପୂରଣ ପ୍ରତିମା ପରି ରଚିଲା ରମଣୀ ଯେ । ୫୨ ।
କବି ଯେତେ ଥିଲେ ସାଉକାର ତା'ନ କଲେ,
ବିଧାତା ବିଧାନୀ କାହୁଁ ହେବ ଏ ବୋଇଲେ ଯେ । ୫୩ ।

---

ପାଠାନ୍ତର— ୮, ଫୁରନ୍ତି । ୫୧ ପଦ—ଗଜହଂସ ଠାରୁ ଚାଲି ।

---

୪୭—୫୫—ବ୍ରହ୍ମଗୌରୀ କନ୍ୟାକୁ ଦୋଳି ଶୟନରେ ଦେଖି ବିଚାରିଲେ କି, ଆହା ! କେତେ କଳ୍ପ (ସତ୍ୟ ତ୍ରେତା, ଦ୍ୱାପର, କଳି-ଏ ଚାରିଯୁଗ ହଜାରେ ଥର ଲେଉଟିଲେ ଏକ କଳ୍ପ ହୁଏ) । ଏ କନ୍ୟାକୁ ଗଢ଼ିବାକୁ ବିହି (ବିଧାତା) ଶ୍ରମ କରି ନ ଥିବ—କାହିଁକିନା ଏହାରି ମୁଖ ହେବ ବୋଲି ବିଚାରି ଆଗରୁ ପଦ୍ମଫୁଲ ଓ ବିଧୁ (ଚନ୍ଦ୍ର) ଦୁହିଁଙ୍କୁ ହସ୍ତବଳା (ହାତବଳା-ଶିଳ୍ପରେ ହାତର ଅଭ୍ୟାସ କରାଇବାପାଇଁ ଯାହାସବୁ କରାଯାଏ) କରି ସାଧୁ (ସୁନ୍ଦର ଭାବରେ) ଗଢ଼ିଥିଲା । ତହୁଁ ବାସ ଆହ୍ଲାଦ ( ପଦ୍ମରୁ ବାସ ଓ ଚନ୍ଦ୍ରରୁ ଆହ୍ଲାଦ) ପୁଣି ଦର୍ପଣରୁ ଝଳି ତେଜ (ଉଜ୍ଜ୍ୱଳତା)—ଏ ସବୁ ମୁଖ ପାଇଁ ଦରକାର; ଲହରିରୁ କୁଟିଳ (କୁଞ୍ଚୁ କୁଞ୍ଚିଆ ଭାବ ) ଅଞ୍ଜନ ପୁଞ୍ଜୁ ( ଘଡ଼ି ଅନ୍ଧାରରୁ ବା କଜ୍ଜଳରୁ) କାଳି (କାଳିମା)—ଆଣି ତାର ବାଳ ତିଆରି କଲା—କୁରଙ୍ଗରୁ (ମୃଗରୁ) ତରଙ୍ଗ (ଚଞ୍ଚଳତା) ବିଦ୍ରୁମୁ (ପୋହଳା ବା କଅଁଳ ପତ୍ରରୁ) ରଙ୍ଗ (ରକ୍ତିମା) ହରି (ଆହରଣ କରି,) ଆଣି ଲବଣୀ (ଲହୁଣୀ) ଶିରିଷ (ଟିଣି ଆଫୁଲ)—ଏହି ଶିରିଷ ଫୁଲ ସଂସ୍କୃତ କାବ୍ୟରେ କୋମଳତା ପାଇଁ ପ୍ରସିଦ୍ଧ । କୋମଳ (କୋମଳତା) ବଳେ (ଯୋଗକରି) ଜୁରି (ଜୁରକରି, ଲୁଟି) ସୁବର୍ଣ୍ଣରୁ ବର୍ଣ୍ଣ, ଗଜହଂସ ଠାରୁ ଗତି,—ଏ ରୂପେ ଉପମା ମାନେ ଯେତେ ଅଛନ୍ତି ବିଧାତା ସବୁ ଠାରୁ ସାର ସାର ଜିନିଷ ଆଣି ଏ ରମଣୀକୁ (ଏ କନ୍ୟାକୁ) ପୂରଣ ପ୍ରତିମା

ଦେଖ ପଦ୍ମ ଲପନ ଶୋଭକୁ ଯାର ହାରି,
ଚରଣ ତଳେ ଶରଣ ପଶି ଅଛି ଡ଼ରି ଯେ । ୫୪ ।
ପଦ୍ମ ଜାତ ସିନା ବିହି ବିହିଲା କେମନ୍ତେ,
ଏମନ୍ତ ସମ୍ମତ ହେଲା ସମସ୍ତଙ୍କ ମତେ ଯେ । ୫୫ ।
ସର୍ବ ମତେ ସର୍ବ ଶୋଭା ସ୍ଥାନ ବୋଲି ବାଳୀ,
ଲବଣ୍ୟବତୀ ନାମକୁ ଦେଲେ ଭଲି ଭଲି ଯେ । ୫୬ ।
ବଳକ୍ଷପକ୍ଷର କଳାକର କଳାପରି,
ଦିନୁ ଦିନ ଶୋଭା ବୃଦ୍ଧି ନରେନ୍ଦ୍ର କୁମାରୀ ଯେ । ୫୭ ।
ନେତେ ଦିନେ ଉଭା ଭିତ୍ତି ଧରି ବିମ୍ବାଧରୀ,
କରୀଜିତ ଗମନରେ ମହୀ ଶୋଭା କରି ଯେ । ୫୮ ।
ରଜନୀକର ବଦନା ରଜ ନିକର ରେ,
କରଇ ଖେଳ ରଚନା ଶିଶୁଙ୍କ ସଙ୍ଗରେ ଯେ । ୫୯ ।
ରବି ରଥ ରଖେ ବଶ ହୋଇ ତା ମୁଖମେ,
ଏମନ୍ତ କରି ଦୀର୍ଘ ଦିନ ଜାଣିଲି ଗ୍ରୀଷମେ ଯେ । ୬୦ ।

---

ପାଠାନ୍ତର—୯, ଚଟଣ ।

---

ପରି (ପୂର୍ବ ପିତୁଳା ପରି) ଗଢ଼ିଲ । କବି ଏ କିନ୍ତୁ ଏ କଥା ମାନିଲେ ନାହିଁ । ବିଧାତା ତିଆରି କାହୁଁ ଏ ହେବ—ବୋଲି କହିଲେ । କାହିଁକିନା—ଦେଖ ପଦ୍ମ ଏହାର ଲପନ (ମୁଖ) ଶୋଭକୁ ହାରିଯାଇ ଚରଣ (ପାଦ) ତଳେ ଶରଣ ପଶିଛି । ବିହି ପଦ୍ମରୁ ଜାତ ସେ ଏହାକୁ ଗଢ଼ିଲା କିପରି । ଏହା ସମସ୍ତଙ୍କ ମନକୁ ପାଇଲା ।

୫୬—ସର୍ବ ଶୋଭାର (ଲାବଣ୍ୟର) ସ୍ଥାନ ବୋଲି କନ୍ୟାର ନାମ ଦେଲେ ଲବଣ୍ୟବତୀ ।

୫୭—ବଳକ୍ଷ (ଶୁକ୍ଳ) ପକ୍ଷ (ପନ୍ଦର ଦିନ) କଳାକର (ଚନ୍ଦ୍ର) ଶୁକ୍ଳ ପକ୍ଷ ଚନ୍ଦ୍ର କଳା ପରି ନରେନ୍ଦ୍ର କୁମାରୀ ବଢ଼ିଲା । କୁମାର ସମ୍ଭବ —'ଦିନେ ଦିନେ ସା ପରିବର୍ଦ୍ଧମାନା, ଲବଧୋଦୟା ଚାନ୍ଦ୍ର ମସୀବ ଲେଖା ।

୫୮—ଭିତ୍ତି—କାନ୍ଥ; କରୀଜିତ ଗମନ—ହାତୀ ଚାଲିକୁ ଜିଣିବା ଭଳି ଧୀରେ ବା ଠୁକେଇ ଠୁକେଇ ଚାଲିବା; ବିମ୍ବ—ପାଚିଲା କଇଁଚ କାକୁଡ଼ି; ଅଧର— ତଳ ଓଠ; ବିମ୍ବପରି ଅଧର ଯାହାର ସେ ବିମ୍ବାଧରୀ ।

୫୯—ରଜନୀ କର—ଚନ୍ଦ୍ର; ରଜ ନିକରରେ—ଧୂଳି ସମୂହରେ ।

୬୦—ତା' ଖେଳ ଦେଖି ସୂର୍ଯ୍ୟ ବାଟରେ ରଥ ରଖି ଦେଇ ଚାହିଁ ରହିବାରୁ ଯେପରିକି ଗ୍ରୀଷ୍ମ କାଳର ଦୀର୍ଘ ଦିନ ହେଲା ।

ବିଶ୍ୱସୃଜ ବିଶ୍ୱକର୍ମା ଶିଳ୍ପୀ ହୋଇ ଗୋପ୍ୟେ,
ନିର୍ମାଣି ବାରଣ ଦନ୍ତ ପିତୁଳା ତା ରୂପେ ଯେ । ୬୧ ।
ଉପି ଲେପି[୧୦] କୁଙ୍କୁମ ଦିଅନ୍ତି ନେଇ କରେ,
ହେବ କି ନୋହିବ ସମ ଏମନ୍ତ ଶଙ୍କାରେ[୧୧] ଯେ । ୬୨ ।
ମନକୁ ନ ଆସି ଆଉ ଦିନ ଚିତ୍ରକର,
ହୋଇ ଚିତ୍ରେ ବିଚିତ୍ର ଲେଖନ୍ତି ଶୋଭା ତାର ଯେ । ୬୩ ।
ତଥାପି ସୁଷମା ସମା ପ୍ରତିମା ତ ନୋହି,
ଶୋଭାକୁ ବର୍ଣ୍ଣନ୍ତି କବି ବୃତ୍ତି[୧୨] କରି ତହିଁ ଯେ । ୬୪ ।
ଏମନ୍ତ ଯଶ ଜେମାର ଜଗତେ ଶୁଭିଲା,
ଯୋଗୀ ଜୟ[୧୩] ମୋହନାସ୍ତ୍ର ମାର ଭିଆଇଲା ଯେ । ୬୫ ।
ଏ ବିସ୍ମରେ ମହେଶ ପାଷାଣ ହେଲେ କିବା,
ଯୁବା ହେବା ଯାଏ ଆଉ ଶରୀରେ ନଥିବା ଯେ । ୬୬ ।

---

ପାଠାନ୍ତର—୧୦, ଉପଲେପ । ୧୧, ଶଙ୍କରେ । ୧୨, ବୃତ୍ତ । ୧୩, ଯୋଗୀଜନ ।

---

୬୧ଠାରୁ୬୪—ବିଶ୍ୱସୃଜ—(ବ୍ରହ୍ମା) ବିଶ୍ୱକର୍ମା ଶିଳ୍ପୀ (ବଢ଼େଇ) ହୋଇ ଗୋପ୍ୟେ ( ଲୁଚାଇ କରି ) ତା ରୂପେ (ଲବଣ୍ୟବତୀ ପରି) ବାରଣ (ହାତୀ) ଦନ୍ତ ପିତୁଳା ନିର୍ମାଣି (ତିଆର କରି) ଉପି ଲେପି (ବନକ ଲଗାଇ) କରେ ( ହାତରେ ) କୁଙ୍କୁମ ନେଇ ଦିଅନ୍ତି । କାହିଁକି ଦିଅନ୍ତି ? ଏ ପିତୁଳା ଲବଣ୍ୟବତୀ ସଙ୍ଗେ ସମାନ ହେବ କି ନୋହିବ ବୋଲି ଶଙ୍କା କରି, ମାତ୍ର ମନକୁ ଆସେ ନାହିଁ । ଆଉ ଦିନ ଚିତ୍ରକର ହୋଇ ( ଚିତ୍ରକାର ରୂପରେ ) ତାର ବିଚିତ୍ର ଶୋଭା ଚିତ୍ରରେ ଲେଖନ୍ତି । ତଥାପି ସୁଷମା ସମା ( ଶୋଭାରେ ସମାନ ) ପ୍ରତିମା ତ ନୋହିଲା । ତେଣୁ ବିଶ୍ୱକର୍ମା ବୃତ୍ତି ଓ ଚିତ୍ରକାର ବୃତ୍ତି ଛାଡ଼ି ଶେଷକୁ କବି ବୃତ୍ତି କରି ଶୋଭାକୁ ସେ ବିଧାତା ବର୍ଣ୍ଣନ୍ତି ।

୬୫—ଜଗତରେ ଜେମାର ( ରାଜକନ୍ୟାର ) ଯଶ ଶୁଭିଲା କି ମାର ( କନ୍ଦର୍ପ ) ଯୋଗୀଜୟ ମୋହନାସ୍ତ୍ର ( ଯୋଗୀମାନଙ୍କୁ ଭୁଲାଇବାର ହତିଆର ) ଭିଆଇଲା ( ତିଆରକଲା ) ।

୬୬—ଏ ଜେମା ଯୁବା ହେବାଯାଏ ରକ୍ତ ମାଂସ ଦେହ ଧରି ଶରୀରରେ ନଥିବା—ଏହା ବିସ୍ମରି ଶିବ ପାଷାଣ ହେଲେ କି ? ପାଷାଣ—ପଥର;

ପଢା ଶୁକେ ସିଲ୍‌ହା[୧୪] ଧୂପ କୋକିଳେ ବରଷା,
ହୋଇଲା ପାଠ ପଠନ କାଳ ମୃଦୁ ଭଷା ଯେ । ୬୭ ।
ସରସ୍ୱତୀ ଗୋଚରରେ ବିଦ୍ୟା ଥିଲା ଯେତେ,
ଦେଲେ କହି ସେ ଦ୍ୱନ୍ଦ୍ୱ ତୁ[୧୫]ନ କରିବୁ ମୋତେ ଯେ । ୬୮ ।
ଲଜ୍ଜାପଟ୍ଟ ମହିଷୀକି ଘେନି ଯଉବନ,
ରଜା ଆସି ଆକ୍ରମିଲା[୧୬]ଅଙ୍ଗ ଦେଶମାନ ଯେ । ୬୯ ।
ପାତ୍ର ମନ୍ତ୍ରୀ ନିତମ୍ବ ଜଘନ ଭରୁ ସତ
ଶାଢୀ ପାଇ ଏମାନେ ହୋଇଲେ କୃତ୍ୟ କୃତ୍ୟ ଯେ । ୭୦ ।
କୁଚ ଅଙ୍କୁରିବାରେ ବସନ ଉଠି[୧୭]ଦିଶେ,
ହୃଦୟ ବେଦିରେ ଅଭିଷେକ କୁମ୍ଭ କି ସେ ଯେ । ୭୧ ।

---

ପାଠାନ୍ତର—୧୪, ଶିଳା । ୧୫, ସବୁଦ୍ୱନ୍ଦ୍ୱ । ୧୬, ଆକର୍ଷିଲା । ୧୭, ଉଚ ।

---

୬୭—ସିଲ୍‌ହା—ଝୁଣା; ଝୁଣା ଧୂଆଁରେ ଶୁଆ ପାଟି ଫିଟେ ନାହିଁ । ବର୍ଷା କାଳରେ କୋକିଳ ପାଟି ମଧ୍ୟ ଫିଟେ ନାହିଁ, ଲବଣ୍ୟବତୀର ପାଠପଠନ (ପାଠପଢ଼ିବା) କାଳ ( ସମୟର ) ମୃଦୁଭଷା (ଧୀରକଥା) ଶୁଆକୁ ସିଲ୍‌ହା ଧୂପ ଓ କୋକିଳକୁ ବର୍ଷା ପରିହେଲା । ଅର୍ଥାତ ଜେମାର କଥା ଶୁଣି ସେମାନେ ଯେପରି କି ମୂକ ହୋଇଗଲେ ।

୬୮—ସରସ୍ୱତୀଙ୍କ ଗୋଚରରେ ( ଜାଣିବାରେ ) ଯେତେ ବିଦ୍ୟା ଥିଲା ସବୁ ଜେମାକୁ ଦେଲେ କାହିଁକି ? "ହେ ଜେମା, ତୁ ମୋତେ ( ମୋ ସଙ୍ଗେ ) ଦ୍ୱନ୍ଦ୍ୱ ( ବାଦ ) କରିବୁ ନାହିଁ—" ଏହା ବିଗ୍ରହି ଏଠାରେ ବିଦ୍ୟାରେ ବାଦ ବା ସୌନ୍ଦର୍ଯ୍ୟରେ ବିଷ୍ଣୁଙ୍କୁ ଭୁଲାଇବା ବାଦ—ଏ ଦୁଇ ଅଭିପ୍ରାୟ ଥାଇପାରେ ।

୬୯।୭୦—ଲଜ୍ଜା ହେଲା ପାଟରାଣୀ, ଯଉବନ ହେଲା ରଜା, ଅଙ୍ଗ ହେଲା ଦେଶ, ନିତମ୍ବ, (ପିଚା) ଜଘନ (ଜଙ୍ଘ) ଉରୁ ( ପିଚ୍ଛଠାରୁ ବଙ୍କାଗଣ୍ଠି ପର୍ଯ୍ୟନ୍ତ ଗୋଡ଼ )— ଏମାନେ ସେ ଯୌବନ ରଜା ହେତୁରୁ ଶାଢୀ ପାଇଲେ । ଅର୍ଥାତ୍ ଏସବୁ ସ୍ଥାନରେ ଶାଢୀ ଭିଡ଼ା ହୋଇ ପିନ୍ଧା ହେଲା । ତେଣୁ ଏମାନେ ଶାଢୀ ପାଇ କୃତ୍ୟ କୃତ୍ୟ (ଆନନ୍ଦିତ) ହେଲେ ବୋଲି ଉତ୍ପ୍ରେକ୍ଷା ।

୭୧—କୁଚ କ୍ରମେ ଉଠି ଆସିବାରେ ହୃଦୟ ବେଦି ଉପରେ ସେହି ଯୌବନ ରଜାର ଅଭିଷେକ ଜଳ କୁମ୍ଭ ଲୁଗାରେ ଘୋଡ଼ିଆ ହୋଇ ହୃଦୟ ରୂପ ବେଦି ଉପରେ ଥୁଆ ହେଲା ପରି ଦିଶିଲା ।

ଏ ସମୟ ମାହୁନ୍ତ ସୁନ୍ଦରୀ ମତ୍ତ କରୀ,
ଅନ୍ତଃପୁର ଟୋପରେ ରଖିଲା ବନ୍ଧେ ଧରି ଯେ । ୭୨ ।
ନେତ୍ରାଞ୍ଚଳେ ଚଳ ପରକାଶ[୧୮] ହେଲା ଆସି,
ଚତୁରୀ ଚିଲ୍ଲି ଗ୍ଭତୁରୀମାନଙ୍କୁ ପ୍ରକାଶି ଯେ । ୭୩ ।
ଏ ପ୍ରତୀତ ଯୁବାଜିତ ଇଚ୍ଛା କରି ଭୀରୁ,
ଶର ବିନ୍ଧି ଶିଖେ କି ସଂସାର ଗୁରୁଠାରୁ ଯେ । ୭୪ ।
ସୁନ୍ଦରୀ ସଂସାରେ ସେ ହେବାରୁ ଚକ୍ରବର୍ତ୍ତୀ,
ଦେଲା କି ପ୍ରତି[୧୯] ଅଙ୍ଗରେ ଭୂପତି[୨୦] ସମ୍ପତ୍ତି ଯେ । ୭୫ ।
କୁନ୍ତଳ ଦେଶରେ ଚୂଡ଼ା ଶୋଭ କରାଇଲା,
ବିଦର୍ଭରେ ହାସକୁ ପ୍ରଭୁତ୍ୱ ପଣ ଦେଲା ଯେ । ୭୬ ।
ମାଳବରେ କଣ୍ଠକୁ ଭୂଷଣ[୨୧] କଲା ନେଇ,
ଗ୍ରୈକରେ ଶୋଭିତ[୨୨] କଲା ଉରଜକୁ ତହିଁ ଯେ । ୭୭ ।
କାଞ୍ଚିରେ ରଞ୍ଜନ କଲା ମଧ୍ୟକୁ ନିରତ,
କନକ କଟକେ କଲା ପାଦକୁ ରଜିତ[୨୩] ଯେ । ୭୮ ।

---

ପାଠାନ୍ତର—୧୮, ଚଞ୍ଚଳ ପ୍ରବେଶ । ୧୯, ତେତେ । ୨୦, ଭୂଷଣ । ୨୧, ମଣ୍ଡିତ । ୨୨, ମଣ୍ଡିତ । ୨୩ ପୂଜିତ ।

---

୭୨—ଏହି ସମୟ ଅର୍ଥାତ୍ ଆସନ୍ନ ଯୌବନ ସମୟ ମାହୁନ୍ତ (ହାତୀଆଳ) ପରି ହେଲା । ସୁନ୍ଦରୀ (ଲାବଣ୍ୟବତୀ) ମତ୍ତକରୀ (ତେଜସ୍ୱୀ ହାତୀ) ପରିହେଲେ । ଅନ୍ତଃପୁର ଟୋପ (ହାତୀ ଧରିବା ଗାତ) ପରି ହେଲା । ଅର୍ଥାତ୍ ଯୌବନକାଳ ପହଞ୍ଚିବା ଭଳି ହେବାରୁ ଲାବଣ୍ୟବତୀ ଆଉ ପଦାକୁ ବାହାରିଲା ନାହିଁ ।

୭୩—ନେତ୍ରାଞ୍ଚଳ—ଆଖିକୋଣ; ଚଳ—ଚଞ୍ଚଳତା; ଚତୁରୀ—ଲାବଣ୍ୟବତୀ; ଚିଲ୍ଲିଗ୍ଭତୁରୀ—କଟାକ୍ଷ ଭଙ୍ଗୀ;

୭୪-ଏ ପ୍ରତୀତ—ଏହା ମନେହୁଏ; ଭୀରୁ—ସୁନ୍ଦରୀ (ଲାବଣ୍ୟବତୀ); ଯୁବାଜିତ (ଯୁବାଙ୍କୁ ଜୟ କରିବାର); ସଂସାର ଗୁରୁ—ସଂସାର କାର୍ଯ୍ୟରେ ଗୁରୁ, ଅର୍ଥାତ୍ କନ୍ଦର୍ପ;—ଏହା ଚଞ୍ଚଳ କଟାକ୍ଷର ଶର ବିନ୍ଧିବା ସଙ୍ଗରେ ଉତ୍ପ୍ରେକ୍ଷା ।

୭୫ଠାରୁ୭୮—ଚକ୍ରବର୍ତ୍ତୀ—(ସବୁ ସାମନ୍ତ ରାଜାମାନଙ୍କ ଉପରେ ବଡ଼ରାଜା) ହେବାରୁ ଅଙ୍ଗମାନଙ୍କରେ ଭୂପତି ସମ୍ପତ୍ତି (ରାଜପଣ) ତଳେ କୁହା ଯାଉଥିବା ପ୍ରକାରେ ହେଲା । ଏଥିରେ ଦେଶମାନଙ୍କ ନାମ ସଙ୍ଗେ ଅଙ୍ଗ ଓ ଅଳଙ୍କାରମାନଙ୍କ ନାମର ଶ୍ଲେଷ (ସାଦୃଶ୍ୟ) ଅଛି । ଯଥା—କୁନ୍ତଳ ଦେଶରେ (ମୁଣ୍ଡବାଳରେ)—କୁନ୍ତଳ ନାମକ ଦେଶରେ, ଚୂଡ଼ା [ଜୂଡ଼ା]; ବିଦର୍ଭରେ [ଘାସଫୁଲରେ]—ବିଦର୍ଭ ଦେଶରେ

ମଣି ରମଣୀ ମଣିକି ଶାଣ ଯଉବନ,
ବହୁମୂଲ୍ୟ ପ୍ରଭକୁ ବଢାଇ ଦିନୁ ଦିନ ଯେ । ୭୯ ।
ଉପମା ଆଣିବା କାହୁଁ ମହାକବି ହେଲେ,
ସୁନ୍ଦରେ ଯାହାର ଅଙ୍ଗେ ସୁନ୍ଦରି ହୋଇଲେ ଯେ । ୮୦ ।
ଜୟ ଜଗନ୍ନାଥ ରାମ ଶ୍ରେୟର ଆଳୟ,
ମୁନିଗଣ କାମ ଦାୟ ପଦ୍ମବାସୀ ପ୍ରିୟ ହେ । ୮୧ ।
ଉପଇନ୍ଦ୍ର ଭଞ୍ଜ ବୀରବରର ଭବିତ,
ନିର୍ଦ୍ଦୋଷରେ ଏହୁ ଗୀତ ହେଉ ସମାପତ ହେ । ୮୨ ।

---

ହାସ [ ଘାସ ଫୁଲ ଧଳା ଅଟେ, ଘାସ ଫୁଲକୁ ଜିଣି ତାରହାସ ] ମାଳବରେ [ ଶ୍ଳେଷମାଳାରେ]–ମାଳବ ଦେଶରେ, ଗ୍ଳେଛରେ [ କାଞ୍ଚଳରେ ] ଗ୍ଳେଛ ଦେଶରେ, କାଞ୍ଚି ( ଚନ୍ଦ୍ରହାର ବା ଅଣ୍ଟାସୂତା)–କାଞ୍ଚିଦେଶ, ମଧ୍ୟ (ଅଣ୍ଟା) କନକ କଟକ ( ସୁବର୍ଣ୍ଣ ପାହୁଡ଼ ) କନକ ନାମକ ନଗର ବା ଦେଶ ।

୭୯–୮୦–ରମଣୀ ମଣି (ଲାବଣ୍ୟବତୀ) ମଣି ପରି ହେଲା । ଯୌବନ ଶାଣ ( ଶାହାଣ ) ପରି ହେଲା । ମଣିକି ଶାହାଣ ଦେଲେ ବେଶି ଚକ ଚକ ଚିକ୍‌କଣ ଦିଶେ ଏବଂ ମୂଲ୍ୟ ବଢିଯାଏ । ସୁନ୍ଦର ଦ୍ରବ୍ୟମାନେ ଯାହାର ଅଙ୍ଗରେ (ଦେହରେ) ସୁନ୍ଦରି ହେଲେ (ସୁନ୍ଦରେଇଁ ହେଲେ) [ସୁନ୍ଦରି ହେଲେ–ଓଡ଼ିଆ ଭାଷାରେ ନାମ ଧାତୁର ପ୍ରୟୋଗ] ମହାକବି ହେଲେହେଁ ତାହା ଅଙ୍ଗକୁ ଉପମା କାହୁଁ ଆଣିବେ ?

୮୧–ଜଗନ୍ନାଥ ପରି ଯେ ରାମ ଶ୍ରେୟ (ମଙ୍ଗଳ) ଆଳୟ (ସ୍ଥାନ), ମୁନିଗଣ ( ଯୋଗୀ ମାନେ–କିମ୍ବା ଯାଜ୍ଞିକ ଋଷିମାନେ) କାମଦାୟ ( ସେମାନଙ୍କର କାମନା ଦାତା) ପଦ୍ମବାସୀ ( ପଦ୍ମାଳୟା ଲକ୍ଷ୍ମୀ ଅଥବା ପଦ୍ମଗନ୍ଧା ସୀତା)ଙ୍କର ପ୍ରିୟ–ଏହିପରି–ଜଗନ୍ନାଥ ଓ ରାମ ଦୁହିଁଙ୍କ ସମ୍ବନ୍ଧରେ ଅର୍ଥ ସ୍ପଷ୍ଟ ।



# ତୃତୀୟ ଛାନ୍ଦ

## ( ଲାବଣ୍ୟବତୀର ଯୌବନାବସ୍ଥା ବର୍ଣ୍ଣନା ) ପୂର୍ବ ପ୍ରକାଶ ।

ରାଗ—କେଦାର । ଚକ୍ରକେଳି ବାଣୀ

ଶୁଣ ରସିକେ ନବ ଯଉବନୀ[୧] ,
ହୋଇ ବନିତା ମଣ୍ଡିଲା ଅବନୀ । ୧ ।
ଏଣୁ ଉପମାଗଣ ନିରନ୍ତର,
କି କରିବା ବୋଲି ହେଲେ କାତର । ୨ ।
ଝଳି କାନ୍ତିରେ ଲଜ୍ଜିଲେ ଭୀତିକି
କଲା କଣ୍ଟକ ଦୁର୍ଗକୁ କେତକୀ । ୩ ।
ପାଞ୍ଚେ ମନ୍ଦର କୁଚ ବଢ଼ିବାରେ
କିପାଁ ବୁଡ଼ି ନ ମଲି ପାଗବାରେ । ୪ ।
ନାସା ପୁଡ଼ା ଫୁଲିବାର ଅନାଇ
ଭଷା ବନ୍ଧେ ଶୁକ ମନ ମନାଇ । ୫ ।

---

ପାଠାନ୍ତର— [୧], ଜଉବନୀ ।

---

୧—ବନିତା—ଭୋଗ୍ୟାନାରୀ, ଅର୍ଥାତ୍ ଯୌବନ ନିକଟ ହେବାରୁ ସେ ଦେଖିବାକୁ ବଡ଼ ସୁନ୍ଦର ବା ଚକ୍ଷୁ ପ୍ରଭୃତିର ଭୋଗ୍ୟା ହେଲା ।

୨—ସେ ଏତେ ସୁନ୍ଦର ହେଲା ଯେ ଉପମାମାନେ ତୁଳନାରେ ଆସିବାକୁ ଡରିଲେ ।

୩—ଝଳି କାନ୍ତି—ଶରୀର ଉଜ୍ଜ୍ୱଳତାର ପ୍ରଭା; ସେ ଝଳି କାନ୍ତିକୁ ଡ଼ରି କେତକୀ ଯେପରି କି କଣ୍ଟାରେ ଆବୋରି ହୋଇ ଆପଣାକୁ ରକ୍ଷାକଲା ।

୪ଠାରୁ୭—ମନ୍ଦର ପର୍ବତ କୁଚ (ସ୍ତନ) ବଢ଼ିବାର ଦେଖି [ ପ୍ରଳୟବେଳେ ] ପାଗବାରରେ [ସମୁଦ୍ରରେ] କାହିଁକି ବୁଡ଼ି ନ ମଲି ବୋଲି ବ୍ୟସ୍ତ ହେଲା । ନାସା (ନାକ) ପୁଡ଼ା ଫୁଲିବାର ଦେଖି ଶୁଆ ଲୋକଙ୍କୁ ଆପଣାର କରିବା ପାଇଁ ଭଷାବନ୍ଧରେ [ ହରିନାମ ପ୍ରଭୃତି ] ଗାଇଲା । ଦର୍ପ ହେତୁଁ ( ଗର୍ବନାଶ ହେବାରୁ ) ଦର୍ପଣ ତା ମୁହଁପାଖେ

ସୁଖେ ପ୍ରଗ୍ୱର ପରିଗ୍ରର ପଣ
ମୁଖେ ଦର୍ପ ହେତୁ କଲା ଦର୍ପଣ । ୬ ।
କମ୍ବୁ କଣ୍ଠେ ଦେଖି ଅତି ଆର୍ତ୍ତରୁ
ସମ ନୁହେ ବୋଲି ଡାକେ ପ୍ରାତରୁ । ୭ ।
ନେତ୍ର ସଙ୍ଗେ ଲକ୍ଷିବେ କି ସୁମରି
ହୋଇ ବାସରେ ୨ କୁସୁମ ବିଜିତ
ମୀନ ଜଳ ହୀନରେ ଯାଇ ମରି । ୮ ।
ମକରନ୍ଦ ଛଳେ ଅଶ୍ରୁ ତେଜିତ । ୯ ।
ରମ୍ଭା ଉପମା ପଦ ପ୍ରଦେଶକେ
ଆଉ କେହୁ ସମ ହେବ ଅଂଶକେ । ୧୦ ।
କୁନ୍ଦ କୋରକ ହୀରକ ରଦନା
ସୁଧାକର ସରସିଜ ବଦନା । ୧୧ ।
ଏ ପ୍ରୟୋଗ ପରମ୍ପର ଅଛିତ
ବାଳାଠାରେ ବର୍ଣ୍ଣିବାର କୁତ୍ସିତ । ୧୨ ।
କଞ୍ଜ ଖଞ୍ଜନ ଗଞ୍ଜନ ଲୋଚନା
ମତ୍ତ ପରଭୃତ ଜିତ ବଚନା । ୧୩ ।
ଏ ବିଧିରେ ବର୍ଣ୍ଣିଲେ ସେ ଚତୁରୀ
କେତେ ହୋଇବ କବିତା ଗ୍ରତୁରୀ । ୧୪ ।

---

ପାଠାନ୍ତର— ୨, ହାସରେ ।

---

ନିଜର ପରିଗ୍ରର (ଗ୍ରକର)ପଣ ସୁଖେ ପ୍ରଚାର କଲା । କମ୍ବୁ (ଶଙ୍ଖ) ତା କଣ୍ଠ ଦେଖି ଅତି ଆର୍ତ୍ତରୁ (ଅତି ବ୍ୟସ୍ତ ହୋଇ) ମୁଁ ତୋ ସମାନ ନୁହେ ବୋଲି ଯେପରି କି ସକାଳୁ ଡ଼ାକ ଛାଡ଼େ । ସକାଳୁ ଘରେ ଓ ମନ୍ଦିରରେ ଶଙ୍ଖ ବାଜିବାର ବିଧି ।

୮।୯—ନେତ୍ର (ଆଖି) ସଙ୍ଗେ କାଳେ ତୁଳନା କରିବେ ଏହା ସୁମରି (ଭବି) ଯେପରିକି ମୀନ (ମାଛ) ଜଳ ହୀନରେ (ପାଣିରୁ କାଢ଼ିବା ମାତ୍ରେ) ମରିଯାଏ । କୁସୁମ (ପୁଷ୍ପ)ର ଯାହା ମକରନ୍ଦ (ମଧୁ)ଝରେ ତାହା ନୁହେ । ଏହାର ମୁଖ ବାସରେ ବିଜିତ (ହତମାନ) ହୋଇ ସେ ଅଶ୍ରୁ ତେଜିତ କରେ, ଅର୍ଥାତ୍, ସେ କାନ୍ଦେ ।

୧୦ଠାରୁ୧୪—ରମ୍ଭା—(କଦଳୀ ଗଛ ବା ରମ୍ଭାନାମ୍ନୀ ସ୍ୱର୍ଗବେଶ୍ୟା) ପାଦରୂପ ଶରୀରର ଗୋଟେ ଅଂଶରେ ଉପମା । ଆଉ ଅଂଶରେ ସମାନ ହେବାକୁ ବା କିଏ ଅଛି ? କାହିଁକିନା, କୁନ୍ଦ କୋରକ (କୁନ୍ଦ ଫୁଲକଢ଼ୀ) ହୀରକ (ହୀରା) ପରି ରଦନ

କହିଁ କୃଶ କଲ ମଧ୍ୟ[୩] ଶୋଭିତ
ତାହି ଚାହିଁ ହୋଇ ଆଇ ଲୋଭିତ । ୧୫ ।
କହିଁ [୪] ସୁନ୍ଦରେ ସୁନ୍ଦର ହୋଇଲେ
କିସ ଅଧିକ ହୋଇବ ବୋଲିଲେ । ୧୬ ।
ଏ ପ୍ରକାର ସୁନ୍ଦରୀ କୃଶୋଦରୀ
ଅଛି ଦିନେ ସେ ଶୟନ ଆଦରି । ୧୭ ।
ନିଦ୍ରା ନାଶ ଅବକାଶ ଆଶରେ
ଜଗିଛନ୍ତି ଏତେ ସଖୀ ପାଶରେ । ୧୮ ।
ନିଜ ଧାତ୍ରୀ ପୁତ୍ରୀ ହେମ ମଞ୍ଜରୀ
ଅକ୍ଷି ପକ୍ଷୀ ବନ୍ଧି କି ସେ ପଞ୍ଜରୀ । ୧୯ ।

---

ପାଠାନ୍ତର—[୩], ମନ୍ଦ । [୪], ଚନ୍ଧି

---

[ଦାନ୍ତ] ଯାହାର । ସୁଧାକର (ଚନ୍ଦ୍ର) ସରସିଜ [ପଦ୍ମ] ପରି ବଦନ [ମୁହଁ] ଯାହାର । ଏହି ପରି ପ୍ରୟୋଗ ସ୍ତ୍ରୀମାନଙ୍କ ବର୍ଣ୍ଣନାରେ ପରମ୍ପରା ଅଛି [ ଚଳି ଆସୁଅଛି] । କିନ୍ତୁ ଏ ବାଳାଠାରେ ଏପରି ବର୍ଣ୍ଣିବା କୁତ୍ସିତ [ଅସୁନ୍ଦର] । ପୁଣି କଞ୍ଜ [ପଦ୍ମ] ଖଞ୍ଜନ [କଜ୍ଜଳପାତି ଚଢେଇ]କୁ ଗଞ୍ଜନ ( ହୀନମାନ କରୁଥିବା ) ଭଳି ଲୋଚନ [ଆଖି] ଯାହାର । ମତ୍ତ [ବସନ୍ତ କାଳର ମଧୁସେବୀ] ପରଭୃତ [କୋକିଳ]କୁ ଜିଣିବା ଭଳି ବଚନ ଯାହାର । ଏପରି ସେ ଚତୁରୀକୁ ବର୍ଣ୍ଣିଲେ କେତେ କବିତା ଚାତୁରୀ ହେବ । କିନ୍ତୁ କି ଦରକାର ?

୧୫।୧୬—ଯେଉଁ ବାଳାଠାରେ କୃଶ (କ୍ଷୀଣତା ବା ସରୁଭାବ) ମନ୍ଦ (ଧୀରତା)କୁ ଶୋଭିତ କଲା—ସିଂହର ସରୁ ଅଣ୍ଟା ହାତୀର ମନ୍ଦ ଗତି, ଏମାନେ—ସିଂହ ଓ ହାତୀ—ଏକାଠି ରହନ୍ତି ନାହିଁ । ତେଣୁ ତାକୁ ଚାହିଁଲେ ଅଦ୍ଭୁତ ବୋଲି ଲୋଭ ହୁଏ । ପୁଣି ଯହିଁ ସୁନ୍ଦରେ ( ସବୁ ସୁନ୍ଦର ଉପମା ବା ଅଳଙ୍କାରମାନେ ) ସୁନ୍ଦର ହେଲେ ତା କଥା ଅଧିକ କହିବା ଦରକାର ନାହିଁ ।

୧୭।୧୮—ଏହିପରି ସୁନ୍ଦରୀ କୃଶୋଦରୀ ( ସରୁପେଟୀ) ଦିନେ ଶୋଇଛି । ନିଦ୍ରାନାଶ (ନିଦ୍ରା ଭାଙ୍ଗିବା) ଅବକାଶ (ସମୟ) ଆଶାରେ (ଚାହିଁକରି) ଉଠେ ବୁହା ଯାଉଥିବା ସଖୀମାନେ ପାଖରେ ଜଗିଛନ୍ତି ।

୧୯ଠାରୁ୨୪—ନିଜ ଧାତ୍ରୀ ପୁତ୍ରୀ (ଆପଣା ଧାଈର ଝିଅ ) ହେମ ମଞ୍ଜରୀ ଯେ କି ଆଖି ରୂପ ଚଢ଼େଇ ବନ୍ଧି କରିବାକୁ ପଞ୍ଜୁରୀ ପରି ଅର୍ଥାତ୍ ଯାହାକୁ ଦେଖିଲେ ଆଖି ଲାଖି

କାମକଳା ନାମ ମନ୍ତ୍ରୀ ଦୁହିତା
ବିହି ବିନ୍ଧାଣି ବୋଲଇ ବିହିତା । ୨୦ ।
ରସଲେଖା, ସୁରେଖା, ଚିତ୍ରଲେଖା,
ହାରବଳୀ, ଚନ୍ଦ୍ରାବଳୀ, ଏ ଲେଖା । ୨୧ ।
ରତ୍ନମାଳା, ହେମମାଳା, ବିମଳା,
ପ୍ରେମଶୀଳା, ସୁଶୀଳା, ପରିମଳା । ୨୨ ।
କଳ୍ପଲତା, ମଦାଳସା, ମଞ୍ଜୁଳା
ପ୍ରେମ ସୁଧାନିଧି, ପ୍ରଭ ମଞ୍ଜୁଳା[୫] । ୨୩ ।
ଷୋଳ ସାମନ୍ତ ସୁତା ରୂପେ ସରି
କାହୁଁ ହୋଇବେ ସ୍ୱର୍ଗ ଅପସରୀ । ୨୪ ।
ଅଙ୍ଗୁ ସ୍ୱେଦ ନୋହିବାକୁ ଜନିତା
ରଙ୍କେ ଫୁଲ ବ୍ୟଞ୍ଜନ କେ ବନିତା । ୨୫ ।
ଖଦି, ଚାମର, ରଜ ଉପଚାର
ଭଳି କେହି କେହି କରେ[୬] ପ୍ରଚାର । ୨୬ ।

ପାଠାନ୍ତର—୫, ବଞ୍ଜୁଳା । ୬, କଲେ ।

ରହେ । ମନ୍ତ୍ରୀ ଝିଅ କାମକଳା ଯାହାକୁ ବିହି (ତିଆରକରି) ବିହି(ବିଧାତା) ବିନ୍ଧାଣୀ (କାରିଗର) ବୋଲଏ । ରସଲେଖା ଇତ୍ୟାଦି ଷୋଳ ସାମନ୍ତ ସୁତା (ରଜାଙ୍କ ଅଧୀନସ୍ଥ ବଡ଼ ବଡ଼ ଲୋକଙ୍କୁ ସାମନ୍ତ କହନ୍ତି—ତାଙ୍କରି ଝିଅମାନେ ) । ସ୍ୱର୍ଗ ଅପସ୍ୱରୀ ତାଙ୍କ ରୂପରେ କାହୁଁସରି (ସମାନ) ହେବେ ? ଅର୍ଥାତ୍ ସମସ୍ତେ ବଡ଼ ସୁନ୍ଦରୀ ।

୨୫—ଅଙ୍ଗୁ (ଦେହରୁ) ସ୍ୱେଦ (ଝାଳ), ଫୁଲ ବ୍ୟଞ୍ଜନ ଚାଳେ ( ଫୁଲରେ ତିଆର ହୋଇଥିବା ବିଞ୍ଚଣାରେ ବିଞ୍ଚେ ) ।

୨୬—ରଜାମାନଙ୍କୁ ବିଞ୍ଚିବା ପାଇଁ ଲୁଗା କୁଞ୍ଚାହୋଇ ମଝିମୋଡ଼ା ହୋଇ ଏକ୍ ପ୍ରକାର ତିଆର ହୁଏ—ତାକୁ ଖଦି କହନ୍ତି । ଚାମର (ଦେଓଁଙ୍କ ଆଗରେ ଯେଉଁ ଚଅଁର ପଡ଼େ) । [ଏହା ଚାମରୀ ନାମକ ହିମାଳୟ ପ୍ରଦେଶର ଏକ ଗୋରୁର ଲାଞ୍ଜରୁ ବାହାରେ । ଏସବୁ ବିଞ୍ଚିବା କାର୍ଯ୍ୟରେ ରଜ ଉପଚାର ଅର୍ଥାତ୍ ରଜା ପ୍ରଭୃତିଙ୍କର ଉପକରଣ ଭଳି କାର୍ଯ୍ୟରେ ଲଗେ] । ଏହା ଭଳି କେହି କେହି ସେ ସବୁ ପ୍ରଚାର କରନ୍ତି ( ଚାଳନ୍ତି ) ।

କରି ଚରଣେ କର ନିବେଶନ
ଧୀରେ ଧୀରେ କେ କରେ ଆଶ୍ୱାସନ । ୨୭ ।
ପୂଗ ଖଦିର ଚୂର୍ଣ୍ଣେ ⁷ କେ ଶୋଭଙ୍ଗୀ
ଦିବ୍ୟ ପଳିତ⁸ ନାଗବଲ୍ଲୀ ଭଙ୍ଗୀ । ୨୮ ।

ଚାଛି ଝିନ ବାସ କୁଞ୍ଚି ସବୁରେ,
ଉଞ୍ଚି ରଖିଛି କେ ଚୂଆ ଅତରେ । ୨୯ ।
ଦଳମାନ ହରି କରି ସେବତୀ,
ଗୁନ୍ଥୁ ଅଛି କେ ମାନିଆ ଯୁବତୀ । ୩୦ ।
ଝଗ ଶିକଳୀ ଗଳାକୁ ମାଳିକା,
କରୁଛନ୍ତି କେହି କେହି ବାଳିକା । ୩୧ ।
ଭରି ଲବଣୀ ସିନ୍ଦୁର ଦଳନା,
କରୁଅଛି ବସି କଉଁ ଲଳନା । ୩୨ ।
ମୃଗମଦ ଗୋଳୁଛି କଉଁ ମିତ,
କୁଚ ବିଚିତ୍ର ଚିତ୍ରକ ନିମିତ୍ତ । ୩୩ ।

---

ପାଠାନ୍ତର—୭, ଭଣ ୮, ପଳିତା

---

୨୭—କିଏ ଧୀରେ ଧୀରେ ଗୋଡ଼ ଘସେ । ଆଶ୍ୱାସନା (ଆଉଁସିବା)

୨୮—ପୂଗ—ଗୁଆ, ଖଦିର—ଖଇର; ଚୂର୍ଣ୍ଣ ଚୂନ; ଶୋଭଙ୍ଗୀ—ସୁନ୍ଦରୀ, ପଳିତ—ପାଚିଲା; ନାଗବଲ୍ଲୀ ଭଙ୍ଗୀ—ପାନ ଭଙ୍ଗେ ;

୨୯—କୁଞ୍ଚି—କୁଞ୍ଚ କରି; ଝୀନବାସ—ଖୁବ୍ ପତଳା ସୁନ୍ଦର ଲୁଗା; (ଚୀନବସ୍ତ୍ର), ଚୂଆ ଓ ଅତର ହାତରେ ଦେଇ ସେହି କୁଞ୍ଚା ଲୁଗାକୁ ଉଞ୍ଚି କରି ରଖୁଛି । ଡ଼ାହାଣ ହାତରେ ଚୂଆ ଅତର ଲଗାଇ ବାଁ ହାତରେ କୁଞ୍ଚା ଲୁଗାକୁ ଜୋରରେ ଧରି ତହିଁରେ ଉପରୁ ତଳକୁ ଡ଼ାହାଣହାତ ମାରିଦେଇ ଯିବାକୁ ଉଞ୍ଚା କହନ୍ତି । ଏହା ଏବେ ମଧ୍ୟ କେତେକ ଗଞ୍ଜା ଓ ବଡ଼ ଲୋକଙ୍କ ଘରେ ହୁଏ ।

୩୦—ସେବତୀ ଫୁଲରୁ ଦଳ (ପାଖୁଡ଼ା) ମାନହରି (ଛିଣ୍ଡାଇ) ମାନିଆ (ଜୁଡ଼ାପାଇଁ ଗଭା) ଗୁନ୍ଥୁଛି ।

୩୧—ଝଗ—(ଫୁଲଝଗ) ଶିକଳୀ (ଫୁଲଶିକୁଳୀ) ଲଗାଇ ବେକକୁ ମାଳା ଗୁନ୍ଥୁଛି ।

୩୨—ପାତ୍ରରେ ଲହୁଣୀ ଭର୍ତ୍ତି କରି କେଉଁ ଲଳନା (ନାରୀ) ସିନ୍ଦୂର ଦଳୁଛି ।

୩୩—କୁଚ (ସ୍ତନ)ର ବିଚିତ୍ର ଚିତ୍ରକ (ଅତି ସୁନ୍ଦର ଚିତ୍ର) ନିମନ୍ତେ କେଉଁ ମିତ (ସଖୀ) ମୃଗମଦ (କସ୍ତୁରୀ) ଗୋଳୁଛି—ସ୍ତନ ଉପରେ ଓ ଗାଲରେ କସ୍ତୁରୀ ଗୋଳା ପାଣିରେ ଚିତ୍ର କରିବା ରୀତି ଥିଲା ।

ପେଡ଼ି ଫେଡ଼ିକେ ବାଛୁଟି ରତନ,
ଅଳଙ୍କାରେ କଉଁମାନ ଛତନ । ୩୪ ।
ଘନସାର ମିଶାଇ ଚନ୍ଦନରେ,
କେହୁ ଥୋଇଚି ହରଷ ମନରେ । ୩୫ ।
ସଖୀ ମାନଙ୍କର ଏହି ବ୍ୟାପାର,
ପରିଗ୍ରହିକା ଅଛନ୍ତି ଅପାର । ୩୬ ।
ଫୁଲ ଫଳଙ୍କର ନାମ ଉଦିତ,
ଧରି ଝରି ପରୀଖ କେ ମୋଦିତ । ୩୭ ।
କେହି କରୁଛି ମୁକୁର ମାର୍ଜନ,
କେ ଖରଡ଼ ପାରିବାରେ ରଞ୍ଜନ । ୩୮ ।
ଅପସର କେ ଦେଉଛି ସବୁରେ,
ପୀଠ ପକାଉଛି କେହି ଚବୁରେ । ୩୯ ।
ଜଳ ଆଣୁଛି କେ ହେମ କୁମ୍ଭରେ,
ନାହିଁ ଅସର ଏହି ଆରମ୍ଭରେ । ୪୦ ।

---

ପାଠାନ୍ତର—୯, ପରିବାରିକା ।

---

୩୪।୩୫—ଛତନ—ସୁନ୍ଦର; ଘନ ସାର—କର୍ପୂର; ଚନ୍ଦନପାଟୀ ଓ ଦେହରେ ଅନ୍ୟାନ୍ୟ ଚନ୍ଦନ ଚିତ୍ର ନିମନ୍ତେ ଚନ୍ଦନ ଦରକାର ।

୩୬।୩୭—ସଖୀ ମାନଙ୍କର ଏ କାର୍ଯ୍ୟଗଲ । ତା'ହାଛଡ଼ା ଅପାର (ଅନେକେ) ପରିଗ୍ରହିକା (ପରିବାରୀ ବା ଦାସୀ) ଅଛନ୍ତି । ସେମାନଙ୍କ କାର୍ଯ୍ୟ; ଯଥା—କେହି କେହି କରମ ମର୍ଙ୍ଗିଆ ଡାଳ ଓ ଦୁଦୁରା ଫୁଲିଆ ପିକଦାନୀ ଧରିଛନ୍ତି । ଫଳ ନାମ ଉଦିତ ଝରି କରମଙ୍ଗା ଫଳର ନାମ ପ୍ରକାଶ କରୁଥିବା ଝରି ( ଡାଳ ବା ଗଡୁ ); ଫୁଲ (ଦୁଦୁରା ଫୁଲ) ନାମ ପ୍ରକାଶ କରୁଥିବା ପରୀଖ (ପିକଦାନୀ), ମୋଦିତ—ଖୁସି ।

୩୮।୩୯।୪୦—କିଏ ମୁକୁର (ଦର୍ପଣ) ମାର୍ଜନ ( ମାଜୁଛି ) । କିଏ ଖରଡ଼ (ଗାଲିଚ୍ଚ) ପାରିବାରେ ( ପକାଇବାରେ ) ରଞ୍ଜନ (ଅନୁରକ୍ତ) ହୋଇଛି ( ଲାଗିଛି ) । କିଏ ବେଗେ ଖରଡ଼ ଉପରେ ଅପସର ( ବଡ ତକିଆ) ଦେଉଛି । କିଏ ମାଜଣା ପାଇଁ ଚବୁରେ (ଅଗଣାରେ, ପୀଠ (ପିଢ଼ା) ପକାଉଛି । କିଏ ହେମ (ସୁନା) କୁମ୍ଭରେ (କଳସୀରେ) ପାଣି ଆଣୁଛି । ଏହି ଆରମ୍ଭରେ ( କାର୍ଯ୍ୟଆଡ଼ମ୍ବରରେ ) ଅସର (ଡର) ନାହିଁ ।

ଶୁକ୍ଳପକ୍ଷ ଦଶମୀ ବୁଧବାରେ[୧୦],
ସିଦ୍ଧ ସାଧ୍ୟ ଯୋଗ ଯୋଗ[୧୧] ହେବାରେ । ୪୧ ।
ଦିନ ଅଷ୍ଟ ଦଣ୍ଡ ଭୋଗ ଆଦିତ୍ୟ,
ଶୁକ୍ର ବେଳା ତୁଳ ଲଗ୍ନ ବିଦିତ । ୪୨ ।
ପୁଷ୍ୟା ନକ୍ଷତ୍ର କକଡ଼ା ଚନ୍ଦ୍ରରେ,
ବୃହସ୍ପତି ଛନ୍ତି ଉଚ୍ଚ କେନ୍ଦ୍ରରେ । ୪୩ ।
ସ୍ଥିତ ସଉରୀ ମଙ୍ଗଳ ମକରେ,
ମେଷେ ଅସୁରଗୁରୁ ଲୀଳା କରେ । ୪୪ ।
ଧନ୍ୟ ହୋଇଅଛି ରାହୁ କନ୍ୟାରେ,
ବୁଧ ମିଥୁନରେ କେତୁ ମୀନରେ । ୪୫ ।
ସିଂହେ ସ୍ଥିତ ହୋଇଛି ବିକର୍ତ୍ତନ,
ସୌମ୍ୟ ଗ୍ରହ ଦୃଷ୍ଟି ଲଗ୍ନେ ପତନ[୧୨] । ୪୬ ।
ଏ ସମୟରେ ରମଣୀ ରତନ,
ରତୁ ଲଭିଣ ଭଜିଲା ଚେତନ । ୪୭ ।
ନିଦ୍ରାଗିରି ହତେ ପବି ପତନ,
ଯାହା ଚଳିଲା କାମ ନିକେତନ । ୪୮ ।

---

ପାଠାନ୍ତର—୧୦, ଗୁରୁବାରେ ୧୧, ଯୋଗ୍ୟ ୧୨, ତପନ ।

---

୪୧ଠାରୁ୪୬—ଲଦଣ୍ୟବତୀ ଫଳିତ ଜ୍ୟୋତିଷ ଗଣନା ହିସାବରେ ଅତି ଶୁଭ ମୁହୂର୍ତ୍ତରେ ପୁଷ୍ପବତୀ ହେଲା । ପ୍ରଥମ ରଜୋଦର୍ଶନରେ ସେହି ଶୁଭବେଳା ୦୧ରୁ୪୬ ପଦମାନଙ୍କରେ କହୁଛନ୍ତି । ସିଦ୍ଧ ସାଧ୍ୟ ଯୋଗ-୨୭ଟି ଯୋଗ ମଧ୍ୟରୁ ଏ ଦୁଇଟି ସିଦ୍ଧି ବେଳା ଅତ୍ୟନ୍ତ ଭଲ ଯୋଗର ସମୟ । ଆଦିତ୍ୟ ସୂର୍ଯ୍ୟ ଶୁକ୍ରବେଳ- ବାରବେଳା ଓ କାଳବେଳାର ଗଣନାରେ ଏହା ଗୋଟିଏ ଯାମାର୍ଦ୍ଧ (ପାଞ୍ଜିରେ ଦେଖିଲେ ବୁଝା ପଡ଼ିବ) । ଲଗ୍ନ (ଯେଉଁ ରାଶିର ଉଦୟ ବେଳ ସେହି ରାଶିକୁ ସେହି ମୁହୂର୍ତ୍ତରେ ଲଗ୍ନ କହନ୍ତି ) ଚନ୍ଦ୍ର ପୁଷ୍ୟାନକ୍ଷତ୍ର କକଡ଼ା ରାଶିରେ । ରାଶି ଚକ୍ରରେ ଗ୍ରହମାନଙ୍କର ସ୍ଥାନ ବାରଟି ଘର । ଚତୁର୍ଥ ସପ୍ତମ ଓ ଦଶମ ତିନୋଟିକୁ କେନ୍ଦ୍ର କୁହାଯାଏ । ଶୌରୀ—ଶନି, ଅସୁରଗୁରୁ—ଶୁକ୍ର ବିକର୍ତ୍ତନ—ସୂର୍ଯ୍ୟ, ସୌମ୍ୟ ଗ୍ରହ—ବୁଧ; ତାହାର ଦୃଷ୍ଟି ଲଗ୍ନରେ ପଡ଼ୁଛି ।

୪୭—ଭଜିଲା ଚେତନ—ନିଦ ଭାଜିଗଲା ।

୪୮—କାମ ନିକେତନ (ଯୋନି) ଚଳିଲାକି ଅନ୍ୟପ୍ରକାରେ ହୋଇଗଲା । ସେହି ଚଳିବାଟା ନିଦ୍ରାରୂପ ଗିରି (ପର୍ବତ)କୁ ହତେ (ଭାଙ୍ଗିବାରେ) ପବି (ବଜ୍ର) ପତନ ପରିହେଲା ।

ଜାତିମାଳାକୁ ଠାରି ନେତ୍ରାନ୍ତରେ,
ଗଲା ଗୋପ୍ୟ ମନ୍ଦିରେ ତରନ୍ତରେ । ୪୯ ।
ଘେନ ଲେଖା ସେ କେତେ ବିବେକରେ,
ରଙ୍ଗ ପାଟ ଦୁକୂଳେ ନେଇ କରେ । ୫୦ ।
ଯାହିଁ ଏକାନ୍ତେ ଯନ୍ତ୍ରେ ରନ୍ଧ୍ର ବେଶୀ,
ଜଘ ସନ୍ଧି ପାଶେ[୧୩] ଦୃଷ୍ଟି ନିବେଶି । ୫୧ ।
ବିମ୍ବ [୧୪] ସ୍ଫଟିକ ବାଡ଼ରେ ଯେସନ,
ଫୁଲ ମନ୍ଦାର ତେମନ୍ତ ପ୍ରସନ୍ନ । ୫୨ ।
ଚୂର୍ଣ୍ଣ ଭୂମିରେ ମଣ୍ଡଳ ଆକାରେ,
ଦ୍ରବ ହିଙ୍ଗୁଳ ଢାଳିଲା ପ୍ରକାରେ । ୫୩ ।
ଦେଖି ସୁଖୀ ହୋଇ ଆନବସନ,
ପିନ୍ଧୁଁ ହେଲା ସୁରପୁର ଦର୍ଶନ । ୫୪ ।
ହେମ ପଦକରେ କାମ ବଣିକ,
କଲା ନାୟକ କି ବିଦ୍ୟ ମାଣିକ । ୫୫ ।
ଯୁବା ଜୟକୁ ପାର୍ଶ୍ୱରେ [୧୫] ସଙ୍କଳ୍ପ,
କରେ ବିମ୍ବଫଳେ [୧୬] ନାହିଁ ବିକଳ୍ପ । ୫୬ ।
ଯଉବନ ମାଳୀ ସ୍ତନ ଶମ୍ଭୁରେ,
ପୂଜା ବିହି ସାଗି ସ୍ୱର୍ଣ୍ଣ[୧୭] କମ୍ବୁରେ । ୫୭ ।

---

ପାଠାନ୍ତର—୧୩, ବାସେ । ୧୪, ଦ୍ରବ୍ୟ । ୧୫, ପଦରେ । ୧୬, କରବମ୍ବେ । ୧୭, ଦ୍ରବ୍ୟ ।

---

୪୯—ଜାତିମାଳା ନାମକ ପରିଚାରୀକୁ ନେତ୍ରାନ୍ତରେ (ଆଡ଼ଚାହାଣିରେ)ଠାରି ଗୋପ୍ୟ ମନ୍ଦିରକୁ ( ନିର୍ଜନ ଘରକୁ ) ଗଲା ।

୫୦—ସେ ଯାହା ରଙ୍ଗପାଟ ଦୁକୂଳ (ଲୁଗା) ହାତରେ ନେଇଗଲା ସେ କଥା କେତେ ବିବେକର ଲେଖା; କେତେ ଜାଣିବାର କାର୍ଯ୍ୟବୋଲି ଗଣା ହେବା ଉଚିତ । ଘେନ (ଜାଣ) ।

୫୧ଠାରୁ୬୦—ଏ ପଦମାନ ବଡ ଅଶ୍ଳୀଳ ଥିବାରୁ କେବଳ କେତୋଟି ଶବ୍ଦାର୍ଥ ମାତ୍ର ଦିଆଗଲା । ସ୍ଫଟିକ ବାଡରେ—ସ୍ୱଚ୍ଛମଣି କାନ୍ଥରେ; ଫୁଲ—ଫୁଟିଲା; ବିମ୍ବ—ପାଚିଲା କଇଁଝି କାକୁଡ଼ି; ପ୍ରସନ୍ନ—ସୁନ୍ଦର; ଚୂର୍ଣ୍ଣଭୂମି—ଚୂନଲିପାସ୍ଥାନ; ମଣ୍ଡଳ—ହୋମାଦି ନିମନ୍ତେ ଚିହ୍ନ; ଦ୍ରବ—ତରଳ ( ପାଣିରେ ଗୋଳା ହୋଇଥିବା ); ସୁରପୁର

ପାରିଜାତ ପ୍ରସାଦ କି ଥୋଇଛି,
ସେହି ପ୍ରକାରେ ରୁଚିର ହୋଇଛି । ୫୮ ।
ବାଳ ଘନୁ ଜାନୁ ଗିରି ଗୁହାରେ,
ସ୍ଥିତ ତା ଘନୁ ଆଗ କି ବାହାରେ [୧୮] । ୫୯ ।
ଅଧୋମୁଖରେ [୧୯] ଶୋଣିତ ବମନ,
କଚ୍ଛପ କି କରଇ ଘେନେ ମନ । ୬୦ ।

ଚିତ୍ତ ଘେନିବା କରି ମାନସରେ
ରତି କି ଜଘନ ପେଡ଼ି ଶେଷରେ । ୬୧ ।
ନବନୀତରେ ସିନ୍ଦୁର ଗୋଳିଲା,
ଏହି ଉପମାରେ ଚିତ୍ତ ବଳିଲା । ୬୨ ।
ମୋହ ସଙ୍ଗେ ପଣ ହେଉ ସମାନ,
କରି ମାରପୁର ଏହି ଗୁମାନ । ୬୩ ।
ଉଡ଼ାଇଲା କି ସ୍ୱରଙ୍ଗ ଫଡ଼କା[୨୦],
ଏଣୁ ପଡ଼ିଲା ଚଳଦଳେ ଡ଼କା । ୬୪ ।
ଧାତା କୋମଳେ ଏ ତନୁ ରଚିଲା,
ଅନୁରାଗ ପୂର୍ଣ୍ଣ କରି ସଞ୍ଚିଲା । ୬୫ ।
ଭଲା ମଧ୍ୟ ଚିରିଥିଲା ନଖରେ,
ବ୍ୟକ୍ତ ହେଲା କାଳେ[୨୧] ଇଚ୍ଛା ସୁଖରେ । ୬୬ ।

---

ପାଠାନ୍ତର—୧୮, ସ୍ଥିତ ଆଗମୁଁ ଅଗ ବାହାରେ । ୧୯, ମୁଖରୁ । ୨୦, ପତାକା । ୨୧, ହୋଇଚ୍ଛକ ।

---

(କାମନିକେତନ) [ଉପରେ ଦେଖ] ନାୟକ–ପାନପତ୍ର ପରି ହୋଇଥିବା ପଦକ ଭିତରେ ଯେଉଁ ମଣିଖଣ୍ଡକ ଥାଏ । ହେମ–ସ୍ୱର୍ଣ୍ଣ; ମାଣିକ୍ୟ–ଲାଲମଣି; ବିମ୍ବଫଳ–ପାଚିଲା କଇଁଞ୍ଚି କାକୁଡ଼ି; ସ୍ୱର୍ଣ୍ଣକମ୍ବୁ–ସୁନାଶଙ୍ଖ; ପାରିଜାତ–ମନ୍ଦାର; ବାଳଘନୁ–ସକାଳର ଲାଲ ଅରୁଣ ସୂର୍ଯ୍ୟ; ଶୋଣିତ–ରକ୍ତ; କଚ୍ଛପ–କଇଞ୍ଛ; ବମନ–ବାନ୍ତି; ମନେ ଘେନେ –ମନକୁ ଆସେ ।

୬୧ରୁ୭୦–ରତି–ମଦନରସ୍ତ୍ରୀ; ନବନୀତ–ଲହୁଣୀ; ଗୁମାନ–ଗର୍ବ; ଫଡ଼କା–ପତାକା; ଚଳଦଳ–ଅଶ୍ୱତ୍ଥପତ୍ର; ଅନୁରାଗ–ପ୍ରୀତି ( ବର୍ଣ୍ଣରେ ଲାଲ ବୋଲି ବର୍ଣ୍ଣନା ଅଛି ); ବିଚକ୍ଷଣ–ଖୁବ୍ ଜାଣିଲା ବାଲା; ସଂକ୍ରୁଧରେ–ଭରି ରଗରେ; ତାମରସ–ପଦ୍ମ;

ଗୋରୋଚନା ଲକ୍ଷ ବଡ଼ ଲକ୍ଷଣ,
କେହି ଯେହି ବୋଲଇ[୨୨] ବିଚକ୍ଷଣ । ୬୭ ।
ତାଙ୍କ ଉପରେ କିବା ଫକ୍ରୁ ଧରେ[୨୩] ,
ମହା ଆରକ୍ତିମାକୁ ମୁଖେ ଧରେ । ୬୮ ।
ଦେଖି ଏମନ୍ତ ଶୋଭ ତାମରସ,
ଫୁଲ ବାସିନୀର ଜାତ ହରଷ । ୬୯ ।
ଉଠୁ ସନ୍ଧି ରୁନ୍ଧି ରଙ୍ଗ ଦୁକୂଳ,
ପିନ୍ଧି ସଖୀ ଜାଣିବାକୁ ଆକୁଳ । ୭୦ ।
ନିଦ୍ରା ଭଜି କେମା ଯିବା ବିଧାନ,
ସଖୀମାନେ କଲେ[୨୪] ଅନୁସନ୍ଧାନ । ୭୧ ।
କିପାଁ ନୋହିଲ[୨୫] ମର୍ଦ୍ଦନ ମାଜଣା,
ବେଗେ ଗଲତ ନ ଯାଇ ଏ ଜଣା । ୭୨ ।
କେ ବୋଇଲ ଅତ୍ୟନ୍ତ ରସମୟ,
ପ୍ରକଟିଲକି କୁସୁମ ସମୟ । ୭୩ ।
କେ ବୋଇଲ ସେ ପୀରତି ଲମ୍ପଟ,
ଆମ୍ଭଠାରେ କରନ୍ତା କି କପଟ । ୭୪ ।
କେ ବୋଇଲ ଛଳି ଏ ଭରତୀକି,
ଲଜ ବଳିଥାଇ ଥିବ ପ୍ରୀତିକି । ୭୫ ।

---

ପାଠାନ୍ତର—୨୨, ମେନ୍ଥ ହୁଅନ୍ତି । । ୨୩, ସ୍ୱ କ୍ରୋଡ଼ରେ । ୨୪, କଣ । ୨୫, ନୋହୁଣ ।

---

ଫୁଲ ବାସିନୀ—( ପଦ୍ମଫୁଲ ପରି ମୁଖ ବାସନା ଯାହାର ସେହି ଲବଣ୍ୟବତୀ ) ପଦ୍ମିନୀ ପଦ୍ମଗନ୍ଧା । ଏହା ଶାସ୍ତ୍ରରେ ଅଛି ।

୭୩—ଅତ୍ୟନ୍ତ ରସମୟ—ଅତି ସରସତା ପୂର୍ଣ୍ଣ; କୁସୁମ ସମୟ—ବସନ୍ତ କାଳ ଏବଂ ଅତି ପ୍ରୀତିମୟ ପୁଷ୍ପକାଳ ବା ଯୌବନ କାଳ—ଏହି ଦୁଇ ଅର୍ଥ ।

୭୪ଠାରୁ ୮୦—ପୀରତି ଲମ୍ପଟ—ସ୍ନେହରେ ବନ୍ଧା; ଛଳି—ଅଟାକରି; ପାଟ ଜଉତିଷ୍ପ ସୁତା—ଗଜାଙ୍କ ବଡ଼ ଜ୍ୟୋତିଷର ଝିଅ; ମୂଳକରି—ଠିକ୍ କରି; ତକ୍ଲେ—ସଙ୍ଗେ ସଙ୍ଗେ; ଚେଟୀ—ଦାସୀ; ସଖୀମାନେ ଜ୍ୟୋତିଷ ଝିଅ ସଙ୍ଗେ ଯାଉଁ ଯାଉଁ ବାଟରେ ଚେଟୀ

ଏହି ସମୟକୁ ହୋଇ ସୁବେଶ,
ପାଟ କଉତିଷ ସୁତା ପ୍ରବେଶ[२६] । ୭୬ ।
ଛାଇ ମପାଇ ମୂଛ କରି[२७] କାଳ,
କେମା ପାଖକୁ ଚଳିଲେ ତତ୍କାଳ । ୭୭ ।
ଯାଉଁ ପଥରେ ଭେଟିଲେ ଚେଟୀକି,
ଘେନି ଆସୁଛି ପାଇଟା ଶାଟୀକି । ୭୮ ।
ବାସେ ଗୋଡ଼ାଇ ଅଛନ୍ତି ଅଳିୟେ,
ଏ ସଙ୍କେତୁ ସତ କରି ଆଳିୟେ । ୭୯ ।
ଯାଇ ନୃପସୁତା ପାଶେ ମିଳିଲେ,
ହାସ ରହସ ଭବରେ ଛଳିଲେ । ୮୦ ।
ତୁମ୍ଭ ଆମ୍ଭ ପ୍ରୀତି ନୋହେ ଆଜର,
ଯଉବନ ସଙ୍ଗୁ ସଙ୍ଗ ଲଜର । ୮୧ ।
ତାହା ଯୋଗୁଁ[२८] କଲୁ ଏତେ[२९] ଅନ୍ତର,
କି କରିବୁ ସଙ୍ଗ ହେଲେ କାନ୍ତର । ୮୨ ।
ବାଣୀ କୋକିଳୁଁ ମଧୁର ହେବାରୁ,
ନଖ ନିଆଳୀ ଛବି ବହିବାରୁ । ୮୩ ।
ହୃଦ ନଦରେ[३०] ଚିତ୍ତ ରଞ୍ଜିବାରେ,
ସ୍ତନ କମଳ କଢ଼ୀ ବର୍ଦ୍ଧିବାରେ । ୮୪ ।

---

ପାଠାନ୍ତର- ୨୬, ପାଟ କୌଷେୟଷିକ ସୂତାପ୍ରବେଶ । ୨୭, କଲେ । ୨୮, ସଙ୍ଗୁ । ୨୯, ଏତେ । ୩୦, ହୃଦରେ ।

---

( ପରିବାରୀ ) ଉପରେ କୁହା ଯାଇଥିବା କାତିମାଳା; ଶାଟୀ—ଶାଢୀ; ଅଳି—ଭ୍ରମର ସଙ୍କେତ—ଚିହ୍ନ; ରହସ ଭବରେ ( ଇଙ୍ଗିତ ଥଟାକରି ) ।

୮୧ । ୮୨-ତୁମ୍ଭ ଆମ୍ଭ ପ୍ରୀତି ଆଜର (ଏବର) ନୁହେ ଅର୍ଥାତ ପୁରୁଣା । ଆଜି ଯୌବନ ସଙ୍ଗରୁ ତୁମ୍ଭ ସଙ୍ଗେ ଲଜର ସଙ୍ଗ ହେଲା । ଅର୍ଥାତ ସେ ନୂଆ ସାଙ୍ଗ ହେଲା । ତାହା ଯୋଗୁଁତ ଏତେ ଅନ୍ତର ( ପର )କଲୁ । କାନ୍ତର (ସ୍ୱାମୀର) ସଙ୍ଗ ହେଲେ ତୁ କି କରିବୁ ? ବୋଧହୁଏ ଆଉ ମନେ ପକାଇବୁ ନାହିଁ ।

୮୩ଠାରୁ୮୬—ଏହି ପଦ ମାନଙ୍କରେ ପୁଷ୍ପ ସମୟ ଅର୍ଥରେ ବସନ୍ତ କାଳ ଓ ଲବଣ୍ୟବତୀର ଯୌବନ ସମୟ ଦୁଇ ଅର୍ଥ ରଖି କୁହା ଯାଉଛି । ଯଥା—ତୋର ବାଣୀ କୋକିଳ

କାନ୍ତି କେତକୀ ଦିନୁ ଦିନୁ ଗ୍ରସ୍ତୁ,
ଗ୍ରହିଁ ଆମ୍ଭେମାନେ ମନେ ବିଚାରୁ । ୮୫ ।
ପୁଷ୍ପ ସମୟ ହେଲାଣି ନିକଟ,
ସତ କହ ହୋଇଲାକି ପ୍ରକଟ । ୮୬ ।
ଶୁଣି ସଖୀଏ କହିଲ ଏସନ
ନ କହିଲେ କହିଲାଣି ବସନ । ୮୭ ।
ବନେ ବିକଶିତ ହେଲେ ମାଧବୀ,
ମଧୁପେ କି ନ ଜାଣନ୍ତି ବାନ୍ଧବୀ । ୮୮ ।
ପାଟସୂତ୍ର ରେ ଗୁନ୍ଥିଣ ମୋତିକି,
ଜେମା ଲୁଗ୍ରଇ ଲେଉଟୁଛି ଜ୍ୟୋତିକି । ୮୯ ।
କେତେ ବେଳ ଯାଏ ସୂର୍ଯ୍ୟ ଉଦିତ,
କରିପାରେ କୁଜ୍‌ଝଟି ଆଚ୍ଛାଦିତ । ୯୦ ।
କେତେ କାଳ ଲୁଗ୍ରନ୍ତା ପକ୍ଷ୍ମଳାକ୍ଷୀ,
ଦିନାନ୍ତରେ ତ ଘେନି ନାହିଁ ଲକ୍ଷା ! ୯୧ ।

---

ବାଣୀ ପରି କ୍ରମେ ମଧୁର ହୋଇ ଆସିଥିବାରୁ, ନଖ ନିଆଳୀ ଫୁଲ ପରି ସୁନ୍ଦର ହୋଇ ଆସି ଥିବାରୁ, ହୃଦ ( ଛାତି ) ନଦୀ ପରି ଗହିରିଆ ହୋଇ ସୁନ୍ଦର ହେବାରୁ କମଳ ( ପଦ୍ମ ) କଢୀ ପରି ସ୍ତନ ବଢିବାରୁ ଦେହର କାନ୍ତି (ଶୋଭା) କେତକୀ ପରି ଚାରୁ (ସୁନ୍ଦର) ହେବାର ଚାହିଁ ଆମେମାନେ ବିଗ୍ରରୁ ଥିଲୁଁ ପୁଷ୍ପ ସମୟ ନିକଟ ହେଲାଣି । ସତକହ ପ୍ରକାଶ ହେଲା କି ?

୮୭—ବସନ—ଲୁଗା;

୮୮ଠାରୁ୯୧—ସେ ମନକୁ ଜଣାଯିବା କଥା । ମାଧବୀ ଫୁଲ ବଣରେ ଫୁଟିଲେ ମଧୁପେ ( ଭ୍ରମରମାନେ ) ନ ଜାଣନ୍ତି କି ? ପାଟ ସୂତାରେ ମୋତି ଗୁନ୍ଥିଲେ ସୂତା ବାହାରକୁ ଚକ ଚକ ଦିଶେ । ମୋତିର ଜ୍ୟୋତି ଲୁଗ୍ରଇ ହୁଏ ନାହିଁ । କୁହୁଡ଼ିରେ ସୂର୍ଯ୍ୟ କେତେବେଳ ବା ଲୁଚିରହେ । ପକ୍ଷ୍ମଳାକ୍ଷୀ—ସୁନ୍ଦର ପକ୍ଷ୍ମ ଅର୍ଥାତ ଆଖିପତା ବାଳ ବହଳ ଯେଉଁ ଆଖିର ସେ ପକ୍ଷ୍ମଳ, ପକ୍ଷ୍ମଳ ଅକ୍ଷି (ଆଖି) ଯେଉଁ ସ୍ତ୍ରୀର ସେ ପକ୍ଷ୍ମଳାକ୍ଷୀ । ଦିନାନ୍ତରେ—ସନ୍ଧ୍ୟାବେଳେ; ଲକ୍ଷା—ଅଳତା; ଝିଅ ମାନେ ସକାଳୁ ଅଳତା ଘେନନ୍ତି, ବୋହୂମାନେ ସନ୍ଧ୍ୟାବେଳେ ।

ଅବା ସିନ୍ଦୁର ପୋଛିଲ କହିବ,
ଆଗ ଅଞ୍ଚଳ ନୋହେ ସେ ନୋହିବ । ୯୨ ।
ସହଚରୀ ପରିହାସ ସରିତେ,
ମୃଦୁଭଷୀ ଭସିଗଲ ତ୍ୱରିତେ । ୯୩ ।
ମୁଖ ନିବେଶିଲ ନିଜ ଉରଜେ,
କ୍ଷିତି ଠୁକି ଆରମ୍ଭିଲ କରଜେ । ୯୪ ।
ପ୍ରେମଶୀଳା ମାତା ପାଶେ ଜଣାଇ,
ସର ମନ୍ଦିର ସମ୍ଭାର ଅଣାଇ । ୯୫ ।
ମାସ ତଣ୍ଡୁଳରେ ଗୃହ ଗଢାଇ,
ବାସ ପ୍ରାକାର ପ୍ରକାରେ ବେଢାଇ । ୯୬ ।
ଘରି ପାଖେ ଘରି ଗୋଟି ମାର୍ଗଣ,
ଅବିଳମ୍ବେ ପୋତିଲେ ସଖୀଗଣ । ୯୭ ।
ନାରୀକେଳ, ଚେଳ, ଦୁର୍ବା ଗେପକୁ,
ଭରି ସମୀପେ ଥୋଇଲେ ସୂର୍ପକୁ । ୯୮ ।
ମଧ୍ୟେ ବସାଇଲେ ନବ ବାଳୀକି, [୩୧]
ଶୁଭ ଅର୍ଥେ ଦେଲେ ହୁଳ ହୁଳି କି [୩୨] । ୯୯ ।
ସେହି ଶବଦ ଜନକ ଶୁଣିଲେ,
ଜୀର୍ଣ୍ଣ ମୃଦୁସ୍ଥଲୀ ଠାରୁ ଜାଣିଲେ । ୧୦୦ ।

---

ପାଠାନ୍ତର—୩୧, ଯେ ନବବାଳୀ । ୩୨, ଅର୍ଥରେ ଦେଲେ ହୁଳହୁଳ ।

---

୯୨—ଲୁଗାର ପଣ୍ଡି କାନିରେ ସିନ୍ଦୁର ପୋଛିବା ମଧ୍ୟ ସମ୍ଭବ ନୁହେ ।

୯୪—ଉରଜେ—ସ୍ତନରେ; କ୍ଷିତି—ପୃଥିବୀ, ଅର୍ଥାତ୍ ତଳ କରଜେ—ନଖରେ; ମୁଣ୍ଡପୋତି ତଳେ ନୁଖ ବାଡ଼େଇଲ ।

୯୫ରୁ୯୭—ପ୍ରଥମ ରଜୋଦର୍ଶନରେ କାଣ୍ଡଶର ୪ଟି ପୋତି ମାସ (ବିରି) ତଣ୍ଡୁଳରେ (ଘୃଭଳରେ) ବନ୍ଧ ଦେଇ ଘରପରି କରି ବାସ (ଲୁଗା)କୁ ସେହି ଶରରେ ପ୍ରକାର (ପାଚେରୀ) ପରି ବେଢାଇ ମାର୍ଗଣ (ଶର) ମନ୍ଦିର (ଘର) ତିଆର କରି ସେଥିରେ ନୂତନ ଯୁବତୀକୁ ସାତ ଦିନ ବସାଇ ରଖିବାର ବିଧି ।

୯୮—ବନ୍ଦାପନା ନିମନ୍ତେ ନାରୀକେଳ (ନଡ଼ିଆ) ଚେଳ (ଲୁଗା) ଦୁର୍ବା (ଦୁବ) ଗେପ (ଶର) ଭରି (ଭର୍ତ୍ତିକରି) ସୂର୍ପକୁ (କୁଲକୁ) ସମୀପେ-ପାଖରେ ରଖିଲେ ।

୧୦୦—ଜୀର୍ଣ୍ଣ ମୃଦୁସ୍ଥଲୀ—ବୁଢ଼ୀ ଦାସୀ ;

ଉଚ୍ଛୁଳିଲା ପୁର ଦ୍ୱାର ବାଦ୍ୟରେ,
ବାଦ୍ୟ ଏମନ୍ତ କହେ କି ନାଦରେ । ୧୦୧ ।
ଯୁବା ହୋଇ ସାହା ହେଲ ଯୁଗତେ,
ମଦନଙ୍କୁ; ଶୁଭିଲା ଏ ଜଗତେ । ୧୦୨ ।
ଯୋଗୀ ଜୟ ମୂଳ ମନମଥର,
ଲଭି ଏ ଭୟ ମହେଶ ପଥର । ୧୦୩ ।
ଆମ୍ଭ ଦମ୍ଭ କେତେ ଭବି ବହନେ,
ଋଷି ପଶିଲେ ନୈମିଷ ଗହନେ । ୧୦୪ ।
କାଣ୍ଡ ଗୃହେ ଶୋହେ ବାଳା ଉଚିତ,
ଏହି ଉପମା ଜାତ ହୋଏ ଚିତ୍ତ । ୧୦୫ ।
କରି ସଂକଳ୍ପ ସେ ସାତ ଦିନକୁ,
କରେ କି ରତି ଦେବୀ ପୂଜନକୁ । ୧୦୬ ।
ସାତ ଦୀପହିଁ ହୋଇଛି ଦୀପିତ,
ସାତ କୁମ୍ଭ କୁମ୍ଭ କୁଚ ସ୍ଥାପିତ । ୧୦୭ ।
ଶ୍ରୁବ ଶ୍ରୁଚ ରୋମାବଳି ନାଭି ତା,
ଜଘନନ୍ତ ହେମ ବେଦି ଶୋଭିତା । ୧୦୮ ।

---

୧୦୨—ଯୁବା ହୋଇ—ଯୁବତୀ ହୋଇ; ଯୁଗତେ—ଯଥାର୍ଥରେ । ମଦନଙ୍କୁ (କାମଙ୍କୁ) ସାହା ( ସାହାଯ୍ୟ ) ହେଲା । ଜଗତେ ବାଦ୍ୟ ନାଦରେ ଏହା ଶୁଭିଲା ।

୧୦୩—୧୦୪[ଲାବଣ୍ୟବତୀ] ମନମଥ (କାମ)ର ଯୋଗୀଜୟ ମୂଳ ( ଯୋଗୀମାନଙ୍କୁ ଜିଣିବାରେ ମୂଳ ) ଏ ଭୟ ଲଭି ମହେଶ ( ମହାଦେବ ) ପଥିଁ ହେଲେ କି ? ଆମ୍ଭ ଦମ୍ଭ ଅବା କେତେ ! ଏହା ଭବି ଋଷିମାନେ ନୈମିଷା ଗହନେ ( ନିମିଷାରଣ୍ୟରେ ) ପଶିଲେ [ ଅଯୋଧ୍ୟାର ନୈମିଷ୍ୟାରଣ୍ୟ ଋଷି ମାନଙ୍କର ସ୍ଥାନ ବୋଲି ପ୍ରସିଦ୍ଧ ] ।

୧୦୬ଠାରୁ୧୧୩—ରତି ଦେବୀ—କାମ ଦେବଙ୍କର ଭାର୍ଯ୍ୟା । ଏ ପୂଜାରେ ବନ୍ଦାପନାର ସାତଦୀପ ( ସାତ ମୁହଁଥିବା ଯେଉଁ ଦୀପରେ ବନ୍ଦାପନା କରଯାଏ ) ପୂଜା ସ୍ଥାନରେ ( ଜଳା ହେଉଥିବା ) ଦୀପହେଲା । କୁଚ ସାତ କୁମ୍ଭ ( ସୁନା କଳଶୀ) ହେଲା । ନାଭିଠାରୁ ତଳକୁ ଲମ୍ବିଥିବା ରୋମାବଳୀ ଶ୍ରୁବ ( ଘିଅ ଆହୁତି ଦେବାର ଡ଼ଙ୍କା ) ହେଲା । ନାଭିଶ୍ରୁଚ ( ପଞ୍ଚ ଆହୁତି ଦେବା ନିମନ୍ତ ଯେଉଁ ବଡ଼ ହତା

ଗରୁ ସୁଉରୁ [୩୩] କଦଳୀ କାଣ୍ଡରେ,
ଶୋଭ ବରାଙ୍ଗ ଆହୁତି କୁଣ୍ଡରେ । ୧୦୯ ।
ଦୀପ୍ତ ଶ୍ରବଣ ତାଟଙ୍କ ଆଳତି
ବକ୍ର ବିକାରରୁ [୩୪] କରି ଚଳନ୍ତି । ୧୧୦ ।
ଯହିଁ ବରଣ ବିପ୍ର ଅନୁଗ୍ରରି [୩୫]
ମନ୍ତ୍ର ମଙ୍ଗଳ ଗୀତକୁ ଉଚ୍ଚାରି । ୧୧୧ ।
ନିଃସଂଶୟରେ ଏକଥା ଉଦୟ
ପଶୁ ହୋଇବେ ଯୁବା ସମୁଦାୟ । ୧୧୨ ।
ସିଦ୍ଧ ହେବ ଏହି ବାଞ୍ଛା ତାହାର,
ଆଉ ବଲ୍ଲଭୀ ନୋହିବ ନାହାର । ୧୧୩ ।
ଭିକ୍ଷୁ ନାପିତ ରଜକେ ଲଳାସେ,
ପୂର୍ଣ୍ଣ ସ୍ନାନ ସାରି ଦାନ ଦେଲ [୩୬] ସେ । ୧୧୪ ।

---

ପାଠାନ୍ତର—୩୩, ସୁନ୍ଦରୁ । ୩୪, ବିକାରରେ । ୩୫, ବ୍ରାହ୍ମଣ ସଗ୍ବରୀ । ୩୬, କଲ ।

---

ତିଆର ହୋଇଥାଏ । ଜଘନ–(ଜଙ୍ଘ) ଶୋଭିତା ( ସୁନ୍ଦର) ହେମ ବେଦିହେଲ । ଗରୁ (ସୁନ୍ଦର) ସୁଉରୁ (ବର୍ତ୍ତୁଳ ଜଙ୍ଘ) ବେଦି ପାଖେ ପୋତା ହୋଇଥିବା କଦଳୀ ଗଛର ଗଣ୍ଡି ହେଲ । ସୁନ୍ଦର ବରାଙ୍ଗ ( ଯୋନି ) ଆହୁତି କୁଣ୍ଡ ହେଲ । କାନର ଉଜ୍ଜ୍ୱଳ ତାଟଙ୍କ (କାପ) ଆଳତୀ ହେଲି । ବକ୍ର ବିକାରରୁ କରି ( ମୁହଁ ହଲଇବା ହେତୁରୁ ) କାପମାନେ ଆଳତୀ ପରି ହଲନ୍ତି । ଅନୁଗ୍ରରୀ ( ସଖୀ, ପରିବାରୀମାନେ ) ଏଠାରେ ବରଣ ହୋଇଥିବା ବିପ୍ର ( ବ୍ରାହ୍ମଣ ) ସେମାନଙ୍କ ମଙ୍ଗଳ ଗୀତ ପୂଜାର ମନ୍ତ୍ର । ଏ ଦେବୀ ପୂଜାରେ ଯୁବା ସମୁଦାୟ ( ଯୁବାମାନେ ) ନିଃସଂଶୟରେ (ନିଶ୍ଚେ) ପଶୁ ହେବେ ( ବଳିଦିଆହେବେ ) ଏ ପୂଜାରେ ଲବଣ୍ୟବତୀର ଏହି ବାଞ୍ଛା ସିଦ୍ଧ ହେବ କି ? ନାହାର ( ସ୍ୱାମୀର, ବରର ଆଉ ବଲ୍ଲଭୀ କି ସ୍ତ୍ରୀ ନୋହିବ । ଅର୍ଥାତ୍ ଲବଣ୍ୟବତୀର ବର ବଡ଼ ରଜା ହୋଇଥିଲେ ମଧ୍ୟ ଏହାକୁହିଁ ଗୋଟିଏ ରାଣୀ କରି ସନ୍ତୁଷ୍ଟ ହେବ । ସାଧାରଣ ରଜାଙ୍କ ପରି ଆଉ ରାଣୀ କରିବାରେ ମନ ବଳାଇବ ନାହିଁ ।

୧୧୪– ଭିକ୍ଷୁ ( ଭିକାରୀ ) ନାପିତ ( ଭଣ୍ଡାରୀ ) ରଜକ ( ଧୋବା ) ଏହି ମାନଙ୍କୁ ନବ ଯୁବତୀ ମାନଙ୍କର ସାତଦିନ ପରେ ସାତଖୁରା ବନ୍ଧାଣ ଉତାରୁ ଦାନ କରିବା ରୀତି ।

ଦିବ୍ୟ ତଇଳ ତଣ୍ଡୁଳ ଅମ୍ବର,
ଅବଶେଷେ ପକାଇଲେ ଶମ୍ବର । ୧୧୫ ।
ବେଶ କରି ସାରି ନୃପ ନନ୍ଦନା,
କରାଇଲେ ରବି ଅର୍ଘ୍ୟ ବନ୍ଦନା । ୧୧୬ ।
ବେଶ କରିବାକୁ ଆଗ ଦିଶିଲା,
ନେତ୍ରାଞ୍ଜନ ବିବେକକୁ ଧ୍ୱଂସିଲା । ୧୧୭ ।
ଏଣୁ ଉପମା ଗଣ ଅନୁକୂଳ,
ଅଭଦ୍ରତା ଭଳି ହେଲେ ଆକୁଳ । ୧୧୮ ।
ପୁଣ ଇଷ୍ଟଦେବୀ ନିଜ ମାତାକୁ,
ନିଉଛାଳି ଯେ କରାଇଲେ ତାକୁ । ୧୧୯ ।
ଏଥୁ ଅନ୍ତେ ଜ୍ୟୋତିଷିକ କୁମାରୀ;
କର ଯୋଡ଼ି କହେ ଭୋ ସୁକୁମାରୀ । ୧୨୦ ।
ହେଲି ମେଲାଣି ବରଭୁବନରେ[୩୭] ,
ଏକାଥିବ ଦିବ୍ୟ ଅବଧାନରେ । ୧୨୧ ।

---

ପାଠାନ୍ତର—୩୭, ଭବନରେ ।

---

୧୧୫— ତେଲ, ଚାଉଳ, ଅମ୍ବର ( ଲୁଗା ) ପ୍ରଭୃତି ଦାନ କରାଯାଏ । ଶେଷରେ ଶମ୍ବର (ପାଣି) ଅର୍ଥାତ ଶାନ୍ତି ଉଦକ ଘରେ ପଡ଼େ ।

୧୧୬— ନୂଆ ବେଶ କରି ନୃପନନ୍ଦନା ( ରଜାଙ୍କଝିଅ ) [ ଲାବଣ୍ୟବତୀ ]କୁ ରବି (ସୂର୍ଯ୍ୟ) ଙ୍କୁ ଅର୍ଘ୍ୟ ବନ୍ଦନା କରାଇଲେ । ଅର୍ଥାତ୍ ସୂର୍ଯ୍ୟଙ୍କୁ ପାଣି ଦେଇ ଅର୍ଘ୍ୟ ପୂଜା କରାଯାଏ ।

୧୧୭ । ୧୧୮—ସେ ବେଶ କିପରି ? ଆଗେ ନେତ୍ରାଞ୍ଜନ ( ଆଖିର କଜ୍ଜଳ ) ଲାଗିଲେ ଯୁବାର ବିବେକ ଧ୍ୱଂସହେବ । ଅତଏବ ଅନୁକୂଳ (ଉପଯୁକ୍ତ) ଉପମା ମାନେ ଅଭଦ୍ରତା ଭଳି ( ସମାନ ହୋଇ ନ ପାରି ) ଆକୁଳ (ବ୍ୟସ୍ତ) ହେଲେ ।

୧୧୯— ତାପରେ ଇଷ୍ଟଦେବୀ ଓ ନିଜ ମାତା ଦୁହିଁଙ୍କୁ ନିଉଛାଳି କରାଇଲେ ( ମାଇପେ ଗୁରୁଜନ ମାନଙ୍କୁ ବା ଦେବଙ୍କୁ ବନ୍ଦାପନା କରିବା ବା ଦିଅଁ ମଙ୍ଗୁଳିବାକୁ ନିଉ-ଛାଳି କହନ୍ତି ) ।

୧୨୧— ବରଭୁବନରେ—ବରଘର ଖୋଜିବାରେ; ଅବଧାନରେ—ଖୁବ୍ ସାବଧାନରେ;

ଢେମା ବାସ ଅଳଙ୍କାର ଅପାରେ,
ସ୍ନେହ ବାଣୀ କହି ଦେଲ କୃପାରେ । ୧୨୨ ।
ପଢା ଶୁକ ଗୋଟିଏ ସେ ଯେ ମାଗି,
ସ୍ନେହେ ଦତ୍ତ କଲ ସେ ହେମଅଙ୍ଗୀ[୩୮] । ୧୨୩ ।
ଗଲ ସେ ନାରୀ କର୍ଣ୍ଣାଟ ଦେଶକୁ,
କୀର[୩୯] ଆସିବ କାର୍ଯ୍ୟ[୪୦] ଉଦ୍ଦେଶ୍ୟକୁ । ୧୨୪ ।
କାନ୍ତି ଗନ୍ଧଫଳୀ ଝଳି ବଳିତ[୪୧],
ଯେ କର୍ବୁର କାନ୍ତ ଦର୍ପ[୪୨]ଦଳିତ । ୧୨୫ ।
ଛବି ସୀତାରାମ ପାଦ ସାରସ,
ଉପଇନ୍ଦ୍ର ବୀରବର ହରଷ । ୧୨୬ ।

ପାଠାନ୍ତର—୩୮, ତାହା ହେମାଙ୍ଗୀ । ୩୯, ଶୁକ । ୪୦, କର୍ମ । ୪୧, ବଳାଉଳିତ ।
୪୨, କାନ୍ତଗର୍ବ ।

୧୨୨— ଢେମା ସ୍ନେହ କଥା କହି କୃପାରେ (ଦୟାରେ) ତାକୁ ଅପାରେ ( ବହୁତ ) ଲୁଗା ଅଳଙ୍କାର ଦେଲ ।

୧୨୩— ଗୋଟିଏ ପଢାଶୁକ (ପାଠ ପଢ଼ିଥିବା ଶୁଆ) ସେ ମାଗିଲ । ହେମ ଅଙ୍ଗୀ ଢେମା ସ୍ନେହରେ ତାହା ଦତ୍ତ କଲ (ଦେଲ) ।

୧୨୪— ସେ ନାରୀ (ଜ୍ୟୋତିଷ କୁମ୍ଭାରୀ) କର୍ଣ୍ଣାଟ ଦେଶକୁ ଗଲ । କୀର (ଶୁକ) ପରେ କାର୍ଯ୍ୟ ଉଦ୍ଦେଶ୍ୟକୁ (କାମକୁ) ଆସିବ ।

୧୨୫— ଏ ବନ୍ଦନା ସୀତା, ରାମ ଦୁହିଁଙ୍କ ପକ୍ଷରେ ଅର୍ଥ ହେବ । ସୀତାଙ୍କ ପକ୍ଷରେ; ଯଥା—ଗନ୍ଧଫଳୀ (ଚମ୍ପା କଢ଼ୀ) ଝଳି ( ଶୋଭା ) ବଳି କାନ୍ତି ( ଦେହରଦୀପ୍ତି ) ଯାହାଙ୍କର, କର୍ବୁର ( ହରିତାଳ ) ତାର କାନ୍ତ ( କମନୀୟତା—ସୌନ୍ଦର୍ଯ୍ୟ ) ତାର ଦର୍ପକୁ ଦଳିଛନ୍ତି ଯେ—ଅର୍ଥାତ୍ ତାହାଠାରୁ ସୁନ୍ଦର ଦେହ କାନ୍ତି ଯାହାର ସେ ସୀତା ରାମପକ୍ଷ—ଗନ୍ଧଫଳୀ (ପ୍ରିୟଙ୍ଗୁ) ତାର ଝଳି ଅର୍ଥାତ୍ ନୀଳ ରଙ୍ଗକୁ ବଳି ଯାହାଙ୍କର କାନ୍ତି ଦେହ ବର୍ଣ୍ଣ । ପୁଣି କର୍ବୁର କାନ୍ତ (ରାକ୍ଷସଶ୍ରେଷ୍ଠ)—[ ରାବଣ ] ତାର ଦର୍ପକୁ ଦଳିଛନ୍ତି ଯେ ରାମ ।

୧୨୬— ପାଦ ସାରସ—ପାଦପଦ୍ମ;

# ଚତୁର୍ଥ ଛାନ୍ଦ

## ବେଶ ପେଶଳ

## ( ଲାବଣ୍ୟବତୀର ବେଶ ବର୍ଣ୍ଣନା )

ରାଗ ଚିନ୍ତା ଦେଶାକ୍ଷ । ରସ କୁଲ୍ୟା[୧]ବାଣୀ ।

ଏଥୁ ଅନ୍ତେ ଶୁଣ ରସିକ ଜନେ　　ଦିନେ ବିଗ୍ଭର କଲେ ସଖୀମାନେ

ଆମ୍ଭ ସଜନୀ ତ ସୁନ୍ଦରୀସାର　　ନାହିଁ ନଥିଲା ନୋହିବ[୨] ସଂସାର ସେ

ପୂର୍ଣ୍ଣିତ ଶୋଭ ବୟସେ ଯେ ।

ଆମ୍ଭ ଲୋଚନକୁ　　କବି ବଚନକୁ

ପବିତ୍ର କରିବା ବେଶେ ଯେ । ୧ ।

ଏମନ୍ତ ଛବି ଜଣାଇଲେ ଯାଇଁ,

ଜନନୀ ତର୍ଜିଲେ ଆଜ ଡ଼କାଇ,

କି କର ତୁମ୍ଭେ ଜେମା ପାଶେ ଥାଇ,

ନିତି ସୁବେଶ[୩]ନକର କିପାଇଁ

କେ ଜାଣେ କାହା ମାନସ ଗୋ ।

ତୁ ମନେ କରିଛୁ　　ଭୂଷଣ ଭୂଷା ମୁଁ

କାହିଁକି ହୋଇବି ବେଶ ଗୋ । ୨ ।

---

ପାଠାନ୍ତର—୧, ରସ କୋଇଲି ବାଣୀ । ୨, ନୋହିବ ନଥିବ । ୩, ସୁବେଶ ନୀତ,

---

୧—ଶୋଭ ବୟସେ—ଶୋଭନ ବୟସ ଅର୍ଥାତ୍ ଯୌବନରେ, ତାକୁ ବେଶ କରି ଆମ୍ଭ ଲୋଚନ (ନୟନ)କୁ ପବିତ୍ର କରିବା (ଦେଖି ଖୁସୀ ହେବା ) କବି ବଚନକୁ ପବିତ୍ର କରିବା ( କବି ଏହାକୁ ବର୍ଣ୍ଣନା କରିବା ଦ୍ୱାରା ନିଜ ଭାଷା ବିଭବ ଦେଖାଇବେ ) । ଉପେନ୍ଦ୍ରଭଞ୍ଜ ଲାବଣ୍ୟବତୀର ବେଶ ବର୍ଣ୍ଣନା କରିବେ ବୋଲି ଯେପରିକି ସଖୀମାନେ ଜାଣି ବେଶ କରୁଥିଲେ । ଏପରି "କବି ବଚନକୁ" କଥା ପ୍ରୟୋଗ କରିବା ଦ୍ୱାରା କାବ୍ୟରେ ନାୟିକାର ସ୍ୱାଭାବିକତା ନଷ୍ଟ ହୋଇଅଛି ବୋଲିବାକୁ ହେବ ।

୨—ତର୍ଜିଲେ—ଆକଟ କଲେ; କେ ଜାଣେ କାହା ମାନସ ଗୋ ଅର୍ଥାତ୍ ତୋ ମନରେ କଣ ଅଛି କିଏ ଜାଣେ ? ତୁ ବିଗ୍ଭରିଛୁ "ମୁଁ ତ ନିଜେ ଭୂଷଣ ଭୂଷା ( ଅଳଙ୍କାରର

ରସ ବିଷୟ ଶ୍ରବଣ କରିବା,
ବନ୍ଧ ପଟଳ ପଟକୁ ଗ୍ରହିବା ,
ଦିବ୍ୟ ଅଳଙ୍କାର ମଣ୍ଡନ ହେବା,
ଏତେ କଥାରେ ବଶ ହୋଏ ଯୁବା ଯେ ।
ଶୁଣିଣ ସ୍ୱୀକାର[୪] କରି ଯେ ।
ବ୍ୟାଧି-ବତର ବାଞ୍ଛିତ ଉପଗ୍ରର
ବୈଦ୍ୟ ବିହିଲର ପରି ଯେ । ୩ ।

ଭଙ୍ଗୀରୁ ଜାଣିଲେ ସଜନୀ ବ୍ରାତ,
କଲ କୋମଳ ଅଙ୍ଗୀ ଅଙ୍ଗୀକୃତ,
ତାଙ୍କ ନୟନ ବିକାରରୁ ଜାଣି,
ଚତୁରୀ ପରିବାରୀ ମାନେ ଆଣି ଯେ ।
ଗୁଙ୍ଗୁଡ଼ା ଭୂଷଣ ପେଡ଼ି ଯେ ।
ଯତନ ରତନ ମଣ୍ଡନ ବସନ
ବାଛିଲେ ସଜନୀ ପେଡ଼ି ଯେ । ୪ ।

---

ପାଠାନ୍ତର—୪, ଶୁଣି ସାଁହକାର ।

---

ଅଳଙ୍କାର ) ଅର୍ଥାତ୍ ଅଳଙ୍କାର ମୋ ଦେହରେ ଲଗି ସୁନ୍ଦର ହେବ, ମୁଁ କାହିଁକି ଗୁଡ଼ାଏ ଅଳଙ୍କାର ଲଗାଇ ହେବି,' ଏ କଥା ସଖୀମାନେ ଲବଣ୍ୟ-ବତୀକୁ ଛିଗୁଲେଇ କରି କହୁଛନ୍ତି ।

୩—ରସ ବିଷୟ—ଶୃଙ୍ଗାର ରସ କଥା; ବନ୍ଧ ପଟଳ ପଟ—ବନ୍ଧ (ରତିବନ୍ଧ, ସ୍ତ୍ରୀ ପୁରୁଷ ରତିବେଳେ ଉଭୟ ଶରୀରର ଭିନ୍ନ ଭିନ୍ନ ପରିସ୍ଥିତି ) ପଟଳ (ସମୂହ)ର ଯେଉଁ ପଟ ( ଚିତ୍ରପଟ ବା ପଟୀ), ବାତ୍ସାୟନ କାମ ସୂତ୍ରାଦିରେ ବର୍ଣ୍ଣିତ ହୋଇଥିବା ଚଉଷଠୀ ବନ୍ଧର ଚିତ୍ରପଟୀସବୁ ବଡ଼ ଲୋକଙ୍କର ଶୋଇବା ଘର କାଛରେ ଗ୍ରରିପଟେ ରଖାଯାଇଥାଏ । ବ୍ୟାଧିବତର ବାଞ୍ଛିତ ଉପଗ୍ରର ଅର୍ଥାତ୍ ରୋଗୀ ଇଛା କରୁଥିବା ଔଷଧ—ଲବଣ୍ୟବତୀର ବେଶରେ ଇଛାଥିଲ, ସେ ଲଜରେ କହିପାରୁ ନଥିଲ—ଏହାହିଁ ତାତ୍ପର୍ଯ୍ୟ, ।

୪— ବ୍ରାତ (ସମୂହ;) ସଙ୍ଗିନୀ, ପରିବାରୀ, ଏହିପରି ଦୁଇ ଭିନ୍ନ ଭିନ୍ନ ଦଳ ଲବଣ୍ୟବତୀ ପାଖେ ଥିଲେ—ଏହା ସବୁବେଳେ ମନେ ରଖିବାକୁ ହେବ । ସଙ୍ଗିନୀଙ୍କର ନୟନ ବିକାର (ଆଖିଠାର)ରୁ ଚତୁରୀ (ସେିହାଣିଆ) ପରିବାରୀମାନେ ଅଳଙ୍କାର ଗୁଙ୍ଗୁଡ଼ା,

ମଞ୍ଜୁ ବିଜୁଗଜି ପରାୟେ ଗଜି,
ଘୃହିଁଲେ ନୟନ ହୁଅଇ ଧୁଜି;
ଅଳକା କୋଷେ ଥିବ ଅବା ତୁଲ୍ୟ,
ହେଜି କରିବ ଧାତା ଅବା ମୂଲ୍ୟ ସେ ।
ଏକାଳେ ସଜାଡ଼ି ଆଣି ଯେ ।
ଫୁଲ ଘଗଡ଼ା          ଚିତ୍ରକ ପେଡ଼ି ପେଡ଼ା
ସୁବାସ ତଇଳ ପାଣି[୪] ଯେ । ୫ ।
ସଜ-ବିଧିସଜ ସଜନୀ ଦେଖି;
ଆସନେ ବସାଇ ପ୍ରସନ୍ନ ମୁଖୀ,
ଆଗେ ଦେଖାଇଲେ ମୁକୁର ମାଜି,
ହାରି ନିର୍ମଳେ କି ଶରଣ ଭଜି ସେ ।
ଫେଡ଼ିଲେ କୁଟିଳ ବାଳ ଯେ ।
ବେଗରେ ତଇଳ          ଯୋଗରେ ଶଇଳ-
ସ୍ତନାଏ କଲେ କୋମଳ ଯେ । ୬ ।

---

ପାଠାନ୍ତର - ୪, ଫେଲ୍ଲ ସୁବାସ ତଇଲ ପୂର୍ଣ୍ଣ ଯେ ।

---

ଅଳଙ୍କାର ପେଡ଼ିମାନ ଆଣିବାରୁ ସଜନୀମାନେ ତହିଁରୁ ଯତନ (ସୁନ୍ଦର) ରତନ ମଣ୍ଡନ ବସନ (ସୁନ୍ଦର ଲୁଗା) ବାଛିଲେ ।

୫— ସେ ରତ୍ନ ଅଳଙ୍କାର ସବୁ ବିଜୁଗଜ (ବିଜୁଳି ସମୂହ) ପରି ଗଜି (ଚକଚକ ହୋଇ) ମଞ୍ଜୁ (ମଞ୍ଜୁଳ, ସୁନ୍ଦର) ଅଳକା କୋଷ (ଇନ୍ଦ୍ରପୁରୀର ଭଣ୍ଡାର); ଧାତା ( ବ୍ରହ୍ମା ) ଅବା ହେଜି (ବହୁତ ଭଳି ଭଳି) ମୂଲ କରିବ । ପୁଣି ପରିବାରୀମାନେ ସଜାଡ଼ି କରି ଆଣିଲେ-ଫୁଲଚାଙ୍ଗଡ଼ା; ଚିତ୍ରକ ପେଡ଼ି (କସ୍ତୁରୀ, ଚନ୍ଦନ ପ୍ରଭୃତି ଚିତା କରି-ବାର ସରଞ୍ଜାମ ଯେଉଁ ପେଡ଼ିରେ ଥାଏ ) ପୁଣି ସୁବାସ ତୈଳ ପାଣି ( ବାସନା ତେଲ, ଅତରପାଣି ପ୍ରଭୃତିର ପେଡ଼ା ) ।

୬— ସଜବିଧି (ସଜାଡ଼ି ହେବାର ଉପଚାର)ସଜ(ପ୍ରସ୍ତୁତ) ଦେଖି ପ୍ରସନ୍ନମୁଖୀ ( ଲାବ-ଣ୍ୟବତୀ )କୁ ଆସନେ ବସାଇ, ଆଗେ ମୁକୁର (ଦର୍ପଣ)କୁ ମାଜି ( ସଫାକରି ) ଦେଖାଇଲେ । ସେ ଦର୍ପଣ ଯେପରି କି ମୁହଁ ସାଙ୍ଗେ ନିର୍ମଳେ (ସ୍ୱଚ୍ଛତାରେ) ହାରି ଶରଣ ଗଲା । କୁଟିଳ (କୁଞ୍ଚୁକୁଞ୍ଚିଆ) ବାଳ ବେଗରେ ଫିଟାଇ ଶୈଳସ୍ତନା ସଖୀ ମାନେ ତୈଳ ଯୋଗରେ (ତେଲ ଲଗାଇ) କୋମଳ (ଚିକଣ) କଲେ ।

ଚରମେ ପଡ଼ି ମନୋରମ ଦିଶେ,
ମଧ୍ୟେ କି ନିଶା ଦିନ ଦୁଇ ପାଶେ,
ପ୍ରଭା ବୃଦ୍ଧି ଦେଖି ମୁଖ ଚନ୍ଦ୍ରର,
ପଳାଇ ଯାଉଛି କି ଅନ୍ଧକାର ସେ ।
ସଖୀଏ ଜାଣନ୍ତି ବିଷେ ଯେ ।
ଗ୍ଭମର ମୟୂର ପିଛ ଯା ଡାଳନ୍ତି[୨]
ନିର୍ଭଛାଉଛନ୍ତି କେଶେ[୨] ଯେ । ୭ ।
ମର୍ଦ୍ଦଳାକାର କଙ୍କତିକା ଝଳି,
କାଙ୍ଗୁଲ[୮] କମ ସୁଷମା ପିତୁଳୀ ।
ସୁସଞ୍ଚ ଘଞ୍ଚ ଦଶନ ଆବଳୀ
ଗଳିବ କି ନାହିଁ କୁନ୍ତଳ ଭଳି ସେ ।
ଆଳୀ ଖଡ଼ିକା ଗଳାଇ ଯେ ।
ନଖେ ଟଙ୍କାରି ଦେଇଣ ବେଶକାରୀ
ଦେଲା କେଶ କୁଣ୍ଡିଆଇ ଯେ । ୮ ।

---

ପାଠାନ୍ତର—୨, ଗ୍ଭଳନ୍ତ ୭, କଷେ ୮, କାଙ୍ଗୁଲି

---

୭—ଚରମେ—(ପିଠିରେ); ମଝିପିଠିରେ ବାଳ, ଦୁଇପାଖେ ଗୋରପିଠି ରତିର ଦୁଇପାଖେ ଦିନ ପରି ଦିଶୁଥିବା ଉପମା । ବାଳ ଲମ୍ବି ପଡ଼ିଥିବାରୁ ଏହି ଉତ୍‌ପ୍ରେକ୍ଷା ହେଲା ଯେ ଲାବଣ୍ୟବତୀର ମୁଖରୂପକ ଚନ୍ଦ୍ର ପ୍ରଭାକୁ ଦେଖି ଅନ୍ଧକାର ପଳାଇ ଯାଉଛି କି ? ସଖୀମାନେ ବିଷେ (ବିଷୟକୁ) ଅର୍ଥାତ୍ କାହାକୁ କିପରି ବ୍ୟବହାର କରିବାକୁ ହେବ ତାହା ଜାଣି ଯାହା ସେମାନେ ଗ୍ଭମର (ଚମରର ପୁଚ୍ଛ) ଓ (ମୟୂର ଚନ୍ଦ୍ରିକା ବିଞ୍ଚଣା) ମାଛି ନ ବସିବେ ବା ଗରମ ନ ହେବ ବୋଲି ଡାଳାଉଛନ୍ତି, ସେଥିରୁ ବୋଧ ହେଉଛି ସେମାନେ ବିଷୟ ବୁଝିଲା ପରି କେଶକୁ ନିଉଛାଉଛନ୍ତି (ବନ୍ଦନା କରୁଛନ୍ତି) । ଗ୍ଭମରୀ ମୃଗର ପୁଚ୍ଛ ଓ ମୟୂରପିଛଠାରୁ ଏବାଳ ଆହୁରି ସୁନ୍ଦର ଏହାହିଁ ତାତ୍ପର୍ଯ୍ୟ ।

୮—ମର୍ଦ୍ଦଳାକାର (ମଝିମୋଟା ଦୁଇପଟସରୁ, ମାଦଳ ପରି ଆକୃତି) ର କଙ୍କତିକା (ପାନିଆ) ଝଳି (ଉଜ୍ଜ୍ୱଳ) କାଙ୍ଗୁଲ (ପାନିଆର ଦାନ୍ତ ନ ଥିବା ଦୁଇପଟ) କମ (କାରୁକାର୍ଯ୍ୟ) ସୁଷମା (ସୌନ୍ଦର୍ଯ୍ୟର) ପିତୁଳୀ (ପ୍ରତିରୂପ) ପରି । ଉଜ୍ଜ୍ୱଳ ପାନିଆର ଦାନ୍ତ ନ ଥିବା ଦୁଇପଟରେ ଅତି ସୁନ୍ଦର କର୍ମ କୃତ ହୋଇଅଛି । ସେହି ପାନିଆର ସୁସଞ୍ଚ (ସୁସଜ୍ଜିତ, ସୁନ୍ଦର ସଜଡ଼ା ହୋଇଥିବା) ଘଞ୍ଚ

ମାଙ୍ଗ ଭଙ୍ଗ ରଖି ଉତ୍ତମାଙ୍ଗରେ
ଆୟତ କରି ଶାମଳିଲା ଧୀରେ ।
କରେ ଧରି ମୂଳେ ଭିଡ଼ା ଭିଡ଼ନ୍ତେ
ଅଦ୍ଭୁତ ଉପମା ବଳିଲା ଚିତ୍ତେ ସେ ।
କି କୋକନଦ ମଧ୍ୟରୁ ଯେ ।
ସ୍ରବୁଛି କାଳିନ୍ଦୀ          ଦ୍ରବୁଛି ଶୃଙ୍ଗାର
ହାହା ସେ ଅତ୍ୟନ୍ତ ଘଞ୍ଚ ଯେ । ୯ ।
ରଙ୍ଗ ଭର୍ଣ୍ଣି ଭରି ଦିବ୍ୟ ଜୂଡ଼ାକୁ,
ସଜାଡ଼ିଲେ ଯୁବା ଜ୍ଞାନ ବୁଡାକୁ ।
ତମ ବିଦାରିକି ହୁଏ ବାହାର,
ପ୍ରଭାତେ ପ୍ରଭବନ୍ତ ଦିବାକର ସେ ।

---

( ଘନ, ଅତି ପାଖକୁ ପାଖ ଲାଗିଥିବା ) ଦଶନ ଆବଳୀ ( ଦାନ୍ତ ଗୁଡ଼ିକ ) । କୁନ୍ତଳ (ବାଳ) ସେଥିରେ ଗଳିବ କି ନାହିଁ ବୋଲି ଆଗ ଆଳୀ ( ସଖୀ ) ପାନିଆ ଦାନ୍ତରେ ଖଡ଼ିକା ଗଳାଇ ସଫାକରି ତା ଉତ୍ତାରୁ ପାନିଆ ଦାନ୍ତର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ନଖ ଚଳାଇ ଟଙ୍କାରି ଦେଇ କୁଣ୍ଡାଇ ଦେଲା । [ ଏହି ପରି ଖଡ଼ିକା ଗଳାଇ ଟଙ୍କାରି ଦେବା ସାଧାରଣ ରୀତି । ଏ ବଡ଼ ପ୍ରାକୃତିକ ବର୍ଣ୍ଣନା । ]

୯— ମାଙ୍ଗ ଭଙ୍ଗ—ବାଳ ଦୁଇପଟକୁ କୁଣ୍ଡାଇ ଦେଲେ ମଝିରେ ଯେଉଁ ଗାର ପଡ଼ିଲା ପରି ଦେଖାଯାଏ ତାକୁ ମାଙ୍ଗ କହନ୍ତି । ଓଡ଼ିଆଣୀଙ୍କ ସାଧାରଣ ବାଳ ବନ୍ଧାରେ ମଝି କପାଳଠାରୁ ଦୁଇ ସୂଛା ମଧ୍ୟରେ ସେ ଭଙ୍ଗ ପ୍ରାୟ ଦୁଇତିନି ଆଙ୍ଗୁଳ ଗଲାପରେ ଡାହାଣ ଓ ବାଁ ଦୁଇ ଦିଗକୁ ଲମ୍ବିଯାଇ ତିନି ଭାଗ ହୋଇଥାଏ । ଉତ୍ତମାଙ୍ଗରେ ( ମଝିକପାଳ ଉପରେ ) ମାଙ୍ଗ ଭଙ୍ଗ ରଖି ବହୁତ ବାଳ ହେବାରୁ ତାକୁ ଧୀରେ ଆୟତ (ଏକାଠି) କରି ଶାଉଳିଲା ପରେ ପଛ ଆଡ଼ରେ ଜୂଡ଼ା ମୂଳର ପ୍ରଥମ ଭିଡ଼ା ଭିଡ଼ିଲା ବେଳେ କୋକନଦ ଅର୍ଥାତ୍ ରଙ୍ଗ କଇଁ ପରି ଦିଶୁଥିବା ବେଶକାରୀ ସଖୀର ହାତମୁଠା ଭିତରୁ ସେ ବାଳ ଲମ୍ବିପଡ଼ି କାଳିନ୍ଦୀ (ଯମୁନା) ସ୍ରବିଲା ପରି ଦିଶୁଥିଲା । ଯମୁନାର ପାଣି କଳା ବୋଲି ପ୍ରସିଦ୍ଧ । ସମସ୍ତ ଶୃଙ୍ଗାର (ବେଶ) ଦ୍ରବ (ତରଳ) ହୋଇ ବୋହି ପଡ଼ିଲା ପରି ଅତି ସୁନ୍ଦର ହୋଇଥିଲା ।

୧୦—ରଙ୍ଗ ଭର୍ଣ୍ଣି— ( ରଙ୍ଗ ସୂତାରେ ତିଆର ହୋଇଥିବା ଗୋଲକ) ଭିତରେ ରଖି ଯୁବା ଲୋକଙ୍କର ଜ୍ଞାନ ବୁଡ଼ା (ବିବେକ ଧ୍ୱଂସୀ ) ଜୂଡ଼ା ସଜାଡ଼ିଲେ । କଳାବାଳ ରୂପ

ବେନି ବିଧି ପାଶ ସିର୍ଦ୍ଧି ଯେ ।
ଯୋଗୀଜନ ମନ ମୃଗ ବନ୍ଧନ କି ୯
କଲେ କିଆପତ୍ରୀ ବାନ୍ଧି ଯେ । ୧୦ ।
ସିନ୍ଦୁର ଗାର ସୀମନ୍ତୀରେ ୧୦ ଦେଲେ
ବିଧୁନ୍ତୁଦକୁ ବିଧୁ ହାଣିଥିଲେ ।
ଶୁଖି ନାହିଁକି ସେ ରଥାଙ୍ଗ ଘାତ,
ଆଜ ହୋଇଛି ରକତ ବ୍ୟକତ ସେ ।
ସେ କ୍ଷତ କ୍ଷତଜ ଗୁହ୍ନି ଯେ ।
ଲଜସେ ଆସେ ବଦନ ବିଧୁ ପାଶେ
ନ ଗରସେ ଭୟ ପାଇ ଯେ । ୧୧ ।
ଜ୍ୟୋତି ମୋତି ମଥା ଜାଲି ମଣ୍ଡିଲେ,
ମଣ୍ଡିଲେ ନାହିଁ ଧଇର୍ଯ୍ୟ ଖଣ୍ଡିଲେ ।
କି ନୀଳମଣି ଧରଣୀରେ ଆସି,
ଗବାକ୍ଷେ ଗଳି ପ୍ରକାଶିତ ଶଶୀ ଯେ ।
ଜୂଡ଼ା ଜାଲି ଏ ସଦୃଶା ଯେ ।
ଶ୍ୟାମଳ କମଳ କର୍ଣ୍ଣିରେ କଲକି
ସେ କ୍ଷଣୀ ସୁଧା ବରଷା ଯେ । ୧୨ ।

---

ପାଠାନ୍ତର—୯, ବନ୍ଧନେ କ । ୧୦, ସୀମନ୍ତରେ ।

---

ଅନ୍ଧକାର ଭିତରୁ ରଙ୍ଗ ଭଣ୍ଡି ଅରୁଣ ସୂର୍ଯ୍ୟ ବାହାରିଲା ପରି ଦିଶିଲା—ଏହି ଉତ୍ପ୍ରେକ୍ଷା । ପ୍ରଭାକର ସୂର୍ଯ୍ୟ; ଜୂଡ଼ା ଦୁଇପଟେ ଦୁଇଭାଗ କରି ବାଳର ଦୁଇ ଗୋଛାକୁ ଫାଶକରି ବାନ୍ଧି ଦେବାକୁ କିଆପତ୍ରୀ ବାନ୍ଧିବା କହନ୍ତି । ଯୋଗୀ ମାନଙ୍କର ମନ ମୃଗକୁ ବାନ୍ଧିବା ପାଇଁ ବିଧାତାର ସେ ଦୁଇଟି ଫାଶ ପରି ହେଲା—ଏହି ଉତ୍ପ୍ରେକ୍ଷା ।

୧୧— ସୀମନ୍ତ—ସୁନ୍ଥା; ବିଧୁନ୍ତୁଦ—ରାହୁ; ବିଧୁ—ବିଷ୍ଣୁ; ରଥାଙ୍ଗ—ଚକ୍ର; ଅମୃତ ଖାଇଲା ବେଳେ ରାହୁକୁ ବିଷ୍ଣୁ ଚକ୍ରରେ ହାଣିଥିଲେ । ସେ ଘାଆ ଶୁଖି ନାହିଁ । ଆଜି ପୁଣି ରକ୍ତ ବାହାରିଛି । ସେ କ୍ଷତଜ ( ରକ୍ତ ) ଦେଖି ରାହୁ ବଦନ ବିଧୁ ( ମୁଖଚନ୍ଦ୍ର ) ପାଖକୁ ଲଜସେ ( ତୁଣ୍ଡ ଲଜଚିଆ ପଣରେ ) ଆସିଲେ ମଧ୍ୟ ଭୟରେ ଗ୍ରାସ କରୁ ନାହିଁ । କଳାବାଳ ରାହୁ ପରି । ଉଜ୍ଜ୍ୱଳ ମୁଖ ଚନ୍ଦ୍ରପରି ।

୧୨— ଜ୍ୟୋତି ( ଉଜ୍ଜ୍ୱଳ ) ମୋତି ଲାଗିଥିବା ମଥା ଜାଲି ( ସୁନାରେ ତିଆର ହୋଇଥିବା ଜାଲ ପରି ମୁଣ୍ଡ ଉପର ବାଳର ଏକ ଅଳଙ୍କାର ) ତାହା ବାଳ ଉପରେ

ତାର ତର ଚନ୍ଦ୍ର ଝୁମ୍ପି ଖଞ୍ଜିଲେ,
ଖଞ୍ଜିଲେ କି ଅବା ମନ ରଞ୍ଜିଲେ ।
ନବଘନ କି ଦେଉଅଛି ଗ୍ରାସି,
ଏଣୁ ଅର୍ଦ୍ଧଚନ୍ଦ୍ର ନିର୍ମଳ ଦିଶି ସେ ।
ନୀଳ ରଙ୍ଗ ପୀତ ଫୁଲେ ଯେ ।
ଗଭକରେ ଶୋଭ          ଇନ୍ଦ୍ରଧନୁ ପ୍ରଭ
ଉପମେୟ ତାହା ତୁଲେ ଯେ । ୧୩ ।
ବଙ୍କ ଡ଼ଉଁଗ ହେମ ଦୁବଝଗ,
ଦେବାକୁ ଦିଶିଲା ଏମନ୍ତ ତୋର[୧୧] ।
କାମ ଯମୁନା ଜଳ କେଳି ଇଚ୍ଛି,
ସୁବର୍ଣ୍ଣ ନାବ କ୍ଷେପଣୀ କରିଛି ଯେ ।
ଦୁବ ଯା କମ୍ପିଲା ହୋଇ ଯେ ।
ଠାରେ କି ନାକ          ନାଗ ନର ନଗରେ
ଏ ସମାନେ ଶୋଭ ନାହିଁ ଯେ । ୧୪ ।

---

ପାଠାନ୍ତର—୧୧, ପଦ୍ମ ।

---

ଖଞ୍ଜା ହୋଇ ନୀଳମଣି ( ନୀଳକାନ୍ତ ମଣି, ନେଳିଆ ଉଜ୍ଜ୍ୱଳ ପଥର )ରେ ତିଆର ହୋଇଥିବା ଧରଣୀ ( ଜାଗାରେ ) ଗବାକ୍ଷ (ଛୋଟ କଣାଥିବା ଝରକା) [ଗୋ-ଅକ୍ଷି; ଗାଈ ଆଖିପରି ଛୋଟ କଣାଥିବା ପଞ୍ଜରା] ବାଟେ ଚନ୍ଦ୍ର କିରଣ ବିଞ୍ଚି ହୋଇ ପଡ଼ିଥିଲା ପରି ଦେଖା ଯାଉଛି । ଜୁଡ଼ାରେ ସେହି ପରି ଜାଲି ନ ଫୁଟି ଥିବା ଶ୍ୟାମଳ ( ଶାଗୁଆ ) ପଦ୍ମକଢ଼ୀରେ ସୁଧା ( ଅମୃତ ) ବରଷା ( ଛିଞ୍ଚା ) ହେଲା ପରି ଦେଖା ଯାଉଛି ।

୧୩— ତାର ତର (ଅତି ଉଜ୍ଜ୍ୱଳ) ଚନ୍ଦ୍ରଝୁମ୍ପି ଜୁଡ଼ାରେ ଖଞ୍ଜିଲେ । ନବଘନ (ନୂଆମେଘ) ଘୋଡ଼ାଇ ଦେଉଥିବା ଚନ୍ଦ୍ର ଯେପରି ବେଶି ଉଜ୍ଜ୍ୱଳ ଦେଖାଯାଏ, ସେହିପରି ଦେଖାଯାଉଛି । ନେଳିଆ, ନାଲି ଓ ହଳଦିଆ ଫୁଲ ସବୁ ଗଭ (ଜୁଡ଼ାରେ ଇନ୍ଦ୍ରଧନୁ ପରି ଦେଖାଯାଉଛି) ।

୧୪— ସୁନାର ବାଙ୍କ ଡ଼ଉଁରିଆ ( କେତକୀ ପରି ଅଳଙ୍କାର )ରେ ସୁନା ଦୁବ ଗଛ ପରି ଏକ ପ୍ରକାର ଅଳଙ୍କାର ମୁଣ୍ଡରେ ଖଞ୍ଜାଯାଏ । ବାଳ ହେଲା ଯମୁନାଜଳ । ବଙ୍କ ଡ଼ଉଁରା ହେଲା ସୁନା ନାହା । ଦୁବଝଗ ହେଲା କ୍ଷେପଣୀ ( କାତ ) ଦୁବ ଯେ

ସହଜେ ତ କତୁର୍ରିତ ଅଳକା,
ପକାଇଲେ ଭୃଙ୍ଗ ଶ୍ରେଣୀରେ ଡ଼ଙ୍କା ।
ଦମ୍ଭ ଆରମ୍ଭ ବିନାଶନ ଆଶେ,
ମଞ୍ଜୁଳ[୨୨] କଲେ ଅବତଂସ ଶେଷେ ସେ ।
ଏମନ୍ତ ଚିତ୍ତରେ ଭଜି ଯେ ।
ମର୍କତ ନଳିରୁ ବାହାରି ଯାଉଛି
କି ଅତି ଜ୍ୱଳିତ ଗୁଳି ଯେ । ୧୫ ।
ଅଳକା ଉର୍ଦ୍ଧ୍ୱେ ଝିଲିମିଲି ମାଳି,
ଝଟକେ ଛଟକେ ଖଞ୍ଜିଲେ ଆଳୀ ।
ଏମନ୍ତ ଅଦ୍ଭୁତ ନ ଥିଲା ଦେଖା,
ବିନା ମେଘରେ ସ୍ଥିର ବିଦ୍ୟୁଲ୍ଲେଖା ସେ ।
ପାଶେ କି ଧାଡ଼ିଏ ତାର ଯେ ।
ଇଚ୍ଛାରେ ନେତ୍ର ବନ୍ଦି ହେବ ମଣ୍ଡଳ
ଅନଙ୍ଗ ବିଚିତ୍ର କାର ଯେ । ୧୬ ।

---

ପାଠାନ୍ତର—୨୨, ଚଞ୍ଚଳ ।

---

କମ୍ପିଲ ହେଉଛି ( କମ୍ପୁଛି ) ସେ ଯେପରିକି ନାକ ନଗର (ସ୍ୱର୍ଗ) ନାଗ ନଗର (ପାତାଳ)ନର ନଗର (ମର୍ତ୍ତ୍ୟରେ) ଏ ସମାନ ଶୋଭା ନାହିଁ ବୋଲି ଠାରୁଛି ।

୧୫— କତୁରିତ—(କତୁରୀରେ କଟା ହୋଇଥିବା) ଅଳକା (ଚୂର୍ଣ୍ଣ କୁନ୍ତଳ, ମୁହଁର ଛୋଟ ଛୋଟ ବାଳ) ଅଥବା ଏଠାରେ କତୁରୀ କାମ ହୋଇଥିବା ସୁନାର ଅଳକା ପାଟୀ, ଭୃଙ୍ଗ ଶ୍ରେଣୀରେ ( ଧାଡ଼ି ହୋଇଥିବା ଭ୍ରମର ମାନଙ୍କୁ ) 'ଆସ ଏ ମୁହଁରେ ସମାନ ହେବ' ବୋଲି ଯେପରି କି ଡ଼ଙ୍କା ପକାଇଲେ । ସେମାନେ ଦମ୍ଭବାନ୍ଧି ଅବା ଆସିଥାନ୍ତେ । ସେ ଦମ୍ଭକୁ ମଧ୍ୟ ନାଶ କରିବା ପାଇଁ ମଞ୍ଜୁଳ (ସୁନ୍ଦର) ମଥାମଣିକି ମୁଁହା ମଝିରେ କପାଳ ଉପରେ ଦେଲେ ! ମୁହଁର ସିନ୍ଦୁର ଗାର ମର୍କତ ( ଇନ୍ଦ୍ରନୀଳ-ମଣି )ରେ ତିଆରି ନଳୀ ବନ୍ଧୁକ ହେଲା । ତା ଭିତରୁ ସୁନା ମଥାମଣି ତାତିଲା ( ଜଳନ୍ତା ) ଗୁଳି ପରି ବାହାରିଗଲା ପରି ହେବାରୁ ଭ୍ରମରଙ୍କ ଦମ୍ଭ ଭାଜି ଗଲା ।

୧୬— ଅଳକା ଉପରେ ଝିଲିମିଲି ମାଳି ବିନା ମେଘରେ ( ପରିଷ୍କାର ନୀଳ ଆକାଶପରି ବାଳରେ ) ସ୍ଥିର ହୋଇ ରହିଥିବା ବିଜୁଳି ଲେଖା (ଗାର)ପରି । ତା ପାଖରେ ଅଳକା ଧାଡ଼ିଏ ତାର ପରି ଦିଶୁଛି । ଇଚ୍ଛାରେ (ମନକୁ) ନେତ୍ର (ଆଖି) ବନ୍ଦୀ (କଇଦି) ହେବ ବୋଲି ଅନଙ୍ଗ ଯେ କାମ ଏ ଏକ ବିଚିତ୍ର ( ଅଦ୍ଭୁତ ) କାର

ଚାର ଚର ଚନ୍ଦ୍ର ଝୁମ୍ପି ଖର୍ଞ୍ଜିଲେ,
ଖର୍ଞ୍ଜିଲେ କି ଅବା ମନ ରଞ୍ଜିଲେ ।
ନବଘନ କି ଦେଉଅଛି ଗ୍ରାସି,
ଏଣୁ ଅର୍ଦ୍ଧଚନ୍ଦ୍ର ନିର୍ମଳ ଦିଶି ଯେ ।
ନୀଳ ରଙ୍ଗ ପୀତ ଫୁଲେ ଯେ ।
ଗଭକରେ ଶୋଭ          ଇନ୍ଦ୍ରଧନୁ ପ୍ରଭ
ଉପମେୟ ତାହା ତୁଲେ ଯେ । ୧୩ ।
ବଙ୍କ ଡ଼ଉଁର ହେମ ଦୁବଝର,
ଦେବାକୁ ଦିଶିଲା ଏମନ୍ତ ତୋର[୧୧] ।
କାମ ଯମୁନା ଜଳ କେଳି ଇଚ୍ଛି,
ସୁବର୍ଣ୍ଣ ନାବ କ୍ଷେପଣୀ କରିଛି ଯେ ।
ଦୁବ ଯା କର୍ମିଲ ହୋଇ ଯେ ।
ଠାରେ କି ନାକ          ନାଗ ନର ନଗରେ
ଏ ସମାନେ ଶୋଭ ନାହିଁ ଯେ । ୧୪ ।

---

ପାଠାନ୍ତର—୧୧, ପର୍ବ ।

---

ଖଞ୍ଜା ହୋଇ ନୀଳମଣି ( ନୀଳକାନ୍ତ ମଣି, ନେଳିଆ ଉଜ୍ଜ୍ୱଳ ପଥର )ରେ ତିଆର ହୋଇଥିବା ଧରଣୀ ( ଜାଗାରେ ) ଗବାକ୍ଷ (ଛୋଟ କଣାଥିବା ଝରକା) [ଗୋ -ଅକ୍ଷି; ଗାଈ ଆଖିପରି ଛୋଟ କଣାଥିବା ପଞ୍ଜରା] ବାଟେ ଚନ୍ଦ୍ର କିରଣ ବିଞ୍ଚି ହୋଇ ପଡ଼ିଥିଲା ପରି ଦେଖା ଯାଉଛି । ଜୁଡ଼ାରେ ସେହି ପରି ଜାଲି ନ ଫୁଟି ଥିବା ଶ୍ୟାମଳ ( ଶାଗୁଆ ) ପଦ୍ମକଢୀରେ ସୁଧା ( ଅମୃତ ) ବରଷା ( ଛିଞ୍ଚା ) ହେଲା ପରି ଦେଖା ଯାଉଛି ।

୧୩— ଚାର ଚର (ଅତି ଉଜ୍ଜ୍ୱଳ) ଚନ୍ଦ୍ରଝୁମ୍ପି ଜୁଡ଼ାରେ ଖର୍ଞ୍ଜିଲେ । ନବଘନ (ନୂଆମେଘ) ଘୋଡ଼ାଇ ଦେଉଥିବା ଚନ୍ଦ୍ର ଯେପରି ବେଶି ଉଜ୍ଜ୍ୱଳ ଦେଖାଯାଏ, ସେହିପରି ଦେଖାଯାଉଛି । ନେଳିଆ, ନାଲି ଓ ହଳଦିଆ ଫୁଲ ସବୁ ଗଭ (ଜୁଡ଼ାରେ ଇନ୍ଦ୍ରଧନୁ ପରି ଦେଖାଯାଉଛି) ।

୧୪— ସୁନାର ବାଙ୍କ ଡ଼ଉଁରିଆ ( କେତକୀ ପରି ଅଳଙ୍କାର )ରେ ସୁନା ଦୁବ ଗଛ ପରି ଏକ ପ୍ରକାର ଅଳଙ୍କାର ମୁଣ୍ଡରେ ଖଞ୍ଜାଯାଏ । ବାଳ ହେଲା ଯମୁନାଜଳ । ବଙ୍କ ଡ଼ଉଁର ହେଲା ସୁନା ନାହା । ଦୁବଝର ହେଲା କ୍ଷେପଣୀ ( କାତ ) ଦୁବ ଯେ

ସହଜେ ତ କତୁରିତ ଅଳକା,
ପକାଇଲେ ଭୃଙ୍ଗ ଶ୍ରେଣୀରେ ଡ଼କା ।
ଦମ୍ଭ ଆରମ୍ଭ ବିନାଶନ ଆଶେ,
ମଞ୍ଜୁଳ[୧୨] କଳ୍ପେ ଅବତଂସ ଶେଷେ ସେ ।
ଏମନ୍ତ ଚିତ୍ତରେ ଘଛି ଯେ ।
ମର୍କତ ନଳିରୁ ବାହାରି ଯାଉଛି
କି ଅତି ଜ୍ୱଳିତ ଗୁଳି ଯେ । ୧୫ ।
ଅଳକା ଉର୍ଦ୍ଧେ ଝିଲିମିଲି ମାଳି,
ଝଟକେ ଛଟକେ ଖଞ୍ଜିଲେ ଆଳୀ ।
ଏମନ୍ତ ଅଦ୍ଭୁତ ନ ଥିଲା ଦେଖା,
ବିନା ମେଘରେ ସ୍ଥିର ବିଦ୍ୟୁଲ୍ଲେଖା ସେ ।
ପାଶେ କି ଧାଡ଼ିଏ ତାରା ଯେ ।
ଇଚ୍ଛାରେ ନେତ୍ର ବନ୍ଦି ହେବ ମଣ୍ଡଳ
ଅନଙ୍ଗ ବିଚିତ୍ର କାର ଯେ । ୧୬ ।

---

ପାଠାନ୍ତର—୧୨, ଚଞ୍ଚଳ ।

---

କର୍ମିଲା ହେଉଛି ( କମ୍ପୁଛି ) ସେ ଯେପରିକି ନାକ ନଗର (ସ୍ୱର୍ଗ) ନାଗ ନଗର (ପାତାଳ)ନର ନଗର (ମର୍ତ୍ତ୍ୟରେ) ଏ ସମାନ ଶୋଭା ନାହିଁ ବୋଲି ଠାରୁଛି ।

୧୫— କତୁରିତ—(କତୁରୀରେ କଟା ହୋଇଥିବା) ଅଳକା (ଚୂର୍ଣ୍ଣ କୁନ୍ତଳ, ସୁନ୍ଦର ଛୋଟ ଛୋଟ ବାଳ) ଅଥବା ଏଠାରେ କତୁରୀ କାମ ହୋଇଥିବା ସୁନାର ଅଳକା ପାଟୀ, ଭୃଙ୍ଗ ଶ୍ରେଣୀରେ ( ଧାଡ଼ି ହୋଇଥିବା ଭ୍ରମର ମାନଙ୍କୁ ) 'ଆସ ଏ ସୁନ୍ଦରୀରେ ସମାନ ହେବ' ବୋଲି ଯେପରି କି ଡ଼କା ପକାଇଲେ । ସେମାନେ ଦମ୍ଭବାନ୍ଧି ଅବା ଆସିଥାନ୍ତେ । ସେ ଦମ୍ଭକୁ ମଧ୍ୟ ନାଶ କରିବା ପାଇଁ ମଞ୍ଜୁଳ (ସୁନ୍ଦର) ମଥାମଣିକି ସୁନ୍ଦା ମଝିରେ କପାଳ ଉପରେ ଦେଲେ ! ସୁନ୍ଦାର ସିନ୍ଦୁର ଗାର ମର୍କତ ( ଇନ୍ଦ୍ର-ମଣି )ରେ ତିଆରି ନଳୀ ବନ୍ଧୁକ ହେଲା । ତା ଭିତରୁ ସୁନା ମଥାମଣି ତାତିଲା ( ଜଳନ୍ତା ) ଗୁଳି ପରି ବାହାରିଗଲା ପରି ହେବାରୁ ଭ୍ରମରଙ୍କ ଦମ୍ଭ ଭାଙ୍ଗି ଗଲା ।

୧୬— ଅଳକା ଉପରେ ଝିଲିମିଲି ମାଳି ବିନା ମେଘରେ ( ପରିଷ୍କାର ନୀଳ ଆକାଶପରି ବାଳରେ ) ସ୍ଥିର ହୋଇ ରହିଥିବା ବିଜୁଳି ରେଖା (ଗାର)ପରି । ତା ପାଖରେ ଅଳକା ଧାଡ଼ିଏ ତାରା ପରି ଦିଶୁଛି । ଇଚ୍ଛାରେ (ମନକୁ) ନେତ୍ର (ଆଖି) ବନ୍ଦୀ (କଇଦି) ହେବ ବୋଲି ଅନଙ୍ଗ ଯେ କାମ ଏ ଏକ ବିଚିତ୍ର ( ଅଦ୍ଭୁତ ) କାର

ଲଲାଟ ପଟ ଅର୍ଦ୍ଧ ଫର୍ଦ୍ଦି ଫର୍ଦ୍ଦି,
ମୃଗମଦ ତହିଁ ତିଳକ କର୍ଦ୍ଦି ।
ରାହୁ ବାଦ ଛନ୍ଦି ନିଶା ନାୟକ,
ଭିଆଇ ଆଣି ଆଢେଣୀ ଶାୟକ ।
ରହିଛି ସଯତ ହୋଇ ଯେ ।
ଅଳକା ନିୟମ ସୀମାକୁ ଲଙ୍ଘିଲେ
ହାଣିବ ସଂଶୟ ନାହିଁ ଯେ । ୧୭ ।
କର୍ଣ୍ଣେ ତାଟଙ୍କ ମଣ୍ଡିଲେ ବିସ୍ମରି,
କବି ଗୀଷ୍ପତି ନାମୁଁ ଆଣି ଧରି ।
ଜୀବ ଭାର୍ଗବ କୁ ବାନ୍ଧିଲା କି ସେ,
ଆନନ ବେନି ପାଶେ ବେନି ପାଶେ ସେ ।
ନେତ୍ରାନ୍ତେ କଲେ ତର୍ଜ୍ଜନା ଯେ ।
ଶ୍ରୁତିରେ ଉପମା ନାହିଁତ ବୋଲନ୍ତି
ତୁମ୍ଭେ କି କର ବର୍ଣ୍ଣନା ହେ । ୧୮ ।

---

( କଇଦି ଘରକୁ ) ମଣ୍ଡିଲା (ସଜେଇ ରଖିଛି କି ? ) ମନକୁ କେହି କଇଦି ଘରେ ପଶେ ନାହିଁ । ଏଣୁ ଏ କାଗ ବିଚିତ୍ର ।

୧୭– ଫର୍ଦ୍ଦି–ଢାଲ; ମୃଗମଦ–କସ୍ତୂରୀ; ନିଶା ନାୟକ–ଚନ୍ଦ୍ର; ମୁଖରୂପ ଚନ୍ଦ୍ର, କେଶରୂପ ରାହୁ ସାଙ୍ଗେ ବାଦ କରି ଏ ଲଲାଟ ରୂପ ଆଢେଣୀ (ଢାଲ)ତିଳକ ରୂପ ଶାୟକ (ଶର) ଭିଆଇ (ଯୋଗାଡ଼ କରି ଆଣି) ସଯତ ହୋଇ (ଧୀର ହୋଇ) ରହିଛି । ରାହୁ ଅଳକା ସୀମାକୁ ଡେଇଁ ଏ ପାଖକୁ ଆସିଲେ ହାଣିବ (ଶର ବିନ୍ଧିବ) ।

୧୮– ତାଟଙ୍କ (କାପ) କାନକୁ ଫାଶ ବୋଲି ବର୍ଣ୍ଣନା କରିବାର କବି ପ୍ରସିଦ୍ଧି ଅଛି । ଶୁକ୍ରଙ୍କର ନାମ କବି, ବୃହସ୍ପତିଙ୍କ ନାମ ଗୀଷ୍ପତି । ମୁଖ ଚନ୍ଦ୍ରର ଦୁଇ ପାଖେ ଶୁକ୍ର ବୃହସ୍ପତିଙ୍କ ପରି ଉଜ୍ଜ୍ୱଳ ଏ ତାଟଙ୍କର କବି ( କାବ୍ୟ ଲେଖକ ) ଗୀଷ୍ପତି ( ଭାଷା ବର୍ଣ୍ଣନାରେ ଶ୍ରେଷ୍ଠ ) [ ଗୀର୍–ଭାଷା, 'ଗୀର୍ବାକ ବାଣୀ ସରସ୍ୱତୀ'–ଅମରକୋଷ] ଏ ଦୁଇଜୀବ (ଶୁକ୍ର) ଭାର୍ଗବ (ବୃହସ୍ପତି)ଙ୍କୁ ଆଣି କାନ ଫାଶରେ ବାନ୍ଧିଲା । ନେତ୍ରାନ୍ତରେ (ଆଖି କୋଣରେ) ଯେପରିକି ତର୍ଜ୍ଜନାକରି (ଧମକାଇ) କହୁଛି; ଶ୍ରୁତିରେ (ବେଦରେ)ତ ଉପମା ନାହିଁ ବୋଲି କହନ୍ତି । ତୁମେ କବି ଗୀଷ୍ପତି ହୋଇ କି ବର୍ଣ୍ଣନା କର ? (ବର୍ଣ୍ଣନା କର ନାହିଁ ବୋଲି ତାଙ୍କୁ ଫାଶରେ ବାନ୍ଧି ଧମକାଉଛନ୍ତି କି ? )

ରତନ ଫୁଲ ଅତିହିଁ ଯତନ,
ଝଲକେ ଝଲକାଏ ଅନୁମାନ ।
ହର ମାରକୁ ଭସ୍ମ କରି ଦେଲ,
ଏକା ଛତ୍ରକ ରତିଠାରେ ଥିଲ ସେ ।
ଜିଣି ଶୋଭରେ ତାହାକୁ ଯେ ।
ଲେକେ ବଡ଼ାଇ                    ଜାଣିବାକୁ ଛଡ଼ାଇ
ମଣ୍ଡନ କଲେ ଏହାକୁ ଯେ । ୧୯ ।
ମଲ୍ଲୀ କଢୀତ ପରମ୍ପର କହି,
ମଣିଲି ବେନି ଖଞ୍ଜା ପର ସେହି ।
ଖଞ୍ଜିଲେ ସଜନୀ ଏହି ବିବେକେ,
ଭୁଲନ୍ତୁ ପୁଂସ ମନ ଚଞ୍ଚରୀକେ ସେ ।
ତହିଁକେ ପଡ଼ିବ ପୁଣି ଯେ ।
ବାଜୀ ବୋଲି ବାଜୀ                    ଗୁପତ ଶାଙ୍କୋଳୀ
ପାଖରେ ରଖିଲେ ଆଣି ଯେ । ୨୦ ।
ନେତ୍ର ବାଣ ଭୁରୁ କମାଣ ଯୋଗେ,
ମରମକୁ ଭେଦେ ବିନା ପ୍ରୟୋଗେ ।

---

୧୯— କାନର ରତ୍ନଫୁଲ ଓ ତା ତଳକୁ ଓହଳି ଥିବା ଝଲକା ବା ପେଣ୍ଡି (କ୍ଷୁଦ୍ରଛତା ପରି ଯେଉଁ ଅଳଙ୍କାର ତିଆର ହୋଇଥାଏ) ହର (ମହାଦେବ) ମାରକୁ (କନ୍ଦର୍ପକୁ) ଭସ୍ମ କଲପରେ ରତିଠାରେ (କନ୍ଦର୍ପର ଭାର୍ଯ୍ୟାଠାରେ) ଏକାଧିପତ୍ୟର ଚିହ୍ନ ସ୍ୱରୂପ ଏ ଗଜଛତ୍ର ଥିଲ । ଲବଣ୍ୟବତୀ ତାକୁ ଶୋଭରେ ଜିଣିବାକୁ ତାଠାରୁ ଛଡ଼ାଇଆଣି ଏହା କାନରେ ଦେଇଛି ।

୨୦— ଉପର କାନର ଅଳଙ୍କାର ମଲ୍ଲକଢୀ ବା ମଲ୍ଲୀକଢ଼ୀ, ଏହି ନାମରୁ ମଲ୍ଲୀଫୁଲ କଢୀ ମଧ୍ୟ ବୁଝାଉଛି । ସେଥିରେ ତଳୁ ଉପରୁ ଯୋଡ଼ାଏ କଢୀ ଉଭରୀରେ ଖଞ୍ଜା ହୁଏ । ଏହି ମଲ୍ଲୀରେ ପୁରୁଷଙ୍କ ମନ ରୂପ ଚଞ୍ଚରୀକେ (ଭ୍ରମର) ଭୁଲିବେ । ସେହି ଭ୍ରମର ମାନଙ୍କ ମଧ୍ୟରୁ କେହି ଧରା ପଡ଼ିବା ପାଇଁ ବାଜୀ (ସଖୀମାନେ) ବାଜୀ ବୋଲି (ବାଜୀ ନାମକ ଶିକୁଳୀ ଲଗା ମଲ୍ଲକଢୀ ପାଖ ଅଳଙ୍କାର ବିଶେଷ) ଗୁପତ ଶାଙ୍କୋଳୀ (ଲୁଗ୍ଭଇ କରି ରଖିଥିବା ଶିକୁଳୀ) ପାଖରେ ଆଣି ରଖିଲେ କି ?

ଯାହା କଜ୍ଜ୍ୱଳ ଶାଣି ତହିଁ ଦେଲେ,
ଆଉ କି ସଖୀ ସୃଷ୍ଟି ରଖିଥିଲେ ସେ ।
ବଡ଼ଭିଜ୍ଞା ସୁକୁମାରୀ ଯେ ।
କୁର୍ହିତ ଜୀବକୁ ଏ ଶସ୍ତ୍ର ମାରିକି
ନ ବିନ୍ଧେ ଏହା ବିଗ୍ଭରି ଯେ । ୨୧ ।
ଶ୍ରବଣକୁ ଯାହା ଲଞ୍ଜି ଲଗିଛି,
ସେ କି ଅକ୍ଷିକି ଡ଼ାକି ଶିଖାଉଛି ।
ବ୍ରହ୍ମହତ୍ୟା ହେବ ଧାତା ବଧରେ,
ତୋ ଅରି କୁରଙ୍ଗ ହରତା ଧରେ ସେ ।
ପାରିଲେ ତୁ ତାକୁ ମାର ଯେ ।
କାହିଁଛି କାହିଁଛି ବୋଲି ଖୋଜିବାରେ
ଚଞ୍ଚଳ ଗତିକି ତାର ଯେ । ୨୨ ।
ଘୋଣାରେ ଦେଲେ ମୋତି ନାକଚଣା,
ଠିକଣା କରି ଏ ଉପଲକ୍ଷଣା ।
ମାରି ନେବ ମନ ମୀନ ଓଟାରି,
ଥୋପ ଲଗାଇ କି ବଡ଼ଶୀ ଧରି ସେ ।
ପୁଟକେ ମାଣିକ୍ୟ ଗୁଣା ଯେ ।
ଝଟକେ କି ଦିଶେ ଅନଳ ଜ୍ୟୋତି ସେ ।
ଛଟକେ କରଇ ବଶା ଯେ । ୨୩ ।

---

୨୦— ଆଖିର ଭୃରୁ (ଭୂଲତା)କମାଣ (ଧନୁ)ହେଲା; ନେତ୍ର ଗ୍ରହାଣି ବାଣ ( ଶର) ହେଲା; ଆଖିରେ କଜଳ ଦେବାଦ୍ୱାରା ସେ ଶରକୁ ଶାଣ ଦେଲା ପରି କଲେ । ଶର ବିନ୍ଧିବାରେ ସୃଷ୍ଟି ନାଶ ହୋଇଥାନ୍ତା । କିନ୍ତୁ ଭିଜ୍ଞା (ଜାଣିବାର) ସୁକୁମାରୀ କୁର୍ହିତ ଲୋକକୁ ଏ ପର ଶର ବିନ୍ଧି ହତମାନ ହେବି ନାହିଁ ବୋଲି ଶର ବିନ୍ଧୁ ନାହିଁ ।

୨୨— କଜ୍ଜ୍ୱଳ ଲଞ୍ଜି କାନକୁ ଲଗିଛି । କାନ ଯେପରି ଆଖିକୁ ଶିଖାଉଛି—ଯାହାକୁ ଇଚ୍ଛା ତାକୁ ମାର ନା, ଧାତା (ବ୍ରହ୍ମା)ଙ୍କୁ ମାଇଲେ ବ୍ରହ୍ମହତ୍ୟା ହେବ । ତୋ ଶତ୍ରୁ କୁରଙ୍ଗ (ହରିଣ) ଅର୍ଥାତ୍ ହରିଣ ଆଖି ତୋ ଆଖିକୁ ଚଞ୍ଚଳତାରେ ଜିଣିପାରେ । ସେତ ମହାଦେବଙ୍କ ମୁଣ୍ଡ ଚନ୍ଦ୍ରରେ ଅଛି । ତହୁଁ କାହିଁ କାହିଁ ବୋଲି ଖୋଜିବାରେ ଆଖିର ଚଞ୍ଚଳଗତି ।

୨୩— ଘୋଣା (ନାକପୁଡ଼ା)ରେ ମୋତି ନାକଚଣା । ତାର ଉପଲକ୍ଷଣା (ଉତ୍ପ୍ରେକ୍ଷା) । ନାକଚଣା ହେଲା ଥୋପ, ନାକ ହେଲା ବଡ଼ଶୀ (ବନଶୀ); ପୁଟକେ (ଥାରପୁଡ଼ାରେ) ମାଣିକ୍ୟ (ଲାଲମଣି)ର ଗୁଣା ନିଆଁ ପରି ଝଟକୁଛି ।

ଗଣ୍ଡେ ଘଣ୍ଡେ କରି ମକରୀ ଝଳି ।
ମୁକୁର ବିମ୍ବେ କି ତମାଳ ବଲ୍ଲୀ ।
ଚିବୁକେ ଭ୍ରମରୀ ଓଷ୍ଠ ବନ୍ଧୁକୁ ।
ମଧୁ ନ ପିଏ କି ଏହି ବିବେକୁ ସେ ।
ନାସା କୀର ଅଛି ଝାମ୍ପି ଯେ ।
ବିମ୍ବ ହୋଇଥିଲେ ଜମ୍ବୁ ଭଳି ମୋତେ
ନପୂଣ ଚଞ୍ଚୁରେ ଘପି ଯେ । ୨୪ ।
କଣ୍ଠେ ଦିଅନ୍ତେ ମୋତି ଘପସରୀ ।
ରହିଲେ ଉପମାଏ ଅପସରି ।
କି କମ୍ବୁ ଜିଣିଲ ଯଶ ପ୍ରକାଶ ।
ମତ୍ତ କପୋତେ କି କରୁଛି ହାସ ସେ ।
ଯୋଡ଼ି ମାଳି କାଚ ମାଳି ଯେ ।
ଆଉ ମାଳି ଆଳି କେତେକ କହିବା
ଯେତେକ ମଣ୍ଡିଲେ ଆଳୀ ଯେ । ୨୫ ।

---

୨୪—ଗଣ୍ଡେ (ଗାଲରେ) ଘଣ୍ଡେ (ଡାରିଫକରି) ଯେଉଁ ମକରୀର ( ଗାଲରେ ଛୋଟ ମଗରପରି କସ୍ତୁରୀରେ ଯେଉଁ ଚିତ୍ର କରଯାଏ ) ଝଳି (ଶୋଭା) । ମୁକୁର ବିମ୍ବ-ଦର୍ପଣ; ବଲ୍ଲୀ—(ଲତା) ଏଠାରେ ତମାଳବଲ୍ଲୀ (ସତ୍ୟାମ୍ବାଗଛ) । ଚିବୁକରେ (ଓଠତଳେ) କସ୍ତୁରୀରେ ଭ୍ରମରୀ ଚିତ୍ର ହୋଇଛି । ସେହି ଭ୍ରମରୀ ଓଠରୂପ ବନ୍ଧୁକରୁ ( ବଧୁଲି ଫୁଲରୁ ) ମଧୁ ପିଉନାହିଁ କାହିଁକି ? ଉପରୁ ନାକ ରୂପ ଶୁଆ ତାକୁ ଝାମ୍ପିଛି । ଭ୍ରମରୀ ବିଚାରୁଛି ଓଠ ବଧୁଲି ନ ହୋଇ ଯଦି ପାଚିଲା ବିମ୍ବଫଳ ହୋଇଥିବ, ମୋତେ ଜାମୁ କୋଳି ବୋଲି ବିଚାରି ହୁଏତ ସେ କୀର (ଶୁଆ) ଚଞ୍ଚୁ (ଥଣ୍ଡ)ରେ ମୋତେ ଘପି ଦେବ । [ କୌଣସି ଅଳଙ୍କାର ଗ୍ରନ୍ଥର ଭ୍ରାନ୍ତିମାନ ଅଳଙ୍କାରରେ ଉଦାହରଣ ଅଛି—"ପଲାଶ କୁସୁମ ଭ୍ରାନ୍ତ୍ୟା ଶୁକ ତୁଣ୍ଡେ ପତିତ୍ୟଳିଃ, ସୋଽପି ଜମ୍ବୁଫଳ ଭ୍ରାନ୍ତ୍ୟା ତମଳିଂ ଧେର୍ତ୍ତୁ ମିଛତି" ]

୨୫—କଣ୍ଠରେ ମୋତି ଘପସରୀ ଦେଖି ଉପମାମାନେ ଲଜ୍ଜାରେ ଅପସରି (ପଳେଇ) ରହିଲେ । କମ୍ବୁ (ଶଙ୍ଖ) ତାକୁ ଜିଣିଥିଲା ବୋଲି କଣ୍ଠର ଏ ଯଶ ପ୍ରକାଶ ହେଲା । କିମ୍ବା ମତ୍ତ (ତେଜିଆନ୍ ) କପୋତ ହସୁଛି । [ କାପତା ଚଢେଇର କଣ୍ଠରେ ବହୁ ବର୍ଣ୍ଣ ବିଭବ ଦେଖାଯାଏ ] । ଯୋଡ଼ିମାଳି, କାଚମାଳି ଆଉ ମାଳି ଆଳି (ହାରସବୁ) ଆଳୀ (ସଖୀ) ମଣ୍ଡିଲେ ।

ଫୁଲି ଲର୍ଗି କଲା ଚରମ ଶୋଭ ।
ଖେଳାଇବା ପାଇଁ ଭରମ ପ୍ରଭ ।
ଶରମେ କାମ କି ମଣ୍ଡନ କଲା ।
ନୀଳରଙ୍ଗ ପୀତ ବର୍ଣ୍ଣେ ଶୋଭିଲା ସେ ।
ବିଚିତ୍ର ଦୃଷ୍ଟି ପ୍ରକଟି ଯେ ।
ନୀଳେନ୍ଦୀବର[୧୩]         ଶୋଣ କଞ୍ଜ କୁମୁଦ
ନିର୍ଝର ନଦୀରେ ଫୁଟି ଯେ । ୨୬ ।
ରୋମାବଳୀ କର ଅଛି ପ୍ରସାରି ।
ଯୌବନ ଗଜ କୁଚ ଅମାରୀ ।
ଗ୍ରେଳ ଘୋଡ଼ଣୀ କି ମଣ୍ଡଣି ହାର ।
ପ୍ରବାଳ ମାଳା କି ବଉଳ ଝର ସେ ।
ପଦକ ମାହୁନ୍ତ ସ୍ଥାନୀ ଯେ ।
ଧନ୍ୟ ଧନ୍ୟ ରମା         ସୁଷମା କଲେ ତା
ଏହି ଉପମାକୁ ଘେନି ଯେ । ୨୭ ।

---

ପାଠାନ୍ତର– ୧୩, କ ଇନ୍ଦୀବର ।

---

୨୬–ହାର ମାନଙ୍କର ପଛପଟ ରଙ୍ଗ, ନେଳୀ ଫୁଲି ସବୁ ଚରମେ ( ପିଠିରେ ) ପଡ଼ିବାର ବର୍ଣ୍ଣନା । ଭରମ ( ସୁନା ) ପିଠିର ସୁବର୍ଣ୍ଣ ବର୍ଣ୍ଣକୁ ଖେଳାଇବା ( ପ୍ରକାଶ କରିବା ) ପାଇଁ ଶରମେ ( ଲଜ୍ଜାରେ ) କାମ ମଣ୍ଡନ କଲା । ଲଜ୍ଜା ଲାଲ ଓ ନୀଳ ବୋଲି ବର୍ଣ୍ଣିତ ହୁଏ । ପିଠି ହେଲା ନିର୍ଝର ନଦୀ । ଫୁଲି ସବୁ ନୀଳ ଇନ୍ଦୀବର ( ନେଳୀଆ ସୁବୁଧିକଇଁ ) ଶୋଣ (ନାଲି) କଞ୍ଜ–ପଦ୍ମ, କୁମୁଦ–କଇଁ ।

୨୭–ଯୌବନ ହାତୀ ପରି । କୁଚ (ସ୍ତନ) ଅମାରୀ (ହାତୀ ମୁଣ୍ଡର ଦୁଇ ପାଖେ ଥିବା ଦୁଇ କୁମ୍ଭ ) ପରି । ନାହି ଚକକୁ ଲାଗିଥିବା ରୋମାବଳୀ ( ରୋମରେଖା ) କର (ଥୋଡ଼ ପାହାଡ଼) ପରି, ଗ୍ରେଳ (କାଞ୍ଚଲ) ହାତୀଉପର ଘୋଡ଼ଣୀ ପରି, ହାର (ମାଳ) [ ବେକର ମାଳସବୁ ] ହାତୀର ମଣ୍ଡଣି ପରି । ପ୍ରବାଳ ମାଳା ( ପୋହଳା ମାଳି ) ହାତୀ ମୁଣ୍ଡର ଲାଲ ଚିତ୍ର ବଉଳ ଝରପରି । ହାରର ପଦକ ହାତୀ ମାହୁନ୍ତ ପରି । ରମାକୁ ( ଲାବଣ୍ୟବତୀକୁ) ଏହି ଉପମାକୁ ଘେନି ସୁଷମା ( ସୁନ୍ଦର ) କଲେ ।

ବାଉଟି ସାର ଘବି ଦେଲେ ଚହିଁ ।
ଝାନ ତାଡ଼ନକୁ ତାଡ଼କୁ ବିହିଁ ।
ଅତୁଲ ଠାରେ ମଣିବନ୍ଧ ପଛେ ।
ଅତୁଲ୍ୟ ମଣ୍ଡିଲେ ଅତ୍ୟନ୍ତ ସ୍ୱଛେ ସେ ।
ଦେଲେ ମରକତ ଚୂଡ଼ି ଯେ ।
କର ଚମ୍ପା ଦାମ ଭ୍ରମରେ ରହିଲେ
ଭ୍ରମରେ କି ଅବା ଛଡ଼ି ଯେ । ୨୮ ।
ସଖୀମାନେ ପାଞ୍ଚ ଅଙ୍ଗୁଳି ଗ୍ରହିଁ ।
ଜଲେ ପାଞ୍ଚ ପାଞ୍ଚ ନାରାଚ ଏହି ।
ପାଞ୍ଚ ନାରାଚ ଭସ୍ମ ହେଲ ଦିନ ।
ଥୋଇଲ କି ଦେଖି ଏ ରମ୍ୟ ସ୍ଥାନ ସେ ।
ଭେଦିବ ପଞ୍ଚ ମନକୁ ଯେ ।
ପଞ୍ଚରନ୍ଦ୍ର ଦେଇ ପୂଜା କରିବା କି
ବୋଲି ମୁଦି ଦେଲେ ତାକୁ ଯେ । ୨୯ ।
ହରିତାଳୀ କାଳି ଘେନି ବନିତା ।
ପଦ ପରେ ଉକୁଟାଇଲେ ଚିତା ।

---

୨୮—ବାଉଟି ( ବାଁ ହାତରେ ତାଡ ସ୍ଥାନର ଅଳଙ୍କାର ) ଆଜି କାଲିର ବାଜୁବନ୍ଧ ସ୍ଥାନୀୟ । ତାଡ଼ ଡ଼ାହାଣ ହାତରେ ମଣିବନ୍ଧ (କଟଟି) ପଛେ ଅତୁଲ ( ତୁଳନା ନ ହେବା ଭଳି ) ଠାରେ ( ସ୍ଥାନରେ ) ଅତୁଲ୍ୟ ( ଅତୁଲ ଖଡୁ ) ମଣ୍ଡିଲେ । ତା ଉପରକୁ ମର୍କତର ଚୂଡ଼ି (ଗାଢ ଲଲବର୍ଣ୍ଣ କଳା ସଙ୍ଗେ ତୁଳନା ଦିଆଯାଏ ।) ହାତର ଆଙ୍ଗୁଠି ଗୁଡ଼ିକ ଚମ୍ପାଦାମ ( ଚମ୍ପାକଢ଼ୀ ସମୂହର ) ବୋଲି ଭ୍ରମରେ (ଭୁଲରେ) ଭ୍ରମରମାନେ ଲଗି ରହିଲ ପରି ଦିଶୁଛି ।

୨୯—ପାଞ୍ଚ କଲେ—ବିସ୍ତର କଲେ । ପାଞ୍ଚ ନାରାଚ ( ମଦନର ପାଞ୍ଚଶର ଏବଂ ପାଞ୍ଚ ନାରାଚ ଯାହାର ସେ ପାଞ୍ଚ - ନାରାଚ ଅର୍ଥାତ୍ ମଦନ ) ପଞ୍ଚ ମନ ( ପଶୁପତି, ମହାଦେବ )। ମଦନ ଭସ୍ମ ହେଲ ଦିନ ଏ ଲାବଣ୍ୟବତୀର ପାଞ୍ଚ ଆଙ୍ଗୁଠିରେ ସେ ଶର ଥୋଇ ଦେଇଥିଲା । ପଞ୍ଚରନ୍ଦ୍ର ଦେଇ ତାହା ପୂଜା କରିବା ପାଇଁ ସଖୀମାନେ ଗୋଟିଏ ଗୋଟିଏ ମୁଦି ସେଥିରେ ଦେଲେ ।

୩୦—ହରିତାଳୀ କାଳି ( ହରିତାଳୀ ଗୋଳା ସ୍ୟାହୀ ) ପାଦ ଉପରେ ଉକୁଟାଇଲେ (ଚିତ୍ରକଲେ), ହରତାଳରେ ସୁନା କଣ୍ଟେଇ ଲେଖି ତା ଉପରେ କଳା କାଳୀ ପକାଇ

ସୁନା କଳସ ବିଧି ବିରଚନା ।
ଫୁଙ୍କିଲେ ତହିଁ ମରକତ ମୀନା ସେ ।
ବେଢରେ ସବୁ ଅଳତା ଯେ ।
ପାଟସୂତ୍ର ଫାନ୍ଦେ           ଫାନ୍ଦିଲା ତାହାକୁ
କିବା କଉତୁକୀ ଧାତା ଯେ । ୩୦ ।
ହଂସକ ଯାହାଟି ଖଞ୍ଜିତା ପାଦେ ।
ହଂସକୁ କହିବା ନିମିତ୍ତେ ନାଦେ ।
ଇଛାରେ ତ ସମ ନୁହଁ ଗତିକି ।
ଭୀତି ନ କରିବ କିଛି ଏଥିକି ସେ ।
ତୁମ୍ଭେତ ପୋଷିଲା ପକ୍ଷୀ ଯେ ।
ଆଖି ନ ଥିବାର           ଚିତ୍ରେ[୧୪] ଲକ୍ଷିବାର
ତୁମ୍ଭର କି ଦୋଷ ଅଛି ଯେ । ୩୧ ।
ବଳା ପାଦେ ଅଛି ଅବଳା କେହି ।
ଏହି ବିଷୟରେ କି ଖଞ୍ଜିଲେ ସହୀ ।
ହୋଇଅଛି ପୁଣି ଅତି ଝମକ ।
ଯୁବା ଚେତନା ଚମକ ଟମକ ସେ ।
ଖଞ୍ଜିଲେ ମଞ୍ଜୁ ମଞ୍ଜୀର ସେ ।
ତ୍ରିପୁର ତ୍ରିପୁର           ପର ଆତୁରକୁ
ସ୍ମର କି ସାଜିଲା ତୂର ଯେ । ୩୨ ।

---

ପାଠାନ୍ତର—୧୪, ମିତ୍ରେ ।

---

ଫୁଙ୍କି କରି ମରକତ ମୀନା ନାମକ ଚିତ୍ର ତିଆର କଲେ । ବିଧାତା ପାଟ ସୂତା ଫାନ୍ଦରେ ସୁନା କଇଁଚ ଓ ମରକତ ମୀନ ଫାନ୍ଦିଲା ପରି ଏହା ଦେଖାଗଲା ।

୩୧—ହଂସକ ( ପାହୁଡ଼ ) । ତୁମେମାନେ ଯେ ଗତିକି ସମାନ ନୁହ ସେଟା ଇଛା କରି ନୁହେ । ସେଥିକି ଭୟ କର ନାହିଁ । ଆଖି ନ ଥିବା ଲୋକ ଚିତ୍ରରେ ( କାବ୍ୟରେ ) ତୁମ ନାଆଁକୁ ପାଦ ଅଳଙ୍କାର ସଙ୍ଗେ ଯୋଡ଼ୁଛି । ସେଥିରେ ତୁମର ଦୋଷ ନାହିଁ । କାରଣ ତୁମେ ପୋଷା ପକ୍ଷୀ, ସ୍ୱାଧୀନ ନୁହ, ଆପତ୍ତିବା କିପରି କରିବ ?

୩୨—କେହି ଅବଳା ( ସ୍ତ୍ରୀ ) ପାଦରେ ଏହାକୁ ବଳା ( ବଳି କରି ) ଅଛି କି ? ଏହି ବିଷୟରେ ବଳା ଖଞ୍ଜିଛି । ଝମକ—ଝମଝମିଆ; ଟମକ-ଟଙ୍କାର ଶବ୍ଦ; ମଞ୍ଜୁ—ସୁନ୍ଦର;

ଛଡ଼ାଇବ ସେ ଝିଙ୍କାରୀ ଝଙ୍କାର ।
ବଡାଇବ ଶୁଣି[୧୪] କାମ ବିକାର ।
ପ୍ରପଦେ ଦେଲେ ଝୁଣ୍ଟିଆ ବାଜେଣୀ ।
ନଜାଣି କାହିଁକି ଏଡ଼େ ସାଜେଣୀ ସେ ।
ସହଚରୀ ହୋଇ ଲୋଭ ଯେ ।
ଶାଢୀ ପାଲଟିବା ପାଇଁସେ ଅବନୀ
ଶୋଭ କରଇଲେ ଉଭ ଯେ । ୩୩ ।

ବାହାର କଲେ ନୀଳ ଝୀନ ଶାଢୀ ।
ସିନ୍ଦୁରୀ ଶାଢୀ ଫୁଲ ଲିଙ୍ଗ ପଢ଼ି ।
ରଖିଲେ ରହିବ ମୁଠା ଭିତରେ ।
ସତେ ରଖିଥିଲେ ବଂଶ ନଳୀରେ ସେ ।
ଭଞ୍ଜିଲେ କୁଞ୍ଚିଲେ ସଖୀ ଯେ ।
ବାଳା ବଳ ଆଞ୍ଚି କାଛି ପିନ୍ଧାଇଲେ
ଉପମାଏ ଭ୍ରଣ୍ଡ ଦେଖି ଯେ । ୩୪ ।

ଉରଜେ ପଡ଼ି ମୋହିଲ ନେତ୍ରକୁ ।
ମୁଦି ଥୋଇଲେ କି କଳା ଛତ୍ରକୁ ।
ସ୍ୱୀଚ ଦୁଇ ଲୁଚି ରୁଚି ଦିଶିଲ ।

---

• ପାଠାନ୍ତର—୧୪, ପୁଣି ।

---

ମଞ୍ଜୀର—ବଳା ବା ଆଉ କୌଣସି ବାଜୁଥିବା ପାଦର ଅଳଙ୍କାର; ତ୍ରିପୁର—ତିନି ଭୁବନ; ଆତୁରକୁ (ଆତୁରତାକୁ, ବ୍ୟାକୁଳତାକୁ) ତ୍ରିପୁର ପର—ମହାଦେବ; ତାଙ୍କର ବି ଆତୁରତାକୁ ତୂର ( ଯୁଦ୍ଧ ବାଦ୍ୟ ) ।

୩୩—ଗ୍ରୀଷ୍ମ କାଳରେ ଦ୍ୱିପ୍ରହରେ ପୁଲଙ୍ଗ ଓ ଆମ୍ବ ତୋଟାରେ ବୋବାଉ ଥିବା ଝିଙ୍କାରୀ ଶବ୍ଦ ସଙ୍ଗେ ଝୁଣ୍ଟିଆ ( ପାଦ ଆଙ୍ଗୁଠି ) ମୁଦି ସହିତ ତୁଳନା ଦିଆଯାଏ; ଏଡ଼େ ସାଜେଣୀ କାହିଁକି ଏକଥା ନ ଜାଣି ମଧ୍ୟ ସହଚରୀ ମାନେ ଲୋଭ ହୋଇ ଶାଢୀ ପାଲଟିବା ପାଇଁ ଅବନୀ ଶୋଭ (ମହୀଭୂଷା)କୁ ଉଭ (ଠିଆ) କରଇଲେ ।

୩୪—ଫୁଲ ଲିଙ୍ଗ (ଫୁଲଚିହ୍ନ) ବଂଶନଳୀ ( ବାଉଁଶନଳ ) ବଳ ଆଞ୍ଚି ( ବଳକୁ କଳନା କରି, ବଳଅନୁସାରେ ) କାଛି—ସବୁ ଅଙ୍ଗ ପ୍ରତ୍ୟଙ୍ଗରେ ଠିକ୍ କରି ଲଗାଇ ସଜାଡ଼ି କରି ।

ଯନ୍ତ୍ର ତୁମ୍ବୀକି ନୀଳ କଷ କଲ ସେ ।
ତ୍ରିକୋଣ ଚେଳ ଜଘନେ ଯେ ।
ରୋମାବଳୀ ଦଣ୍ଡ          ମଣ୍ଡନ ଚିରାଳ
ପରଯେ ପରତେ ମନେ ଯେ । ୩୫ ।
ନିବିଡ଼ ନୀବୀ ଛବି ଗଲ୍ପଜଣା ।
କାମ ମନ୍ଦିର ଜାଗ୍ରତକୁ ଠଣା ।
ରଚିଲେ କୁଞ୍ଜ ଆଗେ ଲମ୍ଫି ପଡ଼ି ।
ଜାଣେ ମଦନ ଯାଉଥିଲା ପୋଡ଼ି ସେ ।
ଜୀବ ଦେବ କରେ ଶାନ୍ତି ଯେ ।
ଯୁବାଙ୍କ ଅଧୋ–          ଗତିକି ବିଚାରିଣ
ତେମନ୍ତ ଏ ଧୂମ ପନ୍ତି ଯେ । ୩୬ ।
ବାଜିବା ବେଳକୁ ଜହଁ ରସନା ।
ଯୋଗୀଙ୍କି ବୋଲିବ ଯୋଗେ ରସନା ।
ଯୋଗୀଙ୍କି ବୋଲିବ ଯୋଗରେ ରସ ।
କଳା କେଳିରେ ନ ଲଭି ବିରସ ସେ ।
ଭବି କେଶରୀ କଟୀକି ଯେ ।
ଅତି ହରଷରେ          ବାନ୍ଧିଲେ ବାନ୍ଧବୀ
ବାଜେଣୀ କ୍ଷୁଦ୍ର ଘଣ୍ଟିକି ଯେ । ୩୭ ।

---

୩୫—ସ୍ତନ ଉପରେ କଳା ଶାଢ଼ୀ କଳାଛତା ମୁଦି ଥୋଇଲା ପରି ଦିଶିଲା । ସ୍ୱାଚ (ପିଣ୍ଡ) ଦୁଇଟି ଯନ୍ତ୍ର (ବାଦ୍ୟ ଯନ୍ତ୍ର, ବୀଣା ପ୍ରଭୃତିର) ତୁମ୍ବୀ ପରି ହେଲା । ନେଳୀ ଶାଢ଼ୀ ସେ ତୁମ୍ବୀ ଉପରେ ଦିଆ ଯାଇଥିବା ନୀଳ କଷ ପରି ହେଲା । ଜଘନେ ତ୍ରିକୋଣ ଚେଳ ( ଜଘପାଖକାନି ), ରୋମାବଳୀ ଦଣ୍ଡ ( ଖୁଣ୍ଟ )ରେ ଚିରାଳ ( ପତାକା ) ପରି ହେଲା ।

୩୬—କୁଞ୍ଜ ଲମ୍ଫି ପଡ଼ି ନିଆଁରେ ପାଣି ପକାଇଲେ ଯେଉଁ ଧୂଆଁ ବାହାରେ, ତାହାରି ପରି ଦିଶୁଛି । ମଦନ ପୋଡ଼ି ଯାଉଥିଲା, ଜୀବଦେବ (ସ୍ୱର୍ଗବୈଦ୍ୟ) ଆସି ପାଣି ପକାଇବାରୁ ଧୂଆଁ ବାହାରୁଛି । ମଦନ ବଞ୍ଚିଲେ ଯୁବାଙ୍କର ଅଧୋଗତି ହେବ । ଧୂଆଁ ଏଠାରେ ତଳକୁ ଯାଉଛି । ଯୁବାଙ୍କର ଅଧୋଗତି ନିମ୍ନଗତି ସଙ୍ଗେ ଉପମା ।

୩୭—ରସନା (ଅଣ୍ଟାସୂତା) ଯୋଗେ ରସ ନା (ଯୋଗରେ ମାତନାହିଁ), ପୁଣି କେଶରୀ କଟୀକି ( ସିଂହ ଅଣ୍ଟାପରି ସରୁଆ ଅଣ୍ଟା ) ସେ ଅଣ୍ଟାରେ ଯେଉଁ ଘଣ୍ଟି ବାନ୍ଧିଲେ

ଭୁଞ୍ଜାଇଲେ ତହିଁ ୧୭ ଉତ୍ତାରୁ ପାନ ।
ଏକେ ଅଧର ଦୁକେ ପରଶନ ।
ବିଦ୍ରୁମ ଉପି ରଙ୍ଗାଇଲେ ପୁନ ।
ଅରୁଣ କଲକି ସିନ୍ଦୁରେ ସ୍ନାନ ସେ ।
ଗାଲରେ ମୁକୁର ଦେଇ ଯେ ।
ହେଲକି ନୋହିଲ ବୋଲି ପଗ୍ଭରିଲେ
ରମଣୀ ହସିଲ ହୋଇ ଯେ । ୩୮ ।

ଘୋଡ଼ାଇ ଦେଲେ ଯେ ଜରି ଓଢଣୀ ।
ଶମ୍ପାରେ ଆଚ୍ଛାଦିତ ନୀଳମଣି ୧୭ ।
ଗେଗଣ ଚିହ୍ନ ଅତୁଳା ପିତୁଳା ।
କେ କଲ-କର କେହି ସ୍ଥିର ହେଲ ସେ ।
ଅକ୍ଷି ପକ୍ଷୀ ଅଠା କାଠି ଯେ ।
ଘୋଡ଼ାଇ ଦେଲେ କି ଏହି ଭବନାରେ
ଦିନା କେତେ ଥାଉ ସ୍ପର୍ଷ ଯେ । ୩୯ ।

---

ପାଠାନ୍ତର—୧୬, ତହିଁ ୧୭, ନଣାମଣି ।

---

ସେ ଯୋଗୀଙ୍କି ବୋଲିବ—ଯୋଗରେ ରସ୍ତ । କେଳିରେ ( ସ୍ତ୍ରୀ ସହବାସରେ ) କଳା (ବିଦ୍ୟା )ନ ଇଭି ବିରସ ହୋଇଛି ।

୩୮—ଏକେ ତ ଅଧର ଲଲ । ସେଥିରେ ପୁଣି ପ୍ରସନ୍ନ ( ପ୍ରଫୁଲ୍ଲ ) ହେବାରୁ ଆଉରି ସୁନ୍ଦର, ତା ଉପରେ ବିଦ୍ରୁମ ଉପି ( ପାନରଙ୍ଗ ବୋଳ ଦ୍ୱାରା ) ରଙ୍ଗାଇଲେ ।

୩୯—ଜରି ଓଢ଼ଣୀ—ଖଣ୍ଡୁଆ ଭଳି ମୁଣ୍ଡରେ ପକାଇବାର ଜରି କାମ କରା ପାଟ । ସେ ନେଳୀ ଶାଢ଼ୀ ଉପରେ ପଡ଼ିବାରୁ ନୀଳମଣି ଶମ୍ପାରେ ( ବିଜୁଳିରେ ) ଆଚ୍ଛାଦିତ ( ଆବୋରି ହେଲ ପରି ) ଦିଶିଲ । ଗେଗଣ—ଆଜି କାଲିର ବାର୍ଣ୍ଣିସ ପରି ଏକ ପ୍ରକାର ହଳଦିଆ ବନକ । କେହି ସ୍ଥିର ହେଲ ( କିପରି ସ୍ଥିର ହେଲ ) ଆଖିରୂପ ପକ୍ଷୀ ଗୁଡ଼ାକ ନେଳୀଶାଢୀ ପିନ୍ଧା ଏହି ଲବଣ୍ୟବତୀ ରୂପ ଅଠା କାଠିରେ ଲଗିଗଲେ ସ୍ପର୍ଷ ଧ୍ୱଂସ ହୋଇ ଯାଆନ୍ତା, ସେଥି ପାଇଁ ଦିନା କେତେ ସ୍ପର୍ଷ ଥାଉ ବୋଲି ସଖୀମାନେ ଜରି ଓଢ଼ଣୀରେ ଘୋଡ଼ାଇ ଦେଲେ ।

ହିରଣ୍ୟ ତନୁରେ ଯେ କ୍ଷତକାରୀ ।
ଦାସ ବତ୍ସଳ ରାମ ନରହରି ।
ଧ୍ୟାନେ ଅର୍ଚ୍ଚିତ ଅଘ କରି ହତ ।
ଉପଇନ୍ଦ୍ର ବୀରବର ରଚିତ ଯେ ।
ରସିକ ସିନ୍ଧୁକୁ ସ୍କନ୍ଦ ଯେ ।
କବି ସେ ଜାଣିମେ          ଯେତେ ଶ୍ରମ ଏଥି
ଏ ବେଶ ପେଶଳ ଛାନ୍ଦ ଯେ । ୪୦ ।

---

୪୦—ରାମ ନରହରି ( ନୃସିଂହଙ୍କ ପରି ) ଦୁହେଁ ଦାସ ବତ୍ସଳ ( ଭକ୍ତ ବତ୍ସଳ ) । ରାମ ହିରଣ୍ୟ ତନୁରେ ( ସ୍ୱର୍ଣ୍ଣ ମାୟା ମୃଗ ଦେହରେ ) କ୍ଷତକାରୀ । ନୃସିଂହ ହିରଣ୍ୟ କଶିପୁ ଦେହରେ କ୍ଷତ କାରୀ ।

ଅଘ—ପାପ; ବେଶ ପେଶଳ ( ବେଶ ବର୍ଣ୍ଣନା ଥିବାରୁ ପେଶଳ—ମୃଦୁଳ, କୋମଳ ବା ମନୋରମ ) ।



# ପଞ୍ଚମ ଛାନ୍ଦ

## ( ଲାବଣ୍ୟବତୀର ଉପବନବିହାର )

ରାଗ ବସନ୍ତ–ଚନ୍ଦନ ଛଗବାଣୀ ।

ଏହି ସମୟରେ ସୁନ୍ଦରୀ ଛାମୁରେ ପ୍ରଭମଞ୍ଜୁଳା ଜଣାଇଲା ।
ଅତି ମଧୁର ମଧୁ ଋତୁ ପ୍ରବେଶ କେତେ ଦିନ ହେଲା ହୋଇଲା ।
ଶ୍ରବଣ । କରିନାହୁଁ ନବ କାମିନୀ ।
ପିକ ବଚନେ ପୁନଃପୁନଃ ପ୍ରକାଶ କଲେଣି ଅନ୍ଧାର ଯାମିନୀ । ୧ ।
ମଳୟ ଶିଖରୀ ଶିରୀ ଘେରି[୧] କରି ବହିଲାଣି ମନ୍ଦ ସମୀର ।
ସୁମନା ବାସକୁ ଘେନଇ ନେବଟି ବୋଲି କହିଲାଣି ଭ୍ରମର ।
କେଶର । ଫୁଲେଣ୍ଟଳେ ହେଲେଣି ମଞ୍ଜୁଳ ।
କେଶରେ ମଣ୍ଡନ କରିବା ଭଳିରେ ଫୁଟିଲେଣି କେତେ ବଞ୍ଜୁଳ । ୨ ।
ମଲ୍ଲୀ ମାଧବୀ ମକରନ୍ଦ ସାଧବୀ ହେଲେଣି ବାନ୍ଧବୀ କାନନେ ।
ତୁଷାର ନାଶ ଘୁହିଁ ହାସ ପ୍ରକାଶ କଲେଣି ପଙ୍କଜ ଆନନେ ।

---

ପାଠାନ୍ତର—୧, ଘେନ ।

---

୧– ପ୍ରଭମଞ୍ଜୁଳା ସଖୀର ନାମ; ମଧୁଋତୁ–ବସନ୍ତଋତୁ; ପିକ–କୋକିଳ; ବଚନେ–ନିଜ ସ୍ୱରରେ; ପୁନଃପୁନଃ ଅନ୍ଧାର ଯାମିନୀ ( କୁହୁଁ ) ପ୍ରକାଶ କଲାଣି ଅର୍ଥାତ କୁହୁ କୁହୁ ହୋଇ କୋକିଳ ବୋବାଇ ଲାଣି ।

୨– ମଳୟ ପବନ ଦକ୍ଷିଣର ମଳୟ ଶିଖରୀ ବା ମଳୟ ପର୍ବତର ଯେ ଶ୍ରୀ(ବୈଭବ) ଅର୍ଥାତ ଚନ୍ଦନ ସୁବାସ ତାକୁ ଘେରି କରି ଧୀରେ ଧୀରେ ବହିଲାଣି । ଫୁଲ ଫୁଟିବାରୁ ଭଅଁର ସେଥିରେ ବସିଲେଣି । ଯେପରିକି ଭଅଁର ଦକ୍ଷିଣା ପବନ କାଛେଟୋ ବାସକୁ ଘେଘଇ ନେବଟି ଏହା ବୋଲି ଫୁଲକୁ କହୁଛି । କେଶର(ନାଗେଶ୍ୱର) କେଶରେ ଫୁଲରେ ମଞ୍ଜୁଳ ( ସୁନ୍ଦର ) ହେଲାଣି; କେଶରେ ( ମୁଣ୍ଡରେ ) ଘେନିବା ଭଳି ବଞ୍ଜୁଳ ( ଅଶୋକ ବା ବଉଳଫୁଲ ) ଫୁଟିଲାଣି ।

ହେଲଣି । ଚର୍ଚ୍ଚରୀ ପ୍ରକଟ କଟକେ ।
ଅତନୁ ଫୁଲର ବିଶିଖ କାର୍ମୁକ ଘେନି ଚଳିଲଣି[୨] କାମୁକେ । ୩ ।
ଦୋଳା ଲୀଳାସରି ଗଲଣି ହରିର ଶରୀର ହେଲଣି ସ୍ୱେଦକୁ ।
ଚନ୍ଦନ କର୍ପୂର ସୁଧା ଲେପ ପୁର ବ୍ୟଜନ ବଢ଼ାଇ ମୁଦକୁ ।
ଚତୁରୀ । ଜାଣି ନ ଥିବୁ ତୁ କିପାଇଁ ।
ଅତି ଅଭିଗମ ଆଗମ ଦେଖିବା ବିଜେ କରିବାକୁ ଜଣାଇ । ୪ ।
ସଜନୀ ନିକର ଜାଣି ସୀଉକାର ମାର୍ଗ ପରିସ୍କାର ରଚିଲେ ।
ଅମଳ କମଳ କୋମଳ ଚରଣ ପୀଡ଼ା ନୋହିବାକୁ ପାଞ୍ଚିଲେ ।
ପନୀର । ଗନ୍ଧସାର ଗୋଳି ସିଞ୍ଚିଲେ ।
ଯୁବତୀ ସେବତୀ ପାଖୁଡ଼ା ମିଶାଇ ଘନସାର ଚୂରି ବିଞ୍ଚିଲେ । ୫ ।
ଏରି ପରିଖ ବିଞ୍ଚଣା ପାନ ମୁଣା ସଜନୀ ସଜାଡ଼ିଲେ ତହିଁ ।
ମନ୍ତ୍ରୀ ନନ୍ଦନା ଜଗତ ବନ୍ଦନାକୁ କର ଭର ଦେଇ ଉଠାଇ ।

---

ପାଠାନ୍ତର—୨, ଢଳିଲଣି ।

---

୩— ମକରନ୍ଦ ସାଧବୀ ( ମକରନ୍ଦ ଯୁକ୍ତା ) । ତୁଷାର ( ଗଡିରେ ପଡ଼ିବା କାକର ) ନାଶ ହେବାରୁ ପଙ୍କଜ (ପଦ୍ମ) ହସିଲେଣି (ଫୁଟିଲେଣି)। ଚର୍ଚ୍ଚରୀ (ଦୋଳଯାତ୍ରା) କଟକେ–ସହରରେ, ଜନବସତିରେ । ଅତନୁ ( କନ୍ଦର୍ପ ) ଫୁଲର ବିଶିଖ (ଶର) କାର୍ମୁକ (ଧନୁ) ଘେନି କାମୁକେ ( କାମୀ ଯୁବକ ମାନଙ୍କୁ ) ଚଳିଲଣି ( ଧମକାଇଲଣି ) ବସନ୍ତ ଋତୁରେ ଜନ୍ତୁମାନଙ୍କର କାମଭାବ ଜାଗ୍ରତ ହୁଏ ।

୪— ହରିର–ବିଷ୍ଣୁର; ସ୍ୱେଦକୁ–ଝାଳ ନିମନ୍ତେ; ସୁଧା ଲେପ ପୁର–ଚୂନ ଲିପାଘର; ବ୍ୟଜନ–ବିଞ୍ଚଣା; ମୁଦକୁ–ଆଗମ୍ୟକୁ, ଆନନ୍ଦକୁ; ବଢାଇ–ବଢାଉଛି; ଅତି ଅଭିଗମ–ସୁନ୍ଦର; ଆଗମ–ଆମୋଦ, ଉପବନରେ ଦେଖିବା ନିମନ୍ତେ ବିଜେ କରିବାକୁ ( ଯିବାକୁ ) ଜଣାଇଲେ ।

୫— ସଜନୀ ନିକର–ସଖୀମାନେ; ଅମଳ–ପରିଷ୍କାର; କମଳ–ପଦ୍ମ; ପଦ୍ମପରି ଯେଉଁ କୋମଳ ଚରଣ (ସୁକୁମାର ପାଦ) ସେଥିରେ ପୀଡ଼ା ନୋହିବ ବୋଲି ଗନ୍ଧସାର (ଚନ୍ଦନ) ଗୋଳି ପନୀର (ବାସପାଣି) ବାଟରେ ଛିଞ୍ଚିଲେ । ଯୁବତୀ ସେବତୀ ( ଫୁଟନ୍ତା ସେବତୀଫୁଲ)ର ପାଖୁଡ଼ାକୁ ଘନସାର (କର୍ପୂର) ଚୂରି ସେଥିରେ ମିଶାଇ ବିଞ୍ଚିଲେ ।

ସୁନ୍ଦରୀ । ସୃଷ୍ଟିରଜା ଗଜ କୁମାରୀ ।
ବିସ୍ତରି ଶ୍ୱେତ ଆତପତ୍ର ଟେକିଲେ ଚାମର ଚାଳନ ପ୍ରଚାରି । ୬ ।
କଉଁ ପ୍ରବୀଣା ବୀଣାକୁ ବଜାଉଛି ଯାଉଛି ପ୍ରତୀତ ହେଉଛି ।
ବନ୍ଧୁରେ ବନ୍ଧୁର ବୀଥିଟି ଏଥିରେ ସାବଧାନ ହୁଅ କହୁଛି ।
ଗମନେ । ଜେମାର ମୁଁ ମନେ କରଇଁ ।
ମନମଥ ରଥ ଯାତ୍ରା କି କରୁଛି ପଥ ମନୋରଥ ପୂରେଇ । ୭ ।
ଲଲାଟ ଲପନ ଚାନ୍ଦ ଦରପଣ ଚିକୁର ଚାମର ଯହିଁରେ ।
ତରଙ୍ଗ କୁରଙ୍ଗ ନୟନ ତୁରଙ୍ଗ କି ରଙ୍ଗ କରଇ ତହିଁରେ ।
କଳଶ । କୁଚ ଚକ୍ର ଶ୍ରୋଣୀ ଚଟୁଳ ।
କଟି ମେଖଳା ଘଣ୍ଟି ଯହିଁ ପ୍ରକଟି ଅଞ୍ଚଳ ପତାକା ଚଞ୍ଚଳ । ୮ ।
ଶୋଭ ଏ ବିଧିରେ ପ୍ରବେଶ ସଧୀରେ ପୀନ ସ୍ତନୀଏ ବିପିନରେ ।
ବୁଲିବା ଖେଳିବା କୁସୁମ ତୋଳିବା ଆରମ୍ଭିଲେ ତୋଷ ମନରେ ।

---

୬— ଝରି—ଡାଳ; ପରିଖ—ପିକଦାନୀ; ପାନମୁଣା—ପାନ ବଟୁଆ; ଯିବାପାଇଁ ମଷ୍ଟୀଙ୍କ ଉପରେ ହାତ ଭର ଦେଇ ଉଠିଲା । ସୃଷ୍ଟିର ରଜା ଭଳି ତା ଆଗରେ ଶ୍ୱେତ ଆତପତ୍ର ( ଧଳାଛତା ) ଟେକିଲେ ଓ ପାଖରେ ଚଅଁର ପକାଇଲେ ।

୭— ପ୍ରବୀଣା—ପଟୁ, ଦକ୍ଷ; ଏହା ଏଠାରେ ବୀଣା ବଜାଇବାରେ; ବୀଣା ବଜାଇ ଗଲାବେଳେ କହିଲା ପରି ଲାଗୁଛି, ବନ୍ଧୁର—ଖାଲଢିପ; ବୀଥି—ବାଟ; ରେ ବନ୍ଧୁ (ସଖୀ) ଏଥିରେ ସାବଧାନ ହୁଅ । ଜେମା ଯିବାରେ ମନ୍ମଥ ( କନ୍ଦର୍ପ ) ପଥର (ବାଟର) ମନୋରଥ (ଅଭିଳାଷ) ପୂରଇ ରଥଯାତ୍ରା କରୁଛି କି ?

୮— ସେହି ରଥ ଯାତ୍ରାର ବର୍ଣ୍ଣନା; ଯଥା—ଜେମାର ଲଲାଟ ଚାନ୍ଦପରି, ଲପନ (ମୁଁହ) ଦର୍ପଣ ପରି, ଚିକୁର ( ବାଳ ) ଚାମର ପରି, ତରଙ୍ଗ—ଚଞ୍ଚଳ; କୁରଙ୍ଗ ନୟନ—ହରିଣ ଆଖିପରି ଯେଉଁ ଆଖି ସେ ତୁରଙ୍ଗ ( ଘୋଡ଼ା ) ପରି, କୁଚ ( ସ୍ତନ ) କଳଶ ( ରଥ ଉପର କଳଶ ) ପରି, ଚଟୁଳ ( ଗୋଲ ) ଶ୍ରୋଣୀ ( ପିଚ୍ଛ ) ଚକ୍ର ( ରଥଚକ ) ପରି, କଟି ମେଖଳାର ( ଅଣ୍ଟା ସୂତାର ) ଯେ ଘଣ୍ଟି ସେହି ରଥର ଘଣ୍ଟିପରି, ଅଞ୍ଚଳ ( ଲୁଗାର କାନି ) ରଥର ପତାକା ପରି । ରଥରେ ଦର୍ପଣ ଲଗା ଚାନ୍ଦୁଆ ଥାଏ । ଏଠାରେ ଚାନ୍ଦ କହିଲେ ଚାନ୍ଦୁଆ ବୁଝିବାକୁ ହେବ ।

୯— ଏ ବିଧିରେ—ଏ ପ୍ରକାରରେ ଶୋଭ କରି ପୀନ ସ୍ତନା ( ପୃଥୁଳ କୁଚମାନେ ) ଧୀରେ ଯାଇ ବଣରେ ପହଞ୍ଚିଲେ । ପରଭୃତ—(କୋକିଳ) ତାଙ୍କ କଥାଶୁଣି ଚକିତ

ତହିଁରେ । ଛଳି ଉକ୍ତିମାନ କହିଲେ ।
ଶୁଣି ପରଭୃତ ଚକିତ ସକିତ ମୁନି ବିଭୂତିକି ବହିଲେ । ୯ ।
କହେ ଏକ ନାରୀ ବିଶେଷେ ସୁନାରୀ ଏ ଦେଶରେ ବାସ କରିଛି ।
ଭୃଙ୍ଗ କିଂପୁରୁଷ ଚଞ୍ଚଳ ମାନସ ଏଥି ତଥି ପୁଣ[ଅ] ଯାଉଛି ।
ତହିଁକି । ଛଳି କହିଲ କଉଁ ଭୀରୁ ।
ମହା ବିବେକିନୀ ହୋଇ ତୁ କିପାଇଁ ମଧୁପ ନାମକୁ ପାସୋରୁ । ୧୦ ।
ଏକକୁ ଗ୍ରହି ଆରେକ ସଖୀ କହି ନିକଟେ ନାଗେଶ୍ୱର ମୋର ।
ବୋଇଲ ହୋଇ ଥାଇଟି ନାଗେଶ୍ୱର ସୁପର୍ଣ୍ଣରେ କର ଆଦର ।
ସେ ଛଳେ । ଚିହ୍ନିଲ ନାଗେଶ୍ୱର କହ ।
ସୁମନା ଭୂଷଣ ସମ୍ପତ୍ତି ପାଇବୁ ତା ପରେ ଯାଇଣ ଆଗେହ । ୧୧ ।
କେ କାହାକୁ କହେ ମୋହଠାଇଁ ସଖୀ ରଖିଥିବୁ ଏକା କରୁଣା ।
ଦେବ ବଲ୍ଲଭକୁ ଲଭିବାକୁ ତେ'ତେ ବିଧାତା କଲଣି ପୂରୁଣା ।
ସେ ଶୁଣି । ବୋଇଲ ଏକଥା ଛାଡ଼ରେ ।
ଖୋଜିଲେ ନ ପାଇ ମୁଁ ବନ୍ଧୁ ଜୀବକୁ ପଡ଼ିଲି ବଗହ ଦାଢ଼ରେ । ୧୨ ।

---

ପାଠାନ୍ତର—ଅ, ପୂଣ ତହିଁ ।

---

( ଆଶ୍ଚର୍ଯ୍ୟ ) ହୋଇ ସକିତ (ଥକା) ହୋଇ ରହି ଯାଇ ମୁନି ବିଭୂତି ( ମୁନିତ୍ୱ, ମୌନ ) ଧଇଲେ–ତୁନି ହେଲେ । ଛଳି ଉକ୍ତି ମାନ କହିଲେ— ନାନା ଅର୍ଥରେ କଥାମାନ କହିଲେ ।

୧୦—ଛଳ—ଶ୍ଳେଷ ଉକ୍ତିମାନ; ଯଥା—ସୁନାରୀ—ସୁନାରୀ ନାମକ ଫୁଲ ଏବଂ ସୁନ୍ଦରୀ ସ୍ତ୍ରୀ; ଭୃଙ୍ଗ—ଭ୍ରମର; କିଂ ପୁରୁଷ—କିନ୍ନର, ସଙ୍ଗୀତଜ୍ଞ ଦେବତା ଏବଂ କୁତ୍ସିତ ପୁରୁଷ ଯେକି ଏକ ନାରୀଠାରେ ବାନ୍ଧି ହୋଇ ନ ରହି ଏଣେ ତେଣେ ମନ ଦିଏ । ଭୀରୁ-ନାରୀ; ମଧୁପ ( ମଦ୍ୟପ ) ଯେ ଭ୍ରମର ନାମ ଏ କଥା କାହିଁକି ପାସୋରୁଛୁ ? ମଦୁଆର କଣ ଗୋଟିଏ କଥାରେ ଠିକ୍ ଥାଏ ?

୧୧—ନାଗେଶ୍ୱର—ନାଗେଶ୍ୱର ଫୁଲ, ବଡ଼ ନାଗସାପ, ଏବଂ ଶ୍ରେଷ୍ଠ ହାତୀ ଐରାବତ । ସୁପର୍ଣ୍ଣ—କଅଁଳ ପତ୍ର ଓ ଗରୁଡ଼; ନାଗେଶ୍ୱର ତେବେ ସୁପର୍ଣ୍ଣରେ ଆଦର କରୁ ଅର୍ଥାତ କଅଁଳ ପତ୍ର ପିନ୍ଧ ବା ଗରୁଡ଼କୁ ଡାକ ସାପକୁ ଖାଇଯିବ ; ଛଳରେ ଚିହ୍ନିଲ ପରି କହିଲ—"ତେବେ ନାଗେଶ୍ୱର (ଐରାବତ) କହ" ; ସୁମନା ଭୂଷଣ—ଇନ୍ଦ୍ର; ସମ୍ପତ୍ତି—ବିଭବ; କିମ୍ବା ଇନ୍ଦ୍ରପରି ସୁନ୍ଦର ପତି । ଐରାବତ ଇନ୍ଦ୍ରଙ୍କର ହାତୀ ।

୧୨—କରୁଣା—ଦୟା, କରୁଣା ଗୋଟିଏ ଫଳନାମ; ଦେବ ବଲ୍ଲଭ—ସୁର ପନ୍ନଗ, ଦେବତା ପରି ପତି, ବରିହାଦାଢ଼—ବଗହ ଦାଢ଼ ନାମକ କଣ୍ଟାଗଛ, ବାରହା

କେଢ଼େ ଷ୍ଟତୁରୀରେ ଚତୁରୀଏ ବୋଲେ ସହଚରୀ ମୁଣ୍ଡ ଅନାଇଁ ।
ବଶ କରବୀରେ ହୋଇଲ ଉତାରେ ମଲ୍ଲି ମଲ୍ଲି ହେଉ କିପାଇଁ ।
ସେ ବୋଲେ । ଭର୍ଙ୍ଗରେ ଆଳୀ କି ଚେତାଇ ।
ନିଆଳୀ ହେଇଣି ଦେଖିଲ ଉତାରୁ ପଲଶ ପାଶେ ଯା ଗମଇଁ । ୧୩ ।

କେ କହେ ଆଶୋକ ଇଭିଲୁ ବଲ୍ଲଭୀ[୪] କେତକୀ ହେଲଟି ମୋହର ।
ସେ କହେ ସୁବର୍ଣ୍ଣ କାନ୍ତିହର ସେହି ଘୋଡ଼ାଇ ଯିବୁଟି ଶରୀର ।
ଏ କାଳେ । ଆଉ ଜଣେ ଆସି[୫] ପ୍ରଗ୍ଧରି ।
ଦେଖାଇ ତନ୍ତୁ ଛୁରି ଅନା ପାଖକୁ ଯିବି କି ନ ଯିବି ପଗ୍ଧରି । ୧୪ ।

---

ପାଠାନ୍ତର—୪, ସୁନ୍ଦରୀ ୫, ଛଳ ।

---

ମୁହଁରୁ ବାହାରିଥିବା ଖଣ୍ଡ! । ଫୁରୁଣା ଫୁଲଣିଆ, ଗର୍ବସ୍ଫୀତ; ସେ ଶୁଣି କହିଲ--ସେ କଥାଛାଡ଼; ହେ ବନ୍ଧୁ ଖୋଜିଲେ ମୁ ପତିକୁ ନପାଇ ବଗହ ଦାଢ ବାର୍‌ହା ମୁହଁରେ ପଡ଼ିଲି । ବନ୍ଧୁ ଜୀବକୁ ( ବଧୁଲି ଫୁଲକୁ ) ଖୋଜି ନ ପାଇ ବଂରିହାଦାଢ଼ କଣ୍ଟାରେ ପଡ଼ିଗଲି ।

୧୩—କରବୀରେ ( କନିଆର ଫୁଲରେ ) ବଶ ହେବା ଉତାରୁ ଅର୍ଥାତ୍ ତା ସୌନ୍ଦର୍ଯ୍ୟରେ ଆମ୍ବହର ହେବା ଉତାରୁ ଆଉ ମଲ୍ଲି ମଲ୍ଲି ହେଉଛୁ । ମଲ୍ଲୀ ଫୁଲରେ କନିଆର ଫୁଲକୁ ବଳି କେଉଁ ଶୋଭଟା ଅଛି ? ସେ କହୁଛି ଲେକେ କିପରି ନିଆଳୀ ଫୁଲ ଫୁଟିଲଣି ଦେଖି କରି ମଧ୍ୟ ପଲଶ ଫୁଲ ପାଖକୁ ଦୌଡ଼ନ୍ତି ? ପଲାଶ ଫୁଲରେ କଣ ବାସନା ଅଛି ? କାହାକୁ କଣ ସୁଖ ଲଗେ । ପୁଣି ଶ୍ଳେଷାର୍ଥ; ଯଥା—ବୀର (ବୀରହାତରେ) ବଶ କର ହେଲ । ( ଅଧିନ୍ତ ହେଲ ) ଉତାରୁ ମଲି ମଲି ହେଉଛୁ କାହିଁକି ? ସେ କହୁଛି ନିଆଛୀ ( ଆଳୀ ରହିତ,—ଏକୁଟିଆ ) ହେଲଣି ଦେଖିଲ ଉତାରୁ ପଲଶ ( ମାଂସ ଖିଆବାଘ ପ୍ରଭୃତି ଶ୍ୱାପଦ ) ପାଖକୁ ଯାହା ଲେକେ ଯାଆନ୍ତି ଏ ସେହି ପରି କଥା ।

୧୪—ଅଶୋକ—ଅଶୋକ ଫୁଲ; କେତକୀ- କେତକୀ ଫୁଲ; ଅନ୍ୟ ଅର୍ଥ ହେ ବଲ୍ଲଭୀ (ସଖୀ) ତୁ ଅଶୋକ (ସୁଖ) ପାଇଲୁ । ମୋର କେତେ କି ( କେତେ ଦଶା ) ହେଲ । ( ଭୋଗିଲି ) କେତକୀର ନାମ ସୁବର୍ଣ୍ଣ କାନ୍ତିହର । ତୋ ଦେହର ସୁବର୍ଣ୍ଣ କାନ୍ତି ଘୋଡ଼ାଇ କରି ଯା । ଛୁରି ଅନା—ଏକ ପ୍ରକାର ଫୁଲ; ଅନ୍ୟଅର୍ଥ—ହେଇଟି ଛୁରୀ ଅନା (ଗ୍ରହାଁ) ତା ପାଖକୁ ଯିବି କି ନାହିଁ ?

ଦେଖରେ ରସାଳ ବିଟପୀ ପ୍ରବାଳ ବକୁଳ ମାଳାରେ ଶୋହିଛି ।
ଶୋଭ ବନପ୍ରିୟ ଅବଲମ୍ବ ଥିଲେ ବହୁତ ଗେଲମ୍ବ ମୋହିଛି ।
ଏମନ୍ତ । ଭଷି ବନେ କରୁ ବିଳାସ ।
ଘେନିଣ ଚର୍ଚ୍ଚରୀ ବିଧି ସହଚରୀ ପରିବାରି କାଏ ପ୍ରବେଶ । ୧୫ ।

ଦେଖି ହରଷ ଦୃଷ୍ଟିପାତେ ସାରସଜିତ ଗତି ରସ ପଣ୍ଡିତା ।
କମନୀୟ କମ ଚଉତନା ଘେନି କାଞ୍ଚୁଳିରେ ୬ ହେଲ ମଣ୍ଡିତା ୭ ।
ବାନ୍ଧିଲ । ଭିଡ଼ି ମଧ୍ୟେ। ଶାଢୀ ପଣନ୍ତ ।
ଫଗୁମୁଣ୍ଡ ଖୋଷି ହସିବାର ଗ୍ରହି ସଖୀଏ ସାଜିଲେ ତୁରିତ । ୧୬ ।
ଉନ୍ନତ ମତ୍ତ କାଶିନୀ ସଙ୍ଗେ ରଙ୍ଗେ ତରଙ୍ଗେ ଖେଳିଲେ ସଜନୀ ।
ମହୀ ଆକାଶେ ଏକାବେଳେ ପ୍ରକାଶେ କି ଅନେକ ସଉଦାମିନୀ ୮ ।
କି ବାସେ । ଚଳ ପୁଷ୍ପଲତା କାମର ୯ ।
ମହା ଅନୁରାଗ ପରାଗ ବୃଷ୍ଟିରେ ହୋଇ ଅଛନ୍ତି ତତପର । ୧୭ ।

---

ପାଠାନ୍ତର—୬, କାଞ୍ଚଳରେ । ୭, ଶୋଭିତା । ୮, କ ଅବା ଅନେକ ଦାମିନୀ ୯, ହେମନ୍ତ

---

୧୫—ରସାଳ-ଆମ୍ବ; ବିଟପୀ—ଗଛ; ପ୍ରବାଳ—କଅଁଳ ପତ୍ର; ବକୁଳ—ବଉଳ; ବନପ୍ରିୟ—କୋକିଳ; ଗେଲମ୍ବ—ଭ୍ରମର; ଚର୍ଚ୍ଚରୀ ବିଧି—ଫଗୁଖେଳ ବିଧି; ସହଚରୀ ପରିବାରି କାଏ—ସାଙ୍ଗରେ ଥିବା ଦାସୀମାନେ; [ ଅନ୍ୟ ଅର୍ଥ ] ରସାଳ—(କାମୁକ) ବିଟପୀ—( ଦୋଚାରୁଣୀ ) ପ୍ରବାଳ—(ପୋହଳା) ବକୁଳ—(ବଉଳ)ମାଳାରେ ଶୋହି; ଶୋଭବନ—(ସୁନ୍ଦର); ପ୍ରିୟ—(ପତି); ଅବଲମ୍ବ-(ମୁଣ୍ଡଧରା) ଥିଲେ ମଧ୍ୟ ଗେଲମ୍ବ ରୂପ ଉପପତି ମୁଗ୍ଧ କରିଛି ।

୧୬—ସାରସଜିତ ଗତି—ଜିତ ସାରସ ଗତି—ହଂସକୁ ଗତିରେ ଜଣିଛି ଯେ । ରସ ପଣ୍ଡିତା—ସରସ କ୍ରୀଡ଼ା କୌତୁକ ବିଷୟରେ ଅଭିଜ୍ଞା; ସେ ଚର୍ଚ୍ଚରୀ ବିଧି ଦେଖି କମନୀୟ ( ସୁନ୍ଦର ) କମ ( କାମକର ହୋଇଥିବା ) ଚଉତନା (ଓଁରମାଳ) ବେକରେ ବାନ୍ଧି ଦେଇ, ଲୁଗା କାଚ୍ଛି ପକାଇ ଅର୍ଥାତ ଛାତିରେ ଖାଲି କାଞ୍ଚଲଟା ମିଛି ଶାଢୀ ପଣନ୍ତଟା ଯାକ ଅଣ୍ଟାରେ ଭିଡ଼ି ଦେଇ ଫଗୁମୁଣା ଖୋସି ହସିଲ । ସଖୀମାନେ ଏହା ଦେଖି ବେଗେ ସଜାଡ଼ି ହୋଇଗଲେ ।

୧୭—ଉନ୍ନତ—( [ଫଗୁଖେଳ ] ଉତ୍ସାହରେ ପୂର୍ଣ୍ଣ ) ମତ୍ତକାଶିନୀ (ପୂର୍ଣ୍ଣ ଯୁବତୀ ) [ ଲାବଣ୍ୟବତୀ ] ସଙ୍ଗେ ରଙ୍ଗେ ( କୌତୁକରେ ) ତରଙ୍ଗେ ( ଚଞ୍ଚଳ ଭାବରେ) ସଜନୀ ଖେଳିଲେ । ପୃଥିବୀ ଓ ଆକାଶରେ ଏକା ବେଳକେ ଅନେକ

କଞ୍ଜନ ଖଞ୍ଜନ ଗଞ୍ଜନ ନେତ୍ରୀକି ଧକ ସୁହାଇ ସଧାଉଛି ।
ଆଉ ଅସାଧ୍ୟ ହୋଇ କଉଁ ସୃଷ୍ଟି କି ରହିଛି ମନରେ ଧ୍ୟାଉଛି ।
ନାହିଁକି । ଏତେକ ବିବେକ ତାହାର ।
କୋଟିଏ ବହ୍ମାଣ୍ଡ ଗୋଟିଏ ଭଙ୍ଗୀରେ ଜିଣିମା ଗୁମାନ ଯାହାର । ୧୮ ।
ମୁଠାରୁ ଫିଟି ଯିବାରୁ ଏ ପ୍ରତୀତ ଫଗୁ ଫିଙ୍ଗିବାରେ ଇଚ୍ଛନା ।
ବସନ୍ତ ରଜା ବଶକୁ କି କରନ୍ତି ରଙ୍ଗ ପାଟ ଚେକ ଚାଳନା ।
ସେ ରଜା । ଯାଇଁ ଶୂନ୍ୟେ ଲୁଣ୍ଠ ହୋଇଲା ।
ଅତ୍ୟନ୍ତ ଗୁଣିକ ଦିଗ ପରିବାର ମାଣିକ୍ୟ ଛତି କି ଧଇଲା । ୧୯ ।
କଙ୍କଣ କ୍ୱଣିତ ଧ୍ୱନିରୁ ମଣିତ ମୁଖ ଡ଼ିଣ୍ଡିମ କି ବାଜିଲା[୨୦] ।
ଉଚାବଚ ବାଣୀ ମଙ୍ଗଳ ଗୀତ କି ଅଭିଷେକ ବେଳେ ହୋଇଲା ।

---

ପାଠାନ୍ତର—୨୦, ବାଇଲା ।

---

ସୌଦାମିନୀ ( ବିଜୁଳି ) ଖେଳିଲା (ପ୍ରକାଶିଲା) ପରି ଦେଖାଗଲା । ସେମାନଙ୍କ ଦେହଲତା ହାସ ଅଳଙ୍କାରାଦି ପୁଷ୍ପ ସହିତ କାମର ଚଳ ( ଚାଲୁଥିବା ) ପୁଷ୍ପଲତା ପରି ମହା ଅନୁରାଗ ( ପ୍ରୀତିରୂପ ) ପରାଗ ବିଞ୍ଚିଲାପରି ଦେଖା ଯାଉଥିଲା । ଅନୁରାଗ ଲାଲ ବୋଲି ବର୍ଣ୍ଣନା କରଯାଏ ।

୧୮—କଞ୍ଜନ (କାମ) ସେ ଖଞ୍ଜନ ଗଞ୍ଜନ ନେତ୍ରୀ, ଖଞ୍ଜନ—(କଜ୍ଜଳ ପାତୀ); ଗଞ୍ଜନ ( ଅଧିକ ସୁନ୍ଦର ) ଆଖି ଯାହାର ତାକୁ ଧକ ( କ୍ଳାନ୍ତି) ସୁହାଇ ସଧାଉଛି ( ସହିବାକୁ ଶିଖାଉଛି ), ମନେ ବିଚାରୁଛି ଏକ୍ଳାନ୍ତି ସହି ନାନା ଶୋଭା ଦେଖାଇ ପାରିଲେ ଆଉ ଅସାଧ୍ୟ କଣ ଅଛି ? କିନ୍ତୁ କାମ କି ଅବିବେକୀ ? ଏହାକୁ ସବୁବେଳେ ଏପରି ନୂଆ ନୂଆ ଶୋଭା ଦେଖାଇବା ଭଳି କରିବା ଦରକାର କଣ ? ଏହାର ଯେ ଗୋଟିଏ ମାତ୍ର ଭଙ୍ଗୀରେ କୋଟୀଏ ବ୍ରହ୍ମାଣ୍ଡ ଜିଣିବା ଗୁମାନ (ଗର୍ବ) ସାର୍ଥ ହେବ । କାମର କଣ ଏତକ ବିବେକ ନାହିଁ କି ?

୧୯—ବସନ୍ତକାଳ ରୂପ ରଜାର ବଶକୁ (ଜୟକୁ) ତାକୁ ଜୟ କରିବାର ଚିହ୍ନ ସ୍ୱରୂପ ରଙ୍ଗପାଟ ଚେକ ( ନାଲି ପାଟ ଲୁଗା ) ଜୟ ପତାକା ରୂପେ ଚଳାଉଛନ୍ତି କି ? ସେ ଫଗୁ ଧୂଳି ଶୂନ୍ୟରେ ଯାଇ ଏକାଠି ହେବାରୁ ଅତ୍ୟନ୍ତ ଗୁଣିକ ( ଅତିଜାଣିବାର ) ଦିଗରୂପ ପରିବାର (ଚାକର) ମାଣିକ୍ୟରେ ତିଆର ହୋଇଥିବା ଛତା ଧଇଲେ କି ?

୨୦—ବସନ୍ତ ରଜାକୁ ଜିଣି ନିଜେ ରଜ ପଦରେ ଅଭିଷିକ୍ତ ହେବାର ଲକ୍ଷଣମାନ ପ୍ରକାଶ ପାଇଲା । କଙ୍କଣ କ୍ୱଣିତ ଅର୍ଥାତ୍ ବଳୟର ଝଣଝଣ ଶବ୍ଦରୁ ମନେ ହୁଏ, ମୁଖ

ସଭବେ । କୁଚ ପୂର୍ଣ୍ଣକୁମ୍ଭ ରଜିଛି ।
ଗୁଚ୍ଛ ଚୋଳ ଚୂତ ପଲ୍ଲବ ସଯୁତ ହାର ଉପହାର ସାଜିଛି । ୨୦ ।
ରମଣୀ ରମଣୀୟ କଲେ ଅବିର ଗୁଣ୍ଡିରେ ସେ ବନ ସରଣୀ
ମହୀ ମହିଳା ଋତୁକାଳ ଲଭିଲ ଏମନ୍ତ ମାନସକୁ ଆଣି ।
ସେ ଧୂଳି । କାହିଁ ପବନ ଯୋଗେ ଉଡ଼ି ।
ଶୁଭ ସୂଚକ କହି କି ଜ୍ୟୋତିଷ ଯାଉଛି ଶୀରେ ବାନ୍ଧି ଶାଢୀ । ୨୦ ।
ପନୀର ନୀର ପିଚିକା ନିରନ୍ତର ଖେଳନ୍ତେ ନୀରରୁହ ଦୃଶା ।
ମଞ୍ଜୁ ମଞ୍ଜୀରୁ ଘନ ରବ ମଧୁର ବସନ୍ତେ କରେ କି ବରଷା ।
ବିଜୁଳି । ପରି ଝଳି ଭୂଷା ରତନ ।
ଅଙ୍ଗରଗେ ଅନ୍ଧ ଭୃଙ୍ଗ ଉଡ଼ି ପଡ଼େ ହୋଏକି କରକା ପତନ । ୨୨ ।
କୁଙ୍କୁମ ପିଚିକା ବାଜି ଜରଜର ସୁନ୍ଦର ଉରଜ କାହାର ।
କନକା ଚଳରୁ କିବା ହରିତାଳ ପ୍ରବାହ ହେଉଛି ବାହାର ।
କର୍ପୂର । ଗୁଣ୍ଡି ମଣ୍ଡିତ କାହା ସ୍ତନ ।
ସୁବର୍ଣ୍ଣ ସ୍ୱୟମ୍ଭୁ ଶମ୍ଭୁ ଯୁଗଳ କି ହୋଇଲେ ଭସ୍ମ ବିଲେପନ । ୨୩ ।

---

ଡିଣ୍ଡିମ ବାଜିଲ (ହୁଳହୁଳି) ପଡ଼ିଲ । ଉଚାବଚ ବାଣୀ ( ବଡ଼କରି ଓ ସାନକରି କହିବା କଥା ) ଅଭିଷେକ ବେଳର ଗୀତ । କୁଚ ପୂର୍ଣ୍ଣକୁମ୍ଭ; ନେଳୀ କାଅଁଳ ଆମ୍ବପତ୍ର, ହାର ଅଭିଷେକର ଉପହାର ( ରଜାଙ୍କୁ ଦିଆଯାଉଥିବାର ଭେଟି ) ।

୨୧—ଅବିର ଗୁଣ୍ଡିରେ - ଫଗୁ ଗୁଣ୍ଡିରେ, ସରଣୀ—ବାଟ, ମହୀ ମହିଳା—ପୃଥିବୀ ରୂପା ସ୍ତ୍ରୀ— ଋତୁକାଳ ଲଭିଲ—ପ୍ରଥମେ ରଜସ୍ୱଳା ହେଲ । ପବନରେ ଉଡ଼ି ଯାଉଥିଲ ଯେ ଫଗୁ ସେ ପ୍ରଥମ ରଜୋଦର୍ଶନରେ ଶୁଭଫଳ କହି ଯାଉଥିବା ଜ୍ୟୋତିଷ ମୁଣ୍ଡରେ ବହୁ ମାନରେ ବନ୍ଧା ଯାଇଥିବା ଶାଢୀ ପରି ଦିଶୁଛି ।

୨୨—ପନୀର—ବାସପାଣି; ନୀରରୁହ ଦୃଶା—ପଦ୍ମଲୋଚନା; ବସନ୍ତରେ ବର୍ଷାପରି ପନୀର ପିଚିକା ହେଲ । ମଞ୍ଜୀର (ବଙ୍କ; ପାହୁଡ଼)ର ମଞ୍ଜୁ (ସୁନ୍ଦର)ଶବ୍ଦ ଘନରବ ( ମେଘ ଶବ୍ଦ)ପରି ହେଲ । ବିଜୁଳି ପରି ଭୂଷା (ଅଳଙ୍କାର)ରତ୍ନ ସବୁ ଝଳିଲ (ଚକ ଚକ ହେଲ), ଅଙ୍ଗରଗରେ (ଦେହରେ ଲଗିଥିବା ଫଗୁରେ)ଅନ୍ଧ ହୋଇ ଭୃଙ୍ଗ (ଭ୍ରମର) ଉଡୁ ଉଡୁ ପଡ଼ିଯାଏ । ସେ ହେଲ କରକା (କୁଆ ପଥର)ପରି ।

୨୩—କୁଙ୍କୁମ ପିଚିକାରେ କାହାର ଉରଜ (କୁଚ) ଜର ଜର ହୋଇ କନକା ଚଳୁ (ସୁନା ପର୍ବତରୁ ବା ସୁମେରୁରୁ) ହରିତାଳ ପ୍ରବାହ (ହରିତାଳ ମିଶା ଜଳର ସ୍ରୋତ) ବାହାରିଲ ପରି ଦିଶୁଛି । ସ୍ତନରେ କର୍ପୂର ଗୁଣ୍ଡ ଲଗି ସୁବର୍ଣ୍ଣ ସ୍ୱୟମ୍ଭୁ ଶମ୍ଭୁ

କାହା କୁଚ ଫଗୁ ସଙ୍ଗରୁ ସୁସଞ୍ଚ ଏହି ପାଞ୍ଚ ହୋଏ ମାନସେ ।
ହୃଦୟ ସରେବର ମଧ୍ୟେ ଉଦୟ କୋକନଦ କଡୀ ଯୁଗ୍ମ ସେ ।
କାହାର । ଛିଡ଼ି ହାର ଖସେ ମୁକୁତା ।
ପୟୋଧର ଛଳେ କ୍ଷୀର ବିନ୍ଦୁ ବୃଷ୍ଟି କରିବାରେ କି ସେ ଶୋଭିତା । ୨୪ ।
କାଶ୍ମୀର ରଜ କେ ମାରନ୍ତେ ପାଇଟି ଗ୍ରୀବା ବଙ୍କ କରି ଗ୍ରହିଲା ।
ମନ୍ଦ ମରୁତେ କି ଲେଉଟି ନଳିନ ଅଳି ସଯୁକ୍ତରେ ରହିଲା ।
କେ କାହା । ମୁଖେ କସ୍ତୁରୀ ପଙ୍କ ବୋଳି ୧୧ ।
ମୃଗାଙ୍କ କଳଙ୍କ ଛଡ଼ାଇ ଦେବାରୁ ବହି ଯାଉଛି କିବ କାଳୀ । ୨୫ ।
କାହା ଲଲାଟୁଁ ସିନ୍ଦୁର ବହି ପଡ଼େ ସ୍ୱେଦ ହୋଇବାରୁ ଜନିତ ।
କେଶରୁ ଦନ୍ତଘାତରୁ ବ୍ୟକତ ଇନ୍ଦୁ ଦେହରୁ କି ରକତ ।
ସେ କାଳେ । ଅତି ଚଞ୍ଚଳ ନେତ୍ର ଗତି ।
ଦିଗ ଧରକୁ କି ଶ୍ୟାମଳ କୋମଳ କମଳେ ମଣ୍ଡନ୍ତି ଯୁବତୀ । ୨୬ ।

---

ପାଠାନ୍ତର— ୧୧, ଢାଳି ।

---

ଯୁଗଳ (ନିଜେଫୁଟି ବାହାରିଥିବା ସୁନା ଶିବ ଲିଙ୍ଗ ଦୁଇଟି) ଭସ୍ମ ବୋଳି ହେଲା ପରି ଦିଶିଲା ।

୨୪—କୁଚରେ ଫଗୁଲାଗି ସୁସଞ୍ଚ (ସୁନ୍ଦର) ହେବାରୁ ଏ ପାଞ୍ଚ (ବିଗ୍ରହ) ହୁଏ । ହୃଦୟ ରୂପ ସରେବର (ପୋଖରୀ)ମଧ୍ୟରେ ସେ କୋକନଦ କଡୀ ଯୁଗ୍ମ ( ରଙ୍ଗ କଇଁ କଡୀ ଯୋଡ଼ିଏ )। ହାରଛିଡ଼ି କୁଚ ଉପରୁ ମୁକ୍ତା ଖସିପଡ଼େ । କୁଚର ପୟୋଧର ନାମ ମେଘର ନାମ ସଙ୍ଗେ ସମାନ ଥିବାରୁ ମେଘପରି ଗୋଟାଏ ଗୋଟାଏ ମୁକ୍ତା ରୂପରେ ସେ କ୍ଷୀର ବିନ୍ଦୁ ( ଜଳବିନ୍ଦୁ ) ସେ ବୃଷ୍ଟି କରୁଛି କି ?

୨୫—କାଶ୍ମୀର ରଜ—( କୁଙ୍କୁମ ) ମାରନ୍ତେ ( ଛାଟିବାରୁ ) ପାଇଟି ( ଓଲଟି ) ଗ୍ରୀବା ( ବେକ ) ବଙ୍କେଇ ଗ୍ରହିଲା । ଧୀର ପବନରେ ଅଳି ( ଭ୍ରମର ) ସହିତ ପଦ୍ମ ଓଲଟି ବଙ୍କା ହୋଇଗଲା ପରି ସେ ମୁହଁ ସେତେବେଳେ ଦିଶିଲା । ମୁହଁ ପଦ୍ମ, ଆଖି ତହିଁରେ ଭ୍ରମର । କଳା କସ୍ତୁରୀ ପଙ୍କ ମୁହଁରେ ବୋଳି ଦେବାରୁ ମୃଗାଙ୍କ (ଚନ୍ଦ୍ର) ତାଙ୍କ ଦେହରୁ କଳଙ୍କ ଛଡ଼ାଇ ଦେବାରୁ ସେ କଳଙ୍କର କାଳି ବୋହିଗଲା ପରି ଦିଶିଲା ।

୨୬—ସ୍ୱେଦ (ଝାଳରେ) କାହାଲଲାଟୁ (କପାଳରୁ) ସିନ୍ଦୂର ବହି ପଡ଼ି କେଶରୂପ ଗହ୍ଣ ଦନ୍ତଘାତରୁ (କାମୁଡ଼ାରୁ)ମୁଖରୂପ ଇନ୍ଦୁ (ଚନ୍ଦ୍ର) ଦେହରୁ ରକ୍ତ ବ୍ୟକ୍ତ(ବାହାରି ପଡ଼ିଲା)ପରି ହୋଇଛି । ନେତ୍ରର ଚଞ୍ଚଳ ଗତି ଦିଗଧର (ଦିଗଭୂମି)କୁ କୋମଳ ଭାବରେ ଶ୍ୟାମଳ କମଳ(ନୀଳ ପଦ୍ମରେ) ଯୁବତୀମାନେ ମଣ୍ଡିଲା ପରି ହୋଇଛି ।

ରତ୍ନ କିରଣେ ଭନୁ ପ୍ରଭ ପ୍ରକାଶି ଶ୍ରବଣେ ତାଟଙ୍କ ଚଳନ୍ତି ।
ପ୍ରମଦା ପ୍ରମୋଦ ଭରେ କି କରନ୍ତି ଅନଙ୍ଗ ମଙ୍ଗଳ ଆଳତି ।
ଚଳିତ । ନାସିକା ମୋତି ଉପହାର ।
ବାଦ୍ୟେ ନୂପୁର ନାଦେ କି ନାଚୁଛନ୍ତି ନର୍ତ୍ତକୀ ଗୁଣେ ଅଳଙ୍କାର । ୨୭ ।
କଉଁ ଲତାରୁ କୁସୁମ ଖସିବାରୁ ଏମନ୍ତ ହେଉଛି ପରତେ ।
ଧନ୍ୟ ଧନ୍ୟ ବୋଲି ପ୍ରଶଂସା କରି କି ରତ୍ନ ବିଞ୍ଚୁଛନ୍ତି ନିରତେ ।
ପଗଗ । ଛଳେ ସିଞ୍ଚୁଛନ୍ତି କର୍ପୂର ।
ପଲ୍ଲବ ଛଳେ ପଣନ୍ତେ ବିଞ୍ଚୁଛନ୍ତି ଉପକାର କୃତେ ତାଙ୍କର । ୨୮ ।
କଉଁ କଉଁ ତରୁ ତରୁଣୀମାନଙ୍କୁ ପକ୍ଷୀ ନିନିଦରେ [୧୨] କହନ୍ତି ।
ଏପରି ଉତ୍ସବ କେବେ ନୋହିଥିଲ ଦେଖି ନଥିବ ସୁରପତି [୧୩] ।
କେ ତରୁ । ଶାଖା ଲୋଟନ୍ତି ଫଳଭରେ ।
କି ପରୀରମ୍ଭ ଆରମ୍ଭ କରୁଛନ୍ତି ରମ୍ଭୋରୁ ପାଦ ଲଗୁ ଶୀରେ । ୨୯ ।

---

ପାଠାନ୍ତର—୧୨, ନିନାଦରେ । ୧୩, ବସୁମତୀ ।

---

୨୭—ତାଟଙ୍କ ଭିତରେ ଥିବା ରତ୍ନ କିରଣରେ ଭନୁ ପ୍ରଭ ( ଅଗ୍ନିପ୍ରଭ ) ପ୍ରକାଶ କରି ତାଟଙ୍କ କାନରେ ହଲୁଛି । ପ୍ରମଦା (ନାରୀ) ପ୍ରମୋଦ ଭରେ (ଖୁସିରେ) ଅନଙ୍ଗେ (କାମକୁ) ମଙ୍ଗଳ ଆଳତି କରୁଛନ୍ତି କି ? ନାସିକାର ମୋତି ସେଥିରେ ଉପହାର ନୈବିଦ୍ୟ । ବାଦ୍ୟେ (ଆଳତିବେଳେ ବାଦ୍ୟ ରୂପରେ) ନୂପୁର (ବହୁଳ ଭବରେ ଛୋଟ ଛୋଟ ଘାଗୁଡ଼ି ଲଗା ପାଉଁଜି) ନାଦେ (ସ୍ୱରରେ) ଏବଂ ନର୍ତ୍ତକୀ ଗୁଣରେ ଅଳଙ୍କାରମାନେ ନାଚୁଛନ୍ତି କି ?

୨୮—ଲତାରୁ ଫୁଲ ଖସି ପଡ଼ିବାରୁ ଏ ବାଳିକାମାନଙ୍କୁ ଧନ୍ୟ ଧନ୍ୟ କରି ରତ୍ନ ବିଞ୍ଚିଲ ପରି ଜଣା ପଡ଼ୁଛି । ପଗଗ ରୂପରେ କର୍ପୂର ଗୁଣ୍ଡା ବିଞ୍ଚୁଛନ୍ତି । ଏମାନଙ୍କର ଉପକାର କୃତେ (ନିମନ୍ତେ) ପଲ୍ଲବ (ପତ୍ର) ରୂପ ପଣନ୍ତରେ ଲତାମାନେ ବିଞ୍ଚୁଛନ୍ତି ।

୨୯—ପକ୍ଷୀ ନିନିଦ—ପକ୍ଷୀ ନିସ୍ୱନ; ସୁରପତି— ଇନ୍ଦ୍ର; ଫଳଭରେ— ଫଳଭରରେ; ଲୋଟନ୍ତି—ଲଇଁ ତଳେ ଲଗନ୍ତି; ପରୀରମ୍ଭ—ଆଲିଙ୍ଗନ, ଏଠାରେ ଭୂମିରେ ଲୋଟିବା; ରମ୍ଭୋରୁ—ରମ୍ଭା ( କଦଳୀ ଗଛ ) ପରି ଉରୁ ( ଜଙ୍ଘ ) ଯାହାର—ଏଠାରେ ଲାବଣ୍ୟବତୀ; ସୁନ୍ଦରୀ ଲାବଣ୍ୟବତୀର ପାଦ ମୁଣ୍ଡରେ ଲଗିଯାଉ ବୋଲି ଫଳରେ ଗଛମାନେ ଡାଳସବୁ ତଳେ ଓହଳାଇ ପକାଉଛନ୍ତି କି ?

ଏମନ୍ତ ବେଳେ ଏକ ସଖୀ କହିଲା ତିନି ପ୍ରହର ହେଲା ବେଳ ।
ସ୍ନାନ ମାତ୍ରକୁ ଅବଧାନ ନୋହିଲା ଏତେକେ ରହୁ କୁତୂହଳ ।
ଶୁଣି ସେ । ସେ କଥା କଲା ଅଙ୍ଗୀକାର ।
ଏହି ସମୟେ ଥୋକାଏ ଦାସୀ ଆସି ଘେନିଣ ମାର୍ଜଣ ସମ୍ଭାର । ୩୦ ।
ସରୋବର ତୀରେ ପ୍ରବେଶ ସୁବେଶ ଉଲଗି ସମ୍ପୂର୍ଣ୍ଣ ଏ ଛାନ୍ଦ ।
କବି ଚତୁରୀ ଅନେକ ଅଛି ପୂରି ଘେନିଲେ ଜନ୍ମିବ ଆନନ୍ଦ ।
ଜାଣିଲା । ଜନ ମନକୁ ଏ ତୋଷିବ ।
ମୂର୍ଖ ସ୍ୱଭବ ଅଦୃଷ୍ଟରଜା ପରି ସେ କାହୁଁ ରତି ପ୍ରକାଶିବ । ୩୧ ।
ଅନନ୍ତ ଭୂଷଣ ବୃଷ ଧନୁ ଯୁତ ସୁହୃଦ ଭବତାପନାଶୀ ।
ଶ୍ରୀ ନିଳୟ ଦ୍ୱିଜଗଜ ବନ୍ଦନୀୟ ଜନକ ସୁଖକୁ ପ୍ରକାଶି ।
ସୁମରି । ମନେ ସେ ରାମଚନ୍ଦ୍ର ଶିବ ।
କହେ ଉପେନ୍ଦ୍ର ଭଞ୍ଜ ବୀରବର ଯୁବଜନ କର୍ଣ୍ଣ ଉତ୍ସବ । ୩୨ ।

---

୩୧—ପୋଖରୀ କୂଳେ ପହଞ୍ଚିଲେ । ବନ କ୍ରୀଡ଼ାର ସୁବେଶ ଉତାରି ଦେଲେ; ଉଲଗି ହେବା—ଲାଗି ହେବାର ବିପରୀତ; ଜାଣିଲା ଜନ ମନକୁ ( ବୁଝିବା ଲୋକ ମନକୁ ) ଏ ଛାନ୍ଦ ତୋଷିବ । ଅଦୃଷ୍ଟରଜା ( ଯୌବନ ପାଇ ନ ଥିବା ବାଳିକା ) ରତି (କେଳି) ପ୍ରକାଶ କରି ନ ପାରିବା ପରି ମୂର୍ଖ ସ୍ୱଭବ ଏଥିରେ ରତି (ଅନୁରକ୍ତି) ପ୍ରକାଶ କରି ପାରିବ ନାହିଁ ।

୩୨—ଯୁବଜନ କର୍ଣ୍ଣ ଉତ୍ସବ—ଯୁବକ ଯୁବତୀମାନଙ୍କ କର୍ଣ୍ଣକୁ ଉତ୍ସବ ପରି ପ୍ରୀତିକର; ରାମ, ଚନ୍ଦ୍ର, ଶିବ ଏ ତିନି ଅର୍ଥରେ ଏ ବନ୍ଦନା କୁହାଯାଇଛି । ରାମ ପକ୍ଷ—ଅନନ୍ତ ଭୂଷଣ ( ଅନନ୍ତ—ବାସୁକୀ, ଉପରେ ଶୋଇବାରୁ ତାହାର ଶୋଭା ପରି ଅଟନ୍ତି ); ଅଥବା ଅନନ୍ତ—ଅପରିମିତ ଭୂଷଣ ( ଅଳଙ୍କାର ଯାହାର—ପ୍ରଶଂସା ଯାହାଙ୍କର) । ବୃଷ (ଧର୍ମ) ଧନୁ (କୋଦଣ୍ଡ)ରେ ଯୁକ୍ତ, ସୁହୃଦ (ମିତ୍ର) (ସୁଗ୍ରୀବ)ର ଭବ (ଜାତ) ତାପ (ଦୁଃଖ) ତାକୁ ନାଶ କରନ୍ତି ।
ଶ୍ରୀନିଳୟ—(ଶ୍ରୀ ଲକ୍ଷ୍ମୀ, ସେ ନିଳୟ—ଗୃହ ବା ପତ୍ନୀ ରୂପିଣୀ ଯାହାଙ୍କର କିମ୍ବା ଶ୍ରୀ ଶୋଭା, ତାର ସ୍ଥାନ କି ଅତ୍ୟନ୍ତ ସୁନ୍ଦର ଯେ ) । ଦ୍ୱିଜଗଜ ବନ୍ଦନୀୟ ( ଦ୍ୱିଜ ଶ୍ରେଷ୍ଠମାନଙ୍କର ପୂଜ୍ୟ କିମ୍ବା ଦ୍ୱିଜଗଜ ଯେ ଗରୁଡ଼ କିମ୍ବା ଜଟାୟୁ, ସମ୍ପାତି ସେମାନଙ୍କର ପୂଜ୍ୟ ) । ଜନକ ଯେ ପିତା ଦଶରଥ ବା ସୀତାଙ୍କ ବାପ ଜନକ ତାଙ୍କର ସୁଖ ପ୍ରକାଶି । ଚନ୍ଦ୍ରପକ୍ଷ—ଅନନ୍ତ—(ଆକାଶ); ବୃଷ ଧନୁ ଯୁତ ( ବୃଷରାଶି ଧନୁରାଶିରେ ସମ୍ବନ୍ଧ ଯାହାଙ୍କର ) ସୁହୃଦ (ଉତ୍ତମ ହୃଦୟ ଯାହାଙ୍କର

ସେହି ଆଶୁତୋଷ )  ଭବ ( ମହାଦେବ) ତାଙ୍କର ତାପ ( ବିଷଜ୍ୱାଳା )କୁ ନାଶ କରୁଛନ୍ତି ଯେ ।

ଶ୍ରୀ ନିଳୟ–( ଶୋଭାର ସ୍ଥାନ ); ଦ୍ୱିଜରାଜ, ଚନ୍ଦ୍ରଙ୍କର ଅନ୍ୟତମ ନାମ ଏବଂ ବନ୍ଦନୀୟ ( ପୂଜ୍ୟ) ସୋମ ହେବାରୁ ଦ୍ୱିଜରାଜ ( ଯାଜ୍ଞିକ ) ମାନଙ୍କର ବନ୍ଦନୀୟ (ଉପାସ୍ୟ); ଚନ୍ଦ୍ରର ଜନକ ଯେ ସମୁଦ୍ର ତାହାର ସୁଖକୁ ପ୍ରକାଶ କରେ ଅର୍ଥାତ ଚନ୍ଦ୍ରକୁ ଦେଖିଲେ ସମୁଦ୍ର ଜୁଆରରେ ଫୁଲି ଉଠେ ।

ଶିବଙ୍କ ପକ୍ଷ–ଅନନ୍ତ (ସର୍ପ) ଭୂଷଣ ଯାହାଙ୍କର; ବୃଷ (ବୃଷଭ) ବାହାନ ଯାହାଙ୍କର –ଧନୁ ( ପିନାକ ନାମକ ଧନୁ ) ଯାହାଙ୍କର ସୁହୃଦ–ଆଶୁତୋଷ; ଭବ ନାମ ଯାହାଙ୍କର ଏବଂ ତାପନାଶୀ ( ଦୁଃଖନାଶୀ) କିମ୍ବା ଭବ ତାପ ନାଶୀ ( ପୁନର୍ଜନ୍ମ ତାପକୁ ଯେ ନାଶ କରନ୍ତି ) ଶ୍ରୀ ନିଳୟ ଶ୍ରୀ( ବିଷ, ଗରଳ) ତାହାର ନିଳୟ (ସ୍ଥାନ) ଯେ [ ମହାଦେବ ଗରଳ ଖାଇଥିଲେ ] ''ଶ୍ରୀ,ବେଶ, ରଚନା ଶୋଭା, ଭାରତୀ ବିଷ ଶୁର୍ଦ୍ଧିଷୁ''–ଇତି କୋଷଃ–ଦ୍ୱିଜରାଜ–ଚନ୍ଦ୍ର ତାଙ୍କ ଦ୍ୱାରା ବନ୍ଦନୀୟ ( ଚନ୍ଦ୍ର ମହାଦେବଙ୍କୁ ଆଦରି ଥାନ୍ତି ) ଜନକ ତାଙ୍କ ଧନୁ ଭଙ୍ଗାଇ ରାମଚନ୍ଦ୍ରଙ୍କୁ ଜ୍ୱାଇଁକରି ପାଇଥିଲେ । ଅତଏବ ଶିବ ଜନକଙ୍କର ସୁଖ ପ୍ରକାଶ କରିଥିଲେ । ଏହିପରି ଯେଉଁ ରାମ, ଚନ୍ଦ୍ର, ଶିବ ଅଥବା ଶିବ (ମଙ୍ଗଳମୟ) ରାମଚନ୍ଦ୍ର (ରାମ) ତାଙ୍କୁ ମନେ ସୁମରି ।



## ଷଷ୍ଠ ଛାନ୍ଦ
### ( ଜଳକ୍ରୀଡା )

ରାଗ—ରାମକେରୀ । ଯୋଗୀ ସମ୍ବାଦ ବାଣୀ ।

ମନ ଦେଇ ଶୁଣ କୋବିଦେ ନୃପ ସୁତା ସୁକେଶୀ ।
କୂଳରେ ବକୁଳ ମୂଳରେ ପୀଠ ଉପରେ ବସି । ୧ ।
ସରସୀ ଶୋଭିତ ଅନାଇ ମନ ନେତ୍ର ଲୋଭିତ ।
ତଟ ଘଟଣା ବିଦ୍ରୁମରେ ପକ୍ଷିପନ୍ତି ବିମ୍ବିତ । ୨ ।
କି ନୀଳଶାଢୀ ହଂସାବଳୀ ରଙ୍ଗ ଧଡ଼ି ହୋଇଛି ।
ଅବନି ବନିତା ବିସ୍ତାରେ କିବା କିଣିବା ଇଛି । ୩ ।
ପାବଚ୍ଛ ସ୍ୱଚ୍ଛ ସ୍ଫଟିକରେ ନୀର ତୀର ପ୍ରତୀତ ।
ସୁବେଣୀ ପରଶ ଲଭିବି କି ଚହିଁ ତ୍ରିବେଣୀ ଖ୍ୟାତ । ୪ ।

---

୧—କୋବିଦେ—ପଣ୍ଡିତମାନେ; ସୁକେଶୀ—ବହୁତ ବାଳ ଯାହାର; ପୋଖରୀ କୂଳରେ ବଉଳ ଗଛ ମୂଳରେ ପୀଢ଼ା ଉପରେ ବସି ।

୨—ସରସୀ ଶୋଭିତ—ପୋଖରୀର ଶୋଭା, ତଟ (କୂଳ) ଘଟଣା (ସୁନ୍ଦର) ହୋଇଛି; କାହିଁକି ! ନା ସେଥିରେ ବିଦ୍ରୁମରେ କୂଳ ଗଛମାନଙ୍କର କଅଁଳ ପତ୍ର ସାଙ୍ଗରେ ସେହି ଗଛମାନଙ୍କରେ ବସିଥିବା ପକ୍ଷୀମାନେ ପ୍ରତିବିମ୍ବରେ ପଡ଼ିଛନ୍ତି । କିମ୍ବା କୂଳ ପୋହଳାରେ ତିଆର ହୋଇ ସେଥିରେ ପକ୍ଷୀ ଚିତ୍ରିତ ହୋଇ ଥିବାରୁ ବଡ଼ ଘଟଣା (ସୁନ୍ଦର) ହୋଇଛି ।

୩—ପୋଖରୀର ନୀଳଜଳ ନେଳିଆ ଶାଢ଼ିପରି; ବିଦ୍ରୁମତଟ ଏବଂ ସେଥିରେ ପହଁରୁଥିବା ହଂସାବଳୀ ବା ବିମ୍ବିତ ( ଚିତ୍ରିତ ହୋଇଥିବା ) ପକ୍ଷୀମାନେ ଶାଢୀର ରଙ୍ଗ ଧଡ଼ିରେ ହଂସ ଚିତ୍ର ପରି ହୋଇଛି । ପୃଥିବୀ ରୂପ ସ୍ତ୍ରୀ ସେ ଏହି ଶାଢୀ କିଣିବାକୁ ଫିଟାଇଛି କି ?

୪—ପାବଚ୍ଛ—(ପାହାଚ, ପାଉଚ) ସ୍ୱଚ୍ଛ (ଧଳା) ସ୍ଫଟିକରେ (ମଇମଲ ପଥରରେ) ହେବାରୁ ନୀଳ ନୀର (ପାଣି) ଧଳା ତୀର (କୂଳ) ପ୍ରତୀତ (ଜଣା ଯାଉଛି) । ସୁବେଣୀ ( ସୁକେଶୀ ଜେମା)ର ପରଶ (ସ୍ପର୍ଶ) କରିବ ବୋଲି ବିଚାରି ସେଠାରେ ତ୍ରିବେଣୀ ଖ୍ୟାତ ( ପ୍ରକାଶିତ ) ହୋଇଛି କି ? ତ୍ରିବେଣୀ—ଗଙ୍ଗା, ଯମୁନା,

ଦୀପଦଣ୍ଡୀ ଲଭି ମରାଳ ପନ୍ତି ଦିଏ ଭଉଁରୀ ।
ବଡ଼ ବଡ଼ଭୀକି ବେଢ଼ି କି ଶୋଭ ଚୂର୍ଣ୍ଣ ଚଉଁରୀ । ୪ ।
ଜଳ ଜମ୍ବାଳ ଆବିଳରେ ଜନ ମନ ହରୁଛି ।
ଜଳ ନିର୍ମଳରେ ଆଦର ଆଦରଶୁଁ ସାରୁଛି । ୬ ।
ଗଭୀର ଗୁଣକୁ ପଣ୍ଡିତଠାରୁ ଗ୍ରହଣ [୧] କରି ।
ନର୍ତ୍ତକୀଠାବରୁ ଭଉଁରୀ ଶିକ୍ଷା ପର ଏହାରି । ୭ ।
ଅମୃତ ସଙ୍ଗତେ ହୋଇଛି ମିତ୍ର ମଧୁର ପଣେ [୨] ।
ବିଧୁର ସ୍ନେହକୁ ବିଧୁର କରେ ଶୀତଳ ଗୁଣେ । ୮ ।
କାମ ଶରାଳୀରେ ପ୍ରକାଶମାନ ସୁଖ ଦାନରେ ।
କୁମୁଦରେ ଯେଣୁ ବିଦିତ ତେଣୁ ହରି ପ୍ରକାରେ । ୯ ।

---

ପାଠାନ୍ତର—୧ ଗୃହୀତ, ୨ ମଧୁର ଗୁଣେ,

---

ସରସ୍ୱତୀର ସଙ୍ଗମ ସ୍ଥାନ ଯମୁନାର ନୀଳ ପାଣି, ଗଙ୍ଗାର ଧଳାପାଣି ପାଖକୁ ପାଖ ମିଳି ମିଶିଗଲ ବେଳେ ପ୍ରୟାଗଠାରେ ବହୁ ଦୂରଯାଏ ବାରି ହୋଇ ଯାଉଥାଏ । ସରସ୍ୱତୀ ନଦୀରେ ଆଉ ପାଣି ନ ଥିବାରୁ ତାହା ଦିଶେ ନାହିଁ ।

୫- ଦୀପ ଦଣ୍ଡୀ ଗ୍ରୁରିପାଖେ ମରାଳପନ୍ତି (ହଂସମାନେ) ଭଉଁରୀ ଦେଉଛନ୍ତି ( ମେଡ଼ି ଗ୍ରୁରିପଟେ ବଳଦପରି ପହରି ବୁଲୁଛନ୍ତି ) । ବଡ଼ ବଡ଼ଭୀ (ବଡ଼ କୋଠାଘର) ଚୂର୍ଣ୍ଣ ଚଉଁରୀ (ଚୂନ ଚଉରା ବା ଛୋଟ ବେଦି ବା ଘରସବୁ ) [ ଏ ଉତ୍‌ପ୍ରେକ୍ଷାରେ କିଛି ବିଶେଷତ୍ୱ ନାହିଁ । ]

୬—ଜମ୍ବାଳ ଆବିଳରେ ( ପଙ୍କ ଓ ମଇଳା ବିଷୟରେ ) ଏପରି ହୋଇଛି ଯେ ଜନ ମନ ହରୁଛି । ସେଥିରେ ଟାଧୋଇବା ପାଇଁ ଭରି ଇଚ୍ଛା ହେଉଛି, କାରଣ ପଙ୍କ ମଇଳା ପ୍ରଭୃତି ନାହିଁ ନିର୍ମଳରେ ( ସ୍ୱଚ୍ଛତାରେ ) ଆଦରଶୁଁ ( ଦର୍ପଣରୁ ) ଆଦର ସାରୁଛି ( ତୁଟାଉଛି ) । ପାଣି କାଚ ପରି ସ୍ୱଚ୍ଛ ହୋଇଛି ।

୭—ପଣ୍ଡିତର ବିଦ୍ୟାପରି ଗଭୀର । ନର୍ତ୍ତକୀ ବୁଲିଗଲ ପରି ଏଥିରେ ଜଳ ଭଉଁରୀମାନ ଅଛି—ପୋଖରୀରେ ଭଉଁରୀ ବର୍ଣ୍ଣନା ସଙ୍ଗତ ନୁହେଁ (ସ୍ରୋତ ନ ଥିବାରୁ) ।

୮—ଜଳ ଅମୃତ ପରି ମଧୁର । ଶୀତଳତାରେ ବିଧୁର ସ୍ନେହ ( ଚନ୍ଦ୍ରଠାରେ ଯେଉଁ ଆଦର ) ତାକୁ ବିଧୁର କରେ ( ଜୁର )କରେ ।

୯—ସୁଖ ବା ଆହ୍ଲାଦ ଦାନରେ ( ଦାନ କରିବା ନିମନ୍ତେ ) କାମ ଶରାଳୀରେ ( ଅରବିନ୍ଦରେ ଓ ନୀଳୋତ୍ପଳରେ ) ପ୍ରକାଶମାନ ହୋଇଛି । କିମ୍ବା କାମ ( ଯଥେଷ୍ଟ )

ସର ଶୋଭ ଦେଖୁ ଦେଖୁ ସେ ସରେ ମର୍ଦ୍ଦନ ବିଧି ।
ବକ୍ଷ ପ୍ରମାଣ ଜଳେ ଯାଇ ବିଜେ ଲବଣ୍ୟନିଧି । ୧୦ ।
କବି ବିଚାରିଲ ବିଚିତ୍ର ହେଲା ତୁମ୍ବୀ ବୁଡ଼ିଲା ।
ନ ବୁଡ଼ି ଶଇଳ ସଲିଳ ଉପରରେ ରହିଲା । ୧୧ ।
କିସ ପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ ।
ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ । ୧୨ ।
ଅପୂର୍ବ ଅମ୍ବୁଜ ମୁଖକୁ ଗ୍ରହି ୟ ଭୃଙ୍ଗ ଚକୋର ।
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ଗ୍ରହି କାତର । ୧୩ ।

---

ପାଠାନ୍ତର—ୟ, ଗ୍ରହ ।

---

ଶରଳୀ ( ମାଛରଙ୍କା ଚଢ଼େଇ )ରେ ପୂର୍ଣ୍ଣ ହୋଇଛି । "ଅରବିନ୍ଦ ମଶୋଙ୍କତ ର ତଂଚ ନବ ମାଳିକା । ନୀଳୋତ୍ପଳଂଚ କାମସ୍ୟ ବାଣା ଷଷ୍ଠ ପ୍ରକୀର୍ତ୍ତିତାଃ" । କୁମୁଦରେ ( କଇଁରେ ) ବିଦିତ ( ପ୍ରକାଶିତ ) ହେବାରୁ ହରି ( ବିଷ୍ଣୁ ) ପରି ହୋଇଛି । କୁମୁଦରେ ( କୁ—ପୃଥିବୀ, ତାର ମୁଦ—ଆନନ୍ଦ କରନ୍ତି ଯେ )—କୁମୁଦ ବିଷ୍ଣୁଙ୍କର ନାମ ।

୧୦—ମର୍ଦ୍ଦନ ବିଧି-ତେଲ ଲଗାଇବା ପ୍ରଭୃତି ମାଜଣା ବିଧି; ସରେ—ସରିଲା; ଲବଣ୍ୟନିଧି —ଲବଣ୍ୟ ( ଶୋଭା ) ନିଧି ( ସ୍ଥାନ ) ।

୧୧—ତୁମ୍ବୀ—ଲାଉ ପ୍ରଭୃତିର ଖୋଳ ଯାହା ବୀଣା ପ୍ରଭୃତି ବାଦ୍ୟ ଯନ୍ତ୍ରରେ ବ୍ୟବହାର ହୁଏ । ଏଠାରେ ପିଣ୍ଡ ତୁମ୍ବାପରି । ସ୍ତନ ଶଇଳ ( ପର୍ବତ ) ପରି ସଲିଳ ( ଜଳ ) ଉପରେ ରହିଲା ।

୧୨—ବିଷମ ସମସ୍ୟା ପୂରଣ—ଯେଉଁ ସମସ୍ୟା ବା ତତ୍ ବିଷୟକ ପ୍ରଶ୍ନ ଜଗତରେ ନ ହେବା କଥାପରି ଜଣାପଡ଼େ, ତାକୁ ବିଷମ ସମସ୍ୟା କହନ୍ତି । ଏଠାରେ, ତୁମ୍ବା ପରି ଜିନିଷ ବୁଡ଼ିବା, ପଥର ପରି ଜିନିଷ ଭାସିବା 'ବିଷମ ସମସ୍ୟା' ହେଲେ ମଧ୍ୟ ତାହା ପୂରଣ ହେଲା ( ବୁଝାପଡ଼ିଗଲା ) ।

୧୩—ଅପୂର୍ବ—ଅଦ୍ଭୁତ; ଅମ୍ବୁଜ—ପଦ୍ମ, ଚନ୍ଦ୍ର, ପଦ୍ମ ପାଣିରୁ ଜନ୍ମ ଚନ୍ଦ୍ର ସମୁଦ୍ରରୁ ଜନ୍ମିଥିଲା । ଭୃଙ୍ଗ—(ଭ୍ରମର)ପଦ୍ମରୁ ମଧୁ ଖାଇବା ପାଇଁ, ଚକୋର ଚନ୍ଦ୍ରରୁ ସୁଧା ପାନ କରିବା ପାଇଁ ଧାଇଁଲେ । କିନ୍ତୁ ଶ୍ରୁତି ( କାନ ) ତାକୁ ଫାଶ ବା ଜାଲ ବୋଲି ବିଚାରି ଦୁହେଁ ପଳାଇଲେ । କାନର ଫାଶ ସଙ୍ଗେ ଉପମା ପ୍ରସିଦ୍ଧ ।

କେଶ ଦରଶନେ ରଥାଙ୍ଗ ଧାଇଁ ଆହାର ଆଶେ ।
ବିଚ୍ଛେଦ ଭୟରୁ ପଳାଇ ଗଲେ ନ ରହି ପାଶେ । ୧୪ ।
ନୟନ ଉଚ୍ଛ୍ୱଳ କଜ୍ଜ୍ୱଳ ଲଞ୍ଜି ଅନାଇ ଦେଇ ।
ଗଭୀର ଜଳରେ ପଶିଲେ ମୀନ ଭୟକୁ ପାଇ । ୧୫ ।
ଭୂରୁ ନୟନ ଅଞ୍ଜନ୍ଁ ଗୁହିଁ ଖଞ୍ଜନମାନେ ।
କୁରଙ୍ଗ ହୋ ଆମ୍ଭେ ମଲଇଁ ବୋଲି ଡ଼ାକିଲେ ସ୍ୱନେ । ୧୬ ।
ସମ୍ବରେ ସଜନୀ ଅମ୍ବରେ ସେହି କାଳେ ପଶିଲେ ।
ହାସ ପରିହାସ ସରସ ଉକ୍ତି ମାନ ଭଷିଲେ । ୧୭ ।
ଦେଖରେ ନଳିନି ନଳିନୀ ନଳିନୀରେ ପୂରିତ ।
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ । ୧୮ ।

---

ପାଠାନ୍ତର—୪, ଭୀରୁ ନୟନ ଅଞ୍ଜନ ।

---

୧୪--ରଥାଙ୍ଗ-(ଚକ୍ରବାକ) କେଶକୁ ଶିଉଳୀ ବୋଲି ବିଗ୍ଭରି ଖାଇବା ପାଇଁ ଆସି ଅତି କଳା ଦେଖିବାରୁ ରାତି ବୋଲି ବିଗ୍ଭରି କାଳେ ବିଚ୍ଛେଦ ହୋଇଯିବ ଡ଼ରି ପଳାଇଲେ ( ରାତିରେ ଚକ୍ରବାକ ମିଥୁନର ବିଚ୍ଛେଦ ହୁଏ ବୋଲି ପ୍ରବାଦ ଅଛି । )

୧୫–ମାଛ ପରି ହୋଇଥିବା ଲେମାର ଆଖିକି ଶତ୍ରୁ ବୋଲି ବିଗ୍ଭରି, କଜ୍ଜ୍ୱଳ ଲଞ୍ଜିକି ଶର ବୋଲି ବିଗ୍ଭରି ମାଛ ଗଭୀର ଜଳରେ ଯାଇ ଲୁଚିଲେ ।

୧୬–ଭୂରୁ (ଭ୍ରୂଲତା) ଧନୁ ପରି ହେଲା । ଅଞ୍ଜନ (କଜ୍ଜ୍ୱଳ) ଶର ପରି ହେଲା । ତାକୁ ଗୁହିଁ ଖଞ୍ଜନମାନେ ( କଜଳପାତି ଚଢେଇମାନେ ) ଲେମା ଚକ୍ଷୁର ଏହି ଯୁଦ୍ଧରେ ନିଶ୍ଚୟ ହାରି ଯିବେ (ନିହତ ହେବେ) ବିଗ୍ଭରି ହେ କୁରଙ୍ଗ (ହରିଣ) ଆମ୍ଭେ ଦୁହେଁ ନିଶ୍ଚେ ମଲଇଁ ବୋଲି ସ୍ୱର କଲେ । କୁରଙ୍ଗ ଆଖିଠାରୁ ଲେମାର ଆଖି ବେଶି ଚଞ୍ଚଳ ଓ ଖଞ୍ଜନଠାରୁ ବେଶି ସୁନ୍ଦର–ଏହାହିଁ ଅଭିପ୍ରାୟ । ଅଥବା ଖଞ୍ଜନମାନେ କହିଲେ–ଆମେ କୁରଙ୍ଗ ଅର୍ଥାତ କୁ ( ଖରାପ ) ରଙ୍ଗ ( ବର୍ଣ୍ଣ, ଶୋଭା )–ଏହି ଅଭଙ୍ଗ ଶ୍ଳେଷ ।

୧୭–ସମ୍ବରେ (ଆଡ଼ମ୍ବରରେ), ସଜନୀମାନେ ଅମ୍ବରେ (ପାଣିରେ) ପଶିଲେ ।

୧୮–ହେ ନଳିନି (ହେ ପଦ୍ମିନୀ ବାଳିକା ଅତଏବ ହେ ସଖୀ) ଏ ନଳିନୀ (ପୋଖରୀ) ନଳିନୀ (ପଦ୍ମ)ରେ ପୂରିତ । ଭ୍ରମରେ (ଭଅଁରମାନେ) ଭ୍ରମରେ ( ଚକିଦେଇ ) ଭ୍ରମନ୍ତି (ବୁଲନ୍ତି), ଭ୍ରମରେ (ଭଉଁରୀରେ, ଜଳାବର୍ତ୍ତରେ) ଏ ପୋଖରୀ ଶୋଭିତ ( ମଧ୍ୟଯମକ )।

ବି  ଗଳି ବିଗଳି ଅଛନ୍ତି ମୀନ ଭକ୍ଷଣ ପାଇଁ ।
ଘଜୀବ ଘଜୀବ ନୟନା ଏଥି ଖେଳା କରଇ । ୧୯ ।
ସଲିଳେ ଉଡୁପ ଦେଖରେ ହୋଇ ଅଛି ଶୋଭନ ।
ସଲୀଳେ ଉଡୁପ ବଦନୀ ଖେଳିବାକୁ ମୋ ମନ । ୨୦ ।
ନବୀନ ଜୀମୂତ ଜୀମୂତ ସ୍ତନା କିଏ ଉଦିତ ।
ଏ ନୀଳ କମଳ କମଳ ବିନ୍ଦୁ ବହି ତେମନ୍ତ । ୨୧ ।
ଭୁବନ ଏଥିରେ ପୂରିତ ମୋହେ ସର୍ବ ଭୁବନ ।
ଜୀବନ ବନ୍ଧୁ ଏ ନିଶ୍ଚୟେ ପ୍ରାଣିଙ୍କର ଜୀବନ । ୨୨ ।
ଅହିମକର ତାପ ନାଶେ ଶୋଭ ସାରସ ଚକ୍ରେ ।
ଅହି ମକର ତାପ ନାଶେ ଶୋଭ ସାରସ ଚକ୍ରେ । ୨୩ ।

---

୧୯—ବି ଗଳି ( ବି—ପକ୍ଷୀ, ଗଳି—ସମୂହ ) ବିଗଳି ଅଛନ୍ତି (ବସିଛନ୍ତି · ମାଛ ଖାଇବାକୁ । ହେ ଘଜୀବ ନୟନା—( ପଦ୍ମନେତ୍ରା ସଖୀ ) ଘଜୀବ—ଏ ବର୍ଦ୍ଧିକାଙ୍କ ବା ଶେଉଳ । ମାଛ ) "ଘଜୀବଃ ଶକୁଳ ଶ୍ରିମିଃ" ( ଇତ୍ୟମର, ଆଦ୍ୟଯମକ ) ।

୨୦—ସଲିଳେ ( ଜଳରେ ) ଉଡୁପ (ଭେଳା) । ହେ ଉଡୁପ ବଦନୀ ( ଚନ୍ଦ୍ରବଦନୀ ) ସଲୀଳେ ( ଲୀଳା କୌତୁକ ସହିତ ) (ଆଦ୍ୟ ଯମକ) ।

୨୧—ହେ ଜୀମୂତ ସ୍ତନା ( ଗିରିସ୍ତନା ) ଏ ନୀଳ କମଳ ( ନୀଳୋତ୍ପଳ ) କମଳ ବିନ୍ଦୁ (ଜଳବିନ୍ଦୁ) ବହି, ନବୀନ ଜୀମୂତ (ବର୍ଷାର ନୂଆ ମେଘ) ପରି ଦିଶୁଛି । ନୂଆ· ମେଘ କଳା ଓ ସେଥିରେ ଜଳବିନ୍ଦୁ ଥାଏ । "ଜୀମୂତୌ ମେଘ ପର୍ବତୌ"—ଇତି ଅମର । (ମଧ୍ୟ ଯମକ) ।

୨୨—ଏଥିରେ ଏ ପୋଖରୀରେ ଭୁବନ( ପାଣି) ପୂରିତ·ହୋଇ ସର୍ବ ଭୁବନ(ସ୍ୱର୍ଗ ମର୍ତ୍ତ୍ୟ, ପାତାଳ, ତ୍ରିଭୁବନ ବା ଭୂର୍ଭୁବାଦି ଚତୁର୍ଦ୍ଦଶ ଭୁବନ) ମୋହେ (ମୁଗ୍ଧକରିଚି ) । ହେ ଜୀବନ ବନ୍ଧୁ (ହେ ସଖୀ,) ଏ ନିଶ୍ଚେ ପ୍ରାଣିଙ୍କର ଜୀବନ (ପ୍ରାଣ ) । ଜଳର ନାମ ମଧ୍ୟ ଜୀବନ । (ଆଦ୍ୟନ୍ତ ଯମକ) ।

୨୩—ଅହି (ସାପ) ମକର (ମଗର, କୁମ୍ଭୀର) ତାପକୁ ନାଶ କରୁଛି ଏବଂ ସାରସଚକ୍ରେ (ଗଜହଂସ ସମୂହରେ) ଶୋଭିତ ହୋଇଛି । ଅହି ମକର— (ଅହିମ—ନୁହେଁ ହିମ, ଅତଏବ ଉତ୍ତାପକୁ କରେ ଯେ ଏ ଯେ ସୂର୍ଯ୍ୟ ) ତାର ଉତ୍ତାପକୁ ନାଶ କରୁଛି (ପାଣି ଥଣ୍ଡା ହୋଇଥିବାରୁ) । ସାରସଚକ୍ରେ (ପଦ୍ମସମୂହରେ) ଶୋଭପାଉଛି । (ସର୍ବ ଯମକ) ।

ଯଶ^ ପ୍ରକାଶିବ ସୁମନ ସର ସୁମନ ସର ।
ମହୀକି ଆଣିଲ ସୁମନସର ସୁମନଶର । ୨୪ ।
ମନ୍ତ୍ରିଜା ପୁଚ୍ଛିଲ ହେମାକୁ ଚାରିବର୍ଣ୍ଣେ ଏ ଯନ ।
ଏକାକ୍ଷରେ ଖ୍ୟାତ ଧରଣୀ କରଭୂଷା ତ୍ରିବର୍ଣ୍ଣ । ୨୫ ।
ବୟସ ନାମ ଖ୍ୟାତ ମୁନି ଯାହା କରେ ସେ ହେବ ।
ପ୍ରାକର୍ମ ଦ୍ୱିବର୍ଣ୍ଣେ ବିଲୋମେ ରାମ କୁମର ଥିବ । ୨୬ ।
ବ୍ୟସ୍ତେ ବସନ୍ତାଦି ଫୁଲେକ ପୁଣ ତଟର ନାମେ ।
ସମସ୍ତ ପଢ଼ିଲେ ହୋଇବ ଜଳେ ଥିଲା କୁସୁମେ । ୨୭ ।
ଚତୁରୀ ତୁରିତେ ଜାଣିଲା ହସି କହିଲା ତହିଁ ।
କଂଶ କରୀବର ପରାୟେ ମୋତେ ପରତେ ହୋଇ । ୨୮ ।
'ଫଳ' ବେନି ବର୍ଣ୍ଣ ପ୍ରାନ୍ତରେ ଦେଲେ ମୁକ୍ତା ନାମା ।
ଶୁଣି ଧନ୍ୟ ବୋଲି ପ୍ରଶଂସା କଲେ ସକଳ ବାମା । ୨୯ ।

---

ପାଠାନ୍ତର—^, ବଶ ।

---

୨୪—ସୁମନ—ଶର—( ପୁଷ୍ପଶର ଯାହାର—କନ୍ଦର୍ପ) ସୁମନ ଶରର ( ପୁଷ୍ପବାଣର ଅର୍ଥାତ୍ ଅରବିନ୍ଦ ନୀଳୋତ୍ପଳ ପ୍ରଭୃତିର ) ଯଶକୁ ପ୍ରକାଶ କରିବ ବୋଲି ସୁମନସ ( ସୁ—ଉତ୍ତମ ମନରେ) ସୁମନସର (ଦେବ ସରୋବର) ଆଣିଲା କି ? (ପ୍ରାନ୍ତ ଯମକ) ।

୨୫—୨୯—ଅନ୍ତର୍ଲିପିରେ କଥାବାର୍ତ୍ତା ।

ଯଥା—ମନ୍ତ୍ରୀଜା (ମନ୍ତ୍ରୀଝିଅ କାମକଳା ) ହେମାକୁ ପୁଚ୍ଛିଲା । ଚାରିବର୍ଣ୍ଣରେ ଏପରି ଗୋଟିଏ କଥା କ'ଣ ଅଛି କହ । ଉତ୍ତର ହେବ "କୁବଳୟ" ଏକାକ୍ଷରେ ଖ୍ୟାତ ଧରଣୀ (କୁ) ବାକି ତିନି ବର୍ଣ୍ଣରେ, କରଭୂଷା ( ହାତ ଅଳଙ୍କାର ) "ବଳୟ" । ସେହି ତିନି ଅକ୍ଷରରୁ ବାହାର କଲେ ବୟସ ନାମଖ୍ୟାତ "ବୟ" । ମୁନି ଯାହା-କରେ "ଲୟ" । ପ୍ରାକର୍ମ ( ପରାକ୍ରମ ) ଦ୍ୱିବର୍ଣ୍ଣରେ "ବଳ" । ତହିଁରୁ କାଢ଼ି ବିଲୋମ କଲେ ( ଓଲଟାଇ ଦେଲେ ) ରାମକୁମର—"ଲବ" । ବ୍ୟସ୍ତେ ( ଅକ୍ଷର ସବୁ ଏପାଖ ସେପାଖ କରି ରଖିଲେ ) ବସନ୍ତାଦି ( ବସନ୍ତ ଆଦ୍ୟରେ ଫୁଟିଥିବା ) ଫୁଲେକ (ଗୋଟିଏ ଫୁଲ)—"ବକୁଳ" । ସେଥିରେ ମଧ୍ୟ ତଟର ନାମ—"କୂଳ" ଥିବ । ସବୁ ଏକାଠି ପଢ଼ିଲେ ଜଳେ ଥିଲା କୁସୁମ ( ପାଣିରେ ଥିବା କୁସୁମ ) ହେବ—"କୁବଳୟ" । ଚତୁରୀ ହେମା ଜାଣିପାରି ହସି ହସି କହିଲା "କଂସ କରୀବର" ( କଂସର ପ୍ରଧାନ ହାତୀର ନାମ କୁବଳୟ ) ପରି ମୋତେ ଲାଗୁଛି । ପ୍ରାନ୍ତରେ ( ତା ଶେଷରେ ) ଫଳ ଏହି ଦୁଇ ବର୍ଣ୍ଣ ଦେଲେ ତାର ଅର୍ଥ ହେବ 'ମୁକ୍ତା'। "କୁବଳୟ ଫଳ" ବୋଲି ମୁକ୍ତାର ନାମ ଅଛି ।

ଏ ବିଧିରେ ଋଷି ଋରତୀ ଜଳ କ୍ଷେପଣ କରି ।
ଦେଖିଲ^୬, ନଥିଲ ଚଞ୍ଚଳା ବରଷିବାର ବାରି ୩୦ ।
ଉତ୍ତାନ ପ୍ଲବନେ ଉରଜମାନ କି ମନୋହର ।
ନଳ ଦୀକ୍ଷା ପାଇ ନାରୀଏ ଭସାଇଲେ ଭୂଧର । ୩୧ ।

ଆଜି କି କୁସୁମ ନାଗର ଗଜ ବହିତ୍ର ଲୀଳା ।
କରୁଛି ତେମନ୍ତ ଶୋଭକୁ ପୁଣି ବହିଲେ ବାଳା । ୩୨ ।
ବୁଡ଼ି କେ କାହାର ଚରଣ ଧରୁ ସେ ଜାଣି ଋଷି ।
ଗତିରେ ଗଜ ଅଛି ବୋଲି ମୋତେ କୁମ୍ଭୀର ଗ୍ରାସି । ୩୩ ।
ନ ରୀ ବାରି ବାରି ନୋହିଲ ତହିଁ ଘଡ଼ିଏ ଯାଏ ।
ହାସ କୁମୁଦ, ନେତ୍ର ମୀନ, ମୁଖ କମଳ ପ୍ରାୟେ । ୩୪ ।
ଜଘନ ପୁଳିନ, ଉରଜ ଚକ୍ରବାକ ମିଥୁନ ।
ରୋମାବଳୀ ଅଳି ଆବଳୀ ଗତି ହଂସ ସମାନ । ୩୫ ।

ପାଠାନ୍ତର— ୬, ଦେଖିବା ।

୩୦—ଚଞ୍ଚଳା—ବିଜୁଳି, ବିଜୁଳି ମେଘ ବରଷିବାର ଦେଖିଲ ନଥିଲ ( ଦେଖା ନଥିଲ ) ବାଳିକା ମାନେ ବିଜୁଳି ପରି ଆପଣା ଆପଣା ଉପରକୁ ପାଣି ଫିଙ୍ଗିଲେ ।

୩୧—ଉତ୍ତାନ ପ୍ଲବନେ ( ଚିତ୍ ହୋଇ ଭସିବାରେ, ପହରିବାରେ ) ଉରଜ ମାନ (ସ୍ତନ ମାନେ) ପର୍ବତ ଭସିଲ ପରି ସୁନ୍ଦର ଦିଶିଲେ । ନଳ ଦୀକ୍ଷା—ସେତୁବନ୍ଧ ତିଆରିରେ ସେନାପତି "ନଳ" ପଥର ଭସାଇ ଥିଲେ । ସେହି ଦୀକ୍ଷା ପାଇ ନାରୀଏ ଭୂଧର ( ପର୍ବତ ) ନିଜ ସ୍ତନ ରୂପେ ଭସାଇଲେ କି ?

୩୨—କୁସୁମ ନାଗର ( କନ୍ଦର୍ପ ) ଗଜ ବହିତ୍ର ଲୀଳା (ଗଜୋଚିତ ନାବ କେଳି) ।

୩୪—୩୬—ନାରୀ କିଏ, ବାରି (ପାଣି)କିଏ ଘଡ଼ିଏ ଯାଏ ବାରି ହେଲ ନାହିଁ। କାହିଁକିନା ନାରୀଙ୍କ ହାସ କଇଁ ଫୁଲ ପରି, ଆଖି ମାଛ ପରି । ମୁହଁ ପଦ୍ମପରି । ଜଘନ ( ଜଂଘ ) ପୁଳିନ ( ତଟ ବା କୂଳ )ପରି, ଉରଜ ( ସ୍ତନ ) ଚକ୍ରବାକ ମିଥୁନ ( ଚକୁଆ ଚକୋଇ ) ପରି । ଦିନରେ ଚକୁଆ ଚକୋଇ ବରବର ଏକାଠି ଥାନ୍ତି । ଗତିରେ ହିଁ ତାଙ୍କର ବିଚ୍ଛେଦ ହୁଏ ବୋଲି ପ୍ରବାଦ । ରୋମାବଳୀ ( ନାହି ତଳକୁ ଲମ୍ବିଥିବା ରୋମସବୁ ) ଅଳି ଆବଳୀ ( ଭ୍ରମର ସମୂହ ) ପରି; ନାରୀଙ୍କ ଗତି ହଂସ ପରି; ନାରୀଙ୍କ ପେଟ (କମଳ ପଲଶ) ପଦ୍ମପତ୍ର ପରି; ନାଭି ଜଳ ଭଉଁରୀ ( ଜଳାବର୍ତ୍ତ ) ପରି; ହାତ କୋକନଦ ( ରଙ୍ଗକଇଁ )ପରି । ସୁବାହୁ ( ସୁନ୍ଦର ବାହା ) ମୃଣାଳ (କଇଁନାଡ଼) ପରି ଦେଖାଗଲ ।

ଉଦର କମଳ ପଲଶ, ନାଭି ଜଳ ଭଉଁରୀ ।
କର କୋକନଦ ସୁବାହୁ ଯହିଁ ମୃଣାଳ ପରି । ୩୬ ।
ବାଳୀ ଜଳେ ମିଳି କରନ୍ତି କେଳି ଏ ହୋଏ ଜଣା ।
ସଖୀ ସଙ୍ଗେ ରଙ୍ଗେ କ୍ରୀଡ଼ନ୍ତି[୭] ଯହୁଁ ଚଞ୍ଚଳେ କ୍ଷଣା । ୩ ।
କାହିଁକି ଏମନ୍ତ ବୋଇଲେ ବୋଲି କେବା ବୋଲିବ ।
ସୁଲକ୍ଷଣାକୁ ଏ ଲକ୍ଷଣା କାହୁଁ ସମାନ ହେବ । ୩୮ ।
ସ୍ନାନ ଅବଶେଷେ କୂଳକୁ କୁଳ ପାଳିକା ଆସି ।
ଗଉର ଅଙ୍ଗରେ ଜଡ଼ି ସେ ଶାଢ଼ୀ ଏମନ୍ତ ଦିଶି । ୩୯ ।
ସ୍ଫଟିକ ବାଡ଼ ଫୁଟି ଦିଶେ କି ସେ ହେମ ପିତୁଳା ।
ସ୍ତନ ସମ୍ପୁଟେ କି ବାରଣ ଦନ୍ତ ପିଧାନ କଲା । ୪୦ ।
ଜର ଜର ଚୀର ନୀରରେ ଯହୁଁ ଏମନ୍ତ ଭବି ।
ସେ ଚନ୍ଦ୍ର ଶିଳ ଶଇଳ କି ହାସ ଚନ୍ଦ୍ରରେ ଦ୍ରବି । ୪୧ ।

---

ପାଠାନ୍ତର—୭, ମିଶି ଝଡ଼ଇ ।

---

୩୭–୩୮—ସଖୀ ମାନଙ୍କ ସଙ୍ଗରେ ଯେଣୁ ଚଞ୍ଚଳେ କ୍ଷଣା ଜେମା ରଙ୍ଗେ (କୌତୁକରେ) କ୍ରୀଡ଼ନ୍ତି; ତେଣୁ ଜଣା ପଡ଼ୁଛି ଏସବୁ ପାଣି ନୁହନ୍ତି । ଏ ସବୁ ଜଳରେ ମିଳି ( ଜଳ ଭିତରେ ) ବାଳୀ ( ଯୁବତୀ ) ମାନେ କେଳି କରନ୍ତି ( ଖେଳନ୍ତି ) । କାହିଁକି ନା ସୁଲକ୍ଷଣା ଲବଣ୍ୟବତୀଙ୍କୁ ଉପରେ ଯେଉଁ ହାସ କୁମୁଦ ପ୍ରଭୃତି ଲକ୍ଷଣ ମାନ କୁହାଗଲା ସେ ସବୁ କାହୁଁ ସମାନ ହେବ । ଅତଏବ କେବଳ ଜେମା ଥିବାରୁ ନାରୀମାନେ ଜଳ ବୋଲି ଭ୍ରମ ହେଲନାହିଁ ।

୩୯–୪୦—କୁଳ ପାଳିକା—ଯେ କୁଳ ମର୍ଯ୍ୟାଦା ପାଳନ କରେ—ସତୀ ସ୍ତ୍ରୀ; ଗଉର ଅଙ୍ଗରେ ( ଗୋରା ଦେହରେ ) ଓଦାଶାଢ଼ୀ ଲଗି କିପରି ଦିଶିଲା କହୁଚନ୍ତି—ସ୍ଫଟିକ ( ସ୍ୱଚ୍ଛ ପଥର ) ବାଡ଼ ( କାନ୍ଥ ) ଭେଦି ହେମପିତୁଳା ( ସୁବର୍ଣ୍ଣ ପ୍ରତିମା) ସ୍ତନ ସମ୍ପୁଟେ ( କୁଚ ରୂପ ଫରୁଆରେ ) ବାରଣ ଦାନ୍ତ ( ହାତୀଦାନ୍ତ ) ପିଧାନ ( ଢାଙ୍କଣି ହେବା ) ।

୪୧—ଚୀର ( ବସ୍ତ୍ର ) ପାଣିରେ ଜର ଜର ହେବାରୁ ଚନ୍ଦ୍ର ଶିଳ ଶଇଳ (ଚନ୍ଦ୍ରକାନ୍ତ ମଣି) ହସ ରୂପ ଚନ୍ଦ୍ରରେ ଦ୍ରବି ପଡ଼ିଲା ପରି ( ତରଳି ବୋହି ପଡ଼ିଲା ପରି ) ଦିଶୁଛି । ଚନ୍ଦ୍ରକାନ୍ତ ମଣିରେ ଚନ୍ଦ୍ର କିରଣ ପଡ଼ିଲେ ସେ ଉପରୁ ଟିକିଏ ତରଳି ଯାଏ ବୋଲି ପ୍ରବାଦ ଅଛି । ଏଠାରେ ହସି ହସି ଜେମା ଜର ଜର ହୋଇ ପାଣିରୁ ଉଠି ଆସୁଛନ୍ତି ।

ବିନ୍ଦୁ ବିନ୍ଦୁ ଜଳ ରହିଛି ଘନ୍ତୁ କୁଟିଳ ବାଳେ ।
ତୁଷାର ବୃଷ୍ଟି କି ହୋଇଛି ନବ ତମାଳ ଦଳେ । ୪୨ ।
ନବଘନେ କିବା ଉଇଁଛି ତାର ତାରକା ଶ୍ରେଣୀ ।
ମୋତି ପତନ କି ହୋଇଛି ନୀଳମଣି ଧରଣୀ । ୪୩ ।
ଅଙ୍ଗ ଅଙ୍ଗନାର ପୋଛିଲେ ସଖିମାନେ ସତ୍ୱରେ ।
କେଶ ପୋଛି ଦେଇ ଗଣ୍ଠି କି ଦେଲେ ଅଗ୍ର ଭଗରେ । ୪୪ ।
ଉଞ୍ଚି ଦେଲେ ପୀତାମ୍ବରକୁ ଊରୁ ସନ୍ଧିକି ରୁନ୍ଧି ।
ପିନ୍ଧି ନିତମ୍ବିନୀ ନିବିଡ଼େ ନୀବୀ ବନ୍ଧନ ବାନ୍ଧି । ୪୫ ।
ତୋରା ହୋଇଲା ଗୋର ଦେହ ଆଲିଙ୍ଗନକୁ ପାଇ ।
ଧଡ଼ି ନ ଥିଲେ ଶାଢୀ ଥିଲା ପର ଦିଶନ୍ତା ନାହିଁ । ୪୬ ।
ଜଣାଇଲେ ଏବେ ମନ୍ଦିରେ ଯିବା ଅସ୍ତ ଦିନେଶ ।
ଜଗତ ମୋହିନୀ ଜଗତି ପରେ ହେବ ପ୍ରବେଶ । ୪୭ ।
ଶୁଣି କରି କର ପଇଠ ଦେଇ ବିଜେ ସୁନ୍ଦରୀ ।
କାମକଳାକୁ ଯେ ଆକ୍ଷେପି ସଜନୀ କି ପଗ୍ଭରି । ୪୮ ।

---

ପାଠାନ୍ତର—୮, କରପଇଠି ।

---

୪୨- କୁଟିଳ—କୁଞ୍ଚି କୁଞ୍ଚିଆ, ତୁଷାର—କାକର; ନବତମାଳ ଦଳ—ଚିକଣ ସତ୍ୟାମ୍ବା ପତ୍ର ।

୪୩—ତାର ତାରକା—ଉଜ୍ଜ୍ୱଳ ତାରା; ନୂତନ ମେଘରେ ତାରା ଲୁଚିଯାଏ । କିନ୍ତୁ ଏଠାରେ ଉଜ୍ଜ୍ୱଳ ହୋଇ ଦିଶୁଛି । ଏହା ଅଦ୍ଭୁତ । ମୋତି ଧଳା, ନୀଳମଣି ଧରଣୀ (ଜାଗା) କଳା ;

୪୫—ପୀତାମ୍ବର—ହଳଦିଆ ଲୁଗା, ଉରୁସନ୍ଧି—ଜଙ୍ଘସନ୍ଧିକି, ରୁନ୍ଧି—ବନ୍ଦ କରି, ଉଞ୍ଚିଦେଲେ—କୁଞ୍ଚ ଲମ୍ବାଇ ଦେଲେ । ନିତମ୍ବିନୀ—ବଡ଼ ପିଚ୍ଛ ଥିବା ସୁନ୍ଦରୀ ସ୍ତ୍ରୀ, ନିବିଡ଼େ—ଟାଣୁଆ କରି; ନୀବୀବନ୍ଧନ—କଛା ବା ଅଣ୍ଟା ଖୋସଣି ।

୪୬—ଗୋର ଦେହ ହଳଦିଆ ଶାଢ଼ୀରେ ଆଲିଙ୍ଗନକୁ ପାଇ (ସମ୍ପୂର୍ଣ୍ଣ ରୂପେ ଲଗିଯାଇ) ତୋରା ମାତ୍ର ଦିଶିଲା ।

୪୭—ଦିନେଶ—ସୂର୍ଯ୍ୟ; ଜଗତି ପରେ—କୋଠାର ସଭ ଉପର ଘରେ ।

୪୮—କର ପଇଠ—ହାତରେ ଜଣକ ଉପରେ ଭର ଦେଇ; ବିଜେ—ଯିବା ପାଇଁ ଠିଆ ହେଲା । କାମକଳାକୁ ( ମନ୍ତ୍ରୀ ଝିଅକୁ ) ଆକ୍ଷେପି (ଲକ୍ଷ୍ୟକରି) ଆଉ ଜଣେ ସଜନୀକୁ ପଗ୍ଭରିଲା । କାମକଳା ଆଗେ ହେମାକୁ ଅନ୍ତର୍ଲିପି ପଗ୍ଭରିଥିଲା ସେଥିପାଇଁ ହେମା ତାକୁ ଲକ୍ଷ୍ୟ କଲା ।

ହରି କରେ କିସ ଶୋଭିତ ଗଡ଼େ କେ ହୋଏ ଭିନ୍ନ ।
କାମେ କାମୁକ କି କରନ୍ତି ଭୀମ କାହିଁ ଶୋଭନ । ୪୯ ।
କେ ବରଜ ଗଜ ସଂସାର କର୍ତ୍ତା କେ ଅଟଇ ।
ନୃପତି ଆଗରେ କି ବୋଲି ପ୍ରତି ହାରୀ ଡ଼ାକଇ । ୫୦ ।
କି ଶୋଭକରେ ଚନ୍ଦ୍ରକର ତାର କାହିଁ ଉଦିତ ।
ବିଷ୍ଣୁର ସର୍ବଦା ମଣ୍ଡନ କି କି କହ ତ୍ୱରିତ । ୫୧ ।
ସେ କହେ କମଳ ରଥାଙ୍ଗ ଦର ଗଦା ନନ୍ଦକ ।
ମଣିମା ହରିତ ଅମ୍ବର ବୋଲି ହୋଏ ବିବେକ । ୫୨ ।
ଶ୍ରବଣେ ପ୍ରଶଂସା ସସଂାର ସାର ରମଣୀ କଲା ।
ସଦନେ ପ୍ରବେଶ ହୋଇ ସେ ପୁଣି ସୁବେଶ ହେଲା । ୫୩ ।
ଏଠାରୁ ଏ ଛାନ୍ଦ ସମ୍ପୂର୍ଣ୍ଣ ଏତେ ଲକ୍ଷଣେ ଯୁକ୍ତ ।
ଶ୍ଳେଷରେ ଅଭଙ୍ଗ ସଭଙ୍ଗ ଭଙ୍ଗା ଭଙ୍ଗହିଁ ବ୍ୟକ୍ତ । ୫୪ ।

---

୪୯—୫୨—୪୯, ୫୦, ୫୧ ପଦରୁ ଅନ୍ତର୍ଲିପିରେ, ୫୨ ପଦରେ କୁହା ଯାଇଥିବା କମଳ ରଥାଙ୍ଗ ପ୍ରଭୃତି ବାହାରିବ । ଯଥା—ହରିକରେ କିସ ଶୋଭିତ—"କମଳ" । ଗଡ଼େ କେ ହୁଏ ଭିନ୍ନ—"ରଥାଙ୍ଗ" ( ରଥାଙ୍ଗ—ଚକ୍ର ବା ଚକ୍ରବାକ ପକ୍ଷୀ)। କାମେ କାମୁକ କି କରନ୍ତି—"ଦର" (ଭୟ) । ଭୀମ କାହିଁ ଶୋଭନ—"ଗଦା" । କେ ବ୍ରଜଗଜ—"ନନ୍ଦ"; କେ ସଂସାର କର୍ତ୍ତା—"କ" (ବ୍ରହ୍ମା) ରଜାଙ୍କ ଆଗରେ ପ୍ରତିହାରୀ ( ବାଟ ଶୋଧକାରୀ ) କି ବୋଲି ଡ଼ାକେ—"ମଣିମା" । ଚନ୍ଦ୍ର କିରଣରେ କ'ଣ ଶୋଭକରେ—"ହରିତ" (ଦିଗ) । ତାର କାହିଁ ଉଦିତ—"ଅମ୍ବର" (ଆକାଶ) । ଏ ସବୁଥିରୁ ଯାହା ବାହାରିବ ସେ ସମସ୍ତେ ସର୍ବଦା ବିଷ୍ଣୁଙ୍କର ମଣ୍ଡନ । ଯଥା—କମଳ (ପଦ୍ମ) ରଥାଙ୍ଗ (ଚକ୍ର), ଦର (ଶଙ୍ଖ), ଗଦା, ନନ୍ଦକ (ବିଷ୍ଣୁଙ୍କ ଖଡ଼୍ଗ), ମଣି (କୌସ୍ତୁଭମଣି), ମା (ଲକ୍ଷ୍ମୀ), ହରିତ ଅମ୍ବର ( ପୀତାମ୍ବର ) ।

୫୪—୫୫—ଶ୍ଳେଷରେ ଅଭଙ୍ଗ—ନ ଭଙ୍ଗି ଶ୍ଳେଷାର୍ଥ ବା ଦ୍ୱିଅର୍ଥ, ଯଥା—ପୂର୍ବେ ୧୬ଶ ପଦ, ସଭଙ୍ଗ—ଭଙ୍ଗିକରି, ଯଥା—୯ମ ପଦରେ 'କୁମୁଦ'; ଭଙ୍ଗା ଭଙ୍ଗ—ଶବ୍ଦମାନଙ୍କୁ ଭଙ୍ଗିକରି ଓ ନ ଭଙ୍ଗି କରି । ଯଥା—୨୩ଶ ପଦ । ଛ ବିଧି ଯମକ—ଆଦ୍ୟ,ପ୍ରାନ୍ତ, ମଧ୍ୟ, ଆଦ୍ୟପ୍ରାନ୍ତ, ଆଦ୍ୟମଧ୍ୟ, ମଧ୍ୟ ଓ ପ୍ରାନ୍ତ ଯମକ ମାନ ଏ ଛାନ୍ଦରେ ଦେଖି ନେବାକୁହେବରୂ । ପକ- ରୂପକ ଉତ୍ପ୍ରେକ୍ଷାଦି ଅଳଙ୍କାର ମାନ । ଦୀପକ—ଦୀପ୍ତିମନ୍ତ ।

ଛ ବିଧି ଯମକ ରୂପକ ଆଶ୍ରୟରେ ଦୀପ୍ତକଂ ।
ବହିର୍ଲିପି ଅନ୍ତର୍ଲିପିକା ଘେନି କର୍ଣ୍ଣେ ରୋଚକ । ୫୫ ।
ବଳି-ଛଳି-ରମ-ବାମନ ମୂର୍ତ୍ତି ମନରେ ଧ୍ୟାୟି ।
ଉପଇନ୍ଦ୍ର ବୀରବର ଯେ ଏହୁ ରସ କହଇ । ୫୬ ।

---

ଧାଠାନ୍ତର— ୯, ଧୀପକ ।

---

ବହିର୍ଲିପି ଏ ଛାନ୍ଦରେ ନାହିଁ । ତଥାପି ସବୁ ଏକାଠି କହିଲା ବେଳେ କବି କହି ଯାଇଛନ୍ତି । ଯେଉଁଠାରେ ପ୍ରକାଶିତ ପଦ ମାନଙ୍କର କୌଣସି ବିଶିଷ୍ଟ ଅକ୍ଷର ଗୁଡ଼ିକ ସଜାଡ଼ି ପଢ଼ିଗଲେ କୌଣସି ଗୋଟିଏ ଉଦ୍ଦେଶ୍ୟ ବା ଅର୍ଥ ବୁଝାଏ ସେଠାରେ ବହିର୍ଲିପି ହୁଏ । କୌଣସି ଲୋକର ନାମ ବା ଜଣାଇବାର କୌଣସି କଥାରେ ପ୍ରତ୍ୟେକ ଅକ୍ଷରରେ ଆରମ୍ଭ କରି ଧାଡ଼ିଏ ଧାଡ଼ିଏ କବିତା ଲେଖିଲେ ତାହା ବହିର୍ଲିପି ହେଲା । ( ଦେଖ ୨୫ଶ ଛାନ୍ଦ ୧୬ ଠାରୁ ୨୧ ପର୍ଯ୍ୟନ୍ତ ) ।

୫୬- ବଳିକୁ ବିଷ୍ଣୁ ବାମନ ରୂପ ଧରି ଛଳି (ଠକି) ପାତାଳକୁ ପଠାଇ ଥିଲେ । ବଳି (ବାଳି)କୁ ରମ ଛଳି (ଲୁଚି କରି ରହି ଠକି) ମାରିଥିଲେ । ଅତଏବ ବଳି-ଛଳି-ବାମନ ମୂର୍ତ୍ତି ରମ ।

[ ଉପେନ୍ଦ୍ରଭଞ୍ଜ ଏଠାରେ ଯମକର ଭିନ୍ନ ଭିନ୍ନ ପଦକୁ ଭିନ୍ନ ଭିନ୍ନ ପ୍ରକାର ଅର୍ଥ କରିବାରେ ଶ୍ଳେଷାର୍ଥ ଅଛି ବୋଲି କଳ୍ପନା କରି ଏ ଛାନ୍ଦରେ ବିଭଙ୍ଗ ଶ୍ଳେଷ ଅଛି ବୋଲି କହିଛନ୍ତି । କିନ୍ତୁ ଯେଉଁଠାରେ ଯମକ ରହିଲା ସେଠାରେ ଭିନ୍ନ ଭିନ୍ନ ଅର୍ଥ ନ ରହିଲେ ଯମକ ନାହିଁ । ତାହା ପୁନରୁକ୍ତି ହେଲା । ଅତଏବ ଏକ ପଦର ଦୁଇ ଭାବରେ ଦୁଇ ଅର୍ଥ ନ ହେଲେ ଶ୍ଳେଷ ହୁଏ ନାହିଁ । ଏହି ଛାନ୍ଦରେ ଶେଷ ପଦରେ 'ବଳି ଛଳି' ( ୧, ରମ ରୂପରେ ବାଳିକୁ ଠକି, ୨, ବାମନ ରୂପରେ ବଳି କି ଠକି ) ପଦ ଛଡ଼ା ଅନ୍ୟ କୁତ୍ରାପି ଶ୍ଳେଷ ନାହିଁ । କିନ୍ତୁ ଏ କାବ୍ୟରେ ଶ୍ଳେଷାର୍ଥ ବହୁତ ଜାଗାରେ ଅଛି । ଦୃଷ୍ଟାନ୍ତ ସ୍ୱରୂପ ଶେଷର ବିରହର ଋତୁ ବର୍ଣ୍ଣନା ମାନଙ୍କରେ ଶ୍ଳେଷାର୍ଥ ବହୁତ ଜାଗାରେ ଅଛି । ଦୃଷ୍ଟାନ୍ତ ସ୍ୱରୂପ ଶେଷର ବିରହର ଋତୁ ବର୍ଣ୍ଣନା ମାନଙ୍କରେ ଶ୍ଳେଷମାନ ସ୍ପଷ୍ଟ । ଯଥା-୪୦ଶ ଛାନ୍ଦ ଗ୍ରୀଷ୍ମ ବର୍ଣ୍ଣନାରେ, ୨ୟ ପଦରେ 'ଘନରସ', 'ମହିଷୀ ଆଲିଙ୍ଗନ', 'ରଚନା', ପତ୍ରାବଳି ପ୍ରଭୃତି ଅଭଙ୍ଗ ଶ୍ଳେଷ । ତୃତୀୟ ପଦରେ ( ୧ ଚନ୍ଦ୍ରରେ ୨ କର୍ପୂରରେ ଓ କନ୍ଦର୍ପରେ) ଏହିପରି ଅର୍ଥ ହେଲେ ଅଭଙ୍ଗ ଶ୍ଳେଷ । ଏହିପରି ଯେଉଁଠାରେ ଏକାଧିକ ପଦରେ ଶ୍ଳେଷ ଥାଇ ଶ୍ଳେଷାର୍ଥରେ କୌଣସି ପଦ ଭାଙ୍ଗିବ ଓ କୌଣସି ପଦ ନ ଭାଙ୍ଗିବ ତେବେ 'ଭଙ୍ଗାଭଙ୍ଗ' ଶ୍ଳେଷ ହେବ । ଏହି ଛାନ୍ଦର ୨୩ ପଦ ଦୁଇ ଧାଡ଼ି ନ ହୋଇ ଯଦି ଗୋଟିଏ ଧାଡ଼ିଥାଇ ଦୁଇ ଅର୍ଥ ବୁଝାଉ ଥାନ୍ତା, ତେବେ ଅହିମକର ଶବ୍ଦ ଭଙ୍ଗ ଗଲା ଓ ଅନ୍ୟାନ୍ୟ ଶବ୍ଦ ନ ଭାଙ୍ଗିଲା ବୋଲି ଭଙ୍ଗାଭଙ୍ଗ ଶ୍ଳେଷ ହୋଇଥାନ୍ତା । ମାତ୍ର ଏଠାରେ ଯୋଡ଼ି ଧାଡ଼ି ଥାଇ ସର୍ବ ଯମକ ହେବାରୁ ଶ୍ଳେଷାର୍ଥ ଅଛି ବୋଲି କୁହାଯିବ ନାହିଁ । ୨୮ ଛାନ୍ଦର ୩୩ ପଦ ଏହାର ଉଦାହରଣ । ]

# ସପ୍ତମ ଛାନ୍ଦ

## ନାମ ଶ୍ରବଣ

ରାଗ ଭୂପାଳ । ଚଣ୍ଡକ ବାଣୀ

ଏଥିଅନ୍ତେ ଶୁଣ ଜନେ ମନ ଦେଇ । ମନୋହର ବସନ୍ତ ଋତୁକୁ ଚାହିଁ । ୧ ।
ବିଜେ ଆରାମେ କର୍ଣ୍ଣାଟ ରାଜସୁତ । ସମୀପରେ ବସିଛନ୍ତି ରାଜମିତ୍ର । ୨ ।
ସାବଧାନ ମଣିମା ଖୁଣ୍ଟିଆ ଡ଼ାକେ । ସେବା ନିପୁଣ ତହିଁ ଖଟଣୀ ଲୋକେ । ୩ ।
ଯଶ ବର୍ଣ୍ଣନା କରନ୍ତି ଭଟେ ଶ୍ଳେଷେ । ଏକ ପଦରେ [୧] ଗୀତ କବିତ୍ୱ ବସେ । ୪ ।
ଚନ୍ଦନ ହିଁ ଭଷ ପରି ବୀର ଦାନୀ । ନିନ୍ଦେ କୀର୍ତ୍ତି ତାର ହାର ଧୀର ମାନୀ । ୫ ।
ଯାନ ଜବ ପେଖି ପର ଦର୍ପହୀନେ । ପାଏ ସୁଖ ଭଜନୀୟେ ପ୍ରତି ଦିନେ । ୬ ।
ଭେଟେ କବି ଗୀତ କରି ତ୍ରିବିଧିରେ । ପ୍ରାନ୍ତ ଯମକ ଶୃଙ୍ଖଳା ଗୋମୂତ୍ରରେ [୨] । ୭ ।

---

ପାଠାନ୍ତର—୧, ପାଦରେ ୨, ଗୋମୂତ୍ରୀରେ ।

---

୨—ଆରାମ—ବୃକ୍ଷ ବାଟିକା ବଗିଚା ।
କର୍ଣ୍ଣାଟ ରାଜସୁତ—ଚନ୍ଦ୍ର ଭାନୁ ।

୩—ଖୁଣ୍ଟିଆ—ରାଜା ପ୍ରଭୃତିଙ୍କର ଡ଼ାକ ଶୁଣିବା ପାଇଁ ସବୁବେଳେ ଯେ ହାଜର ଥାଏ ।
ଖଟଣୀ ଲୋକେ—ସେବକମାନେ ।

୪—ଭଟେ—ବନ୍ଦୀମାନେ ( ଯେଉଁମାନେ ରାଜକୀର୍ତ୍ତିମାନ ଗାନ କରନ୍ତି । ଶ୍ଳେଷେ—ଦୁଇ ଅର୍ଥ ଥାଇ, ଗୋଟିଏ ଶବ୍ଦାର୍ଥ ଓ ଆଉ ଗୋଟିଏ ଆଶୟାର୍ଥ । ଗୀତ ବସେ—ଗୀତ ବନ୍ଧା ହୁଏ; କବିତ୍ୱ ବସେ—କବିତ୍ୱ ଥାଏ । ପଦରେ ଗୀତ ଓ ଆଶୟରେ କବିତ୍ୱ ହୁଏ ।

୫—ଚନ୍ଦ୍ର—ବିଧୁ ଓ ସୁନା ଦୁଇ ଅର୍ଥରେ ବ୍ୟବହୃତ ହୁଏ; ଚନ୍ଦ୍ର ଶବ୍ଦ ସ୍ୱର୍ଣ୍ଣ ବା ଚନ୍ଦ୍ର ଅର୍ଥରେ ପ୍ରୟୋଗ ହେବାର ପ୍ରସିଦ୍ଧି ଅଛି । "ଚନ୍ଦ୍ରଃ କର୍ପୂର–କାମ୍ପିଲ୍ଲ–ହେମ ଶୁଭ୍ରାଂଶୁ ବାରିଷୁ" ଇତିବିଶ୍ୱଃ । ହେ ବୀର, ହେ ଦାନୀ ଚନ୍ଦନ ତୁମ୍ଭର ଭଷ (କଥା) ପରି ଶୀତଳ; ଅନ୍ୟ ପକ୍ଷରେ ହେ ବୀରଦାନୀ ( ବୀରମାନଙ୍କ ଛେଦନ କାରୀ ) ତୁମ ଭସ (ତେଜ) ପରି ଚନ୍ଦ୍ର (ସୁବର୍ଣ୍ଣ) ନହି (ନୁହେଁ) । ହେ ଧୀର, ହେ ମାନୀ, ତୁମ କୀର୍ତ୍ତି ନିନ୍ଦେ ତାର ହାର ( ତାର—ଉଜ୍ଜ୍ୱଳ, ହାର—ମୁକ୍ତାମାଳ ) ପରି, "ହାରେମୁକ୍ତାବଳୀ" ଇତ୍ୟମରଃ । ହେ ଧୀର (ହେ ପଣ୍ଡିତ) ତୁମ କୀର୍ତ୍ତି ପାଖେ ତାର (ତାରକା) ହାର ମାନି ( ପରାସ୍ତହୁଏ ) ।

୬—ଯାନ ଜବ–(ଯାନ—ରଥ, ଜବ—ଚଞ୍ଚଳଗତି) ପେଖି ( ଚାହିଁ ଅପେକ୍ଷା କରି ) ପର—(ଶତ୍ରୁ) ଦର୍ପହୀନେ ( ଗର୍ବହୀନ ହୋଇ ) ପ୍ରତି ଦିନେ ତୁମ୍ଭ ପାଖେ ଭଜନୀୟ

ଧ ର ଚ ୟ ହ ର ଧୀ ର ପ୍ର ଶଂ ସା ର ।

↘ ↗ ↘ ↗ ↘ ↗ ↘ ↗ ↘ ↗ ↘

ସା ର ସା ୟ କ ର କ ର ଏ ସଂ ସା ର ।୮।

ସା ର ସ ର ଜି ତ ଗ ତି ହେ କୁ ମା ର ।

↗ ↘ ↗ ↘ ↗ ↘ ↗ ↘ ↗ ↘ ↗

ମା ର ପ ର ସ ତ ଅ ତି ସୁ କୁ ମା ର ।୯।

---

ସୁଖ ପାଏ–(ତୁମ୍ଭକୁ ଭଜି–ଅଧୀନ ଭବେ ସେବା–କରି–ସୁଖ ପାଏ ) ଅନ୍ୟ ପକ୍ଷେ–ପର (ଶ୍ରେଷ୍ଠ) ଦର୍ପହୀନ ( ଗର୍ବହୀନ) ତୁମଠାରେ ଯାନ ଜ ବ (ଝାନଜୀବନ, ରହିବାରେ ଅତି ପ୍ରୟୋଜନ ଯେଉଁ ଯବ–ଶସ୍ୟାଦିମାନେ ) ତାକୁ ଅପେକ୍ଷି (ଅଛିବୋଲି ବିଗ୍ଭରି ) ତୁମକୁ ଭଜନୀୟ କରିବାରୁ ( ତୁମକୁ ଭଜିବାରୁ ) ପ୍ରତି ଦୀନେ ( ପ୍ରତ୍ୟେକ ଦରିଦ୍ର ଲୋକ) ସୁଖ ପାଏ ।

୭–ଅଷ୍ଟମ ଓ ନବମ ଛାନ୍ଦରେ ପ୍ରାନ୍ତ ଯମକ, ଶୃଙ୍ଖଳା ଓ ଗୋମୂତ୍ର ଛନ୍ଦ ତିନୋଟିଯାକ ଅଛି ।

୮–୯–ଚଳ ଉପର ପଦ ମାନଙ୍କଶେ ଶେଷରୁ ସଂସାର ଓ କୁମାର ଥିବାରୁ ପଦ ଦୁଇଟି ପ୍ରାନ୍ତ ଯମକରେ ଅଛି । ଦୁଇଟି ପଦର ପଦମାନଙ୍କୁ ଅକ୍ଷର ଭିନ୍ନ ଭିନ୍ନ କରି ଲେଖି ପ୍ରଥମ ପାଦର ପ୍ରଥମ ଦ୍ୱିତୀୟ ପାଦର ଦ୍ୱିତୀୟ ପୁଣି ପ୍ରଥମ ପାଦର ତୃତୀୟ ଓ ଦ୍ୱିତୀୟ ପାଦର ଚତୁର୍ଥ ଇତ୍ୟାଦି ଶେଷ ପର୍ଯ୍ୟନ୍ତ ପଢିଗଲେ ପ୍ରଥମ ପାଦ ସଙ୍ଗେ ସମାନ ମିଳିଯିବ । ଏହିପରି ବଙ୍କାରେ ପଢ଼ିଗଲେ ଯେଉଁଠାରେ ପାଦ ମିଳିଯାଏ ସେଠାରେ ଗୋମୂତ୍ର ଛନ୍ଦ ହୁଏ ।

ଏହି ଗୋମୁତ୍ରିକା ବନ୍ଧ ଦ୍ୱିତୀୟ ପାଦ ଆଡ଼ୁ ଉପରକୁ ମଧ୍ୟ ହେଲେ ଦୁଇଟି ଗୋମୁତ୍ର ମିଶି ଶିକୁଳୀ ପରି ହେବାରୁ ଶୃଙ୍ଖଳା ବନ୍ଧ କୁହାଯାଏ । ସେଥିରେ ଦ୍ୱିତୀୟ ପାଦର ପ୍ରଥମ,ପ୍ରଥମର ଦ୍ୱିତୀୟ, ଦ୍ୱିତୀୟର ତୃତୀୟ, ପ୍ରଥମର ଚତୁର୍ଥ ଇତ୍ୟାଦି ଶେଷ ପର୍ଯ୍ୟନ୍ତ ପଢିଯିବାକୁ ହୁଏ ।

ଅର୍ଥ–ହେ ଦର ଚୟହର ( ଭୟ ସମୂହର ହରଣ କର୍ତ୍ତା ) ଧୀର–ପ୍ରଶଂସାର (ପ୍ରଶଂସାରେ ମଧ୍ୟ ଧୀର )–ନିଜ ପ୍ରଶଂସା ଶୁଣି ଅଧୀର ନୁହଁ । ଏ ସଂସାରରେ ସାର ସାୟକର ( ଶ୍ରେଷ୍ଠ ଶରର) କର (ହାତ) ଯାହାର ଏପରି ଯେ ତୁମେ । ହେ କୁମାର ତମେ ସାର (ଶ୍ରେଷ୍ଠ) ସର ( ଗତି କରିବା ଲୋକର ) ଯେଉଁ

ହଟ ଦେଖାଉ ଅଛନ୍ତି ନଟ ଚହିଁ । ଚଢ଼ି ବଂଶ ଶଳାକାରେ ଢୋଲ ବାଇ[୩] । ୧୦ ।
ନାଟ କରୁ ଅଛନ୍ତି ଗଣିକା ଆଳୀ । ଗୀତ ଗାଉ ଅଛନ୍ତି ଗାୟକେ[୪] ମିଳି । ୧୧ ।
ଗଜ ଅଶ୍ୱ ରତନ ବସନ ମାନ । ମୂଲ୍ୟ କରୁଛନ୍ତି ଜ୍ଞାନ ଶୀଳ ଜନ । ୧୨ ।
ଗଜାମାନେ ଗତ[୫] ଯୁଦ୍ଧ କଥା ଭଷି । କରୁଛନ୍ତି ସାଧନ ପଦାତି ଆସି । ୧୩ ।
ବସନ୍ତକ ମୁଖ ଗୁହିଁ ପରିହାସେ । ଏହି ସମୟରେ ଗୁଣନିଧି ଭଷେ । ୧୪ ।
ତୁମ୍ଭ କନ୍ୟା ଲଭ ହେଲ ଦେଶାନ୍ତରେ[୬] । କିଛି ଅପୂର୍ବ ପଦାର୍ଥ ଏ ଉତ୍ତାରେ । ୧୫ ।
ଯୁବରାଜ ଛାମୁରେ ନ କଲ ଭେଟି । ଶୁଣି ସଲଜ୍ଜ[୭] ହୋଇ ସେ ବେଗେ ଉଠି । ୧୬ ।
ନିଜ ରମଣୀ ପାଖରୁ ନେଇ କୀର । ଦେଲ ପଢ଼ା ଶୁଣି ସର୍ବେ ତୋଷଭର । ୧୭ ।
ଏହି କାଳେ ଜଣାଇଲେ ବେତ୍ରକରେ । ଆସି ବୋଇତୁଆଳେକ[୮] ଅଛି ଦ୍ୱାରେ । ୧୮ ।
ବୋଲେ ସିଂହଳ ଦ୍ୱୀପୁଁ ଆସିଛି ମୁହିଁ । ଇଛା ମୋର ଯୁବରାଜ ଭେଟପାଇଁ । ୧୯ ।
ଶୁଣି ନୃପ ସୁତ କଲ ସୀଉକାର । ଆଣି ଛାମୁରେ ଭେଟାଇ ପ୍ରତିହାର । ୨୦ ।
ଶିରେ କର ଦେଇ ଭେଟେ ଏତେ ଦ୍ରବ୍ୟ । ଦେଲ ପ୍ରମୋଦ ଚିତ୍ତରେ ସେ ସାଧବ । ୨୧ ।

---

ପାଠାନ୍ତର—୩, ବାହି । ୪, ଗୁଣିକେ । ୫, ଗଜ । ୬, ଦ୍ୱୀପାନ୍ତରେ । ୭, ଲଜ୍ଜିତ ।
୮, ବୋଇତ ।

---

ଗତି ତାକୁ ଜିତ୍ରି(ଜିଣିବାର) ଭଳି ଅଟ । ତୁମେ ମାର (କନ୍ଦର୍ପ) ତାଠାରୁ ପର (ଶ୍ରେଷ୍ଠ)—ଏକଥା ସତ । କାହିଁକି ନ' ତୁମେ ଅତି ସୁକୁମାର ( ସୁନ୍ଦର ) ।

୧୦—ନଟ—ନାଟୁଆକେଳା; ବଂଶ ଶଳାକା—ବାଉଁଶଖଣ୍ଡ; ବାଇ—ବଜାଇ ।

୧୧—ଗଣିକା ଆଳୀ—ବେଶ୍ୟା ମାନେ ।

୧୨—ହାତୀ, ଘୋଡ଼ା, ରତ୍ନ, ଲୁଗା ସବୁ ଜ୍ଞାନ ଶୀଳ (ଜାଣିବାର) ଲୋକେ ମୂଲ୍ୟ କରୁଛନ୍ତି ।

୧୩—ପଦାତି—ପାଦରେ ଗ୍ଲି ଯେଉଁମାନେ ଯୁଦ୍ଧ କରନ୍ତି; ଏଠାରେ ପାଇକ; ସାଧନ କରୁଛନ୍ତି—ଖେଳ ଦେଖାଉଛନ୍ତି ।

୧୪—୧୫—ବସନ୍ତକ ଓ ଗୁଣନିଧି ଚନ୍ଦ୍ରଭନୁଙ୍କର ଦୁଇମିତ । ବସନ୍ତକ ନିକଟରେ ଅନ୍ୟ ଦେଶରେ ବିଭ ହୋଇଥିଲ । ସେଥିପାଇଁ ଗୁଣନିଧି ଥଟାକଲ ।

୧୭—ନିଜ ରମଣୀ ପାଖରୁ—ଆପଣା ଭର୍ଯ୍ୟା ପାଖରୁ; କୀର—ଶୁଆ; ଶୁଆ ପଢାଶୁଣି ସମସ୍ତେ ସନ୍ତୋଷ ହେଲେ ।

୧୮—ବେତ୍ରକରେ—ବେତ ହାତରେ ଧରିଥିବା ଛାଟିଆ ବା ଦ୍ୱାରୀ । ବୋଇତୁଆଳେକ—ଜଣେ ଜାହାଜିଆ ।

୨୦—ପ୍ରତିହାର—ପଢ଼ିହାରୀ । ଭେଟାଇ—ଭେଟାଇଲ ।

୨୧—ଶିରେ କର ଦେଇ—ନମସ୍କାର କରି; ଭେଟେ—ଭେଟି ନିମନ୍ତେ; ସାଧବ—ବୋଇତୁଆଳ ।

ମେଷ ଚକ୍ଷୁ ନୀଳା ବ୍ରହ୍ମ ଜାତି ହୀର । ତାର ମୁକୁତା କୁକୁଟ ଡ଼ିମ୍ବ ପର । ୨୨ ।
ଅଛି ସୁମାଣିକ୍ୟ ପଦ୍ମରାଗ ଜାତି । ଅଷ୍ଟବକ୍ର ପ୍ରବାଳ ହିଁ ପନ୍ତି ପନ୍ତି । ୨୩ ।
ଚନ୍ଦ୍ରକାନ୍ତ ପାଷାଣ ନୀଳେନ୍ଦ୍ର ମଣି । ଲକ୍ଷ୍ମୀନାରାୟଣ ଶୀଳା ନୋହେ ଗଣି । ୨୪ ।
ଅଗ୍ରୁ ଚନ୍ଦନ^୯ ଅତର ଶ୍ରୀକର୍ପୂର । ଜଳୁଁ ପାତଳ ଚୂଆ ପନୀର ନୀର । ୨୫ ।
ସମରଜି ଜୁଆଦ ଜାହ୍ନବୀ ଜଳ । ମନୋହର ବଂଶପର୍ତ୍ତି ହରିତାଳ । ୨୬ ।
ରୌପ୍ୟ ଇକ୍ଷ୍ୱାକୁ ଫୁଲ ତୁଲରେ ତହିଁ । ଜମ୍ବୁନଦ ବିନା ଆନ ହେମ ନାହିଁ । ୨୭ ।
ମଣି ପଦରେ ମିହିର ମଣି ଲେଖ । ଦନ୍ତେ ଦନ୍ତୀଦନ୍ତ ନଖେ ବ୍ୟାଘ୍ର ନଖ । ୨୮ ।

---

ପାଠାନ୍ତର—୯, ଅଗୁରୁ ଚନ୍ଦନ ।

---

୨୨—ମେଷ ଚକ୍ଷୁ ନୀଳା—(ମେଣ୍ଢା ଆଖିପରି ଉଜ୍ଜ୍ୱଳ ସେହି ନାମର ନୀଳମଣି ) ସବୁଠାରୁ ଭଲ ନୀଳା; ବ୍ରହ୍ମଜାତି ହିରା, ହିରାରେ ଶ୍ରେଷ୍ଠ । ତାର ( ଉଜ୍ଜ୍ୱଳ ) କୁକୁଡ଼ା ଡ଼ିମ୍ବପରି ବଡ଼ ବଡ଼ ମୁକ୍ତା ।

୨୩—ପଦ୍ମରାଗ ଜାତିର ଉତ୍ତମ ମାଣିକ୍ୟ (ଲାଲମଣି)—ପଦ୍ମରାଗ ( ରକ୍ତପଦ୍ମ ପରି ରାଗ କାନ୍ତି ଯାହାର ) ଅଷ୍ଟବକ୍ର ପ୍ରବାଳ—ପୋହଳା ସମୁଦ୍ର ଭିତରେ ଏକ ପ୍ରକାର ଲତା ପରି ବଢେ । ଭଲ ପୋହଳା ଗଣ୍ଠି ଗଣ୍ଠିଆ ହୋଇ ଡାଳି ପରି ବଙ୍କା ହୋଇଥାଏ । ଅଷ୍ଟବକ୍ର—ଆଠବାଙ୍କିଆ, ପନ୍ତି ପନ୍ତି—ଧାଡ଼ି ଧାଡ଼ି ଅନେକ ।

୨୪—ଚନ୍ଦ୍ରକାନ୍ତ ପାଷାଣ—ଚନ୍ଦ୍ରକାନ୍ତ ମଣି; ନୀଳେନ୍ଦ୍ର—ଇନ୍ଦ୍ରନୀଳ ମଣି, ସାଗୁଆ ମଣିବିଶେଷ; ଲକ୍ଷ୍ମୀ ନାରାୟଣ ଶୀଳା—ଶାଳଗ୍ରାମ;

୨୫—ଅଗ୍ରୁ—ଅଗୁରୁ ; ଶ୍ରୀ କର୍ପୂର—ସଚାକର୍ପୂର, ଭେସର ନୁହେଁ । ଜଳୁଁ ପାତଳ ( ପାଣିରୁ ଆଉରି ପାତଳ ) ଚୂଆ ( ଫୁଣାଅର୍କ ), ପନୀର ନୀର—ବାସନା ପାଣି; ସମ୍ଭବତଃ ଏସେନ୍‌ସ୍‌ ( ଉପେନ୍ଦ୍ରଭଞ୍ଜଙ୍କ କାଳକୁ ଏସେନ୍‌ସ ଏ ଦେଶରେ ଚଳୁଥିବାର ଅସମ୍ଭବ ନୁହେଁ )

୨୬—ସମରଜି ଜୁଆଦ—ସମ୍ରାଟ ଉଚିତ ଜୁଆଦ ନାମକ ଧାତୁ, ( ଶୀଳାଜତୁ ହୋଇପାରେ ) ଜାହ୍ନବୀଜଳ (ଗଙ୍ଗାଜଳ); ବଂଶପତ୍ରୀ ନାମକ ହରିତାଳ ( ପାଚିଲା ବାଉଁଶ ପତ୍ରପରି ପତଳା ଓ ହଳଦିଆ ହରିତାଳ ଖୁବଭଲ ) ।

୨୭—ଇକ୍ଷ୍ୱାକୁ ( ଲାଉ ) ଫୁଲ ପରି ରୌପ୍ୟ ( ରୂପା ) ଜମ୍ବୁନଦ ହେମ ସବୁଠାରୁ ଜାତିଆସୁନା ।

୨୮—ମିହିର ମଣି—ସୂର୍ଯ୍ୟକାନ୍ତ ମଣି; ଦନ୍ତୀଦନ୍ତ—ହାତୀଦାନ୍ତ ।

ଚର୍ମ ଆସନରେ ସାର ବୋଲିଦାର । ଚର୍ମ ଆଢେଣୀ ଖଡ଼ଗ ଚର୍ମ ସାର । ୨୯ ।
ଭନା ତରବାରୀ ବୁନ୍ଦି ଯମ ଦର । ଶଙ୍ଖ ଦକ୍ଷିଣା ବର୍ତ୍ତକ ଶୁଦ୍ଧ ତର । ୩୦ ।
ଏକ ମୁଖୀ ରୁଦ୍ରାକ୍ଷରେ ସୁଶୋଭନ । ଗୁରୁ କନକ ମୃଗ ଚଉଁରୀ ମାନ । ୩୧ ।
ଶୁଭ୍ର କାକତ ଲହୁରି ଦେଶ ଜାତ । ବାସ କାଞ୍ଚନ ନୀଳା ଅପରିମିତ । ୩୨ ।
ସିନ୍ଧୁ ଜାତି ହୟ ଭରବାହ ଖର । ବଜ୍ର ଜାତି ଗଜ ପାଟ ଭଲି କୀର । ୩୩ ।
ନେପାଳିକା ମୂଷିକା ସାଳିଆ ଗୁରୁ । ଲବଙ୍ଗର ଲତା ଜାତିଫଳ ତରୁ । ୩୪ ।
ଚକୋରକ ଦିନ ଜ୍ଞାତା ପାରବତ । କଳ ପେଡ଼ା ଶୂନ୍ୟ ଖୁରୀ ସୁରଞ୍ଜିତ । ୩୫ ।

---

୨୯–୩୦–ବୋଲିଦାର ନାମକ ଚମଡ଼ା ବା ପଶମରେ ତିଆରି ଆସନ । ଚର୍ମ ଆଢେଣୀ –ଢାଲ, ଖଡ୍‌ଗଚର୍ମ–ଗଣ୍ଡାଚର୍ମ; ଭନା ଦେଶ ଜାତ ତରବାରୀ ( ଖଣ୍ଡା ); ବୁନ୍ଦିର ଯମଦର–ବୁନ୍ଦିଦେଶର ଯମଦାଢ କଟାରୀ; ଦକ୍ଷିଣା ବର୍ତ୍ତକ ଶଙ୍ଖ ସବୁଠାରୁ ଶୁଦ୍ଧ; ସାଧାରଣତଃ ଶଙ୍ଖର ମୋଡ଼ା ବାଁ ଆଡ଼କୁ ହୋଇଥାଏ । ଡ଼ାହାଣ ମୋଡ଼ ଶଙ୍ଖ ମିଳିବା ବଡ଼ କଠିନ ।

୩୧–ରୁଦ୍ରାକ୍ଷ ସାଧାରଣତଃ ତିନି ମୁଖୀ ହୁଏ । ଏକ ମୁଖୀ ରୁଦ୍ରାକ୍ଷ ଭାଗ୍ୟରେ ମିଳେ । ଚଉଁରୀ–ଭ୍ରମର ।

୩୨–ଲହୁରି ଦେଶ ଜାତ ଶୁଭ୍ର କାକତ–ଧଳା କାଗଜ ଲାହୋର ଦେଶ ତିଆରି । ଉପେନ୍ଦ୍ରଭଞ୍ଜଙ୍କ ସମୟରେ ଧଳା କାଗଜ ଏଦେଶରେ ଦୁର୍ଲଭ ଥିଲା । କାଞ୍ଚନ ( ହଳଦିଆ ) ନୀଳା ( ନେଳିଆ ) ବାସ ( ଲୁଗା ) ।

୩୩–ସିନ୍ଧୁ ଦେଶ ହୟ ( ଘୋଡ଼ା ) ସବୁଠାରୁ ଭଲ; ଭର ବାହ ଖର(ଗଧ) ଏଠାରେ ଖଚର ବା ଅଶ୍ୱତର ବୁଝିବାକୁ ହେବ । କାରଣ ସେମାନେ କେବଳ ଭର ବୋହିବା ନିମନ୍ତେ ପର୍ବତ ଭୂମିରେ ଲାଗନ୍ତି । ଗ୍ୱରି ଜାତି ମଧ୍ୟରେ ବଜ୍ର ଜାତି ଗଜ ( ହାତୀ ) ପ୍ରଧାନ; ପାଟଭଳି କୀର–ନାୟିକା ଶୁଆ ।

୩୪–ନେପାଳି ମୂଷା, ଶାଳିଆ ( ଶିଆଳିଆ ) ପତନୀ; ଲବଙ୍ଗର ଲତା ( ଗଛ ) ଜାତିଫଳ ( ଜାଇଫଳ ) ତରୁ ( ଗଛ ) ।

୩୫–ଚକୋରକ–ସୁନ୍ଦର ଚକ୍ରବାକ ପକ୍ଷୀ, ଦିନଜ୍ଞାତା ପାରବତ–ପୂର୍ବେ ଦିନ ଜାଣିବା ପାଇଁ ପାର ପୋଷୁ ଥିଲେ । କଳ ପେଡ଼ା–କଳରେ ଫିଟୁଥିବା ପଡୁଥିବା ପେଡ଼ି ବା ପେଟେଗ ; ଶୂନ୍ୟଖୁରୀ–ଘଣ୍ଟା ଯାହା ମନକୁ ବାଜେ । ଏହି ପେଡ଼ା, ଖୁରୀ ସୁରଞ୍ଜିତ ( ସୁନ୍ଦର ଚିତ୍ରରେ ଚିତିତ୍ର ) ହୋଇଥିଲା ।

ଲୌହ ଚୁମ୍ବକ ପରଶୁଗ୍ରାବ ଯହିଁ । ଦାସୀ ନେତ ଗଉରୀ ବେତ୍ରରେ ଶୋହି । ୩୬ ।
ଶୃଙ୍ଗ କମାଣ ତୀରେ ଘାତକ ପତ୍ର । ଲଗି କି ବିଚିତ୍ର ବର୍ଣ୍ଣ କରେ ନେତ୍ର । ୩୭ ।
ମାନଦରି ସାୟକ ରତନ ଫରୀ । ଅଛି ରୋଗଣ ବନକେ ଚିତ୍ର କରି । ୩୮ ।
ଦେଖି ଦିବ୍ୟ ପଦାର୍ଥ ସମ୍ମୋହନରେ । କଲେ ସାଧୁକୁ ପ୍ରଶଂସା ସୁମନରେ । ୩୯ ।
ଏକ ଦେଶରେ ନ ମିଳେ ବିଚାରିଲେ । କେଉଁ ଦେଶରୁ ଆଗତ ପଚାରିଲେ । ୪୦ ।
ସେ ବୋଇଲା ସିଂହଳ ଦ୍ୱୀପର ମୁହିଁ । ଏ ଦେଶକୁ ଆସିଛି ବାଣିଜ୍ୟ ପାଇଁ । ୪୧ ।
ଯେହୁ ଲାବଣ୍ୟବତୀ ଜନମ ସ୍ଥାନ । ତହିଁ ଅପୂର୍ବ ବୋଲିଣ କିସ ଘେନ[୧୦] । ୪୨
ଲକ୍ଷ୍ମୀ ପରି ପୂରିତ ସେ ସବୁକାଳେ । ଏବେ ଅଧିକ ରାଜକୁମାରୀ ବଳେ । ୪୩ ।
ହେଉ ନାହିଁ ଯେ ଭରସା ତାହାଙ୍କରି । ଏହା କହିବାକୁ ଛନ୍ତି ଅନୁସରି । ୪୪ ।
ହରି ଉତ୍ସଙ୍ଗ ସଦନ ମୋର ଭୃଷ୍ଟ । ଯେହୁ ତାଙ୍କୁ ନ ବରିବୁ ଏ ମୋ ପୃଷ୍ଟ ୪୫ ।

---

ପାଠାନ୍ତର—୧୦, ଅପୂର୍ବ କେଉଁ ଦ୍ରବ୍ୟମାନ ।

---

୩୬—ଚୁମ୍ବକ ଲୌହ ( ଲୁହା ) ଅନ୍ୟସବୁ ଲୁହାକୁ ଆପଣା ଆଡ଼କୁ ଟାଣି ପକାଏ; ପରଶୁଗ୍ରାବ ( ପଥର ) ଲଗାଇ ଦେଲେ ସବୁ ଧାତୁ ସୁନା ହୋଇଯାଏ ବୋଲି ପ୍ରବାଦ ଅଛି । ଦାସୀ ନେତ ଗଉରୀ ବେତ ବୋଲି ଲୁଗା ଓ ବେତ ଭେଟି ସାଙ୍ଗରେ ଥାଏ ।

୩୭—ଶୃଙ୍ଗ କମାଣ—ଶିଙ୍ଗରେ ତିଆରି ହୋଇଥିବା ଧନୁ; ଘାତକ ପତ୍ର— ( ଘାତକ ଚଢେଇର ପର, ପକ୍ଷ ) ତୀରରେ ( ଶରରେ ) କି ଲାଗି ବିଚିତ୍ର (ସୁନ୍ଦର) ।

୩୮—ମାନଦରି ନାମକ ସାୟକ ( ଶର ) ରତନ ଫରୀ ( ରତ୍ନବସା ଛୋଟ ଢାଲ ) ରୋଗଣ—[ ଚତୁର୍ଥ ଛାନ୍ଦ : ୩୯ ପଦ ଟୀକା ଦେଖ ] ।

୩୯—ସମ୍ମୋହନରେ—ଅତ୍ୟନ୍ତ ମୁଗ୍ଧ ହୋଇ । ସୁମନରେ—ଭଲ ମନରେ, ପ୍ରସନ୍ନ ହୋଇ ।

୪୦—ଏସବୁ ଜିନିଷ ଏକା ଦେଶରେ ମିଳେ ନାହିଁ; ଏଣୁ ସେ ସାଧୁ ( ସାଧବ ବା ବଣିକ ) କେଉଁ କେଉଁ ଦେଶରୁ ଆସିଛି ଜାଣି ପାରିଲେ ନାହିଁ ।

୪୩—ଲକ୍ଷ୍ମୀ ପରି ପରିତ—ଧନପୂର୍ଣ୍ଣ, ରାଜକୁମାରୀ ବଳେ—ରାଜକୁମାରୀ ହେତୁରୁ ଲକ୍ଷ୍ମୀରେ ପୂରିତ ଶ୍ଳେଷାର୍ଥ ମଧ୍ୟ ଅଛି ।

୪୪—ତାହାଙ୍କରି—ଲକ୍ଷ୍ମୀଙ୍କର ; ଲାବଣ୍ୟବତୀକୁ ଅନୁସରିଛନ୍ତି ।

୪୫—ହରି ( ବିଷ୍ଣୁ ) ତାଙ୍କର ଉତ୍ସଙ୍ଗ ( କୋଳ ) ସେଠାରେ ମୋର ଯେ ସଦନ ( ସ୍ଥାନ ) ପୃଷ୍ଟ—କହିବାର କଥା; ।

ଏ ବଚନ ଶ୍ରବଣେ ସେ ଘରି ମିଛେ । ପରସ୍ପରେ ଠଗ ଠରି ହେଲେ ନେଛେ । ୪୬ ।
ମନ୍ତ୍ରୀ ସୁତ ବୋଇଲା ଭୃତ୍ୟକୁ ଚାହିଁ । ଦିନ କେତେ ଭେଗ ହୋ ପଗ୍ଭର ଯାଇଁ । ୪୭ ।
ଏ ବଚନକୁ ଡ଼ାକିଲା ପ୍ରତିହାରୀ । ହୁଅ ସମସ୍ତେ ମେଲାଣି ନିଜପୁରୀ । ୪୮ ।
ତାହା ଡ଼ାକ ପ୍ରମାଣେ ନିର୍ଜନ ସଭା । ପୁଛେ ସାଧୁତେ ନୃପଜ ହୋଇ ଲୋଭା । ୪୯ ।
ତୁମ୍ଭେ ଯାହା କହିଲ ହେ ଅଲୋକିତ । ସତେ ସୁନ୍ଦରୀ ଏମନ୍ତ ମଞ୍ଚେ ଜାତ । ୫୦ ।
ସେ ବୋଇଲା ଆମ୍ଭ ପୁରେ ଏତେ କଥା । ନାହିଁ ପ୍ରଥମ ପଦରେ ଘେନ ମିଥ୍ୟା । ୫୧ ।
ପର ଦ୍ରବ୍ୟ ପରସ୍ତିରୀ ଗ୍ରହଣକୁ[୧୧] । ଲେଖୁ ଶୁଭ କରି ତହୁଁ ମରଣକୁ । ୫୨ ।
ନାହିଁ ଖଳ ଦୁର୍ବଳ ନିର୍ଧନ ଜନ । ଶୁଣିଲାର ପ୍ରସଙ୍ଗ ନ କହୁ ପୁଣ । ୫୩ ।
ଦୂତ କବି ଭଟ ତିନି ଜଣୁ ଜଣେ । ନୋହୁଁ ଅଧିକ କହିବୁଁ କି କାରଣେ । ୫୪ ।
ଯାହା ସମେ ବ୍ରହ୍ମାଣ୍ଡ ଉଦରେ ବର । ନାହିଁ ଜଳିଗଲା ଦିନ ପଞ୍ଚଶର । ୫୫ ।

---

ପାଠାନ୍ତର—୧୧, ଗ୍ରହଣକୁ ।

---

୪୭—ଦିନ କେତେ ହେଲାଣି ବୋଲି ଗ୍ଭକରକୁ ପଗ୍ଭରିବାରୁ, ପ୍ରତିହାରୀ ଠାରରେ ବୁଝି ପାରିଲା, ଚନ୍ଦ୍ରଭାନୁ ଏକୁଟିଆରେ ସାଧୁତ ସଙ୍ଗେ କଥା ବାର୍ତ୍ତା ହେବାକୁ ଲୋଡୁଛନ୍ତି ।

୪୮—ନିଜପୁରୀ—ନିଜ ଘରକୁ ।

୪୯—ପ୍ରମାଣେ— ଅନୁସାରେ, ମୁତାବକ; ନୃପଜ—ଯୁବରାଜ ( ଚନ୍ଦ୍ରଭାନୁ ) ଲୋଭା—ଲୋଭେଇ ( ଉତ୍ସୁକ ) ହୋଇ ।

୫୦—ଅଲୋକିତ- ଆଶ୍ଚର୍ଯ୍ୟ, ଯାହା ଦେଖାନାହିଁ ।

୫୧—ଆମ୍ଭପୁରେ ( ସିଂହଳରେ ) ଏତେ କଥା—ତଳେ କହୁଥିବା କଥାମାନ—ନିଶ୍ଚୟରେ ଦେଖାଯାଏ । ସେହି କଥା ମାନଙ୍କ ମଧ୍ୟରେ ପ୍ରଥମ ପଦରେ ( ପ୍ରଥମ କଥାରେ ) ଘେନ ( ଜାଣ ) ମିଥ୍ୟା ନାହିଁ । ମିଥ୍ୟା ବୋଲି ସିଂହଳରେ କିଛିନାହିଁ ।

୫୨—ତାପରେ ପରସ୍ତ୍ରୀ ପରଦ୍ରବ୍ୟ ନେବାଠାରୁ ଆମେ ମରଣକୁ ଭଲ ବିଗ୍ଭରୁଁ ।

୫୩—ସିଂହଳରେ ଖଳ ( ଦୁର୍ଜନ ) । ଶୁଣିଲାର ପ୍ରସଙ୍ଗ ( କଥା ) ପୁଣ ( ଆଉ କାହା ଆଗେ ) କହୁନାହିଁ— ବିଶ୍ୱାସ ରଖିବା ଆମର ପ୍ରକୃତି ।

୫୪—ଦୂତ, କବି, ଭଟ ଏହିମାନେ କଥା ବାଢ଼ାଇ କହନ୍ତି । ମୁଁ ଦୂତ, କବି ବା ଭଟ ନୁହେଁ ।

୫୫—ବ୍ରହ୍ମାଣ୍ଡଉଦରେ— ( ବ୍ରହ୍ମାଣ୍ଡଭିତରେ ) ପଞ୍ଚଶର—( କନ୍ଦର୍ପ ) ଶିବଙ୍କ କୋପ ଅଗ୍ନିରେ ଜଳି ଗଲା ଦିନୁ ।

ତାକୁ ସମାନ ହେବାକୁ ଅଛି ଏହି । ଯାହା ଦର୍ପଣ ମଧ୍ୟରେ ଦିଶେ ସେହି । ୫୬ ।
ତାକୁ ଏରୂପେ ନିର୍ମାଣ କଲା ବିହି । କୀଟ କାଟୁ ଯେମନ୍ତ ଅକ୍ଷର ହୋଇ । ୫୭ ।
ଯେତେ କବି ବର୍ଣ୍ଣିଛନ୍ତି ଯେତେ ନାରୀ । ଠିକେ କହି ରମ୍ଭା ରତି ନୁହେଁ ସରି । ୫୮ ।
ବଡକରି ବୋଲନ୍ତି ଲାବଣ୍ୟ ବତୀ । ସେହି ଜନମ ଏବେ ହୋଇଛି କ୍ଷିତି । ୫୯ ।
ଯଥା ନ ଖାଇ ନଦେଖି ସୁଧାକାମ । ସର୍ବ ମତେ କହି ସ୍ୱାଦୁ ମନୋରମ । ୬୦ ।
ତଥା ଆଗୁ ଜାତ ହେବ ବୋଲି ଜେମା[୧୨] । ଖ୍ୟାତ ହୋଇଲା ଲବଣ୍ୟବତୀନାମା । ୬୧ ।
ହାସ ଅଧର ଗୁହିଁଲେ ଏ ସଂଶୟ । କରିଅଛି କାହା ଶୋଭ କେ ଉଦୟ । ୬୨ ।
ବାଳ ଅରୁଣ କି ସୁଧା ସ୍ନାନ କରି । ଅନୁରାଗ ହରଷ ମିଶିଲା ପରି । ୬୩ ।
କିବା ମାଣିକ୍ୟରୁ ହରୁ ମୋତି ଜ୍ୟୋତି । ଦିଶେ ସ୍ଫଟିକର କିବା ଦନ୍ତ ପନ୍ତି । ୬୪ ।

---

ପାଠାନ୍ତର—୧୨, ବାମା ।

---

୫୬—ତାରି ଦର୍ପଣ ପ୍ରତି ବିମ୍ବହିଁ ତା ସମାନ ।

୫୭—କୀଟ କାଟୁ କାଟୁ ଯେପରି ଅକ୍ଷରଟାଏ ହୋଇଯାଏ ବିହି ( ବିଧାତା ) ସେହିପରି ତିଆରି କରୁ କରୁ ନଜାଣି ଏପରି ଗୋଟିଏ ଅତି ସୁନ୍ଦର ଜିନିଷ ଲବଣ୍ୟବତୀ ବୋଲି ବାହାରି ପଡ଼ିଲା—କଥାରେ କହନ୍ତି, "ଉଇ କାଟୁ କାଟୁ ଶ୍ରୀ ହେଲା" ।

୫୮—ଠିକେ କହି—ଅନ୍ତରେ କହି ଦେଉଛି । ରମ୍ଭା ( ସ୍ୱର୍ଗବେଶ୍ୟା) ରତି ( କନ୍ଦର୍ପସ୍ତ୍ରୀ ) ଲବଣ୍ୟବତୀ ସଙ୍ଗେ ସମାନ ନୁହଁନ୍ତି ।

୫୯—କ୍ଷିତି—କ୍ଷିତିରେ ( ପୃଥିବୀରେ ) ।

୬୦—ଯେପରି ସୁଧା ( ଅମୃତ ) କେହି ଖାଇନାହିଁ ଅଥଚ କହନ୍ତି—ସବୁଠାରୁ ସ୍ୱାଦୁ; କାମ ( କନ୍ଦର୍ପ )କୁ କେହି ଦେଖି ନାହିଁ ଅଥଚ କହନ୍ତି—ସର୍ବ ମତେ ମନୋରମ ( ସୁନ୍ଦର ) ।

୬୨—ଅଧର ହେତୁ ତା ହସ ସୁନ୍ଦର ବା ହାସ ହେତୁ ଅଧର ସୁନ୍ଦର ଜାଣି ହେଉନାହିଁ ।

୬୩—ଅଧର ନାଲି, ହାସ ଧଳା ବୋଲି କବିମାନେ ବର୍ଣ୍ଣନା କରନ୍ତି । ବାଳ ଅରୁଣ—ସକାଳର ରଙ୍ଗ ସୂର୍ଯ୍ୟ ସୁଧାରେ ( ଅମୃତରେ ସ୍ନାନ କଲା ପରି ଦିଶେ ) । ସୁଧା ଧଳା ବୋଲି ସର୍ବତ୍ର ବର୍ଣ୍ଣନା କରଯାଏ । ଅନୁରାଗରେ ( ନୂତନ ପ୍ରୀତିରେ ) ହର୍ଷ ( ଆହ୍ଲାଦ ) ମିଶିଲା ପରି ମଧ୍ୟ ସେ ଅଧରରେ ହାସ ଦେଖାଯାଏ । ଅନୁରାଗ ନାଲି ଓ ହର୍ଷ ବା ଆହ୍ଲାଦ ଧଳା ବୋଲି ବର୍ଣ୍ଣନା କରଯାଏ ।

୬୪—ମାଣିକ୍ୟ ନାଲି, ମୋତି ଧଳା, ନାଲି ଓଠ ଭିତରୁ ଧଳା ଦାନ୍ତ ସେହି ପରି ଦିଶେ ।

ସେ ଅଧରେ ଶୋଭ ତାମ୍ବୁଳ ବୋଳ । କେ କାହାକୁ ରଙ୍ଗକଲ ହୋଏଗୋଳ । ୬୫ ।
ହା ହା ରଦନ ସେକାଳେ କି ସୁନ୍ଦର । ସିନ୍ଦୁରରେ ମାଜିଲ କି ଘନସାର । ୬୬ ।
ବୋଳ ଢୋକିବା ବେଳେ ଦିଶଇ ଗଳେ । ଫଗୁପିଚିକା ଯେମନ୍ତ କାଚ ନଳେ ।୬୭ ।
କଳେ ଥାଇ ପାନପିକ କି ମଞ୍ଜୁଳ । ପକ୍ୱ ନାଗରଙ୍ଗ ପ୍ରାୟ ଗଣ୍ଡସ୍ଥଳ । ୬୮ ।
ଅଙ୍ଗେ ଅଛି ନବପୁଷ୍ପ ନବପକ୍ଷୀ । ଏକ ଏକ ଅଙ୍ଗେ ଲାଖି ରହେ ଆଖି ।୬୯ ।
ଭିଆଇଛି ଛାଣି ଆଣି ଶୋଭସାର । ଜଗଜୟ ଜଙ୍ଗମ ମୂରତି ମାର । ୭୦ ।

---

୬୫—ତାମ୍ବୁଳ ବୋଳ—ପାନବୋଳ; ଗୋଳହୁଏ—ସନ୍ଦେହ ହୁଏ । ପାନବୋଳ ପରି ମଧ୍ୟ ତା ଓଠ ରଙ୍ଗ ।

୬୬—ସେ କାଳେ ( ପାନ ଖାଇଲ ବେଳେ )ରଦନ (ଦାନ୍ତ) ଘନସାର ( କର୍ପୂରକୁ ) ସିନ୍ଦୂରରେ ମାଜି ଦେଲ ପରି ଦିଶେ ।

୬୭—ବୋଳ—ପାନପିକ । ଅତ୍ୟନ୍ତ ଗୋରା ଓ ପତଳା ହୋଇ ଥିବାରୁ ଗଳାରେ ପାନ-ପିକ ଗଳି ପଡ଼ିବାର ବାହାରକୁ ଦେଖାଯାଏ ।

୬୮—ପକ୍ୱ ନାଗରଙ୍ଗ—ପାଚିଲ ନାରଙ୍ଗୀ ଭିତରର ନାଲି ପାନ, ଗାଲ ପତଳା ହେବାରୁ ବାହାରକୁ ଦେଖାଯାଏ ।

୬୯—ନବପୁଷ୍ପ, ମୁଖ—ପଦ୍ମ, ଅଧର—ବନ୍ଧୁଲି, ହାସ—କୁମୁଦ, ମଲ୍ଲୀକା, ବା-( ଦର୍ଭ )ଶଣ ( ଛଣପଟଫୁଲ ) ଦନ୍ତ—କୁନ୍ଦ, ନାସା—ତଳିଫୁଲ; ନେତ୍ର—ନୀଳୋତ୍ପଳ, ଅଙ୍ଗୁଳି—ଚମ୍ପା, ପଦତଳ—ସ୍ଥଳପଦ୍ମ ମନ୍ଦାର କିମ୍ବା ଦେହ—ଶିରିଷ କାନ୍ତି—କେତକୀରୁ ନଅଟି ବାଛି ନେବାକୁ ହେବ । ପାପୁଲି—ରକ୍ତପଦ୍ମ, ମୁଖର ଗନ୍ଧ—ଉତ୍ପଳ, ସ୍ତପଦ—ଅଶୋକ; ନବପକ୍ଷୀ—ଗତି—ଗଜହଂସ, ସ୍ତନ—ଚକ୍ରବାକ, କଣ୍ଠ—କପୋତ, ଆଖି ଖଞ୍ଜନ, କେଶ—ମୟୁର, ବଚନ—କୋକିଳ, ନାକ—ଶୁଆ, ଭ୍ରମରକୁ ପକ୍ଷୀ ବୋଲି ଧରି ରେମାବଳୀ ଡ଼ୋରା ଇତ୍ୟାଦିରେ ସେ ଅଛି ବୋଲି ଧରିନେଲେ ନବପକ୍ଷୀ ହେବା କଷ୍ଟ କଥା ନୁହେଁ ।

୭୦—ଶୋଭର ସାର ଯାକ ଛାଣି କରି ଆଣି ମାର ( କନ୍ଦର୍ପ ) ଜଗଜୟ ( ଜଗତକୁ ଜିଣିବା ପାଇଁ ) ଜଙ୍ଗମ ମୂର୍ତ୍ତି ( ଗ୍ଭଲୁଥିବା ମୂର୍ତ୍ତି ) ତିଆରି କରିଛି । ସାଧାର-ଣତଃ ତିଆରି ମୂର୍ତ୍ତି ଗ୍ଭଲେ ନାହିଁ । ସେଥିପାଇଁ ଜଙ୍ଗମ ଶବ୍ଦର ପ୍ରୟୋଗ ।

ଅଥ ମନ୍ମଥର ମନ ଭେଦି ଶର । ମରମକୁ ଭେଦି ବାରେ ମନୋହର । ୭୧ ।
ହର ପଥର ହେଲେ କାତର ଘୋଟି । ଘେନ ଏଥର ଯିବ ହୃଦୟ ଫୁଟି । ୭୨ ।
ରୂପ ଚୁମ୍ବକ ଶିଳର ମିତ୍ର କିଏ । ହୃଦୁ କାଢି ନେବ ମନ ଲୋହ ପ୍ରାୟେ । ୭୩ ।
ବରବରନା ବର୍ଣ୍ଣନା କରି ଯେତେ । ଉପମାଙ୍କ ଲଭ ତାହା ହାନି ତେତେ । ୭୪ ।
ଭବ ହାବ ଲୀଳା ବିଳାସାଦି ଚିନ୍ତ । ଯାହା ଅଙ୍ଗେ ହୋଇଛନ୍ତି ମୂର୍ତ୍ତିମନ୍ତ । ୭୫ ।

---

୭୧—ଅଥ ( ଅଥବା ) ଏ ଲବଣ୍ୟବତୀ ମନ୍ମଥ ( କନ୍ଦର୍ପର ) ମନ ଭେଦି ( ମନକୁ ଭେଦ କରିବା ପାଇଁ ) ମରମକୁ ( ହୃଦୟକୁ, ଭବସ୍ଥାନକୁ ) ଭେଦ କରିବାରେ ଯେପରିକି ଭବରେ ବୋଳା ହୋଇ ମନୋହର (ସୁନ୍ଦର) ହୋଇଛି ।

୭୨—ହର ( ମହାଦେବ ) କାଳେ ମନ୍ମଥ ଏ ବାଣ ବିନ୍ଧିବ ବୋଲି କାତର ଘୋଟି ( କାତର ହୋଇ ) ପଥର ହେଲେ । ତଥାପି ଘେନ ( ଜାଣ ) ଏଥର ତାଙ୍କ ହୃଦୟ ଫୁଟିଯିବ ।

୭୩—ଏ ରୂପ ଚୁମ୍ବକ ଶିଳ ( ଚୁମ୍ବକ ମଣି )ର ମିତ୍ର କି ? ଚୁମ୍ବକ ଲୁହାକୁ ଟାଣି ନେଲା-ପରି ଏ ମନକୁ ଟାଣି ନେଉଛି ।

୭୪—ବରବରନା—ଶ୍ରେଷ୍ଠ ବର୍ଣ୍ଣାକୁ ଯେତେ ଉପମା ଦେଇ ବର୍ଣ୍ଣନା କରିବ ତେତେ ଉପ-ମାଙ୍କର ଲଭ ହେବ ଏବଂ ଲବଣ୍ୟବତୀର କ୍ଷତି ହେବ । ଉପମାମାନେ ତା ସଙ୍ଗେ ତୁଳନାରେ ଆସି ସୁନ୍ଦର ହେବେ—ଏହାହିଁ ଭବ ।

୭୫—ହାବ, ଭବ, ଲୀଳା ବିଳାସ ପ୍ରଭୃତି କାହାରି କାହାରି ମତରେ ଅଠାଇଶ ଓ କାହାରି କାହାରି ମତରେ ଦଶ । ଏପରି ଅଳଙ୍କାର ଶାସ୍ତ୍ରରେ ବର୍ଣ୍ଣିତ ଅଛି । ଏମାନେ ଯୌବନରେ ସ୍ତ୍ରୀ ମାନଙ୍କର ସହଜ ଅଳଙ୍କାର ବୋଲି କୁହାଯାନ୍ତି ।— କାମର ପ୍ରଭବ ବା ଅଭିଳାଷାଦିରେ ଏ ସବୁ ଭବାହାବାଦି ଯୌବନର ଅଳଙ୍କାର ମାନେ ପ୍ରକାଶିତ ହୁଅନ୍ତି । ତହିଁ ମଧ୍ୟରୁ ଭବ୍, ହାବ, ଲୀଳା, ବିଳାସ ଏହି ଗ୍ଚରୋଟି କଥା ଅଳଙ୍କାର ଶାସ୍ତ୍ର ମତେ କୁହା ଯାଉଅଛି । ଏସବୁ କି ପ୍ରକାରର ଅଳଙ୍କାର ତାହା ସେଥିରୁ ଜଣା ପଡ଼ିବ

ଭବଃ—ବିକାରୈ ର୍ଦର୍ଶିତେ ଚିତ୍ତେ
ମନ୍ମଥୋ ଦୀପନୈ ସ୍ତଥା ।
ଅଥବା
ନିର୍ବିକାରତ୍ମକେ ଚିତ୍ତେ ଭବଃ ପ୍ରଥମ ବିକ୍ରିୟା
ଜାତାର୍ଥେ ବିକ୍ରିୟା କାଚିତ୍ ସ ଭବଃ କଥିତୋ ବୁଧୈଃ ।

ଅର୍ଥାତ ଏହି ଭବ ମନ୍ମଥ ଉଦ୍ଦୀପନାରେ ଭିତରେ ହୁଏ । ବାହାରେ କୌଣସି

ତାହା ଶୋଭ କହିଲେ ସରିବ କାହିଁ[୧୩] । ପୂର୍ବେ ନ ଥିଲ ନୋହିବ ଏବେ ନାହିଁ[୧୪] ।୭୬ ।
ରଜା କହିଛି ଜେମାକୁ କର ବର । ମୋର ମିତ୍ର ମନ୍ତ୍ରୀକି ହୋଇଛି ଭର । ୭୭ ।
କନ୍ୟା ଅନୁରୂପେ ଆଉ ବର ନାହିଁ । ମନ ପ୍ରଧାନ ବିଭକୁ ଅଛି ତହିଁ । ୭୮ ।
ଶୁଣି ମନ୍ତ୍ରୀସୁତ କଲ ଏ ଉତ୍ତର । ଆମ୍ଭ ନୃପସୁତ ତ ନୂତନ ମାର । ୭୯ ।

---

ପାଠାନ୍ତର—୧୩, ସରିବୋ ନୋହି । ୧୪, ଏବେ ନୋହିବ ନାହିଁ ।

---

ପ୍ରକାରେ ପ୍ରକାଶ ପାଇବା ଏହାର ପ୍ରବୃତ୍ତି ନୁହେଁ । ଏହି ଭବ **ସ୍ଥାୟୀ ଅସ୍ଥାୟୀ** ଭେଦରେ ପୁଣି ଦୁଇ ପ୍ରକାର ।

ଭବର ଉଦାହରଣ—ସ ଏବ ସୁରଭିଃ କାଳଃ, ସ ଏବ ମଳୟାନିଳଃ
ସୈବେୟ ମବଳା କିନ୍ତୁ ମନୋଽ ନ୍ୟଜିବ ଦୃଶ୍ୟତେ ।

ଅର୍ଥାତ୍ ପାରିପାର୍ଶ୍ୱିକ ଅବସ୍ଥାରେ କୌଣସି ପରିବର୍ତ୍ତନ ନ ହୋଇ କେବଳ ମଦନ ସର୍ନ୍ଦିପନରୁ ମନ ଅନ୍ୟ ପ୍ରକାର ଜଣା ପଡୁଛି । ଭବ ହେତୁରୁ ତାହା ହୋଇଛି । ଏହା ବାହାରର କୌଣସି କ୍ରିୟାରେ ପ୍ରକାଶ ପାଉନାହିଁ । ହାବ ପ୍ରଭୃତି କିନ୍ତୁ ବ୍ୟହାରର କଟାକ୍ଷାଦି କ୍ରିୟାରେ ପ୍ରକାଶ ପାଏ । ତାହା ଅନ୍ୟ ଜାଣି ପାରେ । ଭବ ପରି ତାହା ଗମ୍ଭୀର ନୁହେଁ ।

ହାବ—ସମ୍ଭୋଗ ଇଚ୍ଛା ପ୍ରକାଶକ କଟାକ୍ଷ ଗେମାଞ୍ଚାଦି ବିକାରରେ ପ୍ରକାଶ ପାଏ ।
ଭ୍ରୂନେତ୍ରାଦି ବିକାରୈସ୍ତୁ, ସମ୍ଭୋଗେଚ୍ଛା ପ୍ରକାଶକଃ
ଭବଏ ବାଳ୍ପସଂଲକ୍ଷ୍ୟ ବିକାରୋ ହାବ ଉଚ୍ୟତେ ।

ଲୀଳା—ବେଶ ଭୂଷଣ ପ୍ରଭୃତିରେ ପ୍ରିୟର ଅନୁକରଣ କରିବାରେ ଲୀଳା ପ୍ରକାଶ ପାଏ ।
ବେଶୈରବୌ ଭୂଷଣୈସ୍ତୁ, ବଗ୍ଭେଭିଃ ପ୍ରେମଭିସ୍ତଥା
ପ୍ରିୟାନୁ କାରିଣୀ ଖ୍ୟାତା ଲୀଳାପ୍ରୀତି ପ୍ରୟୋଜିତୈଃ ।

ବିଳାସ—କାମ ଚେଷ୍ଟା ଦେଖାଇ ହେବାହିଁ ବିଳାସ ।
ବିଳାସ—ସ୍ଥାନ ଯାନା ସନା ଦୌଚ ମୁଖ ନେତ୍ରାଦି ବିଭ୍ରମେ
ବିଶେପସ୍ତୁ ବିଳାସସ୍ୟାଦିଷ୍ଟ ସନ୍ଦର୍ଶନା ଦିଭିଃ ।

ଲାବଣ୍ୟବତୀର ଅଙ୍ଗରେ ଭବ, ହାବ, ଲୀଳା, ବିଳାସ ପ୍ରଭୃତି ସମସ୍ତେ ଯେପରି କି ମୂର୍ତ୍ତି ଧରିଛନ୍ତି ।

୭ —କନ୍ୟା ଅନୁରୂପେ—କନ୍ୟାକୁ ଯୋଗ୍ୟ; ପ୍ରଧାନ ବିଭକୁ—କୌଣସି ଯୁବରାଜଙ୍କୁ ବିଭ ହେବାକୁ, ଯେ କୌଣସି ସାଆନ୍ତ ପିଲକୁ ନୁହେଁ ।

୭୯—ନୂତନ ମାର—ନୂଆ ହୋଇ ଦେହ ପାଇଥିବା କନ୍ଦର୍ପ ପରି ।

ହୋଇବ କି କାର୍ଯ୍ୟ ଉଦଯୋଗ କଲେ । ଶୁଣି ଶୁକ ପଢ଼ି ଦେଲା ସେହିକାଳେ । ୮୦ ।
ଗୁଞ୍ଜ ତୁଳା ହୋଉଛି ସୁବର୍ଣ୍ଣ ତୁଲେ । କର୍ମସବୁ ଉଚ୍ଚ ନୀଚ ପାଅ ବଳେ[୧୫] । ୮୧ ।
ସୁଧା ପାନ କଲା ଗହୁ ଉପାୟରେ । ପ୍ରୀତି ହୋଇଅଛି ଚନ୍ଦ୍ର କୁମୁଦରେ । ୮୨ ।
ଶୁଣି କୁମାର ମଣି ଆଶ୍ଚର୍ଯ୍ୟ ଘେନି । ବୋଲେ ତୁହି ଦେଖିଛୁ କି ମେଧାବିନୀ । ୮୩ ।
କୀର କହିଲା ସେ ରସାଳସା[୧୬]ଯୋଷା । ଶିଶୁ କାଳରୁ ମୁହିଁ ତାହାଙ୍କ ପୋଷା । ୮୪ ।
ଶୁଣି ଚଞ୍ଚୁ ଚରଣକୁ ଧରି ତାର । ପୁଣି ଧଇଲା ବୋଇତିଆଳ କର । ୮୫ ।
ଘମା ନାମେ ଉଚ୍ଚାଟ ମୋହନ ଘର । ରୂପେ କି ଥିବ ନୋହୁଛି ସେ ଗୋଚର । ୮୬ ।

---

ପାଠାନ୍ତର—୧୫, କର୍ମ ଉଚ୍ଚ ନୀଚ ସବୁ ପାଅଭଲେ । ୧୬, ରସା ଭୂଷା ।

---

୮୦—ସାଧବ ସଙ୍ଗେ ଆସିଥିବା ଶୁକ ମନ୍ତ୍ରୀ ପୁଅର ଏକଥା ଶୁଣି ସେତିକି ବେଳକୁ ପଢ଼ି ଦେଲା । ଯାହା ପଢ଼ିଲା ତାହା ତଳେ କୁହା ଯାଉଛି ।

୮୧—୮୨—ତୁମେ କିଛି ଭୟ ନ କରି ଉଦ୍‌ଯୋଗ କର । ଉଦ୍‌ଯୋଗରେ ( କର୍ମବଳେ ) ସବୁ ଉଚ୍ଚ ନୀଚ ହୁଏ ଅର୍ଥାତ ଖାଲି ସୁନ୍ଦର ଅସୁନ୍ଦର ବଡ଼ ସାନରେ ଏ ସଂସାରରେ ଉଚ୍ଚ ନୀଚ ହୁଏ ନାହିଁ—ଏକଥା ପାଅ ( ବିଗ୍ରରକର ) । କିପରି କି ଗୁଞ୍ଜା (କାଇଁଚ) ପରା ହୀନ ବସ୍ତୁହୋଇ ସୁନା ସାଙ୍ଗରେ ତୁଳା (ଓଜନ) ହେଉଛି । ( ବଣିଆ ସୁନା ଓଜନ କରିବା ପାଇଁ କାଇଁଚକୁ ବଟକରା କରେ ) । ସେହିପରି ଗହୁ ଉପାୟରେ ( ଉଦ୍‌ଯୋଗରେ ) ଦେବତାଙ୍କ ଧାଡ଼ିରେ ଲୁଚି ବସି ହାତ ପତାଇ ଦେଇ ଅମୃତ ପିଇଗଲା । ପୁଣି ଦେଖ କାହିଁ ଚନ୍ଦ୍ର ଆକାଶରେ, କାହିଁ କୁମୁଦ ( କଇଁ ) ପୋଖରୀରେ । ତାଙ୍କ ମଧ୍ୟରେ ମଧ୍ୟ ପ୍ରୀତି ।

୮୩—କୁମାର ମଣି (ଚନ୍ଦ୍ରଭାନୁ) ଆଶ୍ଚର୍ଯ୍ୟ ହୋଇ କହିଲା, ହେ ଶୁଆ ତୁ ସେ ମେଧାବିନୀ । ( ଅତି ବୁଦ୍ଧିମତୀ ଲବଣ୍ୟବତୀକୁ ) ଦେଖିଛୁ କି ? କିମ୍ବା ମେଧାବିନୀ ଅର୍ଥରେ ଏଠାରେ ମେଧାବୀ ( ଶୁଆ ) ମଧ୍ୟ ହୋଇପାରେ । [ ଉପେନ୍ଦ୍ରଭଞ୍ଜରେ ଏପରି ଲିଙ୍ଗ ବ୍ୟତ୍ୟୟ ଅନ୍ୟତ୍ର ଅଛି । ]

୮୪—ରସାଳସା—ରସ ( କାମଭବ ହେତୁ ) ଅଳସା ( ଅଚଞ୍ଚଳ ), ଯୋଷା ( ସ୍ତ୍ରୀ ); କୀର—ଶୁଆ, ଶିଶୁ କାଳରୁ—ଗୁହ ଡ଼ିମ୍ବ ଦିନରୁ ।

୮୫—ଚଞ୍ଚୁ—ଥଣ୍ଡ, ଚରଣ—ଗୋଡ଼,

୮୬—ଘମାର ନାମ ମାତ୍ର ଶୁଣି ଉଚ୍ଚାଟ ( କାମୋଦ୍ରେକ ) ମୋହନ ( କାମରେ ଆମ ଜ୍ଞାନ ହରାଇବା ) ହେଉଛି । ଅର୍ଥାତ ଉଚ୍ଚାଟ ମୋହନ ଦୁହେଁ ସେହି ନାମରେ

ତୁମ୍ଭ ବଚନ ବସନ୍ତ ଋତୁ ହେଲା । ତାହା ଯୋଗୁଁ ଆଶାତରୁ ପଲ୍ଲବିଲା । ୮୭ ।
କଲେ ନିରାଶ ହୋଇ ଗ୍ରୀଷମ କାଳ । ତାକୁ ଜାଳିଦେବଟି ବିରହାନଳ । ୮୮ ।
ଶୁଣି ସେ ବୋଇଲେ ବୀର ହୁଅ ଥିର । ଆମ୍ଭ ମାନଙ୍କୁ ଘେନି ଉପାୟ କର । ୮୯ ।
ପରବେଶ ହେଲେ ପୁଷ୍ପକାଳ ସାର । ପିକ ନ ଲଭଇ କି କି ସହକାର । ୯୦ ।
ଏ ବଚନେ ଶାନ୍ତି ଲଭି ସେହୁ ପୁନଃ । ଖଡ଼ି ପକାଇ କଲେ ସଂକୁନ୍ୟମାନ[୧୭] । ୯୧ ।
ଶୁକ ସାଧୁ ତହିଁ ଅନୁକୂଳ କଲେ । ବିଜ୍ଞ ବ୍ରହ୍ମଗ୍ରରୀ ଜଣେ ସଙ୍ଗେ ନେଲେ । ୯୨ ।
ଶୂନ୍ୟେ ସେକାଳେ ଶୁଭ୍ର ଆତାୟୀ ଭ୍ରମେ । ଗଲା ଦକ୍ଷିଣେ ଦ୍ୱିଜ ଗୋମାୟୁ ବାମେ । ୯୩ ।
ପଛୁଁ ପବନ ବୋହିଲା ହୋଇ ସ୍ୱଚ୍ଛ । ଗୋପୀ ଧୀବରୀ ଡ଼ାକିଲେ ଦଧି ମାଛ । ୯୪ ।
ଆଶା ବଢ଼ିଲା ଶୁଭ ସୂଚକ ଜାଣି । ଛାନ୍ଦ ସମାପତ ତୋଷ ପୁରୁଷ ମଣି । ୯୫ ।

---

ପାଠାନ୍ତର—୧୭, ଶକୁନମାନ ।

---

ଘର କରିଛନ୍ତି । ଶୁଣି କରି ତ ଏପରି ରୂପ ଦେଖିଲେ ସେଥିରେ କଣ ଥିବ ଜଣାଯାଉ ନାହିଁ ।

୮୭—୮୮—ତୁମ କଥା ହେଲା ବସନ୍ତ ଋତୁ, ସେଥିରେ ଆମ ଆଶାରୂପ ଗଛ ଏବେ ପଲ୍ଲବିଲା । ତୁମେ ନିରାଶ କଲେ, ତୁମର ନିରାଶା କରିବାଟା ଗ୍ରୀଷ୍ମକାଳ ହୋଇ ବିରହାନଳରେ ( ବିଚ୍ଛେଦ ରୂପକ ନିଆଁରେ ) ସେ ଗଛକୁ ଜାଳି ଦେବ ।

୯୦—ପୁଷ୍ପକାଳ—ବସନ୍ତ ଋତୁ, ପିକ—କୋକିଳ, ସହକାର—ଆମ୍ବଗଛ, ନ ଲଭଇ କି କି—ଲଭେ ନାହିଁ କି; ( ଏଠାରେ ଗୋଟିଏ ନ ଅଧିକ ଅଛି । )

୯୧—ସକୁନ୍ୟମାନ—ଶୁଭ ବା ଅଶୁଭ ହେବା ଯହିଁରୁ ଜଣାଯାଏ ।

୯୩—୯୪—ଯାତ୍ରା କଲାବେଳେ ଶୁଭ ସଂକୁନମାନ ଦେଖାଗଲା । ଯଥା—ଶୂନ୍ୟେ(ଆକାଶରେ) ଶୁଭ୍ର ଆତାୟୀ ( ଶଙ୍ଖଚିଲ ) ଭ୍ରମେ (ଉଡ଼ିବୁଲେ), ଦକ୍ଷିଣେ ( ଡ଼ାହାଣପଟେ ) ଦ୍ୱିଜ (ବ୍ରାହ୍ମଣ) ବାମେ ( ବାଆଁପଟେ ) ଗୋମାୟୁ ( ଶିବା, ବିଲୁଆ )ଗଲା । " ବାମେ ଶବ, ଶିବା କୁମ୍ଭଃ ଦକ୍ଷିଣେ ଗୋ ମୃଗଦ୍ୱିଜାଃ " । ଏସବୁ ଶୁଭ 'ଶକୁନ' ବୋଲି ଲୋକେ କହନ୍ତି । ପଛରୁ ଅନୁକୂଳ ପବନ ବହିଲା; ଗୋପୀ ( ଗଉଡ଼ୁଣୀ ) 'ଦହି' ଓ ଧୀବରୀ ( କେଉଟୁଣୀ ) 'ମାଛ' ବୋଲି ଡ଼ାକିଲେ । ଏ ସବୁ ମଧ୍ୟ ଶୁଭ ସୂଚକ ।

ଲୀଳା ଗେହିତ ଶରୀର ଦରହାରୀ । ଶ୍ରୁତି–ନିସ୍ତାରକ କୀର୍ତ୍ତି ଖ୍ୟାତ. କାରୀ । ୯୬ ।
ମୀନ ମୂର୍ତ୍ତି ରଘୁପତି ଶ୍ରୀ ପୟର । ଭବେ ଉପଇନ୍ଦ୍ର ଭଞ୍ଜ ବୀରବର । ୯୭ ।

୯୬–୯୭–ମୀନ ମୂର୍ତ୍ତି ( ମତ୍ସ୍ୟାବତାର ) ରଘୁପତି ( ରାମଚନ୍ଦ୍ର ) ଦୁହିଙ୍କ ପକ୍ଷରେ ଅର୍ଥ ହେବ । ମୀନପକ୍ଷ–ଲୀଳାରେ(କୌଣସି ଅଭାବ ପୂରଣ କରିବା ଉଦ୍ଦେଶ୍ୟ ନଥାଇ ସ୍ୱତଃ ଯେଉଁ କାର୍ଯ୍ୟହୁଏ ତାକୁ ଲୀଳା କହନ୍ତି । ଅର୍ଥାତ ପ୍ରାକୃତିକ କ୍ରିୟା ତହିଁରେ) ଗେହିତ ( ଗେହିମାଛ ) ଅର୍ଥାତ ମତ୍ସ୍ୟ ଶରୀର ଯାହାଙ୍କର, ଦରହାରୀ (ଦର–ଶଙ୍ଖ ଅର୍ଥାତ ଶଙ୍ଖାସୁର, ତାର ହରଣ କର୍ତ୍ତା–ନାଶ କର୍ତ୍ତା ) ଶ୍ରୁତି ( ବେଦ )ର ନିସ୍ତାରକ ( ଉଦ୍ଧାର କର୍ତ୍ତା ) – ମତ୍ସ୍ୟାବତାରରେ ବେଦ ଘେନଇ ନେଇ ଯାଇ ସମୁଦ୍ର ଭିତରେ ଲୁଚିଥିବା; ଶଙ୍ଖାସୁରକୁ ମାରି ବିଷ୍ଣୁ ବେଦ ଉଦ୍ଧାର କରିଥିଲେ ବୋଲି ପୁରାଣରେ ଅଛି । କୀର୍ତ୍ତିଖ୍ୟାତ କାରୀ–କୀର୍ତ୍ତି କି ଯେ ବିସ୍ତାର କରିଥିଲେ । ରଘୁପତି ପକ୍ଷ- ଲୀଳାରେ ଆଗେହିତ ( ଗୃହୀତ, ଅଧ୍ୟୁଷିତ ) ଶରୀର ( ନର–ଶରୀର ) ଯାହାଙ୍କର; ଦରହାରୀ–ଭବ ଭୟ ହରଣ କର୍ତ୍ତା, ଶ୍ରୁତି ନିସ୍ତାରକ–ଶ୍ରୁତି ( ଶ୍ରବଣ ) ମାତ୍ରକେ ନିସ୍ତାର ( ଉଦ୍ଧାର ) କରନ୍ତି ଯେ–ଯାହାଙ୍କର ନାମ ଶ୍ରବଣ ମାତ୍ରକେ ମୁକ୍ତି ହୁଏ ।

କୀର୍ତ୍ତିଖ୍ୟାତକାରୀ–ଦାନାଦି ଘେନ ବା କୀର୍ତ୍ତିକି ଯେ ବିଖ୍ୟାତ କରିଛନ୍ତି ।

ପୟର–ପାଦ ।



# ଅଷ୍ଟମ ଛାନ୍ଦ

## ନୃପୋତ୍ସବ

## (ଲାବଣ୍ୟବତୀର ଚିତ୍ରପଟ ଘେନି ସନ୍ନ୍ୟାସୀଙ୍କ ଦେଶାଟନ)

### ଗଗ ଦେଶାକ୍ଷ

ଏଥୁ ଅନନ୍ତରେ ରସ ଶୁଣ ସୁଜନ । ମନ୍ତ୍ରୀକି ଡାକି ସିଂହଳ ଦ୍ୱୀପ ରାଜନ । ୧ ।
ବୋଇଲା କିଶୋର ଦଶା ପ୍ରାପ୍ତ କୁମାରୀ[୧] । କର କର ବେଗେ ଦେବା ବିବାହ କରି । ୨ ।
ଶୁଣିଲେ ସୁନ୍ଦରୀ ଶୋଭା ହରି ତୋଷରେ । ହରି ଘେନି ଯିବେ ଅବା ବିଧିବଶରେ । ୩ ।
ନୃପତି ହୋଇ ପ୍ରମାଦ ସମ୍ପତ୍ତି ବାଧ । ଶିରୀ ସ୍ନେହ ତୁଟିଗଲେ ସେ ହେବେ କ୍ରୋଧ । ୪ ।
ଶୁଣି କର ଯୋଡ଼ି କହେ ସଚିବ ତହିଁ । ମୋହ ବିଗ୍ରହକୁ ବର ଦିଶୁ ତ ନାହିଁ । ୫ ।
ଶିବଙ୍କୁ ଦେଲେ ପାର୍ବତୀ ଶାପ ପଡ଼ିବ । ଭସ୍ମ ଭୂଷଣ–ଅଙ୍ଗେ ଏ କେହି ଜଡ଼ିବ । ୬ ।
ଚନ୍ଦ୍ର ତ କ୍ଷୀଣ କଳଙ୍କୀ ତହିଁ କି ସୁଖ । ଅଶ୍ୱିନୀ କୁମାର ହେଲେ ତୁରଙ୍ଗ ମୁଖ । ୭ ।
କୁସୁମ ଧନୁ ଅତନୁ ଅଛି ଆଉକେ । ଚିତ୍ରପଟ ବୁଲାଇବା[୨] ମାନବ ଲୋକେ । ୮ ।

---

ପାଠାନ୍ତର— ୧, ବୋଇଲେ ଖ୍ୟାତ କିଶୋର ଦଶା କୁମାରୀ । ୨, ଦେଖାଇବା ।

---

୨–କିଶୋର ଦଶା–ଯୌବନା ବସ୍ଥା,

୩–ହରି–ବିଷ୍ଣୁ, ବିଧିବଶରେ–ଲୋଭସକ୍ତ ହୋଇ ହରି ଘେନି ଯିବେ–ଗ୍ରେଇ ନେଇ ଯିବେ ।

୪–ବିଷ୍ଣୁ ଲାବଣ୍ୟବତୀକି ଘେନିଗଲେ ଶ୍ରୀ (ଲକ୍ଷ୍ମୀ) ନସହି ପଛକୁ ମୋ ଉପରେ ରାଗ ହେବେ । ସୁତରାଂ ମୋ ଲକ୍ଷ୍ମୀ ( ସମ୍ପତ୍ତି ) ତୁଟିଯିବ । ରାଜା ହୋଇ ସମ୍ପତ୍ତି ବାଧ–କେବଳ ପ୍ରମାଦ ( ବଡ଼ ବିପତ୍ତି ) ।

୫–ସଚିବ–ମନ୍ତ୍ରୀ

୬–କେବଳ ପାର୍ବତୀ ଶାପ ପଡ଼ିବ ନୁହେଁ । ପାଉଁଶ ବୋଳା ଶିବଙ୍କ ଦେହରେ କେହି ( କିପରି ) ଜଡ଼ିବ । ଅର୍ଥାତ ଏ ତାଙ୍କୁ କିପରି ଆଲିଙ୍ଗନ କରିବ ।

୭–ଚନ୍ଦ୍ର କ୍ଷୀଣ ( ଖଣ୍ଡିଆ ହୁଏ ); ପୁଣି ସେ କଳଙ୍କୀ ( ତାଠାରେ କଳଙ୍କ ଅଛି ), ତାଠାରେ ଜେମାର କି ସୁଖ ହେବ ।

୮–କୁସୁମ ଧନୁ–( କନ୍ଦର୍ପ ) ଅତନୁ ( ଶରୀର ହୀନ ) ଆଉ ଜେମା ଯୋଗ୍ୟ ବର କିଏ ଅଛି ? ଯାହା ହେଉ ମନୁଷ୍ୟ ଜଗତରେ ଜେମାର ଚିତ୍ରପଟ ବୁଲାଇବା ।

ରୁଣ୍ଡ ଦଣ୍ଡଧର[୩] ପତି କରିବା ଆଣି । ଇଚ୍ଛା ବର ବରୁ ପଛେ ରମଣୀ ମଣି । ୯ ।
ଭୂପତି ତହିଁକି ଶୁଣି କଲ ସମ୍ମତ[୪] । ମାନବେ ଲେଖା ନ ଗଲ ସୁନ୍ଦରୀ ଚିତ୍ର । ୧୦ ।
ଜ୍ଞାନାନନ୍ଦ ନାମେ ଏକ ସନ୍ୟାସୀ ଥିଲ । ସଚିବ ପ୍ରତିରୁ[୫]ମୟ ସମୀପେ ଗଲ । ୧୧ ।
ସେ କାଳେ ସେ ବିଶ୍ୱକର୍ମା ଏକତ୍ମନେ । ନିର୍ମାଣୁଛନ୍ତି ପ୍ରତିମା ଜେମା ସମାନେ । ୧୨ ।
ଜଗତି ମଞ୍ଜୁ ମଞ୍ଜୁଷ ମଧ୍ୟେ ପ୍ରତିମା । ଦର୍ପଣେ ଫୁଟି ଦିଶୁଛି ଜେମା[୬]ସୁଷମା । ୧୩ ।
ଏକାଳେ ସନ୍ୟାସୀ କରି ସାମ ଗାୟନ । ଲବଣ୍ୟବତୀ ସ୍ୱରୂପ ଘେନିଲ ଦାନ । ୧୪ ।
ଦାନ କଲ ବେଳେ ମାତ୍ର କହିଲେ ଏତେ । ଆମ୍ଭ ବିଜ୍ଞାଣିତ୍ୱ ଖ୍ୟାତ କର ଜଗତେ । ୧୫ ।
ସୀଉକାର[୭]କରି ଯୋଗୀ ବାହୁଡ଼ି ଆସି । ଦେଖାଇ ସ୍ୱରୂପ ମନ୍ତ୍ରୀ ମତି କି ତୋଷି । ୧୬ ।
ସେ ବୋଇଲ ଧର୍ମତାତ ଆମ୍ଭେ ତୁମ୍ଭର । ଆମ୍ଭ ବୋଲେ ଏହା ଘେନି ଭ୍ରମ ସଂସାର । ୧୭ ।

---

ପାଠାନ୍ତର—୩, ନରବର । ୪, ଭୂପତି ବର ତହିଁକ ହେଲେ ସମ୍ମତ । ୫, ପ୍ରୀତିରେ ।
୬, ବାଳା । ୭, ସ୍ୱୀକାରକୁ ।

---

୯—କିଛି ନହେଲ ବେଳକୁ ନରବର ପତି—( ରଜାମାନଙ୍କୁ ) ଆଣି ରୁଣ୍ଡ କରିବା, ରମଣୀମଣି ( ସୁନ୍ଦରୀ ) ଇଚ୍ଛା—ବର ବରୁ । ( ନିଜମନକୁ ବରବାଛୁ, ସ୍ୱୟଂ ବରଣ କରୁ )

୧୦—ଭୂପତି—ରଜା, ମାନବେ ( ମନୁଷ୍ୟଦ୍ୱାରା ) ସୁନ୍ଦରୀର ଚିତ୍ରପଟ ଲେଖି ହେଲ ନାହିଁ ।

୧୧—ସଚିବ ପ୍ରତିରୁ—ମନ୍ତ୍ରୀ ପାଖରୁ । ମୟ—ମୟ ଦାନବ; ଚିତ୍ର, ସ୍ଥପତି ଓ ଆଶ୍ଚର୍ଯ୍ୟ ଘଟଣା ଘଟାଇବା ପ୍ରଭୃତିରେ ସେ ନିପୁଣ ଥିଲ ।,ରଜସୂୟ ଯଜ୍ଞ ନିମନ୍ତେ ଯୁଧିଷ୍ଠିରଙ୍କପାଇଁ ସେ ଇନ୍ଦ୍ରପ୍ରସ୍ଥ ସହର ସଜାଇବାର ମହାଭାରତରେ ଅଛି । ସେ ପାତାଳ ଲୋକରେ ଥିବାର ମଧ୍ୟ ସ୍ମବାଦ ।

୧୨—ସେ ( ମୟ ) ପୁଣି ବିଶ୍ୱକର୍ମା ( ଦେବଶିଳ୍ପୀ ) ଏକତ୍ମନେ (ଏକାମନରେ) ।

୧୩—ଜଗତି ( ସଂସାରରେ ) ମଞ୍ଜୁ ( ସବୁଠାରୁ ସୁନ୍ଦର ) ମଞ୍ଜୁଷ ( ପେଡ଼ି ) ମଧ୍ୟରେ ପ୍ରତିମା ରଖା ହୋଇଅଛି । ଚିତ୍ରର ଦର୍ପଣରେ ( କାଚରେ ) ଫୁଟି କରି ତାହା ଦେଖା ଯା'ଉଛି । ସେଥିରେ ଜେମା ( ଲବଣ୍ୟବତୀର ) ସୁଷମା(ଶୋଭା) ଦିଶୁଛି । ଏଠାରେ, କାଚ ପଟା ପଛଆଡ଼େ ରଙ୍ଗପୁତନାରେ ଯେପରି ଚିତ୍ର ହୁଏ ସେହିପରି ଚିତ୍ରକୁ ଲକ୍ଷ୍ୟ କରା ଯାଇଛି ।

୧୪—ସ୍ୱରୂପ—ଚିତ୍ର

୧୫—ବିଜ୍ଞାଣିତ୍ୱ—କାରିଗରୀ ।

୧୭—ସେ ବୋଇଲ– ମନ୍ତ୍ରୀ କହିଲ; ଧର୍ମପିତା—ଧର୍ମରେ ବାପ ।

ଦେଖାଇ ଭୂପତି ଗଣେ ବଶ କରିବ । ଦୋଷ ଗୁଣ ସୁନ୍ଦର ପଣକୁ ବୁଝିବ । ୧୮ ।
ଏ ବଚନେ ଯିଷ୍ୟ କରେ ପେଡ଼ା ବୁହାଇ । ଶୁଣ ଏବେ ଏତେ ଦେଶ ଭ୍ରମିଲ ସେହି । ୧୯ ।
ଯଉଁ ଦେଶେ ଯଉଁ ରୂପେ କଲେ ଆଦର । କହୁଥାଇ ତାହି ମହିପତି ନିକର । ୨୦ ।
କୁନ୍ତଳେ କୁନ୍ତଳ ବର୍ଣ୍ଣେ ସାରିଲେ ଦିନ । ମତ୍ସ୍ୟଜନ ମତ୍ସ୍ୟପରି ନିମିଷ ହୀନ । ୨୧ ।
ନିଷଧେ ନିଷେଧି ଆନ ଲୋକନ କଲେ । ମାଳବରେ ମାଳକରି ତାହି ଜପିଲେ । ୨୨ ।
ମଘରେ ମଘବା ପଦ ପାଇଲ ପରି । ବିଦେହ ବିଦେହଶରେ ହୋଇଲେ ଘାରି । ୨୩ ।
କନାଉଜେ କନ୍ୟାଉଜ ଶୁଭିଲ ବାଣୀ । ମରୁ ଦେଶେ ମରୁ ରମ୍ଭା ଏମନ୍ତ ଭଣି । ୨୪ ।
ଅଙ୍ଗରେ ଅଙ୍ଗନା ଅଙ୍ଗ ପ୍ରଶଂସା କଲେ । ଏହି ରମ୍ଭା ବୋଲି କଳି କଳିଙ୍ଗେ ହେଲେ । ୨୫ ।

---

ପାଠାନ୍ତର—୮, ନିଷେଧ ନିଷେଧ ।

---

୧୮—ବଶ ହେବା ରଜା ମାନଙ୍କର ଦୋଷ, ଗୁଣ, ସୁନ୍ଦର ପଣ ବୁଝି ଆସି କହିବ ।

୧୯—ଶିଷ୍ୟ କରେ—ଗୋଟିଏ ଶିଷ୍ୟ ହାତରେ ।

୨୦—ମହୀପତି ନିକର—( ରଜାମାନେ ) ଯେଉଁ ଦେଶରେ ଯେପରି ଆଦର କଲେ ତାହିଁ ( ସେ ସବୁକଥା ) କହୁଥାଇଁ । ଯଥା—

୨୧—କୁନ୍ତଳେ ( କୁନ୍ତଳ ଦେଶରେ ) ଚିତ୍ରର କୁନ୍ତଳ ବର୍ଣ୍ଣେ ( ବାଳକୁ ବର୍ଣ୍ଣନା କରି ) ମତ୍ସ୍ୟଜନ (ମତ୍ସ୍ୟଦେଶର ଲୋକେ)ମାଛପରି ଆଖିପତା ନ ପକାଇ ଚାହିଁ ରହିଲେ । ମାଛର ଆଖିପତା ପଡ଼େନାହିଁ ବୋଲି ପ୍ରବାଦ ଅଛି ।

୨୨—ନିଷଧ ଦେଶରେ ନିଷେଧି ( ଆଉ ଏ ଛବି ଆମକୁ ଦେଖାଅ ନାହିଁ ବୋଲି ବ୍ୟସ୍ତ ହୋଇ କହି ) ଆନ ଲୋକନ କଲେ ( ଆଉ ଜିନିଷକୁ ଚାହିଁ ରହିଲେ ) ।

୨୩—ମଘ ଦେଶରେ ମଘବା ପଦ ( ଇନ୍ଦ୍ରପଦ ) ପାଇଲ ପରି ହେଲେ । ବିଦେହ ଦେଶରେ ବିଦେହଶରେ ( କନ୍ଦର୍ପ ବାଣରେ ) ଘାରି ହେଲେ ।

୨୪—କନାଉଜେ-କନୌଜ ଦେଶରେ କନ୍ୟାଉଜ, କନ୍ୟା ଉଜ—କନ୍ୟାଉର୍ଜ ( କନ୍ୟାର ଯଥାର୍ଥ କନ୍ୟାତ୍ୱ ) ଅର୍ଥାତ ଏହି ଏକା ମହୀରେ ସୁନ୍ଦରୀ ଏହି ବାଣୀ ଶୁଭିଲ । ମରୁଦେଶେ—ରଜପୁତନାରେ 'ରମ୍ଭା ମରୁ, କାହିଁକି ଆଉ ବର୍ଣ୍ଣିଛି'—ଏହା କହିଲେ ।

୨୫ ଅଙ୍ଗ ଦେଶରେ ଅଙ୍ଗ ପ୍ରଶଂସା କଲେ । କଳିଙ୍ଗରେ 'ଏ ରମ୍ଭା କି' ?—ବୋଲି କଳି ହେଲେ ( କଳି ଲଗାଇଲେ ); [ କଳି ଲଗାଇବା ଅର୍ଥରେ କଳି ହେବା ଗଞ୍ଜାମରେ ଚଳେ ] ।

ଧାତା ହଟ ଏହି ମରହଟ ବିଗ୍ଭର । ସଉରଷ୍ଟ୍ରେ ଭଷି ସଉଦାମିନୀ ସ୍ଥିର । ୨୬ ।
ଗ୍ରେଳେ ନିଗ୍ରେଳେ ଘୋଡ଼ାଇ ରଖିବା ଚିନ୍ତା । ଦ୍ରାବିଡ଼େ ନିବିଡ଼େ ଆଲିଙ୍ଗନେ ମମତା । ୨୭ ।
ଗୁଜୁରତି ଗତି ଦିନେ ଦେଖିବା ଇଛା । ବିଦର୍ଭରେ ଦର୍ଭହାସ ଦେଖିବା ଚିନ୍ତା । ୨୮ ।
ଉତ୍କଳେ ଉତ୍କଳ ହୋଇ ବିରହେ ଭରୀ । ଗଉରୀ ଏ ଗଉରବ ଗଉଡ଼େ କରି । ୨୯ ।
ନେପାଳେ କପାଳେ ଥିଲେ ପାଇବା ଭବି । ମାଗଧେ ମାଗଧ ମୁଖେ ବର୍ଣ୍ଣାଇ ଛବି । ୩୦ ।
କୁଞ୍ଜଗଳେ ଗଳେ ବାନ୍ଧି ବୁଲିବା ସ୍ନେହୀ । ବଙ୍ଗାଳୀ ଗାଳି ଉପମା-ବର୍ଲି କି ଦେଇ । ୩୧ ।
ଲୋମଶ ଲୋମହର୍ଷଣ ହେଲେ ତ୍ୱରିତ । କଳବର କଳେ–ବରେ ଆନନ୍ଦ ଜାତ । ୩୨ ।
କେରଳେ ଭବେ କେରଳ ମାୟା ହୋଇବ । ଯମନ ମନରୁ ଭିନ୍ନ ନୋହିବ ଭବ । ୩୩ ।

---

୨୬–ମରହଟା ଦେଶରେ ଧାତା ( ବିଧାତାର )ହଟ (କୁହୁକ)ଏ, ଏହି ବିଗ୍ଭର କଲେ । ସଉରଷ୍ଟ୍ରେ ( ସୁରଟରେ )କହିଲେ ଏ ସ୍ଥିର ସୌଦାମିନୀ ( ବିଜୁଳି ) ।

୨୭–ଗ୍ରେଳ ଦେଶରେ ନିଗ୍ରେଳେ ( ଦୋଷଦ୍ୱାରେ ) ଘୋଡ଼ାଇ ରଖିବାକୁ ଚିନ୍ତାକଲେ । ଦ୍ରାବିଡ଼େ (ତାମିଲ ଦେଶରେ) ନିବିଡ଼େ ଆଲିଙ୍ଗନେ ( ଜକଟ ମକଟ କରି କୁଣ୍ଢେଇ-ବାରେ ) ମମତା କଲେ ।

୨୮–ଗୁଜୁରତି ( ଗୁଜରଟର ଲୋକେ ); ବିଦର୍ଭ ଦେଶରେ–ବେରାରରେ; ଦର୍ଭହାସ–( ଘାସଫୁଲ–ପରି ସୁନ୍ଦର ହାସ; )

୨୯–ଉତ୍କଳରେ ଭରୀ ( ଘୋର ) ବିରହରେ ଉତ୍କଳ ( ବିକଳ ) ହେଲେ । ଗୌଡ଼ ଦେଶରେ ଏ ଗୌରୀ ( ପାର୍ବତୀ ) ବୋଲି ଗୌରବ ( ମାନନା ) କଲେ ।

୩୦–ନେପାଳ ଦେଶରେ କପାଳେ ଥିଲେ ପାଇବା ବୋଲି ବିଗ୍ଭରିଲେ ।" ମାଗଧେ ( ମଗଧଦେଶର ଲୋକେ ) ମାଗଧ ମୁଖେ ( ବନ୍ଦୀ ବା ଭଟ ମୁହଁରେ ) ଛବି ବର୍ଣ୍ଣନା କରଇଲେ ।

୩୧–କୁଞ୍ଜଗଳ ଦେଶରେ ଗଳେ ବାନ୍ଧି ବୁଲିବାରେ ମମତା କଲେ । ବଙ୍ଗାଳୀ ( ବଙ୍ଗ ଦେଶର ଲୋକେ ) ଉପମା ମାନଙ୍କୁ ଗାଳି ଦେଲେ ।

୩୨–ଲୋମଶ ଦେଶର ଲୋକେ ଲୋମହର୍ଷଣ ହେଲେ––ତ୍ୱରିତ ( ଦେଖିଲାକ୍ଷଣି ) ତାଙ୍କ ରୋମ ଟାଙ୍କୁରି ଉଠିଲା । କଳବର ( କଳବର୍ଗ ଲୋକଙ୍କର ) କଳେବରେ ( ଶରୀରରେ ) ଆନନ୍ଦ ହେଲା ।

୩୩–କେରଳ ଦେଶର ଲୋକେ ବିଗ୍ଭରିଲେ, ଏ କେରଳ ମାୟା (କେଳାର ଚକ୍ଷୁ ହରଣ) ଯମନ ଦେଶ ଲୋକଙ୍କର ମନରୁ ଚିତ୍ତର ଭବ ଅଲଗା ହେଲା ନାହିଁ ।

ସିନ୍ଧୁରେ ଭଷିଲେ ଯେ ସିନ୍ଧୁରେ ଝାସିବ । ସିନ୍ଧୁର ଗମନା ପ୍ରତି ଅଙ୍ଗେ ମିଶିବ । ୩୪ ।
ବାଳା ତୁଳା'ପିତୁଳାକୁ ଗ୍ରହି ସରଗେ । ପିତୁଳା କରି ରଖିଲେ ନୟନ ଯୁଗେ । ୩୫ ।
ବିଦଗଧେ ବିଦଗଧ କାମ ଦହନେ । ସେ ଭବନା ନ ଛାଡ଼ିଲେ ରଜନୀ ଦିନେ । ୩୬ ।
କେ ବୋଲେ ପଟକି ଏ କାହାର କପଟ । ଦେଖିଲେ କିଞ୍ଚିତ ଚିତ୍ତହୋଏ ଲମ୍ପଟ । ୩୭ ।
କେ ବୋଲେ ଏ କେହି ହେଲା ଦମ୍ଭ ରହିଲା । ଶାତ କୁମ୍ଭ କୁମ୍ଭ ଉରଜାକୁ ବିହିଲା । ୩୮ ।
କେ ବୋଲେ ସତେ କାମିନୀ ଅଛି ଏମନ୍ତେ । କେମନ୍ତ ଗଢ଼ିଲା ବିହି ଆୟୁଷ କେତେ । ୩୯ ।
କେ ବୋଲେ ସତେ ଏ ରୂପେ ଥିଲେ ତରୁଣୀ । ଏତେକାଳେ ଅଳଙ୍କୃତା ହେଲା ଧରଣୀ ।୪୦।
କେ ବୋଲେ ମୋହନ ମୂର୍ତ୍ତିମନ୍ତ ହୋଇଲା । ସକଳ ସୁନ୍ଦର ଅଙ୍ଗେ ଘେନି ଅଇଲା । ୪୧ ।

---

ପାଠାନ୍ତର - ୯, ଭବମାନ ।

---

୩୪—୩୫—ସିନ୍ଧୁ ଦେଶରେ ଲୋକେ କହିଲେ ଯେ ସିନ୍ଧୁରେ ( ସମୁଦ୍ରରେ ) ଝାସିବ' ସେ ଏହି ସିନ୍ଧୁର ( ହାତୀର ) ଗମନାର ପ୍ରତି ଅଙ୍ଗରେ ମିଶିଯିବ—ଏହା କହି ବାଳାର ଅତୁଳା ପିତୁଳାକୁ ଗ୍ରହି ଆଖି ଡ଼ୋଳା ଭିତରେ ପିତୁଳା କରି ରଖିଲେ ଅର୍ଥାତ 'ସବୁ ବେଳେ ଗ୍ରହି ରହିଲେ ।

୩୬-ବିଦଗ୍ଧ ଦେଶରେ କାମଦହନେ ( କାମ ନିଆଁରେ ) ବିଦଗ୍ଧ ହେଲେ ( ପୋଡ଼ି ହେଲେ ହେଁ ) ସେ ଭବନା ଛାଡ଼ିଲେ ନାହିଁ ।

ଏଠାରେ ଏତେ ଦେଶର ନାମ କେବଳ କବିତାର ଅନୁପ୍ରାସ ନିମନ୍ତେ ଯେପରି ଦରକାର ସେହିପରି ଗୁନ୍ଥା ହୋଇଅଛି । କବିଙ୍କର କୌଣସି ବାସ୍ତବିକ ଦେଶଜ୍ଞାନ ଏଥିରୁ ମୋଟେ ଜଣା ପଡୁ ନାହିଁ । ମଘ, ଲେମଣ, ବିଦଗଧ ପ୍ରଭୃତିରୁ ଦେଶ ନାମ ଗୁଡ଼ିକ ପୁରାଣରୁ ଶୁଣାନାମ ବୋଲି ସ୍ପଷ୍ଟ ଜଣା ପଡୁଛି । କୁଞ୍ଜଗଳ ପରି ଦେଶ ନାମ କେହି ଶୁଣିଛନ୍ତି କି ନା ସନ୍ଦେହ । ଅତଏବ ଏସବୁ ଦେଶ ନାମରୁ ଉପେନ୍ଦ୍ର ଭଞ୍ଜଙ୍କ ଭୂଗୋଳ ଜ୍ଞାନ ଆଲୋଚନା କରିବା ସମୀଚୀନ ହେବ ନାହିଁ ।

୩୭- କପଟ—କୁହୁକ, କିଞ୍ଚିତ—ଟିକିଏ ମାତ୍ର, ଲମ୍ପଟ—କାମାସକ୍ତ ।

୩୮—କେହି ହେଲା କିପରି ତିଆରି ହେଲା । ଶାତ କୁମ୍ଭ କୁମ୍ଭ ( ସୁବର୍ଣ୍ଣ କଳଶ ) ପରି ଉରଜ ( କୁଚ ) ଯାହାର ।

୩୯—ଆୟୁଷ କେତେ—ସାଧାରଣ ମନୁଷ୍ୟର ପରମାୟୁରେ ଏଡ଼େ ସୁନ୍ଦରମୂର୍ତ୍ତି ତିଆର କରି ହେବନାହିଁ—ଏହାହିଁ ଭବ ।

୪୧—ଯାହା ପ୍ରୀତିରେ ଆମୁହର କରେ ସେ ମୋହନ ( ଶୋଭ ) କିମ୍ବା କନ୍ଦର୍ପର ମୋହନାସ୍ତ୍ର ମଧ୍ୟ ଅର୍ଥ ହୋଇ ପାରେ । ସକଳ ସୁନ୍ଦର—ସକଳ ସୌନ୍ଦର୍ଯ୍ୟ ।

କେ ବୋଲେ କି କହିବା ଏ ନେତ୍ରସୁକୃତୀ । ଦେଖିଲ ଏ ଲାବଣ୍ୟବତୀର ଆକୃତି । ୪୨ ।
ବିସ୍ମରିଲେ ଯୁବା ସୃଷ୍ଟି କିବା ପ୍ରଳୟ । ହୋଇବ ହୋଇଛି ଉତପାତ ଉଦୟ । ୪୩ ।
ବିଦ୍ୟୁସ୍ଥିର ଇନ୍ଦୁ ଚିର ନିଶି ଦିବସ । ଅମଳିନ ହୋଇତ ନଳିନ ବିକାଶ । ୪୪ ।
ପୁଣି ବିସ୍ମରିଲେ ବଳ ଭୂମି ବିଗ୍ରହି । ଅଙ୍ଗେ ଅନଙ୍ଗ ରହିଲ କି ଦୁର୍ଗ କରି । ୪୫ ।
ଦେଖ ଏ ପତ୍ୟକ୍ଷ କଥା କରୀକି ହରି । ମାରେ ଏବେ ଆରୋହିଛି ହରିକି କରି । ୪୬ ।
ଦର୍ଶନେ ଗଞ୍ଜନ ଯୋଗ ଆଗ ଦେଉଛି । କଞ୍ଜପରେ ଖଞ୍ଜନ ରଞ୍ଜନ ହୋଇଛି । ୪୭ ।
ଯେ ନିର୍ମାଣୀ କେତେ ଅନୁମାନ କି ତାର । ନୋହେ ସେ ପୁରୁଷ କେଡ଼େ ଥୟ ତା କର ।୪୮।
ହେଲେ ହୋଇଥିବ ଅବା ବିଧାତା ମାତା । ମନେ ମନାସିଲ କଥା ହୁଅଇ କି ତା । ୪୯ ।

---

୪୨—ନେତ୍ର ସୁକୃତୀ—( ପୁଣ୍ୟବାନ ) ।

୪୩—ବୃହସ୍ପତିର ରୋହିଣୀ ଶକଟ ଭେଦ କିମ୍ବା ଅଦ୍ଭୁତ ଧୂମକେତୁ ପ୍ରଭୃତି ଉଦୟ ରୂପ ଉତ୍ପାତ ପୃଥିବୀରେ ମହା ଉତ୍ପାତର କାରଣ ବୋଲି ଜ୍ୟୋତିଷ ଶାସ୍ତ୍ରରେ ଅଛି କିନ୍ତୁ ବୃହସ୍ପତି ରୋହଣୀ ଶକଟ ମଧ୍ୟରେ ରହିଲେ ଅତି ସୁନ୍ଦର ଦିଶିବ ଏବଂ ଅଦ୍ଭୁତ ଧୂମକେତୁ ମଧ୍ୟ ଉଜ୍ଜ୍ୱଳ ଦେହର ଲାଞ୍ଜରେ କ୍ଷୁଦ୍ର ତାରା ଆକାଶରେ ବିଞ୍ଚି ହେଲା ପରି ବଡ଼ ସୁନ୍ଦର ଦିଶେ । ସେହିପରି ଲାବଣ୍ୟବତୀର ରୂପ ଅତି ସୁନ୍ଦର ହେବାରୁ ଉତ୍ପାତ ବୋଲି କଳ୍ପନା କରା ଯାଇଛି ।

୪୪—ବିଦ୍ୟୁସ୍ଥିର—ବିଜୁଳି ସ୍ଥିର ହୋଇଛି, ଇନ୍ଦୁ ( ଚନ୍ଦ୍ର ) ଦିନରାତି ଚିର ( ଅଖଣ୍ଡିତ ) ହୋଇଅଛି; ନଳିନ ( ପଦ୍ମ ) ଅମଳିନ ହୋଇ ( ମୌଳି ନ ଯାଇ ) ଫୁଟିରହିଛି ।

୪୫—ବଳଭୂମି—ବଳିଷ୍ଠ ଭୂମି ।

୪୬—କରୀକି ( ହାତୀକୁ ) ହରି ( ସିଂହ ) ମାରେ । ଏବେ ଏ ଚିତ୍ରରେ ହରିକି ( ସିଂହକଟୀ ଉପରେ ) କରୀ ( କରୀ କୁମ୍ଭପରି ସ୍ତନ ଦ୍ୱୟ ) ଚଢ଼ିଛି—ଅର୍ଥାତ ସରୁ ଅଣ୍ଟାଉପରେ ହାତୀମୁଣ୍ଡ ପରି ଦିଶୁଥିବା ସ୍ଥୂଳ ସ୍ତନ ଦ୍ୱୟ ଅଛି ।

୪୭—ପଦ୍ମ ଉପରେ କଜ୍ଜଳପାତୀ ଚଢ଼ିଲା ଦେଖିଲେ ଲୋକେ ରାଜା ହୁଅନ୍ତି ବୋଲି ପ୍ରବାଦ ଅଛି । ଚିତ୍ରରେ ସେହି ଯୋଗ ହୋଇଛି । କାରଣ ପଦ୍ମ ମୁଖ ଉପରେ ନେତ୍ର ଖଞ୍ଜନ ଅଛି ।

୪୮—ପୁରୁଷ ହୋଇଥିଲେ ଏ ନାରୀର ରୂପ ଲେଖୁ ଲେଖୁ କାମରେ ଆସକ୍ତ ହୋଇ ତା ହାତ ଥରି ଥାନ୍ତା ।

୪୯—ବିଧାତା ମାତା—ବ୍ରହ୍ମାଙ୍କ ମା ଅର୍ଥାତ ଯେ ସବୁ ସୃଷ୍ଟି କରିଛନ୍ତି ତାହାଙ୍କ ମା ।

ପ୍ରୟାଗେ ଅସୁରୀ ସୀତା ସଦୃଶ ପରି । ଏ ରୂପକୁ ଅଛିକି ସେ ନିର୍ମାଣ କରି । ୫୦ ।
ଏମନ୍ତ ରମା ପ୍ରଶଂସା ସଂସାରେ ଖ୍ୟାତ । ନୃପତି ସମୂହ ହେଲେ ଉଚ୍ଛନ୍ନ ଚିତ୍ତ । ୫୧ ।
ମନକୁ ପ୍ରେଷିତ କଲେ ସିଂହଳ ଦ୍ୱୀପ । ଶୟନେ ଦେଖିଲେ ସ୍ୱପ୍ନେ ବାଳା ସ୍ୱରୂପ । ୫୨।
ଅସର[୧୦] ପାଇ ବିନ୍ଧିଲ କୁସୁମଶର । ସାରିଲେ ଉଶୀର ବାଟି ଶିଶିର କର । ୫୩ ।
ଶିଶିର କରରେ ରବି ଛବି ପାଇଲେ । ନବ ପଲ୍ଲବ ଶୟନ କରି ଶୋଇଲେ । ୫୪ ।
ଦ୍ୱିଜ ବୃନ୍ଦୀ ଭୂତ କରି ଚଣ୍ଡୀ ବରଣ । ପ୍ରତିଦିନ କରିବାରେ ହେଲେ ନିପୁଣ । ୫୫ ।
ଶମ୍ପାଗୋରୀ ଅନୁକମ୍ପା କରିବା ପାଇଁ । ଶିବେ ଗୋ ଦୋହନ କରି ଚମ୍ପା ଚଢ଼ାଇ । ୫୬ ।
ଆକନ୍ଦୁ ସୁଖୀ ନୟନେ ଦେଖିବା ପାଇଁ । ଗଣେଶଙ୍କୁ ଲଡୁ ଦେବା ଗଣନା ନୋହି । ୫୭ ।
କରେ ଛୁଇଁବାକୁ ରମା କୁଚ କଳଶୀ । ରମାବଲ୍ଲଭଙ୍କୁ ଦେଲେ ଲକ୍ଷ ତୁଳସୀ । ୫୮ ।

---

ପାଠାନ୍ତର—୧୦, ଅବସର ପାଇ ବନ୍ଧ କୁସୁମ ଶର ।

---

୫୦—ଏ ପଦର ଅର୍ଥ ସ୍ପଷ୍ଟ ହେଉନାହିଁ ।

୫୩—ଅସର—ଅବସର, କାଳ ।
କାମପୀଡ଼ା ଶାନ୍ତ କରିବା ପାଇଁ ଉଶୀର (ବେଣାଚେର) ଶିଶିର କର (କର୍ପୂର) ସଙ୍ଗେ ବାଟି ଯେଉଁ ଆଡୁ ପବନ ବୋହୁଥାଏ ସେହି ଆଡ଼େ ରଖିଦେବାକୁ ହୁଏ । ସେ ସୁବାସରେ ବିରହୀ ଶାନ୍ତହୁଏ ବୋଲି କଥା ଅଛି ।

୫୪—ଶିଶିର କରରେ ( ଚନ୍ଦ୍ରେ ) ରବି ଛବି ( ସୂର୍ଯ୍ୟତାପ ) ପାଇଲେ; ନୂଆ ପତ୍ରରେ ଶୟନ ( ଶେଯ ) କରି ଶୋଇଲେ ଏସବୁ କାମୁକ ମାନଙ୍କର ବିରହ ଲକ୍ଷଣ ବୋଲି କାବ୍ୟରେ ବର୍ଣ୍ଣନା କରଯାଏ ।

୫୫—ଲାବଣ୍ୟବତୀକୁ ପାଇବା ପାଇଁ ବ୍ରାହ୍ମଣ ଏକାଠି କରି ଦେବୀଙ୍କ ପାଖେ ଚଣ୍ଡୀ ବରଣ କରଇଲେ ।

୫୬—ଶମ୍ପାଗୋରୀ (ବିଜୁଳି ପରି ଗୋରୀ ଯେ ) ଅନୁକମ୍ପା ( ଦୟା ) କରିବା ନିମନ୍ତେ ଶିବଙ୍କ ଉପରେ ଗାଈ ଦୁହାଁଇ ଅଭିଷେକ କରି ଚମ୍ପା ଚଢାଇଲେ ।
ବଡ଼ ବଡ଼ ଲୋକମାନେ ଶିବଙ୍କ ଉପରେ ଗାଈ ଠିଆ କରି ଦୁହାଁଇ ଅଭୀଷେକ କରନ୍ତି ।

୫୭—ଗଣେଶଙ୍କୁ ଲଡୁ ଭୋଗ କଲେ ସେ ଖୁସୀ ହୁଅନ୍ତି ।

୫୮—ରମାବଲ୍ଲଭ ( ବିଷ୍ଣୁ )ଙ୍କୁ ଲକ୍ଷେ ତୁଳସୀ ଲାଗି କରଇଲେ ।

---

୫୦—ପଦ ପ୍ରୟୋଗେ ।

କାମ ଶାସ୍ତ୍ର ଦେଖିଥିବ ବଶୀ କରଣ । କଲେ ମନ୍ତ୍ର ମହୌଷଧି ମଣି ଭିଆଣ । ୫୯ ।
ଶୋଭ ଅର୍ଥେ ମଣ୍ଡି ହେଲେ ରତ୍ନାଳଙ୍କ ରେ । ପଉଂଡ୍ରିକ ବାସୁଦେବ ହେଲ ପ୍ରକାରେ ।୬୦।
କେତକୀ ଫୁଲ ବାଞ୍ଛିତ ଯଥା ମଧୁପ । ତଥା ନୃପ ମଣ୍ଡଳ ବାଳାରେ ଲୋଲୁପ । ୬୧ ।
ନ ତୁଟିଲ ପୁଣି ଆଶା କେବେ ତାଙ୍କର । ବିରହିଣୀ ନାୟିକା ତ୍ରିବଳୀ ପ୍ରକାର । ୬୨ ।
ଉଚ୍ଚ ତରୁ ଫଳେ ଖର୍ବ ଆଶାୟୀ ପରି । ଲବଣ୍ୟବତୀ ନାମକୁ ସୁମନ୍ତ୍ର କରି । ୬୩ ।
ବାଳା ପ୍ରତି ଅଙ୍ଗ ଶୋଭ ମାନସେ ଥୋଇ । ଆପଣା ଶୋଭକୁ ଆଦରଶରେ ଚାହିଁ । ୬୪ ।
ବାହ୍ୟରେ ଆରମ୍ଭ ଯେ ଅନ୍ତରେ ବ୍ୟାକୁଳ । ଭସ୍ମ ଆଚ୍ଛନ୍ନରେ ଥାଇ ଯଥା ଅନଳ । ୬୫ ।
ବିଚକ୍ଷଣ ଜନ ପେଷି ସିଂହଳ ଦ୍ୱୀପେ । ପ୍ରୀତି ଲଗାଇଲେ ରତ୍ନେଶ୍ୱର ମହୀପେ । ୬୬ ।
ଲବଣ୍ୟବତୀ ସ୍ୱରୂପ ଆସିବା ଘୋଷ । ଆଗୁଁ ପ୍ରକଟ ହୋଇଲା କର୍ଣ୍ଣାଟ ଦେଶ । ୬୭ ।
ଚନ୍ଦ୍ରଭାନୁ ଭବେ ଯାହା ସାଧୁତ କହି । ତାକୁ କେ ନିର୍ମାଣି ରୂପ କେ ପଟେ ଲିହି । ୬୮ ।

---

ପାଠାନ୍ତର—୬୫ପଦ—ବ୍ୟାକରେ ।

---

୫୯—କାମ ଶାସ୍ତ୍ରରେ ସ୍ତ୍ରୀଙ୍କୁ ବଶ କରିବା ନିମନ୍ତେ ମନ୍ତ୍ର ମହୌଷଧି ପ୍ରଭୃତିର ବ୍ୟବସ୍ଥା ଅଛି ।

୬୦—ଭାଗବତରେ ପୌଂଡ୍ରିକ ଆପଣାକୁ କୃଷ୍ଣ ରୂପରେ ସଜାଡ଼ି ଭକ୍ତ ଭୁଲାଉ ଥିଲେ । ସେହିପରି କେତେ କେତେ ଆପଣାକୁ ସୁନ୍ଦର କରିବା ପାଇଁ ରତ୍ନ ଅଳଙ୍କାରରେ ମଣ୍ଡି ହେଲେ ।

୬୧—କେତକୀ ଫୁଲର ବାସନା ଯୋଗୁ ଭ୍ରମରର ସେ ଫୁଲରେ ବସିବାକୁ ଭାରି ଇଚ୍ଛା । କିନ୍ତୁ ଫୁଲ ରଜ ଓ କଣ୍ଟା ହେତୁରୁ ସେ ଫୁଲ ପାଖେ ପଶି ପାରେନାହିଁ ।

୬୨—ଯେତେ ଉପଚାର କଲେ ମଧ୍ୟ ବିରହିଣୀ ସ୍ତ୍ରୀର ପେଟର ରେଖାମାନ ଲୁଚେ ନାହିଁ । ତ୍ରିବଳୀ ଏଠାରେ କପାଳ ରେଖା ବୋଲି ଅର୍ଥ ହୋଇପାରେ, କାରଣ ଚିନ୍ତାରେ କପାଳ ରେଖା ବିଶେଷ ପ୍ରକାଶ ପାଏ ।

୬୩—ଉଚ୍ଚ ଗଛର ଫଳରେ ଖର୍ବ ( ବାଙ୍ଗର ) ଲୋକ ଆଶାୟୀ ( ଆଶାବନ୍ତ ) ହେଲା-ପରି ଲବଣ୍ୟବତୀ ନାମକୁ ସମସ୍ତେ ସୁମନ୍ତ୍ର କରି ( ଉତ୍ତମ ମନ୍ତ୍ରପରି ଜପକଲେ )

୬୪—ଆଦର୍ଶରେ ( ଦର୍ପଣରେ )

୬୫-ବାହାରରେ ଆପଣା ଶୋଭ ଦେଖି ପକାଉଥିଲେ ମଧ୍ୟ ପାଉଁଶ ତଳେ ନିଆଁ ଥିଲା-ପରି ଏମାନଙ୍କ ଭିତରେ ଆପେ ଲବଣ୍ୟବତୀର ଯୋଗ୍ୟ ନୁହନ୍ତି ବୋଲି ବ୍ୟାକୁଳତା ଥାଏ ।

୬୬—କେତେ ବିଚକ୍ଷଣ ଲୋକ ( ଜାଣିବା ଲୋକେ ) ପ୍ରୀତି ଲଗାଇଲେ ( ବନ୍ଧୁତା ଭାବ ଲଗାଇଲେ ) ।

୬୭—ଘୋଷ—ଖବର ।

୬୮—ସାଧୁତ ଯେପରି କହୁଥିଲା ସେପରି ଯଦି ହୋଇଥାଏ ତେବେ ତାକୁ ରୂପ

ରୂପକାର ରଙ୍ଗାଜୀବ ମର୍ତ୍ତ୍ୟରେ କାହିଁ । ମନକୁ ଆସେ ମଘବା ଭୂବନେ ନାହିଁ । ୬୯ ।
ହୋଇଥିଲା ମୋ ନେତ୍ରର ବିଧାତା ଋଣୀ । ଶୁଝିବ ବୋଲି କେ ଆଣେ ପ୍ରତି ତରୁଣୀ ।୭୦।
ଗୁରୁ ଦ୍ରୋହୀ ପାପୀ ସ୍ୱର୍ଗ ଭୋଗ ପାଇଛି । ସାତସିନ୍ଧୁ ଚଳୁ ଭିତରରେ[୧] ରହିଛି । ୭୧ ।
ପକ୍ଷବିନା ହୋଇ ଅଛି ଗଗନ ଗତି । ଜଳ ଉପରେ ଶଇଳ ଭସି ଅଛନ୍ତି । ୭୨ ।
ଯଉଁ ଦଇବେ ହୋଇଛି ଏତେ ବିଧାନ । ସେହି ଦଇବେ ହେଲକି ବାଳା ରତନ । ୭୩ ।
ଜ୍ୟେଷ୍ଠେ ତୃଷିତ ଚାତକ ଯେମନ୍ତ ହୋଇ । ଜଳଦ ଦର୍ଶନେ ତନ ମନ କରଇ । ୭୪ ।
ଆଷାଢେ ଘନ ଦର୍ଶନେ ଚକୋର ପନ୍ତି । ଆଶା ଯେହ୍ନେ ଶରଦ ଆଗମେ କରନ୍ତି । ୭୫ ।

---

ପାଠାନ୍ତର—[୧], ସପତ ସିନ୍ଧୁ ଚଳୁ ଭିତରେ ।

---

( ପ୍ରତିମା ) କିଏ ତିଆରିବ ବା ଚିତ୍ର ପଟରେ କିଏ ଲେଖିବ । ଯେଉଁ ଲୁଗା ଉପରେ ଚିତ୍ର କରଯାଏ ତାକୁ ପଟ କହନ୍ତି ।

୬୯—ରୂପକାର—ଶିଳ୍ପୀ, ଯେଉଁମାନେ ପ୍ରତିମା ତିଆରି କରନ୍ତି ।
ରଙ୍ଗାଜୀବ—ଚିତ୍ରକାର;
ମଘବା ଭୂବନ—ଇନ୍ଦ୍ର ଭୁବନ, ସ୍ୱର୍ଗ ।

୭୦—ବିଧାତା ମୋ ଆଖିଠାରେ ଋଣୀ ହୋଇଥିଲା । ସେହିଋଣ ସୁଝିବ ବୋଲି ପ୍ରତି-ତରୁଣୀ ( ତରୁଣୀର ପ୍ରତିମା ) ଆଣେ କି ?

୭୧—୭୩—ଗୁରୁ ଦ୍ରୋହୀ ପାପୀ—ଗୁରୁ ( ଗୌତମ )ଙ୍କ ପତ୍ନୀକି ହରଣ କରି ପାପ କରିଥିଲେ ଯେ ଇନ୍ଦ୍ର ସେ ସ୍ୱର୍ଗ ଭୋଗ ପାଇଛନ୍ତି । ଅଗସ୍ତି ମହର୍ଷି ସାତ ସିନ୍ଧୁ ଚଳୁ କରି ଶୁଖାଇ ଦେଇଥିଲେ ବୋଲି ପ୍ରବାଦ ଅଛି । ହନୁମାନ ବିନା ପକ୍ଷରେ ଆକାଶରେ ଯାଇ ଲଙ୍କାରେ ପହଞ୍ଚିଥିଲା । ରାମଚନ୍ଦ୍ରଙ୍କର ସେତୁବନ୍ଧ ତିଆରି ବେଳେ ଶୈଳ ( ପଥର )ମାନେ ପାଣିରେ ଭସିଥିଲେ । ଏସବୁ ଅସମ୍ଭବ କଥା ଯେଉଁ ଦଇବ ଦ୍ୱାରା ହୋଇଛି, ସେହି ଦଇବ ଦ୍ୱାରା ଆଉ ଏକ ଅସମ୍ଭବ କଥା ପରି ଏହି ବାଳା ରତନର ( ବାଳାମଣିର ) ସୃଷ୍ଟି ହେଲା କି ?

୭୪—ପ୍ରବାଦ ଅଛି ଚାତକ ବର୍ଷାରେ ପଡୁଥିବା ପାଣି ଆକାଶରୁ ପିଏ । ଅନ୍ୟ ପାଣି ପିଏ ନାହିଁ । ସେଥିପାଇଁ ଗ୍ରୀଷ୍ମ କାଳରେ ମେଘକୁ ଚାହିଁ ଥାଏ । ତନମନ—ତନ୍ମନ, ତଦ୍‌ଗତମନ ।

୭୫—ପ୍ରବାଦ ଅଛି ଚକୋର ଚନ୍ଦ୍ର କିରଣରୁ ଅମୃତ ପିଏ । ଶରତ କାଳର ଚନ୍ଦ୍ର କିରଣ ସବୁଠାରୁ ଉଜ୍ଜ୍ୱଳ ଓ ସୁନ୍ଦର । ସେଥିପାଇଁ ଚକୋର ଅତି ବ୍ୟାକୁଳ ହୋଇ ଶରତ ଆଗମକୁ ଚାହେଁ ।

ସ୍ୱରୂପ ପ୍ରବେଶେ ତଥା ଟେକିଲା ଆଶା । ଅସର ହୋଇଲା ଏଣୁ ବାସର ନିଶା । ୭୬ ।
ପାଛୋଟାଇ ପଠିଆଇ ମନକୁ ମୋଦେ । କର୍ଣ୍ଣ ଡେରେ ମୃଗ ଯଥା ଘର୍ଣ୍ଣି ସବଦେ । ୭୭।
ସପ୍ରେମ ନୟନ ସେହି ଦିଗକୁ ଟେକି । ନିରେଖେ କାକତ[୧୨]ଚକି ଯଥା କୁତୁକି । ୭୮ ।
ନିଦ୍ରା କ୍ଷୁଧା ବାଧା କରି ପାରିଲେ ନାହିଁ । ଅଳପ ଅନୁରାଗ କି ହୋଇବ କହି । ୭୯ ।
ବିନାୟକ ପୂଜ୍ୟ ସଦାଶିବ ତୋଷଦ । ସୁମନସ ଗଣର ଯେ ହରେ ବିଷାଦ । ୮୦ ।
ଉପଇନ୍ଦ୍ର ଭଞ୍ଜ ବୀର ବର ବିଗ୍ରହେ । ଏ ଗୀତ ଶେଷ କରିବ ତାଙ୍କ କୃପାରେ । ୮୧ ।

---

ପାଠାନ୍ତର—୧୨, କାଗଜ ।

---

୭୬—ଅସର—ସରିଲା ନାହିଁ । ସ୍ୱରୂପ—ଚିତ୍ର; ଆଶା ପୂର୍ଣ୍ଣ ନ ହେଲେ କାଳ ଅସରନ୍ତି ପରି ଲାଗେ ।

୭୭—ନିଜର ମନକୁ ମୋଦେ ( ଆନନ୍ଦରେ ) ଯେପରିକି ଲାବଣ୍ୟବତୀର ଚିତ୍ରକୁ ଆଣି-ବାକୁ ପାଛୋଟେଇ ପଠାଇଦେଇ ଟାକି ବସିଲେ । କିପରି—ନା,ଦୂର ଘର୍ଣ୍ଣିଶବ୍ଦ ଶୁଣି ମୃଗ ଯେପରି ବଣରେ କାନ ଡେରେ ।

୭୮—କାକତ ( କାଗଜ ); ଚକି (ଘୁଡ଼ି); କୁତୁକି ( କୌତୁକି ); ସପ୍ରେମ—ଉତ୍ସୁକ ।

୭୯—ଏ କଣ ଅଳ୍ପ ଅନୁରାଗ ଯେ କଥାରେ କହି ହେବ ?

୮୦—ଉପେନ୍ଦ୍ର ଭଞ୍ଜ ରାମଭକ୍ତ, ଏହା ଜଣାଥିବାରୁ ଏଠାରେ ମହାଦେବଙ୍କ ନାମରେ ସେ ରାମଙ୍କୁ ସ୍ତୁତି କରିଛନ୍ତି ବୋଲି ଅନୁମାନ କରିବାକୁ ହେବ । ଅତଏବ ଏ ପଦର ରାମ ଓ ମହାଦେବ ଦୁଇ ପକ୍ଷରେ ଅର୍ଥ ହେବ ।

ମହାଦେବ ପକ୍ଷ—ବିନାୟକ ପୂଜ୍ୟ—ଗଣେଶ ପୂଜ୍ୟ ( ମହାଦେବ ଗଣେଶଙ୍କ ପିତା ହେତୁରୁ ପୂଜ୍ୟ );

ସଦାଶିବ—ସର୍ବଦା ମଙ୍ଗଳ ମୟ, ( ମହାଦେବ )

ତୋଷଦ—ସନ୍ତୋଷଦାତା; ଭକ୍ତଠାରେ ଆଶୁତୋଷ ହେବାରୁ ସୁମନସ ଗଣର ( ଉତ୍ତମ ମନରେ ବା ଭକ୍ତିରେ ଯେଉଁମାନେ ଉପାସନା କରନ୍ତି ) ସେମାନଙ୍କର ବିଷାଦ ( ଦୁଃଖ ) ହରଣ କରନ୍ତି ।

ରାମଙ୍କ ପକ୍ଷ—ବିନାୟକ ପୂଜ୍ୟ ( ବଡ଼ ସେନାପତି ମାନଙ୍କ ମଧ୍ୟରେ ପୂଜ୍ୟ ବା ଶ୍ରେଷ୍ଠ ); ସଦାଶିବ ( ମହାଦେବଙ୍କର ) ତୋଷଦ ( ପରମ ଭକ୍ତ ହେବାରୁ—ସନ୍ତୋଷ ଦାୟକ ); ରାବଣକୁ ନାଶ କରି ସୁମନସ ( ଦେବତା ମାନଙ୍କର ) ବିଷାଦକୁ ଯେ ହରଣ କରନ୍ତି ସେହି ରାମ ।

# ନବମ ଛାନ୍ଦ

## ମଦନିକା ପ୍ରବେଶ

## ( ଚନ୍ଦ୍ରଭାନୁ ନିକଟରେ ଲାବଣ୍ୟବତୀର ଚିତ୍ରପଟ ଧରି ସନ୍ୟାସୀର ପ୍ରବେଶ )

ରାଗ ମଙ୍ଗଳ ଗୁଜ୍ଜରୀ

ହୋଇଲା ପ୍ରବେଶ ଗ୍ରୀଷମ ସମୟ ସୁଷମ ପ୍ରୋଢ଼ା ଯୁବତୀ କି ।
ରଜନୀ ମନୋହର କରି ବହିଲା ପକ୍ୱଚୂତ ଫଳ କାନ୍ତିକି ।
 ବିଶେଷ[୧] ।ମଲ୍ଲିକା ହାସକୁ ପ୍ରକାଶି ।
ରସିକ ଭ୍ରମର ଗୁଞ୍ଜନକୁ ନିରତ ପାଟଳି ଶ୍ରବଣ ନିବେଶି । ୧ ।
ଝିଙ୍କାରୀ ଝଙ୍କାର ଝୁଣ୍ଟିଆ ଝମକ ଚମକ ପକାଇ ଯୁବାରେ ।
ରଖିଲା ମନକୁ ଘନରସେ ନେଇ ଚନ୍ଦ୍ର କିରଣେ ଶୋଇବାରେ ।
 ଶାଳ୍ମଳୀ । ରଙ୍ଗେ ଅନୁରାଗ ଦେଖାଇ ।
ନବ[୨] ବିଟପକୁ ବିରହ ଦାବାଗ୍ନି ସଞ୍ଜୋଗରେ ଦହି ପକାଇ । ୨ ।

---

ପାଠାନ୍ତର - ୧, ତ୍ରପୁଞ୍ଜ । ୨, ବନ ।

---

୧— ଗ୍ରୀଷ୍ମ ସମୟ ପ୍ରୌଢ଼ା ଯୁବତୀ ( ପୋଖତ ଅର୍ଥାତ କେଳିରଙ୍ଗ ଜାଣିଥିବା ଯୁବତୀ —ସ୍ତ୍ରୀ )ଙ୍କୁ ସୁଷମ (ସର୍ବତୋଭବେ ତୁଳନାରେ ସମାନ) । କିପରି—
ପ୍ରୌଢ଼ା ଯୁବତୀ ରଜନୀ (ରତି)ରେ ମନୋହର, (କେଳିରେ ବିଚକ୍ଷଣା ହେତୁରୁ) ତାର କାନ୍ତି ପକ୍ୱଚୂତଫଳ ( ପାଚିଲା ଆମ୍ବ) ପରି ଟିକିଏ ପୋଖତ ଗୌରବର୍ଣ୍ଣ ତାହାର ହାସ ମଲ୍ଲିଫୁଲ ପରି ସ୍ୱଚ୍ଛ ଓ ଉଜ୍ଜ୍ୱଳ । ସେ ରସିକର ଗୁଞ୍ଜ(ବିନୟଭାଷା) ଶୁଣି ଶିଖିଥାଏ । ସେଥିପାଇଁ ଗୁଞ୍ଜ ଶୁଣିବାକୁ କାନ ଡେରିଦିଏ । କିନ୍ତୁ ସହଜରେ କିଛି କହେ ନାହିଁ । ଗ୍ରୀଷ୍ମ ସମୟରେ ରତି ସୁନ୍ଦର । ଆମ୍ବ ପାଚେ, ମଲ୍ଲୀ ଫୁଟେ, ପାଟଳିଫୁଲ ପାଖେ ଭଅଁର ବହୁତ ବେଳଯାଏ ଗୁଣୁଗୁଣୁ ହୋଇ ବହୁ କଷ୍ଟରେ ତାହା ଭିତରେ ମହୁ ଖୋଜି ପାଏ ।

୨— ଯୁବତୀର ଝୁଣ୍ଟିଆ ଶବ୍ଦ ଯୁବାକୁ ଚମକାଇଲା ପରି ଝିଙ୍କାରୀର ଝଙ୍କାର ପଥିକକୁ ଚମକାଇଛି । ମନକୁ ଘନରସେ ( ପାଣିରେ କିମ୍ବା କାମ କ୍ରୀଡ଼ାରେ ) ଏବଂ ଚନ୍ଦ୍ର କିରଣରେ ଶୋଇବାରେ ନେଇ ରଖିଲା । [ ନୂତନ ଯୁବତୀ କେଳି ନିମନ୍ତେ ଚନ୍ଦ୍ର କିରଣରେ ଶୋଇବାକୁ ରାଜି ହୁଏନାହିଁ ] ଶାଳ୍ମଳୀ ( ଶିମୁଳୀ ) ଫୁଲ ଭରିରଙ୍ଗ—ଏଣୁ ପ୍ରୋଢ଼ା ଯୁବତୀର ଅନୁରାଗ ବା ପ୍ରୀତି ସଙ୍ଗେ ସମାନ ନୂତନ ଯୁବତୀର ଅନୁରାଗ ଏତେ ସ୍ୱଚ୍ଛ ନୁହେଁ ।

କେଡ଼େ ରଞ୍ଜନ ବ୍ୟଜନ ପ୍ରଭଞ୍ଜନ ମୁରଣେ ଶାନ୍ତିକୁ ନାଶିଲା ।
ଜଳଯନ୍ତ୍ର ପୁର କର୍ପୂର [illegible]ମଣ୍ଡନରେ ଚିତ୍ତ ରସିଲା ।
ଜାଣିଲି । ଶୁଚି ମୂର୍ତ୍ତିମନ୍ତ ହୋଇଲା ।
ବିଦେଶେ ନଯାଅ ବୋଲି ଜନଙ୍କୁ କି ରଜେ ତୃଷାନଳ ଥୋଇଲା । ୩ ।
ଏମନ୍ତ କାଳେ କାନନେ ନୃପସୁତ ପୁଷ୍କରିଣୀ ମଧ୍ୟ ମଣ୍ଡପେ ।
ହୋଇ ମିତ୍ର ସଙ୍ଗ ବାଳାର ପ୍ରସଙ୍ଗ ପକାଇ ତାହା ନାମ ଜପେ ।
ପ୍ରକାଶେ । ବେଳୁବେଳ ଏହି ଭକ୍ତଙ୍କୁ[୩] ।
ସାଧୁ କହିଲା ପରି ବିଧୁ ବଦନା ଅଛି ଆସୁଛି ମାନସକୁ । ୪ ।
କହିଲେ ମିତ୍ରେ ନ ଘେନ ଏତେ ଚିତ୍ତେ ନ ଥିଲକୁ ନିକି ଜଗତ ।
ଘଟଣ ଘଟସ୍ତନା ସମେ ଘଟନା ପିତୁଳା ହେଉଛି ଆଗତ ।
ଏକାଳେ । ମାଳିକ କହେ ସନ୍ନିଧାନେ ।
ମହ୍ଲାରୁଁ[୪] ଆସିଛି ନାମ ମଦନିକା ଗଣିକା ତବ ଦରଶନେ । ୫ ।

---

ପାଠାନ୍ତର—୩, ବେଳେ ବେଳେ ଏହି ଭାବକୁ । ୪, ମଲ୍ଲାରୁଁ ।

---

ନବବିଟପ (ଗଲା ବସନ୍ତରେ ବାହାରିଥିବା ନୂଆ ଡ଼ାଳ)କୁ ଦାବାଗ୍ନି (ବଣନିଆଁ) ସଂଯୋଗରେ (ଲଗାଇ) ଗ୍ରୀଷ୍ମକାଳ ପୋଡ଼ିଦେଲା । ସୋଡ଼ା ଯୁବତୀ ନବ ବିଟପ (ନୂଆ ନାଗର)କୁ ସଙ୍ଗରେ ଧରଛୁଆଁ ନ ଦେଇ ବିରହରେ ପୋଡ଼ିଦିଏ —ଏହି ସାଦୃଶ୍ୟ ।

୩—ବ୍ୟଜନ ପ୍ରଭଞ୍ଜନ—ବିଚଣା ପବନ; ପ୍ରଭଞ୍ଜନ ଶବ୍ଦର ପ୍ରୟୋଗ ଏଠାରେ ଅସାଧୁ । ବତାଶୀ ପବନକୁ ପ୍ରଭଞ୍ଜନ କହନ୍ତି । ମାତ୍ର ଯମକ ରହିବା ପାଇଁ ତାହା ବ୍ୟବହୃତ ହୋଇଅଛି । ଜଳଯନ୍ତ୍ରପୁର—ଫୁଆରା ପ୍ରଭୃତି ଯନ୍ତ୍ରରେ ପାଣି ପଡ଼ିବାର ବ୍ୟବସ୍ଥା ଥାଇ ଯେଉଁ ଘର ତିଆରି ହୋଇଥାଏ । ଶୁଚି—ଗ୍ରୀଷ୍ମକାଳ ଓ ଶୃଙ୍ଗାର ରସ । ବାଟରେ ଯେଉଁ ରଜ ବା ଧୂଳି ଉଡ଼ିଲା ସେ ବିଦେଶ ଯିବା ଲୋକଙ୍କ ପକ୍ଷରେ ତୃଷାନଳ (ଚଷୁଧୂଆଁ) ପରି ହେଲା । ଚଷୁନିଆଁ ବଡ଼ କଷ୍ଟ ଦିଏ ।

୪—ସାଧୁ (ସିଂହଳର ସାଧବ) କହିଲା ପରି ବିଧୁ ବଦନା (ଚନ୍ଦ୍ରବଦନା) ସତରେ ଅଛି ମିଛ ନୁହେଁ ତ ।

୫—ଘଟଣ (ସୁନ୍ଦର) ଘଟ (କଳଶ) ପରି ସ୍ତନ ଯାହାର ସେ ଘଟସ୍ତନା । ଘଟନା—ତିଆରି; ନଥାଇ କରି ଏପରି ଖାଲି ତିଆରି ପିତୁଳା ଆସୁଛି ବୋଲି ବିଗ୍ରରୁଛ ? ମହ୍ଲାରୁଁ—ମହ୍ଲାର ଦେଶର; ଗଣିକା—ବେଶ୍ୟା ।

ପଗ୍ଭରେ କୁମାର ପ୍ରଶଂସା ଯାହାର ଶୁଣୁଥିଲାଇଁ ଏ ସେ ନାରୀ ।
ଯାହା ଜନମ କାଳୁଁ ମର୍ତ୍ତ୍ୟମଣ୍ଡଳେ ଆସିଲେ ନାହିଁ ଅପସରୀ ।
ତହିଁକି । ହୋଇ କଲ ମନ୍ତ୍ରୀ ନନ୍ଦନ ।
ଜାଣି ସୀଉକାର[୬] ଆଣି ମାଳାକାର ଭେଟାଇଲା ଗମା ରତନ । ୬ ।
ନବ ଯଉବନ ଶାଣରେ ଶାଣିତ କାହା ମନ ବଶ ନୋହିବ ।
ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ମୂର୍ତ୍ତିମନ୍ତ କଲ ଦଇବ ।
ଦେଖିଲ । ମାତ୍ରେ ଗାତ୍ରେ ଆଖି ଲଖିଲ ।
ଗ୍ଭପରେ ରେପ ବସାଇ କୋପଭରେ ମାର ମରମରେ ଯୋଖିଲ । ୭ ।
ସୁବର୍ଣ୍ଣ ସୁବର୍ଣ୍ଣ ବଳୟ ଯାହାର ଏ ସଂଶୟକୁ କରଉଛି ।
କାହାକୁ କେ ବଡ ତାରତମ ଥାଉ ବାରଣହିଁ ଯହିଁ ନୋହୁଛି ।
ଚିକୁର । ଲେଟଣୀ ଜୂଡାରେ ଶୋଭନ ।
ଏ ଭବେ ବାନ୍ଧିବି ପୁରୁଷଙ୍କ ମନ ବୋଲିକି କରିଛି ବନ୍ଧନ । ୮ ।

---

ପାଠାନ୍ତର—୬, ଜାଣିବା ସ୍ୱୀକାର

---

୬—ଏହି ଗଣିକାର ପ୍ରଶଂସା ଚନ୍ଦ୍ରଭାନୁ ଆଗରୁ ଶୁଣିଥିଲ । ଅପ୍‌ସରୀ (ସ୍ୱର୍ଗନାରୀ) ହୋଇକଲ—ହଁ କଲ; ଜାଣି ସୀଉକାର—ଚନ୍ଦ୍ରଭାନୁର ସମ୍ମତି ଜାଣି ।

୭—ମଦନିକା ବେଶ୍ୟାର ରୂପ ନବଯୌବନ ରୂପ ଶାଣ (ଶାହାଣ) ଯନ୍ତ୍ରରେ (ଶାଣିତ) ସାହାଣ ଦିଆ ହୋଇଛି । ସ୍ତମ୍ଭନ—ଭବକୁ ଚିପି ରଖିଦେବା; ମୋହନ—ଭବରେ ବାହ୍ୟ ଜ୍ଞାନହୀନ କରିଦେବା; ବଶ—ଆପଣାର ଅଧୀନ କରିଦେବା; ଉଚ୍ଚାଟନ—ଆଉ ସମସ୍ତଙ୍କ ଠାରୁ ମନ ଛଡ଼ାଇ ନିଜଠାରେ ମନକୁ ପ୍ରବଳ ଭବରେ ଆସକ୍ତ କରଇବା । ଏହି ଗ୍ଭରିପ୍ରକାର ବିଦ୍ୟା କୁହୁକ ବା ମନ୍ତ୍ର ସାଧନାରେ କାମୁକ କାମୁକୀମାନେ ପ୍ରୟୋଗ କରନ୍ତି ବୋଲି ପ୍ରସିଦ୍ଧି ଅଛି । ଏହି ଗ୍ଭରିବିଦ୍ୟା ସେହି ମଦନିକା ଗଣିକା ଠାରେ ଦଇବ ଯେପରିକି ମୂର୍ତ୍ତିମନ୍ତ କରିଛି ଅର୍ଥାତ୍ ଏହା ଦେହରେ ଏ ସବୁ ବିଦ୍ୟା ଅଛି । ଗାତ୍ରେ—ଶରୀରରେ; ରେପ—ଶର, ଗ୍ଭପଧନୁ; ମରମରେ ଯୋଖିଲ—ମରମକୁ ବିନ୍ଧିଲ ।

୮—ସୁବର୍ଣ୍ଣ—ଉତ୍ତମ ବର୍ଣ୍ଣ; ସୁବର୍ଣ୍ଣ ବଳୟ—ସୁନାଖଡୁ; ମଦନିକା—ଦେହର କାନ୍ତି ଓ ସୁନା ଖଡୁ ଏ ଦୁହେଁ କିଏ କାହାଠାରୁ ବଡ଼ ଏ କଥାର ତାରତମ୍ୟ (ସାନ ବଡ଼) ବାଛିବା ଦୂରେ ଥାଉ, ଅଲଗା ବୋଲି ବାରି ହେଉନାହିଁ । ଲେଟଣୀ ଜୂଡ଼ା—ଖୋଷା ଜୂଡ଼ା ନୁହେ, ବାଳକୁ ଭଣ୍ଡାପରି ଗୁଡ଼ାଇ ଯେଉଁ ଜୂଡ଼ା ବନ୍ଧାଯାଏ ।

ମୋତି ଜାଲି ତାର[୭] ତାର ତାର କାନ୍ତି ଉଦୟ ହେଲେ ନବଘନେ ।
କିବା ଇନ୍ଦୁଗ୍ରାସୁଁ ସୁଧା ବିନ୍ଦୁକୁ କି ବହିଛି ଗହୁ ଘହନନେ[୭] ।
ଚଳକୁ । ଦିବ୍ୟ ଚନ୍ଦ୍ରଝୁମ୍ପି ଲମ୍ବିତ ।
ଅର୍ଦ୍ଧେନ୍ଦୁ ଅଧୋଭାଗେ ଲଭି ଉଦୟ ସପ୍ତରଷି କିବା ଢଳିତ । ୯ ।
ଘୁଞ୍ଚୁ ଅଳକା ଝିଲିମିଲି ମାଳିକା ଅଗ୍ରେ ଲମ୍ବିତ କ୍ଷୁଦ୍ର ମୋତି ।
ହେମ ଲତା ଶିଖେ ମଧୁକର ପନ୍ତି ମଧୁ କିବା ସଞ୍ଚୁ ଅଛନ୍ତି ।
କସ୍ତୂରୀ । ଉର୍ଦ୍ଧ୍ୱ ତିଳକ ଭାଲ ଦେଶେ ।
ବିକାଶ ସାରସ ମଧ୍ୟୁଁ ଅଳି ବଂଶ ଗମିତ କି ତମାଳ ପାଶେ । ୧୦ ।
ତାଟଙ୍କ ହୀରରେ ହସୁଛି ଶ୍ରବଣ ପାଶାଦି ଉପମା ମାନଙ୍କୁ ।
ଆହୁରି ବଜ୍ର ମଲ୍ଲିକଡୀ ଧରିଛି ଧଇର୍ଯ୍ୟ-ଧର ଧ୍ୱଂସନକୁ ।
ବଦନ । ବିକାରେ କମ୍ପକୁ ବହିଛି ।
ହା ହା ବାଳୀ ଫୁଲ ଝଲକା ଝଲକ ପଲକ ଘଉଡ଼ି ଦେଉଛି । ୧୧ ।

---

ପାଠାନ୍ତର—୭, ଝଲ । ୭, ଅମ୍ବଘନେ । ୮, ଘେଉଡ଼ି

---

୯—ତାର ( ମଦନିକାର ) ମୋତି ଜାଲି ବାଳ ଉପରେ ତାର ( ଉଜ୍ଜ୍ୱଳ ) ତାରକାଙ୍କୀ ( ତାଟକୋ ସମୂହ ) ନୂଆ ମେଘରେ ଫୁଟି ଦିଶିଲା ପରି ଦିଶୁଛ । ଗହୁ-କଳା; ଘହନନେ—ଶରୀରରେ । ଚନ୍ଦ୍ରକୁ ଗ୍ରାସ କଲାବେଳେ ଚନ୍ଦ୍ର ଦେହରୁ ସୁଧା ବିନ୍ଦୁ ଛିଡ଼ି ଗହୁ ଦେହରେ ପଡ଼ିଥିବାର କଳ୍ପନା । ଚନ୍ଦ୍ରଝୁମ୍ପି ଲମ୍ବିପଡ଼ି ତାର ଶିକୁଳୀ ଶେଷ ଅଳଙ୍କାର ଲମ୍ବିପଡ଼ି ଅର୍ଦ୍ଧଚନ୍ଦ୍ରର ପିଠିପରି ଦିଶୁଛି । ସେହି ଶିକୁଳୀର ଶେଷ ଅଳଙ୍କାର ଗୁଡ଼ିକ ଏଠାରେ ସପ୍ତର୍ଷି ତାରକା ମଣ୍ଡଳ ବୋଲି କଳ୍ପନା ।

୧୦—ଅଳକାର ଝିଲିମିଲି ମାଳା ମଝିରେ ଗୋଟିଏ ମୋତି ଲମ୍ବିଛି । ଝିଲି ମିଲି ମାଳି ସୁନା ଲତାପରି ଏବଂ ଅଳକାର ଚୂର୍ଣ୍ଣ କୁନ୍ତଳ ମଧୁକର ପନ୍ତି ( ଭ୍ରମର ସମୂହ ) ବୋଲି କଳ୍ପନା । ଉର୍ଦ୍ଧ୍ୱ ତିଳକ—ଉର୍ଦ୍ଧ୍ୱ ପୁଣ୍ଡ୍ର (ଦୁଇ ଆଖିପତା ମଧ୍ୟରୁ କପାଳ ଉପର ବାଳ ପର୍ଯ୍ୟନ୍ତ) ଭାଲ—କପାଳ । ସାରସ—ପଦ୍ମ, ମୁଖପଦ୍ମ ମଧ୍ୟରୁ କଳା କସ୍ତୂରୀ ଗାର ଅଳିବଂଶ ପରି ଉପରେ ବାଳ ରୂପ ତମାଳ ପାଖକୁ ଯାଉଛନ୍ତି କି ?

୧୧—କାନ ପାଶ ପ୍ରଭୃତି କାନର ଯେଉଁ ଉପମା ଦିଆଯାଏ ତାକୁ ହସୁଛି । ସେ ହସ ହେଲା ତାଟଙ୍କର ହୀର; ବଜ୍ରମଲ୍ଲିକଡୀ (ହୀରବସା ମଲିକଡୀ) ବଜ୍ର ଶବ୍ଦ ଥିବାରୁ ତାହାର ଧୈର୍ଯ୍ୟ ରୂପ ପର୍ବତକୁ ଧ୍ୱଂସକରୁଛି କି ? ବିକାରେ—କାମବିକାରେ;

ଲୁଳିତ ଜ୍ୟୋତି ଜ୍ୱଳିତ ମୋତି ବର ଜ୍ଞାନ ନାଶ ନାସେ ତାହାର ।
ନିର୍ମଳ ଓଷ୍ଠ ବିମ୍ବ ଓଷ୍ଠ ବିମ୍ବ ଧରି ଅର୍ଦ୍ଧ ଅରୁଣତର ।
ଆର୍ଦ୍ରା । ରୋହିଣୀକି ଘେନି କୋଳରେ ।
କଳଙ୍କ ହୀନ ପର୍ବ ଶର୍ବରୀଶ କି ଉଦିତ ଶରଦ କାଳରେ । ୧୨ ।

ବଶୀକରଣ ତ୍ରିବିଧ ମଣି ମନ୍ତ୍ର ଓଷଧି ଯହିଁ ନେତ୍ରେ ଅଛି ।
ଶୂଳୀ ଭଳି ଯତି ତାଳି ଅନାଇଁଲେ ଢଳିବେ ମନକୁ ପାଉଛି ।
ଯହିଁରେ । ଅଞ୍ଜନ ଦମ୍ଭକୁ ତରସେ ।
ଭାଲ ଗଣ୍ଡ ଖଣ୍ଡ ଚନ୍ଦ୍ରମା-ସୁଷମା-ସୀମାବାର ଗାର ପରା ସେ । ୧୩ ।

---

କାନରେ ଓହଳିଥିବା ଫୁଲ ଝଲକା (ପେଣ୍ଡି)ର କମ୍ପନ ଆଖିର ପଲକକୁ ଘଉଡ଼ି ଦେଉଛି (ତଡ଼ି ଦେଉଛି)—ଥରେ ଚାହିଁଲେ ଆଉ ପତା ପକାଇବାକୁ ମନ ହେଉନାହିଁ ।

୧୨—ଲୁଳିତ (ଦୋହଲୁଥିବା) ଜ୍ୟୋତିରେ ଜଳୁଥିଲା ଯେ ବଡ଼ ମୋତି ରସିକଙ୍କର ଜ୍ଞାନକୁ ନାଶ କରିବା ପାଇଁ ନାସେ (ନାକରେ) ଥିଲା । ଏଠାରେ ଏ ମୋତି ଜଳ ବୋଲି ଧରାଯାଇଛି । ତାର ବିମ୍ବ (ପାଚିଲା କଇଁଚି କାକୁଡ଼ିପରି) ଓଠ ନିର୍ମଳ ହୋଇଥିବାରୁ ଅର୍ଦ୍ଧ ଅରୁଣତର (ନାଲିଆ)' ବିମ୍ବ (କାନ୍ତି) ଧରିଛି । ଏ ଦୁଇଟିଯାକ ତା ମୁହଁରେ କିପରି ଦେଖାଯାଉଛି ? ପର୍ବ (ପୂର୍ଣ୍ଣିମା)ର ଶର୍ବରୀଶ (ଚନ୍ଦ୍ର) ଶରତ କାଳରେ ଆର୍ଦ୍ରା ଓ ରୋହିଣୀ ଦୁହିଁଙ୍କି କୋଳରେ ଘେନି ଉଇଁଛି କି ? ଆର୍ଦ୍ରା ଓ ରୋହିଣୀ ଦୁହେଁ ଟିକିଏ ନାଲିଆ ଦେଖାଯାନ୍ତି ।

୧୩—ବଶୀକରଣର (ବଶ କରିବାର) ମଣିମନ୍ତ୍ର ଔଷଧି ଏ ତ୍ରିବିଧ (ତିନି ପ୍ରକାରଯାକ) ଯେଉଁ ନେତ୍ରରେ ଅଛି, ଶୂଳୀ (ମହାଦେବ) ଭଳି ଯୋଗୀ ତାଳି ଅନାଇଲେ—ଥରେ ଚାହିଁଦେଲେ ଢଳିବେ (ବଶ ହେବେ) । ସେ ଆଖିରେ ଅଞ୍ଜନ (କଜ୍ଜଳ ଲଞ୍ଜି) ପୁରୁଷର ଦମ୍ଭକୁ ଯେପରିକି ଆଙ୍ଗୁଠିରେ ତର୍ଜ୍ଜକରି ଭୟ ଦେଖାଉଛି । ଭାଲ (କପାଳ) ଏକଖଣ୍ଡ ଚନ୍ଦ୍ରମା (ଅର୍ଦ୍ଧଚନ୍ଦ୍ର) ଗଣ୍ଡ (ଗାଲ) ଆଉ ଏକଖଣ୍ଡ ଚନ୍ଦ୍ରମା ସଙ୍ଗେ ସମାନ । କଜଳ ଗାର ସେ ଦୁହିଁଙ୍କର ସୀମା ବାଡ଼ର ଗାରପରି ହୋଇଛି ।

ହେମାବଳୀ ଝଳି ମର୍କତ-ପ୍ରବାଳ କଟି ଘର୍ଣ୍ଣରବ ସଂଯୁତ ।
ଉରଜ ଯୁଗ ତୁମ୍ବୀସାର ତ୍ରିବଳି ଚିତ୍ର ବଲ୍ଲକୀ କଲା ଖ୍ୟାତ ।
ବିଧିରେ । ବିଧିର ବୁଦ୍ଧି ଭ୍ରମ ହେଲା ।
ମନ୍ଦ ମଧୁର ଘନସାର ହାସଟି ଜାଣିଲି ଏତେ ଦୂର କଲା । ୧୪ ।
ଜରି କାଞ୍ଚୁଲି ପାଟ ଡ଼ୋରି ଚରମେ ଭିଡ଼ି ଆଚ୍ଛାଦିଛି ଯତନେ ।
ହିରଣ୍ୟଗର୍ଭ ହୁଡ଼ ବ୍ୟକ୍ତ ନୋହିବ ଏହି କାମନା କରି ମନେ ।
ତାହାର । ଖୋଳ ପରାୟେ ସେ ଦିଶଇ ।
ଉଚ୍ଚ ପୃଥୁଳ ଗୋପିତ ନୋହେ କଦା ନେତ୍ର ଅବନି ନ ଦେଖଇ ।୧୫ ।
ଏମନ୍ତ ମଣୁଛି ଅଙ୍ଗରଙ୍ଗା ପଦ ଅନଙ୍ଗ ଠାରେ ସମ୍ଭାବିତ ।
ମହା ଉତପାତ ମନ୍ଦ ବୋଲି ତାକୁ କରିଅଛି କି ସେ ଗୋପିତ ।
ସେ କଥା । ଯୁକ୍ତ ନୁହଇ ଦେଖିବାର ।
ଚୀର ଆଚ୍ଛାଦିତ ଏଥକୁ କରିଛି ଫଳ ଚୁମ୍ବୁଛି ମଧୁକର । ୧୬ ।

---

୧୪–ବିଧାତା ଏ ଗଣିକା ରୂପରେ ଗୋଟିଏ ଚିତ୍ର ବଲ୍ଲକୀ (ଅଦ୍ଭୁତ ବୀଣା) ତିଆର କରିଥିଲା । କିନ୍ତୁ ତିଆର କରିସାରି ବିଧାତାର ବୁଦ୍ଧିଭ୍ରମ ହେଲାପରି ଅନୁମାନ ହେଉଛି । କାରଣ ତାର ତୁମ୍ବୀରେ ଲଗିନାହିଁ । ସେ ବୀଣା କିପରି ? ହେମାବଳୀର ଝଳି (ଦ୍ୟୁତି) ବୀଣାରେ ଲଗିଥିବା ମର୍କତ (ଶାଗୁଆମଣି) ପ୍ରବାଳ (ପୋହଳା) ପରି; ତା ଅଣ୍ଟାରେ ଥିବା ଘଣ୍ଟି ଯେ ସେ ବୀଣାର ଘୁଙ୍ଗୁର ପରି । ଉରଜଯୁଗ (ସ୍ତନଦ୍ୱୟ) ବୀଣାର ତୁମ୍ବୀପରି । ତ୍ରିବଳି ଯେ ସେ ସାର (ବୀଣାତାର) ପରି । ବିଧିର ବୁଦ୍ଧିଭ୍ରମ ହେବାର ହେତୁ ସେ ଗଣିକାର ଘନସାର (କର୍ପୂର) ପରି ଉଜ୍ଜ୍ୱଳ ଓ ସୁବାସିତ ହାସ ।

୧୫–ଜରି କାଞ୍ଚୁଲିର ପାଟଡ଼ୋର ଚରମେ (ପିଠିରେ) ଭିଡ଼ିଛି । ହିରଣ୍ୟଗର୍ଭ (ବ୍ରହ୍ମା) ତାଙ୍କର (ପୂର୍ବ ପଦରେ କୁହାଯାଇଥିବା) ହୁଡ଼ (ଭ୍ରମ) ଜଣା ନପଡ଼ିବ ବୋଲି ଛାତିପଟ ଘୋଡାଇଛି । କିନ୍ତୁ କାଞ୍ଚଲା ବୀଣା ତୁମ୍ବୀର ଖୋଳ ପରି ଦିଶୁଛି । କାରଣ ଉଚ୍ଚ ପୃଥୁଳ ସ୍ତନ ଯେ କାଞ୍ଚୁଲରେ ଚିପିହୋଇ କେବେ ଲୁଚି ଯାଉନାହିଁ । ସେ ଏଡ଼େ ଉଚ୍ଚ ଯେ ତାହାର ଆଖି କେବେ ଅବନୀ (ଗୋଡତଳ ଭୂମି) ଦେଖିନାହିଁ ।

୧୬–ଅନଙ୍ଗ ଠାରେ (ଯାହାର ଅଙ୍ଗ ନାହିଁ ଅର୍ଥାତ୍ ଅଙ୍ଗଶୂନ୍ୟ ଠାରେ) ଅଙ୍ଗରଙ୍ଗା ପଦ (ଶ୍ରେଷ୍ଠ ଅଙ୍ଗପଦ) ସମ୍ଭାବିତ ହୋଇଅଛି । କିପରି ? ଶ୍ରେଷ୍ଠ ଅଙ୍ଗ ଯେ ସ୍ତନ ତାକୁ

କର ସନାଳ କୋକନଦ ବାହାର କି ତନୁ ଶୋଭ ସରସୀରୁ ।
ଅତୁଳ ପଛେ ଆନ ଭୂଷା[୯] ଧରିଛି ରୂପ ଗର୍ବିତା ଲକ୍ଷଣରୁ ।
ରଣିତ । କିଙ୍କିଣୀ କଟିରେ ଖଞ୍ଜିଛି ।
କାମିନୀକି କାମ ରଥ ବୋଲିବାର ସତ ଘଣ୍ଟି ଚୟ ସାଜିଛି । ୧୭ ।
ନାହିଁ ତୁଳା କୋଟି–ଜଗତରେ ବୋଲି ଘେନିଛି ପାଦରେ ଆଦରେ ।
କ୍ଷୁରୀ ନାରୀ ଧନ୍ୟ ବୋଲାଇ ଅଲକ୍ତ ପଦଗଗ ବ୍ୟକ୍ତ ହେବାରେ ।
ଦିଶୁଛି । ଏପରିରେ ତନୁ ଗଉର ।
ଚମ୍ପକ ଗନ୍ଧ ପତନୀ ଶାଢି ଥିବା ଚିକୁର ଧଡ଼ିରୁ ଗୋଚର । ୧୮
କାର୍ଯ୍ୟକୁ କାରଣ କରି କହିଲଇଁ ମଦନିକାର ଶୋଭ କିଛି ।
ବିସ୍ମରି-କହି ବସିଲେ ଏହି ଶଙ୍କା ବହୁତ ଛାନ୍ଦ ହେବା ଅଛି[୧୦] ।
ଶୋଭକୁ । ସୃହିଁ ପୁଂସ ନେତ୍ର ଘକିତ[୧୧] ।
ଜଣେ ଜଣାଇ ସିଂହଳ ପତି ଜେମା ସ୍ୱରୂପ ହୋଇଲା ଆଗତ[୧୨]।୧୯।

---

ପାଠାନ୍ତର—୯, ଶୋଭା । ୧୦, ନକହିଲ ମୁଁ ଏହି ଶଙ୍କା ଛାନ୍ଦ ବହୁତ ହେବ ଇଚ୍ଛି ।
୧୧, ଛକିତ ନେତ୍ର ପୁଂସ । ୧୨, ପ୍ରବେଶ ।

---

ଏ ମହା ଉତ୍ପାତ, ମନ୍ଦ ବୋଲି ସେ ଦେଖିବା ଠିକ୍ ନୁହେଁ ବୋଲି ଚୀର ଆଚ୍ଛାଦିତ ଲୁଗାରେ ଘୋଡ଼ାଇ କରି ଲୁଚାଇ ଦେଇଛି) । ମଧୁକର ସମାନ କଳା ଲୁଗା ସ୍ତନ ସମାନ ସ୍ତନକୁ ଚୁମ୍ବୁଛି । (ଅଥବା ଏହା ଅନ୍ୟ ଗୁପ୍ତ ଅଙ୍ଗର ବର୍ଣ୍ଣନା ହୋଇଥିଲେ ତାହା ଅନୁମାନ) ।

୧୭—କର କୋକନଦ (ରକ୍ତପଦ୍ମ); ବାହୁ ତାର ନାଳ; ତନୁଶୋଭ ସରସୀ (ପୋଖରୀ) ହେଲେ ଅତୁଳ (ଖଡୁ, ବା ଯାହାର ତୁଳନା ନାହିଁ) – ଏହି ଅର୍ଥ ଶ୍ଳେଷ ଅଛି । ଅତୁଳ ପଛକୁ ଅର୍ଥାତ୍ ପରେ ଆହୁରି ଅଳଙ୍କାର ପିନ୍ଧିଛି । ଏଥିରୁ ତାହାର ନିଜ ରୂପର ଗର୍ବ ପ୍ରକାଶ ପାଉଛି । ରଣିତ (ବାଜୁଥିବା) କିଙ୍କିଣୀ (ଘାଘୁଡ଼ି); ତାକୁ କାମରଥ (କନ୍ଦର୍ପ ଯାନ) ବୋଲିବା ସତ । ରଥର ଘଣ୍ଟିପରି ଏ କିଙ୍କିଣୀ ହୋଇଛି ।

୧୮—ତୁଳା କୋଟି–ନୂପୁର (ଏକପ୍ରକାର ପାହୁଡ଼) କୋଟି ଜଗତରେ ତୁଳା (ସମାନ) ନାହିଁ ବୋଲି ପାଦରେ ଘେନିଛି । କ୍ଷୁରୀନାରୀ—ଭଣ୍ଡାରୁଣୀ; ଅଲକ୍ତ ପ୍ରଦଗଗ—ଅଳତାରେ ପାଦର ରଙ୍ଗ । ଚମ୍ପକ ଗନ୍ଧ ବାଳ ନଥିଲେ ତା ଦେହରୁ ବାରି ହେଉ ନଥାନ୍ତା; ଧଡ଼ି ନଥିଲେ ପତନୀ (ପିତାମରୀ ଶାଢୀ) ତା ଗୋରା ଦେହରୁ ଅଲଗା ବୋଲି ବାରିହେଉ ନଥାନ୍ତା ।

୧୯—କାର୍ଯ୍ୟକୁ କାରଣ କରି କହିଲଇଁ – କଥା ପଡ଼ିବାରୁ ଏଠୁ ସେଠୁ ଦି କଥା କହି ଦେଲେଁ; (ଏଥିରେ କାର୍ଯ୍ୟ କାରଣ ଶବ୍ଦର ଅର୍ଥ କିଛି ନାହିଁ । ଏହା ଓଡ଼ିଆ ଭଷାରେ ଗୋଟିଏ ବିଶେଷ ବ୍ୟବହାର) । ଲବଣ୍ୟବତୀର ଚିତ୍ରପଟ ଆସି ପହଞ୍ଚିଗଲା ।

ସମ୍ଭ୍ରମେ ଉଠି ପାଛୋଟି ଯିବା ମନ ଜାଣି ନିଷେଧ କଲେ ମିତ ।
ଆସ ଆସ ବୋଲି ସନ୍ୟାସୀ ପାଶକୁ ଦୂତ ଉପରେ ଗଲେ ଦୂତ ।
ପ୍ରବେଶେ । ଆସନ ଦେଇ ବସାଇଲେ ।
ଚତୁର ମିତ୍ରେ ଚତୁର ବାରବଧୂ ପ୍ରଶଂସାଦିରେ କଥା ହେଲେ । ୨୦ ।
କେ ବୋଲେ ଗ୍ରହିଁ ଚଞ୍ଚଳ ଚକ୍ଷୁ ପକ୍ଷ୍ମ ପତନେ ବୃଦ୍ଧି କରେ ବଣା
ଚନ୍ଦ୍ରେ ଚକୋର ବସି ସୁଧା ପିଇବା ମତ୍ତେ କି କମ୍ପାଉଛି ଡ଼େଣା ।
କେ ବୋଲେ । ଗ୍ରହିଁ ନାସାପୁଲ୍ଲ ପଣକୁ ।
ଏ ଚତୁରୀର ଏ ଗ୍ରତୁରୀ କରିଛି ବିଜୟଟି ଫୁଲ ବାଣକୁ । ୨୧ ।
କେ ବୋଲେ ଗ୍ରହିଁ ଗ୍ରହିଁ ଦେଇ ନୟନ ଉରଜ ପରେ ଯା ନିଅଇ[୧୩]।
ଏହି ଶିବ ସେବ କାମ ପରଭବ ନ କରିବ ଏହା କହଇ ।
କେ ବୋଲେ । ଗ୍ରହିଁ ତା ମଧୁର ହାସକୁ ।
ଅଧରେ ଦେଖାଇ ଦେଉଛି ତରୁଣ ଅରୁଣ ଜିଣିଲ ଯଶକୁ । ୨୨ ।

---

ପାଠାନ୍ତର—୧୩, ଲୟନ ସ୍ତନ ଉପରେ ଯା ନଅଇ ।

---

୨୦—ଚତୁର ମିତ୍ରେ—ଗ୍ରରିମିତ୍ରେ;
ବାରବଧୂ—ବେଶ୍ୟା (ମଦନିକା)
ମଦନକାର ପ୍ରଶଂସାରେ ଚତୁର (ଗ୍ରତୁର୍ଯ୍ୟ, ଛଦ୍ମପୂର୍ଣ୍ଣ) କଥାବାର୍ତ୍ତା ହେଲେ ।

୨୧—ପକ୍ଷ୍ମ ପତନ—ପତା ପଡ଼ିବା, ଚନ୍ଦ୍ରରେ ଚକୋର ବସି ସୁଧା (ଅମୃତ) ପିଇଲାବେଳେ ମତ୍ତେ (ଉନ୍ମାଦନାରେ); ଡ଼େଣା—ପକ୍ଷ ।
ନାସା ଫୁଲପଣ—ବନ୍ଧୁକ ଚଢ଼ାଇଲା ପରି; ତେଣୁ ଫୁଲବାଣକୁ ଜିଣିଛି । ଏ ଶ୍ଳେଷାର୍ଥ ମଧ୍ୟ ଅଛି ।

୨୨—ପୁରୁଷକୁ ଗ୍ରହିଁଦେଇ ମୁଣ୍ଡ ପୋତି ଦେଉଛି । ନିଜର ସ୍ତନ ରୂପ ମହାଦେବଙ୍କୁ ସେବା କରିବା ପାଇଁ ଠାରି ଦେଉଛି କି ? କାମକୁ ମହାଦେବ ପୋଡ଼ିଥିବାରୁ ସେ ମହାଦେବଙ୍କୁ ଡ଼ରେ । ଅଧର ନାଲି । ତହିଁରେ ହାସ ପାନଖିଆ ଦାନ୍ତ ମଧ୍ୟ ଟିକିଏ ନାଲିଆ । ତେଣୁ ତରୁଣ ଅରୁଣ (ଉଇଁ ଆସୁଥିବା ସୂର୍ଯ୍ୟ) ଜିଣିଲା ପରି । ତରୁଣ ଓ ଅରୁଣ ଦୁହିଁଙ୍କି ଜିଣିବାର ଯଶ— ଏ ଶ୍ଳେଷାର୍ଥ ଅଛି । ହସି ଦେବାରୁ ତରୁଣମାନେ ଭୁଲି ଯାଉଛନ୍ତି ଏବଂ ହାସର ରଙ୍ଗ ଅରୁଣକୁ ଜିଣୁଛି ।

ସନ୍ୟାସୀ ଋଷି ଯାହା ପ୍ରତି ପ୍ରତିମା ଆଣିଛି ଦର୍ଶନ ଦେବାକୁ ।
ଏ ଯୋଷା ଯୋଗ୍ୟ ନୋହେ ତା ପଦଘଷା ଉପଳ ଉପମା ଦେବାକୁ ।
ଭୋ ଯତି । କି କହ ମନ୍ତ୍ରୀଜ ବୋଇଲା ।
ପ୍ରତ୍ୟକ୍ଷ କଥାରେ କଅଁ ଅନୁମାନ ବୋଲି ସେ ପେଢ଼ାକୁ ଫେଇଲା । ୨୩ ।
ଏ ବାମାକୁ ବାସ ଉପହାର ଦିଅ ଅଧିକାରୀ କି ଆଜ୍ଞା ଦେଇ ।
ତନ୍ମନା ହୋଇ ରମା ରୂପ ଲୋକନେ ବିଷୟ ପଛକୁ ପକାଇ ।
ସମ୍ପୂର୍ଣ୍ଣ । ଏ ଛାନ୍ଦ ଚତୁର୍ବିଂଶ ପଦ ।
ଅଯୋଧ୍ୟା ଇନ୍ଦୁ ଧ୍ୟାନରେ ଉପଇନ୍ଦ୍ର ନାଶିବ[୧୪]ଅର୍ଜିତ ଆପଦ । ୨୪ ।

---

ପାଠାନ୍ତର—୧୪, ନାଶିଲ ।

---

୨୩—ଦର୍ଶନ ଦେବାକୁ- ଦେଖାଇବାକୁ । ଏ ଯୋଷା—ଏ ସ୍ତ୍ରୀ ( ମଦନିକା ଗଣିକା ) ପଦଘଷା ଉପଳ—ଗାଧୋଇଲା ବେଳେ ଯେଉଁ ପଥରରେ ପାଦ ଘଷନ୍ତି; ଉପମା—ସମାନ । ମନ୍ତ୍ରୀଜ—ମନ୍ତ୍ରୀପୁଅ; ସେ ପେଢ଼ାକୁ ଫେଇଲା—ଚିତ୍ରପଟ ଥିବା ପେଢ଼ି ଫିଟାଇଲା । ( ଏପରି ନାୟିକାକୁ ଗୋଟିଏ ଗଣିକା ଠାରୁ ବେଶି ବୋଲି କହି ନାୟକକୁ ଭୁଲାଇବା କବିଙ୍କର ଅତି କୁରୁଚି ପ୍ରକାଶ ପାଉଛି । )

୨୪—ଏ ବାମାକୁ ( ମଦନିକାକୁ ) ବାସ ( ଲୁଗା ) ଉପହାର ଦେବାପାଇଁ ଅଧିକାରୀ ( ଭଣ୍ଡାର ଘରିଆ ) କୁ କହି ବିଷୟ ( ଅନ୍ୟାନ୍ୟ ଧନ୍ଦାସବୁ ) ପଛକୁ ପକାଇ ରମା ରୂପ ( ଲାବଣ୍ୟବତୀ ଚିତ୍ର ) ଦେଖିବାରେ ତନ୍ମନା ହୋଇ (ମନଦେଇ) ।

ଅଯୋଧ୍ୟା ଇନ୍ଦୁ- ରାମଚନ୍ଦ୍ର ।



## ଦଶମ ଛାନ୍ଦ

### ସ୍ୱରୂପ ପ୍ରତିମା ଦର୍ଶନ

( ଚିତ୍ରପଟ ଦର୍ଶନ )

ରାଗ ଦେଶାକ୍ଷ ( ସଜନୀ ଚଉତିଶା ବାଣୀ )

ଏଥୁ ଅନନ୍ତରେ ରସିକ ସାର । ଶ୍ରବଣମୁଖେ ସୁଧା ପାନକର ।
ନୃପସୁତ ଆଗେ ପେଡ଼ି ଫେଡ଼ିଲା । ଫେଡ଼ିଲା କ୍ଷଣି ନୟନ ପଡ଼ିଲା[୧] ।
କି ପଡ଼ିଲା । ନାହିଁ ଢଡ଼ିଲା ଘେନ । ଢଡ଼ିଲା ନାହିଁଟି ବୁଡ଼ିଲା ଜ୍ଞାନ । ୧ ।
ମୂର୍ତ୍ତିମନ୍ତ କଲା ମଦନ କଳା । କନକ ନିଭ ମଦନ ପିତୁଳା ।
କାଚ ବାଡ଼ ପୁରେ ବସିଲାପରି । ମୁକୁରେ ଫୁଟି ଦିଶୁଛି ମାଧୁରୀ ।
କି ସୁନ୍ଦର ! ସମେ ଆଉ କାହିଁଛି । ସଚିତ୍ର ହୋଇ ବିଚିତ୍ର ହୋଇଛି । ୨ ।
ସରସିଜେ ଶିଶୁ ଅଳି ଆବଳୀ । ବସିଥିଲା ପରି ଅଳକାଞ୍ଜଳି ।
ଅଧରେ ତ ଅଛି ହାସ ଝଳକ । କର୍ପୂରେ ମାଜିଲା ପରି ମାଣିକ୍ୟ ।
କି ସୁନ୍ଦର ! ପୁଣ ପକ୍ଷ୍ମ ଚାତୁରୀ । ଚାଳିଦେଲା ପରି ଧୈର୍ଯ୍ୟ-କତୁରୀ । ୩ ।
ଆଗ ଅନୁରାଗ ଭ୍ରମ ଉପୁଜି । ରାମା କି ପ୍ରତିମା ନପାରି ହେଜି ।
ଚକିତ ସ୍ତମ୍ଭିତ ଦଣ୍ଡେ ହୋଇଲା । ମନେ ମନେ ଲକ୍ଷେ ଚୁମ୍ବନ ଦେଲା ।
ସେ ସୁନ୍ଦର । ମନ ନୟନ ପ୍ରାଣ । ସେହି ଶୋଭରେ କଲା ସମର୍ପଣ । ୪ ।

---

ପାଠାନ୍ତର—୧, ସେ ରୂପ ଉପରେ ନେତ୍ର ପଡ଼ିଲା ।

---

୨—ମୂର୍ତ୍ତିମନ୍ତ କଲା ( କରିଥିବା ) ମଦନ କଳା ( କେଳିବିଦ୍ୟା ) ପରି । ବର୍ଣ୍ଣରେ କନକନିଭ—ସୁନାପରି, ମଦନ ପିତୁଳା—କାମର ପ୍ରତିରୂପ; କାଚ ବାଡ଼ପୁରେ ବସିଲା ପରି—( ୮ ଛାନ୍ଦ, ୧୩ ପଦ ) ଟୀକା ଦେଖ ) ।

୩—ଅଳକା—ଚୂର୍ଣ୍ଣ କୁନ୍ତଳ; ସୁନ୍ଦର ବାଳ, ଲାଲଓଠ ମାଣିକ ପରି, ଧଳା ଦାନ୍ତର ହସ କର୍ପୂର ପରି । ପକ୍ଷ୍ମ ଚାତୁରୀ—ଆଖିପତା ପକାଇବାର ଛଟା; ଧୈର୍ଯ୍ୟ କତୁରୀ—ଧୈର୍ଯ୍ୟକୁ କାଟି ଛିଣ୍ଡାଇ ଦେବା ଅସ୍ତ୍ର ।

୪—ଅନୁରାଗ—(ପ୍ରୀତିରେ) ପ୍ରତିମାଠାରେ 'ଏ ନିଜେ ବାଳା' ବୋଲି ଭ୍ରମ (ଭୁଲ) ହେଲା ।

ଏଣୁ ସେ ସୁତନୁ ତନୁ ତନୁକୁ । ଆଣି ଅନୁମାନେ ଅନୁମାନକୁ[୨] ।[୩] ।
ଆଲେକିତ କଲା ଲେକିତ କରି । କରଇ ଉପମା ନୁହଇ ସରି ।
ସେ ସୁନ୍ଦର । କବି ବଚନ ପଥ । କୃତାର୍ଥ କରଣେ ହେଲା ସମର୍ଥ । ୪ ।
ବେଣୀ ଶୋଭ ଅବା ସାଧିବା ପାଇଁ । ରତୀଶ ପଟ୍ଟିଶ ଅଛି ଭିଆଇ ।
କନକ ପିହାଣିଆକୁ ଅସମ । ମୁକୁତା ଜାଲି ମୁଠା ଜାଲି କମ ।
କି ସୁନ୍ଦର । ପୁଣ ଦିଶେ କୁସୁମେ । ପୂଜା କରେ କି ଜଗଜ୍ଜୟ କାମେ । ୬ ।
ଦ୍ୱିତୀୟା ତିଥି ଭ୍ରମ ସେହିଠାରେ । ଅବତଂସ ଚନ୍ଦ୍ର ଝୁମ୍ପି ଥିବାରେ ।
ଜାଜ୍ଜ୍ୱଲ୍ୟ ତାରକା ଗ୍ରହ ଦୀଧିତି । ସୁଧା ବିନ୍ଦୁସ୍ତବ ପରାୟେ ମୋତି ।
କି ସୁନ୍ଦର । କାମରନ୍ ତୋରଣା । ଝିଲିମିଲି ମାଳୀ ସେହି ଲକ୍ଷଣା । ୭ ।

---

ପାଠାନ୍ତର—୨, ଅପେ ଅନଅନ ଅନୁମାନକୁ । ୩, ଅଢେ ଅନୁମାନ ଅନୁମାନକୁ ।

---

୪—ସେ ସୁତନୁ ( ସୁଦେହା )ର ତନୁ ( କୃଶ, ଅତଏବ ସୁନ୍ଦର ) ତନୁକୁ ( ଅଙ୍ଗକୁ, ଶରୀର ଅବୟବାଦିମାନଙ୍କୁ ) ଅନୁମାନକୁ ଆଣି ଚିତ୍ରକୁ ଲେକିତ କରି ( ଦେଖି କରି ) ଅନୁମାନକୁ ଆଲେକିତ ( ଉଜ୍ଜ୍ୱଳ ) କଲା । ତାପରେ ଉପମା, ମାନଙ୍କୁ କଲା ( କେତେ ଜିନିଷ ସଙ୍ଗେ ତୁଳି ବସିଲା ) କିନ୍ତୁ କେହି ସମାନ ହେଲେ ନାହିଁ । ତା ଉତାରୁ କବିର କଥାରେ ଯାହା ବର୍ଣ୍ଣି ବସିଲା ସେ କେବଳ କବିର ବଚନ ପଥକୁ କୃତାର୍ଥ କରିବା ପାଇଁ ସମର୍ଥ । ଲାବଣ୍ୟବତୀର ସୌନ୍ଦର୍ଯ୍ୟକୁ ବର୍ଣ୍ଣିବାକୁ ନୁହେ, ଏହି ଅଭିପ୍ରାୟ ।

୬—ପଟ୍ଟିଶ—ଲମ୍ବା ଦାଢ଼ୁଆ ଗୋଟିଏ ଲୁହାର ଶସ୍ତ୍ର । ଓଡ଼ିଆରେ ତାକୁ ପଟା କହନ୍ତି; ଏହା ପାଇକମାନଙ୍କର ପଟା ଖେଳରେ ଦେଖାଯାଏ ।

ପଟ୍ଟିଶୋ ଲୌହ ଦଣ୍ଡୋୟ ସ୍ତୀକ୍ଷ୍ଣ ଧାରଃ କ୍ଷୁରୋପମଃ ' ଇତି ବୈଜୟନ୍ତି '

ଅସମ ( ଅନୁପମ, ଅତିସୁନ୍ଦର ) କନକ ପିହାଣିଆ ( ଅଳଙ୍କାର ଗୁନ୍ଥା ଯିବା ସୂତାର ଭୁଣ୍ଡି ବା ଅଗ ଗର୍ଣ୍ଣ ଉପରେ ଧାତୁର ଯେଉଁ ଘୋଡ଼ଣୀ ଥାଏ, ବିଦ-ଭୂର୍ଣ୍ଣ ଉପରେ ସାଧାରଣତଃ ପିହାଣିଆ ଥିବାର ଦେଖାଯାଏ । ଏଠାରେ ବେଣୀ ଶେଷ ସୂତା ଭୁଣ୍ଡିର ପିହାଣିଆକୁ ଲକ୍ଷ୍ୟ କରାଯାଇଛି । ସେହି ପିହାଣିଆ ପାଖକୁ ମୁକ୍ତା ଜାଲି, ମୁକ୍ତ ଜାଲି ବେଣୀ ଉପରେ ପିନ୍ଧିବାର ଦୁଇଟି ଅଳଙ୍କାର କମ ( ସୁନ୍ଦର ) ଦେଖା ଯାଉଛି । ବେଣୀରେ ଫୁଲ ମଧ୍ୟ ଅଛି । ସେ ଜଗତ ଜିଣିବା ନିମନ୍ତେ କାମକୁ ପୂଜା କରିବାର ଫୁଲ ମଧ୍ୟ ହୋଇଛି ।

୭—ଅବତଂସ—ମଥାମଣି, ମଥାମଣି ଦେହରେ ଝୁଲୁଥିବା ଚନ୍ଦ୍ରଝୁମ୍ପି ଦ୍ୱିତୀୟା ଚନ୍ଦ୍ରପରି ଦିଶୁଛି । ମଥାମଣି ତାରପରି; ଚନ୍ଦ୍ର କିରଣରୁ ସୁଧା ବିନ୍ଦୁ ସ୍ରବିଲା ପରି ହୋଇଛି

କର୍ଣ୍ଣ ହୋଇ ଅଛି ବନ୍ଦି–ଆବାସ । ଏଥିକି ଉପମା କରିବା କିସ ॥
ଭଲୁ ଭଲୁ ଦୃଷ୍ଟି ପତନ ହେଲା । ବାଳି ବୋଲି ମନେ ଯତନ କଲା ।
କି ସୁନ୍ଦର । ଫୁଲ ସୁମଲୀ କଢ଼ୀ । ଝଲକା ଉପମାକୁ ଗଲା ଛୁଡ଼ି । ୮ ।
ଭଲ ଗୁହିଁ କଲା ଭଲ ବିଗ୍ଭର । ଏ ହେମ କାଗଜ ପଟ ଧାତାର ।
ଲେଖିଛି ଚିତ୍ର କବିତ୍ୱ ଏଥିରେ । ଏ ବାଳା ସମାନ ନାହିଁ ପୃଥ୍ୱୀରେ ।
କି ସୁନ୍ଦର । ଗୁଣେ ନାଗ ଭୁବନେ । ସ୍ୱର୍ଗପୁରେ ଆଉ ନାହିଁ ସମାନେ । ୯ ।
ବଡ଼ କି ଚତୁର ପାଞ୍ଚିବା ଏହା । ବଡ଼ କରି ଜଡ଼ ଘେନିବେ ଯାହା ।
ରଙ୍ଗ ଶୁକ୍ଳ କଳା ତିନି ଜାତି । ଟୋପି ଛଳେ ଅଛି ଅକ୍ଷର ପନ୍ତି ।
କି ସୁନ୍ଦର । ଦୃଷ୍ଟି ଚଳିବ ନାହିଁ । ଦେଉଥିଲେ ତାର ଚିତାକୁ ଗୁହିଁ । ୧୦ ।

---

ପାଠାନ୍ତର—୪, ଅଚ୍ଛୁ ।

---

ଅଳକା ଉପର ଝିଲିମିଲି ମାଳି କାମର ରନ୍ତୁ ତୋରଣା ପରି ହୋଇଛି । ତୋରଣା—ମେହେରବି; ।

୮—କର୍ଣ୍ଣ ବନ୍ଦିର ଆବାସ ( କଏଦିଘର ) ପରି ହୋଇଛି । ବନ୍ଦିଆ—ତଳକାନରେ ପିନ୍ଧିବା ଏକ ଅଳଙ୍କାର ତାହାର ବାସ ( ସ୍ଥାନ ) କାନ ହୋଇଛି । ବାଳି ( ଫାଶିଆ ) ର ନାମ ବାଳି ବା ଯୁବତୀ ହେବାରୁ ମନରେ ବଡ଼ ଯତନ ( ଆହ୍ଲାଦ ) ହେଲା । କାନର ମଲକଢ଼ୀକି ଦେଖି ସେଥିରେ ଲାଗିଥିବା ଝଲକା ( ପେଣ୍ଡି )କୁ ଉପମା ଦେଲା ବେଳକୁ ଭୁଲ ହୋଇଗଲା । ଅର୍ଥାତ୍ ତାକୁ ଦେଖି ଆପଣାକୁ ଏନେ ଭୁଲିଗଲା ଯେ ଆଉ ଉପମା ମନେ ପଡ଼ିଲା ନାହିଁ ।

୯—କାଗଜରେ କବିତ୍ୱ ଲେଖାଯାଏ । ପଟ୍ଟରେ ଚିତ୍ର ଲେଖାଯାଏ । କିମ୍ବା ଏହି କାଗଜ ପଟ୍ଟରେ ଚିତ୍ର ( ଆଶ୍ଚର୍ଯ୍ୟ ) କବିତ୍ୱ ଲେଖିଛି । ସେ କବିତ୍ୱ, ଯଥା—ଏ ବାଳା ସମାନ ପୃଥିବୀରେ ନାହିଁ । ସୁନ୍ଦର ଗୁଣେ ନାଗ ଭୁବନରେ (ପାତାଳରେ) ନାହିଁ । ଆଉ କାହିଁରେ ସମାନ ହେବାପାଇଁ ସ୍ୱର୍ଗପୁରେ ନାହିଁ । ଭଲ—କପାଳ ।

୧୦—ସେହି କବିତ୍ୱ ଚିତ୍ରରେ ଅକ୍ଷର ପନ୍ତି ଭଳି ରଙ୍ଗ, ଧଳା, କଳା, ତିନି ଜାତିର ଟୋପି ଅଛି । [ ଏଠାରେ ଟୋପି ବୋଇଲେ ମୁଣ୍ଡର ତିଳକ ଟୋପାକୁ ଲକ୍ଷ୍ୟ କରା ଯାଇଛି । ] ଏହିପରି ପାଞ୍ଚିବା ( ଭାବିବା ) କି ବଡ଼ ଚତୁରୀର କଥା । ଅବଶ୍ୟ ଜଡ଼ ( ନ ଜାଣିବା ଲୋକେ ) ଏହାକୁ ବଡ଼ ବୋଲି ବିଗ୍ଭରିବେ । କିନ୍ତୁ ବାସ୍ତବରେ ଏ ଚିତା ଏଡ଼େ ସୁନ୍ଦର ଯେ ଅକ୍ଷରକୁ ଗୁହିଁଲେ ଯେପରି ନ ବୁଝିବା ପର୍ଯ୍ୟନ୍ତ

ଶିବ ଶିର କଳାକର କଳାଏ । କଳା ହୋଇ ବିଷ ଜ୍ୱାଳାରେ ଭୟେ ।
ଭୀରୁଠାରେ ଭ୍ରୂ ପଳାଇ ଆସି । ଲକ୍ଷ ପ୍ରକାରେ ଏହି ଲକ୍ଷ ଦିଶି ।
କି ସୁନ୍ଦର । ପର୍ଶୁରାମ ପରଶୁ । ରମା ବହେ ରମ ଶବ୍ଦ ବଶୁଁ । ୧୧ ।
ଅଟି ବିଚିତ୍ର ଛୁରିକା ନୟନ । ଅଞ୍ଜନ ଲଞ୍ଜି ବ୍ୟାଜ ମହାମୁନ ।
ନ ମାରୁଁ ରହାଣି ଛଟକେ କରି । ମରମକୁ ଭେଦି ଯାଇ ବାହାରି ।
କି ସୁନ୍ଦର । ଦୃଷ୍ଟି କରଇ ସତ । ଅନ୍ତ ରକତ ହେବାରୁ ବ୍ୟକତ । ୧୨ ।
ଏ ପାଞ୍ଚେ ରହିଁଲ ବହୁତ ଥର । ଆପଣା ଗାତ୍ରକୁ ନେତ୍ରକୁ ତାର ।
କ୍ଷତ ନଦେଖି ଲଭିଲ ତତପର । ଚମତକାରରେ ଚମତକାର ।
କି ସୁନ୍ଦର । ସମେ ଆନ ନ ଦିଶି । ଏହି ପଦକ ହୋଇଲା ଘୋଷି । ୧୩ ।

---

ଆଖି ଅନ୍ୟ ଆଡ଼େ ଯାଏ ନାହିଁ ସେହିପରି ଏ ଚିତାକୁ ରହିଁଲେ ଦୃଷ୍ଟି ଟଳେ ନାହିଁ ।
[ ଏ ପଦରେ ମୁଳ ଗ୍ରନ୍ଥର ପାଠ ଭିନ୍ନ ହୋଇଥିବାର ସମ୍ଭାବନା ଅଛି । ]

୧୧—ଶିବଙ୍କର ଶିର ( ମୁଣ୍ଡ ) ରେ ଥିବା କଳାକର ( ଚନ୍ଦ୍ର ) ରୁ କଳାଏ ( ଷୋଳ ଭାଗରୁ ଭାଗେ ) ବିଷଜ୍ୱାଳାରେ କଳା ପଡ଼ି ଭୟରେ ପଳାଇ ଆସି ଏହି ଭୀରୁ ( ସ୍ତ୍ରୀ—ଲାବଣ୍ୟବତୀ ) ଠାରେ ଭ୍ରୂ ( ଭ୍ରୂଲତାବାଙ୍କ ) ହୋଇଛି । ଲକ୍ଷ ପ୍ରକାରରେ ( ଅଶେଷ ପ୍ରକାରରେ ) ଏହି ଲକ୍ଷ ଦିଶି ( ଏହିକଥା ପରି ଜଣା ଯାଉଛି )। ଦୁଇ ଭ୍ରୂଲତା ଯାକ ମିଶି ପର୍ଶୁରାମଙ୍କ ପରଶୁ ( ଫାରଶା ) ପରି ହୋଇଛି । ପର୍ଶୁରାମଙ୍କର ଗୋଟିଏ ନାମ ରମ । ରମା ଏହି ଶବ୍ଦରେ ମଧ୍ୟ ରମ ଅଛି । ଅତଏବ ରମଙ୍କ ଫାର୍ଶା ରମା ଧରିଛି ।

୧୨—ଆଖିଛୁରୀ ହେଲା । କଜ୍ଜଳ ଲଞ୍ଜି ଛୁରୀର ଦାଢ଼ୁଆ ମୁନ ପରି ହେଲା । ନମାରୁଁ ପର୍ଯ୍ୟାତ ଛୁରୀକୁ ନମାରୁଁଣ ( ଚିତ୍ର ହେବାରୁ ଚଞ୍ଚଳ କଟାକ୍ଷ ଅସମ୍ଭବ । ତେଣୁ ମାରି ପାରୁ ନାହିଁ ); ରହାଣି ଛଟକେ ( ଚିତ୍ରରେ ଯେଉଁ ରହାଣୀର ଭଙ୍ଗୀ ସେଥିରେ କରି ) ମରମକୁ ଭେଦି ବାହାରିଯାଏ । ଦୃଷ୍ଟି ଯେ ଆଖି ସେ ଏହା ସତ କରଏ । କାହିଁକି—ତାର ଅନ୍ତ ( ଶେଷରେ ) ରକ୍ତ ( ନାଲି ) ବ୍ୟକ୍ତ ହେବାରୁ ( ପ୍ରକାଶ ପାଇବାରୁ ) । ଆଖି ଶେଷ କୁଣ ନାଲି ଦେଖାଯାଏ ।

୧୩—ଏ ପାଞ୍ଚେ— ( ଏହା ବିଗ୍ରରି ) ବହୁତ ଥର ନିଜ ଦେହକୁ ରହିଁ ନିଜ ଦେହରେ ଘାଣ୍ଡିଆ ନ ଦେଖି ତତ୍‌ପର ଲଭିଲା ( ଚିତ୍ର ଆଖି କଥାକୁହିଁ ) ଭବିଲା । ଏକ ଚମତ୍କାର ଯେ ଚିତ୍ର ଛୁରୀ ମାରୁଛି । ଦ୍ୱିତୀୟ ଚମତ୍କାର ଏହି ଯେ ମର ହେବା

ଯହିଁ ନୟନର ଏଡ଼େ ବଡ଼ାଇ । ମୃଗକୁ ଦେଲା ନଗର ଛଡ଼ାଇ ।
ବୁଡ଼ା କରି ଦେଲା ମୀନ କମଳ । ମୋ ସଙ୍ଗେ ହେଉଥାଅ ବୋଲି ତୁଲ ।
କି ସୁନ୍ଦର । ପଦ୍ମ ଥିଲାକୁ ଦୋଷେ । ଦଣ୍ଡ ଦିଆଇଲା ତୁହିନ[୫] ବସେ । ୧୪ ।
ଗଣ୍ଡ ଚିତ୍ରକ ପ୍ରମାଣ ମକରୀ । ଏ ଅନୁମାନରୁ ଆନ ନକରି ।
ନାରୀ ରଥ ସଜ ହେବା ହେତୁରେ । ମଣ୍ଡିଲା କନ୍ଦର୍ପ ନିଜ କେତୁରେ ।
କି ସୁନ୍ଦର । ନାସାପୁଟେ ବେସର[୬] । ତୂଣୀର ଘଟିତ ରନ୍ଧ୍ର ପୁଙ୍ଖଶର । ୧୫ ।
ଏମନ୍ତ ସାଜେଣି କି ଗୃହି ଡ଼ରି । ସ୍ୱୟମ୍ଭୁ ଶମ୍ଭୁ କୁଚ ରୂପ ଧରି ।
ଆଚ୍ଛାଦିତ ହୋଇ ଗ୍ରେଳ[୭] କବଚେ । ବାଳାରେ ଶରଣ ଉପମା ପାଞ୍ଚେ ।
କି ସୁନ୍ଦର । ହାର ଜାହ୍ନବୀ ଦିଶେ । ରୋମାଳୀ କାଳ ଭୁଜଙ୍ଗିନୀ କି ସେ[୮] । ୧୬ ।

---

ପାଠାନ୍ତର—୫, ତୁହୀନ । ୬, ଭେସର । ୭, ଚେଲ । ୮, ରୋମାବଳୀ କାଲ ଭୁଜଙ୍ଗ ପାଶେ ।

---

ଲେକ ଦେହ ଖଣ୍ଡିଆ ନ ହୋଇ ରକ୍ତ ଲଗିଛି । ଏହି ପଦକ—ଏହି କଥାକୁ; କି ସୁନ୍ଦର; ଏହାସମେ ( ସମାନରେ ) ଆନ ( ଆଉ କିଛି ) ନ ଦିଶେ ( ଦେଖା-ଯାଏନାହିଁ ) । ଶ୍ଳେଷାର୍ଥ, କି ସୁନ୍ଦର ହେଲପରି ଆନନ ( ମୁଖ ) ଦିଶୁଛି ।

୧୪—ମୃଗ ବଣକୁ ପଳାଇଲା । ମୀନ, କମଳ ( ପଦ୍ମ ) ଦୁହେଁ ପାଣିରେ ବୁଡ଼ିଗଲେ କିନ୍ତୁ ପଦ୍ମ ବରାବର ବୁଡ଼ି ନରହି ବେଳେ ବେଳେ ବାହାରିବା ଦୋଷରୁ ତୁହିନବଶେ ( କାକରଦ୍ୱାରା ) ତାକୁ ଦଣ୍ଡ ଦିଆଇଲା । ତୁହୀନ —ମୋଠାରୁ ତୁ ହୀନ, ଏପରି ଶ୍ଳେଷାର୍ଥ ମଧ୍ୟ ଅଛି ।

୧୫—ଗାଲରେ କସ୍ତୁରୀ ବୋଳା ହୋଇ ମାଛ ଆକୃତିରେ "ମକରୀ" ଚିହ୍ନ ହୁଏ । କନ୍ଦର୍ପର ପତାକାରେ ମୀନ ବା ମକର ଚିତ୍ର ହୋଇଥାଏ ବୋଲି ପୁରାଣରେ ଅଛି । କନ୍ଦର୍ପର ରଥ ହେଲା ଏ ନାରୀ; ଗାଲ ଚିତ୍ର ହେଲା କନ୍ଦର୍ପ ପତାକାର ମୀନ ଲାଞ୍ଛନ; ନାସା ( ନାକ ) ହେଲା ତୂଣୀର । ନାସାପୁଟେ (ନାକ ପୁଡ଼ାରେ) ରନ୍ଧ୍ର ଲସା ବେସର ( ବଶୁଣୀ ) ହେଲା ରନ୍ଧ୍ର ପୁଙ୍ଖ ( କଙ୍କପତ୍ର ) ଥିବା ଶର; ଶର ମୂଳ ଯେଉଁ ଜାଗାରେ ପକ୍ଷୀ ଲଗିଥାଏ ।

୧୬—କନ୍ଦର୍ପର ଏପରି ରଥରେ ଯୁଦ୍ଧ ସଜା ( ସାଜେଣୀ ) ଦେଖି ସ୍ୱୟଂମ୍ଭୁ ( ନିଜେ ବାହାରି ଥିବା ) ଶମ୍ଭୁ ( ମହାଦେବ ) କୁଚ ରୂପ ହୋଇ ଗ୍ରେଳ ( କାଞ୍ଚୁଳା ) ରୂପ ସାଞ୍ଜୁ ପିନ୍ଧି ବାଳାଠାରେ ଶରଣ ପଶିବାକୁ ଉତ୍ତମ ପାଞ୍ଚେ ( ଭଲ ବୋଲି ବିଗ୍ଭରେ )। ଏହାର ହାର ମହାଦେବଙ୍କ ମୁଣ୍ଡର ଜାହ୍ନବୀ ଏବଂ ରୋମାବଳୀ ମହାଦେବଙ୍କ ବେକରେ ଥିବା କାଳ ଭୁଜଙ୍ଗିନୀ ( କାଳସର୍ପ ) ।

ସମ୍ପୁଟ ଉପମା ଉରଜେ ମଞ୍ଜୁ । ମୁକୁତା ମାଳା କୁନ୍ଦକାର ରଜ୍ଜୁ ।
ଯଉବନ ଗଜା ସର୍ବସ୍ୱ ତହିଁ । ପ୍ରେମାଳଙ୍କାର ସହିତେ ପୂରେଇ ।
କି ସୁନ୍ଦର । କରି ଘୋଡ଼ାଇଛି । ଜାଗର୍ତ ପଣ[୯] ଲଜ୍ଜାକୁ ଦେଇଛି । ୧୭ ।
ନୀଳ ଜଳଦ ବିଜୁଳି କି ଭିଡ଼ି । ଥିଲପରେ କରେ ମର୍କତ ଚୂଡ଼ି ।
ଭୁଜେ ବାଜୁବନ୍ଧ[୧୦] ରନ୍ଥ ମାଧୁରୀ । ନଦୀ ଲହରୀରେ କହ୍ଲାର ପରି ।
କି ସୁନ୍ଦର । ଜିଣି ଅଶୋକ କଳୀ । ମାଣିକ୍ୟ ମୁଦିରେ ଝଳି ଅଙ୍ଗୁଳି । ୧୮ ।
ଚିବୁକେ ଚତୁର୍ଥୀ ଚନ୍ଦ୍ରେ ଭ୍ରମରୀ । କଳଙ୍କ ଆସିଲ ପଗ ଅଙ୍କୁରି ।
ଗ୍ରପସର୍ରୀରେ ମନୋରମଗଳା । ବ୍ୟାଧ ବୁର୍ଦ୍ଧିକି ବିଧି ଏବେ କଲା ।
କି ସୁନ୍ଦର । ମତ୍ତ କପୋତ ପାଶେ । ବାନ୍ଧି ଥୋଇଛି ଗିରିପରେ କିସେ । ୧୯ ।

---

ପାଠାନ୍ତର—୯, ଜାଗ୍ରତ ପଣ । ୧୦, ବାହୁବନ୍ଧ ।

---

୧୭— ସଂପୁଟ (ଫରୁଆ)ର ଉପମା ଉରଜ (କୁଚ)ରେ ସୁନ୍ଦର । ମୁକୁତା ମାଳ ଫରୁଆ କୁନ୍ଦିଲ ବେଳେ କୁନ୍ଦିବା ଲୋକର ହାତ ରଜ୍ଜୁ (ଦଉଡ଼ି) ପରି । ଯୌବନ ରୂପ ଗଜା ସେହି ଫରୁଆରେ ପ୍ରେମ ଅଳଙ୍କାର ସହିତ ନିଜର ସର୍ବସ୍ୱ ପୂରଇ ଘୋଡ଼ାଇ ଜାଗର୍ତ ( ସାବଧାନ ) ହୋଇ ଜଗିଛି । ଏହି ଜାଗର୍ତ ପଣ (ସାବଧାନତା)ରୁ ଯୌବନରେ ଲଜ୍ଜା ପ୍ରକାଶ ପାଉଛି ।

୧୮— ବିଜୁଳିକି ଗ୍ରରିପଟେ ଭିଡ଼ି କରି ନୀଳମେଘ ରହିଲ ପରି ତାହା ହାତରେ ମର୍କତ (ହରିତ୍‌ମଣି) ଚୂଡ଼ି ଅଛି । ନଦୀ ସ୍ରୋତ ପରି ହାତ; ଯେଥିର ବାଜୁବନ୍ଧର (ବାହାର ଅଳଙ୍କାରର) ଉଜ୍ଜ୍ୱଳ ରନ୍ଥ (କଇଁଫୁଲ) ପରି । ମାଣିକ୍ୟ ମୁଦିରେ ଅଙ୍ଗୁଳି ସବୁ ଅଶୋକ ଫୁଲ କଢୀ ପରି ଦେଖାଯାଉଛି ।

୧୯— ଚିବୁକ–ଓଠତଳ (ଏଗାଲଠାରୁ ସେ ଗାଲ ପର୍ଯ୍ୟନ୍ତ ଓଠତଳକୁ ଚିବୁକ କହନ୍ତି) ସେହି ଚିବୁକରେ, କସ୍ତୁରୀରେ "ଭ୍ରମରୀ" ଚିତ୍ର କରାହୁଏ । ସେ ଚତୁର୍ଥୀ ଚନ୍ଦ୍ରରେ କଳଙ୍କ ଅଙ୍କୁରି (ଗଜୁରି) ଆସିଲ ପରି ଦିଶୁଛି । ବିଧାତା ବ୍ୟାଧ ( ଶିକାରୀ—ଚଢେଇ ଧର ) ବୁର୍ଦ୍ଧି କରି ମତ୍ତ କପୋତକୁ ପାଶେ (ଫାଶରେ ବା ଜାଲରେ ) ବାନ୍ଧି ଗିରି ପରେ ( ପାହାଡ଼ ଉପରେ ) ଥୋଇଲ ପରି ଗ୍ରପସରିରେ ସେ ଗଳା ସ୍ତନ ଉପରେ ମନୋରମ ଦେଖାଯାଉଛି ।

ସୁନ୍ଦରୀ ଅବଳା ପଦକୁ ଛଳି[୧୧] । ତ୍ରିବିଧେ ବନ୍ଧନ କରିଛି[୧୨] ବଳୀ ।
ଅଛିକି ନାହିଁ ଏସଂଶୟ ମଧ୍ୟେ । ଭଙ୍ଗ ପଡ଼ିବାକୁ ସେ ଗୁଣେ ବାନ୍ଧେ ।
କି ସୁନ୍ଦର । ତହିଁ ଖଞ୍ଜା କିଙ୍କିଣୀ । ଏଣୁ କଟୀ ଥିବା ହେଉଛି ଜାଣି । ୨୦ ।
ପିନ୍ଧାଇ ଅଛି ବାସ କୁଆଁଦେଇ । ଗର୍ଜିଛି ପୁଣି ପିତୁଳା ବସାଇ ।
ନାଭି ଆଦି ତନୁମାନେ ତାହାର । ଗୁଲ୍‌ଫ ପର୍ଯ୍ୟନ୍ତ ନୋହିଲେ ଗୋଚର ।
କି ସୁନ୍ଦର । ତହିଁ ଦିଶୁଛି ପାଦେ । ସ୍ଥଳ ସରସିଜ ଶୋଭକୁ ନିନ୍ଦେ । ୨୧ ।
ରୁଚି ରଚିତା[୧୩] ମୃଗମଦ ଚିତା । ପଦ୍ମିମାଣୀ ଝୁଣ୍ଟିଆରେ ରଞ୍ଜିତା ।
ହୋଇଛି ବ୍ୟକ୍ତ ଅଲକ୍ତ ରଙ୍ଗରେ । ଶରଣ ରକ୍ଷଣ ଅନୁରାଗରେ ।
କି ସୁନ୍ଦର । ଚରଣକୁ ବାଳାର । ଶରଣ ଅର୍ଥରେ ପ୍ରସାରୁଁ କର । ୨୨ ।
ମିତ୍ର କହେ ନୋହେ ଲାବଣ୍ୟଧାମା । ଆସିଅଛି ସିନା ପ୍ରତି ପ୍ରତିମା ।
ସନ୍ୟାସୀ ଭଷିଲ ସେହି କାଳକୁ । କେମା ସୁନ୍ଦରିମା ତୁଲେ[୧୪] ତିଳକୁ ।
ହେ ସୁନ୍ଦର । ଅଙ୍ଗେ ଅଙ୍ଗେ ଏହାର । ନିର୍ମାଣି ସିନା ଅଛି ରୂପକାର । ୨୩ ।

---

ପାଠାନ୍ତର—୧୧, ଖଳି । ୧୨, ହୋଇଛୁ । ୧୩, ଚୋଡ଼ର ଚୂକ୍ରା । ୧୪, ଟେଲ ।

---

୨୦— ସୁନ୍ଦରୀତ ଅବଳା ସେଥିପାଇଁ ବଳୀ ( ନାଭିପାଖ ତ୍ରିବଳୀ) ତାକୁ ତିନି ଘେରକରି ବାନ୍ଧିଛି । ଅବଳା (ବଳହୀନା) ବଳୀ (ବଳବନ୍ତ) ଏ ଶ୍ଳେଷ ମଧ୍ୟ ଅଛି । ମଧ୍ୟେ (କଟୀରେ) ଅତି କ୍ଷୀଣ ହେବାରୁ ଅଛି କି ନାହିଁ ବୋଲି ସଂଶୟ (ସନ୍ଦେହ) ହେଉଛି । ସେଥିପାଇଁ ଭଙ୍ଗ ନ ପଡ଼ିବ ବୋଲି ସେ (ବିଧି) ତ୍ରିବଳୀ ରୂପ ଗୁଣରେ ( ଦଉଡ଼ିରେ ) ତାକୁ ବାନ୍ଧିଛି । ଭଙ୍ଗ ପଡ଼ିବାକୁ (ନିଷେଧାର୍ଥେ ଚତୁର୍ଥୀ) କାଳେ ଭଙ୍ଗ ପଡ଼ିବ ବୋଲି ଏହି ଅର୍ଥ । ଅଣ୍ଟାରେ କିଙ୍କିଣୀ (ଘାଘୁଡ଼ି) ଖଞ୍ଜା ହେବାରୁ ଅଣ୍ଟା ଅଛି ବୋଲି ଜଣା ପଡୁଛି ।

୨୧— ଚିତ୍ରକର ବାସ (ଲୁଗା) କୁଆଁଦେଇ ପିନ୍ଧାଇଛି । ପିତୁଳାକୁ ବସାଇ ଗର୍ଜିଛି । (ବସିଲ ପରି ଚିତ୍ର କରିଛି) ତେଣୁ ନାଭିଠାରୁ ଗୁଲ୍‌ଫ (ଗୋଇଠି) ପର୍ଯ୍ୟନ୍ତ ଦିଶୁନାହିଁ । ପାଦ ସ୍ଥଳ ସରସିଜ (ସ୍ଥଳପଦ୍ମ) ଶୋଭକୁ ନିନ୍ଦା କରୁଛି ।

୨୨-୨୩ ରୁଚି (ସୁନ୍ଦର) ଭବେ ରଚିତା ( ତିଆରି ହୋଇଥିବା ) ମୃଗମଦ (କସ୍ତୁରୀ) ର ଚିତା ପାଦ ଉପରେ । ପଦ୍ମିମାଣୀ ଝୁଣ୍ଟିଆ—ପଦ୍ମିମାଣୀଙ୍କ ଝୁଣ୍ଟିଆ ଖୁବ୍ ବଡ଼ ବଡ଼ । ଅଲକ୍ତ (ଅଳତା)ର ରଙ୍ଗ ଯେପରି କି ଶରଣ ପଶିବା ଲୋକକୁ ରକ୍ଷା କରିବା ନିମନ୍ତେ ବ୍ୟକ୍ତ (ପ୍ରକାଶିତ) ଅନୁରାଗ । ଚନ୍ଦ୍ରଭାନୁ ଶରଣ ପଶିବା

କୁମାର ଦମ୍ଭକୁ ଊଣା ଦିଶିଲା । ବିଶ୍ୱରି ସଚିବ ସ୍ତୁତ ଭାଷିଲା ।
ସୁବର୍ଣ୍ଣ ସୀତାରେ ବଶ ଶ୍ରୀରାମ । ଯାହାର ଯହିଁରେ ବଳଇ ପ୍ରେମ ।
କି ଗୋସାଇଁ । ଏଥୁଁ ଅଧିକ ବୋଲ । ଆମ୍ଭ ବିଶ୍ୱରେ ନାହିଁ ଏହା ତୁଲ୍ୟ । ୨୪ ।
ନୃପଜ ବୋଲେ କିପାଁ ନୋହିଥିବ । ଅଜୀବେ କଲା ଯେ କାମ ସଜୀବ ।
ସଜୀବେ ବିଶେଷ ଚତୁରୀ ଘେନି । ଶୋଭ ହୋଇଥିବ ନବ ଯୌବନୀ ।
କି ସଙ୍ଗାତ । ନୟନର କି ତପ । ଦେଖିଲା ଟିକି ସେ ବାଳା ସ୍ୱରୂପ । ୨୫ ।
ଏ ରୂପେ ବୋଲି କରିବାକୁ ଧ୍ୟାନ । ପ୍ରାଣ କଲା ଗତି ଯିବାକୁ ମନ[୨୬] ।
ପ୍ରାଣେ ତ ଆଉ ନ ରଖିବ ମାର । ଏହି କଥା ହେଲା ଏଥିରେ ସାର ।
କି ସଙ୍ଗାତ । ଆମ୍ଭ ସୁକୃତ ରାଶି । ପିତୁଳା ଆଣିଲା ହୋଇ ସନ୍ୟାସୀ । ୨୬ ।
ବୀରକୁ ଉଚାଟ କରି ତପସ୍ୱୀ । ଚକ୍ଷୁ ବନ୍ଧନ ବିଦ୍ୟାକୁ ପ୍ରକାଶି ।
ଶିଷ୍ୟ ସଙ୍ଗେ ସେହି କ୍ଷଣେ ଅନ୍ତର । ପ୍ରତେ ଅନ୍ତର୍ଦ୍ଧାନ ହେଲା ପ୍ରକାର ।
କି ସୁନ୍ଦର । ମନେ ହେଲା ଏ ଧାତା । ନୋହିଲେ ଗଢନ୍ତା କିଏ ବନିତା । ୨୭ ।

---

ପାଠାନ୍ତର —' ୫, ଦ୍ୱାର ହେଲ ଗଢ ହେବାକୁ ଘେନ ।

---

ନିମନ୍ତେ ଚିତ୍ର ଗୋଡ଼କୁ ହାତ ବଢ଼ାଇବାରୁ ମିତ୍ର କହିଲା, ଏ ଲାବଣ୍ୟଧାମା (ସୌନ୍ଦର୍ଯ୍ୟର ସ୍ଥାନ—ଲାବଣ୍ୟବତୀ) ନୁହେଁ । ପ୍ରତି ପ୍ରତିମା (ପ୍ରତିକୃତି—ଛବି), ହେମାର ସୁନ୍ଦରିମା (ସୌନ୍ଦର୍ଯ୍ୟ) ତୁଳରେ ତିଳକୁ (ଅତି ଅଳ୍ପ ମାତ୍ରକକୁ) ଏହାର ଅଙ୍ଗେ ଅଙ୍ଗେ ରୂପକାର ତିଆରିଛି ।

୨୪—ଦମ୍ଭକୁ ଊଣା ( ଦମ୍ଭ ନିମନ୍ତେ କ୍ଷୁଦ୍ର )—ଦମ୍ଭ ଧରିବାରେ ଅକ୍ଷମ । ସୀତାଙ୍କୁ ବଣକୁ ଛାଡ଼ିଦେବା ପରେ ରାମ ସୁନା ସୀତା ତିଆରି କରାଇ ରଖିଥିଲେ ବୋଲି ପୁରାଣରେ ଅଛି । ଗୋସାଇଁ ( ସନ୍ୟାସୀକୁ ସମ୍ବୋଧନ ); ତୁମେତ କହୁଛ ଏହି ଚିତ୍ରରୁ ସେ ନିଜେ ବହୁତ ଅଧିକ । କିନ୍ତୁ ଆମ ବିଶ୍ୱରରେ ଏ ଚିତ୍ର ସମାନରେ ମଧ୍ୟ କିଛି ନାହିଁ ।

୨୫—ଅଜୀବେ—ଜୀବହୀନ ଚିତ୍ର ରୂପରେ କାମ ସଜୀବ କଲା ( କାମ ଭବ ଜାଗ୍ରତ କଲା ) । ସଜୀବେ ( ପ୍ରକୃତ ଜୀବନ୍ତ ନାରୀ ରୂପରେ । )

୨୬—ଏହିପରି କହି ଧ୍ୟାନ କଲା ବେଳକୁ ଲାବଣ୍ୟବତୀ ପାଖକୁ ଯିବାକୁ ମନ କରି ପ୍ରାଣ ଯେପରି କି ଗତି କଲା । ଅର୍ଥାତ୍ ଖର ନିଶ୍ୱାସ ପଡ଼ିଲା । ଆମ ସୁକୃତ ଗୁଡ଼ିକ ସନ୍ୟାସୀ ହେଲା ।

୨୭—ଉଚାଟ କରି ଅନ୍ୟଠାରୁ ମନ ଫେରାଇ ଲାବଣ୍ୟବତୀଠାରେ ମନ ଏକନିଷ୍ଠ କରାଇ । ଚକ୍ଷୁ ବନ୍ଧନ ବିଦ୍ୟାରେ ଲୋକର ଆଖିକୁ ବାନ୍ଧି ଦେଲେ ଆଖି ବାନ୍ଧିବା ଲୋକ

ଚିତ୍ତୁଁ ନ ଛାଡ଼ିଲା ଏହି କାତର । ମାଗନ୍ତି ସୁଗତି ସଙ୍ଗତି ବର ।
ଦମ୍ଭକୁ ହେଲା ତାହାର କାରଣ । ସ୍ୱରୂପକୁ ଛାଡ଼ି ଯିବାର ଜାଣ ।
ସେ ସୁନ୍ଦର । କଲା ଏହି ଭରସା । ପ୍ରାପତ ମୋତେ ହୋଇବ ସୁଦୃଶା । ୨୮ ।
ଗ୍ରହୁଁ ପ୍ରତିମା ଚକ୍ଷୁ ନ ପିଛାଡ଼ି । ତାତ ହକର ପ୍ରତିବନ୍ଧ ପଡ଼ି ।
ପ୍ରତିବନ୍ଧ ପଡ଼ି ହୋଇବ କିସ । ଲେଖା ହେଲା ସେ ରୂପ ପ୍ରତିଦିଶ ।
କି ସୁନ୍ଦର । ଚିତ୍ରପଟ ତା କଲା । ସଭରେ ବସିବା କାଳ ହରିଲା । ୨୯ ।
ଯୋଗୀନ୍ଦ୍ର ପ୍ରବେଶି ସିଂହଳ ଦ୍ୱୀପେ । ଏକାନ୍ତେ କହିଲା ମନ୍ତ୍ରୀ ସମୀପେ ।
କର୍ଣ୍ଣାଟ ଦେଶ ମହୀପତି ସୁତ । କନ୍ୟାକୁ ବର ଅନୁରୂପ ସତ ।
କି ସୁନ୍ଦର । ଗୁଣ ମନ୍ଦିର ସେହି । ବୀର ତୁଲ୍ୟ ହୋଇ ଜଗତେ ନାହିଁ । ୩୦ ।
ତାକୁ ଯେ ଦେଲା ଯୁବରାଜ ପଦ । ଜାଣିଲି ବିଧାତା ଅତି କୋବିଦ ।
ଆନ ରାଜପୁତ୍ରେ କୁଳ ବେଭାର । ଯୁବତୀ ଚିତ୍ତ ରତନ ଚଭାର ।
କି ସୁନ୍ଦର । ଖ୍ୟାତ କାମ ମହୀରେ । କୁମାର ଏଣୁ କହି ବିଜ୍ଞ ନରେ । ୩୧ ।

---

ଯେତିକି ଦେଖାଇବାକୁ ବିଗ୍ଭରିବ ସେତିକି ମାତ୍ର ଦିଶିବ । ଆଉ କଛି ଦିଶିବ ନାହିଁ । ପ୍ରତେ—ଲାଗିଲା । ଅନ୍ତର୍ଦ୍ଧାନ ହେବାରୁ ସେ ତପସ୍ୱୀ ବିଧାତା ବୋଲି ମନେ ହେଲା ଏବଂ ଏପରି ବନିତା ଯେଉଁ ବିଧାତା ଗଢ଼ିଛି, ସେହି ବିଧାତା ଏ ସନ୍ୟାସୀ ହୋଇ ଆସିଛି ବୋଲି ସନ୍ଦେହ ହେଲୁ ।

୨୮—କାତର—କାତରତା, ଦଇନି; ସୁଗତି ସଙ୍ଗତି—ଉତ୍ତମଗତି ( ଗ୍ଭଲି ) ଯାହାରୁ ସେହି ଲାବଣ୍ୟବତୀର ସଙ୍ଗ । ମାଗନ୍ତି ବର—ବିଧାତା ବା ସନ୍ୟାସୀଙ୍କ ଠାରୁ ବର ମାଗିଥାନ୍ତି । ସ୍ୱରୂପ ( ପ୍ରତିମା )କୁ ସନ୍ୟାସୀ ଛାଡ଼ି ଅନ୍ତର୍ଦ୍ଧାନ ହୋଇଥିଲେ । ସୁଦୃଶା—ସୁନେତ୍ରୀ ।

୨୯—ତାତ ହକର—ବାପାଙ୍କ ଡ଼ାକରା; ପ୍ରତିବନ୍ଧ ବାଧା—ଚକ୍ଷୁ ନ ପିଛାଡ଼ି ( ପଲକ ନ ପକାଇଁ ) ଗ୍ରହିଁବାରେ ବାଧା; ପ୍ରତି ଦିଶ—ପ୍ରତି ଦିଗରେ, ସବୁଆଡ଼େ; ସଭରେ ବସିବା କାଳରେ ମଧ୍ୟ ଚିତ୍ରପଟର ପ୍ରତିମା ସବୁଆଡ଼େ ଦିଶୁଥିବାରୁ ଚନ୍ଦ୍ରଭାନୁର ବିଷର୍ଣ୍ଣତା କେହି ଦେଖି ପାରିଲେ ନାହିଁ ।

୩୦—ଅନୁରୂପ—ଯୋଗ୍ୟ; ଗୁଣ ମନ୍ଦିର—ପୂଜ୍ୟ ବା ଦିବ୍ୟ ଗୁଣମାନଙ୍କର ସ୍ଥାନ ।

୩୧—କୋବିଦ—ପଣ୍ଡିତ; ଅନ୍ୟ ରାଜପୁତ୍ର ମାନଙ୍କଠାରେ କୁଳ ବେଭାର ( କୁଳରୀତି ) ଅନୁସାରେ ଯୁବରାଜ ପଦ ଦିଆହୁଏ । କିନ୍ତୁ ଚନ୍ଦ୍ରଭାନୁଠାରେ କେବଳ କୁଳରୀତି ନୁହେ ଯୋଗ୍ୟତାହିଁ ଯୁବରାଜ ପଦର ଯଥାର୍ଥ କାରଣ । କୁମାର—କୁ ( ପୃଥିବୀ ) ରେ ଖ୍ୟାତ । ମାର ( କାମ ) ।

ତାତ ବିବେକ ପଣେ ରଜାପଣ । ଜାଣି କରିଛି ତାକୁ ସମର୍ପଣ ।
ଉଚ୍ଚାଟ ହୋଇଛି ସ୍ୱରୂପ ଦେଖି । ତାକୁ ପ୍ରଦାନ କରିବା ସୁମୁଖୀ ।
କି ସୁନ୍ଦର । କଥା ସଚିବ ଶୁଣି । ନୃପତି ଆଗେ ଜଣାଇଲ ପୁଣି । ୩୨ ।
କାହିଁଛି ସ୍ୱରୂପ ରଜା ବୋଇଲ । ମନ୍ତ୍ରୀ କହେ କେବେ ଲେଖା ନଗଲ ।
ଭୂପତି ଶୁଣି କହେ କି ପ୍ରକାରେ । ଦୂତ ନ ପେଷି ଆଣିବା ଏ ପୁରେ ।
କି ସୁନ୍ଦର । ପାର୍ଶ୍ୱ ମନ୍ତ୍ରୀ କଥନ । କରିବା ଅପୂର୍ବ ଯାତ୍ରା ରଚନ । ୩୩ ।
ବଶ ହୋଇଛି ଘୋଷ ଶୁଣି ଆସୁ । ଆମ୍ଭର କନ୍ୟା ଯାଚିବା ନଦିଶୁ ।
ସର୍ବ ସମ୍ମତେ ଏ ବିଚ୍ଚାର ମୂଳ । ଦୀର୍ଘ ଦିନରେ କଲେ ଯାତ୍ରାଗୋଳ ।
କି ସୁନ୍ଦର । ଛାନ୍ଦ ହୋଇଲ ଶେଷ । ରାମ ରାମ ସ୍ତୁତି ଅଭଙ୍ଗ ଶ୍ଳେଷ । ୩୪ ।
ତାତ ବତ୍ସଳ ମୁନି ବେଶ ଧାରୀ । ଅଧିକ ଭୁଜ ଦର୍ପ ହତ କାରୀ ।
ଉପଇନ୍ଦ୍ର ବୀର ବର ଭଞ୍ଜଇ । ଏ ଗୀତ ଶୁଭେ ଶେଷ ହେବା ପାଇଁ ।
ହେ ସୁଜନେ । ଶୁଣି ହୁଅ ସନ୍ତୋଷ । ଖଳ କର୍ଣ୍ଣ ବିଳେ ନୋହୁ ପ୍ରବେଶ । ୩୫ ।

---

୩୨–ତାବାପ ତା ବିବେକ ଦେଖି ତାକୁ ରଜପଣ ( ରଜକାର୍ଯ୍ୟ ବୁଝିବା ) ଦେଇଛି ।

୩୩–ରଜା କୁମାର ସ୍ୱରୂପ ( ଚିତ୍ର ) ମାଗିଲ; ମନ୍ତ୍ରୀ କହିଲ କର୍ଣ୍ଣାଟରେ ଛାଡ଼ି ଆସିବା ରୂପହିଁ ଏକମାତ୍ର ଚିତ୍ର । ଆଉ ସେଥିରୁ ନକଲ କରି ହେଲନାହିଁ । ତହୁଁ ଚନ୍ଦ୍ରଭାନୁକୁ କୌଣସି ଏକ ଯାତ୍ରା ବାହାନା କରି ସିଂହଳକୁ ଅଣାଇବାର ବିଚ୍ଚାର କଲେ ।

୩୪–କନ୍ୟାରେ ବଶ ହୋଇଛି; ଅତଏବ ଯାତ୍ରାର ଘୋଷ ( ଖବର ) ଶୁଣି ଆସୁ; ଦୀର୍ଘ ଦିନରେ–ଗ୍ରୀଷ୍ମକାଳରେ; ଯାତ୍ରା ଗୋଳ–ଯାତ୍ରାର ଗହଳ–ଯାତ୍ରା ହେବ ବୋଲି ଆୟୋଜନ । ଅଭଙ୍ଗ ଶ୍ଳେଷରେ– ପଦ ନ ଭଙ୍ଗି ଶ୍ଳେଷରେ ( ଭିନ୍ନ ଅର୍ଥରେ ) ରାମ ( ଦାଶରଥି ) ରାମ ( ପର୍ଶୁରାମ ) କିମ୍ବା ଦୁଇ, ରାମଙ୍କର ରାମ ( ରମଣୀୟ ) ସ୍ତୁତି ଅତଏବ ରାମ ରାମ ସ୍ତୁତି କୁହା ଯାଉଛି ।

୩୫–ରାମପକ୍ଷେ–ତାତବତ୍ସଳ ( ଦଶରଥଙ୍କର ପ୍ରିୟ )–ପିତୃସତ୍ୟ ମାନି ରାମ ବନକୁ ଯାଇଥିଲେ; ମୁନି ବେଶ ଧାରୀ–ବନବାସରେ ଚଉଦ ବର୍ଷ ମୁନି ବେଶରେ ଥିଲେ; ଅଧିକ ଭୁଜ–[ ଦୁଇରୁ ଅଧିକ ] ( ଦଶଭୁଜ ଯାହାର ସେ ରାବଣ ) ଦର୍ପ ( ଗର୍ବ )କୁ ହତକାରୀ ( ଖର୍ବ ) କରିଥିଲେ । ପର୍ଶୁରାମପକ୍ଷ–ବାପ ଭୃଗୁଙ୍କ କଥାରେ ନିଜର ମା ରେଣୁକା ଓ ଭାଇଭାଇଙ୍କୁ ପର୍ଶୁରାମ ହାଣିଥିଲେ; ଦୁଇ ସହସ୍ର ହାତ ଥିବା ସହସ୍ରାର୍ଜୁନକୁ ପର୍ଶୁରାମ ମାରିଥିଲେ ବୋଲି ପ୍ରବାଦ; ପୃଥିବୀ କ୍ଷତ୍ରୀୟ ଶୂନ୍ୟ କରିସାରି ସେ ମୁନି ବେଶ ଧରି ବନକୁ ଯାଇଥିଲେ । ଖଳ–କିତବ, ବୃଥାରେ ପର ଦୋଷଦର୍ଶୀ । ବିଳ–ଗହ୍ୱର ।

# ଏକାଦଶ ଛାନ୍ଦ

## ସ୍ୱପ୍ନ ଦର୍ଶନ

( ଲବଣ୍ୟବତୀର ସ୍ୱପ୍ନ ଦର୍ଶନ )

ରାଗ ଶ୍ରୀ । ସ୍ୱପ୍ନ ଚେଡ଼ିଆର ବାଣୀ ।

ଏଥୁ ଅନ୍ତେ ଶୁଣ ରସ ଗ୍ରୀଷମ ନିଶି ପ୍ରବେଶ
ଉଦୟ ତାର ଜୀବେଶ ହେଲେ ଆକାଶେ ।
ଚକ୍ର–ସୁଖ ଚକ୍ର–ନକ୍ର ଛେଦନେ ହୀରକ ଚକ୍ର
ଫିଙ୍ଗିଛି ତାତ ସିନ୍ଧିରେ କାମ କି ରୋଷେ ।
ବେଶ ହେବ କି ଗତ୍ତି ବାଳୀ ।
ସ୍ଫଟିକ ପେଟୀରେ କିବା କସ୍ତୂରୀ ଦଳି । ୧ ।
ଆଜିକି ବିଭବରୀକି ହୋଇବ ବିଭା ବରିକି
ମଲ୍ଲୀମାଳା ଦେଇ ବିଧୁ କିରଣେ ମଣି ।

---

୧–ରସ–ସରସ ବା ଭୋଗ୍ୟ ବିଷୟ, ଖାଦ୍ୟ ବସ୍ତୁ; ତାରା ଜୀବେଶ–ତାରାସ୍ୱାମୀ, ଚନ୍ଦ୍ର; ଚକ୍ର–( ଚକ୍ରବାକର ) ସୁଖଚକ୍ର ( ସୁଖ ସମୂହ ) ରୂପ ନକ୍ର ( କୁମ୍ଭୀର ), ତାକୁ ଛେଦନ କରିବାରେ ହୀରକ ଚକ୍ର ସ୍ୱରୂପ ଗ୍ରୀଷ୍ମରାତିର ଏ ଚନ୍ଦ୍ର ହୋଇଛି ବୋଲି ଏ ଉତ୍ପ୍ରେକ୍ଷା; ତାତସିନ୍ଧିରେ–କାମ ( ପ୍ରଦ୍ୟୁମ୍ନ )ର ତାତ ( ବାପ ) ବିଷ୍ଣୁ ଗଜ ଉଦ୍ଧାରଣରେ କୁମ୍ଭୀର ମାରିବା ପାଇଁ ରାଗରେ ନିଜର ସୁଦର୍ଶନ ଚକ୍ରକୁ ଫିଙ୍ଗିଥିଲେ । ଏବେ ଯେପରିକି ସେହି ବାପ ସିନ୍ଧିରଖି ଚକ୍ରବାକର ସମ୍ଭୋଗ ସୁଖ ନାଶ କରିବ ବୋଲି ରାଗରେ ରୋଟାଏ ହୀରା ଚକ ଫିଙ୍ଗିଛି । ଚକ୍ରବାକ ମିଥୁନ ରାତିରେ ଅଲଗା ହୁଅନ୍ତି ବୋଲି ପ୍ରବାଦ । କିମ୍ବା ରାତ୍ରୀ ବାଳୀ ( ରାତି ରୂପ ନାରୀ ) ବେଶ ହେବାପାଇଁ ସ୍ଫଟିକ ପେଡ଼ିରେ କସ୍ତୂରୀ ଦଳୁଛି ( ଘୋରୁଛି ) କି ? ପେଡ଼ି ଏଠାରେ ଚନ୍ଦନ ପେଡ଼ି ( ଯହିଁରେ ଚନ୍ଦନ, ଗୋରଚନା, କସ୍ତୂରୀ ପ୍ରଭୃତି ଘୋରି ଚିତା ଘେନନ୍ତି ବା ଦେବତାଙ୍କୁ ଦିଅନ୍ତି ), ଚନ୍ଦ୍ର, ଚନ୍ଦନ ପେଡ଼ି । କଳଙ୍କ, ଦଳା ହୋଇଥିବା କସ୍ତୂରୀ ପରି ।

୨–ବିଧୁ ( ଚନ୍ଦ୍ର ) ବିଭବରୀ ( ରାତ୍ରି ) କି ବରି ( ବରଣକରି ) ବିଭା ହେବକି ? –କିରଣ ରୂପକ ମଲ୍ଲୀମାଳ ଦେଇ ? ଯେ ଯାହାକୁ ବରଣ କରେ ସେ ତା

ଏ ବିଚିତ୍ର ସ୍ୱୟମ୍ବର ନାରୀକି ବରିଲା ବର
ଏତେ କାଳେ ଦେଖାଗଲା ଏ କଥା ପୁଣି ।
ରବି କରେ[୧] ମହୀ ମହିଳା ।
ତାପି ହୋଇଥିଲା କି ଚନ୍ଦନ ଲେପିଲା । ୨ ।
ଶୀତଳ ଯାହା କିରଣ ପରଶରେ ସମୀରଣ
ରଣ ରଣ ମିତ୍ର ପଣ ଘେନି କି ଏବେ ।
ବିରହୀ ଗୁଣ ବିରହି ଠାରେ ଆଦରିଲା ସେହି
ସେ ଅଛି ଯାଗର୍ଭେ ତହୁଁ ଜାତ ସ୍ୱଭବେ ।
ପୂଂସ ଶୋଇ ସୁଧା ଚତ୍ୱର ।
ଚନ୍ଦ୍ର ସ୍ୱହିଁ ହୋଇଲା ଅଧିକେ କାତର । ୩ ।
ହାସ ନାସା ଗତି ରୀତି ବଚନ ରମ୍ୟତା ପ୍ରୀତି
ଏକାନ୍ତ ହେବାଦି ଯେତେ କଥା ସ୍ମରେ ।
ସ୍ୱରଭଙ୍ଗ ପ୍ରବଳରେ ଭାଷା କେ ବର୍ଣ୍ଣେ ଉଚ୍ଚରେ
ତଥାପି ବାଲାଭାବନା ଥାଏ ତହିଁରେ ।
ସବର୍ଣ୍ଣାଦି ଶବଦ ଶୁଣି ।
ସାଧୁ ଶୁକ ଅଇଲେ କି ହୁଅଇ ଗୁଣି । ୪ ।

---

ପାଠାନ୍ତର—୧, ତେଜ ।

---

ବେକରେ ଗୋଟିଏ ମାଳା ଲମ୍ବାଇଦିଏ ] ମଣି—ମନେକରେ ( ମୁଁ ); ସ୍ୱୟ-ମ୍ବରରେ ନାରୀ ପୁରୁଷକୁ ବରଣ କରେ; ଏଠାରେ ଚନ୍ଦ୍ର ଗତିକୁ ବରଣ କରୁଛି । କିମ୍ବା ଖର ତାତି ପରେ ପୃଥିବୀ ରୂପ ସ୍ତ୍ରୀ ଚନ୍ଦ୍ର କିରଣ ରୂପ ଚନ୍ଦନ ଲେପିହେଲା ।

୩—ଶୀତଳ ଯାହା କିରଣ ( ଚନ୍ଦ୍ର ) ସମୀରଣ ( ଧୀର ପବନ ) ପରଶରେ ( ସ୍ପର୍ଶରେ —ଧୀର ପବନ ଲାଗିବାରୁ ) ମିତ୍ରପଣେ ( ସହାୟରୂପେ ) ରଣ ରଣ ( କନ୍ଦର୍ପ ) କୁ ଘେନି ( ସଙ୍ଗରେ ନେଇ ) ବିରହୀଠାରେ ( ପ୍ରିୟ ବିଚ୍ଛେଦ ହୋଇଛି ଯାହାର ତାଠାରେ ) ବରହୀ ( ଶିଖୀ—ଅଗ୍ନି ) ଗୁଣ ( ସ୍ୱଭାବ ) ଆଦରିଲା (ଆଚରିଲା) ଏ କଥା ଅସମ୍ଭବ ନୁହେ—କାହିଁକିନା—ଅଗ୍ନି ( ବାଡ଼ବାନଳ ) ଯାହା ଗର୍ଭରେ ଅଛି ତହୁଁ ( ସମୁଦ୍ରରୁ ) ଚନ୍ଦ୍ର ତ ଜାତ ହୋଇଛି । ସୁଧା ଚତ୍ୱର ( ଚୂନ ଲଗା ଅଗଣା ବା କୋଠା ଛାତ ) ।

୪—ଏ ବହିର୍ଲିପି;—ସେ ସ୍ତ୍ରୀର ହାସ ନାସା ଆଦି ଏବଂ ତାସଙ୍ଗେ ଏକାନ୍ତ ହେବା ( ଏକୁଟିଆ ଏକାଠି ରହିବା ) ପ୍ରଭୃତି ଯେତେ କଥା ମନେ ପକାଏ, ସବୁଥିରେ

ଯେମନ୍ତ ଦେଖୁଛି ଚିତ୍ରେ ତେମନ୍ତ ଦିଶଇ ନେତ୍ରେ
କେମନ୍ତ ଲଭିବି ମୁଁ ବିଗ୍ଭର ଏହି ।
ଯେବେ ଏ ଯୁବା ବୟସେ ଦିବ୍ୟ ରମାନାହିଁ ପାଶେ
କି ଲାଭ ତହୁଁ ନୃପତି ସମ୍ପତ୍ତି ଥାଇ ।
ଆରତେ ସେ ଚିନ୍ତିଲା ଶିବ ।
ତାକୁ ଦେଖାଅ ନୋହିଲେ ଯାଉ ମୋ ଜୀବ । ୫ ।
ତେଣେ ନୃପତି ନନ୍ଦନୀ ରୁଚିରତର ଗ୍ଭନ୍ଦନୀ
ଗତିରେ ମଣ୍ଡି ଗ୍ଭନ୍ଦନି ଚନ୍ଦ୍ରକୁ ଗ୍ଭହିଁ ।
ପଦ୍ମିନୀ ହେଲା କାତର ଭଜି ମଦନ ବିକାର,
କରଇ ଚିତ୍ତେ ବିଗ୍ଭର ଶ୍ୱାସ ପକାଇ ।
ମୋହ ସମ କରମହୀନ ।
କାହିଁ ପତି ସଙ୍ଗ ଲଭି ନାହିଁ ଯୌବନ । ୬ ।
ସୁବର୍ଣ୍ଣ ସମାନ ନାରୀ ବିନୟ ଟାଙ୍ଗଣା ପରି
ବିରହ ଅନଳେ ହୋଉଥାଇ ଯେ ଦହି ।
ଭାବଜଳ ଯୁକ୍ତ ବଶେ କୋଳ କଷଟିରେ କଷେ
ପରଶେ ରସାଣ ପ୍ରୀତି ବାନ ବଢ଼ାଇ ।
କମ କରି କରଇ ଭୋଗ ।
ବଣିକ ଗୁଣିକ ପ୍ରିୟ ବହି ସରାଗ । ୭ ।

---

କହିଲା ବେଳକୁ ବିରହ ବ୍ୟଥାରୁ ସ୍ୱରଭଙ୍ଗର ପ୍ରବଳତାରେ ଭାଷାବେ (ପଦକେ) ବର୍ଣ୍ଣେ ( ଗୋଟିଏ ଅକ୍ଷର ) ମାତ୍ର ଉଚ୍ଚାରିତ ହୁଏ ( ହା—ନା—ଗ—ରୀ—ବ—ର—ସ୍ୱୀ—ଏ )। ତଥାପି ସେଥିରେ ( ସେହି ଗୋଟିଏ ଗୋଟିଏ ଅକ୍ଷର ଏକାଠି କଲେ ମଧ୍ୟ ) ବାଳା ଭାବନା ଥାଏ । କୌଣସି 'ସ'ବର୍ଣ୍ଣ ଆଦ୍ୟରେ ଥିବା ଶବ୍ଦ ଶୁଣିଲେ 'ସାଧୁ' 'ଶୁକ' ହିଁ ତାର ମନେ ପଡ଼େ । [ ଉପେନ୍ଦ୍ରଭଞ୍ଜଙ୍କର ଭାବ ଚିତ୍ରର କୃତି-ମତା ଏ ପଦରେ ଚୂଡ଼ାନ୍ତ ] ।

୬—ଗ୍ଭନ୍ଦନି—ଚଉତରା ( ଚତ୍ୱର ); ପଦ୍ମିନୀ—ନାରୀ ଶ୍ରେଷ୍ଠ; ମୋ ପରି କର୍ମହୀନ କାହିଁ, ଯାହାର ଯୌବନରେ ପତି ସଙ୍ଗ ହୋଇନାହିଁ ।

୭—ସୁବର୍ଣ୍ଣ ସଙ୍ଗେ ନାରୀର ଉପମା ଟଣା ହୋଇଛି ।
ସୁନାକୁ ଟାଙ୍ଗଣା ଦେଇ ପୋଡ଼ି ପାଣିରେ ପକାଇ କଷଟି ପଥରରେ କଷି ରସାଣି ( ମାଜିଦେଇ ) [ ସେଥିରେ ] ତାହାର ବାନ ( ତେଜ ) ବଢ଼ାଇ କମ

ଦୁର୍ଗା ମୋ ଦୁର୍ଗତି ହର     ଏମନ୍ତ ବ୍ୟାକୁଳ ତାର
ହର ଉମା ଦୟାକଲେ ସେ ନାରୀ ପୁଂସେ ।
ନିଦ୍ରା ବଶରେ ସ୍ୱପନ     ଦେଖିଲେ ସତ ବିଧାନ
ଏକ ଯୋଗିନୀ ପ୍ରବେଶ କୁମାର ପାଶେ ।
କର ଧରି ନିଦ୍ରା ଭଙ୍ଗିଲା ।
ଗଗନ ମାର୍ଗେ କୁମାରୀ ପୁରକୁ ନେଲା । ୮ ।
କହିଲା ଲାବଣ୍ୟବତୀ     ବୋଲାଇ ଏହି ଯୁବତୀ
ଚାନ୍ଦନୀରେ ଶୋଇଛି ଯେ ପଲ୍ୟଙ୍କପର ।
ସଖୀ ବେଢ଼ି ଚାରିପାଶେ     ଜ୍ଞାନହୀନ ନିଦ୍ରାବଶେ
ମନାଇ ପାରିଲେ ଭୋଗକର ନାଗର ।
ଏତେ କହି ହେଲା ଅନ୍ତର ।
ଶୋଭାରାହିଁ ଲୋଭ ହୋଇ ଉଭା କୁମାର । ୯ ।
ମନେ ପାଞ୍ଚେ ମଞ୍ଚେ ଜାତ     କାହିଁକି ଏ ଅଦଭୁତ
ଏବେ ଜାଣିଲି ମୋହର ନୟନ ଭାଗ୍ୟେ ।
ଏବର୍ଣ୍ଣ ସୁବର୍ଣ୍ଣ କମ     ହୁଅନ୍ତା କି ତାରତମ
ଭିନ୍ନ ଜାଣି ହେଲା ସିନା ରତନ ଯୋଗେ ।
ହରଷ ଏମନ୍ତ ସ୍ୱରୂପ ।
ଏତେକାଳ ଯାଏ ହୋଇଥିଲା ଏ ଗୋପ୍ୟ । ୧୦ ।

---

( ଅଳଙ୍କାର ) କରି ବଣିକ ବେପାର କରିବା ଦ୍ୱାରା ଏବଂ ଗୁଣିକ ( ଅଳଙ୍କାର ଚିହ୍ନିବା ଲୋକ ) ପିନ୍ଧିବା ଦ୍ୱାରା ଭୋଗ କରେ । ନାରୀଠାରେ ବିନୟ ( ଚାଟୁ ବାଣୀ ) ଦେଇ ବିରହରେ ପକାଇ ପୁଣି ଭାବରେ ମଜାଇ କୋଳରେ ବସାଇ ପରଶେ ( ଛୁଇଁ–କୁଣ୍ଢାଇ ) ପ୍ରୀତି ବଢ଼ାଇ କମ ( ସୁନ୍ଦର )କରି ପ୍ରିୟ ଭୋଗକରେ ।

୮–ହର ଉମା ଦୟା କରିବାରୁ ଦୁର୍ଗାଙ୍କ ଗହଣରେ ଥିବା ଯୋଗିନୀରୁ ଜଣେ ରାତିରେ କୁମାରକୁ ଶୂନ୍ୟରେ ଲାବଣ୍ୟବତୀ ପାଖକୁ ଘେନିଗଲା ।

୯–ଲାବଣ୍ୟବତୀକୁ ଦେଖାଇ କହିଲା–ଏହି ଯୁବତୀର ନାମ ଲାବଣ୍ୟବତୀ ; ସଖୀମାନେ ବେଢ଼ିଥିଲେ ସମସ୍ତେ ନିଦରେ ଅଜ୍ଞାନ; ମନାଇ (ମଙ୍ଗାଇ–ମନନେଇ) ପାରିଲେ;

୧୦– ମୋର ନୟନର ଭାଗ୍ୟ ନିମନ୍ତେ ଏ ମଞ୍ଚରେ ଜାତ ହୋଇଛି ବୋଲି ଏବେ ଜାଣିଲି । ସୁବର୍ଣ୍ଣ କମ (ସୁନା ଅଳଙ୍କାର) ଏବର୍ଣ୍ଣ (ଲାବଣ୍ୟବତୀର ଦେହ ବର୍ଣ୍ଣ) ମଧ୍ୟରେ ତାରତମ୍ୟ (ଭେଦ) ବାରି ହୁଅନ୍ତା ନାହିଁ । ଅଳଙ୍କାରରେ

ଏକା ଏ ନୋହେ ହରଷ ପୁଣି ମିଶି ଅଛି ରସ୧
ମିଳିଛି ଶୋଭ ବିଶେଷ ଦୀପ୍ତିକି ଘେନି ।
ସ୍ୱବାସ ମନ୍ଦିର ଏହି ଦିଶୁଅଛି ବ୍ୟକ୍ତ ହୋଇ
ବହିଲ୍ଲ ସ୍ୱକୃତ କରିଥିଲ୍ଲ ଅବନୀ ।
ଭବ ହାବ ଲୀଳା ପ୍ରସନ୍ନ ।
ହୁଅନ୍ତି ଯାହା ପ୍ରସାଦେ ସେ କି ସମାନ । ୧୧ ।
ଅଣିମାଦି ସୁଖଦାୟୀ ଶୋଇ ଅଛି ଅଣିହୋଇ
ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭ ।
ରସାଣ ରଜତ ବାଢ଼େ କନକ ଲତା କି ଜଡ଼େ
ବିଶଦ ଘନରେ କି ସେ ଚପଳା ପ୍ରଭ ।
ବାମକର କପୋଳତଳ ।
କେନ୍ଦୁ ପଲ୍ଲବେ ଥୁଆକି ଫୁଲ୍ଲ କମଳ । ୧୨ ।

---

ପାଠାନ୍ତର—୧, ମିଶିଛୁ ସରସ ।

---

ରନ୍ଥିବାରୁ ଭିନ୍ନ ବୋଲି ଜାଣିହେଲ୍ଲ । ଏରୂପ ହେଉଛି ହର୍ଷ (ଆନନ୍ଦ)ର ପ୍ରତିମା; ଗୋପ୍ୟ—ଗୁପ୍ତ (ଚକ୍ଷୁର ଅଗୋଚର)

୧୧— ଏ କେବଳ ହର୍ଷ ନୁହେଁ । ଏଥିରେ ରସ (ଭୋଗ୍ୟବସ୍ତୁ) ମିଶିଛି । ଦୀପ୍ତିକି ଘେନି ବିଶେଷ ଶୋଭ (ସୌନ୍ଦର୍ଯ୍ୟ) ମିଳିଛି । ସ୍ୱବାସ (ଉତ୍ତମବସ୍ତ୍ର)ର ମନ୍ଦିର ପରି ଏ ହୋଇଛି । ମନ୍ଦିରରୁ ନାରୀର ଦିବ୍ୟତ୍ୱ କଳ୍ପିତ ହେଲ୍ଲ—ତେଣୁ ଅବନୀର ସ୍ୱକୃତ । ହାବ, ଭବ, ଲୀଳା ପ୍ରଭୃତି ଯାହାର ଅନୁଗ୍ରହରେ ପ୍ରସନ୍ନ (ସୁପ୍ରକାଶିତ) ହୁଅନ୍ତି, ସେ କି ସମାନ (ସାମାନ୍ୟ, ସାଧାରଣ) ? (ହାବ, ଭବ, ଲୀଳାର ବ୍ୟାଖ୍ୟା ୭ମ ଛାନ୍ଦ ୭୫ଶ ଶ୍ଳୋକ ଟୀକାରେ ଦେଖ)

୧୨—ଅଣିମା—ଅଣୁର ଭବ ( ଅଣୁପରି କ୍ଷୁଦ୍ର ହୋଇ ପାରିବାର ଶକ୍ତି ); ଏହି ଅଣିମା ପ୍ରଭୃତି ଆଠଟି ଐଶ୍ୱର୍ଯ୍ୟ ବା ଈଶ୍ୱର ( ଶିବ )ଙ୍କର ସିଦ୍ଧି; ବହୁ ଯୋଗ ଫଳରେ ସାଧକ ମଧ୍ୟ ଏହା ପାଏ; ଏଥିରେ ଯୋଗୀ ଯେପରି ଇଚ୍ଛାକରେ ସେପରି ହୋଇପାରେ; ଏହି ଅଣିମାଦି ଅଷ୍ଟସିଦ୍ଧି ପ୍ରାପ୍ତି ମୋକ୍ଷ ସଙ୍ଗେ ସମାନ ବୋଲି ମଧ୍ୟ କୁହାଯାଏ ।

ଅଣମାଦି ଅଷ୍ଟସିଦ୍ଧି; ଯଥା—ଅଣିମା, ଲଘିମା, ପ୍ରାପ୍ତିଃ, ପ୍ରାକାମ୍ୟଂ, ମହିମା, ତଥା
ଈଶିତ୍ୱଂ, ଚ ବଶୀତ୍ୱଂ, ଚ ତଥା କାମା ବସାୟିତା ।

ବୁଝିବାରୁ ଶୋଭ ନେତ୍ର           କି ନୀଳେନ୍ଦୀ ବରପତ୍ର
ଓଲଟାଇ ଦର୍ପଣେ ଥୋଇଛି କୁତୁକେ ।
କି ଅବା ଖଞ୍ଜନ ଯୁଗ           ନିଶ୍ଚଳ ହେବାରୁ ଯୋଗ
ଅଞ୍ଜନ ଅଠା କାଠିରେ ଏକା ବେଳକେ ।
ମୀନଗଣି ଉଦୟ ଆସି ।
ମୃଗାଙ୍କ ଅଙ୍କରେ ହେଲ ପରଯେ ଦିଶି । ୧୩ ।

ବାମା ବାମଦେବ ଦୁଇ           ଯେଣୁ ତ୍ରିପୁର ବିଜୟୀ
ଦ୍ୱନ୍ଦ୍ୱକରି ପୂର୍ଣ୍ଣଚନ୍ଦ୍ର ଦ୍ୱିଭଗ କଲେ ।
ଖଣ୍ଡେ ଖଣ୍ଡେ ଭଇ ଦେଶେ           କୀରତି ପ୍ରକାଶ ଆଶେ
ନିଏ୍ଵ ପ୍ରମୋଦ ମାନସେ ଆଣି ବିହିବେ ।
ଘେନି ଅଛି ଚନ୍ଦନ ପାଟୀ ।
ଲୋକନେ ଏହି ଉପମା ମନେ ପ୍ରକଟି । ୧୪ ।

---

ଅଣିମାଦି ସୁଖ ଦାୟୀ ( ମୋକ୍ଷପରି ଆନନ୍ଦ ଯେ ଦେଇପାରେ ); ପଲ୍ୟଙ୍କ ଅଙ୍କରେ ( ପଲଙ୍କ ଉପରେ ) ଅଣି ହୋଇ ( କଡ଼ମାଡ଼ି ) [ ଏଠାରେ ବାଁ କଡ଼ମାଡ଼ି ]; ରଶାଣ ( ରଶାଣିତ—ମଜାହୋଇ ଚିକଣ ହୋଇଥିବା ) ହାତୀ-ଦାନ୍ତ ପଲଙ୍କ ରଜତ ( ରୂପା ) ବାଡ଼ପରି; ଲବଣ୍ୟବତୀ ସେଥିରେ ସୁନା ଲତା ପରି ଜଡ଼େ ( ଗୁଡ଼ାଇ ହୋଇଛି ); ବିଶଦ ଘନ ( ଧଳାମେଘ ); ଗାଲତଳେ ବାଁ ହାତ ଥିବାରୁ କଅଁଳ କେନ୍ଦୁପତ୍ର ଉପରେ ଫୁଟିଲ ପଦ୍ମ ଥୁଆ ହେଲ ପରି ଦିଶୁଛି । [ ଏ ପ୍ରାକୃତିକ ବର୍ଣ୍ଣନା ଅତି ଚମତ୍କାର ] ।

୧୩—ଶୋଭ—ସୁନ୍ଦର; ନୀଳେନ୍ଦୀ ବରପତ୍ର—ସୁବୁଧିକଇଁ ପାଖୁଡ଼ା; ଓଲଟାଇ—ପିଠିଉପରକୁ କରି; ଦର୍ପଣେ—ମୁଖରୂପ ଦର୍ପଣ ଉପରେ; ଖଞ୍ଜନ ଯୋଡ଼ିଏ ଅଞ୍ଜନ ( କଜଳ ) ରୂପ ଅଠାକାଠିରେ ଯୋଗ ହେବାରୁ ( ଲଗିଯିବାରୁ ) ନିଶ୍ଚଳ ( ସ୍ଥିର ) ହୋଇ-ଛନ୍ତି । ମୃଗାଙ୍କ ( ଚନ୍ଦ୍ରମୁଖ ) ଉପରେ ମୀନ ରଶିପରି ( ମାଛପରି ) [ ଆଖିର ଉପମା ] କେଳା ଯେଉଁ ଅଠାଲଗା କାଠିରେ ଚଢେଇ ଧରନ୍ତି ତାହାକୁ ଅଠା-କାଠି କହନ୍ତି ।

୧୪—ବାମା—ସ୍ତ୍ରୀ, ବାମଦେବ—ମହାଦେବ; ତ୍ରିପୁର—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ; ମହାଦେବଙ୍କୁ ତ୍ରିପୁର ବିଜୟୀ କୁହାଯାଏ । ସ୍ତ୍ରୀ ମଧ୍ୟ ତ୍ରିପୁରକୁ ମୁଗଧ କରିପାରେ; ପୂର୍ଣ୍ଣଚନ୍ଦ୍ର ବାଣ୍ଟିକରି ଅଧେ ଶିବ ନେଲେ ବାକି ଅଧେ ସ୍ତ୍ରୀ ଆଣିଲ । ଚନ୍ଦନ ପାଟୀ ଦେଖି ଏହି ଉପମା ( ଉତ୍ପ୍ରେକ୍ଷା )

ବାମା ବାମଦେବ ଦୁଇ ଯେଣୁ ତ୍ରିପୁର ବିଜୟୀ
ଦ୍ୱନ୍ଦ କରି ପୂର୍ଣ୍ଣ ଚନ୍ଦ୍ର ଦ୍ୱିଭାଗ କଲେ ।
ଖଣ୍ଡେ ଖଣ୍ଡେ ଘଲ ଦେଖେ କୀରତି ପ୍ରକାଶ ଆସେ
ନିଷ୍ଟେ ପ୍ରମୋଦ ମାନସେ ଆଣି ବିହିଲେ ।
ଘେନିଅଛି ଚନ୍ଦନ ପାଟୀ
ଲୋକନେ ଏହି ଉପମା ମନେ ପ୍ରକଟି । ୧୪ ।
ଝିଲିମିଲି ମାଳି ପାନ ପନ୍ତିରେ ଅତି ଶୋଭନ
ମାର ମଙ୍ଗଳ ପଲ୍ଲବ ତୋରଣ ପରା ।
କତୁରା କୁନ୍ତଳା ଝଳି ବାତେ ଚଳି ଅଳି ଆଳୀ
ପକ୍ଷଗଳି କିବା ଉଡ଼ି ଯିବାକୁ ତ୍ୱରା ।
ମୁକୁତା ସୀମନ୍ତି ଉପରେ
କାଳିନ୍ଦୀ ମଧ୍ୟୁ କି ବହେ ଜାହ୍ନବୀ ଧାରେ । ୧୫ ।
ଶବ୍ଦାରୁ କରିଛି ଯୋଷା ଚୀନ[୩] ଚିକୁରକୁ ଖୋଷା
ଦିଶୁଛି ଯନ୍ ଚଉଁରୀ ଉନ୍ ଭଉଁରୀ ।

---

ପାଠାନ୍ତର—[୩], ଚୂର୍ଣ୍ଣ ।

---

୧୪—ବାମା—ସ୍ତ୍ରୀ; ବାମଦେବ—ମହାଦେବ; ତ୍ରିପୁର—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ; ମହାଦେବଙ୍କୁ ତ୍ରିପୁର ବିଜୟୀ କୁହାଯାଏ । ସ୍ତ୍ରୀ ମଧ୍ୟ ତ୍ରିପୁରକୁ ମୁଗ୍ଧ କରିପାରେ; ପୂର୍ଣ୍ଣଚନ୍ଦ୍ର ବାଣ୍ଟିକରି ଅଧେ ଶିବ ନେଲେ ବାକି ଅଧେ ସ୍ତ୍ରୀ ଆଣିଲା । ଚନ୍ଦନ ପାଟୀ ଦେଖି ଏହି ଉପମା ( ଉତ୍ପ୍ରେକ୍ଷା ) ।

୧୫—ଅଳକା ଉପରେ ଥିବା ଝିଲିମିଲି ମାଳି; ପାନପନ୍ତି ( ସୁନାରେ ତିଆରି ହୋଇ ଥିବା ସାନପାନ ପରି ) ଧାଡ଼ିଏ ସେଥିରେ ଓହଳି ଥାଏ । କୌଣସି ଉତ୍ସବରେ ପଲ୍ଲବ ତୋରଣା ହୁଏ ( ରାସ୍ତା କିମ୍ବା ଦୁଆର ମୁହଁରେ ମେହେରବୀ ତିଆର ହୋଇ ସେଥିରେ ଆମ୍ବ, ନରକୋଳି ପ୍ରଭୃତି ପତ୍ର ଓହଳାଇ ଦିଆହୁଏ ) । କତୁରା କୁନ୍ତଳା— କତୁରୀରେ କଟାହୋଇ ସଜଡ଼ା ହୋଇଥିବା ସୁନ୍ଦରୀଙ୍କର ଚୂର୍ଣ୍ଣ କୁନ୍ତଳ ବା ସାନ ସାନ ବାଳ; ବାତେ ଚଳି ( ପବନରେ ହଲି ) ବାରୁ ଭ୍ରମରମାନେ ପକ୍ଷିହଲାଇ ଉଡ଼ିବାକୁ ବସିଲାପରି ଦିଶୁଥିଲା । ଉପରେ ( ଝିଲିମିଲି ମାଳି ଉପରେ ) ମୁକୁତା ସୀମନ୍ତୀ ( ଅଳଙ୍କାରର ନାମ ) ( କାଳିନ୍ଦୀ ) ଯମୁନା ଭିତରୁ ଜାହ୍ନବୀ ଧାର ( ଗଙ୍ଗାର ସ୍ରୁଅ ) ବାହାରିଲା ପରି ଦିଶୁଛି । ଯମୁନା କଳା, ଗଙ୍ଗା ଧଳା;

୧୬—ଚୀନ ଚିକୁର ( ଚିକଣ ବାଳ ); [ ଚୀନ ଶବ୍ଦର ଏପରି ପ୍ରୟୋଗ ଅସାଧୁ ]— ଚୀନ ବସ୍ତ୍ର ହିଁ କେବଳ ସାଧୁ ପ୍ରୟୋଗ । ଚୀନର ମୌଳିକ ଅର୍ଥ ଚୀନ ଦେଶୀୟ

କେତୁ ମୁଣ୍ଡ ତୁଣ୍ଡେ ପଶି ଗଲଣି ଶରଦ ଶଶୀ
କେବଳ କିରଣ ଦିଶୁଅଛି ମାଧୁରୀ ।
ଆଡ଼ ମଲ୍ଲୀ[୪] କୁସୁମେ ତାରା ।
ହା ହା କାର କରି ଲୁଣ୍ଠୀଭୂତ କି ତାରା । ୧୬ ।
ଗଣ୍ଡ ଖଣ୍ଡ ପର ପଦ୍ମ- ରାଗ ତାଟଙ୍କର ସଦ୍ମ
ଚନ୍ଦ୍ରଠାରେ ସାନ୍ଦ୍ର ସ୍ନେହୀ ଆରଦ୍ରା କି ସେ ।
କରେ ବିପରୀତ ରତି ସେପରି ହୋଏ ପ୍ରତୀତି
ମିଶି ଶଶୀ[*] ଜ୍ୟୋତି ଆସି ଫୁଲେ କି ଦିଶେ ।
ଜଣାଉଛି ରସିକା କର୍ଣ୍ଣ
ତୋ ଶୋଭା ଯଶ ହେଲଣ ସ୍ୱର୍ଗରେ[୬] ପୂର୍ଣ୍ଣ । ୧୭ ।

---

ପାଠାନ୍ତର—୪, ଝୋମା । *, ମିଶିଣ ସେ । ୬, ସ୍ୱର୍ଗରେ ।

---

ଚିକଣ ଓ ପତଳା ପାଟ । ସେଥିରୁ ଓଡ଼ିଆ ଝୀନ ହୋଇଅଛି । ] ଖୋଷା କୂଡ଼ା (ଲେଟଣୀ ନୁହେ ) [ ୯ମ ଛାନ୍ଦ [ମ ପଦଦେଖ ଯନ୍—ସୁନ୍ଦର; ସୁନ୍ଦର ଚଉଁରୀରେ ରତ୍ନଭଉଁରୀ (ଭୁର୍ଣ୍ଣି) ଅଛି, ସାଧାରଣତଃ ଏହାକୁ ଚଉଁରୀଭୁର୍ଣ୍ଣି କହନ୍ତି । କେତୁ ସାପପରି; ତାହାର ମୁଣ୍ଡ ନାହିଁ ବୋଲି କଳ୍ପନା; କିନ୍ତୁ ଚନ୍ଦ୍ର ଗ୍ରହଣ ବେଳେ ବେଳେ କେତ ଗ୍ରସ୍ତ ହୁଏ, ଏଣୁ ଏଠାରେ କେତୁର ମୁଣ୍ଡ କୁହାଯାଇଛି । ସେ ଖୋଷାର ଚଉଁରୀ ଭୁର୍ଣ୍ଣି କେତୁ ତୁଣ୍ଡରେ ପଶି ଯାଇଥିବା ଚନ୍ଦ୍ରର ବାହାରକୁ ଦିଶୁଥିବା କିରଣ ପରି ଦିଶୁଛି; ଆଡ଼ (ପାର୍ଶ୍ୱ)—ଏଠାରେ କୂଡ଼ାର ଦୁଇପାଖ; ଦୁଇପାଖରେ ମଲ୍ଲୀଫୁଲ ଖଞ୍ଜା ହୋଇଛି; ତାରମାନଙ୍କର ସ୍ୱାମୀ ଚନ୍ଦ୍ରକୁ କେତୁ ଖାଇଯିବାରୁ ତାରମାନେ ହାହାକାର କରି ବିକଳ ହୋଇ କାନ୍ଦି ଆସି ଏଠାରେ ଲୁଣ୍ଠୀଭୂତ (ଜମା) ହୋଇ ଯାଇଛନ୍ତି କି ?

୧୭—ଗଣ୍ଡ ଖଣ୍ଡ—ଗାଲ; ଗାଲ ଉପରେ ପଦ୍ମରାଗ ଲାଲମଣି ଯୁକ୍ତ ତାଟଙ୍କ (କାପ)ର ସଦ୍ମ (ସ୍ଥାନ) ଚନ୍ଦ୍ରଠାରେ ସାନ୍ଦ୍ର (ଘନିଷ୍ଠ) ସ୍ନେହୀ ଲାଲ ଆରଦ୍ରା ନକ୍ଷତ୍ର କି ସେ ? ଆରଦ୍ରା ତାରା ଚନ୍ଦ୍ର ଉପରେ ଥିବାରୁ ଏପରି ବିପରୀତ ବୋଲି କୁହାଯାଇଛି—ତାରାଚନ୍ଦ୍ର ପତ୍ନୀ । ସେ ଦୁଇ ଜ୍ୟୋତିର୍ମିଶି କାନ ଫୁଲରେ ପ୍ରକାଶ ପାଉଛି । ସୁନା କାନ ଫୁଲରେ ଧଳା ଓ ଲାଲ ରତ୍ନମାନ ଅଛି । ଏହି ସବୁ ଚନ୍ଦ୍ର ତାରା ମାନେ ରସିକାର କର୍ଣ୍ଣରେ ଆସି ଜମା ହେବାରୁ ବୋଧ ହେଉଛି ସ୍ୱର୍ଗରେ ତା ଶୋଭାର ଯଶ ପ୍ରସ୍ତର ହେଲଣି ।

ଅଛି ବଜ୍ର ମଲ୍ଲୀ କଢି  ବିଧାତା କ ବଜ୍ର ଗଢି
ସୁନ୍ଦରୀ ସଂସାରେ ଇନ୍ଦ୍ର କରି ଦେଇଛି ।
ଧଇର୍ଯ୍ୟ–ବୃତ୍ର ଅସୁର  ନାଶ କରିଣ ଏଥିର
ଥିର ଗମନ କି ଥିର ହୋଇ ରହିଛି ।
କହୁଛି ଝଲକା ଝଲକ ।
ମୁହିଁ ରଖି ନାହିଁ ସୁର ନେତ୍ର ପଲକ । ୧୮ ।

ପାନ କଳ ପୂରି ତୁଣ୍ଡେ  ପୁଣି ଫୁଟି ଦିଶେ ଗଣ୍ଡେ
ମୁକୁରେ ଜବା କୁସୁମ ପ୍ରତିବିମ୍ବେ କି ।
ଶ୍ୱାସ ବସେ ଫୁଲେ ଘୋଣା  ତହିଁ ନୀଳା ନାକଚଣା
ଉତ୍ଫୁଲ୍ଲ ତିଳ ଫୁଲକୁ ଭୃଙ୍ଗ ଚୁମ୍ବେ କି ।
ଥୋପି ପଡ଼େ ରଙ୍ଗ ଅଧରେ ।
ଭସ୍ମ ହୀନ ପକ୍ୱବିମ୍ବେ ମନ ନ ଧରେ । ୧୯ ।
ଦମ୍ଭ ଉଦଧି ମନ୍ଥନ  ଅଚଳ ସ୍ତନ ଚନ୍ଦନ
ଲେପନ ହୋଇ ଶୋଭନ ବସନ ଗଳି ।

---

୧୮—ବଜ୍ର—ହୀରା ଓ ଇନ୍ଦ୍ରର ଅସ୍ତ୍ର; ବିଧାତା ତାକୁ ସୁନ୍ଦରୀ ସଂସାରରେ ଇନ୍ଦ୍ର କରିବ ବୋଲି ଏବଜ୍ର ଗଢି କରି ତାକୁ ଦେଇଛି କି ? ଇନ୍ଦ୍ର ବଜ୍ରରେ ବୃତ୍ରାସୁରକୁ ନାଶ କରିଥିଲେ । ଏ ଥିର ଗମନା (ଧୀର ଗତି ସୁନ୍ଦରୀ ) ଏଥିର ( ଏହି ବଜ୍ରମଲ୍ଲୀ କଢୀରେ ) [ ଯୁବାମାନଙ୍କର ] ଧର୍ଯ୍ୟ ନାଶ କରି ସାରି ଥିର (ସ୍ଥିର) ହୋଇ–ଯୁଦ୍ଧ ପରେ ବିଶ୍ରାମ କରିବା ନିମନ୍ତେ ରହିଛି କି ? ସୁର (ଦେବତା) ମାନଙ୍କର ପଲକ ପଡ଼େ ନାହିଁ ବୋଲି ପ୍ରବାଦ ଅଛି ।

୧୯—ମୁକୁରେ (ଦର୍ପଣରେ) ଜବା କୁସୁମ (ମନ୍ଦାର ଫୁଲର) ପ୍ରତିବିମ୍ବ ପରି କଳରେ ଥିବାପାନ ଗାଲ ଉପରେ ଦିଶୁଛି । [ ଗାଲର ମାଂସ ଏତେ ଉଜ୍ଜଳ ଓ ପତଳା ] ଶ୍ୱାସ ବାସେ ( ନିଶ୍ୱାସ ମାରି ) ଘୋଣା ( ନାକପୁଡ଼ା ) ଫୁଲି ଯାଉଛି । ତହିଁରେ ନୀଳା ( ନୀଳମଣିର ) ନାକ ଚଣା ଫୁଟିଲା ରାଶିଫୁଲକୁ ଭ୍ରମର ଚୁମ୍ବିଲା ପରି ଦଶୁଛି । ଥୋପି ( ପାନବୋଳ ); ପାଚିଲା କଇଁଚି କାକୁଡ଼ିର ଉପରେ ଏକ ପ୍ରକାର ପାଉଁଶିଆ ଧୂଳି ପଡ଼ିଥାଏ ।

୨୦—ଦମ୍ଭରୂପ ଉଦଧି ( ସମୁଦ୍ର )କୁ ମନ୍ଥନ କରିବା ବିଷୟରେ ଅଚଳ ( ମେରୁ ) ପରି ସ୍ତନ- [ମେରୁ ପର୍ବତକୁ ଦହିଖୁଆ କରି ଦେବତାମାନେ ସମୁଦ୍ରକୁ ମନ୍ଥିଥିଲେ]

ସୁଧା-କୋଷ ବେନି ଆଣି ତାର୍କି କି କାଚ ଡାକୁଣୀ
ଭଳି ଦୟିତ ଭୋଗକୁ ରଖିଛି ବାକୀ ।
ସ୍ଫଟିକ ପ୍ରାସାଦ ସଦୃଶୀ ।
ନବଘନ କାନ୍ତି ଅଛି ତହିଁରେ ମିଶି । ୨୦ ।
ଯାଉଁଳି ତାଡ଼ ସଜାଡ଼ି କଡ଼ିଆଳି ଶଙ୍ଖ ଚୂଡ଼ି
ସେ ପ୍ରୀତିରେ ଘେନିମାଣ୍ଡୁ କାନ୍ତି ଅଧିକା ।
ସୀଚେ ସଚେ କରଣ୍ଟି ତି ନଖେ ମଞ୍ଜୁ ମଞ୍ଜୁଆତୀ
ଚିହ୍ନିତ ହୋଇଛି ପୁଣି ଚନ୍ଦ୍ର ତାରକା ।
ତୁମ୍ବୀ ଦଣ୍ଡ ସାର ଭିଆଇ ।
ବୀଣା ହେବ ଗୁଣା ଆଣି ଯାଇଛି ବିହି । ୨୧ ।

---

ସେଥିରେ ଚନ୍ଦନ ଲଗିଛି । ସେ ଲୁଗାତଳେ ଭଳ ହୋଇ ଦିଶୁଛି । ( ବେନି ) ଦୁଇ ସୁଧା- କୋଷ( ଅମୃତ ଘଣ୍ଡ ); ଲୁଗା ଦେଲ କଳା କାଚ ଡ଼ାକୁଣୀ ( ଘୋଡ଼ଣୀ ) ପରି; ( ଡାଙ୍କିବା ପୁରୀ ବା ଚଞ୍ଚାମର ଓଡ଼ିଆ ନୁହେ ) ଦୟିତ-ପ୍ରିୟ, ସ୍ୱାମୀ, ସ୍ଫଟିକ ପ୍ରାସାଦରେ-( ଧଳା ମଇ ମଲ ପଥରରେ ତିଆରି କୋଠାରେ ) ନୂଆ ମେଘ ଲଗିଥିଲା ପରି ସ୍ତନରେ କଳା ଶାଢୀ ପଡ଼ିଛି ।

୨୧- ଯାଉଁଳି ତାଡ଼- ଦୁଇ ହାତରେ କିମ୍ବା କେବଳ ଡ଼ାହାଣ ହାତରେ ସମାନ ଯୋଡ଼ିଏ ତାଡ଼ ବା ଯୋଡ଼ିଏ ଭଗରେ ତିଆରି ହୋଇଥିବା ତାଡ଼; କଡ଼ୀ ଆଳି- ମଣୀବନ୍ଧରେ ପିନ୍ଧିବାର ଅଳଙ୍କାର ମାଠି, ଏହାର ତଳପଟ ବା ପେଟ ପତଳା ଓ ଉପର ଭୟଙ୍କର ମୋଟା ଓ ଓଜନ । ଶଙ୍ଖ ଚୁଡ଼ି- ଶଙ୍ଖ କିମ୍ବା ହାତୀ ଦାନ୍ତରେ ତିଆରି ହୋଇଥିବା ଚୁଡ଼ି । ଏହା କଡ଼ି ଆଳି ଠାରୁ ତାଡ଼ ଆଡ଼କୁ ପ୍ରାୟ ଆଠ ଆଙ୍ଗୁଳ ଗୋଟିଏ ଅଳଙ୍କାର ଦୁଇଫାଳ ହୋଇ ଭଉଁରୀରେ ଖଞ୍ଜା ହୋଇଥାଏ । ସୀଚେ- ପିଗ୍ଧଚେ; ସଚେ- ସଜାଡ଼ି କରି କରଣ୍ଟି କରିଛି; ଡ଼ାହାଣ ହାତକୁ ପକାଇଛି । ମଞ୍ଜୁଆତି ନାମକ ଏକ- ପ୍ରକାର ଗଛର ପତ୍ରକୁ ବାଟି ହାତ ପାପୁଲି ଓ ନଖରେ ଲଗାଇ ଶୁଖିଲା ଉତାରୁ ଛଡ଼ାଇ ଦେଲେ ନଖ ଓ ପାପୁଲି ଚମରେ ଅତ୍ୟନ୍ତ ନାରଙ୍ଗି ନାଲି ଦାଗ ରହିଯାଏ । ହରଗୌର ନାମକ ଗଛର ପତ୍ରରେ ମଧ୍ୟ ଏପରି ହୁଏ । ଅବିବାହିତା କୁମାରୀମାନେ ବିଶେଷରେ ଏଥିରେ ନଖ ଓ ପାପୁଲିରେ ଚନ୍ଦ ତାରା ଚିତ୍ରକରି ତାହା ସବୁ ପଗ୍ଧଇ ଥାନ୍ତି । ପିଗ୍,- ତୁମ୍ବୀ, ହାତ ବୀଣାର ଦଣ୍ଡ, ବିହି ବୀଣା କରିବ ବୋଲି ତାର ଆଣିବାକୁ ଯାଇଛି କି ? ଭିଆଇ- ସଂଗ୍ରହ କରି ।

ଦରଶନେ ଗେମରଜି ଦଣ୍ଡେ ସଂଶୟ ଉପୁଜି
କରି ନାହିଁ ବେଣୀ ଫୁଟି ଦିଶୁଛି କିସ ।
ସୁହିଁ କଛପ ଜଘନ ଭଜିଲ ସନ୍ଦେହ ମାନ
ଏ ଏହା ବନ୍ଧନ ରଜ୍ଜୁ କଲ ମାନସ ।
ଉରୁ ଦେଖି ଦୂରୁଁ ସେ ଲେଖି
ମାଂସଳ ଗଉର ପକ୍ୱ ଚୂତ କି ଶୋଭି । ୨୨ ।
ଶାଢୀ ଧଡ଼ି ପଡ଼ି ଜଡ଼ି ନିବିଡ଼େ ନୀବୀ ନିବାଡ଼ି
ଅଛି କେତେ ଛନ୍ଦେ ଭିଡ଼ି୭ ବିବେକ ଭଳି ।
କବି ଦମ୍ଭ ଭୂମି ଧର ପବି ଛବି ମନୋହର
ଚିତ୍ତ ମତ୍ତ ଦ୍ୱିରଦ ବନ୍ଧନ ଶିକୁଳୀ ।
ଉପମା ବୁଡ଼ାଇବା କୂଟେ ।
ଶୋଭ ନଦୀ କି ଭଉଁରୀ ଦେଇ ପ୍ରକଟେ । ୨୩ ।

---

ପାଠାନ୍ତର—୭, ଭିଡ଼ି ।

---

୨୨— ଲହି ତଳକୁ ବେଣୀତ ପକାଇ ନାହିଁ ! ଏ କଣ ବୋଲି ଗେମଗଜି ଦେଖି ସନ୍ଦେହ ହେଲ । ଜଘନ (ଜଙ୍ଘ) କଛପ ପରି ଦେଖା ଯିବାରୁ ମନେକଲ ଏହା (ଏହି କଛପର) ବନ୍ଧନ ରଜ୍ଜୁ ବାନ୍ଧିବା ପାଇଁ ଦଉଡ଼ି )ଏ । ଦୂରରୁ ଉରୁ ( ଆଣ୍ଠୁ ଉପର ଜଙ୍ଘ ମାଂସଳ (କଠିନ ରସଯୁକ୍ତ— ତରଳ ରସନୁହେ ; ଗୌର ( ଉଜ୍ଜ୍ୱଳ ) ପକ୍ୱ ଚୂତ ( ପାଚିଲ ଆମ୍ବ ) ।

୨୩— ଶାଢୀ ଧଡ଼ି [ ଅଣ୍ଟା ଉପରେ ] ଜଡ଼ି (ଲଗିକରି ) ପଡ଼ିବାର ଯେଉଁ ନୀବୀ ହୋଇଛି ସେହି ନୀବୀକୁ ( ଅଣ୍ଟାରେ ଲୁଗା ଘେରକୁ ) ସେ ନିବାଡ଼ି କରି ତା ବିବେକ ଭଳି ( ତାକୁ ଯେତେ ଦୂରଦର୍ଶୀ ) ସେହିପରି କେତେ ଛନ୍ଦେ (ପ୍ରକାରରେ) ଭିଡ଼ିଛି । କିମ୍ବା ବିବେକକୁ ମନୁଷ୍ୟ ଯେପରି ନାନା ପ୍ରକାରରେ ବାନ୍ଧିକରି ରଖେ ଏ ନୀବୀକି ସେହପରି ଭିଡ଼ିଛି । ଏ ନୀବୀ କବିର ଦମ୍ଭ ରୂପ ଭୂମିଧର ପର୍ବତ ପ୍ରତି ପବି ଛବି ( ବଜ୍ରପରି ) ହୋଇଛି । [ ପର୍ବତକୁ ବଜ୍ରଧ୍ୱଂସ କରେ ] କିମ୍ବା ଚିତ୍ତ ( ମନ) ରୂପ ମତ୍ତ ଦ୍ୱିରଦ (ମତୁଆଲ ହାତୀ)କୁ ବାନ୍ଧିବାରେ ଶିକୁଳୀ ପରି ହୋଇଛି । କିମ୍ବା ଉପମାମାନଙ୍କୁ ବୁଡ଼ାଇ ଦେବାର କୂଟେ (ମନ୍ଦ ଅଭିପ୍ରାୟରେ) ଏହି ଶୋଭ ରୂପ ନଦୀ ନୀବୀ ବନ୍ଧନ ରୂପ ଭଉଁରୀ ଦ୍ୱାରା ପ୍ରକଟେ (ପ୍ରକାଶ ପାଉଛି) । ଏ ଶୋଭରେ ଯାହା ଉପମା ମାନେ ଠଉରି ଥିଲେ ଏ ନୀବୀ ଠାରେ ସମସ୍ତେ ବୁଡ଼ି ଧ୍ୱଂସ ହେଲେ ଏହାହିଁ ଭବ । [ ନଈରେ କାଠ ପଟାଳି ଗଲବେଳେ ଯେପରି ଜଳାବର୍ତ୍ତରେ ପଡ଼ି ଧ୍ୱଂସହୁଏ ସେହି ଲକ୍ଷ୍ୟରେ ବୁଝିବାକୁ ହେବ । ]

ନିତମ୍ବ ନିଗମ ସ୍ଥାନ ପାଶ ପାତିଛି ମଦନ
ଧରିବାକୁ ଅକ୍ଷି ପକ୍ଷୀ କରି ମମତା
କଲେକି ନୟନ ମନ[୮] ନୀବୀରେ ତାର ସଦନ
ହେଲକି[୯] ନୀବୀ ସଦନ ଏ ସଂଶୟତା ।
ଅବକାଶ ରଖିଲ ନାହିଁ ।
ଆଉ ଶୋଭା ଦେଖିବାକୁ ଉଚ୍ଛନ୍ନ ଯହିଁ । ୨୪ ।

ଭଜୁ ନ ଭଜୁ ବାନ୍ଧବୀ ଆଗ ମୁଁ ନିଦ୍ରା ଭଙ୍ଗିବି
ତନୁ ହେଲେ ଛୁଇଁଥିବି ଏ ବଡ଼ ଲାଭ ।
ଯେ ପାରେ ବାଞ୍ଛା ମନାଇ ନିଷ୍ଠେ ମଞ୍ଚେ ଇନ୍ଦ୍ର ସେହି
ମନରେ ଭାବନା କରି ପରମ ଶୁଭ
ହାନ୍ତୁ ଧରି ଦେଲା ଝୁଲାଇ
ଫୁସ୍ କର ଲାଗି ନିଦ୍ରା ବିନାଶ ହୋଇ । ୨୫ ।

ଉଠି ଭାଙ୍ଗନ୍ତେ ଅଳସ କି ଶୋଭା କୁଚ କଳସ
ଟେକି ହୋଏ କି ମେରୁକୁ ଜିଣିଲା ଗର୍ବେ ।

---

ପାଠାନ୍ତର—୮, ମ'ନନସ୍ତନ ୯, ହେଲେ ସେ ।

---

୨୪-୨୫—ନିତମ୍ବ ଓ ନିଗମ ସ୍ଥାନ (ମୂଳ ବା ଗୁପ୍ତ ସ୍ଥାନ) ମଦନର ଆଖିରୂପ ପକ୍ଷୀକୁ ଧରିବା ପାଇଁ ଫାଶ ପରି । ମନ ନୟନ ତା ନୀବୀରେ ରହିଲେ । ନୀବୀ ( ପୁଞ୍ଜି, ପାର୍ଷି—ସର୍ବସ୍ୱ ) ସଦନ ( କ୍ଷୟ ) ହୋଇଛି ଯାହାର ସେ ନୀବୀ ସଦନ— ନୟନ ମନ ନୀବୀରେ ରହିବାରୁ ନିଜେ ସର୍ବସ୍ୱ ହରାଇଲା ପରି ତାହାର ସନ୍ଦେହ ହେଲା । ଅର୍ଥାତ୍ ଚନ୍ଦ୍ରଭାନୁର ଦମ୍ଭ ଧ୍ୱଂସ ହେଲା । ତେଣୁ ଉଚ୍ଛନ୍ନ, ଉଚ୍ଛନ୍ନତା କାମର ବ୍ୟଗ୍ରତା ) ଆଉ ଶୋଭା ଦେଖିବାକୁ ଅବକାଶ ହେଲା ନାହିଁ । ( ତକାଇଲା ନାହିଁ )

୨୬—ନିଦରୁ ଉଠି ଦୁଇହାତକୁ ମୁଣ୍ଡ ଉପରେ ଛନ୍ଦି ଅଳସ ଭାଙ୍ଗିବାର ଏ ଚିତ୍ର ଏଠାରେ ଅତି ରମଣୀୟ । କୁଚ ପର୍ବତ ପରି ଟେକି ହୋଇଗଲା । ମୁହଁକୁ ବେଢ଼ି ଛନ୍ଦାହାତ ଚନ୍ଦ୍ରର ଚାରିପାଖେ ବିଜୁଳିର ପରିଧି ( ପରିବେଶ, ମଣ୍ଡଳ—ଯାହା ବର୍ଷାଦିନେ ଚନ୍ଦ୍ର ଓ ସୂର୍ଯ୍ୟ ଚାରିପଟେ ବୃତ୍ତପରି କେବେ କେବେ ପଡ଼ିବାର ଦେଖାଯାଏ ) ଜୃମ୍ଭା (ହାଇ); ଦର ବିକଶିତ କୋକନଦ—ଦର ଫୁଟିଲା ରଙ୍ଗକଇଁ—ପାନ ଖାଇ ଥିବାରୁ ।

ଉଦ୍ଧେ ଛନ୍ଦି କର ବେନି ଶୋଭ ଲପନକୁ ଘେନି
ଚନ୍ଦ୍ରେ କି ବିଦ୍ୟୁ ପରିଧି ହୋଇଲା ଏବେ ।
ମୁଖ କୁମ୍ଭା ବଶେ ଗଳିତ ।
ଦରବିକଶିତ କୋକନଦ ଯେମନ୍ତ । ୨୬ ।

ନୟନେ ଚଞ୍ଚଳ ମିଶେ ଗଣବଣା ଏଣୀ କି ସେ
ଶର ପ୍ରାୟେ ଯାଇ ପୁସ ଲଖେ ପଡ଼ିଲା ।
ସେ ସୁନ୍ଦର ପାରବାର ରସ ରତନ ଆକର
ମୀନ ପ୍ରାୟେ ହୋଇ ତହିଁ ବେଗେ[୧୦] ବୁଡ଼ିଲା ।
ଲଜେ ମୁଖ ନୁଆଇଁ ଘନେ ।
ସମ୍ଭାବନା କଲା ପ୍ରାୟ ଉଠିଲା ଛନ୍ନେ । ୨୭ !

ଭବୁଛି ନୁହଇ ମାର ନାହିଁ ଫୁଲ ଧନୁଶର
ସୁଧାକର ନୋହେ ତହିଁ କଳଙ୍କ ଅଛି ।
ଆଉ ଦେବତା ମାନଙ୍କୁ କିପାଁ ଆଣିବା ମନକୁ
ମୋହରି ସୁକୃତ ଏ ପୁରୁଷ ହୋଇଛି ।
ମୋର ପୁଣ ସୁକୃତ କେତେ ।
ଏମନ୍ତ ଶୋଭ ହେବାକୁ ଜାତ ଜଗତେ । ୨୮ ।

---

ପାଠାନ୍ତର—୧୦, ବେଗେ ।

---

୨୭—ଚଞ୍ଚଳ (ଚଞ୍ଚଳତା) ଗଣବଣା ଏଣୀ ( ଗୋଠଫିଟା ମୃଗୁଣୀ ) ପରି ଚଙ୍ଗଚଙ୍ଗ ହୋଇ ଗ୍ରହିଲା ଏବଂ ଶରପରି ହୋଇଥିବା ପୁରୁଷର ଲଖରେ ପଡ଼ିଲା । ସେ (ପୁରୁଷ) ସୁନ୍ଦର (ସୁନ୍ଦରତା—ଶୋଭ ) ପାରବାର (ଅନନ୍ତ ବା ପାରହୀନ ସମୁଦ୍ର) ଏବଂ ରସ (ରସିକତା) ରୂପ, ରତ୍ନର ଆକର (ସ୍ଥାନ) । ଏ (ନାରୀ) ମୀନ ପ୍ରାୟ ହୋଇ ସେହି ରତ୍ନାକର ପାରବାରରେ ବୁଡ଼ିଲା । ତହୁଁ ଘନେ (ଶୀଘ୍ର) ସମ୍ଭାବନା (ମର୍ଯ୍ୟାଦା) କଲା । ପରି ଛନ୍ନେ ( ତରତର ହୋଇ )

୨୮—ଲାବଣ୍ୟବତୀ ବିଚାରିଲା ଏ କନ୍ଦର୍ପ ନୁହେ, କାହିଁକିନା—ଫୁଲଧନୁ ଶରନାହିଁ; ଆଉ ଦେବତାମାନେ ତ ଏଠାରେ ଲେଖା ନୁହନ୍ତି । ବୋଧହୁଏ ମୋରି ସୁକୃତ ( ପୁଣ୍ୟ ସବୁ ) ଏ ପୁରୁଷ ରୂପ ହୋଇଛି ।

ନିକଟେ ଗୋଗୁଳେ ହରି ମୋହନ ରୂପକୁ ଧରି
ଥିଲେ ନାଶ କରିଛନ୍ତି ଅବନୀ ଭର ।
ଏତେ ବେଗେ ଅବତାର କିପାଁ ହୋଇବ ତାଙ୍କର
କି ମୂର୍ତ୍ତିମନ୍ତ ଉପମା ଦ୍ରବ୍ୟଙ୍କ ସାର ।
ଏ ରୂପେ ବିଷ୍ଣୁରୁ ସୁକେଶୀ ।
କ୍ଷୀରେ ନୀର ପ୍ରାୟେ ମନ ପୂରୁଷେ ମିଶି । ୨୯ ।

ଏ କାଳେ କର କୋରକ କରି ତରୁଣ ତିଳକ
ବୋଇଲା ହେ ଜୀବେଶ୍ୱରି ବିନୟ ଘେନ ।
ଚରଣେ ଅଳତା ପରି ପଛେ ପଛେ ଛାଇ ସରି
ଅନୁସରି ଥିବାକୁ ମୋ ହେଉଛି ମନ ।
ମୋତେ ଦିଅ ବସନ ଭାଗ୍ୟ ।
ହେଲିନି ସବୁ ମତେ ମୁଁ କୃତାର୍ଥ ଯୋଗ୍ୟ । ୩୦ ।
ଯେବେ ମୋର ଭାଗ୍ୟ ନାହିଁ ତୋତେ କି ପାରନ୍ତି ଗ୍ରହି
ବିଶେଷତ ପାଦ[୧୧] ଛୁଇଁ ଏ କଥା ଭବ ।
ମୋ ମତେ ମୁଁ ତୋ ସେବକ ହେଲି ନି କାମ ପାବକ
ଜାଳିଲେ ଏହୁ ଅଯଶ କାହାକୁ ହେବ ।

---

ପାଠାନ୍ତର— ୧୧, ତନୁ ।

---

୨୯- ନିକଟେ—ଏବେ; ଗୋକୁଳେ ଗୋପପୁରେ, ବୃନ୍ଦାବନେ ମୋହନ (କୃଷ୍ଣ) ରୂପ ଧରି ଅବନୀ (ପୃଥିବୀ) ଭର ନାଶ କରିଛନ୍ତି (ଉଶ୍ୱାସ କରିଛନ୍ତି) । ଆଉ ତ ପୃଥିବୀ ଭାର ବଢ଼ି ନାହିଁ । ତେବେ ଏ ବିଷ୍ଣୁଙ୍କର ଅବତାର ନୁହେ । ଏ କଣ ତେବେ ଉପମା ଦିଆ ହେଉଥିବା ଜିନିଷମାନଙ୍କର ଯେ ସାର ସେହି ମୂର୍ତ୍ତି ଧରିଛି; କ୍ଷୀରେ (ଦୁଧରେ) ନୀର (ପାଣି) ମିଶିଲାପରି;

୩୦—କର କୋରକ କରି—ହାତକୁ ଫୁଲକଢ଼ୀ ପରି କରି—ହାତ ଯୋଡ଼ି; ତରୁଣ ତିଳକ —ଯୁବା ଶ୍ରେଷ୍ଠ; ଜୀବେଶ୍ୱରି—ପ୍ରାଣେଶ୍ୱରୀ; ବିନୟ ଘେନ—ମିନତି ଘେନାକର, ବସନ ଭାଗ୍ୟ—ଲୁଗାପରି ତମ ଦେହରେ ଲାଗିରହିବା ସୁଯୋଗ; କୃତାର୍ଥ (ସିଦ୍ଧ ମନୋରଥ) ହେବାର ଯୋଗ୍ୟ (ଉପଯୁକ୍ତ);

୩୧—ସେହି କୃତାର୍ଥ ହେବାର ଯୋଗ୍ୟତାକୁ କହୁଛି । ତୋର ସେବକ (ଚାକର) ହେଲିଣି; କାମ ରୂପ ନିଆଁ ମତେ ଜାଳିଲେ ତୋରି ଚାକରକୁ ଜାଳିବ । ତୁ ଥାଉଁ ଥାଉଁ ଏ ଅଯଶ କାହାକୁ ହେବ ? ତୋତେ ବିନୟ କିମ୍ବା ପ୍ରଶଂସା କରିବାକୁ ବାଣୀ (କଥା) ନାହିଁ ।

ବିନୟ ପ୍ରଶଂସାକୁ ବାଣୀ ।
ନାହିଁ ମୁଁ ନ କହିବି ତୁ ଦୟାଳୁମଣି । ୩୧ ।
ମିଥ୍ୟା ନୁହେ ନିନ୍ଦା ବ୍ୟାଜେ ନେତ୍ର ଯମଦାଢ଼କୁ ଯେ
ରଖିଥିଲୁ ପକ୍ଷ୍ମ କୋଷୁଁ କରି ବାହାର ।
ହୃଦରେ ମାରି ଓଟାରି ଘେନିଗଲୁ ଝଟ୍‌କରି
ଦେଖ ମୁକୁରେ ରୁଧିରେ ହୋଏ ଜର୍ଜର ।
ହାସ ଔଷଧୀଶ ପ୍ରକାଶ ।
ନ କଲେ ନବୀନା ନିଶ୍ଚେ ଗଲି ମୁଁ ନାଶ[୧୭] । ୩୨ ।
ସେ ରମଣୀ ଚନ୍ଦ୍ରମଣି ହୋଇଲା ଏମନ୍ତ ମଣି
ଘଟୁ ଚନ୍ଦ୍ରେ ଦ୍ରବୀଭୂତ କଲା ନାଗର ।
ହାସ ପୂରିଲା ପରସ୍ତେ ଶ୍ରୀମୁଖ ପ୍ରସନ୍ନ ହୋଏ
ହେଲା ଜାଣି ବକ୍ର ନେତ୍ରେ ତା ସୀକାର ।
କର ଧରି ଶିରେ ଲଗାଇ ।
କୋଳ କରି ସୁରସିକ ପଲ୍ୟଙ୍କେ ନେଇ । ୩୩ ।

---

ପାଠାନ୍ତର—୧୭, ଗଲି ସିନା ବନାଶ ।

---

୩୨—ଯମଦାଢ—ଯମଦର କଟାରୀ (୭ମ ଛାନ୍ଦ,୩୦ ପଦ ଟୀକା ଦେଖ) । ନିଜ ବାହାନାରେ ପକ୍ଷ୍ମ (ଆଖିପତା) ରୂପ କୋଷ (ଖୋଳ)ରେ ଯମଦାଢ଼କୁ ରଖିଥିଲୁ । ଆଖି କୋଣ ନାଲିକି ରୁଧିର ଲକ୍ଷ୍ୟରେ କୁହାଯାଇଛି । (୧୦ମ ଛାନ୍ଦ ୧୨ ଶ ପଦ ଟୀକା ଦେଖ ) । ତୋର ହାସ ରୂପ ଔଷଧୀଶ (ଚନ୍ଦ୍ର); [ ଶ୍ରେଷ୍ଠ ଓଷଧ ଏହି ଅର୍ଥ ଶ୍ଳେଷ ମଧ୍ୟ ଅଛି, କାହିଁକିନା କ୍ଷତ ଆରୋଗ୍ୟ ହେବ । ]

୩୩—ସେ ରମଣୀ ଚନ୍ଦ୍ରମଣି ( ଚନ୍ଦ୍ରକାନ୍ତ ମଣି ) ହେଲା; ପୁରୁଷର ଘଟୁ ( କାମୁକର ଖୋଷାମତ ବା ମାନ ଭଙ୍ଗିବାର ବିନୟକୁ ଘଟୁ କହନ୍ତି ) ଚନ୍ଦ୍ର ହେଲା; ଚନ୍ଦ୍ରକାନ୍ତ ମଣି—( ୬ଷ୍ଠ ଛାନ୍ଦ ୪୧ ପଦ ଟୀକା ଦେଖ । ) ଦ୍ରବୀଭୂତ କଲା—ତରଳାଇଲା ; ପୁରୁଷ ଜାଣିଲା ଯେ ବକ୍ର ନେତ୍ରେ ( କଟାକ୍ଷରେ ) ସେ 'ହଁ' କଲା । କୋଳ କରିବା ପୂର୍ବରୁ ତାର ହାତକୁ ଧରି ଆପଣା ମୁଣ୍ଡରେ "ମୁଁ ଧନ୍ୟ ହେଲି ବୋଲି" ଲଗାଇ ଦେଲା ।

ବସି ବସାଇଲ କୋଳେ  ଲପନ ଚୁମ୍ବିବା ବେଳେ
ଛେମା କରେ ଦେଲ ବେଗେ ରତନ ମୁଦି ।
ରମା ୧୩ କାଢି ମୋତିମାଳା  ଲମ୍ବାଇଲା ପୁଂସ ଗଳା
ପରସ୍ପର ବରଣେ ହୋଇଲେ ପ୍ରମୋଦୀ ।
ସେ କାଳକୁ ଅସ୍ତ ଚନ୍ଦ୍ରମା
କୁମାର ସ୍ୱରୂପେ ବାଢ଼େ ଲେଖି ପ୍ରତିମା । ୩୪ ।
ଦେବୀ ଯେ ମାୟା ହରିଲ  ବୀରକୁ ସ୍ୱପୁରେ ନେଲ
ରଜନୀ ବିନାଶ ନିଦ୍ରା ସେ କାଳେ ହତ ।
ବଜ୍ର କିପାଁ ନ ପଡ଼ିଲ  ଏ ଦଣ୍ଡ କାହିଁକି ହେଲ
ପିଶୁନ ଧାତା କି କଲ ଦାରୁଣ କୃତ ।
ରାମ ବୋଲି ବିସ୍ମୟ ହୋଇ ।
ଉପଇନ୍ଦ୍ର ବୀରବର ଏ ରସ କହି । ୩୫ ।

---

ପାଠାନ୍ତର—୧୩, ଜେମା ।

---

୩୪—ଲପନ—ମୁହଁ; ଚନ୍ଦ୍ର ଅସ୍ତଗଲ ବେଳକୁ ଦେବୀ କୁମାର ସ୍ୱରୂପରେ ବାଡ଼ରେ (କାନ୍ଥରେ) ପ୍ରତିମା ଲେଖି, ମାୟାହରିଲଇ ଆଦି ପର ପଦ ସଙ୍ଗେ ଲଗାଇବାକୁ ହେବ ।

୩୫-ପିଶୁନ—ନିର୍ଦ୍ଦୟ; ଦାରୁଣ—ନିଷ୍ଠୁର;

ରାମ ବୋଲି ବିସ୍ମୟ ହୋଇ— ଏ ଦାରୁଣ କୃତ୍ୟରେ ବିସ୍ମୟ ( ଆଶ୍ଚର୍ଯ୍ୟ ) ହୋଇ ରାମ ନାମ ଧରି; ବିସ୍ମୟ ହେଲେ ରାମ ବୋଲି କହିବାର ଯେ ବିଧିଅଛି ସେ ଶ୍ଳେଷାର୍ଥ ପ୍ରତି ମଧ୍ୟ ଏଠାରେ ଲକ୍ଷ୍ୟ ।

—x—

# ଦ୍ୱାଦଶ ଛାନ୍ଦ

## ବିରହ ଉଦ୍ଦୀପନ

(ଲାବଣ୍ୟବତୀର ବିଳାପ)

ରାଗ କଉଶିକ । କୁମୁଦ କାନ୍ତ ଚଉତିଶାବାଣୀ

ଚେତି ଚତୁରୀ ଚାହିଁଲା ନିଶାନାଶେ ପାଶେ ନାହିଁ ଦିବ୍ୟ ତରୁଣ ।
ନାଥ ନାଥ ବୋଲି ହୃଦେ ହାତ ମାରି ଅତି ଉଚ୍ଚେ କଲା କାରୁଣ ।
ଖୋଜେ ଅଧୀରେ । ଚେତନା ହତ ସେ ବିଧିରେ ।
ଶେଯ ଲେଉଟାଇ କବରୀ ଫିଟାଇ କର ଭରି କୁଚ ସନ୍ଧିରେ । ୧ ।

ପୁଣ ବୋଇଲା ମୁଁ ଜାଣି ତ ନଥିଲି ଦଇବ ତୁ ଏଡ଼େ ଦାରୁଣ ।
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ ପରଶିଲୁ କଉଁ କାରଣ
ଭୁଞ୍ଜି ବସିବା-ବେଳେ କୁଳିଶ,ବୃଷ୍ଟି କଲୁ ।
ଯେବେ କଲୁ ତେବେ ଜୀବନ ନ ନେଲୁ ଏଡ଼େ ବ୍ୟାକୁଳ କିପାଁ ଦେଲୁ । ୨ ।
ଏ ବାଣୀ ଶ୍ରବଣେ ଶୁଣି ସଖୀଗଣେ ପଚାରିଲେ ଏକି ବିଷୟ ।
ତାର ତରଳ ନୟନରେ ସରଳ ହୃଦୟ ପୂରେଇଛୁ ଲୁହ ।

---

୧—ଚେତି—ପାଖରେ ପୁରୁଷ ନଥିବାର ଜାଣି, କିମ୍ବା ସ୍ୱପ୍ନ ଶେଷରେ ଉଠି;ଚେତନା ହତ—ଆତ୍ମଜ୍ଞାନ ଶୂନ୍ୟ; ବିଧିରେ—ବାସ୍ତବରେ, ଯଥାର୍ଥରେ ।
ଶେଯ ଲେଉଟାଇବା, କବରୀ (ବନ୍ଧାବାଳ) ଫିଟାଇବା, କୁଚ ସନ୍ଧିରେ ହାତ ଭର୍ତ୍ତି କରିବା ପ୍ରଭୃତି ଆତ୍ମଜ୍ଞାନ ନଥିବା ପ୍ରକାଶ କରୁଅଛି । ଶେଯତଳ, ବାଳ-ଭିତର ଓ ଉଚ୍ଚ କୁଚସନ୍ଧି ଏସବୁ ଅନ୍ଧକାରର ସ୍ଥାନ; ଗର୍ତ୍ତ ଥିଲାବେଳେ ସେ ପୁରୁଷକୁ ଦେଖିଥିଲା, ଅତଏବ ଏହି ଅନ୍ଧାର ଜାଗାମାନ ଖୋଜି ପକାଇଲା ବୋଲି ବା ଆଉରି ଦୂରକୁ ଟାଣି ଓଟାରି କେହି କେହି ଅର୍ଥରେ ଅନର୍ଥ କରିଥାନ୍ତି ।

୨—କଉଁ କାରଣ—କାହିଁକି ? କୁଳିଶ—ବଜ୍ର; ବ୍ୟାକୁଳ—ବ୍ୟାକୁଳତା;

ବାଢୀରତନ । ବାଳିଶ ପରଯେ ହୋଇଲୁ ।
ପୁରୁଷପଦ ଦିବାକର ଅଗମ୍ୟ ପୁରେ କାହୁଁ ପ୍ରିୟ ପାଇଲୁ । ୩ ।

ବୋଲେ ନାଗରୀ ସାଗରେ ସ୍ନାନକରି ଯେମନ୍ତ ତୃଷା ନ ତୁଟିଲା ।
କଳ୍ପତରୁରେ ଫଳ ନାହିଁ ଯେମନ୍ତ ତେମନ୍ତ ଦଶାକୁ ଘଟିଲା ।
ଦିବ୍ୟ ପୁରୁଷେ । ଆସି ରସି ବସି ମୋ ପାଶେ ।
ଅଙ୍ଗେ ଅଙ୍ଗ ମେଳେ ରସ ଜାତ ବେଳେ ବିଚ୍ଛେଦ ହୋଇଲା କି ଦୋଷେ । ୪ ।

ଆଳୀ ଭଳିଲେ ଚନ୍ଦନ ମହୀରୁହ ପରଏ ଏହୁ ଅନ୍ତଃପୁର ।
ଉରଗ କଞ୍ଚୁକେ ବେଷ୍ଟିତ ହେବାରେ ଗଉ ଦିବସେ ଭୟଙ୍କର ।
ଅଛି ତହିଁରେ । ପବନର ମାତ୍ର ସ୍ପରଶ ।
ଏ କଉଁ ଦେବରେ ଗମ୍ୟ ହୋଇଥିବ ଭେଦିତ ନ ଥିବ ମନୁଷ୍ୟ । ୫ ।

---

୩—ତାର (ଉଜ୍ଜ୍ୱଳ) ତରଳ ( ଚଞ୍ଚଳ ) ବାଳୀଶ ପରଏ—ବାୟାଣୀ ପରି, ଏ ପୁର କେବଳ ପୁରୁଷପାଦ ପକ୍ଷରେ ଅଗମ୍ୟ ନୁହେଁ, ଦିବାକର (ସୂର୍ଯ୍ୟ) ପକ୍ଷରେ ମଧ୍ୟ ଅଗମ୍ୟ; "ଅସୂର୍ଯ୍ୟଂପଶ୍ୟା ରାଜଦାରା" ବୋଲି କଥାଅଛି ।

୪—ସାଗରେ—ଏଠାରେ ମଧୁର ଜଳହ୍ରଦରେ ଅର୍ଥ କରିବାକୁ ହେବ; କଳ୍ପତରୁରେ ଯାହା ବାଞ୍ଛା କରିବ ତାହା ମିଳେ ସତ ମାତ୍ର ଫଳ ଧରେ ନାହିଁ, ବୋଲି ପ୍ରସିଦ୍ଧି ଅଛି; ରସ ଜାତବେଳେ—ଶୃଙ୍ଗାର ହେଲା ବେଳକୁ ।

୫—ଅନ୍ତଃପୁର—ଉଆସ, ନାରୀମହଲ; ଚନ୍ଦନ ମହୀରୁହ ( ଚନ୍ଦନ ଗଛକୁ ) ଉରଗ· (ସାପ) ମାନେ ବେଢି ରହିଥାନ୍ତି ବୋଲି ପ୍ରବାଦ ଅଛି, ଏଠାରେ କଞ୍ଚୁକ ବୋଇଲେ ସାପକାତି ଓ କଞ୍ଚୁକୀ (କଞ୍ଚୁକେ = କଞ୍ଚୁକରେ, କଞ୍ଚୁକୀରେ)—ଅନ୍ତଃପୁରଚର ବିଶ୍ୱସ୍ତ ବୃଦ୍ଧ ବ୍ରାହ୍ମଣ—

"ଅନ୍ତଃପୁର ଚରେ ବୃଦ୍ଧୋ ବିପ୍ରୋ ଗୁଣଗଣାନ୍ୱିତଃ
ସର୍ବ କାର୍ଯ୍ୟାର୍ଥ କୁଶଳଃ କଞ୍ଚୁକୀ ତ୍ୟଭି ଧୀୟତେ ।"

ବିଶ୍ୱସ୍ତ ବୃଦ୍ଧ ଉଆସର ଦୁଆରି ମାନଙ୍କୁ ମଧ୍ୟ କଞ୍ଚୁକୀ କୁହାଯାଏ । ଚନ୍ଦନ ଗଛକୁ ପବନ କେବଳ ଛୁଏଁ, ଉଆସ ଭିତରକୁ ପବନ ମାତ୍ର ଆସେ । ଅତଏବ ମନୁଷ୍ୟର ଅଗମ୍ୟ ।

ହେମାକୁ ପୁଛିଲେ ତାଣ୍ଡବ ଚିତ୍ରକୁ ଦେଖିଛୁ ତ ଶିବ ସଦନେ ।
ତହୁଁ କଉଁ ଦେବେ ବଶ ହେଲୁ ଏବେ କି ଅବା ରସିଲୁ ମଦନେ ।
ଶୁଣି ସୁନ୍ଦରୀ । ଶିର କମ୍ପାଇ କଲ ନାହିଁ ।
ଧାତ୍ରୀ ପୁତ୍ରୀ ମନ୍ତ୍ରୀ ସୁତାକୁ ବୋଇଲା ସ୍ୱପନକୁ ଭୁଲ କିପାଇଁ । ୬ ।
ଚିକୁର ଶୋଭି ମୁକୁର ପ୍ରତିବିମ୍ବ ଆଲିଙ୍ଗନେ ଯେବେ ଆସିବ ।
ମୃଗ ତୃଷ୍ଣା ଜଳ ତୃଷାକୁ ନାଶିବ ସ୍ୱପ୍ନତେବେ ସତ ଦିଶିବ ।
କହେ ସଚିବ—ସୁତା ସବୁ ବଡ଼ ଦଇବ ।
କାହା ମନେ ଥିଲା ଅଗାଧ ସମୁଦ୍ର ଚଳୁ ଭିତରେ ସମ୍ପାଇବ । ୭ ।
ସେ ପୁଣି ବୋଇଲା ସେ କଥା ସେ ରୂପେ ଏ କଥା କୁଜ୍ଝଟି ପ୍ଲବନ ।
ପବନକୁ ପାଶ ପାତି ବସିଥିଲେ ସେ କାହିଁ ହୋଇବ ବନ୍ଧନ ।
ଶୁଣି ଏ କହେ । ଉଷା—ଅନିରୁଦ୍ଧ କେମନ୍ତ ।
ସେ ବୋଲେ ସତ ଯଦୁପୁରେ ସେ ଥିଲା ଜାଣିଲି ଏ କାହୁଁ ସମ୍ଭୂତ । ୮ ।

---

୬– ଶିବ ମନ୍ଦିରରେ ମହାଦେବଙ୍କର ତାଣ୍ଡବନୃତ୍ୟ [ ପୁଂ ନୃତ୍ୟଂ ତାଣ୍ଡବଂ ପ୍ରାହୁ ସ୍ତ୍ରୀ ନୃତ୍ୟଂ ଲସ୍ୟ ମୁଚ୍ୟତେ ] ଚିତ୍ରରେ ବହୁ ଦେବତା ଦେଖଣାହାରୀ ପରି ଚିତ୍ର ହୋଇଥାନ୍ତି । ମଦନର ଦେହ ବା ଚିତ୍ର ନଥିଲେ ମଧ୍ୟ ସେ ସବୁଠାରୁ ସୁନ୍ଦର ବୋଲି ପ୍ରବାଦ । ଧାତ୍ରୀ ପୁତ୍ରୀ ହେମମଞ୍ଜରୀ ମନ୍ତ୍ରୀ ସୁତା କାମକଳାକୁ କହିଲା । [ ୩ୟ ଛାନ୍ଦ ୧୯।୨୦ ଶ ପଦ ଟୀକା ଦେଖ ]

୭– ହେ ଚିକୁର ଶୋଭି ! (ଯାହାର ବାଳ ସୁନ୍ଦର) [କାମକଳାକୁ ଏ ସମ୍ବୋଧନ ]– ବଡ଼ ପ୍ରାନ୍ତରରେ ଖରଦିନ ଦିପହରେ ବହୁ ଦୂରରେ ପାଣି ନଥାଇ ମଧ୍ୟ ସମୁଦ୍ରପରି ଦିଶେ । ମୃଗମାନେ ଦୂରରୁ ତାକୁ ଦେଖି ସେଥିରୁ ପାଣି ପିଇବେ ବୋଲି ଦଉଡ଼ି ଦଉଡ଼ି ନିରଶ ହୁଅନ୍ତି । ସେହି ପାଣିପରି ଦେଖାଯାଉଥିବା ଦୃଶ୍ୟକୁ ମୃଗତୃଷ୍ଣା କୁହାଯାଏ । ସଚିବ ସୁତା ( ମନ୍ତ୍ରୀ ଝିଅ ) କହିଲା– ଅସମ୍ଭବ ଏ ସମାଚରେ ସତ ହୁଏ । କାହିଁକିନା ସମୁଦ୍ର ତ ପୁଣି ଚଳୁ ଭିତରେ ସମ୍ପାଇ ଥିଲା । [ ୮ମ ଛାନ୍ଦ ୭୧ ପଦ ଟୀକା ଦେଖ ]

୮– ସେ କଥା ସେ ରୂପେ ( ସେ କଥା ସେହି ପରି ବା ସତ୍ୟ ); ହେଲେହେଁ ଏ କଥା କୁଜ୍ଝଟି ପ୍ଲାବନ ( କୁହୁଡ଼ି ପହଗ ); ପାଶପାତି ବସିଥିଲେ– ଧରିବାକୁ ଜାଲ ବସାଇ ଥିଲେ; ଏ ( ମନ୍ତ୍ରୀଝିଅ ) କହିଲା । ବାଣାସୁର ଝିଅ ଉଷାକୁ କୃଷ୍ଣଙ୍କ ନାତି ବା ପ୍ରଦ୍ୟୁମ୍ନଙ୍କ ପୁଅ ଅନିରୁଦ୍ଧ ଅନ୍ତଃପୁରେ ପର୍ଶ ଘେନି ଯାଇଥିଲେ ବୋଲି ପୁରାଣରେ ଅଛି । ସେ ଯଦୁପୁରେ ଥିଲାବୋଲି- ସେ କଥାକୁ ସତ ଜାଣିଲି ( ମାନିଲି ) । ଏ କାହୁଁ ସମ୍ଭୂତ ( ସମ୍ଭବ ) ହେବ ।

ପରିମଳା ନାମେ ସଜନୀ ବୋଇଲା ହେମାକୁ ଅନାଇ ସହୀକି ।
ଆକ୍ଷି ଥାଉ ଦେଖି ନ ପାର ସଙ୍କେତ ଭେଳ ହୁଅ କାହିଁ ପାଇଁକି ?
ନୋହେ ସ୍ୱପନ । ସ୍ୱତ ଗ୍ରହିଁ କି ନା ବାଳାକୁ ।
କଉଁ ଦେବୀର ଏ ମାୟା ହେଲେ ହେବ ଲଭିଛି ବଲ୍ଲଭ ଲୀଳାକୁ । ୯ ।
ଗଣ୍ଡ ମଣ୍ଡଳ ପାଟଳ ଚୁମ୍ବିବାରେ ତାମ୍ବୁଳ ବୋଳ ତ ଲଗିଛି ।
ପାନ ବଶରେ ରଦବାସ ବିଶେଷ ଶୋଭ ଦନ୍ତକ୍ଷତେ ଭର୍ଗିଛି ।
ଚନ୍ଦ୍ର ଚନ୍ଦନ । ଠାବେ ଠାବେ ଅଙ୍ଗେ ଲଢ଼ିଛି ।
କାମ କାତରେ ଭିଡ଼ିଛି କରତରେ କଙ୍କଣ ପଦରେ ପଡ଼ିଛି । ୧୦ ।
ଛୁଇଁବା ବେଳକୁ ଶ୍ରୀଅଙ୍ଗ ହେମାର ଦେଇଥିବ ସିନା ଆଦରେ ।
ଯଉଁ ମୁଦ୍ରିକା ଅନାମିକା ମଣ୍ଡନ କେହି ଦେଖିଛ କି ଏ ପୁରେ ।
ଯହୁଁ ଦେଖାଇ । ଏ ରୂପେ ସଙ୍କେତ ନିକର ।
ଏ କାଳେ ଜଣେ ଗ୍ରହିଁ ବୋଲେ ବାଡ଼କୁ ସେ ପଗ ଏ ଚିତ୍ର ସୁନ୍ଦର । ୧୧ ।
ଉପମା ସୃଷ୍ଟି ପୁଷ୍ଟି କରି ବିମ୍ବୋଷ୍ଠୀ ଦୁର୍ଲ୍ଲଭ ବଲ୍ଲଭ ରୂପକୁ ।
ଦେଖି ଭଜିଲେ ପରମେଷ୍ଠୀ ଗୋଟିଏ କଲା କୋଟିଏ କନ୍ଦର୍ପକୁ ।
ସର୍ବ ସଜନୀ । ଅନିମିଷ ହୋଇ ରହିଲେ ।
ନୋହିଲେ କାହିଁକି ଜଗତ ମୋହିନୀ ମନକୁ ମୋହିଲା କହିଲେ । ୧୨ ।

---

୯-୧୦— ବଲ୍ଲଭ ଲୀଳା ( ସ୍ୱାମୀର ଆଲିଙ୍ଗନାଦି ) ପାଇବାର ସଙ୍କେତ ( ଚିହ୍ନ ) ସବୁ ଦେଖାଇ ପରିମଳା କହୁଛି;— ଚୁମ୍ବିବାରେ ଗାଲ ପାଟଳ (ଲାଲ) ହୋଇଛି; ତାମ୍ବୁଳ ବୋଳ ( ପାନପିକ ) ବି ଲଗିଛି; ଦନ୍ତ କ୍ଷତେ [ ସ୍ୱାମୀର ଚୁମ୍ବନ ହେତୁରୁ ] ପାନ ବଶରେ (ପାନ କରିବା ଯୋଗୁଁ ହୋଇଥିବା) ରଦବାସ (ଦନ୍ତାଚ୍ଛାଦନ ବା ଓଠ) ର ବିଶେଷ ଶୋଭ ଭର୍ଗିଛି । ଚନ୍ଦ୍ର ( କର୍ପୂର) ଏଠି ସେଠି ଲଗିଛି । କାମ କାତରେ ( କାମ ହେତୁ କାତରତାରେ ) ହାତରୁ କଙ୍କଣ ( ଅନ୍ତବର୍ଣ୍ଣ ) ଖସି ପାଦରେ ପଡ଼ିଛି ।

୧୧— ମୁଦ୍ରିକା— ମୁଦି; ଅନାମିକା— କାଣି ଆଙ୍ଗୁଠି ଓ ମଝି ଆଙ୍ଗୁଠି ମଧ୍ୟରେ ଥିବା ଆଙ୍ଗୁଠିକୁ ଅନାମିକା କହନ୍ତି; ଏତିକି ବେଳେ ଜଣେ କାନ୍ଥରେ ଦେବୀ କରିଥିବା ଚିତ୍ରକୁ ଦେଖାଇ ଦେଲା ।

୧୨—ଉପମା ସୃଷ୍ଟିକି-ଜଗତର ଉପମା ମାନଙ୍କୁ; ପୁଷ୍ଟିକରି—ବେଶି ସୁନ୍ଦର କରି; ବିମ୍ବୋଷ୍ଠୀର ( ଲବଣ୍ୟବତୀର ) ଦୁର୍ଲ୍ଲଭ ( ସହଜରେ ଯାହା ମିଳେ ନାହିଁ ) ବଲ୍ଲଭ

ପ୍ରବୋଧ କଲେ ଏ ବିଧିରେ ସଧୀରେ ବୁଦ୍ଧିରେ ଦେଖାଇ ପ୍ରମାଣ ।
ପୁରୁଷ ପଦେ ଏହାକୁ ଞିରୀ ପଦେ ତୋତେ ଧାତା କଲା ନିର୍ମାଣ ।
ଆଉ ଆନରେ । ସଙ୍ଗତି କାହୁଁ ଭିଆଇବ ।
ତୁଳାପାତ୍ରେ ଊଣା ଅଧିକ ପଦାର୍ଥ ପଡ଼ିଲେ କି ସମ ହୋଇବ ୧ ୧୩ ।

ଏତେ କହି ଦେଲେ ନୀତିକି ବଢାଇ ଶେ ଦିନୁ ବହିଲା ଖିନ୍ନକୁ ୨ ।
ସପନ ସଙ୍ଗ ପ୍ରସଙ୍ଗ ଚିନ୍ତି ଚିତ୍ର ଚାହିଁ ହରୁଥାଏ ଦିନକୁ ।
ନିଦ୍ରା ହେବାକୁ । ଶରଧା ହୋଏ ଏହା ଭାବି ।
ପୁଣ୍ଣ ସେ ପୁରୁଷ ପାଶକୁ ଅଇଲେ ଅଞ୍ଚଳେ ଅଞ୍ଚଳ ବାନ୍ଧିବି । ୧୪ ।

ବିରହ ଅଧିକ ଧିକ କଲା ବେଶ ହାର ଭାର ଧରା ଶୟନ ।
ସଂହନନେ ଘର କଲା ସ୍ମର ଜ୍ୱର ନୀର ପୂର ହେଲା ନୟନ ।
ମହା ବ୍ୟାକୁଳ । ଜନିତ ହୋଇଲା ନିରତ ।
ସ୍ତୋକ ସ୍ତୋକ କରି ତନୁକୁ କାଟିଲା ମଦନ ବସାଇ କରତ । ୧୫ ।

ବୋଲଇ ସଖିରେ ବିଚିତ୍ର ନାଗର ସ୍ନେହ ସାଗରରେ ମଜ୍ଜିଲି ।
ଅବଶ୍ୟ ଲଭିବି ଭାବ ରତନକୁ ଏକାନ୍ତ ଚିତ୍ତରେ ହେଜିଲି ।
ଏବେ ୩ ବେଳକୁ । ଜୀବନ ଆଶାକୁ ତେଜିଲି ।
କାମ ଭ୍ରମେ ପଡ଼ି ଜରମ ବଶରେ ଥଳ ନ ପାଇ ମୁଁ ବୁଡ଼ିଲି । ୧୬ ।

---

ପାଠାନ୍ତର—୧, ରଚ୍ଛିବ । ୨, ଖିଣ୍ଣେକୁ । ୩, ଏତେ ।

---

(ପ୍ରିୟ) ରୂପକୁ (କାନ୍ତଚିତ୍ରକୁ) ଦେଖି ସଜନୀଏ ଗଳିଲେ କି ପରମେଷ୍ଠୀ (ବ୍ରହ୍ମା) କୋଟିଏ କନ୍ଦର୍ପକୁ ଗୋଟିଏ କରି ତିଆର କଲା । ଅନିମେଷ ହୋଇ—ଆଖି ନ ପିଛାଡ଼ି (ଆଶ୍ଚର୍ଯ୍ୟ ହୋଇ) ଚାହିଁ ରହିଲେ ।

୧୩—ସଧୀରେ—କ୍ରମେ; ପୁରୁଷ ପଦେ ସ୍ତ୍ରୀପଦେ ଶ୍ରେଷ୍ଠ; ତୁଳାପାତ୍ରେ—ତକଡ଼ି ବା ତରାଜୁରେ ।

୧୪—ନୀତିକି— ସକାଳର ଗାଧୁଆ, ଖାଇବା ପ୍ରଭୃତି ନିତ୍ୟ କ୍ରିୟାକୁ; ଖିନ୍ନକୁ—ଖେଦକୁ, ଦୁଃଖକୁ; ଶରଧା ହୁଏ—ସୁଖ ଲାଗେ, ମମତା ହୁଏ; ଅଞ୍ଚଳ—କାନି ।

୧୫—ବିରହ ଅଧିକ ହେବାରୁ ସେ ବେଶ ଧିକ କଲା, ତାର ହାର ଭାର (ବୋଝ) ହେଲା । ଧରା (ମାଟି) ଶୟନ (ଶେଯ) ହେଲା । ସଂହନନେ (ଦେହରେ) ସ୍ମରଜ୍ୱର (କାମପିଡ଼ା) ଘର କଲା (ବରାବର ରହିଲା) । ନୟନ ନୀର ପୂର (ଲୋତକ ପ୍ରବାହ) ଯୁକ୍ତ ହେଲା । ବ୍ୟାକୁଳ—ବ୍ୟାକୁଳତା; ଜନିତ—ଜାତ; ସ୍ତୋକ ସ୍ତୋକ କରି—ଟିକିଟିକି କରି ।

୧୬—ସ୍ନେହ ରୂପ ସାଗରରୁ ଭାବରୂପ ରତ୍ନ ପାଇବି ବୋଲି ବୁଡ଼ିଥିଲି । ଏବେ ବେଳକୁ (ଭାବ ମିଳିଲା ବେଳକୁ) କାମ ରୂପ ଜଳ ଭଉଁରୀରେ ପଡ଼ି ଥଳ ପାଉନାହିଁ ।

ଯିବାକୁ ଜୀବ ଶୋଚନା ହେଉ ନାହିଁ ଏହି କଥାକୁ ମନେ ଭାବି ।
ସାଗରେ ଝାସିବା ଫଳ ନି କି ବ୍ୟର୍ଥ ହେବ ମନାସିବା ପାଇବି ।
କୃପା କରିକି । ଆଉ କର୍ଣ୍ଣଧ.ର ହୋଇବ ।
କଲ କଥା ଯେହୁ ଅନ୍ୟଥା କରିଛି ଏମନ୍ତ ଦାରୁଣ ଦଇବ । ୧୭ ।

ସଖି କହିଲେ ଦୁଃଖ ସହି ଧଇର୍ଯ୍ୟ ହେଲେ କାର୍ଯ୍ୟ ଲଭି ଅବଶ୍ୟ ।
ହରି ଅରି ଘାତ ସହି ରହିଲକୁ ରାହୁ ପିଇଲକି ପୀୟୁଷ ।
ତୁ ଯେ ତୃଷାର୍ତ୍ତୀ– ଚାତକୀ ତୋ ତୃଷା ହରିବ
ମଙ୍ଗଳ ଚଳନେ ଉଇଁଲ ଘନ କି ଜଳ ବରଷା ନ କରିବ । ୧୮ ।

ଏକାଳେ ବଳୟ ଶୋଭୀ କୁବଳୟ ନୟନୀ ମଳୟ ସମୀରେ ।
ଛଳେ ଭୋଗୀ ପ୍ରିୟ ତୁମ୍ଭକୁ ବୋଲନ୍ତି ସେହି ଗୁଣ ବହ ମୋ ଠାରେ ।
ଆହେ ପବନ । ବୋଲଅ ଜଗତ ଜୀବନ ।
ଏବେ ମୋ ଜୀବନ ନେବାକୁ ହୋଉଛ ଯଥା ସନ୍ନିପାତେ ଜୀବନ । ୧୯ ।

---

୧୭– ସାଗରେ ଝାସିବା ଭଳି ତପସ୍ୟାର ଫଳ ତ ବ୍ୟର୍ଥ ହେବ ନାହିଁ ? ମନାସିବା ପଦାର୍ଥ ନିଶ୍ଚେ ପାଇବି, ତେବେ ଯେଉଁ ଦାରୁଣ ( ନିଷ୍ଠୁର) ଦଇବ କଲ କଥା ଅନ୍ୟଥା କରିଛି ( ଭେଟାଇ ଦେଇ ଅଲଗା କରିଛି ) ସେ କଣ ଆଉ ଏ ସମୁଦ୍ରରେ କର୍ଣ୍ଣଧାର ( ନାଉରୀଆ ) ହେବ ? ଏହାହିଁ କେବଳ ସନ୍ଦେହ ।

୧୮– ଧଇର୍ଯ୍ୟ ହେଲେ – ଧର୍ଯ୍ୟ ଧଇଲେ; ହରି ଅରିଘାତ–ବିଷ୍ଣୁଙ୍କ ଚକ୍ରଘାତ ( ଏ ଉପମାର ଅର୍ଥରେ ଟିକିଏ ଅସଙ୍ଗତି ଅଛି । କାରଣ ବିଷ୍ଣୁ ଚକ୍ରରେ ହାଣିଲ ବେଳକୁ ରାହୁ ଅମୃତ ପାଟିରେ ଭର୍ତ୍ତି କରି ଅମର ହୋଇ ସାରିଥିଲ ), ତେଣୁ ଅରି ଘାତରେ ଶଙ୍କା ଥିଲେ ମଧ୍ୟ ତାକୁ ଖାତିରି ନକରି, ଏହିପରି ଅର୍ଥ କରିବାକୁ ହେବ । ତୃଷା ହରିବ–ତୃପ୍ତ ହେବ; ମଙ୍ଗଳ ଏକ ରାଶିରୁ ଅପର ରାଶିକୁ ଚଳିଲ ଦିନ ବର୍ଷା ହୁଏ ବୋଲି ଫଳିତ ଜ୍ୟୋତିଷର ବିଶ୍ୱାସ ।

୧୯– ବଳୟ– କଙ୍କଣ; କୁବଳୟ – ପଦ୍ମ; ମଳୟ ସମୀର – ଦକ୍ଷିଣା ବସନ୍ତ ପବନ; ଭୋଗୀପ୍ରିୟ–ସାପର ପ୍ରିୟ– ମଳୟ ପର୍ବତର ଚନ୍ଦନ ଗଛରେ ସାପ ଜଗିଥାନ୍ତି ବୋଲି ପ୍ରବାଦ । ମୋ ଠାରେ ଭୋଗୀ ପ୍ରିୟ ( ସୁଖ ଭୋଗବନ୍ତ ଲୋକଙ୍କ ) ପ୍ରିୟ ହେବା ଗୁଣକୁ ବହ ( ଧର ); ମୋ ଜୀବନ ( ପ୍ରାଣ ) ସନ୍ନିପାତେ ( ସନ୍ନିପାତ କାଳେ ) ଜୀବନ ( ଜଳ ); ଦେହର ବାତ, ପୀତ, କଫ ତିନି ଧାତୁ ସମାନ ଉଗ୍ର ହେଲେ ତ୍ରିଦୋଷ ବା ସନ୍ନିପାତ ହୁଏ । ଯେତେବେଳେ ପ୍ରଚଣ୍ଡ ତୃଷା ହୁଏ । କିନ୍ତୁ ସେ ତୃଷା ମରଣର ପୂର୍ବ ଲକ୍ଷଣ ମାତ୍ର । ବେଶୀ ପାଣି ପିଇଲେ ସନ୍ନିପାତରେ ଶୀଘ୍ର ମରଣ ହେବା ବିଶ୍ୱାସକୁ ଲକ୍ଷ୍ୟ କରଯାଇଛି ।

ଯହିଁ ତହିଁ ତୋତେ ମଧୁକାଳ ହେଲେ ଦକ୍ଷିଣ ଶବଦ ପ୍ରକଟ ।
ସେତୁ ହେତୁରେ ଯଉଁମାନେ ରଖିଲେ କି ନିନ୍ଦିବା ସେତ ମର୍କଟ ।
ମନ୍ଦ ମରୁତ । ବୋଲୁଛି ଯେଣୁ ତନୁ ପୋଡୁ ।
ଦେବତା ହୋଇଲେ ପୁଣ ମାତା ଗୁଣ ରବଣ ପରଯ ନ ଛାଡୁ । ୨୦ ।
ଲଗିଲେ କିପାଁ ବ୍ୟଥିତ ନ କରିବୁ କାଳେ ବୋଲଉ ଖଣ୍ଡଭୂତ ।
ଏତେକ ବିବେକ ଇନ୍ଦ୍ରର ନୋହିଲା ଦେହିଲୁ ହେବ ବଳବନ୍ତ ।
ଜଳ ପବନ । ଏକା ସିନା ସ୍ତୁତି ନ ଘେନ ।
ରାମ ଠାରୁ ଜଣା ଯାଉଛି ନିସତ ହେବ ଗଲାବେଳେ ଜୀବନ । ୨୧ ।
ପୁଣି ଶୁଣି ପିକ ବାଣୀ ଗୁଣି ଜଇମିନିକି ମଣି ବଜ୍ର ଘାତ ।
ଚେତନା ବଶେ ଅବଶେ ବସେ ରଖେ ମୋ ହତରୁ କଉଁ ମହତ୍ୱ ।

---

୨୦— ଦକ୍ଷିଣ—ପ୍ରସନ୍ନ; କିମ୍ବା ଅଳଙ୍କାର ଶାସ୍ତ୍ରର ଦକ୍ଷିଣ ନାୟକ, ଯାହାର ବହୁତ ସ୍ତ୍ରୀ ଥିଲେ ମଧ୍ୟ ସମସ୍ତଙ୍କୁ ସମାନ ଦେଖେ; ଦକ୍ଷିଣ ଶବଦ ପ୍ରକଟ—ତୋର ଦକ୍ଷିଣ୍ ଏହି ନାମ ପ୍ରସିଦ୍ଧ—ଦକ୍ଷିଣା ପବନ ବୋଲି ଲୋକେ କହନ୍ତି । ଭବ କାହିଁକି ମୋ ଠାରେ ନାହି ଏହାହିଁ ଆଶୟ । ସେତୁବନ୍ଧ କଲାବେଳେ ମଳୟ ପର୍ବତକୁ ଭାଙ୍ଗି ସେଥିରେ ପୋତି ପକାଇ ଥିଲେ ଯାଇଥାନ୍ତା । କିନ୍ତୁ ତାହା ଯେ କରି ନାହାନ୍ତି ସେତ ମାଙ୍କଡ଼ ତାଙ୍କର ବୁଦ୍ଧି କାହୁଁ ଆସନ୍ତା ? ମନ୍ଦ ମରୁତ ବୋଲି ତୋତେ ବୋଲୁଛି । ମନ୍ଦ (ଖଳ) ମରୁ ( ମରୁଭୂମି ବା ଯହିଁରେ ସବୁ ପୋଡ଼ି ମରିଯାଏ ) ତ ( ବାକ୍ୟାଳଙ୍କାର ଅବ୍ୟୟ ) ମନ୍ଦ ମରୁ ବୋଲି ତ ତୋତେ ବୋଲୁଛି ଏହିପରି ଅର୍ଥ ଶ୍ଳେଷ । କାହିଁକିନା ତୁ ତନୁ ( ଶରୀର )କୁ ପୋଡୁଛୁ । ରବଣ ବିଶ୍ରବା ଋଷିଙ୍କ ପୁଅ ହେଲେ ମଧ୍ୟ ତାହାର ମା ନିକଷା ରାକ୍ଷସୀ । ତୋର ମା ଦିତି; ତାର ପୁଅ ତୁ ଦୈତ୍ୟ ।

୨୧— ଖଣ୍ଡଭୂତ— ଘୂର୍ଣ୍ଣିବାୟୁ, ଖଣ୍ଡ ଆଭୂତ; ଇନ୍ଦ୍ର ଦିତିଙ୍କ ଗର୍ଭରେ ପଶି ପବନକୁ ଅଣଚାଶ ଖଣ୍ଡ କରି କାଟିବାରୁ ଦିତି ଇନ୍ଦ୍ରଙ୍କୁ କ୍ରୋଧରେ ଶାପ ଦେଲାବେଳେ ଇନ୍ଦ୍ର ଦିତିଙ୍କୁ ସନ୍ତୋଷ କରିବା ପାଇଁ ପବନକୁ ଅମୃତ ଦେଇ ଚିରଜୀବୀ ଓ ବଳବାନ କଲେ; ରାମ ସମୁଦ୍ରକୁ ବାଟ ଦେଖାଇବା ପାଇଁ ସ୍ତୁତି କଲେ । ସମୁଦ୍ର ଦେଖା ନ ଦେବାରୁ କ୍ରୋଧରେ ଧନୁଶର ଯୋଖନ୍ତେ ସମୁଦ୍ର ଭୟ କରି ଆସି ବାଟ ଦେଖାଇ ଦେଲେ ।

୨୨— ବିରହରେ କୋକିଳ ସ୍ୱର ବଜ୍ରପାତ ପରି ଲଗିବାର ମଧ୍ୟ ବର୍ଣ୍ଣନା କରାହୁଏ । ବଜ୍ର ଧ୍ୱନି ଶୁଣିଲା ବେଳେ ଜୈମିନିଙ୍କ ନାମ ସ୍ମରଣ କରିବାର ରୀତି ଅଛି । ମୋ ହତରୁ

ମୁଁ ଯେ ଅବଳା । ମୋ ବଧ ଜଗତେ କଳୁଷ ।
ବକୁଳ ଆସବାଶନୁ ଦ୍ୱିଜ ହେଲେ ହୋଇଲୁ କି ଜ୍ଞାନ-ବିନାଶ । ୨୨ ।

ପଞ୍ଚମସ୍ୱରେ ତୋ ପଞ୍ଚଶର ଥିଲା ପଞ୍ଚତ୍ୱ ଇଚ୍ଛା କରି ମୋର ।
କଳକଣ୍ଠ ନାମ ଆଦ୍ୟ ବର୍ଣ୍ଣ ଏବେ ଆଶ୍ଳେଷ କଲାକି ଆକାର ।
ଆଗୁଁ ଜାଣି ମୁଁ । ନଥିଲି ଏମନ୍ତ ବୋଲିଣ ।
ବ୍ୟାଧ ପୋଷି ବଧ ବିସ୍ମରି ଥିଲେ ତୁ କିପାଁ ଦେଖାଉ ବଡ଼ ପଣ । ୨୩ ।

କୁସୁମ ଶରକୁ ପୁଣ ବୋଲୁଅଛି ହତ୍ୟା ଘେନିମୁ କି ମୋହର ।
ଏ କଥିଁ ବଡ଼ାଇ ମନୁଜାତ ହୋଇ ମନ୍ମଥ ପଦ ପୁରସ୍କାର ।
ତୁ କି କସ୍ତୁରୀ । ଠାରୁ ଏ ଦୀକ୍ଷାକୁ ପାଇଲୁ ।
ପଶୁ ସମ୍ଭବ ଅଚେତ ଦ୍ରବ୍ୟ ସଙ୍ଗେ ବିଶ୍ୱରେ ତୁଳନା ହୋଇଲୁ । ୨୪ ।

---

( ହତ୍ୟାରୁ ) କଳୁଷ ( ହୀନ କାର୍ଯ୍ୟ, ପାପ ); କୋକିଳ ଦ୍ୱିଜ ( ଅଣ୍ଡଜ ); ବ୍ରାହ୍ମଣ ମଧ୍ୟ ଦ୍ୱିଜ; ବକୁଳ ଆସବ ( ବଉଳର ଫୁଲର ମଧୁ ବା ବଉଳରୁ ବାହାରିବା ମଦ) ଏହି ଦୁଇ ଅର୍ଥ ଶ୍ଳେଷ । ମଦୁଆର ଜ୍ଞାନ ବିନାଶ ହୁଏ । ଦ୍ୱିଜହେଲେ କଣ ହେବ ମଦ ଖାଇଛୁ । ତୋତେ କଣ କହିବା ଏହି ଅଭିପ୍ରାୟ ।

୨୩– ସା ରି ଗା ମା ପା ଧା ନି ସଙ୍ଗୀତରେ ଏହି ସପ୍ତସ୍ୱର ମଧ୍ୟରୁ 'ପା' ଦ୍ୱାରା ସୂଚିତ ପଞ୍ଚମ ନାମକ ସ୍ୱର କୋକିଳ ସ୍ୱରରୁ ଗୃହୀତ ବା କୋକିଳ ସ୍ୱର ସଙ୍ଗେ ସମାନ ବୋଲି ପ୍ରସିଦ୍ଧ-ନିଷାଦର୍ଷଭ ଗାନ୍ଧାର ଷଡ଼ଜ ଧୈବତ ମଧ୍ୟମାଃ ପଞ୍ଚମ ଶ୍ଚେତ୍ୟମୀ ସପ୍ତ ତନ୍ତ୍ରୀ କଣ୍ଠୋ ତଥିତା ସ୍ୱରଃ । ଇତ୍ୟମରଃ । ପଞ୍ଚଶର– କନ୍ଦର୍ପ ବା ତାହାର ପାଞ୍ଚଶର; ପଞ୍ଚତ୍ୱ– ମୃତ୍ୟୁ; କଳକଣ୍ଠ କୋକିଳର ନାମ; ଆକାର ଆଶ୍ଳେଷ ( ଆଲିଙ୍ଗନ ) କଲା ଅର୍ଥାତ୍ 'କଳ' 'କାଳ' ହେଲା । ବ୍ୟାଧ–ପକ୍ଷୀମରା ଶବର; ବଡ଼ପଣ– [ମୋତେ କଷ୍ଟ ଦେବା ରୂପ ] ବାହାଦୂରୀ । ଏମନ୍ତ ବୋଲିଣ– ଏହିଥି ପାଇଁ ( ଜାଣି ନଥିଲି ବୋଲି ନ ହେଲେ ବ୍ୟାଧପୋଷି...... )

୨୪– କୁସୁମ ଶର– କନ୍ଦର୍ପ; ଘେନିଲୁ– ମୁଣ୍ଡାଇଲୁ; ମୋ ଠାରୁ ଜାତ ହୋଇ ମୋତେ ମାଇଲୁ; ମନରୁ ଜାତ ହୋଇ ତୋର ନାମ ମନ୍ମଥ ( ମନ ମନ୍ଥନ କାରୀ–ମନର ଦୁଃଖ ଦାୟୀ ); କସ୍ତୁରୀ ଯେଉଁ ମୃଗ ନାଭିରେ ଜନ୍ମହୁଏ ସେହି ମୃଗର ମୃତ୍ୟୁର କାରଣ ହୁଏ । କସ୍ତୁରୀ ପାଇଁ ଲୋକେ ମୃଗକୁ ମାରନ୍ତି । ମାତ୍ର କସ୍ତୁରୀ ପଶୁ ସମ୍ଭବ ( ପଶୁରୁ ଜାତ ) ଅଚେତ ଦ୍ରବ୍ୟ ( ଜଡ଼ ପଦାର୍ଥ ) ତୁ ଦେବତା ।

ଯେ ବୋଲେ ମାର ତାହାକୁ ତୁଇ ମାର ନମାର ବୋଲେ ମୁଁ ନିରନ୍ତେ ।
ମୋ ତନୁ ନାଶ କରି ବାସ କରିବୁ କାହିଁ ବିଚାର କର ଏତେ ।
ଦେଖ ଅନଙ୍ଗ । କାଷ୍ଠକୁ ନଷ୍ଟ କରି ଲିବେ ।
ପ୍ରେତ ହେବାରୁ ପ୍ରେତପତି ସମୀପେ ନେବା କାମନା ତୋର ଏବେ । ୨୫ ।
ଯାହା କୁମାର ତେଡ଼େ ସିଦ୍ଧି କି କରି ଛାଡ଼ିବୁ ନୋହେ ଏ ବେଭାର ।
ଯାହାକୁ ମାର ତହିଁରୁ କେତେ ଭୂତି ପ୍ରାପତ ହେଲାନି ତୋହର ।
ମୁଁ ଯେ ହେଜୁଛି । ଏହି ସୁକୃତରୁ ନିଶ୍ଚୟ ।
ପୂର୍ବରେ ଭୂତ ସ୍ୱରୂପ ହୋଇଥିଲୁ ଅନୁଚିତ ଚିତ୍ତ-ଉଦୟ । ୨୬ ।
ରୋଗ ଋଣ ଶତ୍ରୁ ଶେଷକୁ ରଖିଲେ ଆପଣାର ବାଧା ସେ କଥା ।
ଶର୍ବ ସର୍ବ ଜ୍ଞାତା କଲକୁଥା ପୁଣି କାହିଁକି କଲେ ସେ ଅନ୍ୟଥା ।

---

୨୫— ଯେ ତୋତେ ମାର ବୋଲି କହେ ତାକୁ ତୁ ମାର । ମୋତେ ନ ମାର । କାହିଁକିନା ମୁଁ ତତେ ନମାର ( ମା ନଥିବାର— ମାତୃହୀନ ) ( କନ୍ଦର୍ପ ମନରୁ ଜାତ ହୁଏ ତାର ମା ନାହିଁ ) ବୋଲି କହୁଛି । କାଠକୁ ଯେପରି ପୋଡ଼ି ଦେଲେ ନିଆଁ ଲିଭିଯାଏ, ସେହିପରି ମତେ ମାରି ଦେଲେ ତୋର ଆଉ ସ୍ଥାନ ନାହିଁ । ଶିବ ତୋତେ ପୋଡ଼ି ଦେବାରୁ ତୁ ପ୍ରେତ । ତେଣୁ ପ୍ରେତପତି ( ଯମ )—ତୋ ପରି ପ୍ରେତର ରାଜା ଏହି ଦୁଇ ଅର୍ଥ ଶ୍ଳେଷ ।

୨୬— ତୁ କୃଷ୍ଣଙ୍କ ପୁଅ । ତୋ ବାପ ପୂତନାକୁ ମାରି ସ୍ତ୍ରୀ ହତ୍ୟା କରିଥିଲେ । ତୁ ମୋତେ ମାରି ସେହି ବାପ ସିଦ୍ଧି ରଖୁଛୁ । ଯାହାକୁ ( ମୋତେ ) ମାର ( ମାରୁଛୁ ) ତହିଁରୁ କେତେ ଭୂତି ( ଭାଗ୍ୟ ) ଅର୍ଜିଲୁଣି; ଅର୍ଥାତ୍ ମହାଦେବଙ୍କୁ ମାରି ତତେ ଯେଉଁ ଭୂତି ବା ଭସ୍ମ ମିଳିଥିଲା ( ତୁ ପୋଡ଼ି ଭସ୍ମ ହୋଇଥିଲୁ—ଏହି ଶ୍ଳେଷାର୍ଥ ) ( ମୋତେ ମାରି କାହିଁକି ଭସ୍ମ ହେଉନାହୁଁ ଏହି ଦୁଇ ଅର୍ଥ ଭୂତି ଶବ୍ଦରେ ଅଛି । ) ମୁଁ ମନେ କରୁଛି, ତୁ ମହାଦେବଙ୍କୁ ମାରିବା ସୁକୃତରୁ ( ଭଲ କାମଟାଏ କରି ) ଭୂତ ସ୍ୱରୂପ ( ଭସ୍ମ ବା ଭୂତ ପରି ) ହୋଇଥିଲୁ । ଏବେ ଚିତ୍ତରୁ ଉଦୟ ହେବା ( ମନରୁ ଜନ୍ମ ହେବା ) ତୋର ପୁଣି ଉଚିତ ନୁହେଁ । କାରଣ ତୋ ଯୋଗେ ପୁଣି ସମସ୍ତଙ୍କ ମନ ମଧ୍ୟ ପୋଡ଼ି ଭସ୍ମ ହୋଇପାରେ ।

ମହାଦେବଙ୍କୁ ମାରିବା ରୂପ ଗୋଟେ ଭଲ କାମ କରି ଥରେତ ଭାଗ୍ୟ ଅର୍ଜିଥିଲୁ ଅର୍ଥାତ୍ ପୋଡ଼ି ପାଉଁଶ ହୋଇଥିଲୁ । ଆଉ କିଆଁ ପୁଣି ସ୍ତ୍ରୀ ହତ୍ୟା କରିବା ପାଇଁ ମନରୁ ବାହାରୁଛୁ—ଏହି ଆଶୟ ।

୨୭—ରୋଗ ଶେଷ, ଋଣ ଶେଷ, ଓ ଶତ୍ରୁ ଶେଷ ରଖିଲେ ସେଗୁଡ଼ିକ ବଢ଼ିପରେ ଅନିଷ୍ଟ କରେ । [ ପ୍ରବାଦରେ ଅଛି ରୋଗ, ଋଣ, ଗୃହ ଶେଷ ]; ସର୍ବଜ୍ଞାତା—ସର୍ବଜ୍ଞ; ଶର୍ବ

ନାହିଁ ଶୋଚନା । ହେଲେ ହେଲି ମୁଁ ହୀନମାନ
ପୁଣି ଜାଣିମା ବିଷ ବୃକ୍ଷ ସ୍ଥାପିବା ଉମା କରିବା ଦିନମାନ । ୨୭ ।
କାମର କଉଁ ଦେବତାରେ ବିଶ୍ୱାସ ନିଶ୍ୱାସ ଦୁଇ କଥା ନାହିଁ ।
ସିନ୍ଧୁ ଶମ୍ବରେ ଶମ୍ବର ବୁଡାଇଲା ତେବେ ରହିଲୁ ଜୀବେ ତୁହି ।
ଏତେ କହି ସେ । ଖରଶ୍ୱାସ ଚେଜି ମଉନ ।
ଆଳୀ ଅଙ୍କେ ଢଳି ପଡ଼ିଲା ବେଳକୁ କର୍ଣ୍ଣ ଫୁଙ୍କିଲେ ଚେତନ । ୨୮ ।
ସଲିଳ ସିଞ୍ଚିଲେ ସଧୀରେ ବିଞ୍ଚିଲେ ପଲ୍ଲବ ଶଯ୍ୟାରେ ଶୁଆଇ ।
ଦେଲେ ମୃଣାଳ ବ୍ୟାଳ ମଣି ରମଣୀ ଚମକି ସୁପର୍ଣ୍ଣ ବୋଲଇ ।
କରେ ଭଜନ । ଶିବ ଶିବ ବୋଲି ବନିତା
ଗଳାର ହାର କଢ଼ୁ କଢ଼ୁ ବାହାର ଫୁଟି ଫାଟିଗଲେ ମୁକୁତା । ୨୯ ।
ସହଚରୀଏ ତା ଚରିତ ଅନାଇଁ ତୁରିତେ ଏମନ୍ତ ଆଚରି ।
ଦୂର କରିଣ ଶୁକ ସାରୀ ପଞ୍ଜରୀ ଉପାଡ଼ିଲେ ପୁଷ୍ପ ମଞ୍ଜରୀ ।

---

( ମହାଦେବ ) ତୋତେ ଭସ୍ମ କରିଥିଲେ ପୁଣି ତୋତେ ରଖିଦେଲେ କିଆଁ ? ହଉ, ମୁଁ ତ ଯାହା ହୀନମାନ ହେବାର ହେଲି । ଉମା ( ଶିବପନ୍ନୀ ) ମାନ କରି ବସିବା ଦିନ ଶିବ ତୋ ପରି ବିଷବୃକ୍ଷକୁ ସ୍ଥାପିବା (ରେଖିବା)—ବଞ୍ଚାଇ ରଖିବାର ଫଳାଫଳ ଜାଣିବେ ଯେ ।

୨୮—କାମର କୌଣସି ଦେବତାଠାରେ ବିଶ୍ୱାସ ନାହିଁ କି ନିଶ୍ୱାସ ( ଅଭିଶାପ ) ନାହିଁ । ( ଏତେ ଦେବତାଙ୍କୁ ଡ଼ାକୁଛି ତୋତେ କେହି ନାଶ କରୁ ନାହାନ୍ତି କି ମୋ ନିଶ୍ୱାସ ତୋ ଉପରେ ପଡୁନାହିଁ । ) ପୁରାଣରେ ଅଛି, କନ୍ଦର୍ପ ଜନ୍ମ ହେଲାବେଳେ ଶମ୍ବର ଅସୁର ତାକୁ ଅନ୍ତଡ଼ିଶାଳରୁ ନେଇ ସିନ୍ଧୁ ଶମ୍ବରେ (ସମୁଦ୍ର ପାଣିରେ) ପକାଇ ଦେଇଥିଲା । ପରେ ସେ କନ୍ଦର୍ପ ମାଛ ପେଟରୁ ବାହାରି ଶମ୍ବରକୁ ମାରି ନିଜ ପନ୍ନୀ ରତିକୁ ବିଭା ହୋଇଥିଲା—ଆଳୀ ଅଙ୍କେ (ସଖୀକୋଳରେ ) ହତଜ୍ଞାନ ହୋଇ ଢଳି ପଡ଼ିଲା ବେଳକୁ ।

୨୯—ମୃଣାଳ—କଇଁ ନାଡ଼, ବ୍ୟାଳ—ସାପ, ସୁପର୍ଣ୍ଣ—ଗରୁଡ଼; ସାପ ଉପରେ ଗରୁଡ଼ ଭ୍ରମରେ; ହାର କାଢ଼ୁ କାଢ଼ୁ ଦେହ ତାତିରେ ହାରର ମୁକୁତା ସବୁ ଫୁଟି ଫାଟିଗଲା । ବିରହରେ ଶରୀରର ଭୟଙ୍କର ତାପ ମୃଣାଳରେ ସର୍ପଜ୍ଞାନ ପ୍ରଭୃତି ବର୍ଣ୍ଣନା କରିବାର ରୀତି ଥିଲା । ତାତିରେ ମୁକ୍ତା ଫାଟିଯାଏ ବୋଲି ପ୍ରବାଦ ।

୩୦—ଶୁଆ ସାରୀର ପଞ୍ଜରୀ ଦୂରକୁ ନେଲେ; ପୁଷ୍ପ ମଞ୍ଜରୀ (ଫୁଲଗଛ ) ମାନ ଉପାଡ଼ିଲେ; ଉଶୀର ( ବାସନା ବେଣାଚେର ) ବାଟି ଢଳାକବାଟିକି ହଡ ( ବନ୍ଦ ) କଲେ । ନବବଧୂ ( ନୂତନ ବନିତା ବା ଯୁବତୀ )

ଚକ୍ରାକେବ୍ଲାଟି । ଉଶୀରବାଟି କଲ୍ଲେହତ
ବିସ୍ମରିଲେ ନବ ବଧୂ ବିଧୁ କେହି ନ ଦେଖିବ ଏହା ଭବତ । ୩୦ ।
ଜଣେ ବୋଇଲା ଅଛି ଯତ୍ନ କରିବା ଗୋପ୍ୟ ମନ୍ଦିରେ ରଖିଥିବା ।
କେଁ କହେ ଜନନୀ ହକର ସେ ଜାଙ୍କେ ହେଲେ କି ଉପାୟ କରିବା ।
କଉଁ ସ୍ୱଜନୀ । ବୋଇଲା ଏ ବିଗର ଭଲ
ଘାସ ଦିଆଇ ଶଶ କୃଶ ହରିବା ମାଡ଼ି ବସ୍ତୁ ଚନ୍ଦ୍ର ମଣ୍ଡଳ । ୩୧ ।
କେ କହେ ଏ କିଛି ନୋହେ ଗଗନକୁ କେ ପୁଣ କରିବ ଗମନ ।
ଗହୁ ଯୋଡ଼ି ହେବା ନିମିତ୍ତ କରିବା ଜଗ ଦେବୀ କି ସୁପ୍ରସନ୍ନ ।

---

କେହି (କିପରି) ବିଧୁ (ଚନ୍ଦ୍ରକୁ) ନ ଦେଖିବ ଏହା ଭବ ( ଏଥକୁ ଉପାୟକର) । ଶୁଆ ସାରୀଙ୍କ ଶବ୍ଦ ଶୁଣିବା, ଫୁଲ ଦେଖି ।, ମଳୟ ପବନ ଦେହରେ ବାଜିବା, ଚନ୍ଦ୍ର ଦେଖିବା; ଏସ୍ତୁ ମଧ୍ୟ ବିରହ ଯନ୍ତ୍ରଣା ବଢ଼ାଏ ବୋଲି କଥା ଅଛି ।

୩୧–ଚନ୍ଦ୍ର ନ ଦେଖିବାର ଉପାୟମାନ—

୧ । ନିର୍ଜନ ମନ୍ଦିରରେ ରଖିବା । କିନ୍ତୁ ଜନନୀହକର (ମାଆଙ୍କ ଡ଼ାକଗରେ) କି ଉପାୟ !

୨ । ଘାସ ଖୁଆଇ ଶଶାଙ୍କ ( ଚନ୍ଦ୍ର)ରେ ଥିବା ଶଶ (ଠେକୁଆ)ର କୃଶ (କ୍ଷୀଣତା) ହରିବା; ଅର୍ଥାତ ସେ ଠେକୁଆକୁ ମୋଟା କରିଦେବା ତାହାହେଲେ ସେ ଗୋଟାକ ଯାକ ଚନ୍ଦ୍ର ଆପଣ ଛାଇରେ ଘୋଡ଼ାଇ ପକାଇବ ।

୩୨–ଆକାଶକୁ ଯାଇ କିଏ ଚନ୍ଦ୍ର ଦେହ ଠେକୁଆକୁ ଘାସ ଖୁଆଇବ । ଗହୁ ଯେ ବିଷ୍ଣୁଙ୍କ ଚକ୍ରରେ ହଣାହୋଇ ଗହୁ କେତୁ ଏପରି ଦୁଇ ଭଗ ହେ ଇ ଯାଇଛି, ତାକୁ ଯୋଡ଼ି ଗୋଟାଏ କରି ଦେବା ପାଇଁ ଜଗନାମକ ଦେବୀ କି (ଜଗରକ୍ଷସୀ ବୋଲି କହନ୍ତି) ପ୍ରସନ୍ନ (ସନ୍ତୋଷ) କରିବା; ତାହା ହେଲେ ସେ ଯୋଡ଼ି ଦେବ । ଗହୁ କେତୁ ମିଶି ଗୋଟାଏ ହୋଇ ଥରେ ଚନ୍ଦ୍ରକୁ ଖାଇଗଲେ ଆଉ ଚନ୍ଦ୍ର ବାହାରିବ ନାହିଁ । [ ଏବେ ଚନ୍ଦ୍ରର ଯେ ଗ୍ରହଣ ହୁଏ ସେ କେତେବେଳେ ଗହୁ ଗ୍ରସ୍ତ କେତେବେଳେ ବା କେତୁ ଗ୍ରସ୍ତ ହୁଏ; ଗହୁ କେତୁ ଦୁହେଁ ମିଶି କେବେ ଚନ୍ଦ୍ରକୁ ଗ୍ରାସ କରିପାରନ୍ତି ନାହିଁ ।] ପ୍ରାଚୀନ ମଗଧରାଜ ଜରାସନ୍ଧ ଦୁଇରାଣୀଙ୍କଠାରୁ ଦୁଇଫାଳ ହୋଇ ଜନ୍ମ ହୋଇ ଫିଙ୍ଗା ହୋଇଥିଲା । ଜରାନାମକ ରାକ୍ଷସୀ ତାକୁ ଯୋଡ଼ି ଥିବାରୁ ତାହାର ନାମ ଜରା ଦ୍ୱାରା ଯୋଡ଼ା ବା ଜରାସନ୍ଧ ହୋଇଥିଲା । [ ମହାଭାରତ ଦେଖ ] ସିଂହିକା ସୁତ ରାହୁ; ହନୁମାନ ସମୁଦ୍ର ଡ଼େଇଁ ଲଙ୍କାକୁ ଗଲାବେଳେ ବାଟରେ ସିଂହଳ (ଲଙ୍କା)ର ଅଧିଷ୍ଠାତ୍ରୀ

ଶୁଣି କେ ବୋଲେ । ସେ ପାପୀ ଶରୀର ଅମର ।
ସିଂହିକା ସୁତ ଉଦରକୁ ଚିରିବ ପରା ହନୁମାନ ପ୍ରକାର । ୩୨ ।

ଚତୁରୀ ସଖୀ ବୋଇଲା ସର୍ବପର ବିଚାର ଏହିରେ ସଜନୀ ।
କି ମନ୍ତ୍ରେ ବଶ କରନ୍ତାଇଁ ରହନ୍ତା ଏପୁରେ ଦରଶ ରଜନୀ ।
ମହାମାନ୍ତ୍ରିକ । ଜନମାନଙ୍କୁ ଗୋ ପଗ୍ଭ ।
ମନ୍ତ୍ରୀନନ୍ଦନା ବୋଇଲା ଏଣୁ ତେଣୁ କର କିପାଁ ବୃଥା ବିଚାର । ୩୩ ।

ବଡ଼ ହୋଇ କିସ ହୋଇବ ଅର୍ଜିଲା କର୍ମ ସିନା ଭୋଗ କରିବ ।
ସାଗର ମନ୍ଥନେ ଗରଳ ପାଇଲେ ଖଗ କରିଟି ମହାଦେବ ।
ଶୁଣି ଏ ବାଣୀ । ସମସ୍ତେ ବୋଇଲେ ପ୍ରମାଣ ।
ଶିରୀଷ ଦେହାରେ ଏହା ଅରଜିଲୁ ବୋଲି ଉଚ୍ଚେ କଲେ କାରୁଣ । ୩୪ ।

ଲାବଣ୍ୟ ନିଧିର କି ବ୍ୟାଧି ବୃଦ୍ଧି ଏ ଶବ୍ଦ ରାଜା ରାଣୀ ଶୁଣିଲେ ।
ହୋଇ ଉତ୍ସୁକ ଚିକିତ୍ସକ ମନ୍ତ୍ରୀ କି ହକାର କରାଇ ଆଣିଲେ ।
ଶୁଣି ସେ ଯାଇଁ । ଦେଖିଲେ ରମଣୀ ରତନ ।
ଜରତା ମୁଦୁସୁଲୀ ଆଗେ କହିଲେ ଏ ଜ୍ୱରକୁ ଏହି ବିଧାନ । ୩୫ ।

---

ପାଠାନ୍ତର—୪, ଏଥି ଉଣ୍ଡ ।

---

ଦେବୀ ସିଂହିକା ହନୁମାନଙ୍କୁ ଗିଳି ଦେଲା; ହନୁମାନ ତା ପେଟ ଚିରି ବାହାରି ଗଲା । ସେ ପାପୀ ଶରୀର ( ଏଠାରେ ଚନ୍ଦ୍ରର ଦେହ), ହନୁମାନ ସିଂହିକା ପେଟ ଚିରିଲା ପରି ଏ ପଛକୁ ରାହୁର ପେଟ ଚିର ବାହାରି ପଡ଼ିବ । ଅତଏବ ରାହୁକୁ ଯୋଡ଼ି ଲାଭ ନାହିଁ ।

୩୩—ଦରଶ ରଜନୀ—ଅମାବାସ୍ୟା ରାତ୍ରୀ; ଏ ପୁରେ (କେମାପୁରେ); ରହନ୍ତା—ସବୁବେଳେ ରହନ୍ତା; ମାନ୍ତ୍ରୀକ ଜନ—ମନ୍ତ୍ରରେ ବଶ କରି ପାରିବା ଲୋକ ।

୩୪—ବଡ଼ହୋଇ—ବଡ଼ଘରେ ଜନ୍ମହୋଇ, ରାଜକେମା ହୋଇ; ମହାଦେବ ବଡ଼ହେଲେ ମଧ୍ୟ କର୍ମରେ ଥିଲା ବୋଲି ସମୁଦ୍ର ମନ୍ଥନରୁ ନିଜର ଭାଗ ସ୍ୱରୂପ ଗରଳ (ବିଷ) ପାଇଲେ । ଶିରିଷ ଦେହା—ଶିରିଷ ବା ଟିଣିଆ ଫୁଲପରି କୋମଳ ଦେହ ଯାହାର; କାରୁଣ କଲେ— ବାହୁନି ହୋଇ କାନ୍ଦିଲେ ।

୩୫—ଲାବଣ୍ୟ ନିଧି—ଲାବଣ୍ୟ ବତୀ; କି ବ୍ୟାଧି ବୃଦ୍ଧି ଏ – କି ରୋଗ ଏ ବଢ଼ିଲା । ଶବ୍ଦ—କାନ୍ଦିବା ଶବ୍ଦ; ଚିକିତ୍ସକ ବୈଦ୍ୟ; ଜରତା ମୁଦୁସୁଲୀ—ବୁଢ଼ି ଦାସୀ ।

ରସ ବିନା ଏ ନ ଘୁଞ୍ଚିବ ରୁଚିବ ମଧୁର ଆହାର ହୋଇଲେ ।
ଶାନ୍ତି ହେବ ତୀକ୍ଷ୍ଣ ତାପ ଗତ୍ରେ ଚନ୍ଦ୍ରଭାନୁରେ ଏକ ଶଯ୍ୟା କଲେ ।
ରୋଗ ବିଷମ । ରାଗ ଜନ୍ୟ ହୋଇ ହୋଇଛି ।
ପୁଟ ପାକରେ ଯେତେକ ଅଉଷଧ ଏ ଗୁଣ ନ କରିବେ କିଛି । ୩୬ ।
କତିରେ ଯେତେ ସଖୀ ଥିଲେ ଶ୍ରୁତିରେ ଚହିଲେ ବିରସ ମତିରେ ।
ଚତୁର ନାମେ ମାଳିନୀ ପରବେଶ ଏହି ସମୟେ ଅନ୍ତଃପୁରେ ।
ପୁଷ୍ପ ରଙ୍ଗଡ଼ା । ଘେନି ସନ୍ନିକଟ ହୋଇଲା ।
ଯେମନ୍ତ ସ୍ୱବେଶ ଯହିଁକି ପ୍ରବେଶ ଆର ଛାନ୍ଦକୁ ସେ ରହିଲା । ୩୭ ।
ହେ ରାମ କାମ ସୁନ୍ଦର ଗୁଣବନ୍ତ ଶିଳୀମୁଖ ଧନୁ ଧାରଣ ।
ସୀତାମ୍ବୁଜ ମୁଖୀ ରତି ପ୍ରମୋଦିତ ହରି ମିତ୍ରପଣ ପ୍ରମାଣ ।
ଜାଣ ବିରହ । ବିପତ୍ତି ହର ତତପର ।
କହେ ଉପେନ୍ଦ୍ର ଭଞ୍ଜ ବୀରବର ଏ ଛାନ୍ଦ ଅଟି ମନୋହର । ୩୮ ।

---

୩୬–ବୈଦ୍ୟ ରୋଗର ଉପଚାର କହୁଛନ୍ତି । ଏଥିରେ ଦୁଇ ଅର୍ଥ ଅଛି ।

ରସ–(୧) ରସାୟନ (ରସାୟନ ଘଟିତ ଔଷଧ, ବିଷାୟନ ଘଟିତ ନୁହେ; ସନ୍ନିପାତରେ ସାଧାରଣ ବୈଦ୍ୟମାନେ ବିଷାୟନ ବ୍ୟବସ୍ଥା କରିଥାନ୍ତି); (୨) ଶୃଙ୍ଗାର; ମଧୁର ଆହାର– (୧) ସ୍ୱାଦ୍ୟ–ସୁସ୍ୱାଦୁ ଖାଦ୍ୟ, (୨) ବସନ୍ତ କାଳର ଉଚିତ ଭୋଗ–ଦାମ୍ପତ୍ୟ ଭୋଗ; ତୀକ୍ଷ୍ଣତାପ–ଦେହର ଉତ୍କଟ ଉତ୍ତାପ ବା ଯନ୍ତ୍ରଣା; ଚନ୍ଦ୍ରଭାନୁରେ ଏକ ଶଯ୍ୟାକଲେ–(୧) ଚନ୍ଦ୍ରକିରଣରେ ଏକା ଶୋଇଲେ; (୨) ଚନ୍ଦ୍ରଭାନୁ ନାମକ ପୁରୁଷ ସଙ୍ଗେ ଏକା ଶେଯରେ ଶୋଇଲେ । ବିଷମ ରାଗଜନ୍ୟ–(୧) ବାତ, ପୀତ, କଫର ବିଷମତା ହେତୁରୁ; (୨) ବିଷମ (କେଳିରେ ଶମ ବା ଶାନ୍ତ ହେଉନାହିଁ ଯେଉଁ ରାଗ ବା ପ୍ରୀତି ସେହି (ଜନ୍ୟ ହେତୁରୁ) ପୁଟପାକ– (୧) ଔଷଧ ସବୁ ପତ୍ର ପୁଡ଼ାରେ ବାନ୍ଧି ମାଟି ଲେଶି ନିଆଁରେ ପୋଡ଼ି ତିଆରି କରିବା ପ୍ରଣାଳୀ [ଦ୍ରାବିଡ଼ ଦେଶରେ ଏହା ପ୍ରସିଦ୍ଧ](୨) ଘରେ ବନ୍ଦ କରି ।

୩୭–କତିରେ–ପାଖରେ; ଶ୍ରୁତିରେ–ଏକଥା ଶୁଣି ।

୩୮–ହେ ରାମ ତୁମେ କାମ ( କନ୍ଦର୍ପ ) ପରି ସୁନ୍ଦର–ଦେଖିବାକୁ; ତୁମେ ଗୁଣବନ୍ତ (ଶୌର୍ଯ୍ୟାଦି ଗୁଣଯୁକ୍ତ, ଗୁଣୀ) ଶୀଳିମୁଖ (ଶର) ଓ ଧନୁ ଧାରଣ କର । ହରି (ମର୍କଟ–ସୁଗ୍ରୀବ) ଠାରେ ମିତ୍ର (ବନ୍ଧୁ) ପଣ ଯାହାର ସେହି ତୁମ୍ଭେ ହରି ମିତ୍ରପଣ;

ତୁମ୍ଭେ ପ୍ରମାଣ (ସତ୍ୟବାଦୀ) ଅଟ; [ ପ୍ରମାଣେ ନିତ୍ୟ ମର୍ଯ୍ୟାଦା ଶାସ୍ତ୍ରେଷୁ ସତ୍ୟ-ବାଦିନି, ଇୟତ୍ତାୟାଂଚ ହେତୌଚ କ୍ଲୀବୈକତ୍ୱେ ପ୍ରମାତରି—ଇତିରଭସଃ ]; ସୀତାମ୍ବୁଜ ମୁଖୀ (ସୀତା ନାମକ ପଦ୍ମମୁଖୀ ନାରୀ)ର ରତି (ପ୍ରୀତି)ରେ ପ୍ରମୋଦିତ (ଆନନ୍ଦିତ) ଅଟ; ଅତଏବ ସୀତାମ୍ବୁଜ (ଧଳାପଦ୍ମ ମୁଖୀ—ଆଦ୍ୱକୁ ହେଉଥିବା ଯେ ରତି (ପ୍ରୀତି), ସେଥିରେ ପ୍ରମୋଦିତ ହରି (ସୂର୍ଯ୍ୟ) ତା ଠାରେ ମିତ୍ରପଣ—ଏପରି ଅର୍ଥ ମଧ୍ୟ ଅଛି ।

କାମ ପକ୍ଷରେ—ହେ ରାମ (ରମଣୀୟ) ଅତଏବ ସୁନ୍ଦର କାମ ଶୀଳିମୁଖ ( ଭ୍ରମର ଗୁଣ ହୋଇଥିବା) ଯେ ଧନୁ ତାକୁ ଧାରଣ କରିଛ । ଅଳି ବାଣୌ ଶିଳୀମୁଖୌ-ଇତ୍ୟମରଃ [ କନ୍ଦର୍ପଙ୍କ ଧନୁଗୁଣ ଭ୍ରମରମୟ ବୋଲି ପ୍ରସିଦ୍ଧି ] ସୀତା ମ୍ବୁଜମୁଖୀ (ଧଳାପଦ୍ମ ମୁଖୀ) ଯେ ରତି (କାମପତ୍ନୀ) ତାଠାରେ ପ୍ରମୋଦିତ ( ରମଣକାରୀ) ହରି (ଚନ୍ଦ୍ର) ତାର ମିତ୍ରପଣ ତୁମର ପ୍ରମାଣ (ଇୟତ୍ତା—ତୁମକୁ ଜାଣିବାର ମାପ କାଠି; ) ହରିର ଭିନ୍ନ ଭିନ୍ନ ଅର୍ଥ—ଯଥା ନୀଳେନ୍ଦ୍ରା ଚନ୍ଦ୍ରାର୍କ ବିଷ୍ଣୁ ସିଂହାଂଶୁ ବାଜିଷୁ ଶୁକାହି କପି ଭେକେଷୁ ହରିର୍ନା କପିଳେବର୍ତ୍ତିଷୁ—ଇତି ମେଦିନୀ; ଏହିପରି ଯେ ରାମ ତୁମେ ବିରହ ଜାଣ; ଅତଏବ ଭକ୍ତଠାରେ ତତ୍ପର (ତଦ୍‌ଗତ—ଆପଣାର) ହୋଇ ବିପତ୍ତି ହର ।



# ତ୍ରୟୋଦଶ ଛାନ୍ଦ

## ଷଷ୍ଠ ସଙ୍କେତ

## ମାଳୀନୀ ବେଶ ଛାନ୍ଦ ( ମାଳିନୀର ବେଶ ବର୍ଣ୍ଣନ )

ରାଗ କଉସିକ, ମୁନିବର ବାଣୀରେ ଗାଇବ ।

ଏଥୁ ଅନନ୍ତରେ ରସ । ଶୁଣହେ ମାଳିନୀ ବେଶ ।
ଟଭ ଫାଳ ପ୍ରାଏ ଖୋଷା । ଖୋଷିଛି ଯୋଷା ଯେ । ୧ ।
ଗର୍ଭକ କଲ୍ଲ ଚଉଁରୀ । ପ୍ରକାଶେ ରନ୍ ଭଉଁରୀ ।
ଖଞ୍ଜିଅଛି ଗୋଟି ଚମ୍ପା । ଧଇର୍ଯ୍ୟ କମ୍ପା ଯେ । ୨ ।
ଅନ୍ଧାର ନିଶାରେ ନଭେ । ନିର୍ମଳ ତାର କି ଶୋଭେ ।
ଦିଶଇ ତେମନ୍ତ ତୋର[୧] । ନୟନ କାର ଏ । ୩ ।
ଏଥିକୁ କେଶ ତ୍ରିଭଙ୍ଗେ[୨] । ଧାର ଦେଖାଇଛି ମାଙ୍ଗେ ।
ଘନ ଗହୁ ଭୃଙ୍ଗ ଶ୍ରେଣୀ । ଅଛି ମୁଁ[୩] ଜିଣି ଏ । ୪ ।
ଲଲାଟେ ଚନ୍ଦନ ଚିତା । ସିନ୍ଦୂର ବିନ୍ଦୁ ଶୋଭିତା ।
ଚନ୍ଦ୍ରକୋଳେ କି ସବିତା । ଏହି ଭଙ୍ଗିତା ଏ । ୫ ।

---

ପାଠାନ୍ତର—୧, ପଗ୍ର । ୨, ତ୍ରିଭଙ୍ଗେ । ୩, କ ।

---

୧-୨—ପୂର୍ବ ଛାନ୍ଦର ୩୭ ପଦରେ କୁହା ଯାଇଥିବା 'ଚତୁର' ମାଳିନୀ, 'ଯେମନ୍ତ ସୁବେଶ ଯହିଁକି ପ୍ରବେଶ' ତାହା ଏବେ କୁହା ଯାଉଛି । [ ଏ ଛାନ୍ଦର ବର୍ଣ୍ଣନା ବଡ଼ ପ୍ରାକୃତିକ, ସୁନ୍ଦର ଓ ସୁରୁଚିକର ] ଖୋଷା—ଜୁଡ଼ା, ଲେଟଣୀ ଜୁଡ଼ା ନୁହେ, ଲେଟଁଣୀ ଜୁଡ଼ା, ହୁଏତ କଦଳୀଭଣ୍ଡା ପରି' ଟଭ ଫାଳ ପରି ନୁହେ; ଚଉଁରୀ ରନ୍ ଭଉଁରୀ ( ୧୧ ଛାନ୍ଦ ୧୬ ପଦ ଦେଖ ) ଗର୍ଭକ କଲ୍ଲ—ଚଉଁରୀକି ଜୁଡ଼ା ଭିତରେ ଖୋଷିଲ ।

୩—ନୟନ କାର—ଆଖିର କଏଦି ଘର; ଅର୍ଥାତ ଆଖି ସେଠାରୁ ଆଉ ଘୁଞ୍ଚୁନାହିଁ ।

୪—ତ୍ରିଭଙ୍ଗେ ଓ ମାଙ୍ଗେ ( ୪ର୍ଥ ଛାନ୍ଦ ୯ମ ପଦ ଟୀକା ଦେଖ ); ଘନ—ମେଘ; ଗହୁ—ସବୁଗ୍ରହ, ଭୃଙ୍ଗଶ୍ରେଣୀ ଭ୍ରମର ମାଳା— ଏ ତିନିଙ୍କି ଜିଣିଛି ।

୫—ଖଣ୍ଡ ଚନ୍ଦ୍ର ପରି ଚନ୍ଦନ ଚିତା ଭିତରେ ବାଳ ସୂର୍ଯ୍ୟପରି ଲାଲ ସିନ୍ଦୁର ବିନ୍ଦୁ;

ଶ୍ରବଣେ ଘନ୍ଧ କୁଣ୍ଡଳ । ଦୋହଲେ ଗଣ୍ଡ ମଣ୍ଡଳ ।
ସୁବର୍ଣ୍ଣ ପାଶି ଉପରେ । ଚିତ୍ତକୁ ହରେ ଏ । ୬ ।
ଫୁଲ ଗୁଣା ମାଠ ଗୁଣା । କରଇ ବିବେକ ବଣା ।
ନାସା ପୁଟକେ ପୁଟକେ । ଥାଇ ଝଟକେ ଏ । ୭ ।
ଲଞ୍ଜି ବିହୀନ କଜ୍ଜ୍ୱଳ । ନୟନେ ଦିଶେ ଉଜ୍ଜ୍ୱଳ ।
ପଦ୍ମେ କି ଭ୍ରମର ଖେଳା । ତେମନ୍ତ ଡୋଳା ଏ । ୮ ।
କଣ୍ଠେ ସୁନା କଣ୍ଠୀ ମାଳି । ପ୍ରବାଳେ ହୋଇଛି ଝଳି ।
ପଛକୁ ରୁଚିର ଫୁଲି । ମାନସ ଭୁଲି ଏ । ୯ ।
ଉଚ ଘଞ୍ଚ କୁଚ ବେନି । ହେଲଦିନୁ ଯଉବନୀ ।
ଦେଖିନାହିଁ କି ଅବନୀ । ଲୋଚନ ବେନି ଏ । ୧୦ ।
ମାରିବାକୁ ଯୁବାକୁଳ । କାମ କରି ଅନୁକୂଳ ।
ଟେକିଛି କି ଶାଢୀ ଘର । ତଥା ସୁନ୍ଦର ଏ । ୧୧ ।
ବିଦମାଳୀ ପାଟ ବ୍ରତ । ତାଡରେ ଭୁଜ ଦୀପିତ,
କମ ଆଦି ଖଡୁ ବାହୀ । ହସ୍ତରେ ଶୋହି ଏ । ୧୨ ।

---

ପାଠାନ୍ତର—୮, ଦେଖିତ ନାହିଁ ଅବନୀ ।

---

୬—ପାଶି—ଫାଶିଆ—( କାନର ଉପର ଭାଗରେ ଥାଏ )

୭—ପୁଟକେ—ପୁଡ଼ାରେ; ଡାହାଣ ନାକ ପୁଡ଼ାରେ ଫୁଲ ଗୁଣା ବାଁ ପୁଡ଼ାରେ ମାଠଗୁଣା ( ବସୁଣୀ ପରି ଏକ ଅଳଙ୍କାର) ।

୯—ପ୍ରବାଳେ—ପୋହଳାରେ, କଣ୍ଠୀ ମଝିରେ ଗୋଟିଏ ଗୋଟିଏ ପୋହଳା ଗୁନ୍ଥା ହୋଇଛି । ଫୁଲି କଣ୍ଠ ଡୋରର ଶେଷରେ ସୂତାର ଫୁଲି ପରି ଯେ ତିଆର ହୋଇଥାଏ ।

୧୦—ଘଞ୍ଚ—ଲଗା ଲଗି, ସ୍ତନ ଉଚ ହେବାରୁ ଦୁଇ ଆଖି ଗୋଡ଼ ତଳ ଭୂଇଁ ଦେଖିପାରି ନାହିଁ ।

୧୧—କୁଚ ଉପରେ ଶାଢୀ ଘର ପରି ହୋଇଛି ।

୧୨—ବାଁ ହାତରେ ବିଦମାଳା – ପାଟବ୍ରତ (ପାଟ ସୂତାର ବ୍ରତ) ଡାହାଣ ହାତରେ ତାଡ଼; କମ—ଏକ ପ୍ରକାର ଖଡୁ; ଖଡୁବାହୀ—ଅନେକ ଗୁଡ଼ିଏ ଖଡୁ ଏକାଠି ହାତରେ ଥିଲେ ତାକୁ ବାହୀ କହନ୍ତି । [ କୌଣସି ଜାତିର ସ୍ତ୍ରୀ ଲୋକେ ପିତଳ ଖଡୁବାହୀ ଏବେ ପିନ୍ଧନ୍ତି । ]

ବାମକରର ଅଙ୍ଗୁଳି । ତ୍ରିସରି ମୁଦିରେ ଝଳି,
ଚରଣେକେ ବଙ୍କାପଟେ । ନାଦ ପ୍ରକଟେ ଯେ । ୧୩ ।
ପଦପଦରେ କଂସା ମୁଦୀ । ଶବଦେ ଧଇର୍ଯ୍ୟ ଛେଦି*
ବେଢ଼ରେ ଅଳତା ଚିତ୍ର । ଅତି ବିଚିତ୍ର ଏ । ୧୪ ।
ବ୍ୟକ୍ତ ବିଞ୍ଚଣୀ ପଣନ୍ତ । ଉରୁ ଉପରେ ଲମ୍ବିତ,
ବନ୍ଧନ ଛନ୍ଦନ ନୀବୀ । ମୋହନ ଛବି ଯେ । ୧୫ ।
ସ୍ତନ ଉର୍ଦ୍ଧ୍ୱେ କଣ୍ଠତଳେ । ମଣି ବନ୍ଧେ କରମୂଳେ
ପାଦ ପରେ ଚିବୁକରେ । କି ମନୋହରେ ଏ । ୧୬ ।
ହରି ତାଳୀ କାଳୀ ଚିତା । ଉକୁଟାଇଛି ବନିତା,
ଦେହତ ଅତ୍ୟନ୍ତ ଗୋଉ । ତହିଁକି ଚୋଉ ଏ । ୧୭ ।

---

ପାଠାନ୍ତର—*, ଖେଦ ।

---

୧୩—ତ୍ରିସରି ମୁଦି—ଗୋଟାଏ ତାର ତିନି ପ୍ରସ୍ଥ ମୋଡ଼ା ହୋଇ ଯେଉଁ ମୁଦୀ ହୋଇଥାଏ;

୧୪—ପପଦ—ଗୋଡ଼ ଆଙ୍ଗୁଠି ;

୧୫—ବିଞ୍ଚଣୀ ପଣତ—ଗୁଡ଼ି ନ ପଡ଼ିଥିବା ପଣନ୍ତ, ଖୁବ୍ ଲମ୍ବା ଶାଢୀ ଅଗରେ ଗୁଡ଼ି (ଗଣ୍ଠି) ପକାଇ କାଖ ତଳବାଟେ ପୁଣି ଛାତି ଉପର ଘୋଡ଼ାଇ କାନ୍ଧକୁ ପକାଇ ଦିଅନ୍ତି । ଛୋଟ ଦଶହାତୀ ଶାଢୀ ଛାତି ଉପରେ ଥରେ ଦେଇ ତାପରେ ପଣନ୍ତକୁ ମୁଣ୍ଡରୁ ଜଙ୍ଘ ପର୍ଯ୍ୟନ୍ତ ଲମ୍ବାଇ ଦିଅନ୍ତି । ତାକୁ ବିଞ୍ଚଣୀ ପଣତ କହନ୍ତି । ଛନ୍ଦନ, ନୀବୀ—ଅଣ୍ଟାରେ ଲୁଗା ଧଡ଼ି ପାଖ ବାନ୍ଧି ଗୋଟାଏ କାନିକୁ ପଛଆଡ଼େ ନେଇ ଜଛାମାରି ଯେଉଁ ନୀବୀ କରାଯାଏ ।

୧୬-୧୭—ବେକତଳ ଛାତିରେ, କଚଟି ଉପରେ, କରମୂଳେ (ବାହାରେ) ପାଦ ଉପରେ ଓ ଚିବୁକରେ (ଓଠତଳେ) କଳା କାଳୀରେ ଚିତାକୁଟାଇଛି । ହରିତାଳ ବା କଳା ପ୍ରଭୃତି ରଙ୍ଗ ଦେଇ ସପ୍ତଫେଣିଆ କଣ୍ଟା ବା ଶୁଚିରେ ସ୍ତ୍ରୀ ଲୋକମାନେ ଚିତା କୁଟାଇଥାନ୍ତି । ଏ ଚିତା ଥରେ କୁଟାଇଲେ ଜୀବନ ଯାଏ ରହେ; ପୃଥିବୀରେ ଅନେକ ସଭ୍ୟ ଦେଶର ପୁରୁଷମାନେ ମଧ୍ୟ ଦେହରେ ଏପରି ଚିତା କୁଟାନ୍ତି । ଇଂଲଣ୍ଡ, ସ୍କଟଲଣ୍ଡ ପ୍ରଭୃତିର ସାଧାରଣ ଲୋକେ ଏବେ ମଧ୍ୟ ଦେହରେ ନାନା ରଙ୍ଗର ଏହିପରି ଚିତା କୁଟାନ୍ତି । ଗୋରା ସୈନ୍ୟମାନଙ୍କ ଦେହରେ ଏହା ବହୁତ ଦେଖାଯାଏ ।

ଉଚ୍ଚ ଅତି ଖର୍ବ ଅତି । କଥା ଏ ନୋହେ ଯୁବତୀ
ପୀନ ନୋହି କ୍ଷୀଣ ନୋହି । ମଧ୍ୟମ ଦେହୀ ଏ । ୧୮ ।
ବିବର୍ଜିତ ଗଣ୍ଡିଶିଗ । ପାଚିଲ୍ଲ ରସାଳ ପଗ,
ବୟସ ଷୋଳ ସତର । ଏଥି ଭିତର ଏ । ୧୯ ।
କୁସୁମ ଘଙ୍ଗଡ଼ା କରେ । ଗୋଡ଼ାଉଛନ୍ତି ଭ୍ରମରେ,
ଗଜ ପରଏ ମନ୍ଥର । ଗମନ ତାର ଏ । ୨୦ ।
ପଣତ ଦେଇଛି ଶିରେ । ଧରିଛି ଦକ୍ଷିଣ କରେ,
ମୁଖ ହସିଲ୍ଲର ପ୍ରାୟେ । କି ଶୋଭା ପାୟେ ଏ । ୨୧ ।
ମନ୍ତ୍ରୀ ସୁତା ଆଗେ ନେଇ । ସୁମନ ସମ୍ଭାର ଥୋଇ,
ଧୀରେ ହର ଭମା ଆଜ୍ଞା । କହିଲ୍ଲ ବିଜ୍ଞା ଏ । ୨୨ ।
ସତ କି ବୋଲି ପଗ୍ଭରି । କେତକୀଜିତ ଗଉରୀ,
ଛାମୁକୁ ନେଲ୍ଲ ସତ୍ୱରେ । ପ୍ରମୋଦ ଭରେ ଏ । ୨୩ ।
ବୋଲେ ଜେମା ସାବଧାନ । ହୁଅ ଅପୂର୍ବ୬ ବିଧାନ
କହୁଛି ଚତୁର ଆସି । ସୁଧା ବରଷି ଏ । ୨୪ ।
ରମା ଶୁଣି ବୋଲେ ବସ । କେମନ୍ତ କଥା ସେ ଭଷ
ଶୁଣି ଆରମ୍ଭିଲ୍ଲ କହିଁ । ମାଳିନୀ ତହିଁ ଏ । ୨୫ ।

---

ପାଠାନ୍ତର—୬, ପୂର୍ବର ।

---

୧୮—ଡେଙ୍ଗେଇ ନୁହେ, କି ଗେଡ଼ି ନୁହେ, ମୋଟିନୁହେ କି ପାତେଳୀ ନୁହେ—ମଧ୍ୟ ଭଳି ଦେହ ।

୧୯—ଦେହ ପାଚିଲ୍ଲ ଆମ୍ବ ପରି ଦିଶୁଛି, ଗଣ୍ଡିଶିଗ କିଛି ଦିଶୁ ନାହିଁ ।

୨୦—ମନ୍ଥର—ମଠ, ଧୀର ।

୨୨—ସୁମନ ସମ୍ଭାର—ଫୁଲ ଉପହାର, ଭେଟି; ବିଜ୍ଞା—ଯେ ଭଲ ଜାଣେ, ହରପାର୍ବତୀଙ୍କ ଆଜ୍ଞା ସେ ଜାଣିଥିଲ୍ଲ ।

୨୩—କେତକୀଜିତ ଗଉରୀ—ଦେହ ବର୍ଣ୍ଣରେ କେତକୀକି ଜିଣିଥିଲ୍ଲ ଯେଉଁ ଗୋରୀ—(କାମକଳା) ଛାମୁକୁ—ଜେମା ଆଗକୁ ।

୨୪—ବୋଲେ—କାମକଳା କହିଲ୍ଲ; ସୁଧା ବରଷି—[ଏ କଥା] ଅମୃତ ବର୍ଷିଲ୍ଲ ପରି ।

୨୫—ରମା—(ଏଠାରେ) ଜେମା;

ତୋ ଫୁଲ ଖଟଣୀ ମୋର । ଏଣୁ ଭଲ ବାଞ୍ଛେ ତୋର
ବରକୁ ମୁଁ କହୁଥାଇ । ହରେ ଜଣାଇ ଗୋ । ୨୬ ।
ଗଲ କାଲି ଚତୁର୍ଦ୍ଦଶୀ । ହୋଇଥିଲି ଉପବାସୀ,
ଦେଉଳ ଭିତରେ ଯାଇଁ । ଜାଗର ଦେଇ ଗୋ । ୨୭ ।
ବସିଥିଲି ଉଜାଗରେ । ରଜନୀ ଅଛି ପ୍ରହରେ,
ଅଳପ ଆସିଲ ତୋଳ । ଏମନ୍ତ ବେଳ ଏ । ୨୮ ।
ଇଷି ସେ କଥା ସୁମରି । ଏକ୍ଷଣି ଗେମ ଟାଙ୍କୋରି
ଶିରେଜଟା ଅର୍ଦ୍ଧଶଶୀ ! ମଞ୍ଜୁଳ ଦିଶି ଏ । ୨୯ ।
କୁନ୍ଦ କ୍ଷୀର ଦର ରୁଚି । ତେଜରେ ଗଞ୍ଜିତ ଶୁଚି,
ହୋଇଛନ୍ତି ଦିଗମ୍ବର । ଭସ୍ମ ଧୂସର ଏ । ୩୦ ।
ପାର୍ବତୀଙ୍କ ବାମ କରେ । ଧରି ଅଛନ୍ତି ସ୍ନେହରେ,
ଦକ୍ଷିଣ କରରେ ବେତ୍ର । ବିଜେ ତ୍ରିନେତ୍ର ଏ । ୩୧ ।
ସେ ବେତ୍ର ମୋତେ ଛୁଆଇଁ । ତକ୍ଷଣେ ମୋ ଚେତା ହୋଇ,
ଗୃହିଁଣିବ ଶିବାରମ୍ୟ । କଲି ପ୍ରଣାମ ଏ । ୩୨ ।
ମୁଖ ମୃଦୁ ହାସେ ପୂର୍ଣ୍ଣ । କଲେ ମୋତେ ଅବଧାନ ।
ନୃପଜା ପାଇଁ ତୁ ମୋତେ । ଜଣାଉ ନିତ୍ୟେ ଗୋ । ୩୩ ।

---

୨୬–ଖଟଣୀ–କୌଣସି ଯଜମାନ ପାଇଁ ନିୟମିତ ରୂପେ ସେବକ ଦେବତାଙ୍କଠାରେ ଯାହା କରେ ତାକୁ ଖଟଣୀ କହନ୍ତି । ଏଠାରେ ମାଳୁଣୀ ଜେମା ପାଇଁ ନିତିଫୁଲ ଦଏ । ବରକୁ–ତୁ ଭଲ ବର ପାଇବୁ ବୋଲି;

୨୭–ଜାଗର ଦେଇ–ଘଟିଯାକ ଦୀପ ଜାଳି ।

୨୯–ଇଷି–ଓଃ ( ବସ୍ମୟ ସୂଚକ )

୩୦–କୁନ୍ଦ ଫୁଲ, କ୍ଷୀର, (ଦୁଧ), ଦର (ଶଙ୍ଖ) ପରି ଧଳା, ରୁଚି (ଦେହକାନ୍ତି); ତେଜରେ·ଗଞ୍ଜିତ (ପରାସ୍ତ) କରି, ଶୁଚି (ସୂର୍ଯ୍ୟ)କୁ ଯେ; ଦିଗମ୍ବର–ଦିଗମାନଙ୍କ ଛଡ଼ା ଆଉ କିଛି ଲୁଗାନାହିଁ ଯାହାର, ଲଙ୍ଗଳା ।
ଭସ୍ମ ( ପାଉଁଶ) ବୋଳି ହୋଇ ଥିବାରୁ ଧୂସର ( ପାଉଁଶିଆ)–ଏ ସ୍ୱପ୍ନରେ ଦେଖିବ ଶିବଙ୍କ ରୂପ ବର୍ଣ୍ଣନା ।

୩୧–ତ୍ରିନେତ୍ର–ମହାଦେବ ;

୩୨–ଶିବା–ପାର୍ବତୀ ;

୩୩–ଅବଧାନ–ଆଦେଶ; ନୃପଜା–ଜେମା;

ଚନ୍ଦ୍ରମୁଖୀ ଏ ନିଶାରେ । ଶୋଇଥିଲ ଚନ୍ଦ୍ରକରେ ।
ମୋହ ଆଜ୍ଞାରେ ଯୋଗିନୀ । ପୁରୁଷେ ଘେନି ଏ । ୩୪ ।
ପ୍ରବେଶ ବାଳା ପାଶର । ଚିହ୍ନାଇ ଦେଇ ଅନ୍ତର ।
ସେ ପୁଣ ନିଦ୍ରା ଗର୍ଜିଲ । ବିନୟୀ ହେଲ ଏ । ୩୫ ।
ଗମା ସୀଭକାର ବେଳେ । ଆଲିଙ୍ଗନ ହେବା କାଳେ ।
ଯୋଗିନୀର ମାୟାବଶ । ହରିଲ ପୁସ ଏ । ୩୬ ।
ଏଣୁ ବହୁତ ବ୍ୟଥିତ । ହୋଉଛି କେମାର କାତ
ତୁ ଯାଇ କହ ବାଳାକୁ । ଲଭିବ ତାକୁ ଏ । ୩୭ ।
ମୁଁ ପୁଚ୍ଛା କଲି ଏମନ୍ତ । କଉଁ ରଜାର ସେ ସୁତ ।
ନାମ ତାର କିସ ପୁଣି । କହିଲେ ଶୁଣି ସେ । ୩୮ ।
କର୍ଣ୍ଣାଟେ କାଞ୍ଚି ନଗରେ । ଶଶି ଶେଖର କୋଳରେ ।
ହୋଇ ଯେ ଅଛି ଜନମ । ଲୋକାଭିରମ ଏ । ୩୯ ।
ଚନ୍ଦ୍ରଭାନୁ ତାର ନାମ । କାମିନୀ ମୋହନ କାମ ।
ରମଣୀ ତାକୁ ପାଇବ । ସୁଖୀ ହୋଇବ ଏ । ୪୦ ।
ସାଧୁ ଶୁକ ଭୃଙ୍ଗରୀ । ପରବେଶ କାଲି ପରି ।
ଘେନି ତାହାର ସନ୍ଦେଶ । ହେବ ଏ ଦେଶ ଏ । ୪୧ ।
ଏତେ ଆଜ୍ଞାଦେଇ ହର । ହୋଇଲ ବେଳୁ ଅନ୍ତର ।
ଆଉ ମୋତେ ନିଦ୍ରା ନାହିଁ । ଅଇଲି କହି ଏ । ୪୨ ।
ନାମ ଶ୍ରବଣ ତାହାର । ହେଲ ଚନ୍ଦ୍ର ଦିବାକର ।
ସଂଶୟ ଅନ୍ଧାର ଦୂର । କଲ ତତ୍‌କାଳ ଏ । ୪୩ ।

---

୩୫–ଅନ୍ତର–ଗୁଲିଗଲ, ଲୁଚିଗଲ; ସେ–ପୁରୁଷ ( ଚନ୍ଦ୍ରଭାନୁ );

୩୭–ବ୍ୟଥିତ (ବ୍ୟଥା) ଜାତ ହେଉଛି;

୩୯–ଲୋକାଭିରମ–ଲୋକ (ଦେଖିବାକୁ କିମ୍ବା ଜଗତରେ ) ଅଭିରମ ( ଅତିସୁନ୍ଦର );

୪୦–କାମିନୀ ମୋହନ କାମ–( ସ୍ତ୍ରୀମାନଙ୍କୁ ) ମୋହନ (ମୁଗ୍ଧ) କରିବାରେ କାମ (କନ୍ଦର୍ପ) ପରି ସୁପୁରୁଷ ;

୪୧–ପରେ ସତରେ ସାଧୁ, ଶୁକ, ଭୃଙ୍ଗରୀ ଚନ୍ଦ୍ରଭାନୁର ଖବର ଘେନି ଆସିବାର କଥା ଅନ୍ୟ ଛାନ୍ଦରେ କୁହାଯିବ ।

୪୩–ଚନ୍ଦ୍ରଭାନୁର ନାମ ଶ୍ରବଣ ଚନ୍ଦ୍ର ଦିବାକର ପରିହୋଇ ସଂଶୟ (ସନ୍ଦେହ) ରୂପ ଅନ୍ଧାରକୁ ଦୂର କଲ; ଅର୍ଥାତ୍ ତାକୁ ବର କରି ପାଇବା କଥା ତତ୍‌କାଳ (ସେତେବେଳେ ) ନିଶ୍ଚୟ ପରିଲାଗିଲ ।

ପୂଣ ସେ ଢଳ ପରଯେ । ଆଶାତରୁ ପଲ୍ଲବାଏ ।
ପ୍ରମୋଦ ପଦ୍ମ ପ୍ରକାଶେ । ରବି ସଦୃଶେ ଏ । ୪୪ ।
ଶୁଣି ଯଥା ଘନ ଘୋଷ । ତୃଷାର୍ତ୍ତ ଚାତକ ତୋଷ ।
ବରଷିବ କରି ମତି । ହୁଅଇ ତୃପ୍ତି ଏ । ୪୫ ।
ଯେବଣ ଚକୋର ମୋହୀ । କର୍ପୂର କୁଡକୁ ଚାହିଁ ।
ସେ ଚନ୍ଦ୍ର ହୋଇଲେ[୭] ଯଥା । ତଥା ଏ କଥା ଏ । ୪୬ ।
ଚୂତ ହେଲେ ପଲ୍ଲବିତ । ଭବି ହେବ ମୁକୁଳିତ ।
ପିକ ଯଥା ଆନନ୍ଦିତ । ହେଲ ତେମନ୍ତ ଏ । ୪୭ ।
ସନ୍ନିପାତର ନାଟିକା । ଲଗିଲେ ଯଥା ଚାଟକା ।
କିଛି କିଛି ହୋଏ ଭିନ୍ନ । ତେମନ୍ତ ମନ ଏ । ୪୮ ।

---

ପାଠାନ୍ତର—୭, ପାଇଲେ

---

୪୪—ଚନ୍ଦ୍ର ବୋଇଲେ ଢଳ, ଭାନୁ ବୋଇଲେ ରବି; ସେଥିପାଇଁ ଢଳ ହେବାରୁ ଆଶା ରୂପତରୁ (ଗଛ)କୁ ପଲ୍ଲବାଇଲା (ନୂଆପତ୍ର ଦିଆଇ ବଢ଼ାଇଲା); ରବି ପରି ପ୍ରମୋଦ ରୂପ ପଦ୍ମକୁ ପ୍ରକାଶ କଲା । ଚନ୍ଦ୍ର [ ୭ମ ଛାନ୍ଦ ୫ମ ପଦ ଟୀକା ଦେଖ ]

୪୫—ଘନ ଘୋଷ—ମେଘଡ଼ାକ ;

୪୬-ଯେବଣ—ଯେପରି; କର୍ପୂର ଗଦା; ଚନ୍ଦ୍ରରୁ ଚକୋର ସୁଧାପିଏ; କର୍ପୂର ଗଦାକୁ ଚନ୍ଦ୍ର ବୋଲି ବିଚାରି ଚାହୁଁ ଚାହୁଁ ସେ କର୍ପୂର ଗଦାଟା ହଠାତ୍ ଚନ୍ଦ୍ର ହୋଇଗଲେ ଚକୋର ଯେପରି ଖୁସିହୁଏ ସେହି ପରି ଏ କଥା ।

୪୭—ଚୂତ—ଆମ୍ବଗଛ; ପଲ୍ଲବିତ—ବସନ୍ତରେ ନୂଆ ପତ୍ର ଯୁକ୍ତ—ଯେଉଁ ଆମ୍ବ ଗଛରେ ନୂଆ ପତ୍ର ବାହାରି ପଡ଼େ ସେଥିରେ ପ୍ରାୟ ବଉଳ ଆଉଂହୁଏ ନାହିଁ; ତେବେ ସେ ସମୟରେ ଅନ୍ୟ ଆମ୍ବ ଗଛରେ ବଉଳ ହୁଏ, ଏହାହିଁ ବୁଝିବାକୁ ହେବ । ନଚେତ୍ ଉପେନ୍ଦ୍ରଭଞ୍ଜଙ୍କର ଏଠାରେ ପ୍ରକୃତି ପର୍ଯ୍ୟବେକ୍ଷଣ ଭୁଲ ବୋଲି ଧରାଯିବ ।

୪୮—ସନ୍ନିପାତ (ତ୍ରିଦୋଷ) ନାଡ଼ି ଲଗିଲେ ରୋଗୀ ଯେପରି ଚାଟକା ହୋଇ (ଭୟରେ କାତର ହୋଇ ଏଠାରେ ବିକାର ଗ୍ରସ୍ତ ହୋଇ) କିଛି କିଛି ଭିନ୍ନ ହୁଏ (କ୍ଷଣକ୍ଷଣକେ ଭିନ୍ନ ଭିନ୍ନ ରୋଗର ଚିହ୍ନ ପ୍ରକାଶ କରେ—ମୁହୁଃଶୀତଂ ମୁହୁର୍ଦାହଃ ସନ୍ନିପାତସ୍ୟ ଲକ୍ଷଣଂ ) ସେହିପରି ସତ କି ମିଛ, ସତ କି ମିଛ ବୋଲି ହେମା ବାରବାର ପଚାରି ବୁଝିଲା । [ ହୁଏତ ଏଠାରେ ଅନ୍ୟପାଠ ଥିଲା । ଲେଖକର ପ୍ରମାଦରୁ ପାଠ ବଦଳି ଯାଇଛି । ]

ବାଳକ ପଗଯେ ହୋଇ । ପୂଜା କଲେ ଚାହି ଚାହିଁ ।
ମାଳିନୀକି କଲେ ଦାନ । ରତ୍ନ ବସନ ଏ । ୪୯ ।
ଗିରିଜା ନିମିରେ ପୁଣି । ଦେଲେ ସେ ଚିତା କଛେଣୀ
ଲଣ୍ଡିଲେ ମନ୍ଦାର ମାଳୀ । ଉପନ ବଳି ଏ । ୫୦ ।
ଶମ୍ଭୁ ଆଗେ ଗୋ ଦହନ । ପାଇଁ ଦେଲେ ଧେନୁ ମାନ ।
ବିଲ୍ୱପତ୍ର ଜଳଶାୟୀ । ଭୋଗର ପାଇଁ ଏ । ୫୧ ।
ବାରଟକ ଦେଲେ ଗଣି । ନାଗ ଚନ୍ଦ୍ର ପାଇଁ ପୁଣି ।
ସୁବର୍ଣ୍ଣ ବଣିକ କରେ । ଦେଲେ ସବୁରେ ଏ । ୫୨ ।
ଚତୁରକୁ କହେ ହେମା । ଜଣାଇବ ହର ଉମା ।
ଛାମୁରେ ବାଣୀ ଏମନ୍ତ । ମୋର ଶପତ ଗୋ । ୫୩ ।
ଯେବେ ଲଭିବି ସେ ଯୁବା । ମୋ ଜୀବ ଥିବାରେ ସେବା ।
ବିଘ୍ନହିଁ ନୋହିବ ଦିନେ । ବିଧି ବିଧାନେ ଏ । ୫୪ ।
ନ ଥିଲେ ଲଭିବା ଯୋଗ । ମରଣ କରିବେ ବେଗ ।
ମୋ ଭୂଷା ଚମ୍ପା ଗଢାଇ । ପୂଜିବେ ସହି ଏ । ୫୫ ।

---

୪୯—ବସନ—ଲୁଗା ।

୫୦—ଗିରିଜା—ପାର୍ବତୀ; ରୂପା ବା ସୁନାର ଚିତା; କଛାକାଛେଣୀ—ଅତି ଛୋଟ କଛା ଲୁଗା; ବଳି—ପଶୁବଳି; ଉପନ—ଦେବୀଙ୍କର ଆଶ୍ୱିନ ପର୍ବ ଭୋଗ; ଚିତା କାଛେଣୀ ଯେ କୌଣସି ସମୟରେ ଦିଆଯାଏ; ଉପନ ବା ଆଶ୍ୱିନ ପର୍ବର ଭୋଗ ବଳି ଆଶ୍ୱିନ ମର୍ବ ବା ଚୈତ୍ୟ ନବ ପତ୍ରିକା ପୂଜାରେ ପଶୁବଳି ଖଞ୍ଜାଯାଏ । ( ବର୍ଷକୁ ବର୍ଷ ନିର୍ଦ୍ଦିଷ୍ଟ ଭବରେ ଦେବାପାଇଁ ଟଙ୍କା ବା ଜମିରେ ବନ୍ଦୋବସ୍ତ କରି ଦିଆଯାଏ ) । ସେହି ଉପନ ଓ ବଳି ସଙ୍ଗେ ମନ୍ଦାର ମାଳ ଲାଗି କରିବାର ବିଧି ।

୫୧-୫୨—(୮ମ ଛାନ୍ଦ ୫୬ପଦ; ଟୀକା ଦେଖ)

ଧେନୁ—ଗାଇ; ବିଲ୍ୱପତ୍ର ଜଳଶାୟୀ— ଶିବଙ୍କ ଉପରେ ବେଲ୍ୱପତ୍ର ଲଗିକରି ଅଭିଷେକ ଜଳରେ ଶକ୍ତିର ପାଣି ଖଲସି ହେବା ବାଟ ବନ୍ଦକରି ଶିବ ଲିଙ୍ଗକୁ ବୁଡ଼ାଇ ଦେବାକୁ ବିଲ୍ୱପତ୍ର ଜଳଶାୟୀ କହନ୍ତି । ଭୋଗପାଇଁ ବରଟକ ( କଉଡ଼ି ) [ ସେ କାଳେ କଉଡ଼ି ଟଙ୍କା ପଇସା ପରି କାରବାର ହେଉଥିଲା ] ଗଣିଦେଲେ । ଶିବଙ୍କ ପାଇଁ ସୁନା ନାଗ ସୁନା ଚନ୍ଦ୍ର ତିଆରି କରି ଦେବା ପାଇଁ ବଣିକ କରେ (ସୁନାରୁଣୀ ବଣିଆ ହାତରେ) ସୁବର୍ଣ୍ଣ ଦେଲେ ।

୫୩—ଚତୁର—ମାଳିନୀର ନାମ, ମୋହ ଶପତ—ମୋହ ଶପତ ବା ମୋ ରଣ;

୫୫—ମୋଭୂଷା—ମୋ ଅଳଙ୍କାରରେ ସୁନା ଚମ୍ପା ଗଢ଼ଇ ସହୀମାନେ ପୂଜିବେ ।

ଶୁଣି ବୋଲେ ସହଚରୀ । ଆତୁର ନୁହ ଚତୁରୀ ।
ଦୂଇକରେ ଭୁଂଜେ ଭୋଖୀ । ହେଲେ କି ସୁଖୀ ଗୋ । ୫୬ ।
ପକ୍ଷୀ ପକ୍ଷ ଥିଲେ ପାଇ । ଶକ୍ୟାନୁରୂପେ ଗମଇ ।
ହେଲନି ଏ କାର୍ଯ୍ୟ ପୁନ । ସୂଚକ ମାନ ଗୋ । ୫୭ ।
ଦିଶୁଛି ବିଧୁ ସୁମୁଖ । ସ୍ୱପ୍ନ ସତ ହେଲ ଦେଖ ।
କିଛି କାଳ ହୁଅ ଧର୍ଯ୍ୟ । ଲଭିବୁ କାର୍ଯ୍ୟ ଗୋ । ୫୮ ।
ହେମନ୍ତ ଋତୁ ପ୍ରବେଶ । ପଦ୍ମବନ କରେ ଧ୍ୱଂସ ।
ମୂଳ ଥିବାରୁ ବସନ୍ତେ । ପଲ୍ଲବେ ସତେ ଗୋ । ୫୯ ।
କ୍ଷୀଣ ହୋଇ କଷ୍ଟ ସହି । ଜୀବେ ମାତ୍ର ଥିଲେ ତୁହି ।
ଲଭିବୁ ପରମ ଭୋଗ । ଅଛିଏ ଯୋଗ ଗୋ । ୬୦ ।
ମାଳତୀ ଅଗମ୍ୟ ବନେ । ଫୁଟିଲେ ବିଘ୍ନର ମନେ ।
ଭୃଙ୍ଗେ କି ଭୋଗ୍ୟ ନୁହଇ । ପଗଣ ସହୀ ଗୋ । ୬୧ ।
ଏ କଥା ଭବ ତୋ ଚିତ୍ତ । ମଧୁ ମକ୍ଷିକା ସଞ୍ଚିତ ।
ଦେବ ଭୋଗ୍ୟ ହୁଏ କେହି । ପଗଣ ସହୀ ଗୋ । ୬୨ ।
ଫଣି ଜାଗ୍ରତେ ଚନ୍ଦନ । ଥିଲେହେଁ କର ଭବନ ।
ଭୋଗ ହୋଇଛି କି ନାହିଁ । ପଗଣ ସହୀ ଗୋ । ୬୩ ।
ଯେବେଟି କୁସୁମ ଫୁଟେ । ତେବେ ସୁଗନ୍ଧ ପ୍ରକଟେ ।
ଯହିଁ ତହିଁ ନଦୀ ଜଳ । । ସମୁଦ୍ରେ ଠୁଳ ଗୋ । ୬୪ ।

---

୫୬–'ବୁଭୁକ୍ଷିତଃ କିଂ ଦ୍ୱିକରେଣ ଭୁଂକ୍ତେ' ସଂସ୍କୃତ ପ୍ରବଚନ ।

୫୭–ପକ୍ଷୀ ପକ୍ଷ (ଉଡ଼ିବା ପାଇଁ ଡେଣା) ଥିଲେ ମଧ୍ୟ ଶକ୍ୟାନୁରୂପ (ଯେତିକି ପାରେ ସେତିକି) ସିନା ଯାଏ ।

୬୨–ମଧୁ ମକ୍ଷିକା (ମହୁମାଛି) ଭଳି କ୍ଷୁଦ୍ର ଜନ୍ତୁ ଦ୍ୱାରା ସଞ୍ଚିତ (ରଖା ହୋଇଥିବା) ମହୁ ମଧ୍ୟ ଦେବତାଙ୍କର ଭୋଗ୍ୟ ହୁଏ । ସେହିପରି ତୁ ଆପଣାକୁ ଯେତେ ହୀନି-ମାନ ବିଗ୍ଭରିଲେ ମଧ୍ୟ ସମ୍ଭାଳି ହୋଇ ରହ ।

୬୩–ଫଣି ଜାଗ୍ରତେ (ସାପଙ୍କ ଜଗିଥାରେ) ଚନ୍ଦନ ଥିଲେ ମଧ୍ୟ ଲୋକରେ ଓ ଦେବତାରେ ଭୋଗ ହେଉଛି କି ନାହିଁ ।

୬୪–ପୂର୍ବରୁ ଏହିପରି ଆଶ୍ଚର୍ଯ୍ୟ ଅଘଟନ ମାନ ଜଗତରେ ଘଟେ; ଅତଏବ ତୋର ଚନ୍ଦ୍ର-ଭାନୁକୁ ପାଇବା ସେହିପରି ଘଟିବ, ଏହା କହି ତାକୁ ପୁଣି ସେହି କଥାକୁ ବୁଝାଇ

ଏମନ୍ତ ବଚନ ସିଦ୍ଧି । କରି ମାନସ ପ୍ରବୋଧି ।
ଯତନେ କଲେ ଲଳନା । ସଖୀ ପାଳନା ଏ । ୬୫ ।
ନାୟକ ସୁଖ ଦାୟକ । ତା ନାମ କରି ତାରକ ।
ଜପିଲା ହୃଦରେ ଧରି । ଅବନି ଶିରୀ ଏ । ୬୬ ।
ମାଳିନୀ ହେଲା ମେଲାଣି । ଗଲା ନିଜ ପୁରେ ପୁଣି ।
ଏ ଛାନ୍ଦ ହୋଇଲା ଶେଷ । ଅଟି ରହସ୍ୟ ଏ । ୬୭ ।
ହଂସ ବଂଶ ପ୍ରତୋଷକ । ସର୍ବଦା ଶ୍ରୁତି ରଞ୍ଜକ ।
କର୍ବୂର କାନ୍ତ ଗଞ୍ଜକ । କାନ୍ତି ଦୀପିକ ଏ । ୬୮ ।
ସେ ରାମ ବିଧିରେ ଧ୍ୟାୟି । ଭଞ୍ଜ ବୀରବର କହି ।
ତୁମ ରଚନା ସମସ୍ତ । ପୂର୍ଣ୍ଣ ଏ ଗୀତ ହେ । ୬୯ ।

---

କହୁଛନ୍ତି । ଫୁଲ ଫୁଟିଲେ ସୁଗନ୍ଧ ( ସୁବାସ ) ପ୍ରକଟେ ( ଚହଟେ ),ଯେ ଭୋଗ କରିବାର ସେ ଆସି ସେ ଫୁଲକୁ ଭୋଗ କରେ । ନଦୀ ଜଳ ଯେଉଁଠାରେ ଥାଉ ସମୁଦ୍ର ଛଡ଼ା ଆଉ କାହିଁ ଯାଏନାହିଁ । ତୁ ଯେତେ ଦୂରେ ଯେତେ ଅଜଣାରେ ଥିଲେ ମଧ୍ୟ ସେହିପରି ଚନ୍ଦ୍ରଭାନୁ ତୋତେ ଭୋଗ କରିବ ।

୬୫–ସିଦ୍ଧି–ଚତୁରୀ; ସଖୀ ପାଳନା ସଖୀ କୃତ୍ୟ, ସଖୀମାନେ ଯାହା କରିବା ଉଚିତ ତାହା,

୬୬–ଅବନିଶିରୀ–ପୃଥିବୀର ଶୋଭା, ଲାବଣ୍ୟବତୀ;
ତାରକ-ତାରକ ମନ୍ତ୍ର, ଏହି ତାରକ ମନ୍ତ୍ରକୁ ନିଷ୍ଠାରେ ଜପି ଉପେନ୍ଦ୍ର ଭଞ୍ଜଙ୍କର କବିପଣ ଉଦୟ ହୋଇଥିଲା ବୋଲି ଉପେନ୍ଦ୍ର ଭଞ୍ଜ ନିଜେ କହି ଅଛନ୍ତି [ପରେ ୧୬ଶ ଛାନ୍ଦ ୪୨ ପଦ ଟିକା ଦେଖ]

୬୭–ରହସ୍ୟ–କୌତୁକ ପୂର୍ଣ୍ଣ, ଆନନ୍ଦ ଦାୟକ, କଞ୍ଚା ଓଡ଼ିଆରେ ରହସ୍ୟ ଶବ୍ଦର ଏହି ଅର୍ଥ ହୁଏ ।

୬୮–୬୯–ହଂସ ବଂଶ–ସୂର୍ଯ୍ୟବଂଶ; ପ୍ରତୋଷକ–ସନ୍ତୋଷ କାରୀ; ରାମ ସୂର୍ଯ୍ୟ ବଂଶର ପ୍ରଧାନ; ଶ୍ରୁତି ରଞ୍ଜନ–ଶୁଣିବାକୁ ମନୋହର (ଯାହା କଥା) କିମ୍ବା ଶ୍ରୁତି (ବେଦ)ର ରଞ୍ଜକ ପାଳନ କର୍ତ୍ତା; କର୍ବୂର କାନ୍ତ–(ରାକ୍ଷସ ଶ୍ରେଷ୍ଠ–ରାବଣ)ର ଗଞ୍ଜକ (ଗର୍ବନାଶ କାରୀ) କାନ୍ତିରେ–ଦୀପ୍ତୀରେ; ଦୀପକ–ତେଜିଆନ୍; ଏହିପରି ଯେ ଏହାକୁ ବିଧିରେ (ଯୋଗ ବିଧାନରେ) ଧ୍ୟାନ କରି ଭଞ୍ଜ ବୀରବର କହୁଛନ୍ତି ହେ ରାମ ଏ ସମସ୍ତ ତୁମ ରଚନା । ଏ ଗୀତ ପୂର୍ଣ୍ଣ ।



# ଚତୁର୍ଦ୍ଦଶ ଛାନ୍ଦ

## ସ୍ୱପ୍ନ ଭାବନା

( ଚନ୍ଦ୍ରଭାନୁର ବିଳାପ )

ରାଗ କଳହଂସ କେଦାର । ମଥୁରା ବିଜେ ବାଣୀ ।

ଶୁଣ ରସିକେ ରସ ଏଥୁ ଅନ୍ତରେ । କୁମାର ଶୋଇ ଅଛି ପୁର ଚତ୍ୱରେ ଯେ ।
କାତର ହୋଇ ଗୃହି ନିଦ୍ରା ବିନାଶେ । ନାହିଁ ଯାମିନୀ ନାହିଁ କାମିନୀ ପାଶେ ଯେ । ୧ ।
ବସି ଘୋଷିଲ୍ଲ ଥାଇ ତାଠାରେ ମନ । ଏଣୁ ସ୍ୱପନେ ଦେଖା ଦେଲ ସେ ଧନ ଯେ ।
ଭର ଦେଶକୁ ଗହ୍ନୁ ଦେଖିଲ୍ଲ ହାର । କୁଙ୍କୁମେ ହୋଇଅଛି ସେ ଝରଝର ଯେ । ୨ ।
ଆହାରେ ସୁକୁମାରୀ ନୃପ କୁମାରୀ । ବୋଲି ହୃଦରେ ଦକ୍ଷ କରକୁ ମାରି ଯେ ।
ଜଳ କଳଶେ ଚନ୍ଦ୍ର ବିମ୍ବକୁ ଧରି । ପାରିଲି ନାହିଁ ସୁଧା ଭୋଗକୁ କରି ଯେ । ୩ ।
ମନୁ ମୂର୍ଚ୍ଛିତି ଅବା ସ୍ୱପନ ବୋଲି । ଜାଣିଲି ଏହି ଦେହେଁ କୃତାର୍ଥ ହେଲି ରେ ।
ସାକ୍ଷାତ ପରି ଦେଇ ସ୍ୱପନ ସଙ୍ଗ । କଲୁ ତ କାମବ୍ୟାଧ କର-କୁରଙ୍ଗ ରେ । ୪ ।
ସ୍ୱର୍ଗ ସମ୍ପଦ ଯଉଁ କର୍ମରେ ଥାଇ । ବିଚିତ୍ର ମଣେ ବଜ୍ର ପତନ ତହିଁରେ ।
ତୋର ହୃଦୟ ବନ୍ଧୁ କରୁଣା ସ୍ଥାନ । ଚହୁଁ ଅଙ୍କୁରି ଯଥା କଠିନ ସ୍ତନରେ । ୫ ।

---

ପାଠାନ୍ତର– ୧, ସ୍ୱପନେ ଅଙ୍ଗେ ।

---

ସ୍ୱପ୍ନରେ କୁମାରର ଅବସ୍ଥା ବର୍ଣ୍ଣନା କରୁ ଅଛନ୍ତି ।

୧–ପୁର ଚତ୍ୱରେ–ନଅର ଅଗଣାରେ; ନାହିଁ ଯାମିନୀ–ରାତି ପାହିଯାଇଛି ।

୨–ଥାଇ–ଥାଏ ବୋଲି ;

୩–ସ୍ୱପ୍ନରେ ତାକୁ ଦେଖିବାଟା ଜଳ କଳଶ (ପାଣି ମାଠିଆ)ରେ ଚନ୍ଦ୍ରର ପ୍ରତିବିମ୍ବ ଧରିଲା ପରି; ସେ ପ୍ରତିବିମ୍ବ ଚନ୍ଦ୍ରରୁ ସୁଧା ( ଅମୃତ) ଭୋଗ କାହୁଁ ହେବ ।

୪–କାମ ବ୍ୟାଧକର କୁରଙ୍ଗ–କାମ ରୂପ ବ୍ୟାଧ (ପଶୁହନ୍ତା ଶବର) ହାତରେ କୁରଙ୍ଗ (ସହଜ ବଧ୍ୟ ମୃଗପରି )

୫–ଏ ବଡ଼ ଆଶ୍ଚର୍ଯ୍ୟର କଥା; ଯେଉଁ କର୍ମରେ ସ୍ୱର୍ଗ ସମ୍ପଦ (ସମ୍ପତ୍ତି) ଥାଏ ସେଥିରେ ପୁଣି ବଜ୍ର ପତନ ! କାହିଁକି ନ ହେବ ? ତୋର ହୃଦୟ କରୁଣା (ଦୟା)ର ସ୍ଥାନ; ସେଥିରୁ ତ ପୁଣି କଠିନ ( କଠୋର ) ସ୍ତନ ବାହାରିଛି ! କଠୋରତା ଦୟାର ବିପରୀତ । ଯୁବତୀ ସ୍ତନର କଠିନତା କାବ୍ୟ ବର୍ଣ୍ଣନାରେ ପ୍ରସିଦ୍ଧ ।

ମନକୁ ଯେବେ ପାଶେ ରଖିଲୁ ତୋର । କି ଅପରାଧେ ମୋତେ କଲୁ ଅନ୍ତର ରେ ।
ଜାଣିମାରେ ମୋ ଦୋଷ ନାହିଁ ତ କିଛି । ଦିଶେ ଯା ବିଶ୍ବ ପୂର୍ଣ୍ଣ କରୁଣା ଅଛି ରେ । ୬ ।
କି ଅବା ମୋତେ କାତ ବୋଲିବା ପାଇଁ । ଲଜ ପାଇଲୁ ଗଣ୍ଡ ଚନ୍ଦ୍ରମା ମୁହିଁ ରେ ।
ସେବି ମୁଁ ଥାନ୍ତି ପାଶେ ହୋଇ କୋୟର । ଏହା କିପାଁ ନ କଲୁ ନାଗରୀ ବର ରେ । ୭ ।
ଶିବ କେମନ୍ତ ଦେଖ ବହିଲେ ଶିରେ । ଶଶୀ ଶବଦ ଥାଉଁ ଚନ୍ଦ୍ର ସ୍ନେହରେ ଯେ
ଏମନ୍ତ ଆଣ ତୋର ଅବଧାନକୁ । ପ୍ରଭୁ ସେ ବଡ଼କରେ ଦାସ ଜନକୁ ରେ । ୮ ।
ଉସ୍ମକୁ ଅଙ୍କୁରଇ ଯାହା ନୟନ । ତା ଥାଉଁ ଉସ୍ମହେଲେ ଆଶାୟି ଜନ[୨] ରେ ।
ଏ ଅପଯଶ ଦୋଷ ହେବ କାହାରଂ । ଚରଣ ଧରି ମୁଁ ଯେ ଶରଣ ତୋର ରେ । ୯ ।
ଜଲେ ତୁ ଚିର ଅନୁଗ୍ରହ ସୁଦନ୍ତି । ଅଜତା ଚିତ୍ରେ ଚିତ୍ରକାର ହୁଅନ୍ତି ରେ ।
ସେବାରେ ଆଜୀ ଫୁଲ ଗୁଚ୍ଛାରେ ମାଳୀ । ହୋଇ ଲଗାନ୍ତି କାମ ବଦନେ କାଳି ।୧୦ ।

---

ପାଠାନ୍ତର—୨, ଯେନ ।

---

୬-ଦିଶେ ଯା ବିଶ୍ବ—ବିଶ୍ବମାନଙ୍କରେ ଯାହା ତୁ ଦେଖା ଯାଉ (ଯେଉଁଆଡ଼େ ଗୁହେଁ ତେଣେ ଯାହା ତୁ ଏବେ ଦିଶୁ );

୭—କୋୟର—ଦାସ;

୮—ଶଶୀ ଶବଦ ଥାଉଁ ଶଶ—ଠେକୁଆକୁ ମାରିଛନ୍ତି ବୋଲି ତାଙ୍କର ଶଶୀ—ଏହି ନାମରେ ସେ ଜୀବ ହତ୍ୟା କଳଙ୍କ ଲଗିଥିଲେ ମଧ୍ୟ; ପ୍ରବାଦ ଅଛି ଚନ୍ଦ୍ର କିରଣରେ ଠେକୁଆ ଖୁସି ହୋଇ ଗାତରୁ ବାହାରି ବୁଲିଲା ବେଳେ ସେହି ଚନ୍ଦ୍ର କିରଣରେ ବାଘ ତାକୁ ଦେଖି ମାରିଦେଲା, ତେଣୁ ସେହି ଠେକୁଆ ଚନ୍ଦ୍ରଙ୍କ ଛାତିରେ ବସିଛି ।

୯—ଉସ୍ମକୁ ( ପାଉଁଶକୁ )—ପୋଡ଼ି ଯାଇଥିବା ଜୀବକୁ—ଅଙ୍କୁରଏ—( ଜୀବନ୍ୟାସ କରି ବଢାଏ ) ଯାହାର ନୟନ ( ଆଖି ) [ ତୋର ଦୃଷ୍ଟିରେ ଅମୃତ ଅଛି ଏହିଭଳି ] ଆଶାୟୀ ଜନ—ଆଶାକରି ରହିଥିବା ଲୋକ ( ମୁଁ )

୧୦— ସୁଦନ୍ତୀ—ସୁନ୍ଦର ଦାନ୍ତ ଯାହାର; କାମ ବଦନେ କାଳି ଲଗାନ୍ତି—[ ତୋର ଏପରି ସେବା କରିବାର ସୁବିଧା ପାଇଲେ କାମକୁ ଅପମାନ ଦିଅନ୍ତି । ]

ଆଗେ ରଜଦ୍ଵାର ମାନଙ୍କରେ ଗାଲରେ କଳା ଲଗାଇ ଲୋକକୁ ଦାଣ୍ଡରେ ବୁଲାଇ ଅପମାନ ଦେବାର ଏକ ରୀତି ଥିଲା ।

ପଗଣେଶ୍ୱରି ବିନା ଆନ ବଚନେ । ଡ଼ାକନ୍ତି ନାହିଁ ତୋତେ ରଜନୀ ଦିନେ ରେ ।
ପ୍ରସଙ୍ଗ ବଶେ ଆରମ୍ଭିଲେ ତୁ କୋପ । ଛଡ଼ାଇ ଥାନ୍ତି ସ୍ମରୁ ପ୍ରକାଶି ତାପ ରେ । ୧୧ ।
ଦ୍ରାକ୍ଷାରୁ ସ୍ୱାଦୁ ଘନସାରୁଁ ଶୀତଳ । ପିକୁଁ ସୁସ୍ୱର ଲବଣୀରୁ କୋମଳ ରେ ।
ଭଷା କହିଲ ବେଳେ ନାସା ଫୁଲଇ । ଚକ୍ରବର୍ତ୍ତୀ ପଣକୁ ଗଣନ୍ତି ନାହିଁ ରେ । ୧୨ ।
ଏତେ ସହିଲ ନାହିଁ ଖଳ ବିଧାତା । ମୁଁ ତାର କଉଁ ଶତ୍ରୁ ନ କଲ ଚିନ୍ତା ଯେ ।
ତୁଷାର ନାଶ କରେ ଜନମ ସ୍ଥାନ । ତା ଠାରେ ନ ସମ୍ଭାଦେ ଏ କୂଟମାନ ରେ । ୧୩ ।
ଦୁର୍ବଳ ମାରିବାକୁ ସମସ୍ତେ ଆଗ । କାମକୁ ମହାଦେବ କଲେ ଅନଙ୍ଗ ଯେ ।
ନୋହିଲ ତାଙ୍କ ଦର୍ପ ଦଳନ କଳି[୩] । ବିନା ଦୋଷରେ ଶରେ ମୋତେ ତ ଜାଳି ରେ । ୧୪ ।
ମିତ୍ରେ ଶୁଣି ବୋଇଲେ ଜୀବନ ରଖ । ଜୀବନରୁ ଅଧିକ କେହି ନ ଲେଖ ହେ ।
ଜୀବ ଥିଲେ ହୋଏ ସବୁ ପ୍ରାପତ । ହୁଅଇ ସମ୍ଭାବିତ ଅସମ୍ଭାବିତ ହେ । ୧୫ ।
ଧ୍ରୁବ ବାଳକ ବ୍ରହ୍ମଜ୍ଞାନ କହିଲ । ଅଗସ୍ତ୍ୟ କରେଦରେ ସିନ୍ଧୁ ରହିଲ ଯେ ।
ପକ୍ଷ ନ ଥାଇ କପି ଗଗନେ ଗତି । କର୍ପୂରରୁ ବିରହେ ଜାତ ତପତି ଯେ । ୧୬ ।

---

ପାଠାନ୍ତର—[୩], ଭଳି ।

---

୧୨— ତୋ ଭଷା କିପରି ? ଦ୍ରାକ୍ଷା ( ଶୁଖିଲ ଅଙ୍ଗୁରଫଳ—ସେକାଳେ ରେଳ ପ୍ରଭୃତି ନଥିବାରୁ କଞ୍ଚା ଅଙ୍ଗୁର ଫଳ ଏ ଦେଶକୁ ଆସିପାରୁ ନଥିଲ—ଦ୍ରାକ୍ଷାକୁ ମନାକା ମଧ୍ୟ ଏବେ କହନ୍ତି, ଦ୍ରାକ୍ଷାରୁ ସ୍ୱାଦୁ , ଘନସାର ( କର୍ପୂର )ରୁ ଶୀତଳ, ପିକୁଁ ( କୋକିଳ ସ୍ୱରରୁ ) ସୁସ୍ୱର ( ଅଧିକ ପ୍ରିୟ ), ଲବଣୀ (ଲହୁଣୀ)ରୁ କୋମଳ ନାସା ଫୁଲଇବାରେ ଉପର ପଦରେ କୁହା ଯାଇଥିବା ମାନର କୋପ ସ୍ପଷ୍ଟ ହେଉଛି । ଚକ୍ରବର୍ତ୍ତୀପଣ—ସମ୍ରାଟ ( ସବୁଠାରୁ ବଡ଼ ରଜା ) ପଣିଆ; ସ୍ତ୍ରୀର ଦାସତ୍ୱରେ ନିଜକୁ ଚକ୍ରବର୍ତ୍ତୀ କହିବାର ଓଡ଼ିଶାର କବିତାରେ ବହୁପ୍ରାଚୀନ । ଜୟଦେବ ଗୀତ ଗୋବିନ୍ଦରେ ମଧ୍ୟ କହିଛନ୍ତି " ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ" ଗଣନ୍ତି ନାହିଁ—ଖାତିରି କରନ୍ତି ନାହିଁ ।

୧୩—ତୁଷାର ( ହିମ ) ବିଧାତାର ଜନ୍ମସ୍ଥାନ ( ପଦ୍ମ )କୁ ନାଶକରେ; ତଥାପି ବିଧାତା ତୁଷାର ଠାରେ ମଧ୍ୟ ଏ କୂଟମାନ (କପଟରେ ମାରିବା ରୀତି ସବୁ) ନ ସମ୍ଭାଦେ ( ଆଚରଣ କରେ ନାହିଁ )

୧୪—ଦୁର୍ବଳ ମାରିବାକୁ ସମସ୍ତେ ଆଗ—ଏ ପାଦ ଉପର ପଦ ସାଙ୍ଗେ ଯିବ; କଲେ ଅନଙ୍ଗ—[ପୋଡ଼ି] (ଦେହ ହୀନ କଲେ); ତାଙ୍କ—କାମଙ୍କର;

୧୬—୧୭—୧୮—ଅସମ୍ଭାବିତ—(ଅସମ୍ଭବ) [କଥା] କିପରି ସମ୍ଭାବିତ (ସମ୍ଭବ) ହୋଇଛି ତାହା ଉଦାହରଣ ଦେଇ ଗୋଟି ଗୋଟି କରି ମିତ୍ରମାନେ ବୁଝାଉଛନ୍ତି; ଯଥା—

ବିଷହିଁ ହୋଏ ହିତ ସନ୍ନିପାତରେ । ବାସୁକି ବିନା ପୃଥ୍ୱୀ ଧାରଣ ନରେ ଯେ ।
ଗଙ୍ଗ୍ୟ ନଥାଇ ସର୍ବ ସମ୍ମତେ ରଜା । କନ୍ଦର୍ପ ପାଉଅଛି ପୃଥ୍ୱୀରେ ପୂଜା ଯେ । ୧୭ ।
ଜଳ ବିହୀନେ ସବୁକାଳେ ପ୍ରକାଶ । ସବିତା-କରେ ହୋଇ ଅଛି ସାରସ ଯେ ।
ଶବଦ ଶୁଣେ ସର୍ପ ଶ୍ରୁତି ନ ଥାଇ । ପ୍ରହଲ୍ଲଦ ମହୀନ୍ଦ୍ର ଜନକ ଦ୍ରୋହୀ ଯେ । ୧୮ ।
ଏ କଥ ମାନ ଯଥା ହୋଇଛି ଘେନ । ତଥା ସତ ହୋଇବ ତୁମ୍ଭ ସ୍ୱପନ ହେ ।
ସ୍ୱପନ ଯେବେ ତୁମ୍ଭେ ସତ ନ କର । କହ କାହିଁକି ଅଛି ତା ଦେଲ ହାର ଯେ । ୧୯ ।
ଯେବେ ସୁଯୋଗ ନାହିଁ ତୁମ୍ଭ କର୍ମର । କାହିଁ ସିଂହଳ ଦ୍ୱୀପ କାହିଁ ଏ ପୁର ହେ ।
କାହିଁ ସିଦ୍ଧ ଯୋଗିନୀ କେ କହିଁ ଥିଲ । ସ୍ୱପ୍ନ ପରି ମାୟାରେ ସାକ୍ଷାତ ହେଲ ଯେ । ୨୦ ।
ଆରତ ହେଲେ କାର୍ଯ୍ୟ ନୁହଇ ବେଗ । କାଳକୁ ଗୁହିଁ ଘେଗ ହୁଅଇ ଯୋଗ ହେ ।
କୁମାର କହେ ମୋର ମୋହିଲ ଚିତ୍ତ । ଆରତ ହୋଇବାର ନୋହେ ଆୟତ୍ତ ଯେ । ୨୧ ।
ନାରୀଙ୍କୁ ବଡ଼ ହୋଇ ଜଗତେ ନାହିଁ । ବାନରୀ ରୂପେ ହେଲେ ପବନ ମୋହି ଯେ !
ଏକେ ଅଦୃଷ୍ଟ—ରମ୍ଭା ଦୂଜେ ଧୀବରୀ । ପରାଶର ଋଷିର ବିବେକ ହରି ଯେ । ୨୨ ।

---

ପାଠାନ୍ତର— ୪, କାହିଁ ।

---

ଧ୍ରୁବ ପିଲ ହୋଇ ମଧ୍ୟ ବ୍ରହ୍ମଜ୍ଞାନ (ବିଶ୍ୱତତ୍ତ୍ୱ ବିଷୟରେ ଜାଣିବା କଥା) କହିଲ, କରେଦରେ—ହାତ ଭିତରେ (ଅଗସ୍ତ୍ୟ ସମୁଦ୍ର ଚଳୁ କରିଥିଲେ ।)
କପି—(ବାନର, ହନୁମାନ) ଆକାଶରେ ଉଡ଼ି ସମୁଦ୍ର ଡେ଼ଇଁ ଲଙ୍କାକୁ ଯାଇଥିଲ ।
କର୍ପୂର ବିରହରେ ତାତିଲ ଲଗେ; ସନ୍ନିପାତରେ ବିଷ ହିତ; ବାସୁକୀଙ୍କ ରଜସୂୟ ଯଜ୍ଞକୁ ପଠାଇ ଦେଇ ନର (ଅର୍ଜ୍ଜୁନ) ପୃଥିବୀ ଟେକି ଧରିଥିଲ । ଗଙ୍ଗ୍ୟ ନ ଥିଲେ ମଧ୍ୟ କନ୍ଦର୍ପକୁ ସମସ୍ତେ ରଜା କହନ୍ତି । ଜଳରୁ ଜନ୍ମେ ଯେଉଁ ପଦ୍ମ ସେ ପ୍ରଚଣ୍ଡ ସୂର୍ଯ୍ୟ କିରଣରେ ପ୍ରକାଶ ହୁଏ (ଫୁଟେ); ସାପ ଆଖିରେ ଶୁଣେ; ପ୍ରହଲ୍ଲାଦ ବାପ ଠାରେ ଦ୍ରୋହୀ ହୋଇ ମଧ୍ୟ ମହୀନ୍ଦ୍ର (ପୃଥିବୀରୁ ଯାଇ ସ୍ୱର୍ଗରେ ଇନ୍ଦ୍ର ହୋଇଥିଲ—'ମହେନ୍ଦ୍ର' ଏପରି ପାଠ ହୋଇଥିବା ସମ୍ଭବ)

୧୯—ତା ଦେଲ ହାର—ଲବଣ୍ୟବତୀ ଦେଇଥିବା ହାର ସତରେ ଚନ୍ଦ୍ରଭାନୁ ବେକରେ ଥିଲ ।
୨୦—ତୁମ୍ଭ କର୍ମର—ତୁମ୍ଭ କପାଳରେ; ସିଦ୍ଧ ଯୋଗିନୀ—ଯେ ସ୍ୱପ୍ନରେ ଦୁହିଁକୁ ଭେଟାଇଥିଲ ।
୨୧—ଆରତ—ବ୍ୟାକୁଳ; ଆୟତ୍ତ ନୁହେ—ମୋ ହାତରେ ନାହିଁ ।

୨୨—ଅଞ୍ଜନା ବାନରୀର ରୂପରେ ପବନ ଦେବତା ମୁଗଧ ହୋଇଥିଲେ; ସେଥିରୁ ହନୁମାନ ଜନ୍ମ ହେଲେ ( ପୁରାଣରେ ଅଛି ) । ସତ୍ୟବତୀ ଧୀବରୀ, (କେଉଟୁଣୀ,

ଅମୂଲ୍ୟ ରମା ଜନ୍ମ ଦେଖା ଉତାରେ । ବଶ ନୋହିବ କେବା ଯୁବା ମାତରେ* ଯେ ।
ଏମନ୍ତ ପଦାର୍ଥ କି ଲାବଣ୍ୟ ନିଧି । ସ୍ୱପ୍ନେ ତା ପର ଦେଖି ନ ଥିବେ ବିଧି ଯେ । ୨୩ ।
ବାଳାର ଶୋଭା ସୁବେଶ କୁ ସୁବେଶ । ଅଧରେ ସମାପତ ହୁଅଇ ହାସ ଯେ ।
ଅରୁଣ କୋଳେ ନବ ଚନ୍ଦ୍ରମା ଦିଶି । ବିଜୁଳି ପରି ଯାଇ ସେ କ୍ଷଣେ ମିଶି ଯେ । ୨୪ ।
କାଚ କଳସେ ଯଥା ଜଳ ଗୁପତ । ପଡ଼ିଲା ପରି ଦିଶେ ନ ପଡ଼ଇ ତ ଯେ ।
ହସିଲା ବେଳେ ଖସି ପଡ଼ିଲା ପରି । ଖସି ନ ପଡ଼େ ତଥା ଅମୃତ ଧାର ଯେ । ୨୫ ।
ତା ନେତ୍ର ଗତା ଗତ ଅପାଙ୍ଗ ସରି । ଦୁଇ ଦିଗକୁ ଡାକେ କେମନ୍ତ କରି ସେ ।
ଅନଙ୍ଗ କି ତୁରଙ୍ଗ ଧାଉଡ଼ି ଦେଇ । ତୀର ସନ୍ଧାନେ ଧର୍ଯ୍ୟ ଘଉଡ଼ି ନେଇ ସେ । ୨୬ ।
ରହିଲା ମାତ୍ରେ ବୁଡ଼ି ଯାଇ ଚେତନ । କେଡ଼େ ମାଧୁରୀ ତହିଁ ପକ୍ଷ୍ମ ପତନ ଯେ ।
ଯେନିକି ବେନି ତାଟଙ୍କକୁ ସୁରବନ୍ଧ । ଉଦିତ ମୁଦିତକୁ ଭଜେ ନୀଳାବ୍ଜ ଯେ । ୨୭ ।

---

ପାଠାନ୍ତର—*, କେଉଁ ଯୁବା ହଯାରେ ।

---

କେଉଟ କନ୍ୟା ) ବୋଲି ପ୍ରସିଦ୍ଧ । ଅଦୃଷ୍ଟ ରଜା–ଯୌବନ ପାଇ ନଥିବା ବାଳିକା ଧୀବରୀ ଯୌବନ ପାଇ ନ ଥିବା ଅବସ୍ଥାରେ ପରଶରଙ୍କ ଆଡ଼େ ବ୍ୟାସ ଦେବଙ୍କୁ ଜନ୍ମ କରିଥିବା ପୁରଣରେ ଅଛି ।

୨୪—ସୁବେଶକୁ ସୁବେଶ—ତାର ପ୍ରାକୃତିକ ଶୋଭା ବେଶରେ ସୁନ୍ଦର ହେଉନାହିଁ ବରଂ ବେଶକୁ ସୁନ୍ଦର କରୁଛି । ହାସ ବା ମନ୍ଦହାସ ଟିକିଏ ବାହାରି ଅଧରରେ ସମାପତ ହୁଏ (ପୁଣି ଲୁଚିଯାଏ) ସେ ଦିଶେ କିପରି—ଅରୁଣ (ବାଳସୂର୍ଯ୍ୟ) କୋଳରେ ଚନ୍ଦ୍ର ଟିକିଏ ଦିଶି ପୁଣି ବିଜୁଳି ପରି (ହଠାତ୍) ସେହି ବାଳ ସୂର୍ଯ୍ୟରେ ମିଶିଗଲା ପରି ।

୨୫—ଏ ଉପମାର ସୂଚନା ଅତି ଚମତ୍କାର–କାଚ କଳେଶେ (ଶିଶିରେ) ଜଳ ଗୁପତ (ଭିତରେ ଥାଇ) ପଡ଼ିଲା ପରି ଦିଶେ ଅଥଚ ପଡ଼େ ନାହିଁ । ସେହି ପରି ସେ ହସିଲା ବେଳେ ଅମୃତ ଧାର ଖସି ପଡୁଛି ବୋଲି ମନେ ହୁଏ ।

୨୬—ଅପାଙ୍ଗ (କଟାକ୍ଷ) ପରି ତା ନେତ୍ର (ଆଖି ଡ଼ୋଳା) ଏ ପାଖ ସେ ପାଖ ଚଳିବାରେ ଅନଙ୍ଗ (କନ୍ଦର୍ପ) ତୀର ସନ୍ଧାନରେ (ଶର ଲାଖ ବସାଇ) ତୁରଙ୍ଗ ଧାଉଡ଼ି ଦେଇ (ଘୋଡ଼ା ଉପରେ ଚଢ଼ି ଏଣିକି ତେଣିକି ଦଉଡ଼ି) [ପୁରୁଷର] ଧର୍ଯ୍ୟକୁ ଘଉଡ଼ି (ତଡ଼ିଦେଲା ପରି) ଲଗେ-ତୁରଙ୍ଗ ଧାଉଡ଼ି ଡ଼ୋଳାର ଚଞ୍ଚଳତାକୁ ବୁଝାଉଅଛି ।

୨୭—ବୁଡ଼ିଯାଇ ଚେତନ—ମନୁଷ୍ୟ ଆତ୍ମହରା ହୁଏ; ପକ୍ଷ୍ମ ପତନ—ଆଖିପତା ପଡ଼ିବା ଉଠିବା କାନର ଦୁଇ ତାଟଙ୍କ ସୁରବନ୍ଧ (ସୂର୍ଯ୍ୟ ଓ ଚନ୍ଦ୍ର) ପରି ହେଲା ସେଥିରେ ନାଳାବ୍ଜ (ନୀଳପଦ୍ମ) ପରି ଆଖି ସେ ଉଦିତ ମୁଦିତକୁ ଭଜେ (ଫୁଟିଯାଏ ମୁଦି ହୋଇଯାଏ) ପଦ୍ମ ସୂର୍ଯ୍ୟରେ ଫୁଟେ ଚନ୍ଦ୍ରରେ ମୁଦି ହୋଇ ଯାଏ;

ସୁଟଙ୍କ ଘଞ୍ଚ କୁଚ ଯେମନ୍ତ ଦିଶେ । କେମନ୍ତ ବୋଲି କୁହା ନ ଯିବ ଶେଷେ ଯେ ।
ଏମନ୍ତ ହେଲେ ବାଣୀ ପବିତ୍ର ପାଇଁ । ବର୍ଣ୍ଣନା କରୁଛାଇଁ ଉପମା ଦେଇ ଯେ । ୨୮ ।
ସୁନ୍ଦର ସଦନେ କି ସ୍ୱର୍ଣ୍ଣ ପଞ୍ଜରୀ । ଧାତା ରଖିଛି ଅକ୍ଷି ପକ୍ଷି କି ଧରି ଯେ ।
ମେରୁ ଏଡ଼ିକି ବୋଲି ଉଚ୍ଚ ଦେଖାଇ । ମନ ମିହିର କର ଛାଡ଼ି ନ ଯାଇ ଯେ । ୨୯ ।
ବାଳା ଅନେକ ଦାହ କନକ ବଲ୍ଲୀ । ଭୁଜାନ୍ତରକୁ କ୍ରୋଡ଼ ସମସ୍ତେ ବୋଲି ଯେ ।
ସ୍ତନ ମଧୁର ମଧୁ କୋଷକୁ ଆଣି । ସଞ୍ଚିଲେ ରୋମାବଳୀ ସରଘା ଶ୍ରେଣୀ ଯେ । ୩୦ ।
ଶୃଙ୍ଗାର ରସ ଲତା ରୋମାଳି ବ୍ୟାଜ । ଫଳିଛି ପ୍ରେମାମୃତ ଫଳ ଉରଜ ଯେ
ଇତର ଭାଗ୍ୟେ ନିକି ଭୋଗ[୭] ହେବ ସେ । ଧନ୍ୟ ବର୍ଣ୍ଣିଲ ସ୍ତନ ମନ୍ତ୍ରୀଜ ଭାଷେ ଯେ । ୩୧ ।

---

ପାଠାନ୍ତର—୭, ପଦ୍ମପତ୍ର ।

---

୨୮—ଶେଷେ—ବାସୁକୀ ଦ୍ୱାରା; ବାସୁକୀର ସହସ୍ର ଫଣା ବା ମୁଖ ବୋଲି ପ୍ରସିଦ୍ଧ; ଏପରି ହେଲେହେଁ ବାଣୀକୁ ପବିତ୍ର କରିବା ପାଇଁ ବର୍ଣ୍ଣନା କରୁଥାଇଁ ।

୨୯—ତାହାର ଦେହ ଘର ପରି । ପୁରୁଷର ରୂପ ଆଖି ପକ୍ଷୀକୁ ଧରି ରଖିବା ପାଇଁ କୁଚ ସୁନା ପଞ୍ଜୁରୀ; ମେରୁ ପର୍ବତ ଏଡ଼ିକି ବୋଲି କୁଚ ଦେଖାଉଛି, ତେଣୁ ମନ ରୂପ ମିହିରକର (ସୂର୍ଯ୍ୟ କିରଣ) ତାକୁ ଛାଡ଼ି ପାରୁ ନାହିଁ (ମନ ଲାଗି ରହୁଛି) ମେରୁ ପର୍ବତରୁ ସୂର୍ଯ୍ୟ ଅସ୍ତ ହୁଏ ନାହିଁ ବୋଲି ପ୍ରସିଦ୍ଧ ଅଛି ।

୩୦—ଏ ବାଳା ଅନେକ ଦାହ କନକ ବଲ୍ଲୀ (ଅନେକଥର ପୋଡ଼ା ହୋଇଥିବା ସୁନାର ଲତା) [ପୋଡ଼ୁଥିଲେ ସୁନାର ତେଜ ବଢ଼ୁଥାଏ ।] ବଲ୍ଲୀ—ଏଠାରେ ଲତା ବା ବୃକ୍ଷ, ଭୁଜାନ୍ତର (କାଖକୁ) ସମସ୍ତେ କ୍ରୋଡ଼ ବୋଲି କହନ୍ତି । କିନ୍ତୁ ଏଠାରେ ସେହି କ୍ରୋଡ଼ ଏ ଗଛର କ୍ରୋଡ଼ ( କୋରଡ଼ ) ହେଲା । କୋରଡ଼ରେ ମହୁ ଫେଣା କରି ସରଘା ଶ୍ରେଣୀ (ମହୁ ମାଛିମାନେ) ମହୁ ରଖନ୍ତି । ଏଠାରେ ସ୍ତନ ମଧୁ କୋଷ (ମହୁ ଫେଣା, ମଧୁଚକ୍ର) ରୋମାବଳୀ (ନାଭି ତଳକୁ ଲମ୍ବିଥିବା ରୋମ) ମହୁ ମାଛି ପରି ।

୩୧—ରୋମାଳୀ ବ୍ୟାଜ (ଛଳ, ବାହାନା); ପ୍ରକୃତରେ ଶୃଙ୍ଗାର ରସର ସେ ଏକ ଲତା ସେଥିରେ କୁଚ ଦ୍ୱୟ ପ୍ରେମର ଅମୃତ ଫଳ । ଇତର (ଅପରଲୋକ ବା ହୀନ ଲୋକ); [ ଏଠାରେ ମନ୍ତ୍ରୀପୁଅ ଚନ୍ଦ୍ରଭାନୁର ସ୍ତନ ବର୍ଣ୍ଣନାକୁ ପ୍ରଶଂସା କରିବା ଦ୍ୱାରା କାବ୍ୟରସ ନଷ୍ଟ ହୋଇଅଛି ।]

ଜାଣିଛି ସେହି ସ୍ତନ କିଛି ସମାନ । ଲଭି ଏମାନ ଲଭିଲେ କି ଏମାନ ଯେ ।
ଶ୍ରୀଫଳ ଯେ ଶ୍ରୀମନ୍ତ ପ୍ରଥମୁଁ ହୋଇ । ତୃଣଗଜ ପଦକୁ ପଛେ ପକାଇ ଯେ । ୩୨ ।
ରୁଦ୍ର ଶିବ ହେବାର ସଂଶୟ ଦୂର । ଏତେ କାଳକେ ଆସି ହେଲ ମୋହର ଯେ ।
ଯେବେ ଲଭିଲନି ସେ ସ୍ତନ ସରଣ । ଜାନୁ ସିଂହାସନେ ବସିବ ଅବଶ୍ୟ ହେ । ୩୩ ।
କୁମାର ବୋଲେ ଆନ ବ୍ୟବସାୟକୁ । କରି କି କାର୍ଯ୍ୟ ବର୍ଣ୍ଣିଥିବା ତାହାକୁ ଯେ ।
କାନ୍ତି ଏମନ୍ତ ଝଳି ତହିଁ କି ଗ୍ରହିଁ^[୭] । ଭାଲେ ତିଳକ ଲେଖି ହୋଇବ ନାହିଁ ଯେ । ୩୪ ।
ପୀୟୂଷ ପିତୁଳାକୁ ସୁନାର ଶାଣ । ଏହା ଭାବି କି ଧାତା କଲା ଭିଆଣ ଯେ ।
ସଂସାର ସାର ସବୁ ଲାବଣ୍ୟମାନ । ପ୍ରତିବିମ୍ବ ଦେଖିବା^[୮] ହେବାକୁ ସ୍ଥାନ ଯେ । ୩୫ ।
କି ଗଉରବ ଅନ୍ୟ ଗଉର ଦ୍ରବେ । କୁଙ୍କୁମ ଶୋଭା କରେ ଯେ ଅବୟବେ ଯେ ।
ସିନ୍ଧୁକୁ ଗୁରୁ କରି ମନ ଏମନ୍ତ । ମିଶିବି ଅଙ୍ଗେ ଜଳେ ଜଳ ଯେମନ୍ତ ଯେ । ୩୬ ।

---

ପାଠାନ୍ତର—୭, ଯହିଁ, ୮, ଦେବାକୁ

---

୩୨—୩୩—ମନ୍ତ୍ରୀ ପୁଅ କହୁଛି ସେହି ସ୍ତନ ସଙ୍ଗେ କିଛି ( କେତେ ) ସମାନ (ସମାନତା, ସାମ୍ୟ ) ଲଭି ଏମାନ ( ତଳେ କହୁଥିବା କଥାମାନ ) ଏ ମାନ ( ଏ ସମ୍ମାନ ) ପାଇଲେ କି ? ଶ୍ରୀଫଳ ( ବେଲ କିମ୍ବା ନଡ଼ିଆ ) ପ୍ରଥମରୁ ଶ୍ରୀମନ୍ତ ହେଲା ( ତା ପ୍ରଥମରୁ ଶ୍ରୀ ଲଗିଲା ଏହାହିଁ ତାର ସମ୍ମାନ ) ତୃଣଗଜ (ତାଳ) ପଦକୁ ( ଗଜ ପଦକୁ ) ପାଇକରି ମଧ୍ୟ ପଛକୁ ପକାଇଲା । ଅର୍ଥାତ ଗଜ ତୃଣ ନହୋଇ ତୃଣଗଜ ହେଲା । ରୁଦ୍ର ( ମହାଦେବ, ଶିବଲିଙ୍ଗ ) ସେ କାହିଁକି ଶିବ ( ମଙ୍ଗଳ ମୟ ) ହେଲେ, ଏ ସଂଶୟ ( ସନ୍ଦେହ ) ଏବେ ଦୂର ହେଲା । କାହିଁକି ନା ଏ ସ୍ତନ ସଙ୍ଗେ ସମାନ ହୋଇ ସେ ମଙ୍ଗଳମୟ କାହିଁକି ନ ହେବେ । ଯେବେ ସେ ସ୍ତନ ଛୁଇଁଲଣି ତେବେ ତା ଜାନୁରୂପ ସିଂହାସନରେ ଅବଶ୍ୟ ବସିବ ।

୩୪—କାନ୍ତି ଏପରି ଯେ ତାର ଝଳିକୁ (ତେଜକୁ) ଗ୍ରହିଁ (ଅନୁରୂପ) ସୁନ୍ଦର ଦିଶିବା ଭଳି ଭାଲେ (କପାଳରେ) ତିଳକ ଲେଖି ହେବନାହିଁ । ଅର୍ଥାତ୍ ସେଥିରେ କଳା ଲଗା-ଇବାକୁ ହାତ ଯିବନାହିଁ, କିମ୍ବା ତହିଁ କି ଗ୍ରହିଁ (କାନ୍ତିକୁ ଗ୍ରହିଁ) ଭାଲରେ ଯେଉଁ ଝଳି (ଜ୍ୟୋତି) ତହିଁରୁ ତିଳକ (ଅତି ଅଳ୍ପ ମାତ୍ର ହେଲେ) ଲେଖି ବର୍ଣ୍ଣନା କରି ହେବନାହିଁ ।

୩୫—ପୀୟୂଷ-ଅମୃତ; ଶାଣ—ବନକ; ଲାବଣ୍ୟମାନ—ଶୋଭମାନ; ପ୍ରତିବିମ୍ବ—ଉପମା ।

୩୬—ଗଉରଦ୍ରବେ—ଦେହକୁ ଉଜ୍ଜ୍ୱଳ କରୁଥିବାରେ ଲାଗୁଥିବା ତରଳ ପଦାର୍ଥରେ—ବଟା ହଳଦି, କୁଙ୍କୁମ ପ୍ରଭୃତି; କିମ୍ବା ଗଉର ଦ୍ରବ୍ୟେ ଏପରି ପାଠ ହୋଇପାରେ ।

ମମତା ଏହି ଖଗବର ପ୍ରକାର । ତା ଆଗେ ବସିଥିବି ଯୋଡ଼ିଣ କର ଯେ ।
ପାର୍ବତୀ ଶିବ ଅର୍ଦ୍ଧ ଅଙ୍ଗ ପରି ରେ । ସେ ଆଲିଙ୍ଗନ ହୋଇଥିବ ଶରୀରେ ଯେ । ୩୭ ।
ବିଷ୍ଣୁ କୋଳୁଁ କମଳା ପଗଯେ ସେହିଂ । ଅନ୍ତର ହୋଇ ଦଣ୍ଡେ ନ ଯିବ କାହିଁ ଯେ ।
କଳେବରକୁ ଯଥା ନଛାଡ଼େ ଛାଇ । ମୁଁ ତାକୁ ନ ଛାଡ଼ିବି ତେମନ୍ତ ହୋଇ ଯେ । ୩୮ ।
ଯେବେ ଜୀବନେ ଥିବି ଉପାୟ କରି । ତପେ ହେଲେ ମନାଇ ହର ଗଉରୀ ଯେ ।
ଲଭିବି ବଲ୍ଲଭୀ–ରତନ ଅବଶ୍ୟ । ଯୋଗେ ସଙ୍ଗମ ନୋହୁଁ ହୋଇଲେ ନାଶ ଯେ । ୩୯ ।
ତାକୁ ପାଇବି ଅଛି ଏହି ଭରସା । ଚନ୍ଦ୍ର ଲଭିଲ ମଲ ଉତାରୁ ଶଶା ଯେ ।
ତା ନାମ କରୁଥିବି ମୁଁ ସୁମରଣ । ଗଲେ ତ ଜୀବ ହେବ ମୋ ସୁ–ମରଣ ଯେ । ୪୦ ।
ପୁରୋଧା ସୁତ ବୋଲେ ତୋ ଶତ୍ରୁ ମନ୍ତ୍ର । ଦୁର୍ଗା କୃପାରୁ ଭୋଗକର ରମ୍ଭୋରୁ[୧୦] ଯେ ।
ସାଧୁତ ଶୁକ ବ୍ରହ୍ମପୁରୀ ଯାଇଛି । ସେ ଆସିଲେ ଉପାୟ କରିବା କିଛି ଯେ । ୪୧ ।
ଦ୍ୱୀପ ସପତ ଶୋଭ ଜମ୍ବୁ ପ୍ଲକ୍ଷରେ । କୁଶ କ୍ରୌଞ୍ଚ ଶାକ ଶାଲ୍ମଳୀ ପୁଷ୍କରେ ଯେ ।
ଲବଣେକ୍ଷୁ ସୁରା ସର୍ପି ଦଧି ଦୁଗ୍ଧ । ପୟଘେନି ସପତ ସମୁଦ୍ର ସିନ୍ଧୁ ଯେ । ୪୨ ।

---

ପାଠାନ୍ତର— ୯, ହୋଇ । ୧୦, ରୁ, ଭୀରୁ ।

---

ଯେଉଁ ଅବୟବେ (–ଅଙ୍ଗ ପ୍ରତ୍ୟଙ୍ଗମାନେ) କୁଙ୍କୁମକୁ ଶୋଭ (ସୁନ୍ଦର) କରନ୍ତି ।
ସିନ୍ଧୁକୁ (ସମୁଦ୍ର ଏବଂ ନଦୀମାନଙ୍କୁ) ନଦୀର ଜଳ ସମୁଦ୍ରରେ ମିଶି ଏକ ହୋଇ ଯାଏ; ତା ଅଙ୍ଗରେ ମୁଁ ମିଶିଯିବି, ଏହିଭବ ।

୩୭–ଖଗବର–(ଗରୁଡ଼) ବିଷ୍ଣୁଙ୍କ ଆଗେ ଯେପରି ହାତ ଯୋଡ଼ି ବସିଥାଏ । ପାର୍ବତୀ ଶିବଙ୍କର ଅର୍ଦ୍ଧ ଅଙ୍ଗ (ଶିବ ସବୁବେଳେ ପାର୍ବତୀଙ୍କୁ କୋଳରେ ଘେନି ବସିଥାନ୍ତି । ସେଥିପାଇଁ ଶିବଙ୍କୁ ଅର୍ଦ୍ଧନାରୀଶ୍ୱର ବୋଲି କୁହାଯାଏ ।)

୩୮–କମଳା (ଲକ୍ଷ୍ମୀ) ସବୁବେଳେ ବିଷ୍ଣୁଙ୍କ କୋଳରେ ବସିଥାନ୍ତି । କଳେବର (ଶରୀର)

୩୯–ଯୋଗେ (ଦଇବ ବଶରୁ) ତା ସଙ୍ଗେ ସଙ୍ଗମ (ସହବାସ) ନ ହେଉଁ ନାଶ ହେଲେ (ମରିଗଲେ)

୪୦–ଶଶା (ଏହିଛାନ୍ଦ ୮ମ ପଦ ଟୀକା ଦେଖ) ସୁମରଣ–ସ୍ମରଣ; ଏବଂ ଉତ୍ତମ ମରଣ;

୪୧–ପୁରୋଧା ସୁତ–ପୁରୋହିତ ପୁଅ; ତୋ ଶତ୍ରୁମନ୍ତ୍ର–ଏପରି ସାଧାରଣତଃ ହିତକାମୀ ଲୋକେ କହିଥାନ୍ତି । ଦୁର୍ଗା–ଦୁର୍ଗତି ନାଶିନୀ; ରମ୍ଭୋରୁ–ସୁନ୍ଦରୀ (ଲାବଣ୍ୟବତୀ) ।

୪୨–ସପ୍ତଦୀପ ଓ ସପ୍ତ ସମୁଦ୍ରର ନାମ; ପୂର୍ବେ ପୃଥିବୀକୁ ଏହି ସପ୍ତଦୀପ ଓ ସପ୍ତ ସମୁଦ୍ରରେ ପୁରାଣକାର ମାନେ ବାଣ୍ଟିଥିଲେ । ଜମ୍ବୁ, ପ୍ଲକ୍ଷ, କୁଶ, କ୍ରୌଞ୍ଚ, ଶାକ, ଶାଲ୍ମଳୀ, ପୁଷ୍କର–ଏ ସପ୍ତଦ୍ୱୀପ;

ପୂର୍ବେ ନରରାଜାଏ ଅଛନ୍ତି ଭ୍ରମି । ସିଂହଳ ଦ୍ୱୀପେ ଅଛି କରୀନ୍ଦ୍ର ଗାମୀ ଯେ ।
ଏଥିପାଇଁ ଛାଡ଼ିବ କିପାଁ ଜୀବନ । ଅବିରତେ କରିବା ଉପାୟ ମାନ ଯେ । ୪୩ ।
ସେତ ସ୍ୱଭାବେ ସ୍ତିରୀ ପୁଂସକୁ ଭଜିବ । ବଂଶିକ[୧୧] ଜଣେ ସିନା ବିଭା ହୋଇବ ଯେ ।
ଏମନ୍ତ ବଚନରେ ବୋଧିଲେ ଚିତ୍ତ । ଏ ଛାନ୍ଦ ଅତି ରମ୍ୟ ହୋଇଲା ପ୍ରାନ୍ତ ଯେ । ୪୪ ।
ଦୈତ୍ୟ ହନ୍ତା ଚତୁର ଭୁଜ ରଞ୍ଜିତ । ଚିତ୍ରଭାନୁ ପରାୟେ ତେଜ ଜ୍ୱଳିତ ଯେ ।
ହେ ରାମ ନାରାୟଣ ଦୁରିତ ଧ୍ୱଂସ । କହଇ ଉପେନ୍ଦ୍ର ଭଞ୍ଜ ଏ ରସ ଯେ । ୪୫ ।

---

ପାଠାନ୍ତର— ୧୧, ରସିକ ।

---

ଲବଣ, ଇକ୍ଷୁ (ଶର୍କରା), ସୁରା (ମଦ୍ୟ) ସର୍ପି (ଘିଅ), ଦଧି, ଦୁଗ୍ଧ, ପୟ (ଜଳ) —ଏ ସପ୍ତ ସମୁଦ୍ର ।

୪୩—ନରରାଜାଏ—ଏହି ମନୁଷ୍ୟ ରାଜାମାନେ ଏ ସାତଦ୍ୱୀପ, ସାତ ସମୁଦ୍ର ବୁଲିଛନ୍ତି, ସିଂହଳ ଦ୍ୱୀପ ବା କେତେଦୂର; କରୀନ୍ଦ୍ର ଗାମୀ—ହସ୍ତୀ ଶ୍ରେଷ୍ଠ ପରି ଗତି ଯାହାର; (ଲାବଣ୍ୟବତୀ)

୪୪—ଏ ଦେଶରେ ସ୍ତ୍ରୀ ଅବିବାହିତା ରହିବା ବିଧି କେହି କେବେ କଳ୍ପନା କରି ନାହାନ୍ତି । ବଂଶିକ—କୁଳୀନ ; ପ୍ରାନ୍ତ—ଶେଷ ;

୪୫—ହେ ରାମ ରୂପୀ ନାରାୟଣ ଅଥବା ( ନର—ଲୋକଙ୍କର ଅୟନ—ଆଶ୍ରୟ—ଆଦର୍ଶ ) ହେ ରାମ; ନାରାୟଣ ପକ୍ଷରେ—ଦୈତ୍ୟହନ୍ତା ( ଶଙ୍ଖ, ହିରଣ୍ୟ ଆଦି ଦୈତ୍ୟଙ୍କର ସଂହାର କର୍ତ୍ତା ); ଚତୁରଭୁଜ ରଞ୍ଜିତ—ଚାରିବାହୁ ଶୋଭିତ ।
ରାମ ପକ୍ଷରେ— ହେ ଦୈତ୍ୟ ହନ୍ତା ଚତୁର—[ ରାବଣକୁ ମାରିଥିବାରୁ ] ରାକ୍ଷସ ମାନଙ୍କୁ ମାରିବାରେ ବିଚକ୍ଷଣ; ଭୁଜ ରଞ୍ଜିତ—ବାହୁ ମଣ୍ଡିତ ( ପରାକ୍ରମବନ୍ତ ); ଦୁହିଁଙ୍କ ପକ୍ଷରେ ଚିତ୍ରଭାନୁ—ଅଗ୍ନି ପରି ଜ୍ୱଳନ୍ତ ( ଜଳନ୍ତା )—ପାପ ନାଶକାରୀ ଓ ଶତ୍ରୁ ନାଶକାରୀ ତେଜ ଯାହାଙ୍କର; ଦୁରିତ—ପାପ ।

# ପଞ୍ଚଦଶ ଛାନ୍ଦ

## ଇନ୍ଦ୍ରଜାଲ ଲୋକନ

( ଇନ୍ଦ୍ରଜାଲକର ମାୟା ରଚନା )

ରାଗ ବସନ୍ତ ଭୈରବ । ଭଷା ଦ୍ୱାଦଶ ଛାନ୍ଦ ବାଣୀ ।

ଶୁଣଜନେ ଏଣୁ ବିଧାତାକୁ ବଡ଼ ବୋଲି
ବ୍ୟାଜ ଧନ ଅର୍ଜନେ ଅନେକ ଦେଶ ବୁଲି ଯେ ।
ସିଂହଳ ଦ୍ୱୀପେ[୧] ପ୍ରବେଶ ହେଲା ନଟବର
ଲୋକ ବଶକାରୀ ସେ ବିନୋଦ ନାମ ତାର ଯେ ।
ହସ୍ତେ ଡାକ୍ଡି କାଖେ ଜାକି ଅଛି ସର୍ପ ପେଟୀ
ଦେହେ ଘଷି ହୋଇଛି ଚନ୍ଦନ ପଗ ମାଟି ଯେ । ୧ ।
ମଲ୍ଲବିଦ୍ୟା ପଣ୍ଡିତ ଫଳି କି ବାହୁ ବେନି
ତାହିତ ଶୋଭିତ ଯେ ମୟୂର ଝୁଲ[୨] ଘେନି ଯେ ।
ବଙ୍କ ଜୁଡ଼ାକୁ ବେଢ଼ିଛି ଅଏଛାଇ ଫୁଲ[୩]
ଉଦ୍ଧରି ଧରିଛି ଭଲ କଳା ଓରମାଲ ଯେ ।
ସୁନା ମୋଡ଼ିଆ ପଣସ କାତିଆ କୁଣ୍ଡଳ
ଦୋହଲି ଶୋଭ କରୁଛି ତା ଗଣ୍ଡ ମଣ୍ଡଳ ଯେ । ୨ ।

---

ପଠାନ୍ତର— ୧, ସିଂହଳ ଦେଶେ । ୨, ଚୂଳ । ୩, ଅଳାଗର ଫୁଲ ।

---

୧— ବିଧାତାକୁ ବଡ଼ ବୋଲି—ଦଇବ ଯୋଗକୁ ଇନ୍ଦ୍ରଜାଲିକ ଆସି ପହଞ୍ଚିଲା; ବ୍ୟାଜ— ( ଛଳନା, ବାହାନା ) ହୋଇଛି ଧନ ଅର୍ଜନ ଯେଉଁ ( ଭ୍ରମଣ କାର୍ଯ୍ୟରେ )—ପ୍ରକୃତ ଧନ ଅର୍ଜିବା କାର୍ଯ୍ୟରେ ସେ ବୁଲୁ ନ ଥିଲା; ଲବଣ୍ୟବତୀକୁ ଚନ୍ଦ୍ରଭାନୁଠାରେ ବଶ କରାଇବା ତାର ଉଦ୍ଦେଶ୍ୟ ଥିଲା । ନଟବର—ଶ୍ରେଷ୍ଠ ନାଟୁଆ; ଏଠାରେ ନାଟୁଆ କେଳା ବା ଐନ୍ଦ୍ରଜାଲିକ; ସର୍ପପେଟୀ—ସାପପେଡ଼ି ।

୨— ମଲ୍ଲବିଦ୍ୟା ପଣ୍ଡିତ—କସରତି ମାଲ; ଦୁଇବାହା ଫଳି ( କସରତରେ ଫୁଲି ) କି ସୁନ୍ଦର ହୋଇଛି; ମାଲମାନେ ବାହା ଉପରେ ମୟୂର ଝୁଲ (ଚନ୍ଦ୍ରିକା) ବାନ୍ଧିଥାନ୍ତି । ବାଳ ଗୋଟେ ପାଖକୁ ବଙ୍କାକରି ଗଣ୍ଠି ପକାଇଛି । ସେଥିରେ ଅଁଳାଫୁଲ ଖୋଷିଛି ।

ହସ୍ତି ଦିଶେ ସୁନା ଖଲ ଝଲଝଲ ଦନ୍ତେ
ପାନେ ପାଚି ଯାଇଛି ସେ ଜମ୍ବୁଫଳ ମତେ ଯେ ।
ସିନ୍ଦୁର ଚିତାହିଁ ତା ହଟକେଶ୍ୱର ପଣେ
ବିଭୂତି ଘଷି ହୋଇଛି ଯୁଗଳ ଈକ୍ଷଣେ ଯେ ।
ବକ ଶାମଲ[୪] ବାନା ତା ଭୁଜଙ୍ଗ ପଇତା
ମହା ମହା ଗୁରୁ ମାନଙ୍କର ଦର୍ପ ହତା ଯେ । ୩ ।
ରୁଣ୍ଡ ଶିକଳୀ[୫] ଚରଣେ କର କଙ୍କଣରେ
ବିରାଜିଛି ହେମବାଳୀ ବାମ ଶ୍ରବଣରେ ଯେ ।
ପିନ୍ଧିଛି ପତନୀ ଫେଟା ଫରି ନୀବୀ କରି,
ରଙ୍ଗ ପାଟ ଖଣ୍ଡୁଆ ଏ କଟିରେ ମାଧୁରୀ ଯେ ।
ବେଢ଼ିଛନ୍ତି ଶିଷ୍ୟ ଉପଶିଷ୍ୟ ବେଶ ହୋଇ,
କେ ଚଉତନା କେ ପାଗ ମୁଣ୍ଡେ ମୁର୍ଣ୍ଣି ଆଇ ଯେ । ୪ ।

---

ପାଠାନ୍ତର—୪, ବକ ଯାମଳା । ୫, ଧଣ୍ଡ ଶିକଳା

---

କଛା ଓରମାଲ ( ଗ୍ରିକୁଣିଆ ବଡ଼କନା; ଗେମାଲ ) ଉଦ୍ଧରି (ଟେକିକରି) ଧରିଛି; ସୁନା ମୋଡ଼ିଆ ପଣସ କଢ଼ିଆ ଏକ ପ୍ରକାର କୁଣ୍ଡଳ—ସୁନାରେ ମୋଡ଼ା ହୋଇ ପଣସ କଢ଼ୀ ( ପୋଇ ପଣସ ) ପରି ହୋଇଥାଏ ।

୩— କେଳାମାନେ ଦାନ୍ତରେ ଉଡ଼ିଁରୀରେ କଣା କରି ସୁନାଖଲ ମାରିଥାନ୍ତି । ଜମ୍ବୁଫଳ—ଜାମ୍ବୁକୋଳି; ହଟକେଶ୍ୱର—ଶ୍ରେଷ୍ଠ କୁହୁକୀ; ବିଭୂତି—ପାଉଁଶ; ଈକ୍ଷଣେ—ଆଖିରେ; ବକ ଶାମଲ ବାନା—[ ବୋଧହୁଏ ] କେଳା ମାନଙ୍କର ବଗପକ୍ଷୀ ଖୋଷା ମୁଣ୍ଡପାଗ ବାନା—ଗୁରୁ ବୋଲି ଚିହ୍ନ; ଭୁଜଙ୍ଗ ( ସାପ ) ପଇତା ପରି ବେକରେ ପକାଇଛି । ଗୁରୁ—ମନ୍ତ୍ର ଜାଣିବା କେଳା ।

୪—ରୁଣ୍ଡ—ଗୁଡ଼ାଏ ଏକାଠି ହୋଇଛି । ହେମବାଳୀ—ସୁନା ଫାଶିଆ; ପତନୀଫେଟା—ପାଟ ପିନ୍ଧା ଫରି ନୀବୀ—ଫରି କଛା, ମାଲକଛା (କୁଞ୍ଚକୁ ଓହଳାଇ କଛାରେ ମାରି ଦେଇଛି) ଖଣ୍ଡୁଆ—ପାଟଛିଟ ଘୋଦର ( ମାଇପେ ଯାହାକୁ ମୁଣ୍ଡରେ ପକାନ୍ତି ); ଉପଶିଷ୍ୟ—ଶିଷ୍ୟ—ର ଶିଷ୍ୟ,; ଚଉତନା—ଚାରିକୋଣିଆ ଲୁଗା—କୁଣରେ ଭର୍ତ୍ତି ଯାହାକୁ ମୁଣ୍ଡରୁ ଆଣି ଓଠତଳେ ବାନ୍ଧନ୍ତି । ପାଗ—ପଗଡ଼ି ।

ପିନ୍ଧି ଚଲଣା କାଛକୁ ବାନ୍ଧିଛନ୍ତି ତହିଁ,
ଭଲେ କାଳି ଚିତା କେ ବିଭୂତି ଭୂଷା ହୋଇ ଯେ ।
ବହିଛନ୍ତି ସେ ବଂଶଶଳାକା ଆଦି ଢୋଲ
ଘଟ ନାଟ ରଣପାଦ ଅରଟିଆ ମେଳ[୬] ଯେ ।
ମଧ୍ୟବର୍ତ୍ତୀ ପ୍ରେମରୂପା ନାମେ ନଟୀ ସାର ।
ବୟସରେ ଷୋଡ଼ଶୀ ବେଶରେ ମନୋହର ଯେ । ୫ ।
ସେ ବିଟପୀ ବଟପ ଧଇର୍ଯ୍ୟ-ବିଟପି କି,
ଛେଦନେ କୁଠାର ପଗ ମନରେ ତରକି ଯେ ।
ଚିରେ କରି ଧରିବାକୁ ଦର୍ପଣ ଝଟକ,
ମୁଖ ମାଠି ତଇଳେ କରିଛି ଢକ ଢକ ଯେ ।
ଅଙ୍ଗେ ସଙ୍ଗ କରିଅଛି ସେ ବନହଳଦି,
କାନ୍ତି ହୋଇଛି ପାଚିଲ ଆମ୍ବ ପ୍ରତିଦ୍ୱନ୍ଦୀ ଯେ । ୬ ।

---

ପାଠାନ୍ତର-- ୬, ଘଟ, ନାଟ, ଅରଟି, ରଣଗା ସେ ମଣ୍ଡୁଳ ।

---

୫—ଚଲଣାକାଛ—[ବୋଧହୁଏ] କଛାର ଗୋଟେ କାନି ଫିଟାଇ ପିନ୍ଧିବା; ବାନ୍ଧିଛନ୍ତି—[ବୋଧହୁଏ] ଫିଟା କାନିକୁ ଗୋଡ଼ରେ ଚିପା ପାଇଜାମା ପରି ଗୁଡ଼ାଇଛନ୍ତି । କାହାର ମୁଣ୍ଡରେ କଳାଚିତା; କାହା ଦେହ ପାଉଁଶ ବୋଳା; ବଂଶଶଳାକା—ବାଉଁଶ ଖୁଣ୍ଟ ନାଟପାଇଁ ଆବଶ୍ୟକ, ଘଟ, ନାଟ, ରଣପାଦ ପ୍ରଭୃତି ନାଟର ଉପକରଣ; [ବୋଧହୁଏ] ଘଟ (ଘଡ଼ି, ମାଠିଆ) ନାଟ ରଣପାଦ ନାଟ ଦେଖାଇବା ପାଇଁ ଦୁଇଖଣ୍ଡ ବାଉଁଶ ମଝିରେ ଦୁଇଟି କାଠ ଲଗି ଯେଉଁ ରଣପା ତିଆରି ହୋଇଥାଏ । ସେହି ଦୁଇଟିରେ ଗୋଡ଼ ଢେଇ ବେଗେ ବେଗେ ଚାଲନ୍ତି; ଅରଟିଆ—ବାଉଁଶରେ ଉଠି ଯେଉଁ ବାଉଁଶ ଖଣ୍ଡକରେ ଓହଳି ଶୂନ୍ୟରେ ଖେଳ ଦେଖାନ୍ତି । ସେମାନଙ୍କ ମଝିରେ ଗୋଟିଏ ନଟୀ ( କେଲୁଣୀ ) ଅଛି; ତାହାର ନାମ ପ୍ରେମରୂପା ।

୬—ବିଟପୀ—ବ୍ୟଭିଚାରିଣୀ ସ୍ତ୍ରୀ—ଅର୍ଥାତ୍ ନିଜର ସ୍ୱାମୀ ଥାଇ ଯେ ଅନ୍ୟ ସଙ୍ଗ କରେ; ବିଟପ—ପାରସ୍ତ୍ରୈଣ; ପରସ୍ତ୍ରୀରତ; ଧଇର୍ଯ୍ୟ—ବିଟପ—ଧୈର୍ଯ୍ୟ ରୂପ ଗଛ; କୁଠାର—କୁରାଢ଼ୀ, ଟାଙ୍ଗିଆ; ତରକି—ତର୍କ, ଅନୁମାନ ହୁଏ; ଚିରେକରି—ମନେହୁଏ; ଦର୍ପଣର ଝଟକ—ଦର୍ପଣର ଝଲି, ଜ୍ୟୋତି, ଧରିବାକୁ—ମୁହଁରେ ଦେଖାଇବାକୁ; ଅଙ୍ଗସଙ୍ଗ କରିଛି—ଲଗାଇଛି; ବନହଳଦି—ଦକ୍ଷିଣି ହଳଦି ଯହିଁରେ ଗାଢ଼ରଙ୍ଗ ଥାଏ, ଓଡ଼ଶି ହଳଦି ନୁହେ; ବର୍ଣ୍ଣରେ ପ୍ରତିଦ୍ୱନ୍ଦୀ—ବର୍ଣ୍ଣରେ ପ୍ରତିଯୋଗୀ ( ଯେ ବଳି ଯିବାକୁ ଚେଷ୍ଟା କରେ ସେ ପ୍ରତିଦ୍ୱନ୍ଦୀ ) ।

କତୁରୀରେ ଅଳକାକୁ ନୂତନେ ଖଣ୍ଡିଛି
ଫୁଲ ଗୁଡ଼ାଏ ଜୂଡ଼ାରେ ଯତନେ ମଣ୍ଡିଛି ଯେ ।
ଦଣ୍ଡିଛି ସେ ଜଳଦ ବକାଳୀ ମହୋଜ୍ଜ୍ୱଳ
ବହକ କରି ଘେନିଛି ନୟନେ କଜ୍ଜ୍ୱଳ ଯେ ।
ମୃଗ ହୋଇଲକୁ ଅଛି ଚଞ୍ଚଳ ଚତୁରୀ
ଖେଳା ଭୂମିଯାକ ବିଞ୍ଚି ଦେଇଛି କସ୍ତୁରୀ ଯେ । ୭ ।
ଅଭ୍ରଚିତା ଶୁଭ୍ର ହୋଇଅଛି ଭଲ ପଟ
ଭାନୁ କର ଲଗି ଝଟକଇ ଝଟଝଟ ଯେ ।
ଜଳେ କି ତହିଁ ଜ୍ୱଳନ କାମ ଡ଼ାଳୀ ବହି
ଆସୁଥିଲା ଉପମାକୁ ସେ ବାମା ଲଭଇ ଯେ ।
ଶର ଲକ୍ଷ କଟାକ୍ଷ ତା ପାଇଁ ଯୋଗି ରଜି
ବିନ୍ଧିଲ ଭୟେଁ ଥରିଲେ ମୃଗ ଚମ ତେଜି ଯେ । ୮ ।

---

ପାଠାନ୍ତର— ୭, ଚଞ୍ଚିଛୁ । ୮, ଫିଙ୍ଗି । ୯, ଭ୍ରମେ ।

---

୭—ଅଳକା—ସୁନ୍ଦାବାଳ; ଖଣ୍ଡିଛି-କାଟିଛି; ଦଣ୍ଡିଛି—ଶେ ଘରେ ବଳିଛି; ଜଳଦ ବକାଳୀ ମହୋଜ୍ଜ୍ୱଳ—ଘରି ଉଜ୍ଜ୍ୱଳ କଳା ମେଘ ପାଖେ ଉଡୁଥିବା ବଗମାନେ ଅର୍ଥାତ୍ ଏହା ଜୂଡ଼ାରେ ଫୁଲ ସେହିପରି ଦିଶୁଛି । ମୃଗ ହୋଇଲକୁ ( ମୃଗ ସଙ୍ଗେ ସମାନ ହେବାରୁ ) ଆଖି ମୃଗ ଆଖି ପରି ଚଞ୍ଚଳ ହୋଇଛି କିମ୍ବା ମୃଗ ହୋଇଲକୁ, ମୃଗ ମିଳିବା ନିମନ୍ତେ—ଚିତ୍ରିଣି ଜାତୀୟ ସ୍ତ୍ରୀମାନେ ମୃଗ ଜାତୀୟ ପୁରୁଷ ଲୋଡ଼ନ୍ତି [ଏହା କୋକ ଶାସ୍ତ୍ରର ଅଛି । ] କିମ୍ବା ଆଖିରେ ଚଞ୍ଚଳ ଚତୁରୀ ଥିବାରୁ ସେ ମୃଗ (କସ୍ତୁରୀ) ପରି ହୋଇଛି ତେଣୁ ଖେଳାଭୂମି ଯାକ କସ୍ତୁରୀର ସୁବାସ ବିଞ୍ଚି ଦେଇଛି ।

୮—ଅଭ୍ରଚିତା—ଅଭ୍ରଟୋପି, କଳା ଆଉ ଯାହାକୁ ମେଘନାଳ କହନ୍ତି—ସେଥିରେ ଗୋଲ ହୋଇ କଟା ହୋଇଥିବା ଚିତା ବା ଟିକିଲି ମାଇପେ ମୁଣ୍ଡରେ ଲଗାନ୍ତି । ଶୁଭ୍ର ଉଜ୍ଜ୍ୱଳ, ଚକ ଚକ; ଭାନୁକର—ସୂର୍ଯ୍ୟକିରଣ; ଜ୍ୱଳନ—ଅଗ୍ନି; କାମ ରୂପ ଡ଼ାଳୀ ବହି ଆସୁଥିଲା ପରି ଦିଶୁଛି—ରାତ୍ରରେ ଶବରମାନେ ମୁଣ୍ଡରେ ଶାଳୁଆ ଡ଼ାଙ୍ଗରେ ନିଆଁ ଲଗାଇ ତାକୁ ଧରି କିମ୍ବା ଜଳନ୍ତା ନିଆଁ ଖପର ଧରି ବଣରେ ବୁଲନ୍ତି ; ମୃଗମାନେ ନିଆଁ ଦେଖି ଲୋଭରେ ପାଖକୁ ଆସି ପାରିଧିରେ ମରନ୍ତି- ଏହାକୁ ଡ଼ାଳି ପାରିଧି କହନ୍ତି । ଏ ଡ଼ାଳି ପାରିଧିରେ ତାର କଟାକ୍ଷ ଶର ଲକ୍ଷ୍ୟ; ଏ ଶରରେ

ବେନି ପୁଟରେ ତା ଗୁଣା ନାକଚଣା ଅଛି
ନାସା ଦଣ୍ଡି ଫୋଡ଼ାଇ ଗୁଣାଏ ଲଗାଇଛି ଯେ ।
ତିନି ପୁରେ ମୋତେ ରତି ବିଚକ୍ଷଣା ଗୁଣେ
ନାରୀ ନାହିଁ ବୋଲି ଚିହ୍ନ ବହିଛି ଆପଣେ ଯେ ।
ସୁନା ମଲ୍ଲୀ କଢ଼ୀ ଫୁଲ ଜାଲି ପୋଟିଆମ
ବାଳୀରେ କରିଛି ଶ୍ରବଣକୁ ମନୋରମ ଯେ । ୯ ।
ତହିଁ ଝଲକାଇ ସେ ଝଲକା ଝଲକକୁ
ଆସ ବୋଲି ପାଶକୁ ଠାରଇ ପୁରୁଷକୁ ଯେ ।
ଅଧରେ ତ କରିଅଛି ପାନରସ ସଙ୍ଗ[୧୦]
ପ୍ରବାଳ ଉପିଲ[୧୧] ଥୋପି ପଡ଼ଇ କି ରଙ୍ଗ ଯେ ।
କୁଟାଇଛି ଚିବୁକେ ମକ୍ଷିକା ଗହ୍ବରଚିତ୍ର
ଓଷ୍ଠେ ମଧୁ ସଞ୍ଚିବାକୁ କି ସେ ଉପସ୍ଥିତ ଯେ । ୧୦ ।

---

ପାଠାନ୍ତର— ୧୦, ଢଙ୍ଗ । ୧୧, ଉକିଳ ।

---

ଯୋଗିମାନେ ଥରୁଛନ୍ତି, କାହିଁକି ନା ଯୋଗିମାନଙ୍କର ମୃଗଚର୍ମ ଅଛି; କାଳେ ସେହି ଚମ ଦେଖି ମୃଗ ବୋଲି ବିଚାରି ତାଙ୍କ ଉପରେ ଶର ବାଜିବ; ଅର୍ଥାତ୍ ସେ ଅଭ୍ରର ଚୋପି ଓ କଟାକ୍ଷ ଦେଖିଲେ ଯୋଗିମାନେ ମଧ୍ୟ ଯୋଗ ଛାଡ଼ି ଏହାପାଖେ କାମରେ ପଡ଼ିବେ—ଏହି ଅଭିପ୍ରାୟ ।

୯— ପୁଟ—( ନାକ ପୁଡ଼ା ) ଡାହାଣ ପାଖେ ଗୁଣା ବାଁ ପୁଡ଼ାରେ ନାକଚଣା କି ନାକ ଫୁଲ ଅଛି । ନାସା ବଣ୍ଡି—ଦୁଇ ପୁଡ଼ା ମଝିରେ ଥିବା ଚମଡ଼ାକୁ ନାକଦଣ୍ଡି କହନ୍ତି; ଗୁଣାଏ-୮ ଏଠାରେ ୨ ଗୋଟିଏ ଦଣ୍ଡି; ଏହିପରି ନାକର ତିନିପୁଡ଼ା ବା ଅଳଙ୍କାର ଲଗାଇବା ତିନି ଜାଗା ସଙ୍ଗେ ସ୍ବର୍ଗ, ମର୍ତ୍ତ୍ୟ, ପାତାଳ ତିନି ପୁରର ଲକ୍ଷ୍ୟ । କାନରେ ସୁନା ମଲକଢୀ; ତଳ କାନରେ ଫୁଲ ଥାଇ ଜାଲିରେ ତିଆର ହୋଇଥିବା ପୋଟିଆମ ନାହୁଲ ପରି ଏକ ଅଳଙ୍କାର; ବାଳୀ—ଫାଶିଆ ;

୧୦—ପୋଟିଆମର ତଳେ ଓହଳି ଥିବା ଝଲକା ( ପେଣ୍ଡି ) ଝଲକୁଛି ( ଦୋହଲୁଛି ) ଉପିଲ—ବୋଳିଲ ( ବନକରେ ମାଠିବାକୁ ଉପିବା କହନ୍ତି ); ଥୋପି ପାନପିକ ନାକି; ମାଛି ପରି ଓଠତଳେ ଗୋଟିଏ ଚିତା କୁଟାଇଛି; ଓଷ୍ଠେ—ଅଧରେ ।

ଲକ୍ଷା ଚିଞ୍ଚା ରସେ ପଗ୍ରଇଛି ଦନ୍ତ ଗଳି
ଦେଇଛି ସେ ପାଚିଲ୍ଲ ଡ଼ାଳିମ୍ବ ମଞ୍ଜି ଗଞ୍ଜି ଯେ ।
କାଚମାଳୀ ମୋଚି ମାଳୀ କର୍ଣ୍ଣିମାଳୀ ମଞ୍ଜୁ
କମ୍ବୁ କଣ୍ଠେ ଲଗାଇ ଅଛି କି କୁନ୍ଦାରଞ୍ଜୁ ଯେ ।
ନବଘନ ଦେଲ୍ଲ ପ୍ରାୟ ଗିରିଶୃଙ୍ଗ ଗିଳି
ଉଚ୍ଚ କୁଚେ ଗଳିତ ହୋଇଛି ନୀଳ ଚେଳୀ ଯେ । ୧୧ ।
କକ୍ଷ ଭୁଜ ଅର୍ଦ୍ଧକୁ ବୋଲି ସେ ଅଛି ଗ୍ରାସି
କାଳିନ୍ଦୀରୁ ବାହାର ମୃଣାଳ ପଗ୍ର ଦିଶି ଯେ ।
ସେ ଭୁଜେ ବାନ୍ଧିଛି ରୂପା ସୂତା ବିଦମାଳୀ
ପାଣିରେ ତା ପାଣି କାଚ ମିନା[୧୨] କଡ଼ିଆଳୀ ଯେ ।
ଅଞ୍ଜନା ଚିତ୍ରେ ରଞ୍ଜନ କରଲ୍ଲ ପାପୁଲି
ଦର୍ପଣ ବସା ମୁଦିରେ ଦୀପିତ ଅଙ୍ଗୁଳି ଯେ । ୧୨ ।

ପାଠାନ୍ତର—୧୨, ମିହ୍ନା

୧—ଲକ୍ଷା—ଅଳତା; ଆଗେ ଅଳତା, କୁସୁମ ଓ ବରକୋଳି ଗଛରେ ଜମୁଥିବା ଲଖ ବା ଲହା ପୋକର ରଙ୍ଗରୁ ତିଆରି ହେଉଥିଲା । ଚିଞ୍ଚା—କାଇଞ୍ଚ, ତିନ୍ତୁଳି ମଞ୍ଜି; କାଇଞ୍ଚ ଓ ତିନ୍ତୁଳି ମଞ୍ଜି ମଧ୍ୟ ରଙ୍ଗ ତିଆରିରେ ଲଗୁଥିଲା । ଗଞ୍ଜି ଦେଇଛି (ନାଲିରେ) ବଳି ଯାଇଛି; କର୍ଣ୍ଣି—ବେକରେ ଗୁନ୍ଥି ଲଗାଇବା ପାଇଁ ସୁନା ବା ରୂପାରେ ଯେଉଁ ଅଳଙ୍କାର ତିଆରି ହୁଏ ତାକୁ କର୍ଣ୍ଣି କହନ୍ତି । କାଚ ଆଗେ ଦୁର୍ଲ୍ଲଭ ଥିଲା; କାଚ ଗୋଟାଳିର ମାଳୀ ମାଇପେ ବୋଧହୁଏ ପିନ୍ଧୁଥିଲେ । ମଞ୍ଜୁ—ସୁନ୍ଦର; କମ୍ବୁକଣ୍ଠେ—ଶଙ୍ଖପରି ତିନୋଟି ଗାର ଥାଇ କଣ୍ଠ (ଗଳା); କୁନ୍ଦ ରଞ୍ଜୁ—କୁନ୍ଦକାର ରଞ୍ଜୁ (ଦଶମ ଛାନ୍ଦ ସାତ ପଦ ଟୀକା ଦେଖ) କୁଚ ଉପରେ ନୀଳ ଚେଳୀ ( ନେଳିଆ ଶାଢ଼ୀ ) ପର୍ବତ ଶୃଙ୍ଗ(ଶିଖର)କୁ (ଗୋଟିଏ ପର୍ବତରେ ଅନେକ ଗୁଡ଼ିଏ ଉଚ୍ଚ ଉଚ୍ଚ ଶୃଙ୍ଗ ଥାଏ) ଘୋଟି ନୂଆ କଳାମେଘ ରହିଥାଏ ।

୧୨—ସେ ଶାଢ଼ୀ କକ୍ଷ (କାଖ) ଡ଼େଇଁ ଭୁଜ (ବାହା) ଅଧାଯାଏ ପଡ଼ିଛି । ନେଳି ଶାଢ଼ୀ କାଳିନ୍ଦୀ (ଯମୁନା) ପରି, ହାତ ମୃଣାଳ ( କଇଁନାଡ଼ ) ପରି; ରୂପାସୂତା—ରୂପା ତାରରେ ବୁଣାହୋଇଥିବା ଏକ ପ୍ରକାର ସୂତା; ଏହାକୁ ଅଣ୍ଟା ଓ ହାତର ବିଦ, ତାଡ଼ ପିନ୍ଧିବା ଜାଗାରେ ପିନ୍ଧନ୍ତି । ପାଣିରେ—ହାତରେ; ପାଣିକାଚ ମିନା-[ବୋଧହୁଏ] ଢଉ ନଥିବା କାଚକୁ ପାଣିକାଚ କହନ୍ତି ଏବଂ ସରୁକାଚ ପଟମାନଙ୍କୁ ମିନା କହନ୍ତି । ମିନା—(ଦପଣୀ ନୁହେ), ଦୁଇଟି ମିନା ଉପରେ ନାଲିଢଉ ଦେଇ ଛୋଟ ଛୋଟ ଦର୍ପଣ

ଅଛି ଜଂଘ ତଳେ ଭିଡ଼ି ଦେଇ କଟୀ ଡ଼ୋରେ
ପିନ୍ଧିଛି ସେ ଅତଳସ ଲହଙ୍ଗା ଉପରେ ଯେ ।
ବାନ୍ଧିଅଛି କ୍ଷୁଦ୍ର ଘଣ୍ଟି ବାଜେ ଝମ ଝମ
କନ୍ଧେ ଉପଗଣ ଜରି ପାଛୋଡ଼ା ସୁଷମ ଯେ ।
ରଣଝଣ ହୋଏ ଖଞ୍ଜା ପାହୁଡ଼ ଚରଣେ
ଡ଼ାକେ ରସିକେ ସଞ୍ଚିତ ଧନ ବିତରଣେ ଯେ । ୧୩।
ଗେମାବଳୀ ଗୁହିଁ ଜନେ ଭ୍ରମ ଉପୁଜଇ
ସ୍ତନ ପେଟୀରୁ କି କାଳ ବ୍ୟାଳ ବାହାରଇ ଯେ ।

---

ବସାଇଲେ ଦର୍ପଣୀ କାଚ ହୁଏ, ଅଥବା ସବୁ ପାଣି କାଚ ଉପରେ କୋରଣା ଦାଢପରି ତିଆର ହୋଇ ଆଗେ ଏକ ପ୍ରକାର କାଚ ମିଳୁଥିଲା–ତାକୁ ସେ କାଳର ମାଇପେ ଭରି ପସନ୍ଦ କରୁଥିଲେ; ମିନା ତାହାର ନାମ ହୋଇପାରେ; କୋଣାର୍କ, ଭୁବନେଶ୍ୱର ପ୍ରଭୃତିର ନାରୀ ମୂର୍ତ୍ତିରେ ଏବେ ଏସବୁ ପ୍ରାଚୀନ ଅଳଙ୍କାର ଖୋଜି ଦେଖିବାର ଜିନିଷ; କଡ଼ିଆଳୀ–ମାଠି; ଅଞ୍ଜନା–ମଞ୍ଜୁଆଦି ବା ହରଗୌରୀ; [ ଏ ଉଭୟ ପଦର ଅର୍ଥ ୧୧ଶ ଛାନ୍ଦ ୨୧ ପଦ ଟୀକାରେ ଦେଖ ] କରଜ–ନଖ; ଦର୍ପଣ ବସା ମୁଦି–ରୁପା ବା କଂସା ମୁଦି ଉପରେ ଗୋଟିଏ ଛୋଟ କୁଣ୍ଡ ଜଉରେ ଭର୍ତ୍ତି ହୋଇ ତା ଉପରେ ଦର୍ପଣ ବସିଥାଏ । ଗରିବ ଘରର ମାଇପେ ଏହା ବ୍ୟବହାର କରନ୍ତି । ଦୀପିତ–ଚକ ଚକ୍ ।

୧୩- କଟୀଡ଼ୋରେ–( ଅଣ୍ଟାଡୋରରେ ); କଉପିନି ମାରିବା ପାଇଁ ଅଣ୍ଟାରେ ଯେଉଁ ସୂତାର ଦଉଡ଼ି ଥାଏ, ସେଥିରେ ଖଣ୍ଡେ ଛୋଟ ଲୁଗା ଜଘତଳେ ଭିଡ଼ି ଦେଇଛି, ତା ଉପରେ ଅତଲସ ଲହଙ୍ଗା ଘେର ବା ପଞ୍ଚମାଣିଙ୍କ ଘାଘର ପରି ହୁଗୁଲା ଗୋଡ଼ ଘରିପାଖେ ପଡ଼ିଥିବା ଏକ ପ୍ରକାର ଲୁଗା ପିନ୍ଧା–ଏବେ ମଧ୍ୟ ଶୁଆଙ୍ଗ ବା କେଳା ନାଟର ମାଇପି ପିନ୍ଧାରେ ଦେଖାଯାଏ । ଅଣ୍ଟାରେ ଘଣ୍ଟି ବାନ୍ଧିଛି ; ଦେହ ଘୋଡ଼ା-ଇବା ପାଇଁ କାନ୍ଧରେ ଉପଗଣ ( ଉପବାସ, ଉତ୍ତରୀୟ, ଓଢଣାଲୁଗା ) କରି ସୁଷମ (ସୁନ୍ଦର) ଜରି ପାଛୋଡ଼ା (ଜରିକାମ ହୋଇଥିବା ଦୋଷଣ୍ଡା) ପକାଇଛି । ଖଞ୍ଜା ପାହୁଡ଼ ( ଦୁଇ ଫାଳରେ ଭଉରୀ ଦିଆ ହୋଇ ଖଞ୍ଜା ହୋଇଥିବା ପାହୁଡ଼ ); ବାଜିବା ପାଇଁ ଏହା ଭିତରେ ଗୋଡ଼ିଥାଏ; ରସିକେ–ବ୍ୟଭିଚାରୀ ପୁରୁଷ ମାନଙ୍କୁ ସଞ୍ଚିତ ( ସାଇତି ରଖିଥିବା ) ଧନ ବିତରଣେ ( ଦେବାପାଇଁ ).

୧୪–ସ୍ତନ ରୂପ ପେଟୀ ( ପେଡ଼ି )ରୁ କାଳ (କଳା, ଭୟଙ୍କର ବିଷଧର) ବ୍ୟାଳ (ସାପ) ବାହାରିଲା ପରି ଗେମାବଳୀ ବାହାରିଛି । ପ୍ରପଦ–ଗୋଡ଼ ଆଙ୍ଗୁଠି; ଅମୃତି ଘସା

ମୁଦି ଲଗାଇଛି ତିନି ତିନି ପ୍ରପଦରେ
ଧରିଛି ଅମୃତି ଘଷା ଧନୁ ବେନି କରେ ଯେ ।
ଏମନ୍ତରେ ନଟ ନଟୀ ରାଜ ଦ୍ୱାରେ ଯାଇ
ଦେଖିବାକୁ ଲୋକେଛନ୍ତି ସଙ୍ଗତେ ଗୋଡ଼ାଇ ଯେ ।୧୪।
ସିଂହ ଦ୍ୱାରେ ବସି ବଜାଇଲେ ଢୋଲ ତୂରୀ ।
ନୃପତି ଛାମୁରେ ଯାଇ ଜଣାଇଲେ ଦ୍ୱାରୀ ଯେ ।
ହେ ବିଜ୍ଞେ ବନ୍ଧୁ କୁମୁଦ ବିଧୁ ମହାରାଜ ।
ଆସିଛି ଇନ୍ଦ୍ରଜାଲିକ କର୍ଣ୍ଣାଟ ତା ରାଜ୍ୟ ଯେ ।
ଶୁଣି ତୁମ୍ଭ ଦାତା ପଣ କରିବାକୁ ହଟ
ଆସୁ ବୋଲିବାକୁ ତହିଁ ନୃପତି ମୁକୁଟ ଯେ । ୧୫ ।
ରହିଁ ଦେଲେ ପ୍ରତିହାରୀ ଦଶବିଂଶ ଧାଇଁ
ଛାମୁରେ ସେ ଭେଟାଇଲେ ନଟ ନଟୀ ନେଇ ଯେ ।
ରାଜା ପଚାରିଲେ ଆହେ କି କି ବିଦ୍ୟା ଜାଣ
ସେ କହିଲ ଦ୍ୱୀପେଶ୍ୱର ସାବଧାନେ ଶୁଣ ହେ ।
କୁହୁକ ଗୋଟିକାଞ୍ଜନ ସ୍ତମ୍ଭନ ମୋହନ
ବଶ ଉଚାଟନେ ଜାଣ ମୁଁ ଭୋଜ ରଜନ ହେ । ୧୬ ।

---

ଧନୁ–ଅମୃତି ନାମକ ତେଲିଙ୍ଗି ବାଜା ପରି ଏକ ପ୍ରକାର ବାଦ୍ୟ ସେହି କେଳା–ମାନେ ବଜାନ୍ତି । ତେଲିଙ୍ଗି ବାଜାର ବାଁପଟେ ଯେଉଁ କାଠି ଘସାଯାଏ । ତାହାହିଁ ଧନୁପରି ଏବଂ ଏଠାରେ ଅମୃତି ଘସା ଧନୁ କୁହା ଯାଇଛି । [ ଅମୃତି (ତଲିଙ୍ଗି) ବାଜାର ବ୍ୟବହାର ପାଇଁ ୩୦ ଛାନ୍ଦ ୪୩ପଦ ଦେଖ ]

୧୫–ତୂରୀ–ମହୁରୀ; ବନ୍ଧୁମାନେ କୁମୁଦ (କଇଁ) ପରିହେଲେ ତାଙ୍କର ତୁମେ ବିଧୁ (ଚନ୍ଦ୍ର) ପରି ଆନନ୍ଦ ଦାୟକ; ହଟ–କୁହୁକ; ବୋଲିବାକୁ–ବୋଲିବା ମାତ୍ରେ; ନୃପତି ମୁକୁଟ–ରାଜଶ୍ରେଷ୍ଠ ।

୧୬–ପ୍ରତିହାରୀ–ଆଜ୍ଞାକାରୀ; ଦଶବିଂଶ–ଦଶ କି କୋଡ଼ିଏ, ଦଶ କୋଡ଼ିଏ ଜଣ; ଦ୍ୱୀପେଶ୍ୱର–ହେ (ସିଂହଳ) ଦ୍ୱୀପରାଜା ସାବଧାନେ–ମନ ଦେଇ; କୁହୁକ–ଭୁଲାଇବା ବିଦ୍ୟା; ଗୋଟିକ–ଜଡ଼ି ବୁଟି ପ୍ରଭୃତିର ଗୁଳି ବା ବଡ଼ି, ଯହିଁରେ ନାନା ଚିନ୍ତା ବ୍ୟାଧି ଭଲ କରହୁଏ, ବା ଲୋକକୁ ବଶ କରହୁଏ । ସେହିପରି କରିବା ବିଦ୍ୟାକୁ ଗୋଟିକ କହନ୍ତି । ଅଞ୍ଜନ–କଜଳରେ ଲୋକ ବଶ କରିବା ବିଦ୍ୟା; ସ୍ତମ୍ଭନ–ମୋହନ, ବଶ, ଉଚ୍ଚାଟନ [ ୯ମ ଛାନ୍ଦ ୭ମ ପଦ ଟୀକା ଦେଖ ]

ଗଦ ପଦେ ବିଷ ଝାଡ଼ିବାରେ ଧନ୍ୱନ୍ତରୀ
ଗୁରୁଏ ଘେନନ୍ତି ମୋତେ ମହାଗୁରୁ କରି ଯେ ।
ମାୟା ରଚନରେ ମୟପରି ମୋତେ ଘେନ
ପୁଣ ଏ ଅଙ୍ଗନାସାରେ ଗୁଣ ଅକଥନ ହେ ।
ନୃତ୍ୟ ଦେଖିଲେ ବାସବ ରମ୍ଭା ପାସୋରିବେ
ଗାନ ଶୁଣିଲେ ବୀଣାକୁ କିପାଁ ପ୍ରଶଂସିବେ ହେ । ୧୭ ।
ଆମ୍ଭ କୁଳଧର୍ମ ବିଦ୍ୟାରେ ତ ନାହିଁ ସରି
ତୁମ୍ଭେ କି ଆଜ୍ଞା କରୁଛ କହ ଦଣ୍ଡଧାରି ହେ !
ନୃପତି ବୋଇଲେ ରହ କରି ସାରୁ ସନ୍ଧ୍ୟା
ରମାୟଣ ଦେଖାଅ ଜାଣିବା ତୁମ୍ଭ ବିଦ୍ୟା ହେ ।
କେତେବେଳେ ହେଲା ତହିଁ ସନ୍ଧ୍ୟା ଅବଶେଷ
ରଜା ଅବରୋଧ ନାରୀ ଜଗତୀ ପ୍ରବେଶ ଯେ । ୧୮ ।
ବଡ଼ ବଡ଼ଭୀ–ମସ୍ତକ ମଣ୍ଡିଲା କୁମାରୀ
କେବଳ ଅଛନ୍ତି ସଙ୍ଗେ ପ୍ରିୟ ସହଚରୀ ଯେ ।

---

ଭୋଜ ରାଜନ–କିମ୍ବଦନ୍ତୀର ଭୋଜରାଜା ଜନ୍ତ୍ରି, ବୁଟି, କୁହୁକ, ମନ୍ତ୍ର ମହୌଷଧି ପ୍ରଭୃତିରେ ଜାଣିବାର ବୋଲି ପ୍ରସିଦ୍ଧ ।

୧୭–ଗଦ–ଔଷଧ କରିବା ପାଇଁ ଅଦା ପରି ମୂଳଥାଏ ଯାହାର ତାହା ଗଦ; ଏ ସାପ ବିଷର ଔଷଧ; ପଦ–ମନ୍ତ୍ର–ଏଥିରେ ମଧ୍ୟ ସାପ ବିଷ ଝଡ଼ାହୁଏ; ଧନ୍ୱନ୍ତରୀ–ସ୍ୱର୍ଗ ବୈଦ୍ୟ (ପରି;)
ଗୁରୁ–ସାପୁଆ କେଳା; ଘେନନ୍ତି–ମାନନ୍ତି; ମାୟା ରଚନରେ ( ଆଶ୍ଚର୍ଯ୍ୟ ଘଟଣା ସୃଷ୍ଟି କରିବାରେ ) ମୟ [ ୮ମ ଛାନ୍ଦ ୧୧ଶ ପଦ ଟୀକା ଦେଖ ] ଅଙ୍ଗନାସାର–ନାରୀ ଶ୍ରେଷ୍ଠ–ପ୍ରେମରୂପା ନଟୀ; ବାସବ (ଇନ୍ଦ୍ର) ରମ୍ଭା ( ଜଣେ ସ୍ୱର୍ଗ ବେଶ୍ୟା ) ନାଚିବାରେ ଭରି ତାରିଫ୍ ;

୧୮–ଆମ୍ଭ କୁଳଧର୍ମ ବିଦ୍ୟା–ନାଟୁଆ କେଳା ମାନଙ୍କର ଯାହା ବଂଶ ଓ ଜାତିଗତ ବିଦ୍ୟା; ସନ୍ଧ୍ୟା–ବ୍ରାହ୍ମଣ କ୍ଷତ୍ରିୟାଦି ମାନଙ୍କର ପ୍ରାତଃ, ମଧ୍ୟାହ୍ନ, ଓ ସାୟଂକାଳର ବୈଦିକ ଉପାସନାକୁ ସନ୍ଧ୍ୟା କୁହାଯାଏ । ସନ୍ଧ୍ୟା ଅବଶେଷ ହେଲ–ରଜାଙ୍କ ଉପାସନା ସରିଲା; ଅବରୋଧ ନାରୀ–ଅନ୍ତଃପୁର ବା ଭିଆସର ସ୍ତ୍ରୀ ମାନେ; ଜଗତୀ–କୋଠାର ସଭ ଉପର ଛାତ ଯେଉଁଠାରେ ତଳ ଦେଖିବାକୁ ସୁବିଧା ହୁଏ ।

୧୯–ବଡ଼ ବଡ଼ଭୀ–ମସ୍ତକ–ବଡ କୋଠା ଉପର; କୁମାରୀ–ଲବଣ୍ୟବତୀ; ପାଞ୍ଚ–ବିଗ୍ଭର; ସ୍ୱଭବ–ମନକୁ; କାମ–ମନସ୍କାମନା; ଏହି କାଳେ ଇତ୍ୟାଦି–ଏହିଠାରୁ କୁହୁକ

କରିଛି କରୀନ୍ଦ୍ର ଗତି ଏ ପାଞ୍ଚ ସ୍ୱଭବ
ରାମ ଚରିତ୍ର ଦେଖିଲେ କାମ ପୂର୍ଣ୍ଣ ହେବ ଯେ ।
ଏହି କାଳେ କାଳିକ ବୋଇଲା ନେତ୍ର ବୁଜ
ନେତ୍ର ବୁଜନ୍ତେ ରଚିଲା ସେ ମାୟାସମାଜ ଯେ । ୧୯ ।
ରୁହିଁ ରୋମୋଦ୍‌ଗମ ଜନେ ଲୋମପାଦ ବୋଲେ
ଜରତା ରତିରେ ଋଷ୍ୟଶୃଙ୍ଗ ଆସି ହେଲେ ଯେ ।
ସେ ଦେଶରେ ବୃଷ୍ଟିକଲା ତୁଷ୍ଟ ହେଲେ ରଜା
ଶାନ୍ତା କାନ୍ତା କରି ଦେଇ କଲେ ଦିବ୍ୟ ପୂଜା ଯେ ।
ଦଶରଥ ମନୋରଥ ସାର୍ଥ ହେବା ପାଇଁ
ସେ ମୁନିଙ୍କି ଘେନିଗଲେ ରଥରେ ବସାଇ ଯେ । ୨୦ ।
ରୁଚ୍ଛ ଚରୁ ସ୍ୱରୂପ ହୋଇଲେ ପଦ୍ମନାଭ
କୌଶଲ୍ୟା କୈକେୟୀ ସୁମିତ୍ରାରେ ଭକ୍ଷି ଗର୍ଭ ଯେ ।
ଅଭିରାମ ଶ୍ରୀରାମ ଶୁଭରତ ଭରତ
ସଲକ୍ଷଣ ଲକ୍ଷ୍ମଣ ଶତ୍ରୁଘ୍ନ ହେଲେ ଜାତ ଯେ ।
କ୍ରତୁ ରକ୍ଷା ହେତୁ ବିଶ୍ୱାମିତ୍ର ଆଘେନେଲେ
ବନେ ତାଡ଼କୀ ଶମନ ଭୁବନେ ପେଷିଲେ ହେ । ୨୧ ।

---

ବିଦ୍ୟା ବଳରେ ବିନୋଦ ନଟ ସଂକ୍ଷେପରେ ରାମାୟଣ କଥା ଦେଖାଇ ଗଲା । ମାୟା ସମାଜ—କୁହୁକରେ ରାମାୟଣର ଲୋକ ଓ ଘଟଣା ମାନଙ୍କର ସମାଜ (ସମାଗମ) ।

୨୦ରୁ—୩୦ ( ଅଯୋଧ୍ୟାରେ ହୋଇଲେ ନୃପତି ପର୍ଯ୍ୟନ୍ତ )

ରୋମୁଦ୍‌ଗମ—ରୋମ ଟାଙ୍କୁରୀ ଉଠିବା ( ଆଚମ୍ବିତରେ ) ଲୋମପାଦ—ଦଶରଥଙ୍କର ବନ୍ଧୁ ଲୋମପାଦ ରଜା । ଏ ରଜାଙ୍କ ଦେଶରେ ୧୨ବର୍ଷ ବର୍ଷା ନ ହେବାରୁ ସେ ଜରତା ନାମକ ବେଶ୍ୟାକୁ ପଠାଇ ଋଷ୍ୟଶୃଙ୍ଗ ନାମକ ଋଷିଙ୍କି ଭୁଲାଇ ଆଣି ଯଜ୍ଞ କରାଇବାରୁ ବର୍ଷା ହେଲା । ତହୁଁ ଲୋମପାଦ ଖୁସିହୋଇ ନିଜଝିଅ ଶାନ୍ତାକୁ ଋଷ୍ୟ—ଶୃଙ୍ଗଙ୍କୁ କାନ୍ତା ( ଭାର୍ଯ୍ୟା ) ରୂପେ ଦେଇ ପୂଜାକଲେ । ଦଶରଥ ତହୁଁ ସେହି ଋଷ୍ୟଶୃଙ୍ଗଙ୍କୁ ରଥରେ ନେଇଯାଇ ନିଜର ପୁଅ ହେବାପାଇଁ ତାଙ୍କଦ୍ୱାରା ଜାଗ କରାଇ-ଥିଲେ । ପଦ୍ମନାଭ ( ବିଷ୍ଣୁ ) ଏ ଯଜ୍ଞରେ ଚରୁ ହେଲେ । କୌଶଲ୍ୟା, କୈକେୟୀ, ସୁମିତ୍ରା ( ଦଶରଥଙ୍କର ତିନିରାଣୀ ) ସେ ଚରୁ ଭକ୍ଷି ( ଖାଇ ) ଗର୍ଭ ହେଲେ ।

ସୁବାହୁ ସୁବାହୁବଳେ ମାରି ମାରିଚକୁ
ଆକାଶରେ ଶରେ ଉଡ଼ାଇଲେ କି ଯଶକୁ ଯେ ।
ପଥରେ ପଥର ନାରୀ କରି କଲେ ମୋଦ
ଦାସ ବତ୍ସଳ ଦାସରେ ଧୁଆଇଲେ ପଦ ଯେ ।
ଖଣ୍ଡ ପରଶୁ କୋଦଣ୍ଡ ବେନି ଖଣ୍ଡ କରି
ସୀତା ବିବାହ ନିର୍ବାହ ନୃପ ଦର୍ପ ହରି ଯେ । ୨୨ ।
ବଜ୍ର ପରି ଭୃଗୁ ପତି ଭୃଗୁକୁ ଭେଦିଲେ
ଅଭିଷେକ କରିବା ମମତା ପିତା[୨୩] କଲେ ଯେ ।
ମନ୍ଥରା ମନ୍ଥନେ କାନ୍ତାନୁଜ ଘେନି ସଙ୍ଗେ
ବିଚିତ୍ର ଚିତ୍ର କୂଟରେ ବିହରିଲେ ରଙ୍ଗେ ଯେ ।
ବଜ୍ର କଲେ ଶକ୍ର ସୁତ ଚକ୍ଷୁ ନେତ୍ର ରଚି
ଭରତ ପ୍ରବୋଧି ସୁବୁଦ୍ଧିରେ ଗିରି ତେଜି ଯେ । ୨୩ ।

---

ପାଠାନ୍ତର— ୧୩, ସମ୍ମତ ତାତ

---

ଅଭିରାମ (ସୁନ୍ଦର) ଶ୍ରୀରାମ, ଶୁଭରତ ( ମଙ୍ଗଳ କାର୍ଯ୍ୟରେ ଯେ ଲାଗିଥାନ୍ତି) ସେହି ଭରତ, ସଲକ୍ଷଣ ( ଶୁଭ ଲକ୍ଷଣ ବନ୍ତ ) ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜାତ ହେଲେ । ବଣରେ ଋଷିଙ୍କର କ୍ରତୁ (ଯଜ୍ଞ) ରକ୍ଷା ନିମନ୍ତେ ବିଶ୍ୱାମିତ୍ର ଋଷି ଆସି ବାଳକ ରାମ ଲକ୍ଷ୍ମଣଙ୍କୁ ନେଲେ । ରାମ ତାଡ଼କୀ ରାକ୍ଷସୀକୁ ଶମନ ( ଯମ ) ଭୁବନ ( ପୁର )କୁ ପେଶିଲେ ( ପଠାଇଲେ ) [ ମାରିଲେ ] । ସୁବାହୁ ବଳେ ( ନିଜପରାକ୍ରମରେ ) ସୁବାହୁକୁ ରାମ ମାରିଲେ । ଯଶକୁ ଉଡ଼ାଇଲା ପରି ଶରରେ ମାରିଚକୁ ଆକାଶରେ ଉଡ଼ାଇଲେ । ପଥରେ (ବାଟରେ) ପଥର ହୋଇ ରହିଥିବା ଅହଲ୍ୟାକୁ ନାରୀ ପାଲଟାଇ ମୋଦ ( ଖୁସି ) କଲେ । ବାଟରେ ଦାସବତ୍ସଳ ( ଭକ୍ତପ୍ରିୟ ) ରାମ, ଦାସରେ (କେଉଟ ଦ୍ୱାରା) ପାଦ ଧୁଆଇଲେ । [ ଅହଲ୍ୟା ପଥରକୁ ପାଦଧୂଳିରେ ମଣିଷ କରିଥିବାରୁ ନଈ ପାରି ବେଳେ କାଳେ ରାମଙ୍କ ପାଦଧୂଳି ଲାଗି ନାହାଟା ମାଇକିନିଆ ହୋଇଯିବ ବୋଲି କେଉଟ ପାଦ ନ ଧୋଇ ନାହାରେ ବସାଇ ଦେଇ ନ ଥିଲା । ] ଖଣ୍ଡ ପରଶୁ କୋଦଣ୍ଡ ( ଶିବଧନୁ ) ଦିଖଣ୍ଡ କରି ଭାଙ୍ଗି ଅନ୍ୟ ନୃପ( ରାଜା )ଙ୍କ ଦର୍ପ ହରି, ଗର୍ବ ଧ୍ୱଂସ କରି ସୀତାଙ୍କୁ ବିଭା ହେଲେ । ସୀତାଙ୍କୁ ଘେନି ଅଯୋଧ୍ୟାକୁ ଆସୁ ଆସୁ ବାଟରେ ବଜ୍ରପରି ଭୃଗୁପତି ପର୍ଶୁରାମ ରୂପ ଭୃଗୁ (ପର୍ବତକୁ) ଭେଦିଲେ । [ ତାଙ୍କୁ ହୀନମାନ କଲେ । ] ତହୁଁ ପିତା ଦଶରଥ ରାମଙ୍କୁ ଯୁବରାଜ ପଦରେ ଅଭିଷେକ କରିବାପାଇଁ ମମତା କଲେ ( ମନ ବଳାଇଲେ ) । କୈକେୟୀର ଦାସୀ ମନ୍ଥରା

ବୀରଯୂଧେ ବିରଧ ବଧକୁ ବିସ୍ମରିଲେ
ଅମଳାନ ବସ୍ତ୍ର ବ୍ରହ୍ମ ଅସ୍ତ୍ରକୁ ପାଇଲେ ଯେ ।
ଦଣ୍ଡକାରଣ୍ୟକୁ ମଣ୍ଡି ସୂର୍ପଣଖା ଦଣ୍ଡି
ଖର ଖର ଦୂଷଣ ତ୍ରିଶର ଶିରଖଣ୍ଡି ଯେ ।
ହେମ ସାରଙ୍ଗ ରଙ୍ଗରେ ଲଙ୍କା ଦଣ୍ଡଧାରୀ
ସୀତା ସିତାଂଶୁ ମୁଖୀକି ଉଟଜରୁ ହରି ଯେ । ୨୪ ।
ମାର୍ଗେ ବେଗେ ନାଶି ଖଗ ଖଡ୍ଗ ପ୍ରହାରେ
ରହି ଶୋକବତୀ ସୀତା ଅଶୋକ ବନରେ ଯେ ।
ବାସେ ନ ଦେଖି ସୁମୁଖୀ ମହା ଦୁଃଖୀ ରମ
ବିଳାପ କଳାପ ମାପ କରଣେ କେ କ୍ଷମ ଯେ ।
ରକ୍ଷ ଦେଶ ଗମନ ସଂଦେଶ ପକ୍ଷୀ କହି
କବନ୍ଧ ବନ୍ଧନେ ପଡ଼ି ତାହା ନାଶ ବିହି ଯେ । ୨୫ ।

---

ମନ୍ଥନରେ ( କୂଟ ପରାମର୍ଶରେ ଘାଣ୍ଟିହୋଇ ) କାନ୍ତା ( ପତ୍ନୀ ସୀତା ) ଅନୁଜ ( ସାନଭାଇ-ଲକ୍ଷ୍ମଣ )ଙ୍କୁ ଘେନି ବିଚିତ୍ର ( ସୁନ୍ଦର ) ଚିତ୍ରକୂଟ ପର୍ବତରେ ଯାଇ ରହିଲେ । ସେଠାରେ ସୀତାଙ୍କୁ ଅପମାନ ଦେବାରେ ଶକ୍ରସୁତ ( କାକ-କୁଆ ) ତାହାର ଚକ୍ର ନେତ୍ର ରଜି ( ଚକା ଆଖି ଦୁଇଟି ) ବଙ୍କା କଲେ । [ ପ୍ରବାଦ ଅଛି ସେହିଦିନଠାରୁ କୁଆ ସିଧା ଦେଖିପାରେ ନାହିଁ । ] ରମଙ୍କୁ ବଣରୁ ଫେରାଇ ଆଣି-ବାକୁ ଯାଇଥିବା ଭରତଙ୍କୁ ରମ ପ୍ରବୋଧି ( ବୁଝାଇ ) ଫେରାଇ ଦେଇ ସୁବୁଦ୍ଧିରେ ( ଭଲବୁଦ୍ଧି ପାଞ୍ଚି ) ଚିତ୍ରକୂଟ ଗିରି ଛାଡ଼ି ଦକ୍ଷିଣକୁ ଗଲେ । ବାଟରେ ବୀରଯୂଧେ ( ବୀରର ଉପଯୁକ୍ତ ଶସ୍ତ୍ରରେ ) ବିରଧ ରାକ୍ଷସକୁ ମାରିଲେ । ଋଷିମାନଙ୍କ ଠାରୁ ସୀତାଙ୍କ ପାଇଁ ଅମଳାନ ବସ୍ତ୍ର ( ମଇଳା ନ ହେବା ଲୁଗା ) ଓ ବ୍ରହ୍ମ ଅସ୍ତ୍ର ନାମକ ଶରକୁ ପାଇଲେ । ଦଣ୍ଡକାରଣ୍ୟରେ ଯାଇ ରହି ସେଠାରେ ରବଣ ଭଉଣୀ ସୁପଣଖାକୁ ଦଣ୍ଡିଲେ । ଖର ( ଶୀଘ୍ର ) ସୁପଣଖାର ହୋଇ ଯୁଦ୍ଧ କରିବାକୁ ଆସିଥିବା ଖର, ଦୂଷଣ, ତ୍ରିଶିର ତିନି ରାକ୍ଷସଙ୍କ ମୁଣ୍ଡ କାଟିଲେ । ତହୁଁ ଲଙ୍କା ଦଣ୍ଡଧାରୀ ରାବଣ ହେମ ସାରଙ୍ଗ ( ସୁନା ମୃଗ ) ରଙ୍ଗରେ ( ମାୟା ଲଗାଇ ) ଶିତାଂଶୁ ମୁଖୀ ( ଚନ୍ଦ୍ରମୁଖୀ ) ସୀତାଙ୍କୁ ଉଟଜ ( କୁଡ଼ିଆ )ରୁ ହରି ( ଚୋରାଇ ) ନେଲା । ରବଣ ସୀତାଙ୍କୁ ନେଇ ଗଲାବେଳେ ବାଟରେ ଖଡ୍‌ଗ ପ୍ରହାରେ ( ଖଣ୍ଡା ପାହାରରେ ) ଜଟାୟୁ ନାମକ ଖଗ (ପକ୍ଷୀ)କୁ ମାରିଲା । ଶୋକବତୀ (ଶୋକାକୁଳା) ସୀତା

ପଢ଼ିବାନେ ମୋକ୍ଷ ଫଳ ଲଭିଲ ଶବରୀ

କ୍ଷୀରପାନେ ବର-ବରଜରେ ବାଞ୍ଛା ପୂରି ଯେ ।

କାମ କାମନାକୁ ମୁନି ଚିରେ ଜନ୍ମାଇଲେ

ପମ୍ପାଶରେ କୋକ ଶୋକ କାରକ ହୋଇଲେ ଯେ

ମିତ୍ର ବଂଶୀ ମିତ୍ରବସି ମିତ୍ରପୁତ୍ର ସଙ୍ଗେ

ଭେଦି ଶାଳ ଦୁନ୍ଦୁଭି ଅସ୍ଥିକି ଗୁଳି ରଙ୍ଗେ ଯେ । ୨୬ ।

ଶାଖାମୃଗ-ରାଜ ମୃଗରାଜ କୋଟି ବଳ

ଶର ଶରଭରେ କଲେ ବିନାଶ ଚପଳ ଯେ ।

ମାଲ୍ୟବନ୍ତ ଧରଣୀ ଧରରେ ପୁର ରଚି

ରଘୁବୀର ବିରହେ ବରଷା କାଳ ବଞ୍ଚି ଯେ ।

କୁକୁଟ କୁ ମୁକୁଟ ସେ ଗିରି କୂଟେ ଦେଇ

ଲଭି ବଲ୍ଲଭୀ ଉଦନ୍ତ ଦୂତ ପଠିଆଇ ଯେ । ୨୭ ।

---

ଲଙ୍କାର ଅଶୋକ ବନରେ ରହିଲେ । ରାମ ଲକ୍ଷ୍ମଣଙ୍କ ସଙ୍ଗେ ମାୟାମୃଗ ମାରି ଫେରି ବାସେ (ଘରେ, କୁଡ଼ିଆରେ) ସୁମୁଖୀ ସୀତାଙ୍କୁ ନଦେଖି ମହା ଦୁଃଖୀ ହେଲେ । ତାଙ୍କର ବିଳାପ କଳାପ (କାନ୍ଦ ବୋବା ସବୁ) କିଏ ମାପି ପାରିବ । ରକ୍ଷଦେଶ (ଲଙ୍କା) ଗମନ ସନ୍ଦେଶ (ସମ୍ବାଦ) ପକ୍ଷୀ ଜଟାୟୁ କହି ମରିଗଲା । ବାଟରେ ଖୋଜୁ ଖୋଜୁ କବନ୍ଧ ନାମକ ରାକ୍ଷସର ବାହୁ ବନ୍ଧନରେ ପଡ଼ି ରାମ ସେ କବନ୍ଧକୁ ମାରିଲେ । ବାଟରେ ଶବରୀ ରାମଙ୍କୁ ଫଳ ଖାଇବାକୁ ଦେଇ ମୁକ୍ତି ପାଇଲା । କ୍ଷୀର ପାନେ (ଦୁଧ ପିଇ) ବର ବରଜ (ଶ୍ରେଷ୍ଠ ଗୋପାଳ ମାନଙ୍କର) ବାଞ୍ଛା ପୂର୍ଣ୍ଣ କଲେ । କାମ କାମନାକୁ (କନ୍ଦର୍ପ ଇଚ୍ଛାକୁ) ଶାତକର୍ଣ୍ଣୀ ମୁନିଙ୍କ ମନରେ ଜନ୍ମାଇଲେ । [ପ୍ରକୃତରେ ଶାତକର୍ଣ୍ଣୀ କାମରେ ଯୋଗଭ୍ରଷ୍ଟ ହୋଇ ଥିବାର ରାମ ଦେଖିଥିଲେ ମାତ୍ର ।] ପମ୍ପା ପୋଖରୀରେ କୋକ (ଚକ୍ରବାକ)ର ଦାମ୍ପତ୍ୟ ପ୍ରଣୟରେ ବିରକ୍ତ ହୋଇ ରାତ୍ରିରେ ସେମାନେ ଏକାଠି ହେବେ ନାହିଁ ବୋଲି ଅଭିଶାପ ଦେଲେ । ମିତ୍ରବଂଶୀ ( ସୂର୍ଯ୍ୟବଂଶୀ ) ରାମ ମିତ୍ର ପୁତ୍ର (ସୂର୍ଯ୍ୟପୁତ୍ର ସୁଗ୍ରୀବ) ସଙ୍ଗେ ମିତ୍ର (ସଙ୍ଗାତ) ବସିଲେ । ବାଳୀକି ମାରିବା ଲାଗି ନିଜର ବଳ ଅଛି ବୋଲି ସୁଗ୍ରୀବର ବିଶ୍ୱାସ ଜନ୍ମାଇବା ପାଇଁ ଶରରେ ଶାଳ ଗଛ ଭେଦିଲେ । ଦୁନ୍ଦୁଭି ରାକ୍ଷସ ଅସ୍ଥି (ହାଡ଼କୁ) ରଙ୍ଗେ (କୌତୁକରେ) ଫିଙ୍ଗି ଦେଲେ । ମୃଗରାଜ କୋଟି (କୋଟିଏ ସିଂହର) ବଳଥିଲା ଏପରି ଯେ ଶାଖାମୃଗ ରାଜ (ମର୍କଟ ରାଜା) ବାଳୀକୁ ଶର ରୂପ

ଜଳେ ସେତୁ କଲେ ଶିଳେ ନଳେ ଦେଇ ଯଶ ।
ଲଙ୍କା ବେଢ଼ି ଶଙ୍କା କରାଇଲେ ଦୈତ୍ୟ ବଂଶ ଯେ
ବିଷଧର ପାଶ ତ୍ରାସ ନାଶ କଲା ବୀଶ[୧୪] ।
ଅନୀକିନୀ ଅନେକ ହୋଇଲେ ରଣେ ନାଶ ଯେ ।
ଘଟକର୍ଣ୍ଣ ଘଟ ତ୍ୟାଗ ଅତି କାୟ କ୍ଷୟ ।
ପୁରୁହୂତ ଜିତହତ ବ୍ରହ୍ମାସ୍ତ୍ର ଉଦୟ ଯେ । ୨୮ ।
ହନୁମାନ ଗନ୍ଧମାଦନ ଗମନ ଲୀଳା ।
ଭରତ ଉଦନ୍ତ ପ୍ରାପ୍ତ ଲକ୍ଷ୍ମଣ ଝୀଉଁଲା ଯେ ।
ଶ୍ରୀରାମଚନ୍ଦ୍ର ନରେନ୍ଦ୍ର ଶର ସର୍ପ ନେଇ ।
ଲଙ୍କାପତି ଅଙ୍କ ପେଟୀ ଭିତରେ ପୂରାଇ ଯେ ।
ଅଭୀଷଣ ବିଭୀଷଣେ ଅଭିଷେକ କରି ।
ବଇଦେହୀ ଦହି ଅନଳରେ ହେମ ପରି ଯେ । ୨୯ ।

---

ପାଠାନ୍ତର— ୧୪, ବୃଷ ।

---

ଶରଭରେ (ସିଂହ ନାଶକ ଦ୍ୱାରା) ଚପଳ (ଶୀଘ୍ର) ବିନାଶ କଲେ । ମାଲ୍ୟବନ୍ତ ଧରଣୀ ଧରରେ (ପର୍ବତରେ) ପୁର (ଘର) କଲେ । ସେଠାରେ ବିରହରେ ବର୍ଷାକାଳ ଗଲା । ସେହି ମାଲ୍ୟବନ୍ତ ଗିରିର କୂଟରେ(ଶୃଙ୍ଗରେ) କୁକ୍କୁଟ (କୁକୁଡ଼ା) ଉପରେ ସନ୍ତୁଷ୍ଟ ହୋଇ ତାକୁ ବର ଦେଲେ ଯେ ତା ମୁଣ୍ଡରେ ମୁକୁଟ ହେବ । ଦୂତ ପଠାଇ ବଲ୍ଲଭୀ ( ପ୍ରେୟସୀ ) ସୀତାଙ୍କର ଉଦନ୍ତ ( ଖବର ) ପାଇଲେ । ନଳ ସେନାପତିଙ୍କି ଯଶ ଦେଇ ଶିଳେ (ପଥରରେ) ଜଳେ (ସମୁଦ୍ରରେ) ସେତୁ (ବନ୍ଧ) କଲେ । [ନଳ ପଥର ଭସାଇ ଜାଣିଥିଲେ ।] ସୈନ୍ୟ ଘେନି ଲଙ୍କା ବେଢ଼ି ଦୈତ୍ୟବଂଶ ( ଅସୁର ମାନଙ୍କୁ ) ଶଙ୍କା(ଭୟ) କରାଇଲେ । ବୀଶ (ଗରୁଡ଼) ସେ ଇନ୍ଦ୍ରଜିତ ମାରିଥିବା ବିଷଧର ପାଶ (ନାଗ ପାଶ ବାଣ)ର ତ୍ରାସ (ଭୟ) ନାଶକଲା । ଅନେକ ଅନୀକିନୀ ( ସେନା ) ରଣେ ( ଯୁଦ୍ଧରେ ) ମଲେ । ଘଟକର୍ଣ୍ଣ ( କୁମ୍ଭକର୍ଣ୍ଣ ) ଘଟ ( ଦେହ ) ତ୍ୟାଗ କଲା । ଅତିକାୟ ରାକ୍ଷସ କ୍ଷୟ ହେଲା । ବ୍ରହ୍ମାସ୍ତ୍ର ପ୍ରୟୋଗରେ ପୁରୁହୂତ ଜିତ (ଇନ୍ଦ୍ରଜିତ) ମଲା । ଲକ୍ଷ୍ମଣଙ୍କ ଶକ୍ତି ଭେଦରେ ହନୁମାନ ଔଷଧ ପାଇଁ ଗନ୍ଧମାଦନ ପର୍ବତକୁ ଯାଇ ପର୍ବତ ଘେନି ଫେରି ଆସିବା ରୂପ ଲୀଳା ( କୌତୁକ ) ହେଲା । ବାଟରେ ଆସୁ ଆସୁ ଭରତଙ୍କର ଯେଉଁ ଉଦନ୍ତ (ଖବର) ଆଣିଥିଲା, ତାହା ରାମ

ପୁଷ୍ପକରେ ପୁଷ୍କରେ ସବଳେ କଲେ ଗତି ।
ଯୋଦ୍ଧାବର ଅଯୋଧ୍ୟାରେ ହୋଇଲେ ନୃପତି ଯେ
ଦେଖାଉଁ ଦେଖାଉଁ ଅଭିଷେକ[୧୪] ମହୋତ୍ସବ ।
ଚନ୍ଦ୍ରବଦନୀ କି ଦେଖାଇଲା ଆନ ଭବ ଯେ ।
କର୍ଣ୍ଣାଟ ଗଜ ନନ୍ଦନ ଗମ ଆଗେ ଊଣ ।
ବିଶ୍ୱମ୍ବର ଆଗେ ବିଶ୍ୱକେତୁ ଯଥା ଶୋଭ ଯେ । ୩୦ ।

---

ପାଠାନ୍ତର—୧୪, ରମାସ୍ୱଣ

---

ପାଇଲେ । ଔଷଧରେ ଲକ୍ଷ୍ମଣ ଜୀଇଁଲା । ଲଙ୍କାପତି ରାବଣ ତାର ଅଙ୍କ ( କୋଳ, ହୃଦୟ ) ରୂପ ପେଟୀ (ପେଡ଼ି)ରେ ନରେନ୍ଦ୍ର (ନରଶ୍ରେଷ୍ଠ) ରାମ ଶର ରୂପ ସର୍ପକୁ ପୁରେଇଲେ ( ତାକୁ ଶରରେ ମାଇଲେ ) । ଅଭୀଷଣ ( ଯାହାକୁ ଦେଖିଲେ ଭୟ ହୁଏ ନାହିଁ ) ସେହି ବିଭୀଷଣକୁ ଲଙ୍କା ରାଜ୍ୟରେ ଅଭିଷେକ କଲେ । ବୈଦେହୀ (ସୀତା)ଙ୍କୁ ହେମ (ସୁନା) ପରି ଅନଳେ ( ନିଆଁରେ ) ପୋଡ଼ିଲେ । ( ସୁନାକୁ ନିଆଁରେ ପୋଡ଼ିଲେ ଯେପରି ବେଶି ଉଜ୍ଜ୍ୱଳ ହୁଏ, ସେପରି ସୀତା ଅଗ୍ନି ପରିକ୍ଷାରେ ବେଶି ଶୁଦ୍ଧ ହେଲେ ଏହି ଅଭିପ୍ରାୟ ) ସବଳେ ( ଦଳବଳ ସହିତ ) ପୁଷ୍ପକ ରଥରେ ପୁଷ୍କରେ ( ଆକାଶରେ ) ଅଯୋଧ୍ୟାକୁ ଗତି କଲେ । ଯୋଦ୍ଧାବର ରାମ ଅଯୋଧ୍ୟାରେ ନୃପତି ହେଲେ ।

( ବାଲ୍ମିକୀ ରାମାୟଣ ଛଡ଼ା ଅଧ୍ୟାତ୍ମ ରାମାୟଣ, ବଳରାମ ଦାଶ ରାମାୟଣ ଓ ଅନ୍ୟାନ୍ୟ ପୁରାଣ ସୂଚିତ ରାମାୟଣ କଥା ଏପରି ଅନେକ ଜାଗାରୁ ସଂଗ୍ରହ କରି ଏ ରାମାୟଣ ଘଟଣାର ସଂକ୍ଷେପ କରା ହୋଇଥିଲେ ମଧ୍ୟ ଏ ସଂକ୍ଷେପଟି ମୁଖ୍ୟ ଘଟଣା ମାନଙ୍କ ଲକ୍ଷରେ କିପରି ଲହରୀ ପରି ସ୍ୱଚ୍ଛନ୍ଦ ଭାବରେ ଚାଲିଯାଇଛି ତାହା ଦେଖିବାକୁ ହେବ । )-ଚରୁ–ଯଜ୍ଞ ଶେଷରେ ଦେବତାଙ୍କୁ ସମର୍ପଣ କରିବା ପାଇଁ ଯବ ବ୍ରୀହି ପ୍ରଭୃତି ପାଠା କରି ଯେଉଁ ନୈବେଦ୍ୟ ଦିଆଯାଏ ତାହାକୁ ଚରୁ ଯଜମାନ ବା ଯଜମାନ ପତ୍ନୀ ଖାଇଲେ ଯେଉଁଥି ପାଇଁ ଯଜ୍ଞ କରାଯାଏ ସେ ମନୋରଥ ପୂର୍ଣ୍ଣହୁଏ ବୋଲି ବିଧି ଓ ବିଶ୍ୱାସ ଅଛି । ଶରଭ–ଶରଭ ବୋଲି ଆଠ ଗୋଡ଼ିଆ ଗୋଟିଏ କଥା କଳ୍ପିତ ଜନ୍ତୁ ଅଛି । କଥା ମଧ୍ୟ ଅଛି ଯେ ସେ ସିଂହକୁ ମାରି ପକାଏ । ଏଠାରେ ବାଙ୍କୀର କୋଟି ସିଂହର ବଳ ଥିବାରୁ ସେହି ସିଂହ ବଳ ନାଶ କରିବା ପାଇଁ ରାମଚନ୍ଦ୍ରଙ୍କ ଶର, ଶରଭ ପରି ବୋଲି କୁହାଯାଇଛି ।

୩୦–( ଦେଖାଉଁ ଇତ୍ୟାଦି ଠାରୁ )

କୁମାରୀକି ଶୁଭୁଛି ଏମନ୍ତ ଜଣାଉଛି ।
ଆନ ବରେ ମୋର ପ୍ରୟୋଜନ ନାହିଁ କିଛି ହେ
ହେ ରାମ ଶ୍ୟାମ ସୁନ୍ଦର ଅଛ ଦୟା କରି ।
ସୁଗ୍ରୀବକୁ ତାର ବିଭୀଷଣେ ମନ୍ଦୋଦରୀ ହେ ।
ଲାବଣ୍ୟବତୀ ଯୁବତୀ ଶିରୋମଣି ମୋର ।
ମନୋହାରୀ ହୋଇବ ଏମନ୍ତ ଆଜ୍ଞା[୧୭] କରହେ । ୩୧ ।
ସେ ନବୀନା ବିନା ଆନେ ନ ରସେ ମୋ ମନ ।
ଦହନ କରୁଛି ମୋତେ ମଦନ ଦହନ ହେ ।
ପ୍ରଭୁ ତୁମ୍ଭେ ବିରହ ବେଦନା ଅନୁଭବୀ ।
ନ ଘେନିଲେ ଆଉ କାହା ଆଗେ ଜଣାଇବି ହେ ।
କରୁଣା ଲୋକନେ ରାମ ଅସ୍ତୁ ବାଣୀ ଭଷି ।
ଦେଖି ଶୁଣି ଏମନ୍ତ ସେ କସ୍ତୁରୀ ସୁବାସୀ ଯେ । ୩୨ ।
ଆଳୀକି ଦେଖାଇ ଦେଇ ଅଙ୍ଗୁଳି ଦେଖାଇ ।
ସ୍ୱପନ ସମ୍ପତ୍ତି ଦାତା ପୁରୁଷ ମୋ ଏହି ଗୋ ।
ସଖୀ ବୋଇଲ ସୁନ୍ଦର ସୃଷ୍ଟି ପୁରନ୍ଦର ।
ଏଥର ଅଇଲେ ପାଶେ ଏ ଉପାୟ କର ଗୋ ।
ଉଦ୍ଧତକୁ ବିଚାର ନକରି କମ୍ବୁକଣ୍ଠୀ ।
ଭେଟ୍ଟି ଦେବୁ ଅଞ୍ଚଳେ ଅଞ୍ଚଳ ଦୃଢ ଗଣ୍ଠି ଗୋ । ୩୩ ।

---

ପାଠାନ୍ତର—୧୭, ଲୁଗା

---

ଅଭିଷେକ—ରାମାଭିଷେକ; ଚନ୍ଦ୍ରବଦନୀ—ଏଠାରେ ଲବଣ୍ୟବତୀ; ବିଶମ୍ଭର-ବିଷ୍ଣୁ; ବିଶ୍ୱକେତୁ—କନ୍ଦର୍ପର ପୁଅ ଅନିରୁଦ୍ଧ; ଆନଭବ—ଅନ୍ୟପ୍ରକାର;

୩୧—ଆନବରେ—ଅନ୍ୟ ଅନୁଗ୍ରହରେ; ଯୁବତୀ ଶିରୋମଣି—ଯୁବତୀ ଶ୍ରେଷ୍ଠ; ମନୋହାରୀ ପ୍ରିୟା, ପ୍ରେୟସି;

୩୨—ମଦନ ଦହନ—(କନ୍ଦର୍ପ ରୂପ ଅଗ୍ନି) କରୁଣା ଲୋକନେ—କୃପା ଦୃଷ୍ଟିରେ; ଅସ୍ତୁବାଣୀ ଭଷି—ହେଉ ବୋଲି କହିଲେ; କସ୍ତୁରୀ ସୁବାସୀ—କସ୍ତୁରୀ ପରି ମୁଖଗନ୍ଧ ଯାହାର ସେ ଲବଣ୍ୟବତୀ;

୩୩—ସୁନ୍ଦର ସୃଷ୍ଟି ପୁରନ୍ଦର—ସୁନ୍ଦର ସଂସାରେ ଇନ୍ଦ୍ର; ଉଦ୍ଧତକୁ—ଆପଣାର ଅଭଦ୍ରତାକୁ; ଭେଟ୍ଟି—ଦେଖିବା ମାତ୍ରେ;

ବାନ୍ଧୁ ନନ୍ଧନେ ବାନ୍ଧିବୁ ଅତି ଯତ୍ନ କରି ।
ଯାଇ ନ ପାରିବ ଶେଷ ହୋଇଲେ ଶର୍ବରୀ ଗୋ ।
ରତି ଭୋଗଯାଏ ଯେବେ ସହିବ ଦଇବ ।
ସେ ପ୍ରେମ ରଜ୍ଜୁରେ ବାନ୍ଧି ହୋଇଣ ରହିବ ଗୋ ।
ଯହିଁ ରତି ରସ ବଶ କରଇ ବ୍ରହ୍ମାକୁ ।
ଅଧିକ କି ରଚିବାର ପୁରୁଷ ଭ୍ରମକୁ ଗୋ[୧୭] । ୩୪ ।
ସଜନୀ ଏ ମଧୁର ବଚନେ କହୁଁ କହୁଁ ।
ଜଗତୀ ପ୍ରବେଶ ସେ କୁମାର ରହୁଁ ରହୁଁ ଯେ ।
କୁମାରୀ ବିଗ୍ରହରେ ସ୍ୱପ୍ନ ସଙ୍ଗ ଦିନ ନିଶି ।
ସେହି ଶୁଭ ଯୋଗ ଘେନି ବାହୁଡ଼ି କି ଆସି ଯେ ।
ଏମନ୍ତ ସେ ରସିକ ପ୍ରକାଶେ ବଚନକୁ ।
କିଣିଲୁ ଧନ ଜୀବନ ମନ ଲୋଚନକୁ ଗୋ । ୩୫ ।
ମଧୁବିନା ମଧୁପର ଆନ ଗତି କାହିଁ ।
ବିଧୁ ବିନା ଆନେ କି କୁମୁଦ ବିକାଶଇ ଗୋ ।
ବନ୍ଧୁ ବିନା ଆନ ଗତି ନାହିଁ ମୋ ଜଗତେ ।
ଆନକୁ ନ ବରି ଏକା ବରିବୁ ତୁ ମୋତେ ଗୋ ।
ଏତିକି ମାଗୁଣି ମୋ କେତକୀ ବରନାକୁ ।
ସେ କୁମାର କରୁଁ ଏ ବିନୟ ରଚନାକୁ ଯେ । ୩୬ ।
ସଖୀ ବୋଲେ ଆମ୍ଭ ସଖୀ ସତ୍ୟର ଜନନୀ
ବରଣ ଯେ କରିଛି ମୁକୁତା ମାଳା ଘେନି ହେ ।

---

ପାଠାନ୍ତର—୧୭, ଜରବା ପୁରୁଷ ଭ୍ରମରକୁ

---

୩୪—ବ୍ରହ୍ମାକୁ—ବ୍ରହ୍ମା ନିଜ ଝିଅର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଥିବାର ପୁରାଣରେ ଅଛି ।
ରଚିବାର ପୁରୁଷ ଭ୍ରମକୁ—ସାଧାରଣ ପୁରୁଷକୁ ଭୁଲଇ ଦେବା ।

୩୫—[ ଏହିପରି ଜଗତୀ ଉପରେ ମଧ୍ୟ କୁମାରୀ ସଙ୍ଗେ କୁମାରକୁ ଭେଟାଇ ଦେବାରେ କବିର ଅଧୈର୍ଯ୍ୟ ସ୍ପଷ୍ଟ ] କାବ୍ୟର ସୂଚନା କଳାରେ ଏହା ଘୋର ପ୍ରତ୍ୟବାୟ ।
ସ୍ୱପ୍ନସଙ୍ଗ ଇତ୍ୟାଦି—ସ୍ୱପ୍ନରେ ମିଳନ ହୋଇଥିବା ଦିନର ଯେ ଗତି ସେହି ଗତିର ଶୁଭ ଯୋଗ ଘେନି ଚନ୍ଦ୍ରଗନ୍ତୁ ଫେରି ଅଇଲ କି ?

୩୬—ବନ୍ଧୁବିନା—ତୋ ବିନା ( ଲାବଣ୍ୟବତୀକୁ କହୁଛି )

କୋଟି କଳ୍ପେ ଏକଥା ହୋଇଛି ନିକି ଆନ
ଘନ ତେଜି ଗଙ୍ଗାଜଳେ ଚାତକର ମନ ହେ ।
ତୁମ୍ଭେ ପୁରୁଷେ ସହଜେ ଚନ୍ଦ୍ରମା ପ୍ରକାରେ
ତାରାପତି ହେଲେ କୁମୁଦକୁ ଭୋଗ କରେ ହେ । ୩୭ ।
ଚନ୍ଦ୍ରମୁଖୀକି ରଖିଛି ସଖୀ ଥିଲ ଲଜ
ମନ କରେ ଗଳାରେ ବେଢ଼ାଇ ଦେବି ଭୁଜ ଯେ ।
ଜାଣି ତାହା ସହଚରୀ ଅନ୍ତର ହେବାକୁ
କୁହୁକ କୁଶଳୀ ହରି ନେଲ ସେ ମାୟାକୁ ଯେ ।
କୁମାର କୁମାରୀ ରୀତି ଆନକୁ ନ ଦର୍ଶି[୮]
ରମାୟଣ ଚରିତେ ସମସ୍ତେ ହେଲେ ତୋଷୀ ଯେ । ୩୮ ।
ରାଟ[୯]ହାଟକ କଟକ ଘୋଟକ ରତନ
ହାଟ ବାଟ ଲୁଟ ଶାଢୀ ବାସ କଲେ ଦାନ ଯେ ।
ଯେତେ ଲୋକ ଦେଖୁଥିଲେ ଦେଲେ ସଭଜୁର
ସବୁ ରୂପେ ପୂର୍ଣ୍ଣ ହେଲ ମନୋରଥ ତାର ଯେ ।
ବ୍ୟାକୁଳ ଅନଳେ ଦଗ୍ଧ କୁଟିଳ-କଟାକ୍ଷ
ଶତ୍ରୁମିତ୍ର ହେଲ ପ୍ରାୟ କଲ ମୋହ ରକ୍ଷା ଯେ । ୩୯ ।

---

ପାଠାନ୍ତର---୮, ମାସ୍ୟାର କୁମାରୀ ରୀତ କାହାକୁ ନ ଦର୍ଶି । ୯, ଷଟ

---

୩୭—ସତ୍ୟର ଜନନୀ—ସତ୍ୟତାଠାରୁ ଜାତ—ସତ୍ୟର ମୂଳ ସ୍ଥାନ; କୋଟିକଳ୍ପେ—କଦାପି; ଘନ ତେଜି ଇତ୍ୟାଦି—ଗଙ୍ଗାରେ ବହୁତ ପାଣିଥିଲେ ସ୍ଥଧ୍ୟ ମେଘ ବର୍ଷାରେ ଉପରୁ ପାଣି ଖାଇବା ଚାତକର ମନ; ତାରାପତି ଇତ୍ୟାଦି—ଚନ୍ଦ୍ର ତାରାର ସ୍ୱାମୀ ହେଲେ ମଧ୍ୟ କୁମୁଦକୁ ପତ୍ନୀ ରୂପେ ଭୋଗକରେ ( ଫୁଟାଏ )

୩୮—ରଖିଛି—କୁଣ୍ଢାଇ ପକାଇବାରୁ ବନ୍ଦ କରି ରଖିଛି; ସଖୀଥିଲ—ସଖୀଥିବାରୁ; କୁହୁକ କୁଶଳୀ—କୁହୁକରେ ବିଚକ୍ଷଣ ଯେ । ( ବିନୋଦ କେଳା ) ।

୩୯—ହାଟକ—ସୁନା; କଟକ—କଙ୍କଣ; ଘୋଟକ—ଘୋଡ଼ା, ରତନ—ରତ୍ନ; ହାଟ, ବାଟ, ଲୁଟ (ହାଟ ବାଟ କରିବ ରେ—ବଜାରରୁ କିଣିବାରେ) ଲୁଟ (ସବୁ ଦୋକାନ ଲୁଟି) କଲ ପରି କିଣି ଆଣିଲେ; ଯେଉଁ ଶାଢୀ, ବାସ ( ଅନ୍ୟାନ୍ୟ ଲୁଗା ) ଗଟ (ଗଜା) ଦାନ କଲେ; ଆଉ ଦେଖଣାହାରି ମାନେ ସଭ ଲୁଟ ଦେଲେ ( କୌଣସି ନାଟ ତାମସା

ବାହୁ ବନ୍ଧନେ ବାନ୍ଧିବୁ ଅତି ଯତ୍ନ କରି ।
ଯାଇ ନ ପାରିବ ଶେଷ ହୋଇଲେ ଶର୍ବରୀ ଗୋ ।
ରତି ଭୋଗଯାଏ ଯେବେ ସହିବ ଦଇବ ।
ସେ ପ୍ରେମ ରଜ୍ଜୁରେ ବାନ୍ଧି ହୋଇଣ ରହିବ ଗୋ ।
ଯହିଁ ରତି ରସ ବଶ କରଇ ବ୍ରହ୍ମାକୁ ।
ଅଧିକ କି ରଚିବାର ପୁରୁଷ ଭ୍ରମକୁ ଗୋ[୧୭] । ୩୪ ।
ସଜନୀ ଏ ମଧୁର ବଚନେ କହୁଁ କହୁଁ ।
ଜଗତୀ ପ୍ରବେଶ ସେ କୁମାର ଘହୁଁ ଘହୁଁ ଯେ ।
କୁମାରୀ ବିଗ୍ରରେ ସ୍ୱପ୍ନ ସଙ୍ଗ ଦିନ ନିଶି ।
ସେହି ଶୁଭ ଯୋଗ ଘେନି ବାହୁଡ଼ି କି ଆସି ଯେ ।
ଏମନ୍ତ ସେ ରସିକ ପ୍ରକାଶେ ବଚନକୁ ।
କିଣିଲୁ ଧନ ଜୀବନ ମନ ଲୋଚନକୁ ଗୋ । ୩୫ ।
ମଧୁବିନା ମଧୁପର ଆନ ଗତି କାହିଁ ।
ବିଧୁ ବିନା ଆନେ କି କୁମୁଦ ବିକାଶଇ ଗୋ ।
ବନ୍ଧୁ ବିନା ଆନ ଗତି ନାହିଁ ମୋ ଜଗତେ ।
ଆନକୁ ନ ବରି ଏକା ବରିବୁ ତୁ ମୋତେ ଗୋ ।
ଏତିକି ମାଗୁଣି ମୋ କେତକୀ ବରନାକୁ ।
ସେ କୁମାର କହୁଁ ଏ ବିନୟ ରଚନାକୁ ଯେ । ୩୬ ।
ସଖୀ ବୋଲେ ଆସ ସଖୀ ସତ୍ୟର ଜନନୀ
ବରଣ ଯେ କରିଛି ମୁକୁତା ମାଳା ଘେନି ହେ ।

---

ପାଠାନ୍ତର—୧୭, କଣବା ପୁରୁଷ ଭ୍ରମରକୁ

---

୩୪—ବ୍ରହ୍ମାକୁ—ବ୍ରହ୍ମା ନିଜ ଝିଅର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଥିବାର ପୁରାଣରେ ଅଛି ।
ରଚିବାର ପୁରୁଷ ଭ୍ରମକୁ—ସାଧାରଣ ପୁରୁଷକୁ ଭୁଲାଇ ଦେବା ।

୩୫—୮ ଏହିପରି ଜଗତୀ ଉପରେ ମଧ୍ୟ କୁମାରୀ ସଙ୍ଗେ କୁମାରକୁ ଭେଟାଇ ଦେବାରେ କବିର ଅଧୈର୍ଯ୍ୟ ସ୍ପଷ୍ଟ ) କାବ୍ୟର ସୂଚନା କଳାରେ ଏହା ଘୋର ପ୍ରତ୍ୟବାୟ ।
ସ୍ୱପ୍ନସଙ୍ଗ ଇତ୍ୟାଦି—ସ୍ୱପ୍ନରେ ମିଳନ ହୋଇଥିବା ଦିନର ଯେ ଗତି ସେହି ଗତିର ଶୁଭ ଯୋଗ ଘେନି ଚନ୍ଦ୍ରଭାନୁ ଫେରି ଅଇଲା କି ?

୩୬—ବନ୍ଧୁବିନା—ତୋ ବିନା ( ଲାବଣ୍ୟବତୀକୁ କହୁଛି )

କୋଟି କଳ୍ପେ ଏକଥା ହୋଇଛି କିକି ଆନ
ଘନ ତେଜି ଗଙ୍ଗାଜଳେ ଗ୍ଭତକର ମନ ହେ ।
ତୁମ୍ଭେ ପୁରୁଷେ ସହଜେ ଚନ୍ଦ୍ରମା ପ୍ରକାରେ
ତାରାପତି ହେଲେ କୁମୁଦକୁ ଭୋଗ କରେ ହେ । ୩୭ ।
ଚନ୍ଦ୍ରମୁଖୀକି ରଖିଛି ସଖୀ ଥିଲ ଲଜ
ମନ କରେ ଗଳାରେ ବେଢ଼ାଇ ଦେବି ଭୁଜ ଯେ ।
ଜାଣି ତାହା ସହଚରୀ ଅନ୍ତର ହେବାକୁ
କୁହୁକ କୁଶଳୀ ହରି ନେଲ ସେ ମାୟାକୁ ଯେ ।
କୁମାର କୁମାରୀ ରୀତି ଆନକୁ ନ ଦର୍ଶି[୧୮]
ରମାୟଣ ଚରିତେ ସମସ୍ତେ ହେଲେ ତୋଷୀ ଯେ । ୩୮ ।
ରାଟ[୧୯]ହାଟକ କଟକ ଘୋଟକ ରତନ
ହାଟ ବାଟ ଜୁର ଶାଢୀ ବାସ କଲେ ଦାନ ଯେ ।
ଯେତେ ଲେକ ଦେଖୁଥିଲେ ଦେଲେ ସଭଜୁର
ସବୁ ରୂପେ ପୂର୍ଣ୍ଣ ହେଲ ମନୋରଥ ତାର ଯେ ।
ବ୍ୟାକୁଳ ଅନଳେ ଦଗ୍ଧ କୁଟିଳ-କଟାକ୍ଷ।
ଶତ୍ରୁମିତ୍ର ହେଲ ପ୍ରାୟ କଲ ମୋହ ରକ୍ଷା ଯେ । ୩୯ ।

---

ପାଠାନ୍ତର--୧୮, ମାସ୍କାର କୁମାରୀ ରୀତ କାହାକୁ ନ ଦର୍ଶି । ୧୯, ଷଟ

---

୩୭—ସତ୍ୟର ଜନନୀ—ସତ୍ୟତାଠାରୁ ଜାତ—ସତ୍ୟର ମୂଳ ସ୍ଥାନ; କୋଟିକଳ୍ପେ—କଦାପି; ଘନ ତେଜି ଇତ୍ୟାଦି—ଗଙ୍ଗାରେ ବହୁତ ପାଣିଥିଲେ ମଧ୍ୟ ମେଘ ବର୍ଷାରେ ଉପରୁ ପାଣି ଖାଇବା ଗ୍ଭତକର ମନ; ତାରାପତି ଇତ୍ୟାଦି—ଚନ୍ଦ୍ର ତାରାର ସ୍ୱାମୀ ହେଲେ ମଧ୍ୟ କୁମୁଦକୁ ପତ୍ନୀ ରୂପେ ଭୋଗକରେ ( ଫୁଟାଏ )

୩୮—ରଖିଛି—କୁଣ୍ଢାଇ ପକାଇବାରୁ ବନ୍ଦ କରି ରଖିଛି; ସଖୀଥିଲ—ସଖୀଥିଲରୁ; କୁହୁକ କୁଶଳୀ—କୁହୁକରେ ବିଚକ୍ଷଣ ଯେ । ( ବିନୋଦ କେଳା ) ।

୩୯—ହାଟକ—ସୁନା; କଟକ—କଙ୍କଣ; ଘୋଟକ—ଘୋଡ଼ା, ରତନ—ରତ୍ନ; ହାଟ, ବାଟ, ଜୁର (ହାଟ ବାଟ କରିବ ରେ—ବଜାରରୁ କିଣିବାରେ) ଜୁର (ସବୁ ଦୋକାନ ଲୁଟି) କଲ· ପରି କିଣି ଆଣିଲେ; ଯେଉଁ ଶାଢୀ, ବାସ ( ଅନ୍ୟାନ୍ୟ ଲୁଗା ) ରଟ (ରଜା) ଦାନ କଲେ; ଆଉ ଦେଖଣାହାରି ମାନେ ସଭ ଜୁର ଦେଲେ ( କୌଣସି ନାଟ ତାମସା

ଯେତେବେଳେ ଏ ରୂପେ ରହିଲ ଲବମଣୀ
ଜନନୀ ହକର କେତେ ଦଣ୍ଡକୁ ବଞ୍ଚାଇ ଯେ ।
ଏ ଉତ୍ତାରୁ ଶଙ୍କା ଉପୁଜାଇ ଦେଲେ ଆଳୀ
ଗୁପତ କଥା ପ୍ରକଟ ହେଲ ନବବାଳୀ ଗୋ ।
ତୁ ରାଜ କୁମାରୀ ତତେ ହେବ ବଡ଼ଲଜ
ସରିବ ଆମ୍ଭ ମହତ୍ୱ ନ ପାଇବୁ କାର୍ଯ୍ୟ ଗୋ । ୪୦ ।
ହଳାହଳ ପାନେ ପ୍ରାଣ ରକ୍ଷା ବାଞ୍ଛା କରୁ
ସନ୍ନିପାତକୁ ସେ ହିତ ହୁଏ ସିନା ଭୀରୁ ଗୋ ।
ତେଜ ରୋଗ ଜନମିଲେ ଆଉ ରକ୍ଷା କାହିଁ
ଚତୁରୀ ତୁ ଏତେଜ ବିବେକ ହେଉ ନାହିଁ ଗୋ ।
ଏହି ବଡ଼ ଭୟ ତା ନିଗୂଢ ହୋଇ କରି
ପଳାଇଲ ପ୍ରାଣକୁ ରଖିଲ ବଳେ ଧରି ଯେ । ୪୧ ।

---

ଦେଖି ସାରିଲେ ନାଟୁଆ ଲୁଗା ପକାଇ ଦିଏ ବା କାନି ପତାଇ ବୁଲି ଆସେ । ସେହି ଲୁଗାରେ ଯାହାର ଯାହା ଥାଏ ଦେଇ ଦିଅନ୍ତି ଏହି ରୀତିକୁ ସଭ ଜୁର କହନ୍ତି ) କିମ୍ବା ( ଲୋକେ ଦେଲେ ଏବଂ ସଭ ଜୁର ବା ଲୁଟି ହେଲ ପରି ହେଲ—ଏପରି ଅର୍ଥ ହୋଇ ପାରେ । ) କୁଟିଳ—କଟାକ୍ଷ—ବକ୍ର କଟାକ୍ଷ ଯାହାର ( ଲବଣ୍ୟବତୀ ); ଶତ୍ରୁ ମିତ୍ର ହେଲେ ଯେପରି ଛଳନା କରେ ଲବଣ୍ୟବତୀ ସେହିପରି ନିଜର ମୋହକୁ ଭୁଲି ନ ପାରିଲେ ମଧ୍ୟ ଭୁଲିଲ ପରି ହୋଇ ରହିବାକୁ ଚେଷ୍ଟାକଲ । ଅର୍ଥାତ୍ ଅନ୍ୟମନସ୍କ ହୋଇ ରହିଲ ।

୪୦—କେତେ ଦଣ୍ଡକୁ (କେତେ ସମୟ ପରେ) ମା ଙ୍କ ଡ଼ାକରା ତାକୁ ଯେପରି କି ବଞ୍ଚାଇ ଦେଲ ( ସେ ଭବରୁ ଅଲଗା କରି ଦେଲ ) । ସେତିକି ବେଳେ ଗୁପ୍ତକଥା ଧରା ପଡ଼ିଗଲଣି ବୋଲି ସଖୀମାନେ ଭୟ ଦେଖାଇ ଦେଲେ ।

୪୧—ହଳାହଳ ( ବିଷ ) କେବଳ ସନ୍ନିପାତ ବେଳେ କେବେ କେବେ ହିତ ହୁଏ । [ ତେଜ ରୋଗ—ଏଠାରେ କନ୍ଦର୍ପ ଜ୍ୱାଳା ଜନିତ ରୋଗ, ସେ ରୋଗ ଜନ୍ମିଲେ ଧରା ନ ପଡ଼ି ଆଉ ରକ୍ଷାନାହିଁ । ] ଏହି ଭୟ ନିଗୂଢ ହୋଇ ( ତା ଭିତରେ ପଶିଯାଇ ) ପଳାଇଲ ପ୍ରାଣକୁ ବଳେ ଧରି ରଖିଲ ( ସେ ଯେ ଆତ୍ମହରା ହୋଇଥିଲ ସେଥିରୁ ତାକୁ ଫେରାଇ ଆଣି ପ୍ରକୃତିସ୍ଥ କଲ । )

ନଟ ଯାଇ କେତେ ଦିନେ କର୍ଣ୍ଣାଟେ ପ୍ରବେଶ
କୁମାରକୁ କହିଲା ଦୁର୍ଲ୍ଲଭ କନ୍ୟା ବଶ ଯେ ।
ନାମ ଦେଶ ପଚ୍ଚରିଲେ ତାହି ପ୍ରକାଶିଲା
କୁମାର ବିଶ୍ବରେ ମୋର ସୁକୃତ ଦିଶଇ ଯେ ।
ଅଘ କରୀନ୍ଦ୍ର ପାରିନ୍ଦ୍ର ଅଯୋଧ୍ୟା ନରେନ୍ଦ୍ର
ଭାବି ଛାନ୍ଦ ଶେଷକଲା ଭଞ୍ଜ ଉପେନ୍ଦ୍ର ଯେ । ୪୨ ।

୪୨-ତାହି-ସେ ସବୁ;
ଅଘ ( ପାପ ) ରୂପ କରୀନ୍ଦ୍ର ( ହାତୀ )କୁ ନାଶ କରିବାରେ ପାରିନ୍ଦ୍ର ( ସିଂହ ) ପରି ହୋଇଛନ୍ତି ଯେ ଅଯୋଧ୍ୟା ନରେନ୍ଦ୍ର ( ରାମଚନ୍ଦ୍ର )

ଃଃ

# ଷୋଡ଼ଶ ଛାନ୍ଦ

## ଶୋଭା ପ୍ରଶଂସା

( ଚନ୍ଦ୍ରଭାନୁର ମିତ୍ର ଆଗରେ ଲବଣ୍ୟବତୀ ରୂପ କଥନ )

ରାଗ ଗୁଜ୍ଜରୀ—ଚନ୍ଦ୍ରାବତୀ ସ୍ୱୟମ୍ବର ବାଣୀ ।

ଇନ୍ଦ୍ରଜାଳିକ ମୁଖୁଁ ଶୁଣି । ବଶ ହେବାର ପୃଥୁ ଶ୍ରୋଣୀ ।
ଚିତ୍ତୋଇ ଶୋଭ ଅନୁରାଗ । କିଛି ପ୍ରକାଶେ ମିତ୍ର ଆଗ । ୧ ।
ହା ହା ସେ ନରେନ୍ଦ୍ର କୁମାରୀ । ଅବନୀ ଶିରୀ ସୁକୁମାରୀ ।
ପଲ୍ୟଙ୍କ ଅଙ୍କେ ଶୋଇଥିଲା । ସୁକୃତ ଦୂତି ଭେଟାଇଲା । ୨ ।
ସଂସାରେ ଯେତେ ଦୃଷ୍ଟି ଅଛି । ତାଠାରେ ପୁଷ୍ଟି ସେ ହୋଇଛି
ଏଣୁ ଜଗତମୟ[୧]ରୂପ । ପୁଣ କନ୍ଦର୍ପ ରସ କୂପ । ୩ ।
ତହିଁ ନୟନ ମୀନ ପଡ଼ି । କି ଚିତ୍ତ ରହିବାର ବୁଡ଼ି ।
ଆଗ ପଛକୁ ସମ ଶୋଭ । ଶୋଭ ବୃନ୍ଦର ହେମ ପ୍ରଭ । ୪ ।
ପ୍ରଭ ମାନଙ୍କ ନିଜ ଧାମ । ଅନ୍ୟୋନ୍ୟେ ନାମ ରୂପ ସମ ।
ସମ ନୋହିଲେ ଆଉ କାହିଁ । ମୁକୁର ଦେଖା ବେଳେ ଦୁଇ । ୫ ।

---

ପାଠାନ୍ତର—୧, ଜଗତ ଜସ୍ମ ରୂପ ।

---

୧— ପୃଥୁଶ୍ରୋଣୀ—ମୋଟା ଓ ମାଂସଳ ପିଣ୍ଡ ଯାହାର ( ଲବଣ୍ୟବତୀ ) ଚିତ୍ତୋଇ—ମନେ ପକାଇ;

୨— ସୁକୃତି ଦୂତି—ମୋର ପୁଣ୍ୟ ଦୂତିହୋଇ, ଦୂତି ରାଧାଙ୍କୁ କୃଷ୍ଣଙ୍କ ପାଖେ ଭେଟାଇଥିଲା । ଏଠାରେ ସ୍ୱପ୍ନରେ ଦେଖିବାକୁ ଲକ୍ଷ ।

୩— ଦୃଷ୍ଟି—ଶୋଭା; ପୁଷ୍ଟି ହୋଇଛି—ଏକାଠି ହୋଇ ବଡ଼ ହୋଇଛି, ଏଣୁ ସେ ଜଗତରେ ସବୁ ଆଡ଼େ ଦେଖା ଯାଉଛି । ପୁଣି କନ୍ଦର୍ପ (କେଳି)ରୂପ ରସ (ଜଳ)ର କୂପ(କୂଅ)

୪— ତହିଁ—ସେ କୂଅରେ; ଆଖିରୂପ ମାଛ; ଆଗରେ ଓ ପଛଆଡ଼ୁ ସମାନ ସୁନ୍ଦର; ପ୍ରଭ-ପ୍ରତିମା

୫— ପ୍ରଭ—ଶୋଭ; ଧାମ—ପୂଣ୍ୟସ୍ଥାନ; ନାମ—ଲବଣ୍ୟବତୀ; ରୂପରେ ମଧ୍ୟ ଲବଣ୍ୟବତୀ; ନାମକୁ ରୂପ ସମାନ; କେବଳ ଦର୍ପଣରେ ଦେଖିଲେ ତାରି ପରି ଦୁଇଟି ଦିଶନ୍ତି । ଆଉ କେହି ତାର ସମାନ ନୁହେଁ ।

ଅଳଙ୍କାରକୁ ଅଳଙ୍କାର । ନିଶ୍ଚୟ ସେହି ଗମାକର ।
ଭବାଦି ଯେତେ ଅଳଙ୍କାର । ସେମାନେ ଅଳଙ୍କାର ତାର । ୬ ।
ଅନୁରାଗର ବିଷ ସେହି । ଅନୁରାଗକୁ ଜନମାଇ ।
ଯୌବନ ଶୋଭ ସେ କାମିନୀ । ଯୌବନ ଶୋଭ ତାହା ଘେନି । ୭ ।
ମୁଖ ପ୍ରଶଂସା କଳାକର । ତାହା ପ୍ରଶଂସା ମୁଖତାର ।
ତା ରୂପ ଅସ୍ତ କରି ଘେନ । ରୂପାସ୍ତ୍ର ବୋଲାଇ ମଦନ । ୮ ।
ଯୁବା ସଂସାର ସଂହାରିଣୀ । ଯୋଗୀରେ ସଂସାର କାରିଣୀ[୨] ।
କୁଙ୍କୁମ କାନ୍ତି ଅସମରେ । ସଙ୍କୋଚ ବହିଛି ନାମରେ । ୯ ।
ସୁନ୍ଦରୀ ପୁରନ୍ଦର ମୋହି । ସୁନ୍ଦରୀ ପରନ୍ଦରୀ ଏହି ।
ଦେଖୁ ତା ସର୍ବାଙ୍ଗ ସୁନ୍ଦର । ଚିତ୍ତେ ଚିନ୍ତିବ ପୁରନ୍ଦର । ୧୦ ।
କି ତପ କରି ପିନ୍ଧା ଶାଢ଼ୀ । ସେ ବାଳା ପ୍ରତି ଅଙ୍ଗେ ଜଡ଼ି ।
ଜାଣିଲେ ସେ ତପ ସାଧନ୍ତି । ତେତିକି ବେଳୁଁ ହୋଏ ମତି । ୧୧ ।
ନିଦ୍ରା ଭଙ୍ଗ ସୁଇଗ୍ନ ବେଳେ । ଭଙ୍ଗୀଏ ଅନୁକୂଳ କଲେ ।
ଲୁଟି ଯେ ଘଲେ ଧୈର୍ଯ୍ୟ ଧନ । ପ୍ରଥମେ ଧରି ନେଲେ ମନ । ୧୨ ।

---

ପାଠାନ୍ତର—[୨], ଯୋଷାରେ ସଂସାରେ କାରେଣୀ ।

---

୬— ଭବାଦି—[ ୭ମ ଛାନ୍ଦ ୭୫ ପଦ ଟୀକା ଦେଖ ] ।

୭— ଅନୁରାଗକୁ ଜନ୍ମାଇ ବିରହ ହେତୁରୁ ସେ ସେହି ଅନୁରାଗର ( ପ୍ରୀତି )ର ବିଷ ( ପ୍ରାଣହନ୍ତା ) ପରି ହୋଇଛି । ସେ ଯୌବନର ଶୋଭ କାହିଁକି ନା ଯୌବନ ହିଁ ତା ଯୋଗେ ସୁନ୍ଦର ।

୮— ତା ମୁହଁ କଳାକର ( ଚନ୍ଦ୍ର )ର ପ୍ରଶଂସା ପରି ତାର ପ୍ରଶଂସା ତାର ମୁଖ ଛଡ଼ା ଅନ୍ୟ କୌଣସି ଉପମାରେ କହିହେବ ନାହିଁ । ତାରି ରୂପକୁ ଅସ୍ତ କରିବାରୁ ମଦନକୁ ରୂପାସ୍ତ୍ର କହନ୍ତି ।

୯— ଯୋଗୀକୁ ସଂସାର ( ଗୃହସ୍ଥାଶ୍ରମ ) କରାଇବାରେ ସମର୍ଥ । କୁଙ୍କୁମ କାନ୍ତି ଇବର୍ଣ୍ୟ-ବତୀର ଦେହ କାନ୍ତି ସଙ୍ଗେ ସମାନ ନ ହେବାରୁ ତା ନାମରେ ସଙ୍କୋଚ ଅର୍ଥାତ୍ କୁସ୍ତଚାର୍ଥ ( କୁ ) ବସିଛି ।

୧୦—ପୁରନ୍ଦର ମୋହୀ—ଇନ୍ଦ୍ର ମୋହନ କାରିଣୀ; ସୁନ୍ଦରୀ ପୁରନ୍ଦରୀ—ସୁନ୍ଦରୀ ଶ୍ରେଷ୍ଠ; ଚିତ୍ତେ ଚିନ୍ତିବ—ବିସ୍ମୟ ହୋଇଯିବ, ଆଚମ୍ଭିତ ହୋଇଯିବ ;

୧୨—ଭଙ୍ଗୀଏ—ଭବ ଓ କାର୍ଯ୍ୟ ଗତି ମାନେ ।

ଅଙ୍ଗ ଦେଶରେ ଲଜ ପ୍ରୀତି । ହୋଇ ଯେ ଥିଲେ ବେନି ମତ୍ତୀ ।
କେ କେତେ ବେଳେ ବଳିଆର । ହୋଇଲେ ଅନୁଗ୍ରହେ ତାର । ୧୩ ।
ଉରଜ ପୃଥୁ ଚକ୍ରବର୍ତ୍ତୀ । ଦେଖାଇ ବିଶେଷ ଉନ୍ନତି ।
ଲେଖାଇ ନେଲ ହାତ ପତ୍ର । ହେଲି ବୋଲି ମୁଁ ତୋର ଭୃତ୍ୟ । ୧୪ ।
କନକ ମହୀଧର ଠାରୁ । ଉଦରେ ରଖୁଛି ତା ଭୀରୁ ।
କସ୍ତୁରୀ ପଙ୍କ ବର୍ଣ୍ଣ ପନ୍ତି । ରୋମାଳୀ ବୋଲଭ ଅଛନ୍ତି । ୧୫ ।
ଯହିଁ ଏମନ୍ତ ଧୈର୍ଯ୍ୟବନ୍ତ । ରଖି ନ ପାରିଲେ ଗୁରୁତ୍ୱ ।
ଆଉ କାହାର ତାକୁ ଗୁହିଁ । ବାଞ୍ଛା ନୋହିବ ଦାସ ହୋଇ । ୧୬ ।
ବାଳୀ ଡାକିଲ ବେଳେ ନେତ୍ର । ଜୀବନ ହୋଇଲ ଆରତ ।
ଖେଳି ଆସୁଛି କାଳ ଅହି । ଏ ମୋତେ ଦଂଶିବାର ପାଇଁ । ୧୭ ।
ପିଛଡ଼ା ପେଡ଼ା ମଧ୍ୟେ ଥିଲ । କି ରୂପେ ଫିଟି ଏ ଥଇଲ ।
ନମାନି ବାରୁ ଗଦ ପଦ । ନିଶପ ହେଲ ବିଷ ବୈଦ୍ୟ । ୧୮ ।

ପାଠାନ୍ତର—ଗ, ପୁର

୧୩—ଅଙ୍ଗ ଦେଶରେ ( ତା ଶରୀରରେ ) କେତେ ବେଳେ ଲଜ ବେଶି ଜଣାଗଲ । କେତେବେଳେ ପ୍ରୀତି ବେଶି ଜଣାଗଲ ।

୧୪—୧୫—ପୃଥୁ—ପୃଥୁଳ; ପୃଥୁ ନାମକ ପ୍ରଥମ ରଜା ଯାହ ନାମରୁ ପୃଥିବୀ ନାମ ହୋଇଛି—ଏହି ଅର୍ଥ ଶ୍ଳେଷ; ଉନ୍ନତି—ଉଚ୍ଚତା, ରାଜ ପଣରେ ଉନ୍ନତି; ହାତପତ୍ର—ସ୍ୱୀକାର ପତ୍ର; ମୁଁ ସ୍ତନର ଅଧୀନ ହେଲି ବୋଲି ହାତ ପତ୍ର କନକ ମହୀଧର ଠାରୁ ( ସୁମେରୁଠାରୁ ) ଲେଖାଇ ନେଲ । ଅର୍ଥାତ୍ ସ୍ତନ ସୁମେରୁ ଠାରୁ ଅଧିକ ସୁନ୍ଦର । ସେହି ହାତ ପତ୍ର ଏବେ ପେଟରେ ଥୋଇଛି । କସ୍ତୁରୀ ପଙ୍କ ( ସ୍ତନ ଉପରେ ଚିତ୍ର ହୋଇଥିବା ଗୋଳା କସ୍ତୁରୀ ରେଖା ) ଏବଂ ପେଟର ରୋମାଳୀ ହାତ ପତ୍ରର ବର୍ଣ୍ଣ ପନ୍ତି ( ଅକ୍ଷରମାଳା )

୧୬—ସୁମେରୁ ପରି ଧୈର୍ଯ୍ୟବନ୍ତ ଯେଉଁଠାରେ ନିଜର ଗୁରୁତ୍ୱ ( ଟେକ ) ରଖି ନ ପାରିଲ ତାଠାରେ ଦାସ ହେବାକୁ କାହାର ବାଞ୍ଛା ନ ହେବ ?

୧୭—ଆରତ—ବ୍ୟାକୁଳ; ଆଖି ଡକିବା ଯେ ସେ କାଳ ଅହି ( କାଳସର୍ପ ) ଦଂଶିବାକୁ ଖେଳି କରି ଆସିଲ ପରି ।

୧୮—ପିଛଡ଼ା—( ପଇକ ) ରୂପ ପେଡ଼ା ଗଦ କିମ୍ବା ପଦ ନ ମାନିବାରୁ ବିଷ ବୈଦ୍ୟ ( ସାପୁଆ କେଳା ) ନିଶପ ହେଲ ( ଏ ସର୍ପ ଦଂଶନରେ ନିଶ୍ଚେ ମରିବି ବୋଲି ମନେ ହେଲ ।

ଏ କାଳେ ନେତ୍ର ବୋଧେ ତାକୁ । ଢାଳି ଏ ଦେବ ଅମୃତକୁ ।
ଆଉଁ ତୁ ହୋଇଲୁ ଅମର । ଦେଖ ଏ ଶିରୀ ପ୍ରାପ୍ତ ମୋର । ୧୯ ।
ଅନୁରାଗ ରହାଣି ସେହି । ଅପାଙ୍ଗ ଥିଲା ସାକ୍ଷୀ ହୋଇ ।
ଶୋଭା ସେ ଦିଶିଲା ଏମନ୍ତ । ଫୁଲ୍ଲାରବିନ୍ଦେ ଅଳି ଯୁକ୍ତ । ୨୦ ।
ଅନଙ୍ଗ ପବନ ବିକାରେ । ଝଟିତି ଢଳିଲା ପ୍ରକାରେ ।
ଘେନି ଶୁକଳ ରଙ୍ଗ କଳା । ପତନ ଦିଗ ଚିତ୍ର କଲା । ୨୧ ।
ମୋହର କି ଇତର ପୁଣ୍ୟ । ତ୍ରିବେଣୀ ଘାଟେ କଲି ସ୍ନାନ ।
କଟାକ୍ଷ ଅଙ୍କୁଶ ସଦୃଶୀ । ମନ ମାତଙ୍ଗକୁ ଆକର୍ଷି । ୨୨ ।
ଉଛନ୍ନ ମାହୁନ୍ତ ଆରୋହି । ତାର ଆୟତ୍ତ କରି ନେଇ ।
ଜାନୁ ଅର୍ଗଳିର ନିକଟେ । ଥିଲା ଶିକଳା ନୀବୀ କୂଟେ । ୨୩ ।
ନିବିଡ଼େ ପକାଇଲା ବାନ୍ଧି । ଭ୍ରମ ମଦିର ପାନେ ବୋଧି ।
ଭାବିଲା ସ୍ୱର୍ଗ ଦ୍ୱାର ଏହି । ମୋକ୍ଷ ଏଥିରେ ଅଛି ରହି । ୨୪ ।

---

ପାଠାନ୍ତର—୪, ମୁଖ । ୫, ପଲକ କଳା ।

---

୧୯—ଏତିକି ବେଳକୁ ଆଖି ତାକୁ ( ଜୀବନକୁ ) ବୋଧ ଦେଲା—ଏ ଦଂଶିବ ନାହିଁ, ଅମୃତ ଢାଳି ଦେବ । ମୋର ଯୌବନରେ ପ୍ରାପ୍ତ ଏ ଶିରୀ ( ଶୋଭା ) ଦେଖି ତୁ ଅମର ହେଲୁ ।

୨୦—ରହାଣି—ଆଖିର ଠାଣି; ଅପାଙ୍ଗ—ରହାଣିର ବକ୍ର ଭାବ; ଫୁଲ୍ଲାରବିନ୍ଦେ ଅଳି ଯୁକ୍ତ—ଧଳା ଆଖିରେ କଳା ଡୋଳାର ଉପମା ;

୨୧—ପବନରେ ପଦ୍ମ ଢଳିଲା ପରି ଅନଙ୍ଗ ( କାମ ) ବିକାରରେ ରହିଲା. ଆଖିର ଶୁକ୍ଳ ରଙ୍ଗ ଓ ଡୋଳା କଳା; ପତନ ଦିଗ–ଯେଉଁ ଦିଗରେ ଆଖି ପଡ଼ିଲା ସେହି ଦିଗ ;

୨୨—ତ୍ରିବେଣୀ ଘାଟେ–ଗଙ୍ଗା, ଯମୁନା, ସରସ୍ୱତୀ ସଙ୍ଗମରେ; ଶୁକଳ, ରଙ୍ଗ, କଳା ଗଙ୍ଗା, ସରସ୍ୱତୀ, ଯମୁନା ପରି; ପୁଣି କଟାକ୍ଷ ଅଙ୍କୁଶ ( ହାତୀ ଅଙ୍କୁଶ ) ପରି ଓ ମୋ ମନ ମାତଙ୍ଗ ( ହାତୀ ) ପରି ହେଲା ।

୨୩-ଉଛନ୍ନ-( ବ୍ୟଗ୍ରଭାବ ) ମାହୁନ୍ତ ପରି ହେଲା; ଜାନୁ ( ତାର ଜଙ୍ଘ) ଅର୍ଗଳି ) ଖୁଣ୍ଟ ) ପରି ହେଲା; ନୀବୀ କୂଟେ–ନୀବୀ ଛନ୍ଦନ ରେ ଶିକୁଳୀ ଥିଲା ।

୨୪—ମୋର ଯେଉଁ ଭ୍ରମ ( ଆପଣାକୁ ଭୁଲି ଯିବା ଭାବ ) ହେଲା; ସେ ମଦ ପରି ହେଲା; ମଦ ଖୁଆଇ ବୋଧହୁଏ ମତ୍ତ ହାତୀକୁ ବାନ୍ଧି ଦିଆଯାଏ । କିମ୍ବା ମଦିର ଅର୍ଥରେ ହାତୀର ମତୁଆଳ ଭାବ ହୋଇପାରେ; ସେହି ମତୁଆଳ ଭାବକୁ ବୋଧ କଲା ଶାନ୍ତକଲା ଏପରି ଅର୍ଥ ହୋଇପାରେ ।

ସନ୍ନିଧେ ମଧ୍ୟ ସିଂହ ସ୍ଥିତ । ନୋହିଲେ ହୁଅନ୍ତା ଏମନ୍ତ ।
ନିତମ୍ବ ଚନ୍ଦ୍ର ବିମ୍ବ ସତ । ସେ ସ୍ଥାନେ ହୁଅନ୍ତ ଉଦିତ । ୨୫ ।

ଲଭିଲ୍ଲ ଯେତେ ପୁଣ୍ୟ ତେତେ । ଲଙ୍ଘି ତା ପାରନ୍ତା କେମନ୍ତେ ।
ଜଘନ ଭଦ୍ରାସନ ଗୋପ୍ୟେ । ବିଶ୍ରାମେ ଇନ୍ଦ୍ର ପଦ ସ୍ଥାପେ । ୨୬ ।

ଏହି ଅଭୀଷ୍ଟ କରି ଅଛି । ନ ଜାଣି ଧାତା କି ଲେଖିଛି ।
ମନ ନୟନ ବୁଦ୍ଧି ପ୍ରାଣ । ତାହାର କିଣା ହେଲେ ଜାଣ । ୨୭ ।

ଏଣୁ ମୋ ଭଇ ମନ୍ଦ କର୍ତ୍ତା । ହୋଇଲ୍ଲ ନବୀନ ବନିତା ।
ମୋର ଦେହରେ ମୋ ଆୟତ୍ତ । କେହି ରହିଲ୍ଲ ଘେନ ଚିତ୍ତ । ୨୮ ।

ଦାହ କନକ ବରନୀ କି । ସୁଭଗ୍ୟ ଗଲ୍ଲ ମୋର ବିକି ।
ଓଷ୍ଠ ପ୍ରବାଳ ପାଢ୍ରେ ଥିଲ୍ଲ । ହାସ ମୁକୁତାରେ କିଣିଲ୍ଲ । ୨୯ ।
ସେ ତାହା ଘେନି ଗଲ୍ଲ ସିନା । ଏବେ ମୁଁ ପାଉଛି ବେଦନା ।
ରତି ରତନ ବରତନ । ଦେଇ କରିବାକୁ ଯତନ । ୩୦ ।

---

ଏହି (ନୀବୀ) ମୋକ୍ଷ (ମୁକ୍ତ ଓ ଫିଟାଇବା ଏହି ଅର୍ଥ ଶ୍ଲେଷ ଅଛି) ୮ ନୀବୀ ମୋକ୍ଷୋହି ମୋକ୍ଷଃ–ନୀବୀ ଫିଟାଇବାହିଁ ମୁକ୍ତି ଇତି ଶୃଙ୍ଗାର ତିଳକେ ୨

୨୫–ସ୍ୱର୍ଗଦ୍ୱାର ହେଲେ ମଧ୍ୟ ସନ୍ନିଧେ (ପାଖରେ) ମଧ୍ୟେ (ଅଣ୍ଟାରେ) ସିଂହ ଅଛି ତା ନହେଲେ ଏପରି ହୁଅନ୍ତା; ଯଥା–ନିତମ୍ବ(ପିଚ୍ଛ) ଚନ୍ଦ୍ରବିମ୍ବ ମାତ୍ର ସେ ମୋକ୍ଷ ସ୍ଥାନକୁ ଆସି ପାରୁ ନାହିଁ ।

୨୬–ତାର ଯେତିକି ପୁଣ୍ୟ ସେତିକିରେ ସେ ଅଛି–ଚନ୍ଦ୍ରଲୋକ ପିତୃଙ୍କର ସ୍ଥାନ । ସେଠାକୁ ଗଲେ ମୋକ୍ଷ ହୁଏ ନାହିଁ । ଏହା ବେଦ ସିଦ୍ଧ, ଭଦ୍ରାସନ–ସିଂହାସନ; ଜଘନ–ଜଙ୍ଘ; ଗୋପ୍ୟେ–ଲୁଗ୍ଣଇ କରି; ବିଶ୍ରାମେ–ଶାନ୍ତି ନିମନ୍ତେ;

୨୭–ଏହି ଇନ୍ଦ୍ର ପଦକୁ ଅଭିଷ୍ଟ (ଇଚ୍ଛା)

୨୮–ନବୀନ ବନିତା–ଲାବଣ୍ୟ ବତୀ; କେହି–କିପରି;ଘେନ ଚିତ୍ତ–ବିସ୍ମୟ କର;

୨୯–ଦାହ କନକ ବରନୀ–ପୋଡ଼ା ସୁନା ପରି ଉଜ୍ଜ୍ୱଳ ବର୍ଣ୍ଣ ଯାହାର; ସେ ସୁଭଗ୍ୟ ନିଜକୁ ବିକିବାକୁ ଗଲ୍ଲ; ସେ ରଙ୍ଗ ଓଠରେ ଟିକିଏ ହାସ ଦେଇ ମୋ ସୁଭଗ୍ୟକୁ କିଣିନେଲ୍ଲ ।

୩୦–ମୋ ସୁଭଗ୍ୟ ଏବେ ତାର କିଣା ଦାସ; ରତି (କେଳି) ରୂପ ରନ୍ ବରତନ (ଦରମା) ମୋତେ ଦେଇ ଯତ୍ନ କରିବାକୁ (ନ କରିବାରୁ) ମୁଁ ବେଦନା ପାଉଛି ।

କେ ଯାଇଁ ଜଣାଉ ମୋ ପାଇଁ । କରୁଣା କଳ୍ପତରୁ ସେହି ।
ଆହା ଶୁଣନ୍ତା ଏହା ଶୁଣି । ଛାମୁକୁ ନିଆନ୍ତେ ସେକ୍ଷଣି । ୩୧ ।

ଦିଅନ୍ତା ଅଶେଷ ସମ୍ପତ୍ତି । ଦହନ୍ତା ପାଇବା ବିପତ୍ତି ।
ମନକୁ ମନାଇ ସେବାରେ । ମଜ୍ଜନ୍ତି ମୁଁ ନିଶି ଦିବାରେ । ୩୨ ।

ଯାହାର ନାସା ଫୁଲ ପଣ । ଫୁଲଇ ଦେଇ ଫୁଲ ବାଣ ।
ବିଶ୍ୱରେ ଏ ତୂଣ ସମରେ । ଅସ୍ତ୍ରେତ କମାଇବି ହରେ । ୩୩ ।

ସବୁ ସୁବେଶ ମାନେ ତାକୁ । ସେ ପୁଣି ସୁବେଶ ବେଶକୁ ।
ମଳିନ ହୋଇଥିଲେ ବେଶେ । ଜଗତ ମୋହି ପାରଇ ସେ । ୩୪ ।

ପଙ୍କ ମଧ୍ୟରେ ପଦ୍ମ ଥାଇ । ଯଥା ରସିକ ଭୃଙ୍ଗ ମୋହି ।
ଯେଜନଣି ଦେବତାଏ କ୍ଷିରେ । ବହନ୍ତି ବିଧୁ ସୂର୍ଯ୍ୟ କରେ । ୩୫ ।

ଶର କରିଛି ସମ୍ବରରି । ଗମା ସୁଷମା ସେହିପରି ।
ସଙ୍ଗବେ ମୋର ବେନିଆକ୍ଷି । ଯହିଁ ପଡ଼ଇ ରହେ ଲକ୍ଷି । ୩୬ ।

ସେ କୋଟି କୋଟି ହୋଇଥିଲେ । ସେ ଶୋଭା ଦେଖିଥାନ୍ତି ଭଲେ ।
ଅଙ୍ଗକେ ଶତ ଶତ ରଖି । ସୁଖୀ ହୁଅନ୍ତି ଦେଖି ଦେଖି । ୩୭ ।

ସେ ବାଳା ଚରିତ ଅଶେଷ । ଏମନ୍ତ କହୁଁ କହୁଁ ପ୍ରଂସ ।
ଗୁରୁ ପ୍ରବେଶ କଲ ଆନ । ଏ ଛାନ୍ଦ ହୋଇଲା ସମ୍ପୂର୍ଣ୍ଣ । ୩୮ ।

---

୩୩—ଫୁଲବାଣ ( କନ୍ଦର୍ପ ) ଫୁଲଇ ଦେଇ (ବଢ଼ାଇ ଦେଇ); ଫୁଲ ନାକ କନ୍ଦର୍ପର (ତୂଣୀର) ପରି; ଅସ୍ତ୍ରେ (ଶରେ) ହରେ (ମହାଦେବଙ୍କୁ)

୩୪—ମାନେ—ସୁନ୍ଦର ଦିଶେ; ମଳିନ ହୋଇଥିଲେ ମଧ୍ୟ;

୩୫—ବିଧୁ—ବିଷ୍ଣୁ; କରେ—ହାତରେ; ସୂର୍ଯ୍ୟକରେ—କିରଣରେ;

୩୬—ପଦ୍ମ ସମ୍ବରାରୀ (କନ୍ଦର୍ପ)ର ପଞ୍ଚଶରରୁ ଗୋଟିଏ; ଗମାର ସୁଷମା (ଶୋଭା) ସେହି ପରି ମଳିନ ହୋଇଥିଲେ ମଧ୍ୟ ଶ୍ଳାଘ୍ୟ; ଯହିଁ—ତା ଶରୀରର ଯେଉଁଠାରେ; ବେନି ଆକ୍ଷି—ମୋତେ ଯୋଡ଼ିଏ ଆଖି (କଣ କରିବି )

୩୭—ସେ—ମୋ ଆଖି:

୩୮—ଗୁରୁ ପ୍ରବେଶ—କୌଣସି ଗୁରୁଜନର ସେ ଘରେ ପ୍ରବେଶ ତା ମନକୁ ଭିନ୍ନ କରିଦେଲା ।

ଯେ ବଂଶେ ଇଷ୍ଟ ଦୁର୍ଗା ଦେବୀ । ବରହି କୋଷରୁ ସମ୍ଭବି ।
ମନୁଷ୍ୟ ଏହି ଅଦଭୁତ । ଭଞ୍ଜାନୁ ଭଞ୍ଜ ନାମ ସତ । ୩୯ ।

ବିଶିଷ୍ଟ ବଶିଷ୍ଟ ପାଳକା । ଶ୍ରୀରାମେ ଦତ୍ତ ଗଜଟୀକା ।
ସେ କୁଳେ ନୃପ ଧନଞ୍ଜୟ । ସମସ୍ତ ଗୁଣର ଆଳୟ । ୪୦ ।

ଘୁମୁସର ଅଧିପ ପଣେ । ଲୋକେ ବିଖ୍ୟାତ କବି ଗୁଣେ ।
ତଦ୍ଗତ[୬] ତାହାଙ୍କ ତନୁଜ । ନରେଶ ନୀଳକଣ୍ଠ ଭଞ୍ଜ । ୪୧ ।

ତାହାଙ୍କ ଜ୍ୟେଷ୍ଠ ପୁତ୍ର ମୁହିଁ । ଉପେନ୍ଦ୍ର ଭଞ୍ଜ ନାମ ବହି ।
ତାରକ ମନ୍ତ୍ର ପରସାଦେ । ମୋହର କବି ପଣ ଉଦେ । ୪୨ ।

---

ପାଠାନ୍ତର— ୬, ତଦ୍‌ଗତ ।

---

୩୯—୪୨—କବି ନିଜର ବଂଶାନୁ ଚରିତ କହୁ ଅଛନ୍ତି । ଯେଉଁ ବଂଶରେ ବରହି କୋଷରୁ (ମୟୂର ଡ଼ିମ୍ବରୁ) ମନୁଷ୍ୟ ବାହାରିବା ରୂପ ଅଦ୍ଭୁତକଥା ହୋଇଥିଲା—ଓଡ଼ିଶାର ଭଞ୍ଜ-ରାଜ ବଂଶରେ ପ୍ରବାଦ ଅଛି ଯେ ସେହି ବଂଶର ଆଦି ପୁରୁଷ ମୟୂର ଡ଼ିମ୍ବ ଭଙ୍ଗା ହୋଇ ବାହାରିଥିଲେ । ସେଥିପାଇଁ ସୂର୍ଯ୍ୟବଂଶର ସେହି ଶାଖାର ନାମ ଭଞ୍ଜବଂଶ । ଭଞ୍ଜ—ଡ଼ିମ୍ବଭଙ୍ଗା ମନୁଷ୍ୟ ବଂଶ; ଭଞ୍ଜାନୁ ଭଞ୍ଜ ନାମ—ଅନୁଭଞ୍ଜ ( ଡ଼ିମ୍ବ ଭଙ୍ଗାପରେ ଭଞ୍ଜନାମ ହେଲା ) ବିଶିଷ୍ଟ—ବିଶେଷରେ—ବଶିଷ୍ଠ ପାଳକା—ସୂର୍ଯ୍ୟ ବଂଶୀୟ—ବଶିଷ୍ଠ ସୂର୍ଯ୍ୟ ବଂଶର ପୁରୋହିତ ଥିଲେ । ଯେଉଁ ବଂଶରେ ଶ୍ରୀରାମଙ୍କୁ ରାଜଟୀକା ଦିଆ ଯାଇଥିଲା ସେହି ସୂର୍ଯ୍ୟବଂଶ—ଟୀକା ( ତିଳକ ) ଅଭିଷେକ ହେଲା ବେଳେ ଯେଉଁ ତିଳକ ଦିଆଯାଏ ତାକୁ ରାଜଟୀକା କହନ୍ତି । ଧନଞ୍ଜୟ ଭଞ୍ଜ—ଉପେନ୍ଦ୍ର ଭଞ୍ଜଙ୍କ ପିତାମହ; ସେ ଘୁମୁସର ରାଜ୍ୟର ଅଧିପପଣେ(ରାଜପଣେ)ଥାଇ ଲୋକରେ କବିଗୁଣେ (ନିଜର କବିତ୍ୱରେ) ଜଣା ଶୁଣା ଥିଲେ (ବିଖ୍ୟାତ) ଥିଲେ । ତଦ୍‌ଗତ ( ତାଙ୍କରି ପରି )ତନୁଜ(ପୁତ୍ର) ନରେଶ ( ରାଜା ) ; ଉପେନ୍ଦ୍ରଭଞ୍ଜ ନିଜେ ନୀଳକଣ୍ଠ ଭଞ୍ଜଙ୍କ ବଡ଼ପୁଅ—ସେ ନିଜେ ରାଜା ହୋଇ ନ ଥିଲେ । ସେଥିପାଇଁ ପିତା ପିତାମହଙ୍କ ନାମରେ ନରେଶ, ଅଧିପତି ଥିଲେ ମଧ୍ୟ ନିଜ ସମ୍ବନ୍ଧରେ ସେ କଥା କହି ନାହାନ୍ତି । ତାରକ ମନ୍ତ୍ର ସାଧନ କରି ସେହି ମନ୍ତ୍ର ପ୍ରସାଦରୁ ଉପେନ୍ଦ୍ରଭଞ୍ଜଙ୍କର କବିତ୍ୱ ଉଦୟ ହୋଇଥିଲା ବୋଲି ସେ ଏଠାରେ କହୁଛନ୍ତି ।

କଳଙ୍କ ବିହୀନ ମୋ ଗୀତ । ଖଳ-ଗହୁରେ ଅଦୂଷିତ ।
ବିଚିତ୍ର ସୁଧାକର ଏହି । ସୁମନା ବୃନ୍ଦ ସୁଖଦାୟୀ । ୪୩ ।
ନାରିକେଳ ଯେ ରସ ପୂର । ଭକ୍ଷି ନ ପାରଇ ବାନର ।
ତାର କି ସ୍ୱାଦୁ ଯଶ ନୋହି୨ । ପ୍ରସଙ୍ଗ ଗଲି ମଧ୍ୟେ କହି । ୪୪ ।

---

ପାଠାନ୍ତର— ୨, ନାଶ ହୋଇ ।

---

୪୩–୪୪–ଉପେନ୍ଦ୍ରଭଞ୍ଜ ନିଜ କବିତାର ପ୍ରଶଂସା କରୁଅଛନ୍ତି । କଳଙ୍କ ବିହୀନ–ଦୋଷ ଶୂନ୍ୟ, ଅଥଚ ବିଚିତ୍ର ( ଅଦ୍ଭୁତ ) ସୁଧାକର ( ଚନ୍ଦ୍ର ) ପରି ଏ ଗୀତ ହେବାରୁ ଏଥିରେ ସାଧାରଣ ଚନ୍ଦ୍ରପରି କଳଙ୍କ ମଧ୍ୟ ନାହିଁ । ଏ ଚନ୍ଦ୍ର ରାହୁ ଗ୍ରାସରେ ମଧ୍ୟ ଦୂଷିତ ନୁହେଁ ; କାହିଁକିନା–ମୋ ଗୀତକୁ ଖଳ ଲୋକ ମଧ୍ୟ ଦୂଷିତ କରି ପାରିବ ନାହିଁ । ଚନ୍ଦ୍ର ସୁମନା ବୃନ୍ଦ ( ଦେବତା ମାନଙ୍କୁ ) ସୁଖ ଦିଏ । ମୋ ଗୀତ ସୁମନା ( ପଣ୍ଡିତ ) ମାନଙ୍କର ସୁଖ ଦାୟୀ । ନାରିକେଳ ( ନଡ଼ିଆ ) ପରି ବାହାର କଠିନ ହେଲେ ମଧ୍ୟ ମୋର ଗୀତ ରସପୂର ( କବିତାରେ ପୂର୍ଣ୍ଣ ), ନାରିକେଳକୁ ବାନର ( ମାଙ୍କଡ଼ ) ଖାଇ ପାରେ ନାହିଁ । ମୋ ଗୀତକୁ ବା କୌଣସି ନର ବୁଝି ନ ପାରିବା ସମ୍ଭବ । ତଥାପି ନାରିକେଳର ସ୍ୱାଦୁ ଥିଲାପରି ମୋ ଗୀତର ଯଶ ଅଛି ।

ପ୍ରସଙ୍ଗ ଗଲି–କାବ୍ୟ ବିଷୟ କହୁଁ କହୁଁ ମଝିରେ ଏକଥା କହିଗଲି ।

# ସପ୍ତଦଶ ଛାନ୍ଦ

## ଚଉ ଉଲ୍ଲାସ

(ବ୍ରହ୍ମଗୃରୀ ଲବଣ୍ୟବତୀର ବାର୍ତ୍ତା ଘେନ ଚନ୍ଦ୍ରଭାନୁ ନିକଟରେ ପ୍ରବେଶ)

( ରାଗ ଶଙ୍କରାଭରଣ )

ବହିତ୍ର ଲାଗିଲା ଆସି ସିଂହଳ ଦ୍ୱୀପରେ । ସାଧବ ଯୁବତୀମାନେ ଅତି ପ୍ରମୋଦରେ ।
ଗଲେ ବୋହିତ୍ର ବନ୍ଦାଇ । ଅର୍ଘ୍ୟଥାଳି ମାନ କରେ ହୁଳ ହୁଳି ଦେଇ । ୧ ।
ରତ୍ନାକର ସାଧୁତ ଭଗିନୀ ମେଘମାଳା । ଦଇବେ ସେଦିନ ଭ୍ରାତୃପୁରେ ଯାଇଥିଲା
ତାକୁ ଜାୟା ସଙ୍ଗେ ଦେଖି । ହୋଇଲା ବୋଇତି ଆଜ[୨] ଅତିଶୟ ସୁଖୀ । ୨ ।
ପୁରେ ପ୍ରବେଶ ଏକାନ୍ତେ ବଲ୍ଲଭୀ ସଙ୍ଗତେ । ହାସ କଉତୁକ ବେଳେ କହୁଛି ସ୍ମିତିରେ ।
ଧନ ମୋହ ଆନ[୨] ତୋତେ । ମୁଁ ଯାହା ବୋଲିବି ତାହା କରିବୁ ତ୍ୱରିତେ । ୩ ।
ବିପରିତ ମାଗିବା ପରା ଏମନ୍ତ ଘେନି । ଅତି ରସିକା ଚତୁରୀ ଦଣ୍ଡେ ହେଲା ତୁନି ।
କହ ଶୁଣିମା କି କଥା । ବୋଇଲା ଲଜ୍ଜିତା ହେଲା ପ୍ରାୟେ ପୋତି ମଥା । ୪ ।
ନାୟକ କହିଲା ତୋ ନଣନ୍ଦ ମେଘମାଳା । ପରିହାସ ତାହାଠାରେ ତୋର ପ୍ରବର୍ତ୍ତିଲା ।
ସେ କୁମାରୀ ପ୍ରାଣ ପରି । ତୁ ତାହାକୁ କହିବୁ କହିବ ଯାଇ କରି । ୫ ।

---

ପାଠାନ୍ତର=୧, ବୋହିତ୍ରଉଆଳ । ୨, ସ୍ୱଣ ।

---

୧—ବହିତ୍ର—ବୋଇତ, ଜାହାଜ, ବୋହିତ, ଯେଉଁ ସାଧୁତ ବା ସାଧବ କର୍ଣ୍ଣାଟ ଯାଇଥିଲା ସେ ବାର୍ତ୍ତା ଘେନି ଫେରିଲା ସାଧବ ଯୁବତୀ—ବଣିକ ମାନଙ୍କର ସ୍ତ୍ରୀ ଲୋକମାନେ ପୂର୍ବେ ବୋଇତ ଛାଡ଼ିଲା ବେଳେ ବା ଫେରି ଆସିଲା ବେଳେ ହାତରେ ଅର୍ଘ୍ୟ ଥାଳି ଧରି ହୁଳ ହୁଳି ଦେଇ ସମୁଦ୍ର କୂଳେ ଯାଇ ବନ୍ଦାପନା କରୁଥିଲେ ।

୨—ମେଘମାଳା—ରତ୍ନାକର ସାଧବର ଭଉଣୀ ଏବଂ ହେମାର ସଖୀ (୩ୟ ଛାନ୍ଦ ୨୨ ପଦ ଟୀକାଦେଖ) ଦଇବେ—ଭାଗ୍ୟକୁ, ଅକସ୍ମାତ; ସେଦିନ ରତ୍ନାକର ବିଦେଶରୁ ଫେରିଲା ଦିନ ଭ୍ରାତୃପୁରେ ଭାଇ ଘରକୁ; ଜାୟା ସଙ୍ଗେ—ନିଜ ଭାର୍ଯ୍ୟା ସଙ୍ଗେ; ବୋଇତି ଆଜ—ଏଠାରେ ରତ୍ନାକର ।

୩—ଏକାନ୍ତେ—ଭାର୍ଯ୍ୟାସଙ୍ଗେ ମେଘମାଳା ନଥିବା ବେଳେ; ବଲ୍ଲଭୀ—ଭାର୍ଯ୍ୟା; କହୁଛି ସ୍ମିତିରେ ଖୁସିରେ କହିଲା । ମୋହ ଆନ— ମୋହ ରାଣ;

୪—ବିପରୀତ ରତି [କୋକ ଶାସ୍ତ୍ର ମତେ ଭାର୍ଯ୍ୟାମାନେ ଏପରି ରତିରେ ପ୍ରାୟ ମଙ୍ଗନ୍ତି ନାହିଁ । ]

୫—ନାୟକ—ସ୍ୱାମୀ, ରତ୍ନାକର; ନଣନ୍ଦ ଭଉଜର ପରିହାସ କଥା ଓଡ଼ିଶାରେ ରୀତି ସିଦ୍ଧ କୁମାରୀ ପ୍ରାଣପରି—ଲବଣ୍ୟବତୀର ଅତି ପ୍ରିୟ ।

ବିଦ୍ୟା ନଗ୍ର ନୃପତି ନନ୍ଦନ ଚନ୍ଦ୍ରଭାନୁ । ଲବଣ୍ୟବତୀର ଶୋଭା ଶୁଣିଲାର ଦିନୁ ।
ହୋଇଅଛି ଅତି କୃଶ । ନ ପାଇଲେ ଜୀବନରେ କ୍ଷଣେ ନାହିଁ ଆଶ । ୬ ।

ସୁନ୍ଦର ପଣକୁ ଆଉ ଗାର କାହିଁ ନାହିଁ । କୁଳେ ଉଜ୍ଜ୍ୱଳ ସମର୍ଥ୍ୟେ ଭୋଗ କରେ ମହୀ ।
ଅବଧି ତ ହେବ ବିଭା । ଭକୁ ସେ ରସିକ କୁଞ୍ଜରକୁ ମହୀ ଶୋଭା । ୭ ।

ସୁମନା ବୋଇଲା ଶୁଣ ଏ ପ୍ରାଣ ଯାହାର । ଏ କଥାକୁ କାହିଁ ପାଇଁ ନିୟମ ତାହାର ।
ଏତେ କହିଗଲା ଉଠି । ମେଘମାଳା ପାଶରେ ପ୍ରବେଶ ବିମ୍ବ ଓଷ୍ଠୀ । ୮ ।

ବସି ପାଶେ ଘଡ଼ିଏ ମାତିଲା ପରିହାସେ[୩] । କ୍ରମଶ କ୍ରମଶ କରି ପକାଇଲା ବିଷେ ।
କେମା ବିଭା ନୋହିବେ କି । କି ଉପାୟ ତାତ ମାତ କରନ୍ତି ଏଥିକି । ୯ ।

ସେ ରମା ତରକି ଥିଲା ବ୍ରହ୍ମଚାରୀ ଶୁକ । ଜ୍ୟେଷ୍ଠଭ୍ରାତା ସଙ୍ଗତରେ କରି ଅବଲୋକ
ଏବେ ମନରେ ବିଚାରେ । ଭ୍ରାତା କହି ପଠିଆଇ ଅଛି ଏହା କରେ । ୧୦ ।

ମାଳିନୀ କହିବାର ଆସୁଛି ସତ ହୋଇ । ମୁଁ କିପାଁଇ ଛାଡ଼ିବିଟି ସଖୀର ବଡ଼ାଇ ।
ପାଞ୍ଚି ଏମନ୍ତ କହିଲା । ସମେ ବର ମିଳିଲେ ବିବାହ ହେବ ବାଳା । ୧୧ ।

---

ପାଠାନ୍ତର—[୩], ହାସରସେ ।

---

୬—ବିଦ୍ୟା ନଗ୍ର—ବିଦ୍ୟା ନଗର: ଏଠାରେ କାଞ୍ଚି ବା ଦ୍ରାବିଡ଼ର କାଶୀ—କର୍ଣ୍ଣାଟର ରାଜଧାନୀ, ଅତିକୃଶ—ଅତୀକ୍ଷୀଣ—ବିରହ ଦୀନ;

୭—ଗାର—ଦ୍ୱିତୀୟ—[ଏହାରି ପରି ଅମୁକ ସୁନ୍ଦର ବୋଲି ଗାର ପକାଇବାକୁ ଆଉ କାହିଁ ନାହିଁ ଏହି ଅଭିପ୍ରାୟ ।] ଅବଧି—ଏବେ; ରସିକ କୁଞ୍ଜର—ରସିକ ଶ୍ରେଷ୍ଠ; [ସ୍ୟୁତ୍ତରର ପଦେ ବ୍ୟାଘ୍ର ପୁଙ୍ଗବର୍ଷଭ କୁଞ୍ଜରଃ, ସିଂହ ସାର୍ଦ୍ଦୂଳ ନାଗାଦ୍ୟାଃ ପୁଂସି ଶ୍ରେଷ୍ଠାର୍ଥ ବାଚକାଃ, ପୁରୁଷ ଶବ୍ଦ—ପରେ ଏମାନଙ୍କର ପ୍ରୟୋଗ ହେଲେ ଶ୍ରେଷ୍ଠ ଅର୍ଥ ବାଚକ ହୁଅନ୍ତି।] କୁଞ୍ଜର—ହାତୀ;

୮—ସୁମନା—ରତ୍ନାକର ଧାର୍ମିକର ନାମ;

୯—ବିଷେ—ବିଷୟକୁ; ଯେଉଁ କଥା କହିବାକୁ ଆସିଥିଲା ସେହି କଥାକୁ; ତାତ ମାତ—ବାପ, ମାଆ, ( ରଜା, ରାଣୀ )

୧୦—ସେ ରମା—ମେଘମାଳା; ତରକିଥିଲା—ଭଣ୍ଡି ପାରିଥିଲା; ଜ୍ୟେଷ୍ଠଭ୍ରାତା—ବଡ଼ଭାଇ—ରତ୍ନାକର ସାଙ୍ଗେ ବୋଇତରେ ବ୍ରହ୍ମଚାରୀ ଓ ଶୁକ ଦୁହିଁକି ଦେଖି ବୁଝି ପାରିଥିଲା; । ଅବଲୋକନ କରି—ଦେଖି;

୧୧—ବଡ଼ାଇ—ଗର୍ବ; ସମେ—ସମକକ୍ଷ;

ମାନସରେ ହେଲେ ସିନା ମରାଳ ରସିବ । ମେଘ ନୀର ହେଲେ ସିନା ଚାତକ ତୋଷିବ ।
ମନେ ମନହିଁ ମିଶିବ । ଚନ୍ଦ୍ର ହେଲେ ସିନା ଚକୋରକୁ ଉଲ୍ଲାସିବ । ୧୨ ।
ଚୂତ ମଞ୍ଜରୀରେ ଯେବେ କୋକିଳ ରସିବ ; ତେବେ ସିନା ଅତିଅନ୍ତ ସୁନ୍ଦର ଦିଶିବ ।
ଶୁଣି ଏ କହେ ଏମନ୍ତ । ଏହି ବିଧିରେ ମିଳିଲେ ହେବ କି ସମ୍ମତ । ୧୩ ।
ଦ୍ୱିତୀୟା ବୋଲେ ସମ୍ମତ ନୋହିବ କାହିଁକି ! ବିଧାତା ଘଟାଇ ଦେଇ ଯେ ଯୋଗ୍ୟ ଯହିଁକି
ପ୍ରତିବନ୍ଧ ଅଛି ଏତେ । ସ୍ୱପ୍ନ ବଶେ ପ୍ରତ୍ୟକ୍ଷେ ଦେଖୁଛି ଦିନେ ରାତ୍ରେ । ୧୪ ।
ଦୀର୍ଘ ନେତ୍ରୀ ସତ୍ୟ ଜନୟିତ୍ରୀ ବୋଲି ଘେନ । ଅଙ୍ଗୀକାର କଲକଥା ନ କରିବ ଆନ ।
ସତ୍ୟେ ବିଷ ଭକ୍ଷିହର । ସତ୍ୟେ ଲଙ୍ଘୁ ନାହିଁଟି କୂଳକୁ ଅକୂପାର । ୧୫ ।
ଅସୁର ଯୁବତୀ ବୃନ୍ଦାବତୀ ପୂର୍ବେଥିଲା । ଶ୍ରୀପତି କେଡ଼େ ସୁନ୍ଦର ବର ନରସିଂହ ।
ମାୟାଧର କଲେ ମାୟା । ସତ୍ୟ ଘେନି ଅନଳେ ଦହନ କଲା କାୟା । ୧୬ ।

---

୧୨—୧୩—ସମକକ୍ଷ ବର ମିଳିଲେ କିପରି ବିଭାହେବ ତାହା ମେଘମାଳା କହୁଛି । ମାନସର—ମାନସ ସରୋବର; ମରାଳ—ରାଜହଂସ;ଏହି ମାନସ ସରୋବର ହିମାଳୟ ଆଉ ପାଖେ କୈଳାସ ନାମକ ପର୍ବତ ତଳେ । ଗଙ୍ଗା ଓ ସିନ୍ଧୁ ନଦୀ ଦୁହେଁ ଏହି ହ୍ରଦରୁ ବାହାରି ପୂର୍ବ ଓ ପଶ୍ଚିମ ଦୁଇ ଆଡ଼କୁ ବୋହି ଯାଉଛନ୍ତି ବୋଲି ଶୁଣାଯାଏ । ଭାରତବର୍ଷରେ ବର୍ଷାକାଳ ହୋଇ ପାଣି ଗୋଳିଆ ହୋଇଗଲେ ରାଜହଂସମାନେ ଏହି ମାନସ ସରୋବରକୁ ବାହାରି ଯାଆନ୍ତି ବୋଲି ପ୍ରବାଦ ଅଛି । ଚାତକ ମେଘ ଟୋପା ପଡ଼ିଲାବେଳେ ଉଡ଼ି ଉଡ଼ି ସେଥିରୁ ପାଣି ପିଏ । ତଳୁ ପାଣି ପିଏନାହିଁ । ମନେ ମନହିଁ ମିଶିବ—ସେହିପରି ଉଚ୍ଚ ମନ ହେଲେ ଜେମାର ମନ ତହିଁରେ ମିଶିପାରେ; ଚନ୍ଦ୍ରପରି ପଦାର୍ଥ ହେଲେ ସିନା ଅମୃତ ଢାଳି ଚକୋରକୁ ଖୁସୀ କରିବ ? ଚୂତ ମଞ୍ଜରୀ —ଆମ୍ବ ବଉଳ; ଏ କହେ—ସୁମନା କହିଲା; ଏମନ୍ତ—ହଉ; ଦକ୍ଷିଣ ଗଞ୍ଜାମରେ ଏବେ ମଧ୍ୟ ଏହିପରି ହଉ ଅର୍ଥରେ ଏମନ୍ତ କହନ୍ତି ।

୧୪— ଦ୍ୱିତୀୟା—ମେଘମାଳା ।

୧୫—ଦୀର୍ଘ ନେତ୍ରୀ—ଲମ୍ବା ଆଖି ଯାଙ୍କର ସୁନ୍ଦର, ଏଠାରେ ଜେମା; ସତ୍ୟ ଜନୟିତ୍ରୀ—ସତ୍ୟର ମୂଳ ସ୍ଥାନ ପରି, ସତ୍ୟବତୀ, ସତୀ; ଅଙ୍ଗୀକାର—ସ୍ୱୀକାର; କଥା ଦେଇ-ଥିଲେ ବୋଲି ମହାଦେବ ସମୁଦ୍ର ମନ୍ଥନରୁ ବାହାରିଥିବା ବିଷ ଖାଇଲେ, ସତ୍ୟେ ( ସୃଷ୍ଟିର ନିତ୍ୟ ନିୟମ ହେତୁରୁ ) ଅକୂପାର ( ସମୁଦ୍ର ) କୂଳକୁ ଡେଇଁ ମାଡ଼ି ଯାଉନାହିଁ ।

୧୬—ପୁରାଣରେ ଅଛି ବୃନ୍ଦାବତୀର ସତୀତ୍ୱ ବଳରେ ତାହାର ବର ଜଳନ୍ଧର ଅସୁର ସ୍ୱର୍ଗ, ମର୍ତ୍ତ୍ୟ, ଜିଣିଲା । ମାୟାଧର ( ବିଷ୍ଣୁ ) ଯେତେ ଚେଷ୍ଟାକଲେ ତା ସତୀତ୍ୱ ନଷ୍ଟକରି

ତଥାପି ଶୁଣିମା ସେ କେମନ୍ତ ସୁନ୍ଦର । ପ୍ରଥମା କହେ ଜାଣିଛି ନାମ ଦେଶ ତାର ।
କାଞ୍ଚିପତି ପ୍ରିୟସୁତ । ଚନ୍ଦ୍ରଭାନୁ ପ୍ରେମାରେ ହୋଇଛି ଅନୁରକ୍ତ । ୧୭ ।
ଏତେ କହି ପ୍ରାଣପ୍ରିୟ ପାଶକୁ ଗମନ । ପୁନରପି କହିଲା ସେ ସକଳ ବିଧାନ ।
ଘେନି ବ୍ରହ୍ମଚାରୀ କୀର । ପୋତପାଳ କଲ ବସି ଏମନ୍ତ ବିଚାର । ୧୮ ।
ତ୍ରିବିଧ ଦୂତ ସାହିତ୍ୟ ଶାସ୍ତ୍ରରେ ଲେଖିଛି । ଦ୍ୱିବିଧ ଦୂତରୁ ଆଉ କାର୍ଯ୍ୟନାହିଁ କିଛି ।
ପଢ଼େ ଯଉଁ କାର୍ଯ୍ୟ ଯହିଁ । ସେ କାର୍ଯ୍ୟ ନିର୍ବାହ କରେ ପ୍ରତ୍ୟୁତ୍ତର ଦେଇ । ୧୯ ।
ପ୍ରଭୁ ପଚାରିଲେ ଶଙ୍କା ନଥାଇ ଯାହାର । ତାହାକୁ ସଂସାରେ କହି ସୁଶ୍ରି ସ୍ୱାର୍ଥ ଚାର ।
ଦୂତ ହେଲେ ମିଥ୍ୟାକହି । କାର୍ଯ୍ୟକାଳେ ମିଥ୍ୟା କହିବାର ଦୋଷ ନାହିଁ । ୨୦ ।
ନର ଅବା କୁଞ୍ଜର ବା ଅଶ୍ୱତ୍‌ଥାମା ହତ । କାର୍ଯ୍ୟେ କହିଲେଟି ଯୁଧିଷ୍ଠିର ସତ୍ୟବନ୍ତ ।
ଆମ୍ଭେ କହିବା ଏମନ୍ତ । ଚିତ୍ରେ ସ୍ୱପ୍ନେ ବାଳାକୁ ଦେଖିଛି ନୃପସୁତ । ୨୧ ।

---

ପାରିଲେ ନାହିଁ । ଶେଷକୁ ମାୟାରେ ଜଳନ୍ଧର ରୂପ ହୋଇ ତା ସତୀତ୍ୱ ନଷ୍ଟକଲେ । ପରେ ସେ ଏହା ଜାଣିପାରି ନିଆଁରେ ପୋଡ଼ି ହୋଇ ମଲା । କାୟା–ଶରୀର;

୧୭–ପ୍ରାଣପ୍ରିୟ–ସ୍ୱାମୀ ( ରତ୍ନାକର ); ସକଳ ବିଧାନ–ସବୁକଥା;

୧୮–ପୋତପାଳ–ବୋଇତି ଆଳ;

୧୯–୨୦–ତ୍ରିବିଧ–ସାହିତ୍ୟ ଶାସ୍ତ୍ରରେ ତ୍ରିବିଧ ( ନିସୃଷ୍ଟାର୍ଥ, ମିତାର୍ଥ, ସନ୍ଦେଶ ହାରକ ) ଏହି ତିନିପ୍ରକାର ଦୂତର କଥା ଲେଖିଛି । ପ୍ରଥମଟି ଛଡ଼ା ଆଉ ଦ୍ୱିବିଧ ଦୂତରୁ ( ମିତାର୍ଥ, ସନ୍ଦେହ ହାରକ )–ଏହି ଦୁଇ ପ୍ରକାର ଦୂତର କିଛି କାମ ନାହିଁ । ପଢ଼େ ଯେଉଁ କାର୍ଯ୍ୟ ଇତ୍ୟାଦି–ସୁଶ୍ରି ସ୍ୱାର୍ଥ ( ନିସୃଷ୍ଟାର୍ଥ )ଦୂତର ବର୍ଣ୍ଣନା, ସାହିତ୍ୟେ ଦୂତ ବିଭାଗ ଯଥା–

ନିସୃଷ୍ଟାର୍ଥୋ ମିତାର୍ଥଶ୍ଚ ତଥା ସନ୍ଦେହ ହାରକ, କାର୍ଯ୍ୟାପେକ୍ଷ୍ୟ ତ୍ରିଧାଦୂତୋ ଦୂତ୍ୟଶ୍ଚାପି ତଥା ବିଧଃ ଉଭୟୋର୍ଭାବ ମୁନ୍ନୀୟ ସ୍ୱୟଂ ବଦତି ଚୋତ୍ତରଂ, ସୁଶ୍ଳିଷ୍ଟଂ କୁରୁତେ କାର୍ଯ୍ୟଂ ନିସୃଷ୍ଟାର୍ଥସ୍ତୁ ସସ୍ମୃତଃ, ମିତାର୍ଥ ଭଷୀ କାର୍ଯ୍ୟସ୍ୟ ସିଦ୍ଧକାରୀ ମିତାର୍ଥକଃ, ଯାବ ଭଷିତ ସନ୍ଦେଶହାରଃ ସନ୍ଦେଶ ହାରକଃ ।

୨୧–ଦ୍ରୋଣଙ୍କର ପୁତ୍ର ଅଶ୍ୱତ୍‌ଥାମା; ଓ ଅଶ୍ୱତ୍‌ଥାମା ବୋଲି ଗୋଟିଏ ହାତୀ ଥିଲା । ଦ୍ରୋଣ ବର ପାଇଥିଲେ ତାଙ୍କର ପୁତ୍ର ଅଶ୍ୱତ୍‌ଥାମା ମରିବା ଖବର ନ ଶୁଣିଲେ ସେ ମରିବେ ନାହିଁ । ଦ୍ରୋଣ ପୁତ୍ର ଅଶ୍ୱତ୍‌ଥାମା କିନ୍ତୁ ଅମର ବୋଲି ବର ପାଇଥିଲା । ମହାଭାରତ ଯୁଦ୍ଧରେ ଦ୍ରୋଣଙ୍କୁ ମାରିବାର ଉପାୟ ନ ଦେଖି କୃଷ୍ଣ ଅଶ୍ୱତ୍‌ଥାମା ହାତୀ ମରିଯିବା କଥାକୁ ଲକ୍ଷ୍ୟକରି " ଅଶ୍ୱତ୍‌ଥାମାହତଃ" ବୋଲି ଦ୍ରୋଣଙ୍କୁ ଶୁଣାଇଲେ ।

ବ୍ରହ୍ମଗ୍ୱରୀ କହିଲା ଗୃତକ ଯହିଁ ଥାଇ । ସେହି ସ୍ଥାନେ ନିତି ନିତି ମେଘ ବରଷଇ ।
ସ୍ୱପ୍ନେ ଦେଖୁଅଛି ବୀର । ପରମ କରମବନ୍ତ ମାନଙ୍କେ ସେ ସାର । ୨୨ ।
ବନଦୁର୍ଗା ଉପାସନା ମୋର ସବୁ ଦିନେ । ସେ କହିଲେ ଆସୁପଥେ ସ୍ୱପନ ବିଧାନେ୪।
ଜାଣ ସାକ୍ଷାତ ପ୍ରକାରେ । ବେନି ଚିତ୍ତ ରସିତ କରିଛୁ ପରସ୍ପରେ । ୨୩ ।
ଏତେ ବୋଲି ଶୁକଦେଲେ ମେଘମାଳା କରେ । ଆଦ୍ୟୁଁ ପ୍ରାନ୍ତ ଯାଏ କଥନ ସେ ଧୀର ଗିରେ
ମେଧାବିନୀ ଘେନି ସଖୀ । ଅବରୋଧରେ ସେ ଯାଇଁ ଭେଟିଲା ସୁମୁଖୀ । ୨୪ ।
ପୁରୁଷ ସ୍ୱରୂପ୫ଚିତ୍ର ଲେଖା ଯଉଁପୁରେ । ତହିଁ ଶୋଇଛି ନବୀନା ପଲ୍ଲବ ଶଯ୍ୟାରେ ।
ବାଡ଼ ଚିତ୍ର ଚାହିଁ କୀର । ହେଲା କାର୍ଯ୍ୟ ବିଚାର ଚିତ୍ତକୁ କଲା ସ୍ଥିର । ୨୫ ।
ଅନାଇଲା ଶୋଭ ହୋଇଅଛି ଆନ ଆନ । କୈଳାସ ପର୍ବତ ପ୍ରାୟେ ମେରୁପରି ସ୍ତନ ।
ନେତ୍ରେ ପୂରି ଅଛି ଜଳ । ଦୂର କରି ଦେଇଅଛି ଉଜ୍ଜ୍ୱଳ କଜ୍ଜ୍ୱଳ । ୨୬ ।

---

ପାଠାନ୍ତର—୪, ଆସୁ ଆସୁ ଦେଖିଲି ସ୍ୱପନେ । ୫, ପୁଂସ ପ୍ରତିରୂପ ।

---

ଦ୍ରୋଣ ପୁଅ ମରିଥିବା କଥାରେ ବିଶ୍ୱାସ ନ କରି କହିଲେ, ସତ୍ୟବନ୍ତ ଯୁଧିଷ୍ଠିର ଏ କଥା କହିଲେ ସେ ବିଶ୍ୱାସ ଯିବେ । ସେଠାରୁ ଯୁଧିଷ୍ଠିର " ଅଶ୍ୱତ୍ଥାମା ହତଃ " ଏହି କଥାକୁ ବଡ଼ ପାଟି କରି କହି ସତ୍ୟରକ୍ଷାର ବାହାନା କରି ତୁନି କରି କହିଲେ ''ନର ବା କୁଞ୍ଜର'' (ମଣିଷ ନ ହେଲେ ହାତୀ); ତୁନି କରି କହିଥିବା ଶେଷକଥା-ତକ ଶୁଣି ନ ପାରି ଦ୍ରୋଣ ଶସ୍ତ୍ର ଛାଡ଼ି ଦେଲେ ଓ ମଲେ । ଏହିପରି ମହାଭାରତ କଥା ପ୍ରବାଦରେ ଅଛି ।

ସ୍ୱପ୍ନରେ ଚନ୍ଦ୍ରଭାନୁ ଲବଣ୍ୟବତୀକୁ ଦେଖିଥିବା କଥା ରତ୍ନାକର ଜାଣି ନ ଥିଲା ।

୨୨—ବ୍ରହ୍ମଗ୍ୱରୀ କୁମାରର ସ୍ୱପ୍ନ କଥା ଜାଣିଥିଲା ।

୨୩—ସେ କହିଲେ—ବନଦୁର୍ଗା କହିଲେ; ଆସୁ ପଥେ—ବାଟରେ ଆସୁ ଆସୁ ଦିନେ ରାତିରେ ।

୨୪—କଥନ ( ସବୁକଥା ) ସେ ଧୀରଗିରେ ( ଧୀରଭାଷି ) ଶୁକଠାରେ ଥିଲା—ସେ ସବୁ ଜାଣିଥିଲା ଓ କହୁଥିଲା । ମେଧାବିନୀ—ମେଧାବୀ ଶୁଆ; ସଖୀ—ମେଘମାଳା; ଅବ-ରୋଧେ—ଅନ୍ତଃପୁରେ; ସୁମୁଖୀ—ଜେମା;

୨୫—ବାଡ଼ଚିତ୍ର—ସ୍ୱପ୍ନ ରାତିରେ ଯୋଗିନୀ କାଛରେ ଚନ୍ଦ୍ରଭାନୁର ଯେଉଁ ଚିତ୍ର ଲେଖିଦେଇ ଯାଇଥିଲା । [ ୧୧ଶ ଛାନ୍ଦ ୩୪ପଦ ଦେଖ ] ପଲ୍ଲବ ଶଯ୍ୟା—ପଦ୍ମ ପତ୍ରରେ ଶେଯ କରି ( ବିରହ ତାପ ଶାନ୍ତି ପାଇଁ )

୨୬—ଆନ ଆନ—ଭିନ୍ନ ଭିନ୍ନ—ଯେ ଯାହା ହେବା ଉଚିତ ସେ ତାହା ନୁହେ; ବିରହ ଯୋଗୁ ସବୁ ବଦଳି ଯାଇଛି । ଯଥା—ମେରୁ (ସୁନା ପର୍ବତ) ପରି ସ୍ତନ କୈଳାସ (ରୁପା) ପର୍ବତ ପ୍ରାୟେ ହୋଇଛି—ଫିକା ହୋଇଅଛି ;

ଫାଟି ଫୁଟି ପଡ଼ିଛନ୍ତି ମୁକୁତା ମାଣିକ୍ୟ । ଚନ୍ଦନ ପଡ଼ି ତନୁରେ ହୋନ୍ତି ଫୋଟକା ।
ନରେ ଦ୍ୱିତୀୟାର ଶଶୀ । ଉଦୟ ହେଲ ପରାୟେ ଶେଯେ କ୍ଷୀଣ ଦିଶି । ୨୭ ।
ପାକ କଲା ଶାକ ପ୍ରାୟେ କୁଜିନୀର ପର୍ଣ୍ଣ । ମୃଣାଳ ନାଳ ପଡ଼ିଲ୍ମାତ୍ରେ ଗାତ୍ରେ ଚୂର୍ଣ୍ଣ ।
ଉଶୀରର ଲେପ ଯହିଁ । ତପତ ଲୋହେ କର୍ଦ୍ଦମ ପଂକୟେ ଶୁଖଇ । ୨୮ ।
ରନ୍କୁ ଶାଣେ ବସିଲେ ନ ତୁଟେ ଶୋଭ ଯଥା । ତଥା କ୍ଷୀଣ ହେଲେ ଇଭି ମନମଥ ବ୍ୟଥା ।
ଶୋଭ ହୋଇ ନାହିଁ ହତ । ରତି ରତିକୁ ସମାନ ନୋହିବ ଏମନ୍ତ । ୨୯ ।
ଦନ୍ତୀ—ଦନ୍ତ ପିତୁଳା କି ରଜତ ପିତୁଳା । ତୁଳା କେମନ୍ତାଙ୍ଗୀ ବହି ଅଛି ଏହି ତୁଳା ।
ଗଣ୍ଡେ ବହି ଲୁଅ-ଧାର । ପୋଛିବାରୁ କେବଳ ଦଶୁଛି କେତେ ଡ଼ୋର । ୩୦ ।
ଦେଖିବାର ଲୋକେ ନୋହିବାକୁ ଭ୍ରମ ଚିତ୍ତ । ଗମା ବହିଛି କି ଏତେ ହେମାଙ୍ଗୀ ସଙ୍କେତ ।
ହାସ ହୀନେ ଦିଶେ ମୁଖ । ଦିନ ଥାଉଁ ଉଦୟ କି ବିଶଦ ମୟୂଖ । ୩୧ ।

---

୨୭—ବିରହରେ ମୁକ୍ତା ଫାଟିଯାଏ; ଚନ୍ଦନ ଲଗିଲେ ଫୋଟକା ହୋଇଯାଏ । ଦ୍ୱିତୀୟା ଚନ୍ଦ୍ର ଅତି କ୍ଷୀଣ ।

୨୮—ବିରହ ତାପ ହେତୁରୁ ଶେଯର ପଦ୍ମପତ୍ର ସିଝାଇଲା ଶାଗ ପରି ହୋଇ ଯାଉଛି । ଥଣ୍ଡା ପାଇଁ ଗାତ୍ରେ (ଦେହେ) କଇଁ ନାଡ଼ ପକାଇ ଦେଲକ୍ଷଣି ସେ ଭଜି ଚୂରି ହୋଇ ଯାଉଛି । ଉଶୀର (ବଟା ବେଣାଚେର) ଦେହରେ ବୋଳି ଦେଲେ ସେ ତପତ ଲୋହେ (ତାତିଲା ଲୋହାରେ) କର୍ଦ୍ଦମ (ପଙ୍କ, କାଦୁଅ) ପରି ଶୁଖି ଯାଉଛି ।
 ଏ ସବୁ ବିରହ ବର୍ଣ୍ଣନାରେ ଲେଖା ହୁଏ ବୋଲି ମଧ୍ୟ ଯୁଗର ହସ୍ତ ଆଲଙ୍କାରିକ-ମାନେ କଳ୍ପନା କରିଛନ୍ତି ।

୨୯—ରନ୍କୁ ଶାହାଣ ପଥରରେ ଘଷିଲେ ସେ କ୍ଷୀଣ ହୁଏ, କିନ୍ତୁ ତାହାର ଶୋଭା କମେନାହିଁ । ମନ୍ମଥ ବ୍ୟଥା (ବିରହ ବାଧାରେ) ଦେହ ଶୁଖିଗଲେ ମଧ୍ୟ ଢେମାର ଶୋଭ ନଷ୍ଟ ହୋଇ ନାହିଁ । ଏମନ୍ତ (ଏପରି ହୋଇଛି ଯେ) ରତି (କନ୍ଦର୍ପ ଭାର୍ଯ୍ୟା) ସେ ଶୋଭରେ ଢେମା ସଙ୍ଗେ ରତିକୁ (ତିଳକୁ, ଅଳ୍ପ ମାତ୍ରାକୁ) ସାମ୍ୟ ସମାନ ହେବ ନାହିଁ । ରତି ସୁନା ଓଜନ କରିବାର ଏକ ଅତି କ୍ଷୁଦ୍ର ମାପ—ଗରି ରତିରେ ଏକ ଚିନା; ୧୦ ଚିନାରେ ଏକ ମସା; ୨ ମସାରେ ଏକ ଭରି ବା ତୋଳା ।

୩୦—ଦନ୍ତୀ ଦନ୍ତ—ହାତୀ ଦାନ୍ତ; ରଜତ—ରୁପା; ଅର୍ଥାତ୍ ତାହା ଦେହ ଫିକା ଦିଶୁଛି । ଗଣ୍ଡେ (ଗାଲେ) ଲୁହ—ଧାର ପୋଛି ପୋଛି ଶୁଖିଲା ମୁଁହ ଯାହା ଟିକିଏ ଗୋର ଦିଶୁଛି ।

୩୧—ନିଜେ ହେମାଙ୍ଗୀ (ସୁବର୍ଣ୍ଣ ବର୍ଣ୍ଣା) ଥିବାର ସଙ୍କେତ (ଚିହ୍ନ) ଗାଲରେ ଲୁହ ପୋଛି ଦେବା ଜାଗାରେ ମାତ୍ର ଅଛି । ବିଶଦ (ଶୁକ୍ଳ) ମୟୂଖ (କିରଣ) ଯାହାର—ଚନ୍ଦ୍ର,

ଶୁକ ଏ ଦଶାକୁ ତାର ଅନାଇଁ ବିସ୍ମରେ । ଧାତାରୁ ଦାରୁଣ ହୋଇ ନାହିଁତ ସଂସାରେ ।
ଦେଲ ଏ ଦଶା ଏହାରେ । ଏତେ ଏତେ କଥା କଲ ଯେବଣ ବୁଦ୍ଧିରେ । ୩୨ ।
ଭୋଗି ଭୋଗକୁ ଯୋଖିଲ ମଳୟ ଅନିଳ । ଶିବ ଭୂଷେ କଲ ସିନ୍ଧୁ ମନ୍ଥନେ ଗରଳ ।
ଦେଲ ଗରୁଡ଼କୁ ଅମୃତ । କଳାନିଧି ପର ଦ୍ରବ୍ୟେ କଳଙ୍କ ଅଙ୍କିତ । ୩୩ ।
ତୀର୍ଥ ରଜ ଜଳ କଲ ଲବଣ ସହିତ । ଧର୍ମେ ନୀଚ ପରାଭବ ବିହିଲ ଯେମନ୍ତ ।
ତଥା କୋମଳ ପିଣ୍ଡକୁ । ବିହିଲ ଉଦଣ୍ଡ ଫୁଲ-କୋଦଣ୍ଡ ଦଣ୍ଡକୁ । ୩୪ ।
ଧୈର୍ଯ୍ୟ ରଖି ନ ପାରି ସେ ପୁଚ୍ଛିଲ ଏସନ । ଥୋକାଏ ଦିନ ହୋଇଲି ବୋଲି ପାଶୁଁ ଭିନ୍ନ ।
କେଶ ସ୍ୱଭବ ହୃଦୟେ । ନ ବହି କି କଥା ଏହୁ କହତ ନିଶ୍ଚୟେ । ୩୫ ।
ଏ ବଚନେ ଚଞ୍ଚଳ ଲୋଚନେ ବଳା ଚାହିଁ । ଚିହ୍ନିଲ ଆପଣାର ପୋଷିଲ ଶୁକ ତହିଁ ।
ବିସ୍ମରିଲ ଶୁଭ ହେଲ । ଶିବ ଆଜ୍ଞା ଘଟିଲ ଚତୁରା କହିଥିଲ । ୩୬ ।

---

୩୨—ଯେଉଁ ଧାତା ଯେବଣ (ଯେଉଁ) ବୁଦ୍ଧିରେ—ତକେ କୁହାଯାଉଥିବା ଏତେ ଏତେ ଅଘଟଣ କଥା କଲ ।

୩୩—ଭୋଗୀ (ସାପ)ର ଭୋଗ ନିମନ୍ତେ; କଳାନିଧି—ଚନ୍ଦ୍ର;

୩୪—ତୀର୍ଥରଜ—ସମୁଦ୍ର; ଲବଣ ସହିତ—ସଲବଣ, ଲୁଣିଆ; ଧର୍ମେ—ଧର୍ମ ବିଷୟରେ; ନୀଚ (ଛୋଟ ଲୋକ) ଠାରୁ ପରାଭବ (ଅପମାନ) ବିହିଲ ପରି (କରାଇଲ ପରି) କୋମଳ ପିଣ୍ଡ (ଶରୀର) ପାଇଁ ଉଦଣ୍ଡ (ଅଦମ୍ୟ, ପ୍ରଚଣ୍ଡ) ଫୁଲ କୋଦଣ୍ଡ (କାମ)ର ଦଣ୍ଡକୁ ବିହିଲା ।

[ଧର୍ମରେ ନିଚଠାରୁ ପରାଭବ କଥାଟା ଓଡ଼ିଶାର ବ୍ରାହ୍ମଣ କ୍ଷତ୍ରିୟାଦିଙ୍କ ମଧ୍ୟରେ ତହିଁ ପୂର୍ବରୁ ଓ ସେତେବେଳେ ବଡ଼ ପ୍ରଚଳ ଥିଲ । ସାରଳା ଦାସ ମହାଭାରତ ଲେଖିବା ଜଗନ୍ନାଥ ଦାସ ପ୍ରଭୃତି ଭାଷାରେ ସାଧାରଣଙ୍କ ପାଇଁ ଭାଗବତ ପ୍ରଭୃତି ଧର୍ମ ପୁସ୍ତକମାନ ଲେଖିବା— ଉଚ୍ଚ ଜାତି ଲୋକେ ପସନ୍ଦ କରୁ ନ ଥିଲେ । ବୋଧହୁଏ ସେଥିପାଇଁ ବହୁତ ଉନ୍ମନା ଲୋକଙ୍କୁ ଦୁଃଖ ପାଇବା ପାଇଁ ହୋଇଥିଲ । ସାରଳା, ଜଗନ୍ନାଥ ଦାସ ପ୍ରଭୃତିଙ୍କ ଗ୍ରନ୍ଥ-ମାନଙ୍କରେ 'ସୁଜନେ ଦୋଷ ନ ଘେନିମା" ପ୍ରଭୃତି ବହୁ ଭାବରେ ଏ କଥାର ଆଭାଷ ମିଳେ ।]

କିମ୍ବା ଧର୍ମକାର୍ଯ୍ୟ କଲବେଳେ ନୀଚ (ଅଜ୍ଞାନ) ଲୋକେ ଥଟାକରି ପରାଭବ ଦେଲ ପରି—ଏପରି ଅର୍ଥ ମଧ୍ୟ ହୋଇପାରେ ।

୩୫—ସେ ପୁଚ୍ଛିଲ—ଶୁଆ ପଚାରିଲ; ଥୋକାଏ-କେତକ; ଭିନ୍ନ—ଅଲଗା; ହୃଦୟେ—ମନରେ; କେଶ ସ୍ୱଭବ—(କେଶ ପରି କୁଟିଳ ବା ବକ୍ରଭାବ, କପଟ) ନ ବହି ।

୩୬—ଚତୁରା-ମାଳିନୀ; ସଖୀ-ଜ୍ୟୋତିଷ କୁମାରୀ [୩ୟ ଛାନ୍ଦ ୧୨୩ ପଦ ଦେଖ]

କାଞ୍ଚି ନଗରକୁ ସଖୀ ନେଇଥିଲା ମାଗି । ଜାଣିଲି ସେ କୁମାର ମୋଠାରେ ଅନୁରାଗୀ ।
କିପାଁ ନୋହିଲେ ଅଇଲା । କହ ବୋଲି ନେତ୍ରାନ୍ତରେ ସଖୀକି ଠାରିଲା । ୩୭ ।
କହୁଛି ହେମ ମଞ୍ଜରୀ ଫଳାଶନକୁ ଚାହିଁ । ଯେଉଁ ଦିନ ସ୍ୱପନେ ଏ ଦେଖିଲା ଭୂତ ସ୍ନେହୀ ।
ପ୍ରେତ ଅତନୁ ବିଗ୍ରହ । ପ୍ରେତ ପତି ପାଶେ ନେବ ଜୀବନ ଏହାର । ୩୮ ।
ଶୀତ ଭାନୁ ଏହି ନାମ ଆଦ୍ୟ ଦ୍ୱି ଅକ୍ଷର । ଛାଡ଼ି ସନ୍ତାପିତ କରୁଅଛି ନିରନ୍ତର ।
ତେଜି ଅନିଳ ଇକାର । ବହିବାରେ ଦହି ହେଉ ଅଛି କଳେବର । ୩୯ ।
ପିକ କଳ ପ୍ରଥମରେ ଆକାର କରୁଛି । ଯାମହିଁ ଆକାର ହୀନ ବାଳାରେ କରିଛି ।
ଜଣା ନ ଯାଇ କି ଦଶା । ଏଣୁ ନଦୀ ବିପରିତ ହୋଇଲା ସୁଦୃଶା । ୪୦ ।
ଶୁକ ଏ ଉତ୍ତର କଲା ଭିତ୍ତିରେ ଯେ ଲେଖା । ଏ ପୁରୁଷ ବିନା ତ ଆନରେ ନାହିଁ ଦେଖା ।
ଏହି ଦେଖୁଛି ବାଳାକୁ । ଚିତ୍ତେ ସ୍ୱପ୍ନ ବାଞ୍ଛା କରେ ନିରତେ ଲୀଳାକୁ । ୪୧ ।
ଏହା ବିରହକୁ ତା ବିରହ ଅଛି ବଳି । ଅନୁରାଗୀ ମଧ୍ୟେ ସାର ଏ ଦୁହିଁଙ୍କି କଲି ।
ଧାତା ସୁନ୍ଦର ସଂସାରେ । ଜନୁ ରଜା କରିଅଛି ସ୍ତିରୀ ପୁରୁଷରେ । ୪୨ ।

---

୩୭—ମୋଠାରେ—ମୋ ଠାରେ; ସେ ଅନୁରାଗୀ ହୋଇଛି, ନୋହିଲେ ଏ ଶୁଆ କାହିଁକି ଫେରି ଅଇଲା—ଏପରି ଅର୍ଥ ମଧ୍ୟ ସଙ୍ଗତ ।

୩୮—ଫଳାଶନ—(ଫଳ ଖାଦ୍ୟ ଯାହାର—ଶୁଆ)କୁ; ଭୂତ—ସ୍ୱପ୍ନରେ ଦେଖା ପୁରୁଷ—ଥଟାରେ କହୁଛି; ଅତନୁ (କାମ) ପ୍ରେତ—ସେ ପୋଡ଼ିଯାଇ ପ୍ରେତ ହୋଇଛି; ମୁକ୍ତ ନ ହୋଇଥିବା ମରିଥିବା ଲୋକର ଆତ୍ମାକୁ ପ୍ରେତ ବୋଲି କହନ୍ତି । ପ୍ରେତ ପ୍ରେତପତି (ଯମ) ଲୋକରେ ଥାଏ ।

୩୯—ଶୀତଭାନୁ (ଶୀତଳ ତେଜ ଯାହାର—ଚନ୍ଦ୍ର) ଆଦ୍ୟ (ପ୍ରଥମ) ଦ୍ୱି ଅକ୍ଷର "ଶୀତ" ଛାଡ଼ି କେବଳ ଭାନୁ (ସୂର୍ଯ୍ୟ ବା ଅଗ୍ନି) ପରି; ଅନିଳ (ବାୟୁ) ଇକାର ତେଜି ଅର୍ଥାତ୍ ଅନଳ (ନିଆଁ) ହୋଇ;

୪୦—ପିକ କଳ (କୋକିଳର ମଧୁ ସ୍ୱର) ପ୍ରଥମରେ "କ"ରେ ଆକାର କରି 'କାଳ' ପରି ହୋଇଛି । ଯାମ (ପ୍ରହର) ଯମ ପରି ହୋଇଛି ନଦୀ ବିପରିତ 'ଦୀନ'

୪୧—ଭିତ୍ତି—ବାଡ଼, କାନ୍ଥ; ଆନରେ ନାହିଁ ଦେଖା—ମୁଁ ମଧ୍ୟ ଆଉ କାହାକୁ ଦେଖୁନାହିଁ ଅର୍ଥାତ୍ ମୁଁ ଯାହାକୁ ଦେଖୁଛି ସେ ଏହି । ସେ ମଧ୍ୟ ଚିତ୍ତେ (ମନରେ)—ଜାଗ୍ରତ ଅବସ୍ଥାରେ ସ୍ୱପ୍ନେ (ନିଦରେ); ଲୀଳାକୁ—(ଏହା ସଙ୍ଗେ) କେଳିକୁ;

୪୨—ଅନୁରାଗୀ—ପ୍ରେମୀକ, ପ୍ରେମୀକା; ସାର—ଶ୍ରେଷ୍ଠ; ସୁନ୍ଦର ସଂସାରେ—ସୁନ୍ଦର ଲୋକ ମାନଙ୍କ ଭିତରେ ଏହି ସ୍ତ୍ରୀ ଏହି ପୁରୁଷକୁ ଜନ୍ମରୁ ରଜା (ଶ୍ରେଷ୍ଠ) କରିଛି ।

ତା ହୃଦ ବାଁରେ ଫୁଟୁଅଛି କମାନଳ । ଘନ ହୋଇ ଘନରସ ବଶରୁ ଶୀତଳ ।
କସ୍ତୁ କରକ ରଦନାଙ୍କ ତପ ତପନ ସମାନ ଏହାର ବେଦନା । ୪୩ ।
ନ ହରିବ ନିକି ଚନ୍ଦ୍ରଭାନୁ ସେ ବୋଲଇ । ଉଦୟ ଲଭିଛି ସିନା ଏହି ତାପ ପାଇଁ ।
ଶୁଣି ଏକଥା ତାହାର । ବୋଇଲେ ଇଳନାକୁ ପାଳଣା ଗୁଣ କର । ୪୪ ।
ଦେଇ ଲେଖ ତେବେ ରଖ ହୋଇଛି ନିରେଖ୬। ଶୁକର ଏ ବାଣୀ ଶୁଣ ସର୍ବେ ଲଭି ସୁଖ ।
ସେ ବୋଇଲେ ଆମ୍ଭେ ନାରୀ । ପ୍ରଥମରେ ଲେଖିବୁଟି ପତ୍ରିକା କି କରି । ୪୫ ।
ରବିକର ସ୍ପର୍ଶେ ବୋଧିଲେ ପଦ୍ମ ତୋଷ । ପଲ୍ଲବିତ ଲତା ଉପଗତେ ମଧୁମାସ ।
ଚୂତ ମୁକୁଳ ଅଶନ । ହୋଇଲେ ସିନା କହଇ କୋକିଳ ବଚନ । ୪୬ ।
ଘନ ଗରଜିଲେ ସିନା ମୟୂର ଅନାଇଁ । ଆନନ୍ଦରେ ନୃତ୍ୟ କରି ବାଣୀ ପ୍ରକାଶଇ ।
କୀର ବୋଇଲା ଏ ସତ୍ୟ । ତେବେ ପ୍ରେମ ପତ୍ର ଯାଇ ଆଣୁ ଆମ୍ଭ ଦୂତ । ୪୭ ।

---

ପାଠାନ୍ତର—୬, ଅଭ୍ୟନ୍ତ କାଢର କାମୁ ରଖ ।

---

୪୩—ଘନରସ—ପାଣି ଓ ଶୃଙ୍ଗାର ରସ ଘନ ହୋଇ ( ମେଘପରି ହୋଇ ); କରକ ରଦନା—ଡ଼ାଳିମ୍ବ ଦନ୍ତୀ; ଏହାର ( ଢେମାର ) ମଧ୍ୟ ବେଦନା ତପ (ଗ୍ରୀଷ୍ମକାଳ) ତପନ ( ଖର ) ସମାନ ।

୪୪—ଚନ୍ଦ୍ରଭାନୁ—ଚନ୍ଦ୍ର କିରଣ; ଏହି ତାପ ପାଇଁ—ଏହି ତାପ ଶାନ୍ତ କରିବାକୁ ସଖୀମାନେ ଇଳନା ( ସ୍ତ୍ରୀ—ଏଠାରେ ଢେମା )କୁ କହିଲେ ପାଳନା ( ଏ ଶୁଆକୁ ପାଳିବାର ) ବାସ୍ତବିକ ଗୁଣକର ( ବଡ଼ ଭଲ ) ।

୪୫—ଶୁଆ ପୁଣି କହିଲା—ଦେଇ ଲେଖ—ଚିଠିଦେଇ; ଯେଉଁ ନିରେଖ ହୋଇଛି ( ଆମ ଭିତରେ କଥା ପଡ଼ି ଯାହା ଠିକ୍ ହୋଇଛି ସେ ନିଶ୍ଚୟ, ସିଦ୍ଧାନ୍ତ ) କୁ ରଖ (ପାଳନ କର ) ବୋଧହୁଏ ବ୍ରହ୍ମଚାରୀ, ସାଧୁଙ୍କ ଭିତରେ ଏହି ବିଚାର ପଡ଼ି ଠିକ୍ ହୋଇଥିଲା ।

୪୬—୪୭—ପୁରୁଷ ଯେ ପ୍ରଥମେ ସମ୍ଭାଷଣ କରିବା ଉଚିତ ଏ ବିଷୟରେ ଯୁକ୍ତି ସଖୀମାନେ ଦେଖାଉଛନ୍ତି ।

ଆଗ ସୂର୍ଯ୍ୟ କିରଣ ପଡ଼େ, ତେବେ ପଦ୍ମ ଫୁଟେ; ଆଗ ମଧୁମାସ ( ବସନ୍ତ ) ଆସେ ତେବେ ଲତା ( ଗଛ ) ପଲ୍ଲବେ ।

ଆଗ ଆମ୍ବ ବଉଳ ହୁଏ ତାକୁ ଖାଇଲେ କୋକିଳର ସ୍ୱର ଫିଟେ । ଆଗ ମେଘ ଡ଼ାକେ, ତାପରେ ମୟୂର ଚାହିଁ ସ୍ୱର କରି ନାଚେ ।

ମେଘମାଳା ପଠିଆଇ ବୋଧି ବ୍ରହ୍ମଗ୍ରରୀ । ଯେତେ କହିଲେ ତା ଆଗେ କହିବା ବିସ୍ତାରି ।
ଗଲ ସେ କୁମାର ପାଶ । ନାରୀ ମାନସ ଉଲ୍ଲାସ ଛାନ୍ଦ ହେଲ ଶେଷ । ୪୮ ।
ମହିଷ ବିଜୟୀ ଅତି ସୁରଭି ସ୍ୱରୂପ । ସଦାଶିବ ସୁଖଦାନ କରଣେ ଲୋଲୁପ ।
ଗମ ଦୁର୍ଗା ଇଷ୍ଟଦେବୀ । ଉପଇନ୍ଦ୍ର ବୀରବର ଦୁଃଖ ନାଶେ ଭବି । ୪୯ ।

---

୪୮—ବ୍ରହ୍ମଗ୍ରରୀକି ବୋଧି ( ବୁଝାଇ କହି ) ମେଘମାଳା ଦୂତ କରି କର୍ଣ୍ଣାଟକୁ ପଠା-ଇଲ । ତା ଆଗେ (କୁମାର ଆଗେ କହିବା ଭଳି) ଯେତେ କଥା ସବୁ ବ୍ରହ୍ମଗ୍ରରୀକୁ ବିସ୍ତାରି ( ବିଶେଷରେ ) କହିଲେ ।

୪୯—ଗମ ( ରମଣୀୟ ) ଯେଉଁ ଦୁର୍ଗା ( ଉପେନ୍ଦ୍ରଭଞ୍ଜଙ୍କର ଇଷ୍ଟଦେବୀ ) ଅଥବା ଦୁର୍ଗା ଇଷ୍ଟଦେବୀ ଯାହାର ସେହି ଗମ; ଅତଏବ ଏ ଗମ ଓ ଦୁର୍ଗା ଦୁହିଁଙ୍କୁ ଅର୍ଥ ହେବ । ଗମପକ୍ଷ—( ଗଜା ) ମାନଙ୍କର ବିଜୟୀ, ଅତି ସୁରଭି ( ରମଣୀୟ ସ୍ୱରୂପ ) ସଦା ( ସର୍ବଦା ) ଶିବ ( ମଙ୍ଗଳମୟ ) ସୁଖଦାନ କରଣେ ଲୋଲୁପ ( ସବୁ ଲୋକଙ୍କର ମନୋରଥ ପୂର୍ଣ୍ଣ କରିବା ବିଷୟରେ ବ୍ୟାକୁଳ )
(ଦୁର୍ଗା ପକ୍ଷ—ଅତିସୁର, ସୁର—ଦେବତା ମାନଙ୍କୁ ଅତିକ୍ରମ କିଣିଥିଲ ) ଯେ ମହିଷା-ସୁର ତାହାର ଭୀ ( ଭୟ ସ୍ୱରୂପ ) ତାହାର ମୂର୍ତ୍ତିମାନ ଭୟପରି; ଅତଏବ ମହିଷ ବିଜୟୀ ( ମହିଷାସୁରକୁ କିଣିଥିବା ); ସଦାଶିବ ( ମହାଦେବ ) ତାଙ୍କୁ ସୁଖ ( ଦାମ୍ପତ୍ୟ ସୁଖ ) ଦେବାରେ ସର୍ବଦା ଲୋଲୁପ ( ବ୍ୟାକୁଳ ) ଏପରି ଯେ ଦୁର୍ଗା ।



# ଅଷ୍ଟାଦଶ ଛାନ୍ଦ

## ପୁରୁଷ ଉଲ୍ଲାସ

(ବ୍ରହ୍ମଚାରୀ ଚନ୍ଦ୍ରାନନୁଠାରୁ ଫଟାଉ ଘେନ ଲାବଣ୍ୟବତୀ ନିକଟରେ ପୁନଃ ପ୍ରବେଶ)

ଗଗ–ମାଳବ । ଚଗଣ ବାଣୀ ।

ଶୁଣ ବିଶୁଦ୍ଧ ବୁଧ ଏଥୁଅନ୍ତେ । ଚିତ୍ତ ରଞ୍ଜିତ ଚରିତ ସୁଚିତ୍ରେ । ୧ ।
କୁମାର ଘରିମିତ୍ର ସଙ୍ଗେବସି । ବୀଣା ଜିଣା ବାଣୀ ପ୍ରସଙ୍ଗ ଭଷି । ୨ ।
ପ୍ରେମ ବୀଜ ତାର ରୋପିତ ହୃଦେ । ରୋମାଞ୍ଚିତ ବ୍ୟାଜେ ଅଙ୍କୁର ଉଦେ । ୩ ।
ତାହାକୁ ବର୍ଦ୍ଧି କରିବାର ପାଇଁ । ସ୍ୱେଦ ସଲିଳ ପ୍ରକାଶିତ ତହିଁ । ୪ ।
ବୋଲଇ ଅଦ୍ଭୁତ ସ୍ଥଳୀ ସୁନ୍ଦରୀ । ଫୁଲକୁ ଫଳୁ ଯେଣୁ ଜାତ କରି । ୫ ।
ଏ ଘେନି କରଇ ବିବେକ ବଣ । ଫୁଲରୁ ଫଳ ଜାତ ଥିଲ ଶୁଣା । ୬ ।
ଶଙ୍ଖ ଉପରେ ପଦ୍ମ ବିକଶିତ । ଏହି ନୁଅଇ କି ଅତି ଅଦ୍ଭୁତ । ୭ ।
ପଦ୍ମ ମଧ୍ୟରୁ ଶଙ୍ଖ ଜାତ ଶୁଣି । ବିଷ୍ଣୁ ବହିଛନ୍ତି ବିଚିତ୍ର ମଣି । ୮ ।
ନ ପୁଣ ଚିତ୍ତରୁ ହୋଏ ବିସୋର । ଭଜି ନିଧି ନାମ ଦେଲେ କୁବେର । ୯ ।

---

୩–୪–ପ୍ରେମ ହେଲା ବୀଜ (ମଞ୍ଜି); ରୋମାଞ୍ଚ (ରୋମ ଟାଙ୍କୁରିବା) ଅଙ୍କୁର (ଗଜା);
ସ୍ୱେଦ (ଝାଳ); ସଲିଳ (ଗଛରେ ଦିଆ ହେବା ପାଣି) ।

୫–ସ୍ଥଳୀ–ଭୂମି, ଲକ୍ଷ ଜନ୍ମି; ଫୁଲକୁ ଫଳରୁ–ଯଥା ଅଧର ରୂପକ ବିମ୍ବ ଫଳରୁ ହାସ
ରୂପକ ମଲ୍ଲିକା ଫୁଲ–ଏଣୁ ଅଦ୍ଭୁତ;

୭–ଶଙ୍ଖ ପରି କଣ୍ଠ ଉପରେ ପଦ୍ମ ପରି ମୁହଁ;

୮–ପଦ୍ମ ମଧ୍ୟରୁ ଶଙ୍ଖ–ଏହାର ହୃଦୟ ପଦ୍ମରୁ କଣ୍ଠ ଶଙ୍ଖ ବାହାରି ଥିବାରୁ ବିଷ୍ଣୁ ବିଚିତ୍ର
ମଣି (ଆଶ୍ଚର୍ଯ୍ୟ ବିଗ୍ରହି) ପଦ୍ମ ଓ ଶଙ୍ଖକୁ ଆୟୁଧ କରି ଧରିଛନ୍ତି ।

୯–ଶଙ୍ଖ ପଦ୍ମ ଦୁହିଁକୁ ମନେ ରଖିବା ପାଇଁ କୁବେର ନିଜର ନବନିଧି ମଧ୍ୟରେ ଶଙ୍ଖ–ନିଧି
ପଦ୍ମନିଧି ବୋଲି ନାମ ରଖି ଦେଇଛନ୍ତି; କୁବେରଙ୍କ ନବନିଧି–

ମହା ପଦ୍ମଶ୍ଚ ପଦ୍ମଶ୍ଚ ଶଙ୍ଖୋ ମକର କଚ୍ଛପୌ
ମୁକୁନ୍ଦ କୁନ୍ଦ ନୀଳଶ୍ଚ ଖର୍ବଶ୍ଚ ନିଧୟୋ ନବଃ ।

ସଂସାରେ ପ୍ରକଟ ହେବାକୁ ଧାତା । ସଂଖ୍ୟା ଗଣନାରେ ରଖିଲ କି ତା ? ୧୦ ।
ମୁଁ ପୁଣ ନୟନ ଯୁଗେ ଦେଖୁଛି । କେମନ୍ତ ପ୍ରକାରେ ପାରିବି ମୂର୍ଚ୍ଛି ? ୧୧ ।
ଏମନ୍ତ ପ୍ରସଙ୍ଗ କଥନ ବେଳେ । ବ୍ରହ୍ମଘ୍ଵରୀ ଆସି ଛାମୁରେ ମିଳେ । ୧୨ ।
ନମସ୍କାର କରି ଦେଇ ଆସନ । ସାଧୁତ ଶୁକ ନ ଦେଖି ଉଛନ୍ନ । ୧୩ ।
ଭବେ ମୋର ଯେତେ ସୁକୃତ ଥିଲା । ସ୍ଵପ୍ନ ଦର୍ଶନ ଦିନ ଭୋଗ ହେଲା । ୧୪ ।
ଏବେତ ସୁକୃତ ହୋଇଛି ଊଣା । କାହିଁକି କରିବ ବାଳା କରୁଣା । ୧୫ ।
ଦୁର୍ଲ୍ଲଭ ପଦାର୍ଥେ ଦେବାକୁ ମନ । ଆଜ ହୋଇଲା ମୋ ମରଣ ଦିନ । ୧୬ ।
ନ ଭଜିଲା ବୋଲି ରମଣୀ ମଣି । କହିବ ଧରା ଦେବ ଯଉଁ କ୍ଷଣି । ୧୭ ।
ସେ ବାଣୀ ସଙ୍ଗେ ଜୀବନ ଯିବୁଟି । ରହି ବ୍ୟାକୁଳ ମୋତେ ନ ଦେବୁଟି । ୧୮ ।
ଦ୍ଵିଜ ଏ ରୀତି ଦେଖି ବିଗ୍ଵରିଲା । ନ ଭଜିବା ଶଙ୍କା ଏହାର ହେଲା । ୧୯ ।
ଆଶଙ୍କା କାହିଁକି ନୋହିବ ପୁଣି । ସ୍ଵର୍ଗକୁ ପକାଇ ଅଛି ନି ଶ୍ରେଣୀ । ୨୦ ।
ପୂର୍ଣ୍ଣ ଚନ୍ଦ୍ରକୁ ବଢ଼ାଇଛି ପାଣି । ତମ ରଜନୀରେ ଦେଖିବ ପୁଣି । ୨୧ ।
କହିଲା ଏମନ୍ତ ବଚନ ଭଜି । କରୁଣା ବୃକ୍ଷ କି ନିରାଶ ଫଳି । ୨୨ ।
ମାନସ ଦେଇ ସେବିଲେ ମହେଶ । ପ୍ରାଣୀର ବ୍ୟାଧି କି ନୋହିବ ନାଶ । ୨୩ ।

---

୧୦—ଧାତା ବ୍ରହ୍ମା ସଂସାରେ ପ୍ରକଟ ହେବାକୁ (ସମସ୍ତେ ଜାଣିବାକୁ) ସଂଖ୍ୟା ଗଣନାରେ ରଖିଲ । ସଂଖ୍ୟା ଗଣନା ଯଥା—

ଏକଂ ଦଶଂ ଶତଂ ଚୈବ ସହସ୍ରମଯୁତଂ ତଥା
ଲକ୍ଷଂଚ ନିୟୁତଂ ଚୈବ କୋଟିରର୍ବୁଦମେବ ଚ
ବୃନ୍ଦଂ ଖର୍ବଂ ନିଖର୍ବଂଚ ଚକ୍ରକଂ ସାଗରଂ ତଥା
ମହାଶଙ୍ଖଂ ମହାପଦ୍ମଂ ପରାର୍ଦ୍ଧ ମପୀମେବ ଚ

୧୧—ମୂର୍ଚ୍ଛି—ଛାଡ଼ି;

୧୨-ବ୍ରହ୍ମଘ୍ଵରୀ କହିବ, ଧରା ଦେବ—କଥା ଛନ୍ଦି ଛନ୍ଦି କହୁଁ କହୁଁ ଯେତେବେଳେ ଧରା ପଡ଼ି ଯାଇ ଅସଲ କଥା କହିବ ।

୧୮—ସେ ବାଣୀ—ବ୍ରହ୍ମଘ୍ଵରୀର ସେହି କଥା ।

୧୯—ଦ୍ଵିଜ—ବ୍ରହ୍ମଘ୍ଵରୀ;

୨୦—ନି ଶ୍ରେଣୀ—ନିଶୁଣି;

୨୧—ପାଣି—ହାତ; ତମ ରଜନୀ—ଅମାବାସ୍ୟା ରାତି ।

୨୨—ନିରାଶ—ନୈରାଶ୍ୟ

ଯାଚକ ଦାନ ମାଗି ଯାଇ କର୍ଣ୍ଣେ । ଶୂନ୍ୟେ ଆସିଛି କି ଶୁଣଛ କର୍ଣ୍ଣେ । ୨୪ ।
ମେଘ କି ଅନଳ କରେ ବରଷା । ନିଷ୍ଫଳ କାହିଁ ହୋଇଛି ତପସ୍ୟା । ୨୫ ।
ଏ ବାଣୀ ରାଜାଜ୍ଞା ଧରି ରଖିଲା । ଯମ ପାଶେ ପ୍ରାଣ ପକାଇ ଥିଲା । ୨୬ ।
ଦୁଷ୍ଟ ସଂଶୟକୁ ପକାଇ ହାଣି । ଯାବତ ବିଧି ଜଣାଇଲା ପୁଣି । ୨୭ ।
କନ୍ୟା ସ୍ୱପ୍ନରେ ଯେମନ୍ତ ଦେଖିଲା । ବାଡ଼ରେ ଦେବୀ ଚିତ୍ରରେ ଲେଖିଲା । ୨୮ ।
ଦଣ୍ଡ ଦଣ୍ଡକରେ ଫୁଲ କୋଦଣ୍ଡ । ସେ ଦିନୁ ଯଉଁ ରୂପେ ଦେଲା ଦଣ୍ଡ । ୨୯ ।
କାହିଁକି ବୋଲଇ ପୁରୁଷ ସାର । ବାଳାଠାରେ ନାହିଁ ବିନୟ ଯାର । ୩୦ ।
ଏମନ୍ତ ଯଉଁ ରମା ସଉନ୍ଦର୍ଯ୍ୟ । ରହିଁ ରହିବ ନାହିଁ ପଶୁଧୈର୍ଯ୍ୟ । ୩୧ ।
ପାଷାଣ ନେବ ତରଳ ପଦବୀ । ଏଥି ଉତାରୁ ଆଉ କି କହିବି । ୩୨ ।
ଧାତା ଦାରୁଣ ହେବା ନୁହେ ବଡ଼ । ନ ଜାଣେ ରସ ଜନ୍ମୁ ବେଦ ଜଡ଼ । ୩୩ ।
ଏଥି ଉତାରୁ ଆମ୍ଭ ପରବେଶେ । ସଖି ସଙ୍ଗେ ଦୂତ ପେଶିଲୁ ପାଶେ । ୩୪ ।
ତୁମ୍ଭର ଭାଗ୍ୟ ଅତି ବର୍ଦ୍ଧିଆର । ଶୁଣିଲା କ୍ଷଣି ହେଲା ସୀଇକାର । ୩୫ ।
ଚତୁରୀ ଗୁଣେ ନ ଦେଲା ଚିଟାଉ । ବହୁତ କହି କି ହୋଇବ ଆଉ । ୩୬ ।
ଯିବାକୁ ଜୀବ କଣ୍ଠେ ଅଛି ରହି । ଲେଉଟାଅ ତାକୁ ପତ୍ରିକା ଦେଇ । ୩୭ ।
ଏ ବାଣୀ ଶ୍ରବଣେ ମିତ୍ରକୁ ଚାହିଁ । କୁମାର କହିଲା ଗଦ୍‌ଗଦ ହୋଇ । ୩୮ ।

---

୨୪—କର୍ଣ୍ଣ—କର୍ଣ୍ଣ ରାଜା, କାନ; କର୍ଣ୍ଣରାଜା ଯେ ଯାହା ମାଗେ ତାକୁ ତାହା ଦିଅନ୍ତି ବୋଲି ମହାଭରତରେ ଅଛି ।

୨୬—ରାଜାଜ୍ଞା—(ରାଜାର ଆଦେଶ) ଲୋକକୁ ଆଉ ଯେତେ ଆଡ଼େ ଯିବାର ଥିଲେ ମଧ୍ୟ ଧରି ରଖେ ।

୨୭—ଦୁଷ୍ଟ ସଂଶୟକୁ ସନ୍ଦେହ ରୂପ ଖଳ ଲୋକକୁ. ଯାବତ ବିଧି—ସବୁ ବିଷୟ (ତଳେ କହୁଅଛି)

୨୯—ଜେମାକୁ ଦଣ୍ଡ ଦେଲା ;

୩୦—ଯାର (ଯେଉଁ ଫୁଲ କୋଦଣ୍ଡ ବା କାମର) ବାଳାଠାରେ ( ଲବଣ୍ୟବତୀଠାରେ ) ବିନୟ (ସ୍ନେହ) ନାହିଁ ସେ କାହିଁକି ପୁରୁଷ ସାର (ପୁରୁଷ ଶ୍ରେଷ୍ଠ) ବୋଲଏ ଟି ?

୩୨—ପାଷାଣ ( ପଥର ) ତରଳି ଯିବ ।

୩୩—ଧାତା ( ବ୍ରହ୍ମା ) ସେ ଦାରୁଣ ( କଠୋର ) ହେବା ଅଧିକ କଥା ନୁହେ କାହିଁକି ନା ସେ ରସ ( ଶୃଙ୍ଗାର ) ଜାଣେ ନାହିଁ ; ଯେ ହେତୁ ଜନ୍ମରୁ ସେ ବେଦ ପଢି ଜଡ ( ନିରସ ) ହୋଇଛି ।

୩୪—ଆମ୍ଭେ ଏଠାରୁ ଯାଇ ସିଂହଳରେ ପହଞ୍ଚି ।

ଶୁଭୁଛି ଏଡ଼େ ତା ସୁନ୍ଦର ପଣ । ତେଡ଼େ ଅଛି ଅନୁରାଗିଣୀ ପୁଣ । ୩୯ ।
ତାକୁ ଲେଖିବାକୁ ବିନୟ ଭାବେ । ବଚନ ଥାଉ କି ଜଗତେ ଥିବେ । ୪୦ ।
ଭିଆଉଁ ଭିଆଉଁ ବିନୟ ଭାଷ । ଶେଷ ହୋଇ ସିନା ଯିବ ଆୟୁଷ । ୪୧ ।
ଗଲେ ଏ କଥାକୁ ନାହିଁ ଶୋଚନା । ଦୁଃଖ ପାଇବ ମଞ୍ଜୁଳ ଲୋଚନା । ୪୨ ।
ଯଥା କଥା[୧] କରି ତାକୁ ଜଣାଅ । ଲେଖିବା ତୁଳିକ କାକତ ଆଣ । ୪୩ ।
ଆଣି ଲେଖିଲେ ବିଚାରି ବିଚାରି । ପତ୍ରିକା ଘେନି ଗଲେ ବ୍ରହ୍ମଚାରୀ । ୪୪ ।
କହିବାକୁ ଯେତେ କହିଲେ ବାଣୀ । ଶେଷହିଁ ଶେଷ ନ କରିବେ ପୁଣି । ୪୫ ।
ଦୂତ ସିଂହଳ ଦ୍ୱୀପରେ ପ୍ରବେଶ । ସୁମୁଖୀ ସଖୀ ଦେଖି ହେଲା ତୋଷ । ୪୬ ।
ଅବରୋଧକୁ ସଙ୍ଗେ ଘେନି ଗଲା । ପୁର ପ୍ରାଙ୍ଗଣେ ନେଇ ବସାଇଲା । ୪୭ ।
କୁମାରୀ ବସିଛି ସଖିଙ୍କ ସଙ୍ଗ । ଶୁକ କହୁଛି କୁମାର ପ୍ରସଙ୍ଗ । ୪୮ ।
ଏ କାଳେ ମିଳି କହେ ଏ ଭାଷକୁ । ଯଉଁ ଗୋସାଇଁ ତୋ ସାଇଁ ପାଶକୁ । ୪୯ ।
ଯାଇଥିଲେ ଆଣିଛନ୍ତି ପ୍ରମୋଦେ । ତୋହ ନିମିତ୍ତର[୨] ପତର ମୁଦେ । ୫୦ ।
ଉଚ୍ଛ୍ରକେ[୩] ବାଳା ପଚାରିଲା କାହିଁ । ବୋଇଲା ଆସିଛି ଦ୍ୱାରେ ବସାଇ । ୫୧ ।

---

ପାଠାନ୍ତର—୧, ଯଥା ତଥା । ୨, ମୋହନ ମନ୍ତ୍ରର । ୩, ଉଚ୍ଛନ୍ନେ ।

---

୪୧—ଭିଆଉଁ ଭିଆଉଁ ବିନୟ ଭାଷ—ଚିଠିରେ ଲେଖିବା ପାଇଁ ବିନୟ ( ସ୍ନେହ ) କଥା ଖୋଜୁଁ ଖୋଜୁଁ ବା ତିଆରୁ ତିଆରୁ ।

୪୨—ଗଲେ—ଆୟୁଷ ଶେଷ ହୋଇଗଲେ ନିଜପାଇଁ ଦୁଃଖ ନାହିଁ କିନ୍ତୁ ସେ ମଞ୍ଜୁଳ ଲୋଚନା ( ସୁନ୍ଦର ଚକ୍ଷୁ ଯାହାର -ହେମା ) ଯାହା ଦୁଃଖ ପାଇବ ସେହି ଚିନ୍ତା ।

୪୩—ଯଥା କଥା—ଯେଉଁ ସେମିତି; ତୁଳିକ—ତୁଳି; କାକତ—କାଗଜ; ପୂର୍ବେ ବୋଧହୁଏ କାଗଜ ଉପରେ କଲମରେ ନ ଲେଖି ଚିତ୍ରକାର ପରି ତୁଳିରେ ଚିତ୍ର କରୁଥିଲେ । କାଗଜ ତିଆରି କରିବା ଚିନ୍ ଦେଶରୁ ଏ ଲୋକେ ଶିଖିଥିଲେ । ଚିନ୍ ଦେଶରେ ଏବେ ମଧ୍ୟ ତୁଳିରେ ଅକ୍ଷର ଚିତ୍ର କରାହୁଏ । କଲମରେ ଲେଖାହୁଏ ନାହିଁ ।

୪୫—ଶେଷ ( ବାସୁକୀ ) ସହସ୍ର ମୁହଁରେ ସାରି ପାରିବେ ନାହିଁ ।

୪୬—ସୁମୁଖୀ ସଖୀ—ହେମାର ସଖୀ ।

୪୭—ପୁର ପ୍ରାଙ୍ଗଣେ—ନଅର ଅଗଣାରେ ।

୪୯—କହେ—ହେମା ସଖୀ କହିଲା । ଗୋସାଇଁ—ବ୍ରହ୍ମଚାରୀ ( ଗୋ—ପୃଥିବୀର ସାଇଁ—ସ୍ୱାମୀ, ବର )

୫୦—ତୋହ ନିମିତ୍ତ—ତୋ ପାଇଁ; ପତର ମୁଦେ—ମୁଦା ଚିଠି ;

କି କୃତ୍ୟ କଲୁ ମନ୍ତ୍ରୀ ସୁତା ବୋଲେ । ଦେଖିଥିବେ ତାକୁ ଦୁଆର ପାଳେ । ୫୨ ।
ସେ ବୋଲେ ସେ ଜାଣେ ଚକ୍ଷୁ ବନ୍ଧନ । ସ୍ତ୍ରୀ ବୋଲି ଚିହ୍ନି ଛାଡ଼ିଛନ୍ତି ଜନ । ୫୩ ।
ଏଥିରେ ହରଷ ଅଧିକ ହେଲା । ଦ୍ୱାରନ୍ତର ହୋଇ ଜେମା ଚହିଲା । ୫୪ ।
ଦ୍ୱିଜକୁ କହି ଦେଲା ମେଘମାଳା । ନମସ୍କାର କରୁ ଅଛନ୍ତି ବାଳା । ୫୫ ।
ମନୋରଥ ସିଦ୍ଧିରସ୍ତୁ ଏ ବାଣୀ । ବିପ୍ର କଲ୍ୟାଣ କଲା ଯୋଡ଼ି ପାଣି । ୫୬ ।
ଜଟାରୁ ଚିଟାଉ ବାହାର କଲା । ଏଠାରୁ ଏ ଛାନ୍ଦ ଶେଷ ହୋଇଲା । ୫୭ ।
ରାମଜିତ ରାମ ରାମ ବିନୋଦୀ । ଉପଇନ୍ଦ୍ର ଭଞ୍ଜ ସନ୍ତାପ ଛେଦୀ । ୫୮ ।

---

୫୪—ଦ୍ୱାରନ୍ତର ହୋଇ—କବାଟ ଆଢ଼ୁଆଳରେ ଲୁଚି କରି;

୫୬—ସିଦ୍ଧିରସ୍ତୁ—ମନବାଞ୍ଛା ପୂର୍ଣ୍ଣ ହେଉ; ଯୋଡ଼ି ପାଣି—ପ୍ରତି ନମସ୍କାର କରି: କିଏ ନମସ୍କାର କଲାବେଳେ ତାକୁ ଅଶିର୍ବାଦ କଲାବେଳେ ହାତ ଯୋଡ଼ି ପ୍ରତି ନମସ୍କାର କରଯାଏ; ସେହି ହାତ ଯୋଡ଼ିବାକୁ ପ୍ରତି ନମସ୍କାର କୁହାଯାଏ ।

୫୮—ରାମଜିତ—ପର୍ଶୁରାମକୁ ଜିଣିଥିବା;
ରାମ ବିନୋଦୀ—ମୃଗ ସ୍ନେହୀ;
ସନ୍ତାପ ଛେଦୀ—ଦୁଃଖ ନାଶ କାରୀ;

# ଊନବିଂଶ ଛାନ୍ଦ

( ଲବଣ୍ୟବତୀର ଚିଟାଉ ପ୍ରାପ୍ତି ଏବଂ ପାଠ )

ରାଗ–କନଡ଼ା

ଘୁହିଁ ମହୀଦେବ ହସ୍ତରେ ପତ୍ରିକା କରି ପୁଲକିତ ଗାତ୍ରକୁ ।
କଲା ନିଉଛାଳି ବେନି ନେତ୍ରକୁ ।
ଚଞ୍ଚଳେକ୍ଷଣୀ ଅଞ୍ଚଳ କରେ ଭରି ପାହାଡ଼ା କରି ପତ୍ରକୁ ସେ ।
ସୁନ୍ଦରି । ଘେନି ଶିରେ ଲଗାଇଲା ସତ୍ୱରେ । ଶଶୀ କରଗତ ଚିନ୍ତି ଚିତରେ ।
ମୁଦରେ କୁମୁଦ ହାସକୁ ପ୍ରକାଶି ମୁଦ ଭଙ୍ଗିଲା କାତରେ ସେ । ସୁନ୍ଦରି । ୧ ।
ଯୋଖିଲା ଏମନ୍ତ ଦେଖିଲା ଅଲକ୍ତେ ଲେଖିଲା ଅକ୍ଷର ପଙ୍କ୍ତି କି ।
କଉଁ ପୁଟେ ରଙ୍ଗ କଲା ମୋତିକି !
ବର୍ଦ୍ଧିଲା ଆନନ୍ଦ ସାଗର ପଡ଼ିଲା ରସଗର୍ଭ ଭରତୀକି ସେ ।
ସୁନ୍ଦରି । ପଦ ପଦକେ ପଦବୀ ପ୍ରଦାନ । ବଶ ହେଲେ ଶ୍ରୁତି ମନ ନୟନ ।
ମାରଦର ଦୂର ହେବାକୁ ପ୍ରଥମେ ଉରଜ ଶମ୍ଭୁ ବନ୍ଦନ ରେ । ସୁନ୍ଦରି । ୨ ।

---

୧–ମହୀଦେବ–ବ୍ରାହ୍ମଣ; ଭୂସୁର–ଏଠାରେ ବ୍ରହ୍ମଚାରୀ; ପୁଲକିତ–ରୋମାଞ୍ଚିତ; ଘୁହିଁ ଦେଇ କ୍ଷଣି ରୋମ ଟାଙ୍କୁରି ଗଲା । [୩୨ୟ ଛାନ୍ଦ ୧୧୯ ପଦ ଟୀକା ଦେଖ] ନିଉଛାଳି–ଏଠାରେ ଆଖି ପୋଛି ଦେଲା । ଲୁଗା କାନି ହାତରେ ଥୋଇ ଚିଠିକୁ ପାହାଡ଼ା କରି ନେଲା । ଚାଲିବା ପାଇଁ ଗୋଡ଼ ମାଟିରେ ନ ଲାଗିବ ବୋଲି ଯେଉଁ ଲୁଗା ପକାଇ ଦିଆଯାଏ ତାକୁ ପାହାଡ଼ା କହନ୍ତି । ଶଶୀ ଇତ୍ୟାଦି–ହାତରେ ଚାନ୍ଦ ପାଇଲା ପରି ବିଚାରିଲା; ତେଣୁ ଆନନ୍ଦରେ କୁମୁଦ ରୂପ ହାସକୁ ପ୍ରକାଶ କରି କାତରେ (ବ୍ୟାକୁଳ ହୋଇ) ଚିଠିର ମୁଦ ଭଙ୍ଗିଲା । [କେବାଟ କୁଣେ ରହି ବ୍ରହ୍ମଚାରୀଙ୍କି କେମା ନମସ୍କାର କରିବା କଥା ପୂର୍ବ ଛାନ୍ଦରେ କୁହାଯାଇଛି ଏଠାରେ ହାତରେ ବ୍ରହ୍ମଚାରୀ ଠାରୁ ଚିଠିନେବା ତେଣୁ ସଙ୍ଗତ ହୋଇନାହିଁ । ବ୍ରହ୍ମଚାରୀ ସଖୀ ହାତକୁ ଦେଲେ ଓ ସଖୀ କେମାକୁ ସେ ଚିଠିଦେଲା ଏପରି କହିଥିଲେ ପୂର୍ବାପର ସଙ୍ଗତି ଠିକ୍ ରହିଥାନ୍ତା]

୨–ଯୋଖିଲା ଏମନ୍ତ–ଯୋଡ଼ିଲା ପରି; ଅଲକ୍ତେ–ଲାଲ ରଙ୍ଗରେ; ଲେଖିଲା–ଲେଖା ହୋଇଥିବା; ମୋତି ବା ମୁକ୍ତାକୁ କୌଣସି ପୁଟରେ ରଙ୍ଗ କଲା ପରି ଅକ୍ଷର ଗୁଡ଼ିକ ଦିଶୁଥିଲା । ରସ ଗର୍ଭ ଭରତୀ–ରସପୂର୍ଣ୍ଣ କଥା ।

ଅଚି ସଉନ୍ଦର୍ଯ୍ୟବତୀ  ମୁନି ଧର୍ଯ୍ୟ କମ୍ପା କାରୀ ଶମ୍ପା ଗଉରୀ ।
ମହୀ ମହିଳାର ଚମ୍ପା ଚଉଁରୀ ।
ଯାହା ସୁଷମା ସମାନ ନୋହି ହର ଅଙ୍ଗେ ଲୁଚିଲ ଗଉରୀ ରେ ।
ସୁନ୍ଦରୀ । ଯେଣୁ ପରମାନନ୍ଦ ସୁଖଦାୟ । ଦୀପ୍ତୀ ମଣ୍ଡିତା ସ୍ନେହ ସୁଧାମୟ ।
ଶୋଭ ସିନ୍ଧୁ ଜାତ ରମା କି ଚନ୍ଦ୍ରମା ଛାଡୁ ନାହିଁ ଏ ସଂଶୟରେ । ସୁନ୍ଦରି ।୩।
ଶୋଭ ପ୍ରଶଂସାରେ ସଂସାରେ ଜଣେ ତ ନାହିଁ ତୋହର ରୂପ ସରି ।
ଉପମାଏ ରହିଲେ ଅପସରି ।
ବର ବରନା ବର୍ଣ୍ଣନା ମୁଁ ନ କଲି ଏହି କଥାକୁ ବିଗ୍ଭରି ରେ ।
ସୁନ୍ଦରି । କବି ଗଣେଶ ଗଣେଶ ହୋଇବ । ଶେଷ ବଦନକୁ ପୁଣ କହିବ ।
ବିଧାତା ଆୟୁଷ ପାଇଲେ ତୋ ଶୋଭ ଲେଶ ଶେଷ ବା କହିବ ରେ । ସୁନ୍ଦରି । ୪।

---

ପଦ ପଦକେ—ପ୍ରତି ପଦରେ;
ପଦବୀ—ପ୍ରଶଂସା;
ଚିଠିରେ ପ୍ରଥମରୁ ଦେବତାଙ୍କୁ ବନ୍ଦନ କରାଯାଏ । ଏଠାରେ ମାର ଦର (କନ୍ଦର୍ପଡ଼ର) ଦୂର ହେବାକୁ ଜେମା ସ୍ତନ ରୂପ ଶମ୍ଭୁକୁ ବନ୍ଦନା ହୋଇଛି ।

୩—ଶମ୍ପା—ବିଜୁଳି; ଚମ୍ପା ଚଉଁରୀ-ଜୁଡ଼ା ଉପରେ ଚଉଁରୀରେ ଥିବା ଚମ୍ପାଫୁଲ ପରି; ଯାହା ଶୋଭରେ ସମାନ ନ ହୋଇ ଡ଼ରି କରି ଗୌରୀ (ପାର୍ବତୀ) ମହାଦେବଙ୍କ ଶରୀରରେ ବରବର ଲୁଚି କରି ଅଛି । ଲକ୍ଷ୍ମୀ ଚନ୍ଦ୍ର ଦୁହେଁ ସମୁଦ୍ରରୁ ବାହାରି ଥିଲେ ଅତଏବ ଏ ଜେମା ଲକ୍ଷ୍ମୀ କି ଚନ୍ଦ୍ର ଠିକ୍ କରି ହେଉ ନାହିଁ—ଶୋଭ ରୂପ ସମୁଦ୍ରରୁ ଜନ୍ମ ହେବାରୁ ।

୪—ଅପସରି—ଦୂରରେ ଘୁଞ୍ଚି; ବର ବରନା—ଶ୍ରେଷ୍ଠ ବର୍ଣ୍ଣ (ଦେହ କାନ୍ତି) ଯାହାର; ଉପମା ଦୂରି ରହିବାରୁ ଆସୁନାହିଁ କିପରି ବର୍ଣ୍ଣନା କରିବି ।
କବି ଗଣେଶ (କବି ମାନଙ୍କର ଯେ ଶ୍ରେଷ୍ଠ ସେ) ଗଣେଶଙ୍କ ପରି ହେବ । ଶେଷ (ବାସୁକୀ) ପରି ସହସ୍ର ବଦନକୁ ପାଇବ । ବିଧାତା (ବ୍ରହ୍ମା) ତାଙ୍କର ଆୟୁଷ ପାଇଲେ ତୋ ଶୋଭରୁ ଲେଶ (ଟିକିଏ) ଅବା ଶେଷ କରି କହିବ । ବ୍ରହ୍ମାଙ୍କ ଆୟୁଷ ଶହେ ବର୍ଷ; ଏହା ମନୁଷ୍ୟ ବର୍ଷ ନୁହେ; ଗୋଟିଏ ଗୋଟିଏ କଳ୍ପ ଏହି ବର୍ଷ ମାନଙ୍କର ଗୋଟିଏ ଗୋଟିଏ ଦିନ; ଚାରି ଯୁଗ ହଜାର ଥର ଲେଉଟିଲେ ଅର୍ଥାତ୍ ୪୩୨ କୋଟି ମନୁଷ୍ୟ ବର୍ଷରେ ଗୋଟିଏ କଳ୍ପ ହୁଏ । କଳ୍ପ ପରେ ମହା ପ୍ରଳୟ ହୁଏ । ପୁଣି ଅନ୍ୟ କଳ୍ପ ଆରମ୍ଭ ହୁଏ । ଆମ୍ଭେମାନେ ବର୍ତ୍ତମାନ ଯେଉଁ କଳ୍ପରେ ଥାଉଁ ତାହା ଶ୍ୱେତ ବରହ କଳ୍ପ । [୨ୟ ଛାନ୍ଦ ୪୭ ପଦ ଟୀକା ଦେଖ]

ସ୍ୱର ନଗରୀ ନାଗରୀ ଶିରଭୂଷା ଯୋଷା ରତନ ମଦାଳସି
କେତେବାର ଗଙ୍ଗାରେ ଥିଲି ଝାସି ।
ଶିର ଦେଇଣ ଶିଶିର କର ଶିର ମନାଇବା ପୁଣ୍ୟ ଦିଶି ରେ ।
ସୁନ୍ଦରି । ହେଲି ଜଣାଣ ଦେବା ଯୋଗ୍ୟ ମୁହିଁ । ଏ ପୁଣ୍ୟରୁ କି ଏଡ଼େ ଭଗ୍ୟ ହୋଇ ।
ପ୍ରଭୁ ସେବକକୁ ବଡ଼ କରେ ତୋର ଅନୁଗ୍ରହ ଫଳ ଏହି ରେ । ସୁନ୍ଦରି । ୫ ।
ରଙ୍ଗ ରଜୀବ ଚରଣରେ ଶରଣ ପଶିଲି ଏ ଘେନି ଭରସା ।
ଗଜ ନୋହିରେ ତୋ ଗତି ସଦୃଶା ।
ଶରଣେ କାରଣ କଲୁ ଅଙ୍ଗୀକାର ବାରଣ ଗତି ପ୍ରଶଂସାରେ ।
ସୁନ୍ଦରି । ଆଶା କେବେହେଁ ନୋହିବ ଛେଦିତ । ଶ୍ରବଣରେ ହୋଇଲିଣି ମୋଦିତ ।
ରସ ଉଦୟା ସୁହୃଦୟା ଦୟାକୁ ନାମ ଜଗତେ ବିଦିତ ରେ । ସୁନ୍ଦରି । ୬ ।

---

୫—ସ୍ୱର ନଗରୀ ନାଗରୀ—ସ୍ୱର୍ଗ ବେଶ୍ୟା,—ବାତ୍ସାୟନ କୋକ ଶାସ୍ତ୍ରରେ ନଗର ଅର୍ଥାତ୍ ରାଜଧାନୀୟ ବିଳାସ ଓ ବିଳାସିନୀ ମାନଙ୍କୁ ନାଗର ଓ ନାଗରୀ ନାମରେ କହିଛନ୍ତି। ଯୋଷା—ନାରୀ; ମଦାଳସା—ଯୌବନରେ କାମ ଭାବ ହେତୁରୁ ନାରୀର ଗମନ ଅଳସ ହୁଏ ବୋଲି ପ୍ରସିଦ୍ଧି । କେତେ ଜନ୍ମ ଗଙ୍ଗାରେ ଝାସି ଥିଲିଟି ତତେ ପାଇଲି ଏହି ଭାବ । ଶିର—ମୁଣ୍ଡ; ଶିଶିରକର ଶିର—ମହାଦେବ; ମନାଇବା;—ତୋଷ କରିବା; ଏ ସେହିପରି କାର୍ଯ୍ୟ କରି ଥିବାର ପୁଣ୍ୟ ପରି ଲାଗୁଛି—ରାବଣ ନିଜ ଦଶ ମୁଣ୍ଡରୁ ନଅଟି ମୁଣ୍ଡ ହାତରେ ମୋଡ଼ି ଛିଣ୍ଡାଇବା ପରେ ମହାଦେବ ସନ୍ତୁଷ୍ଟ ହୋଇ ତାହାର ମୁଣ୍ଡ ଲଗାଇ ଦେଇ ତାକୁ ବର ଦେଇଥିଲେ ବୋଲି ପୁରାଣରେ ଅଛି ।
ଜଣାଣ—ବିନୟ ପତ୍ର; ଏ ପୁଣ୍ୟରୁ—ଯେଉଁ ପୁଣ୍ୟ କଥା କହିଗଲି, ତା ଫଳରୁ ଏଭାଗ୍ୟ ଅଧିକ ପରି ଲାଗୁଛି । ମାତ୍ର ସେ ପୁଣ୍ୟର ଫଳ ଏ ନୁହେଁ । ମୋ ଭଳିଆ ସେବକକୁ ତୁ ଅନୁଗ୍ରହ କରିବାର ଫଳ ଏ—ଏହି ଅଭିପ୍ରାୟ;

୬—ରଙ୍ଗ ରଜୀବ—ରକ୍ତ ପଦ୍ମ; ନୋହି—ନୁହଇ; ଗତି ସଦୃଶା—ଗତି ସଙ୍ଗେ ସମାନ;—ସଦୃଶା ଶବ୍ଦର ଆକାର ଏଠାରେ ମିତ୍ରାକ୍ଷର ଅନୁରୋଧରେ । କାରଣ—ଧନ୍ୟ, ପୂର୍ଣ୍ଣ ମନୋରଥ; ପ୍ରଶଂସା—ପଦବୀ, ପଦ;—ବାରଣ (ହାତୀ) ତୋ ଗତି ସଙ୍ଗେ ସମାନ ନୁହେ କିନ୍ତୁ ତୋ ପାଖେ ଶରଣ ପଶିବାରୁ ତୁ ନିଜେ ବାରଣ ଗତି ଏହି ପଦକୁ ଅଙ୍ଗୀକାର କରି ବାରଣକୁ କାରଣ କଲୁ । ତେଣୁ ମୁଁ ଶରଣ ପଶିଲି । ରସ ଉଦୟା—ପ୍ରୀତି ଉଦୟ ଯେଉଁ ଜେମା ଠାରୁ ସେ;

ମନ ମୀନ ହୃଦ ସରୋବରେ ଥିଲ କଟାକ୍ଷ ବଡ଼ଶୀ ପକାଇ ।
ତାର ବଦନେ ପ୍ରେମ ସ୍ୱାଦୁ ଦେଇ ।
ଆକର୍ଷି ନେଇ ଉରଜ କଳଶରେ ମଦାଳସୀ ଅଛୁ ଥୋଇ ରେ ।
ସୁନ୍ଦରି । ତୋର ମୁଖ ମନୋରମ ମନ୍ଦିରେ । ମୋର ନୟନେ ରହିଲେ ବନ୍ଦି ରେ ।
ବନ୍ଦ ହୋଇଲେ ହେଁ ଏ ଦୁହିଁଙ୍କ ସୁଖ କଥନ ନୋହେ ବନ୍ଦିରେ ରେ । ସୁନ୍ଦରି । ୭ ।
ବିରହ ଅନଳ ପ୍ରଜ୍ୱଳିତ ଅତି ମୋତେ କରିବ ବୋଲି ଦାହ ।
କିପାଁ ନ ଦହେ ଘେନି ମୁଁ ସନ୍ଦେହ ।
ତୋ ପ୍ରେମନୀର ହୃଦୟରେ ପୂରିଣ ଯେଣୁ ଜର୍ଜର ମୋ ଦେହ ରେ ।
ସୁନ୍ଦରି । ଜୀବ ନେବ କାମ ଅଛି କଟାଳି । ଯତ୍ନ କରି ରଖିଛି ଏହା ଭଳି ।
ଟଳି ଗଲେ ଘଟ ଢଳି ଯିବ ସିନା ପରି ପୂର୍ଣ୍ଣ ସ୍ନେହ ବାରି ରେ । ସୁନ୍ଦରି । ୮ ।
ଅବଧାନେ ଅଛି ଦେବାର ଦେବତା ଭୋଗ ଦେହାନ୍ତର ବିହୀନ ।
କରେ ନିମିଷ ହତ ଦରସନ ।
କୁଚ କାଞ୍ଚନ ଶିଖରିରେ ବିହାର ଅଧରେ ଅମୃତ ପାନ ରେ ।
ସୁନ୍ଦରି । ହୋଇବାରୁ ଉରୁ ରମ୍ଭାରେ ସ୍ନେହୀ । ମୋକ୍ଷ ପଦ ନୀବୀରେ ଅଛି ରହି ।
ଆଉ ଦୁର୍ଲଭ ହୋଇ ତୋତେ କି ଅଛି କେବଳ ଦୁର୍ଲଭ ତୁହି ରେ । ସୁନ୍ଦରି । ୯ ।

---

୭—ମୋର ମନ ତୋ ଉରଜ (ସ୍ତନରେ); ନୟନ ତୋ ମୁହଁରେ ବନ୍ଦୀ(କଏଦି) ହେଲେ—ଲାଗି ରହିଲେ । ମନ ମୀନ ପରି ମୋ ହୃଦ ପୋଖରୀରେ ଥିଲ, ତୋ କଟାକ୍ଷ ବଡ଼ଶୀ (ବନସୀ) ତାହାର (ମନର) ପ୍ରେମ ରୂପ ସ୍ୱାଦୁ (ଚଗ—ମାଛକୁ ବନସୀରେ ଧରିବା ପାଇଁ ଯାହା ଦିଆଯାଏ) ମନ୍ଦିରେ (କଏଦି ଘରେ); ବନ୍ଦିରେ—କଏଦି ହୋଇ କବି ବା ଭଟ ଦ୍ୱାରା ।

୮—ଘେନି—କରେଁ, କରୁଛି;
ତୋ ଠାରେ ପ୍ରେମ ନୀର (ଜଳ) ହେଲା ସେ ମୋ ହୃଦୟରେ—ଜର୍ଜର—ଜର ଜର [୬ଷ୍ଠ ଛାନ୍ଦ ୪୧ ପଦ ଦେଖ]; କଟାଳି—ଯିଦି କରି;
ଜୀବ ଗଲେ (କାମ ନେଇଗଲେ) ମୋର ଘଟ (ଶରୀର) ଟଳି ଯବ; ସ୍ନେହ ଜଳ ଅଜାଡ଼ି ହୋଇ ନଷ୍ଟ ହୋଇଯିବ ଏହି ଭୟ । ଘଟ (ମାଠିଆ)ରେ ପାଣି ଥିବା ସଙ୍ଗେ ସାଦୃଶ୍ୟ ।

୯- ଅବଧାନେ ଅଛି—ତୋ ସମ୍ମତିରେ (ତଳେ କୁହା ଯାଉଥିବା କଥା) ଅଛି; କିମ୍ବା ମୁଁ ସେହି କଥା ପାଇବା ପାଇଁ ସାବଧାନ ହୋଇଅଛି ।

ଗୁଣ ସରିତ ସଙ୍ଗହବୁ ସାଗର ବିଗ୍ରହ ନିଶ୍ଚୟ ତୋହର ।
ସତେ ରସ ରତନର ଆକର ।
ତହିଁ ମହତୀ ଯୋଗ ଏବେ ପଡ଼ିଛି ମଜ୍ଜନେ କୃତାର୍ଥ କର ରେ ।
ସୁନ୍ଦରି । ଏକେ କାମ ଧେନୁ ପରି ରମ୍ଭୋରୁ । ଦୁଜେ ତୁ ଯେ ସୁରତ ସୁରତରୁ ।
କାହାକୁ କହିବି ଦୁର୍ଦ୍ଦଶା ମୋହର ନ ତୁଟିଲେ ଏ ଭରାରୁ ରେ । ସୁନ୍ଦରି । ୧୦ ।

ଘନେ କୁଳିଶ ଚନ୍ଦନେ ଅହି ଥିଲେ ଭୟରୁ ଘାତକ ପବନ ।
ତହିଁ ସେନେହ ଛାଡନ୍ତି କି ଘେନ ।
କର୍ମକୁ ଘୃହିଁ ନିର୍ଦ୍ଦୟା ହେଲେ ତୋତେ ଛାଡ଼ି ନ ପାରିବି ଧନ ରେ ।
ସୁନ୍ଦରି । କାମ କଲେ ପଛେ କରୁ ଅଶୁଭ । ଗହୁ ପ୍ରାୟେ ମୋର ଆଶା ଆରମ୍ଭ ।
ହରି ଆଦି ଦେବେ ବିବାଦି ହୋଇଲେ ଛାଡ଼ିଲେ କି ସୁଧା ଲୋଭ ରେ ସୁନ୍ଦରି । ୧୧ ।

---

ଦେହାନ୍ତର ବିହୀନ-(ନ ମରି କରି ଏହି ଦେହରେ) ମୋତେ, ଦେବତାମାନେ ଯାହା ଭୋଗ କରନ୍ତି ତାହା ତୋର ଦେବାର କ୍ଷମତା ଅଛି । କିପରି ? ଦେବତା ମାନଙ୍କର ନିମିଷ ନାହିଁ; ତତେ ଗ୍ରହିଁଲେ ନିମିଷ ପଡ଼ିବ ନାହିଁ । ଦେବତାମାନେ କାଞ୍ଚନ ଶିଖରୀ (ମେରୁ)ରେ ବିହାର କରନ୍ତି, ଅମୃତ ପିଅନ୍ତି, ରମ୍ଭାରେ (ରମ୍ଭା ନାମକ ସ୍ୱର୍ଗ ବେଶ୍ୟାରେ) ସ୍ନେହୀ (ପ୍ରେମୀ) ହୁଅନ୍ତି; ମୋକ୍ଷ ପଦ (ମୋକ୍ଷ ସ୍ଥାନ) ପାଆନ୍ତି । ତୋର କୁଚ ମେରୁ, ଅଧରରେ ଅମୃତ, ଜଙ୍ଘ ରମ୍ଭା (କଦଳୀ) ପରି; ନୀବୀରେ ମୋକ୍ଷ [୧୬ଶ ଛାନ୍ଦ, ୨୪ ପଦ ଟୀକା ଦେଖ] । ତୋତେ (ତୋ ଠାରେ) ଦୁର୍ଲ୍ଲଭ (ନ ମିଳିବାର ହୋଇ) ଆଉ କିଛି ନାହିଁ; କେବଳ ତୁ ମିଳିଲେ ହେଲା ।

୧୦–ତୋର ବିଗ୍ରହ (ଶରୀର) ସାଗର (ସମୁଦ୍ର) ପରି; ଗୁଣ ରୂପ ସରିତ (ନଦୀ) ମାନେ ସେଥିରେ ଏକାଠି ହୋଇଛନ୍ତି । ରସ (ପ୍ରେମ) ରୂପ ରତ୍ନର ସେ ଆକର (ଖଣି) ହୋଇଛି । ସମୁଦ୍ରରେ ମହତୀ ଯୋଗ ପଡ଼ିଲେ ସେହି ମହତୀ ଯୋଗରେ ସ୍ନାନ କରି କୃତାର୍ଥ (ସିଦ୍ଧ ମନୋରଥ) ହୁଅନ୍ତି । ହେ ରମ୍ଭୋରୁ ତୁ କାମଧେନୁ (ଯାହା ଇଚ୍ଛା କରଯାଏ ତାହା ଦୁହାଁ ଯାଏ ଯେଉଁ ଗାଈଠାରୁ ତାହାରି) ପରି । [ବଶିଷ୍ଠଙ୍କର ସୁରଭି ବୋଲି କାମଧେନୁ ଥିଲା] କାମା (ପ୍ରୀତି) ରୂପା ଧେନୁ– ସୁରଭି ଏପରି ଅର୍ଥବି ହୋଇପାରେ । ଦୁଜେ–ପୁଣି (ଦ୍ୱିତୀୟରେ); ସୁରତ (କେଳି) ରୂପ ସୁର ତରୁ (କଳ୍ପବୃକ୍ଷ–ଯେଉଁ ଗଛର ସୁଖାଦ୍ୟ ଫଳ ଯେତେ ଯେ ତୋଳିଲେ ମଧ୍ୟ ସରେ ନାହିଁ) ଇନ୍ଦ୍ରଙ୍କ ନନ୍ଦନ କାନନରେ ଏହି କଳ୍ପବୃକ୍ଷ ଅଛି ବୋଲି ପୁରାଣ ପ୍ରବାଦ ।

୧୧–ଘାତକ କୁଳିଶ (ବଜ୍ର)କୁ ନ ଡ଼ରି ମେଘବରଷା ପାଣି ଖାଏ; ଚନ୍ଦନ ଗଛରେ ସାପ ଥିଲେ ମଧ୍ୟ ପବନ ତାକୁ ଛୁଏଁ; କର୍ମ୍ମକୁ (ମୋ କପାଳକୁ) ହରି (ବିଷ୍ଣୁ) ପ୍ରଭୃତି

ହୃଦ କେଦାରରେ ଅନୁରାଗ ବୀଜ ଅତି ଯତ୍ନ କରି ବୁଣିଛି ।
ଭଲ କାଳ ହେବା ଯହୁଁ ଜାଣିଛି ।
କ୍ରମେ ସେ ଅଙ୍କୁରେ ଘନରସ ବୃଷ୍ଟି ବିହୀନେ ଦୁଃଖୀ ହୋଇଛି ରେ ।
ସୁନ୍ଦରି । ନ କରିବ କି କରିବ ବରଷା । ପୁଛେ ତୁ ମହା ଜ୍ୟୋତିଷିକ ଯୋଷା ।
ନାସିକା ମୋତି ବୃହସ୍ପତି ଚଳନ ଯୋଗକୁ ଟେକିଛି ଆଶା ରେ । ସୁନ୍ଦରି । ୧୨ ।
ଅଛି ଯେଉଁ ଜୀବ ବୀଣା ଜିଣା ବାଣୀ କିଣା ଅଙ୍ଗ ଦେଶେ ତୋହର ।
କେଡ଼େ ଭରସା ସନ୍ତାପ ବ୍ୟାଧର ।
ଶମନ ପାଶେ ଉଛନ୍ନ ପାଶେ ଧରି ନେବା ପାଇଁ ତତପର ରେ
ସୁନ୍ଦରି । କଲି ଗୋଚର ମୋର ଦୋଷ ନାହିଁ । କାହାକୁ ଏ ଅଯଶ ହେବ ସହି ।
ତୋତେ ଏମନ୍ତ ବୋଲିବା ଅଧିକାର ମୁଁ ପୁଣି ପାଇବି କାହିଁ ରେ । ସୁନ୍ଦରି । ୧୩ ।
ନବ ବନିତା ଅପୂର୍ବ ପୁଷ୍ପଇତା ପ୍ରକାଶ ଷୋଳ ଜାତି ଫୁଲ ।
ତିଳପୁଷ୍ପ କୁନ୍ଦ ରାଜି କମଳ ।
କୁମୁଦ ବଧୂଲୀ ପାଟଳୀ ନିଆଳୀ ଚମ୍ପା ଶିରୀଷ ଉତ୍ପଳ ରେ ।
ସୁନ୍ଦରି । ଷଣ[୧] କୁସୁମ ଅଶୋକ ମନ୍ଦାର । ଭେଖ ଭୃଙ୍ଗ ମୁଁ ଚୁମ୍ବନେ ଆତୁର ।
କେତକୀ ବରନେ ନାମ ଅଙ୍ଗୀକାର କଲେ ସରିଗଲା ମୋର ରେ । ସୁନ୍ଦରି । ୧୪ ।

---

ପାଠାନ୍ତର—୧, ଶୋଣ

---

ଦେବତାମାନେ ବିବାଦି ହେଲେ ମଧ୍ୟ ରାହୁ ଦେବତାଙ୍କ ଭିତରେ ପଶି ଅମୃତ ଖାଇଥିଲା । ପରେ ବିଷ୍ଣୁ ତାକୁ ଚକ୍ରରେ ହାଣି ଦେଇଥିଲେ ।

୧୨—ହୃଦୟ କେଦାର (ବିଲ) ହେଲା, ଅନୁରାଗ (ପ୍ରେମ) ବୀଜ (ବିହନ) ହେଲା; କାଳ—(୧) ପାଳକ (୨) ସୁଯୋଗ ବା ତୋର ଯୌବନ; ଘନରସ—(୧) ପାଣି (୨) ଶୃଙ୍ଗାର; ତୋର ନାକ ମୋତି ଯେ ସେ ବୃହସ୍ପତି ପରି ଚଳିବ,ହଲିବ (ହଁ କରିବାରେ); ଫଳିତ ଜ୍ୟୋତିଷରେ ଅଛି ବୃହସ୍ପତି ଓ ମଙ୍ଗଳ ଚଳନ(ଏକ ରାଶି ଡେଇଁ ଅନ୍ୟ ରାଶିକୁ ଗଲାବେଳେ) ବର୍ଷାହୁଏ । ଯୋଗ—ସମୟକୁ ।

୧୩—ହେ ବୀଣା ଜିଣାବାଣୀ, ଯେଉଁ ଜୀବ—ମୁଁ—ସନ୍ତାପ ରୂପ ବ୍ୟାଧ (ଶବର) ଉଛନ୍ନ (ବ୍ୟାକୁଳତା) ରୂପ ପାଶ (ଜାଲ); ଏମନ୍ତ ଅଧିକାର—ତୋତେ ଦୋଷି ବୋଲିବା ଅଧିକାର;

୧୪—ଷୋଳ ଜାତି ଫୁଲ—[୭ମ ଛାନ୍ଦ ୬୯ ପଦ ଟୀକା ଦେଖ] କେତକୀ ପାଖକୁ ଭ୍ରମର ଯାଏନାହିଁ । ଅତଏବ ତୁ ମୋ ସମ୍ବନ୍ଧରେ କେତକୀ ବରଣା—ଏ ନାମ ନେ ନା ।

ଅନଙ୍ଗ ବଧିବା ଇଛାକରି ତୋତେ ବିନ୍ଧି ନ ପାରୁଥିବ ବାଣ ।
ଶୋଭ ଅନାଇ କ୍ଷୀଣ ହେବ ଗୁଣ ।
ମୁଁ କି ଉପାୟେ ତୋ ଦରଶନ ଯାଏଁ ବଞ୍ଚିବି କହିବୁ ପୁଣ ରେ ।
ସୁନ୍ଦରି । ବଞ୍ଚିଥିଲେ ଅଛି ଏତେ କାରଣ । ଲକ୍ଷା ଲେଖିବି ଧରି ତୋ ଚରଣ ।
ଚିତ୍ର ଗ୍ରହିଁ ତୁ ଯେ ପ୍ରଶଂସା କରିବୁ ସେ ବାଣୀ ହେବ ଶ୍ରବଣ ରେ । ସୁନ୍ଦରି । ୧୫ ।

ଗଭକୁ ଶୋଭ ହେବା ଭଳି କୁସୁମ ଗୁନ୍ଥି ଦେଉଥିବି ସୁଗାତ୍ରୀ ।
ଶିବ ରାତ୍ରି କରିବି ସବୁ ରାତ୍ରି ।
ଆଗ କି ମାଗିବି ସେବା ଜାଣି କୃପାକରୁ ସିନା କୃପା ପାତ୍ରିରେ ।
ସୁନ୍ଦରି । ଇଛା ମନ ଭିତରେ ଦେହ ରହୁ । ଏ ନୋହିଲେ ବିଧାତା ପକ୍ଷ ଦେଉ ।
ଯାଇ ତୋ ପାଶେ ମୋ ସେବା ଦେଖାଇବା ଯୋଗ ବେଗ ହୋଇ ହେଉ ରେ ।
ସୁନ୍ଦରି । ୧୬ ।

କ୍ଷିତି ଥିଲେ ନରପତି ଶୋଭ ପାଇ ରତି ଥିଲେ ଚନ୍ଦ୍ର ଉଜ୍ଜ୍ୱଳ ।
ପଦ୍ମ ଥିଲେ ସରୋବର ମଞ୍ଜୁଳ ।
ଘେନ ସେହି ମତି ଯୁବତୀ କତିରେ ଥିବା ଯୁବାର ମଙ୍ଗଳ ରେ ।
ସୁନ୍ଦରି । ଲଭି ନାହିଁ ଯେ ବଲ୍ଲଭୀ ସୁରସ । ମହା ସମ୍ପତ୍ତି ଥାଇ ହେବ କିସ ।
ନୟନ ନଥାଇ ଦେବ ଦରଶନେ ଗଲା ପ୍ରାୟ ଉପହାସ ରେ । ସୁନ୍ଦରି । ୧୭ ।

---

୧୫—ପୁଷ୍ପ ଧନୁର ଗୁଣ ଭ୍ରମରମାନେ, ଧନୁଃ ପୌଷ୍ପଂ ମୌର୍ବୀ ମଧୁକର ମୟୀ—ଇତି ପ୍ରୟୋଗଃ; ତୁ ତ ଫୁଲଗଛ; ତୋତେ ଦେଖି ଭ୍ରମର ଯାକ ଉଡ଼ି ଆସୁଥିବେ ତେଣୁ କାମର ଧନୁଗୁଣ କ୍ଷୀଣ ହେବ (ଛିଡ଼ିଯବ)—ଏହିପରି ଶ୍ଳେଷାର୍ଥ । ଏକେ ତୋ ଶୋଭ ଦେଖି ତତେ ପ୍ରାଣରେ ମାରିବା ପାଇଁ କନ୍ଦର୍ପର ହାତ ଯାଉ ନ ଥିବ; ଦୁଜେ ଧନୁ ଗୁଣ ଛିଡ଼ି ଯାଉଥିବ । ଲକ୍ଷା—ଅଳତା;

୧୬—ସୁଗାତ୍ରୀ—ଉତ୍ତମ (ଗାତ୍ର) ଦେହ ଯାହାର; ଶିବରାତ୍ରି (ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ରାତ୍ରି) ଉଜାଗର ରହିବାର ବିଧି । ଆଗରୁ କିଛି ମାଗିବି ନାହିଁ । ମୋ ସେବା ଦେଖି ତୁ ଅନୁଗ୍ରହ କରିବୁ । ମନ ତୋ ଠାରେ ଅଛି । ଇଛାହୁଏ ମୋ ଦେହଟା ସେ ମନ ଭିତରେ ପଶି ରହି ଯାଆନ୍ତା । ନ ହେଲେ ବିଧାତା ଉଡ଼ିବା ପାଇଁ ପକ୍ଷ ଦିଅନ୍ତା । ତାହା ହେଲେ ବେଗେ ଯାଇ ସେବକ ପଣିଆ ଦେଖାନ୍ତି ।

ମନର ଯୁବତୀ ପରଶ ପରଶୁ ପୁରୁଷ ଲୌହ କରେ ହେମ ।
ଭଙ୍ଗୀ ବଚନ ହିମ ଧାମ ସମ ।
ହୃଦୟ ସ୍ଥଳ ଚନ୍ଦ୍ରକାନ୍ତ ମଣିର ଦ୍ରବୀଭୂତକୁ ସେ କ୍ଷମ ରେ ।
ସୁନ୍ଦରି । ଏହା ଶୁଣିଛି ରସିକ ବଦନ । ଅନୁଭବ ନାହିଁ ମୋର ଏ ମାନ ।
କି କରି ଜାଣିମି କରିଜିତ ଗତି କରିବୁ ଏ ଅବଧାନ ରେ । ସୁନ୍ଦରି । ୧୮ ।
ଶିର ଫୁଲ ଗନ୍ଧ କେତେ କାଳ ଶୋଭ କି ଶୀତଳ କାରୀ ଚନ୍ଦନ ।
ଏ ବଚନ କି ତୋ ଠାରେ ବନ୍ଦନ ।
କି କରି ବୋଲିବି ମଶରୀ ମଶକ ପ୍ରାୟେ ଭ୍ରମୁଛି ମୋ ମନ ରେ ।
ସୁନ୍ଦରି । ବନ୍ଧୁ ଧନ ତୋତେ ରେ ପ୍ରେମ ଶୀଳା । ବୋଲିବି କି ନାହିଁ ଚିତ୍ତ ରସିଲ ।
ଗଲେ ପ୍ରାଣ ରହି ବନ୍ଧୁ ଧନ ଦୁଇ ଥିଲେ ଅଛି ଏ ଶୁଣିଲ ରେ । ସୁନ୍ଦରି । ୧୯ ।
ଅତି ଦରିଦ୍ର ମୁଁ ବୋହିତ ବଣିଜ କରିଛି ଉପାୟ ବଳରେ ।
ଭଲ ମନ୍ଦ କି ଅଛି କପାଳରେ ।
ଦଇବ ଯେ ତୁହି ସେ ତୋତେ ଗୋଚର ଦୟାରେ ଲଗା କୂଳରେ ରେ ।
ସୁନ୍ଦରି । ମାର ତସ୍କର ଘେନି ଦଳ ଅଛି । ପ୍ରାଣ ଧନ ଲୁଟିବାକୁ ଜଗିଛି ।
ଅଷ୍ଟ ସାତ୍ତ୍ୱିକ ଅଣଆଶ ପବନ ଛନ୍ନ ଭ୍ରମେ ପକାଉଛି ରେ । ସୁନ୍ଦରି । ୨୦ ।

---

୧୮—ମନର ଯୁବତୀ—(ଯାହା ଠାରେ ମନ ମାନେ) ତାର ପରଶ (ସ୍ପର୍ଶ) ସେ ପରଶୁ (ପଶୁ ପଥର) ପରି ପୁରୁଷ ରୂପ ଲୌହ (ଧାତୁ) କୁ ହେମ (ସୁନା) କରେ । (ଯେ କୌଣସି ଧାତୁକୁ ମଧ୍ୟ ଲୌହ କୁହାଯାଏ) ପରଶୁ ୮୭ମ ଛାନ୍ଦ ୩୬ ପଦ ଟୀକା ଦେଖ। ତୋର ଭଙ୍ଗୀ ବଚନ (କଥାର ଚତୁରୀ) ସେ ହିମ ଧାମ (ଚନ୍ଦ୍ର) ପରି; ଚନ୍ଦ୍ରକାନ୍ତ ମଣି ୮୬ଷ ଛାନ୍ଦ ୪୧ ପଦ ଟୀକା ଦେଖ । ଏସବୁ କଥା ମୁଁ ଶୁଣିଛି; ଅନୁଭବରେ କିପରି ଜାଣିବି ସେଥିପାଇଁ ତୁ ଅବଧାନ କର ।

୧୯—ତୋତେ ଶିର ଫୁଲ ଗନ୍ଧ ବୋଲନ୍ତି । କିନ୍ତୁ ସେତ ଶୁଖିଗଲେ ନଷ୍ଟ ହୋଇଯାନ୍ତି । ମଶରି (ମଶୁରି) ଭିତରେ ମଶା ରହିଗଲେ ଅସ୍ତବ୍ୟସ୍ତ ହୋଇ ଘୂରିଆଡ଼େ ବୁଲେ କିନ୍ତୁ ବାଟ ପାଏନାହିଁ । ବନ୍ଧୁ ଧନ ଦୁହେଁ ରହିଥିଲେ ପ୍ରାଣ ଗଲେ ମଧ୍ୟ ଉପକାର ଅଛି ବୋଲି ଶୁଣିଛି ।

୨୦—ବୋଇତକୁ ଦଇବ କୂଳରେ ଲଗାଇବା ପରି ତୁ ମୋତେ ତୋ ଶରୀରରେ ଲଗା । ବୋଇତରୁ ତସ୍କର (ଚୋର) ମାନେ ଧନ ଲୁଟି ନିଅନ୍ତି । ଝଞ୍ଜା ପବନ ବା ଭ୍ରମ (ଜଳାବର୍ତ୍ତ—ଜଳ ଭଉଁରୀ) ରେ ପଡ଼ିଲେ ବୋଇତ ଭଙ୍ଗିଯାଏ । ଏଠାରେ ମାର

ନେତ୍ରେ କର୍ଣ୍ଣକୁ ଆକ୍ଷେପ କରି ବଳି ତ୍ରିବିଧେ କରିଛୁ ବନ୍ଧନ ।
ହାସେ ହରି ଚନ୍ଦ୍ର ଦର୍ପ ଦଳନ ।
ଜୀମୂତ ବାହନ ପଦ ଦରଶନ ଜନେ କରିଅଛୁ ଦାନ ରେ ।
ସୁନ୍ଦରି । ବଚନରେ ଅନୁସରି ଶିବୀ ଯେ । ଦାନି ମାନଙ୍କୁ ଜିଣିଛୁ ଭବି ଯେ ।
ତନୁ ଦାନକୁ ମୁଁ ଅର୍ଥୀ ହୋଇଅଛି ବୋଲିବୁ ନିକି ନ ଦେବି ରେ । ସୁନ୍ଦରି । ୨୧ ।

---

(କନ୍ଦର୍ପ) ଚୋର ପରି ମୋ ପ୍ରାଣରୂପ ଧନକୁ ଲୁଟି କରିବାକୁ ଜଗିଛି (ଛକିଛି) ୮ କାମ ବା ବିରହ ଜନିତ ଅଷ୍ଟସାତ୍ତ୍ୱିକ ଅଣଅାଶ ପବନ ପରି ହୋଇଛି । ଛନ୍ନ (ସନ୍ଦେହ ଜନିତ ନିଗଣା) ଭଉଁରୀ ପରି ହୋଇଛି । ପବନ ଅଣଅାଶଟି ବୋଲି ପୁରାଣରେ ଅଛି । ଅଣଅାଶ [୧୨ଶ ଛାନ୍ଦ ୨୧ପଦ ଟୀକା ଦେଖ] ଭରି ଝଡ଼ି ଝଞ୍ଜା ପବନ ହେଲେ ଅଣଅାଶ ଯାକ ପବନ ବୋହିଲା ବୋଲି କହନ୍ତି । ଅଷ୍ଟ ସାତ୍ତ୍ୱିକ–ବିରହରେ ଆଠଟି ସାତ୍ତ୍ୱିକ ଲକ୍ଷଣ ଦେଖାଯାଏ । ଯଥା–ସ୍ତମ୍ଭଃ ସ୍ୱେଦୋଽଥ ରୋମାଞ୍ଚ ସ୍ୱରଭଙ୍ଗୋଽଥ ବେପଥୁଃ ବୈବର୍ଣ୍ଣ୍ୟ ମଶ୍ରୁ ପ୍ରଳୟ ଇତ୍ୟଷ୍ଟୌ ସାତ୍ତ୍ୱିକାଃ ସ୍ମୃତାଃ–ଇତି ସାହିତ୍ୟ ଦର୍ପଣେ ।
ସାତ୍ତ୍ୱିକ କଣ ? ବିକାର ସତ୍ତ୍ୱ ସମ୍ଭୂତା ସାହିକା ପରିକୀର୍ତ୍ତିତା; ସତ୍ତ୍ୱ–କାମ ବାସନା ଯୁକ୍ତ ପ୍ରକୃତି ।

୨୧–କର୍ଣ୍ଣଦାତା ବଳୀଦାତା ଦାତା ଜୀମୂତ ବାହନଃ ହରିଶ୍ଚନ୍ଦ୍ରଃ ଶିବୀ ଦାତା ମୋକ୍ଷ ଦାତା ଜନାର୍ଦ୍ଦନଃ ଅର୍ଥାତ୍ କର୍ଣ୍ଣ, ବଳୀ, ହରିଶ୍ଚନ୍ଦ୍ର, ଜୀମୂତ ବାହନ, ଶିବୀ ଏହି ଦାନୀ ମାନଙ୍କୁ ତୁ ଜିଣିଛୁ । ମୁଁ ତନୁ ଦାନକୁ (ଅଙ୍ଗ ଦାନକୁ କିମ୍ବା ଶରୀର ଦାନକୁ) ତୋ ପାଖେ ଅର୍ଥୀ ହୋଇଛି (ମାଗୁଛି); ନାହିଁ କରି ପାରିବୁ କି ? କିପରି ଜିଣିଛୁ ? ଯଥା– ନେତ୍ରରେ କର୍ଣ୍ଣକୁ ଆକ୍ଷେପ (୧. ଭର୍ତ୍ସନା ୨. ଅଳଙ୍କୃତ) କରିଛୁ [ଆକ୍ଷେପ ଭର୍ତ୍ସନା କୃଷ୍ଣି କାବ୍ୟାଳଙ୍କୃତିଷୁ ସ୍ମୃତ–ଇତି ମେଦିନୀ]–ତୋର କାନ ପର୍ଯ୍ୟନ୍ତ ବିସ୍ତୃତ ଦୀର୍ଘ ସୁନ୍ଦର ନେତ୍ର, ତୁ ବଳିକୁ ତ୍ରିବିଧେ (୧. ତିନି ସରିରେ ୨. ସ୍ୱର୍ଗ, ମର୍ତ୍ତ୍ୟ ପାତାଳ, ତିନି ଲୋକରେ ବିଷ୍ଣୁ ଆବଦ୍ଧ କଲପରି) ବାନ୍ଧିଛୁ ଅର୍ଥାତ୍ ତୋ ପେଟରେ ତ୍ରିବଳୀ; ହରି (ଚନ୍ଦ୍ର) ଚନ୍ଦ୍ର (କର୍ପୂର) ଏ ଦୁହିଁଙ୍କୁ ହାସରେ ଜିଣିଛୁ । ଜୀମୂତ ବାହନ ପଦ (ଇନ୍ଦ୍ର-ପଦ)କୁ ଦରଶନ ଜନେ (ଦେଖିବା ଲୋକକୁ) ଦାନ କରିଛୁ (ଦେଇ ଅଛୁ) ତୋତେ ଦେଖିଲେ ଇନ୍ଦ୍ରପଦ ମିଳୁଛି । ଜନେ (ସଂସାରରେ) ଜୀମୂତ ବାହନ ନାମକ ଦାତାର ପଦର ଯେ ଦର୍ଶନ (ଶୋଭା, ଖ୍ୟାତି) ତାକୁ ଦାନ (ଛେଦନ) କରିଛୁ ।
ଦାନଂ ଗଜମଦ ତ୍ୟାଗ ପାଳନ ଛେଦ ଶୁଦ୍ଧିଷୁ–ଇତି ମେଦିନୀ;
ଶିବୀ (ଶିବୀଦାତା) ତୋତେ ବଚନରେ (ପ୍ରାର୍ଥନା କରି) ଅନୁସରିଛି (ପଛରେ ଗୋଡ଼ାଇଛି) ଶିବୀ (ଶିବ–ବେଦ, ଅଛି ପାଧାର–ବ୍ରହ୍ମା) ତାକୁ ବଚନରେ ଜିଣିଛୁ; ଅର୍ଥାତ୍ ତୋର ବଚନ ବ୍ରହ୍ମବାଣୀ ବେଦ ଠାରୁ ଆଉରି ପବିତ୍ର ।

ଦେବୀ ଭେଟାଇଲ ନିଶାଙ୍କେ ପର୍ଯ୍ୟଙ୍କେ କରିଥିଲୁ ବାଳା ଶୟନ ।
ହା ହା କି ଶୋଭ ଦେଖୁଛି ନୟନ ।
ସେହି ତ୍ରୁଟିକେ କୋଟି କୋଟି ମଘବା ସମ୍ପତ୍ତି କରିଛୁ ଦାନ ରେ ।
ସୁନ୍ଦରି ! ଯେବେ ଚିର ହୁଅନ୍ତା ସେ ମୁହୂର୍ତ୍ତ । ଯୁବା ବୃନ୍ଦେ ହୋଇଥାନ୍ତି ସାମନ୍ତ ।
ଭୀରୁ ଉରୁ ଧରି ଝୁଲଇ ଦେବାର ନୋହେ ଇତର ସୁକୃତ ରେ । ସୁନ୍ଦରି । ୨୨ ।

ନିଦ୍ରା ବିନାସ ଅଳସ ଭବ ଘେନି କସାଇତ ନେତ୍ର ଚାତୁରୀ ।
ମୋତେ ବଙ୍କେ ଅନାଇଲୁ କି କରି ।
ଅନୁରାଗ ଜଳେ ବୁଡ଼ାଇ କମଳ ବେଗେ ଢ଼ାଳି ଦେଲ ପରି ରେ ।
ସୁନ୍ଦରି । ଲଜ ବଶରୁ ରସିକା ସିହାଣୀ । ଚାହିଁ ନ ଚାହିଁଲ କଲୁ ଚାହାଣି ।
ଉଡ଼ି ପୂର୍ଣ୍ଣଚନ୍ଦ୍ର ମଣ୍ଡଳୁଁ ମଦିର ବସିଲ ପରାୟ ପୁଣି ରେ । ସୁନ୍ଦରି । ୨୩ ।

ବିନୟରେ ମୋ ଲୟ ଦେଇ ଉଦୟ କଲୁ ଯେ କରୁଣା କିଞ୍ଚିତ ।
ପ୍ରାଣ ରଖଲ ସେ ସୁଧା ସିଞ୍ଚିତ ।
ମାଣିକ୍ୟ କୁହରୁ ହୀରା ଝଟକିଲ ପ୍ରାଏ ସ୍ମିତ ହାସ ଜାତ ରେ ।
ସୁନ୍ଦରି । ଜନ୍ମାନ୍ତରେ ମୋ ଖଣ୍ଡ ତପ ଥିଲ । ସେହି ସମୟେ ନିଶା ନାଶ ହେଲ ।
ବର୍ତ୍ତିବାରୁ ମହା ସନ୍ତାପ ନୟନ ମନେ ଆନ ନ ରୁଚିଲ ରେ । ସୁନ୍ଦରି । ୨୪ ।

---

୨୨—ତ୍ରୁଟି—ମୁହୂର୍ତ୍ତ, ଲବର ଅର୍ଦ୍ଧ ବା କ୍ଷଣର ଚଉଠକୁ ତ୍ରୁଟି କହନ୍ତି; ସାମନ୍ତ—ଶ୍ରେଷ୍ଠ; ଇତର—ଯେ କୌଣସି ସାଧାରଣ ଲୋକର;

୨୩—ସ୍ୱପ୍ନ ଭେଟ କଥାକୁ ଲକ୍ଷ କରିଛି; କଷାଇତ—ଅଳ୍ପ ନାଲି, ନିଦରୁ ଉଠିଲ ବେଳେ ଆଖି ଯେପରି ହୋଇଥାଏ । କମଳ ପରି ଆଖି । ରସିକା ସିହାଣୀ—ଚତୁର ରସିକା; ମଦିର—ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ପରି ମୁହଁ, ମଦିର ପରି ଆଖିଡ଼ୋଳା; ମତ୍ତ ଖଞ୍ଜନ—ସୁନ୍ଦର କଜଳ ପାତି ଚଢ଼େଇ; ଉଡ଼ି ବସିଲ ପରି—ଚାହିଁ ନ ଚାହିଁଲ ପରି ସଙ୍ଗେ ତୁଳନା;

୨୪—ମୋ ବିନୟରେ (ଚାଟୁରେ); ସେ ସୁଧା (ତୋ କରୁଣା ରୂପ ସୁଧା), ସିଞ୍ଚିତ—ସେଚନ, ଛିଞ୍ଚିଥିବା; ମାଣିକ୍ୟ କୁହରୁ (ଗହ୍ୱର, ଗିରି ଖୋଲରୁ) ହୀରା ଝଟକିଲ ପରି ତୋର ପାନ ଖିଆ ତୁଣ୍ଡରୁ ବା ରଙ୍ଗ ଓଠ ଭିତରୁ ଧଳା ଦାନ୍ତର ହାସ; ଜନ୍ମାନ୍ତେ—ପୂର୍ବ ଜନ୍ମରେ; ଖଣ୍ଡତପ—ଯେଉଁ ତପସ୍ୟା ପୂର୍ଣ୍ଣ ହୋଇ ନ ଥିଲ । ଆନ ନ ରୁଚିଲ—ତା ଉତ୍ତାରୁ ଆଜିଯାଏ ଆଉ ରୁଚିଲ ନାହିଁ ।

ଚତୁରୀ ଘଟୁକୁ ଘତୁରୀ କରି ଯେ ଯେତେ ବାଣୀ କହି ଯୁଗତେ ।
କେହି ସମ ହେବନାହିଁ ଜଗତେ ।
କର ଯୋଡ଼ି ମୁଁ ଜାଣାଉଛି ସନ୍ଦେଶ ଦୋଷ ନ ଧରିବୁ ଚିତ୍ତେ ଗେ ।
ସୁନ୍ଦରି । ସବୁ ସଖୀଙ୍କି ସଙ୍ଖୋଳା ମୋହର । ତୁମ୍ଭ ସଙ୍ଗତେ ମତେ ଜଣେ କର ।
ମନ ମନାଇଁ ଅବକାଶ ଅନାଇଁ ଘେନାଇ କହ–ଛାମୁର ରେ । ସୁନ୍ଦରି । ୨୫ ।
ବେଗେ ଦୂତକୁ ମେଲଣି ଦେଇ ଦେବ ଶ୍ରୀହସ୍ତ ସନ୍ତକ ଲେଖକୁ ।
ପାଇ ପାଇ ମୁଁ ଅଲେଖ ସୁଖକୁ ।
କୃଶ ହେଲେ ଆଶାଦଣ୍ଡ ଅବଲମ୍ବ କରି ଘଉଡ଼ି ଦୁଃଖକୁ ରେ ।
ସୁନ୍ଦରି । ଯିବି ଜୀବିତେ ପ୍ରଭୁର ଛାମୁକୁ । ବ୍ୟଥା କହି ଦଣ୍ଡାଇବି କାମକୁ ।
ଏଥକୁ କାମନା ଏ ବିନା ନବୀନା ମଳୁଛି ଯାହା କର୍ମକୁ ରେ । ସୁନ୍ଦରି । ୨୬ ।
ବଳିଆଇ ଯେ ତ୍ରିବଳୀ ଶୋଭିନୀକି ଜଣାଇମା ଅଛି ଆହୁରି ।
ପ୍ରୀତି ବିଗେଧୀ ଯେତେ ସହଚରୀ ।
ଦଇବେ ହୋଇବେ ପ୍ରବୋଧ କରିବୁ ସେମାନଙ୍କ କର ଧରି ରେ ।
ସୁନ୍ଦରି । ପର ଉପକାର ଯଶ ଥୋଇଲେ । ଦେଖ ମହାଦେବ ବିଷ ପିଇଲେ ।
ଦେଖ ଭୃତ୍ୟ ପଦ ହୃଦେ ବହି ହରି ଭବଗ୍ରାହୀ ବୋଲାଇଲେ ରେ । ସୁନ୍ଦରି ।୨୭।

---

୨୫–ଘତୁରୀ କରି ( ଚତୁରତା ଲଗାଇ ) ଯେତେ ବାଣୀ ( କଥା ) ଯୁଗତେ ( ଠିକ୍ ହେବାଭଳି, ଉପଯୁକ୍ତ ) କହି ( କୁହାଯିବ ) ସେ ସବୁ ଚତୁରୀର ଘଟୁକୁ ସମାନ ହେବ ନାହିଁ । ସଙ୍ଖୋଳା–ସାଦର ସମ୍ଭାଷଣ, ଆଦରରେ କହିବା କଥା; ଅବକାଶ ଅନାଇଁ–ବେଳ ଉଣ୍ଡି;

୨୬–ମେଲଣି ଦେଇ–( ଲେଉଟାଇ ଦେଇ ) ତା ହାତ୍ରେ ଶ୍ରୀହସ୍ତ ସନ୍ତକ ( ନିଜର ଦସ୍ତଖତ )ରେ ଲେଖ ( ଚିଠି–ଉତ୍ତର ) ଦେବ । ତାକୁ ପାଇ ମୁଁ ଅଲେଖ (ଅସୁମାର) ସୁଖକୁ ପାଇ ( ପାଇବି ); ମୁଁ କୃଶ ( ଦୀନ ) ହେଲେ ହେଁ ଆଶାରୂପ ଦଣ୍ଡ ( ହାତବାଡ଼ୀ ) ଧରି ଦୁଃଖକୁ ଘଉଡୁଛି । ଦୁର୍ବଳ ଲୋକ ନିଜେ ନ ପାରି ବାଡ଼ିରେ ହିଂସ୍ରଜନ୍ତୁ ଘଉଡ଼ିବାର ସାଦୃଶ୍ୟ । ପ୍ରଭୁ-ଏଠାରେ କେମା; ଏଥକୁ–ଏହିଥିପାଇଁ; କାମନା–ଇଚ୍ଛା; ଏ ବିନା–ଏହାଛଡ଼ା; ମିଳୁଛି–ମିଳିବ;

୨୭–ବଳିଆଇ–ଚିଠି ଲେଖିସାରି ପୁଣି ଏହା ଲେଖୁଛି; ଦଇବେ–ମୋ ଦୁର୍ଭାଗ୍ୟକୁ; ପର ଉପକାର ପାଇଁ–ଦେବତା ମାନଙ୍କୁ ବିଷରୁ ରକ୍ଷା କରିବାପାଇଁ ନିଜେ ମହାଦେବ ସମୁଦ୍ର ମନ୍ଥନରୁ ବାହାରି ଥିବା ବିଷ ପିଇଥିଲେ । ଭୃତ୍ୟ ପଦ–ଭକ୍ତର ପାଦ; ଭବଗ୍ରାହୀ–ଯେ ମନର ଭକ୍ତି ଗ୍ରହଣ କରନ୍ତି । ଶ୍ରୀ ବହ ମହର୍ଷି ବଡ଼ ବିଷ୍ଣୁ ଭକ୍ତ ଥିଲେ । ଦିନେ ବିଷ୍ଣୁଙ୍କୁ ଡ଼ାକିବାରେ ବିଷ୍ଣୁ ନ ଶୁଣିବାରୁ ସେ ବିଷ୍ଣୁଙ୍କ ଘରକୁ ପଶିଯାଇ ଲକ୍ଷ୍ମୀଙ୍କ ସାଙ୍ଗେ କଥାବାର୍ତ୍ତା ହେଉଥିବା ବେଳେ ବିଷ୍ଣୁଙ୍କ ଛାତିକି ଗୋଇଠାଏ

ପଢ଼ି ଏ ପତ୍ର ରୋମାଞ୍ଚ ଗାତ୍ରରେ କି ହୋଇ ଅନୁରାଗ ଅଙ୍କୁର ।
କିବା ମାଗିବ ଯୁବା ସଙ୍ଗ ବର ।
ଆନନ୍ଦ ଅଶ୍ରୁ ଜଳରେ ଅଭିଷେକ କରାଇଲା କୁଚହର ସେ ।
ସୁନ୍ଦରି । ଦେଲା ଦ୍ୱିଜକୁ ସେ ମୋତି କଳାପ । ମନେ ଏକଥା କରି ସଂକଳପ ।
ଏହାରଠାରେ ଏ ହାର ଥିଲେ ଦେଖି ଜାଣନ୍ତି ସିନା ମୋ ତାପ ସେ । ସୁନ୍ଦରି ।୨୮।
ପ୍ରତି ଉତ୍ତର ପତର ଦେଇ ତାକୁ କାତର ସାଗରୁଁ ଉଦ୍ଧର ।
କହେ ଏକାଳେ ବ୍ରହ୍ମଚାରୀ କୀର ।
ଅନୁନୟ ଲେଖା ଛାନ୍ଦପୂର୍ଣ୍ଣ ହୋଇ ରସିକ ଉଲ୍ଲାସକର ହେ ।
ସୁଜନେ । ରାମ ଲକ୍ଷ୍ମଣ ଅମ୍ବୁଜ ବଦନ । ବୃଷାସନଙ୍କର ଯେହ୍ନୁ ବନ୍ଦନ ।
କହେ ଉପେନ୍ଦ୍ର ଭଞ୍ଜ ବୀରବର ତାଙ୍କ ପାଦେ ଦେଇ ମନ ହେ । ସୁଜନେ ।୨୯।

---

ପକାଇଲେ । ବିଷ୍ଣୁ ବଡ଼ ଆଦରରେ ତାଙ୍କ ଗୋଡ଼ ଆଉଁଷିଲେ । ଏବଂ ସେହିଦିନ ଠାରୁ ସେହି ପାଦର ଚିହ୍ନକୁ ହୃଦୟରେ ଧରିଛନ୍ତି । ସେଥିପାଇଁ ତାଙ୍କୁ ଶ୍ରୀବତ୍ସ ଲାଞ୍ଛନ କହନ୍ତି । ଏହା ପୁରାଣରେ ଅଛି ।

୨୮—ପତ୍ର ପଢ଼ି ତାର ଗାତ୍ର ( ଶରୀର ) ରେ ଅନୁରାଗର ଅଙ୍କୁର ( ଗଜା ) ପରି ରୋମାଞ୍ଚ ହୋଇ ( ରୋମ ଟାଙ୍କୁରି ଗଲା ); ଆନନ୍ଦ ଜନିତ ଅଶ୍ରୁ ( ଲୋତକ ) ରେ· ଅତି ଆନନ୍ଦରେ ମଧ୍ୟ ଲୁହ ବୋହି ପଡ଼େ । ଲୋତକ ରୂପକ ଜଳରେ ନିଜର କୁଚରୂପ ହର ( ମହାଦେବ )ଙ୍କୁ ଅଭିଷେକ କରାଇଲା । ଯୁବା ସଙ୍ଗ ରୂପ ବର ମାଗିବ କି—ଏହି ଉତ୍ପେକ୍ଷା ଅର୍ଥାତ୍ ଆନନ୍ଦରେ କାନ୍ଦି ପକାଇବାରୁ କୁଚରେ ଲୁହ ପଡ଼ିଲା । ଦ୍ୱିଜକୁ ନିଜର ମୋତିମାଳା ବଧେଇ ( ଉପହାର ) ଦେଲା । ବିଚାରିଲା ଏ ହାର ( ଏ ମୋତିମାଳ ) ବ୍ରହ୍ମଚାରୀ ପାଖରେ ଥିଲେ ମୋ ବିରହ ତାପ କୁମାର ଜାଣିବେ । କାରଣ ସେ ମାଳରେ ମୋତି ସବୁ ଫାଟି ଯାଇଥିଲା ।

୨୯—ରାମ ଲକ୍ଷ୍ମଣ ଦୁଇ ପକ୍ଷରେ ଅର୍ଥ ହେବ । ମାତ୍ର ଦୁହିଁଙ୍କର ଅମ୍ବୁଜ ବଦନ ଏବଂ ଦୁହେଁ ବୃଷାସନ ( ଶିବ ) ଙ୍କର ବନ୍ଦନ ଏପରି ଅର୍ଥ ହେଲେ ମଧ୍ୟ ଦୁଇଟି ଭିନ୍ନ ଅର୍ଥ କରିବା କବିଙ୍କର ଉଦ୍ଦେଶ୍ୟ । ସେଥିପାଇଁ ରାମପକ୍ଷ-ଯେଉଁ ରାମ ଲକ୍ଷ୍ମଣ ( ଲକ୍ଷଣ ବନ୍ତ ) ଅମ୍ବୁଜ ବଦନ ଇତ୍ୟାଦି ଉପର ପରି; ଲକ୍ଷ୍ମଣ ପକ୍ଷ—ଯେଉଁ ଲକ୍ଷଣ ଅମ୍ବୁଜ ରାମ ( ଚନ୍ଦ୍ରପରି ଆହ୍ଲାଦ କର ) ବୃଷାସନଙ୍କର ( ମୂଷିକ ଆସନ ଯାହାଙ୍କର—ଗଣେଶଙ୍କର ) ବଦନ ( ମୁଖ ) ସ୍ୱରୂପ ( ତାଙ୍କରି ପରି ପଣ୍ଡିତ ବିଜ୍ଞ ) ଓ ନିଷ୍ଠାପର; ବ୍ୟାସଙ୍କ ମହାଭାରତ ଲେଖିବାରେ ଗଣେଶଙ୍କ ସତ୍ୟରକ୍ଷା ଓ ନିଷ୍ଠା ପ୍ରସିଦ୍ଧ । ବନ୍ଦନ—ବନ୍ଦନୀୟ;

ବୃଷୋଧର୍ମୋ ବୃଷଃଶ୍ରେଷ୍ଠୋ ବୃଷୋରାଶୌ ମୂଷିକୋ ବୃଷଃ—ଇତି ଧ୍ୱନି ମଞ୍ଜରୀ ।

# ବଂଶ ଛାନ୍ଦ

## କୁମାରୀ ଉଦନ୍ତ

(ଲବଣ୍ୟ ବତୀର ଚଟାଉ ଘେନ ଶୁକ ଓ ବୃନ୍ଦୁଗରୀର ଚନ୍ଦ୍ରସେନ ନିକଟକୁ ଗମନ)

ରାଗ ଚିନ୍ତା ଭୈରବ । ଇଚ୍ଛାବତୀ ବାଣୀ ।

ଆଣି କାକତକୁ ନବବାଳୀ । ଅନୁରାଗ ନ ଲେଖିଲ୍ଲ କାଳୀ ।
କୁଙ୍କୁମେ ଲିଖିତ ବର୍ଣ୍ଣ ନିଜ ବର୍ଣ୍ଣ ଭଳି ଆଳୀଙ୍କ ନାମରେ ଛଳି ସେ । ସୁନ୍ଦରି । ୧ ।
ବିଭୋ ବୀରବର ଭୂପସ୍ତୁତ । ଗଣେଶ୍ୱର ସମାନ ପଣ୍ଡିତ ।
ଗୁଣରେ ନାହିଁତ ଅବନୀ ମଣ୍ଡଳେ ଏଣୁ ଗୁରୁ କରି ପ୍ରଶଂସିତ ହେ । ସୁନ୍ଦର । ୨ ।
ମହାମହ ମନୋରମ ଧାମ । ଆମ୍ଭେ ବୋଲୁଅଛୁଁ ଅନୁପମ ।
ହେମ ତୁଳେ ଗୁଞ୍ଜା ତୁଳିଲ୍ଲ ପରଯେ ଯାହା ଇଛା ବୋଇନ୍ତୁ ସେ କାମ ହେ । ସୁନ୍ଦର ।୩।

---

୧– ଅନୁରାଗ ହେତୁ କଳା କାଳୀରେ ଲେଖିଲ୍ଲ ନାହିଁ । [ କଳା । କାଳୀ ମଧ୍ୟ ଅଶୁଭ ] କୁଙ୍କୁମ ଲେଖା ବର୍ଣ୍ଣ ( ଅକ୍ଷର ) ନିଜର ଦେହ ବର୍ଣ୍ଣ ସଙ୍ଗେ ସମାନ । ସଖୀମାନେ ଯେପରି କି ଚିଠି ଲେଖୁଛନ୍ତି ସେହିପରି ଲେଖିଲ୍ଲି ।

୨– ବିଭୋ ବୀରବର ଇତ୍ୟାଦି ସମ୍ବୋଧନ କିମ୍ବା ଗୁରୁକରି–ବୃହସ୍ପତିଙ୍କ ଦ୍ୱାରା; କିମ୍ବା ହେ ବୀରବର ଭୂପସ୍ତୁତଗଣଙ୍କର ଈଶ୍ୱର ( ଶ୍ରେଷ୍ଠ ) ଗୁଣରେ ଅବନୀ ମଣ୍ଡଳରେ ତୁମପରି ସମାନ ( ମାନବନ୍ତ ) ପଣ୍ଡିତ ନ ଥିବାରୁ ତୁମେ ଗୁରୁକରି ( ବିଶେଷ କରି ) ପ୍ରଶଂସିତ ଅଟ ।

୩– ମହାମହ ( ତେଜ ) ଯାହାର ସେ ମହାମହ; 'ମହସ୍ତୁତ୍ସବ ତେଜସୋ–ଇତି ଅମରଃ' ଧାମ–ସ୍ଥାନ; ଆମ୍ଭେ ଯାହାଇଛା ତାହା କହନ୍ତୁ ବା ଉପମା ଦିଅନ୍ତୁ (କାମ ପରି, କାମ ବୋଲି କହନ୍ତୁ ) କିନ୍ତୁ ତୁମ ସାଙ୍ଗେ କାମର ତୁଳନା ଯେ ସେ ହେମ ( ସୁନା ) ସଙ୍ଗେ ଗୁଞ୍ଜା ( କାଇଁଚର ) ତୁଳନା ପରି; ସୁନାରୀ ବଣିଆ କାଇଁଚ ବଟକରରେ ସୁନା ତୁଳନ୍ତି ।

" କାମୋ ଭୀଷ୍ଟେ ମନ୍ମଥେଚ ତଥା ସର୍ବାଙ୍ଗ ସୁନ୍ଦରେ– । ଇତି ଶବ୍ଦମାଳା । "

ଦାତ୍ରା ପଣ କର୍ଣ୍ଣେ ଅଛୁ ଶୁଣି । ତହିଁକି ଲକ୍ଷ ଦେବାକୁ ପୁଣି ।
ଯାଚକ ମାନସ ଏ ରୂପେ ହରଷ ଏକା ଏହାର ହୋଉ ଧରଣୀ ହେ । ସୁନ୍ଦର । ୪ ।
ପଶୁବତ[୧] କରିବାରେ ଅରି । କରଗତ[୨]କୁ ଅଛ ବିସ୍ତାରି ।
ଦୟାଳୁ ପଣତ ନୁହଇ କଥିତ ତୁମ୍ଭେ କେଡ଼େ ପର ଉପକାରୀ ହେ । ସୁନ୍ଦର । ୫ ।
ଯାହା ରତନ କୋଷ ସଞ୍ଚିତ । ସଦା ଅତୁଟ ସମୁଦ୍ରବତ ।
ଏହି କଥାସିନା ବିଚିତ୍ର ମଣିଲୁଁ ସେହି ଗ୍ରେରଇ ନେଇ କି ଚିତ୍ତ ହେ । ସୁନ୍ଦର । ୬ ।
ସ୍ୱପ୍ନେ ଦେଖା ଦେଲ ଯଉଁ ନିଶା । ହୋଇଥିଲ ସେ ଦିନ ସୁଦଶା ।
ଜଳକଜଣ ଚନ୍ଦ୍ରବିମ୍ବ ଧରିବା ପାଇଁ ଯେଣୁ କରିଥିଲ ଆଶା ହେ । ସୁନ୍ଦର । ୭ ।
ଏବେ ଦଇବେ ହେଲା ସେ ସତ । କେହି ନୋହିବ ପୁଣ ଲୋଭିତ ।
ଜୀବ ନଯିବ ପାଇଲେ ନ ପାଇଲେ ଏହି ବାଣୀ ହୋଇବ ବିଦିତ ହେ । ସୁନ୍ଦର । ୮ ।
ଯାର ପହଣ୍ଡକ ଶତେ କୋଶ । ତାର ମେରୁ ଲଙ୍ଘିବାକୁ ଆଶ ।
ଜଳେ ସଗରସୁତ ପ୍ରାୟେ ସଜୀବେ ତାପାନଳ କ୍ଳେଶ ନୋହେ ନାଶ ହେ । ସୁନ୍ଦର ।୯।

---

ପାଠାନ୍ତର—୧, ପୂର୍ଣ୍ଣିବଧ । ୨, ଯଶକୁ ।

---

୪— କର୍ଣ୍ଣେ—କାନରେ, କର୍ଣ୍ଣରଜାଠାରେ; ଯାହା ଶୁଣିଛୁ ତହିଁ ( ସେଥିରେ ) କି ଲକ୍ଷ ଦେବୁ ? କିଛି ତୁଳନା ନାହିଁ—ଏହି ଅଭିପ୍ରାୟ । ଅଥବା ତହିଁ ( କର୍ଣ୍ଣଠାରେ ) ଲକ୍ଷ ଦେଇ ପାରିବୁ କି ? ନା, ଏହି ଅଭିପ୍ରାୟ । ଧରଣୀ ( ସମସ୍ତ ପୃଥିବୀ ) ଏହାର ଏକା ହେଲେ ଦାନ ନେବାକୁ ଅର୍ଣ୍ଣବ ।

୫— ପଶୁଗତ କରିବାରେ ଅରି—ପଶୁକୁ ହାତଗତ କରି ପୋଷିଲା ପରି ଶତ୍ରୁକୁ ଅଧୀନ କରି ରକ୍ଷା କର । ଏଣୁ ଦୟାଳୁ ଓ ପରୋପକାରୀ ।

୬— କୋଷ—ଭଣ୍ଡାର; ଅତୁଟ—ଅସରନ୍ତି; ଏଡ଼େ ଧନୀଲୋକ କେମା ଚିତ୍ତକୁ ଗ୍ରେରି କରିବା ବିଚିତ୍ର ମଣିଲୁଁ ।

୭–୮—ପାଣି ମାଠିଆ ଚନ୍ଦ୍ର ବିମ୍ବଟାକୁ ଧରି ରଖିବ ବୋଲି ବିଗ୍ଭରି ଥିଲ । ଏବେ ଦଇବକୁ ସେ ଆଶା ସତ ହେଲା । କେହି ( କିପରି ) ବା ଧରି ରଖିବାକୁ ଲୋଭ ନ କରନ୍ତା । ପାଇଲେ ଜୀବ ( ପ୍ରାଣ )ନ ଯିବ ନ ପାଇଲେ ଜୀବନ ( ପ୍ରାଣ ) ଯିବ—ଏହି ଶ୍ଳେଷ ।

୯–୧୦—ସଗରଙ୍କର ଷାଠିଏ ସହସ୍ର ପୁଅ ସଜୀବେ ( ଜୀଇଁ ଥାଇଁ ) ନିଆଁରେ ଜଳୁ-ଥିଲେ । ସୂର୍ଯ୍ୟବଂଶର ସଗର ଅଶ୍ୱମେଧ କରିବାରୁ ଇନ୍ଦ୍ର ଭୟକରି ତାଙ୍କ ଘୋଡ଼ା

ହରି ହର ସୁପ୍ରସନ୍ନ ଥିବ । ମାର ପୁରନ୍ଦର କରୀ ହେବ ।
ଭାଗ୍ୟ ଭଗୀରଥ ହୋଇ ଯେବେ ତବ ସ୍ନେହ–ଗଙ୍ଗାଜଳ ମଜ୍ଜାଇବ ହେ । ସୁନ୍ଦର । ୧୦ ।
ଭବେ ମହୀ ଅନାଇ ଯାହାକୁ । ଏକା ବର କରିବି ଏହାକୁ ।
ତୋତେ ସେ କେମନ୍ତ ରସିବ ବୋଇଲେ ବାଳା ନ ଛାଡ଼ିଲା ଉସାହକୁ ହେ । ସୁନ୍ଦର ।୧୧।
ଛଳେ ସେ ଦୟା ସଲିଳ ରାଶି । ନ କରିବେ ମୋତେ ନିଜ ଦାସୀ ।
ଘେନାଇ କହିବା କଥା ଏ ନୋହଇ ଘେନ ତୁମ୍ଭକୁ କେମନ୍ତ ଦିଶି ହେ । ସୁନ୍ଦର । ୧୨ ।
ଦୂତ ସଙ୍ଗେ ଅଇଲେ ଦେଖିବ । କଥା ଯଥାର୍ଥ କେ ବା ଲେଖିବ ।
କୁଶ କଟୀ ଆପେ ପାଛୋଟି ଯିବାର ବିଧି ସ୍ତ୍ରୀ କରିଛି ଦଇବ ହେ । ସୁନ୍ଦର । ୧୩ ।

---

ପାଠାନ୍ତର—ଆପେ, ଆପେ

ଶ୍ରେଷ୍ଠ ନେଇ ପାତାଳରେ କପିଳ ମୁନିଙ୍କ ଆଶ୍ରମରେ ବାନ୍ଧି ଦେଲେ । ସଗରଙ୍କ ଷାଠିଏ ସହସ୍ର ପୁଅ ଘୋଡ଼ା ଖୋଜି, ପାଇ କପିଳ ମୁନିଙ୍କୁ ଚୋର ବୋଲି ଅପମାନ ଦେବାରୁ କପିଳ ରାଗରେ ଚାହିଁଲେ । ତାଙ୍କ ଆଖିରୁ ନିଆଁ ବାହାରି ସଗରଙ୍କର ଷାଠିଏ ସହସ୍ର ପୁଅଙ୍କୁ ଜାଳିଦେଲା । ସେହି ଜ୍ୱାଳାରୁ ପିତୃ ପୁରୁଷ ମାନଙ୍କୁ ଶାନ୍ତ କରିବା ପାଇଁ ସଗରଙ୍କ ଅଣନାତି ଭଗୀରଥ ବହୁ ତପସ୍ୟାରେ ହରି ( ବିଷ୍ଣୁ ) ଙ୍କ ପାଦରୁ ଗଙ୍ଗାକୁ ଆଣିଲେ । ଗଙ୍ଗା ମର୍ତ୍ତ୍ୟକୁ ଓହ୍ଲାଇଲା ବେଳେ ପ୍ରଥମେ ହର ( ମହାଦେବ ) ଙ୍କ ମୁଣ୍ଡରେ ପଡ଼ିଲେ । ତହୁଁ ପର୍ବତ ଅଟକାଇବାରୁ ପୁରନ୍ଦର କରୀ ( ଇନ୍ଦ୍ର ହାତୀ, ଐରାବତ ) ଆସି ଦାନ୍ତରେ ପର୍ବତ ଫଟାଇ ପାତାଳକୁ ବାଟ କରି ଦେଇଥିଲା । ଗଙ୍ଗା ଯାଇ ପାତାଳରେ ଜୀଅନ୍ତାରେ ଜଳି ଯାଇଥିବା ସଗର ପୁତ୍ର ମାନଙ୍କର ଜ୍ୱାଳା ଶାନ୍ତ କରିଥିଲେ । –ଏହି ପୌରାଣିକ ପ୍ରବାଦ ସଙ୍ଗେ ଏଠାରେ ଉପମା । ଏଠାରେ ମାର ( କନ୍ଦର୍ପ ) ଐରାବତ ହେବ । ଭାଗ୍ୟ ( ଭଗୀରଥ ) ହେବ । ସ୍ନେହ, ଗଙ୍ଗାଜଳ ହେବ ।

୧୧– ଭବେ–( କେମା ) ବିଚାରୁଛି ତୋତେ ଇତ୍ୟାଦି–ତୁ ତ ତାର ଉପଯୁକ୍ତ ନୋହୁ ଏହା କହିଲେ ମାନୁ ନାହିଁ ।

୧୨–ଛଳେ–(କେମା) କହୁଛି, ସଲିଳ ରାଶି–ସମୁଦ୍ର;

୧୩–ଦୂତ–ଏହି ପତ୍ର ବାହକ; କେମା ପାଛୋଟି ଯିବା ବିଧି ହେଲେ ମଧ୍ୟ ସ୍ତ୍ରୀ ହେବାରୁ ଯାଇ ପାରୁ ନାହିଁ । –ଯାହାକୁ ନିମନ୍ତ୍ରଣ କରଯାଏ ସେ ଆସିଲା ବେଳେ ଘରୁଯାଇ ଖଣ୍ଡ ଦୂର ଠାରୁ ତାକୁ ଭେଟି ସାଙ୍ଗରେ ଘେନି ଆସିବାକୁ ହୁଏ । ଏହାକୁ 'ପାଛୋଟି ଆଣିବା' କହନ୍ତି । ସେହିପରି ବିଦାୟ ଦେଲା ବେଳେ ସାଙ୍ଗରେ ଖଣ୍ଡେ ଦୂର ଯାଇ ଛାଡ଼ି ଦେଇ ଆସିବାକୁ ହୁଏ । ତାକୁ 'ପାଛୋଟି ଯିବା' କହନ୍ତି । ଏହା ଶିଷ୍ଟାଚାରର

ଫୁଲ ଭୃଙ୍ଗର ଭୃଙ୍ଗ ଫୁଲର । ଫୁଲ କରଇ କି[୪] ଅଭିସାର ।
କରି[୫] ପ୍ରତିନିଧି ମନକୁ ପେଷିଛି ତାହା ସଙ୍ଗେ ଏବେ ବିଜେ କର ହେ । ସୁନ୍ଦର । ୧୪ ।
ଯେବେ ନାହିଁ ଏତେ ଅନୁଗ୍ରହ । ଜେମା ନେଲେ ଲିପଁ। କଇ ଗୃହ ।
ତୁମ୍ଭ ପୁର ତ ଅଳକାରୁ ଅଧିକ ତହୁଁ ରମ୍ୟ ହେଲା କିଏ କହ ହେ । ସୁନ୍ଦର । ୧୫ ।
ହୃଦ ବନେ ଥିଲା ମନ ମୃଗ । ତହିଁ ବିରହ ଅନଳ ବେଗ[୬] ।
ପଳାଇ ତୁମ୍ଭ ଶୋଭା ବନେ ପଶିଲା ତହିଁ ନାହିଁ ପର ଏ ଉଦ୍‌ବେଗ ହେ ସୁନ୍ଦର । ୧୬ ।
ପ୍ରଭେ ବିଚାର କରିବ ମନ । ସୁର ଶରର ଏହି ବିଧାନ ।
ପ୍ରକଟି କୁଝ୍‌ଟି, ତପନକୁ ଘୋଟି ନାଶ କରି ଦେଇ ପଦ୍ମ ବନ ହେ । ସୁନ୍ଦର । ୧୭ ।
ଗର ପର ସେ ଜନକୁ ମାରେ । ଈଶାନକୁ ମାତ୍ର କ୍ଷମା କରେ ।
ତୁମ୍ଭେ ବଳବନ୍ତ ଅବଳା କୋମଳା ଆମ୍ଭ ପ୍ରାଣ ସଜନୀ ବେଭରେ ହେ । ସୁନ୍ଦର । ୧୮ ।
ରମା ତୁମ୍ଭ ସ୍ନେହୀ ହେଲା ଠାରେ । ବିରହ ଯେ ଅଙ୍ଗ ଭୋଗ କରେ ।
ଏ ଉଣା କାହାକୁ ହେବ ମନେ ମନେ ବସି ବିଚାର କରିବ ଥରେ ହେ । ସୁନ୍ଦର । ୧୯ ।

ପାଠାନ୍ତର—୪, ଭୃଙ୍ଗ କରେ ସିନା । ୫, ପ୍ରଭୁ । ୬, ବିରହାନଳ ସଂଯୋଗ ।

ବିଧି । ଏଠାରେ ପାଛୋଟି ଆଣିବା ଅର୍ଥରେ ପାଛୋଟି ଯିବା ଲେଖା ହେବାର ମିଳୁଛି । ହୁଏତ 'ଯିବାର' ସ୍ଥଳରେ 'ଆଣିବା' ମୂଳ ପାଠ ଥାଇପାରେ । ଲିପିକାର ଦୋଷରେ ଯିବାର ହୋଇଅଛି ।

୧୪—ଅଭିସାର—ନିର୍ଦ୍ଦିଷ୍ଟ ସଙ୍କେତ ସ୍ଥାନକୁ ଯିବା; ବିବାହିତା ସ୍ତ୍ରୀ ପକ୍ଷରେ ଏହା ନିଷିଦ୍ଧ । ଅଭିସାରିକା—ଯେଉଁ ସ୍ତ୍ରୀ ମାନେ ସଙ୍କେତ ସ୍ଥାନକୁ ଯାନ୍ତି, ସେମାନେ କୁଳସ୍ତ୍ରୀ ମଧ୍ୟରେ ଗଣା ଯାନ୍ତି ନାହିଁ 'କାନ୍ତାର୍ଥିନୀ ତୁ ଯା ଯାତି ସଙ୍କେତଂ ସାଭିସାରିକା' ସେହି ସଙ୍କେତ ସ୍ଥାନ ସାହିତ୍ୟ ଦର୍ପଣରେ ଆଠୋଟି ଯଥା—କ୍ଷେତ୍ରଂ ବାଟୀ ଭଗ୍ନ ଦେବାଳୟୋ ଦୂତୀ ଗୃହଂ ବନଂ ମାଳା ପଠଚ ଶ୍ମଶାନଂଚ ନଦ୍ୟାଦିନାଂ ତଟୀ ତଥା ।

୧୫—ଅଳକା—ଇନ୍ଦ୍ରଭୁବନ;

୧୬—ବଣ ପୋଡ଼ିଗଲେ ମୃଗ ଆଶ୍ରୟ ନିମନ୍ତେ ଅନ୍ୟ ବନକୁ ପଳାଇବାର । ରୂପକ

୧୭—କୁଜ୍‌ଝ୍‌ଟି—କୁହୁଡ଼ି; ତପନ—ଖର; ସେଥିରେ ଜ୍ଞାନ ନାଶ ହୁଏ ଓ ପଦ୍ମିନୀ (ଫୁଲି ଓ ସ୍ତ୍ରୀ) ନଷ୍ଟହୁଏ ।

୧୮—ଗର—ବିଷ; ଈଶାନ—ମହାଦେବ; ତୁମ୍ଭେ ସମ୍ଭାଳି ଯାଇପାର;

୧୯—ବିରହ (ବିରହ ରୂପକ ଅନ୍ୟ ପୁରୁଷ) ଅଙ୍ଗ ଭୋଗ କରେ—ଏହି ଇଙ୍ଗିତ ବାଚ୍ୟକୁ ଅଛି । ଉଣା—ଲଘବ, ମାନହାନୀ;

ଜାତି ପଦ୍ମିନୀ ହାସକୁ ଗୃହି । ନିତି ମହାତ୍ରାସ ପାଉଥାଇ ।
ଚନ୍ଦ୍ର ସେ ହିଂସାରେ ସାନ୍ଦ୍ର ହୋଇ ଏବେ ଚନ୍ଦ୍ର ତନୁକୁ ଦେଉଛି ଦହି ହେ । ସୁନ୍ଦର । ୨୦ ।

ଜାଣ ପରା ଇନ୍ଦ୍ରଜାଲ ମାୟା । ସବୁ ଦିଗେ ଦେଖାଉଛ କାୟା ।
ମାୟାକରି ମୋହିବାକୁ ତୁମ୍ଭଠାରେ ବାଞ୍ଛା ହୋଇ ନାହିଁକି ବିନୟା ହେ । ସୁନ୍ଦର । ୨୧ ।

କେତେ କୁସୁମ ଜଗତେ ନାହିଁ । ଛବି କର ନ ପାରଇ ସହି ।
ଜଳେ ସେଫାଳିକା ଏ ବନ ବାଳିକା ତଥା ବେଦନା ସହି ନୁହଇ ହେ । ସୁନ୍ଦର । ୨୨ ।

ତୁମ୍ଭ କୀର୍ତ୍ତି ଚନ୍ଦ୍ରମା ଉଦିତ । କଲ କୁଳ କୁମୁଦ ମୋଦିତ ।
ତାତ ସିନ୍ଧୁମାତା ଚକୋରୀ ଉଲ୍ଲାସି କରେ ମଣ୍ଡିତ କଲ ଜଗତ ହେ ସୁନ୍ଦର । ୨୩ ।

ନୃପ ସୁତ ତାର ମଧ୍ୟେ ଶୋହି । ପର ତସ୍କରକୁ ଭୟ ଦେଇ ।
ଆମ୍ଭ ସଜନୀ ରଜନୀ ଠାରୁ କାମ ତମ ନ ଖଣ୍ଡିଲ କାହିଁ ପାଇଁ ହେ । ସୁନ୍ଦର । ୨୪ ।

---

୨୦—ଆମ ଜେମା ଜାତିରେ ପଦ୍ମିନୀ (ପଦ୍ମିନୀ ସ୍ତ୍ରୀ, ଏବଂପଦ୍ମ ବା ପଦ୍ମ ବୁଦା) ରତି ମଞ୍ଜରୀରେ ପଦ୍ମିନୀ ସ୍ତ୍ରୀ ଲକ୍ଷଣ ଯଥା—ଭବତି କମଳ ନେତ୍ରା ନାସିକା କ୍ଷୁଦ୍ର ରନ୍ଧ୍ରା ଅବିରଳ କୁଚ ଯୁଗ୍ମା ସ୍ନିଗ୍ଧକେଶୀ କୃଶାଙ୍ଗୀ ମୃଦୁ ବଚନ ସୁଶୀଳ ଗୀତ ବାଦ୍ୟାନୁରକ୍ତା ସକଳ ତନୁ ସୁବେଶା ପଦ୍ମିନୀ ପଦ୍ମଗନ୍ଧା । ସଖୀର ହସକୁ ଗୃହି ଚନ୍ଦ୍ର ନିଜେ ଅସୁନ୍ଦର ବୋଲି ଡ଼ରୁଥାଏ କିମ୍ବା ପଦ୍ମ ଫୁଟିଲେ ଚନ୍ଦ୍ରର ଭୟ ହୁଏ—ଏହି ଶ୍ଳେଷ; ଏଣୁ ସାନ୍ଦ୍ର (ପ୍ରଚଣ୍ଡ) ହୋଇ ଚନ୍ଦ୍ର (ସୁନା) ତନୁକୁ ପୋଡୁଛି । ସୁନା ପୋଡ଼ିଲେ ବେଶି ଉଜ୍ଜ୍ୱଳ ହୁଏ । ସେହିପରି ବିରହରେ ଜେମାଁ—ଏହି ଗୂଢ଼ାର୍ଥ ମଧ୍ୟ ଅଛି ।

୨୧—ମୋହିବାକୁ (ନିଷେଧାର୍ଥେ ଚତୁର୍ଥୀ)— ନ ମୋହିବାକୁ

୨୨—ଶେଫାଳିକା—(ଗଙ୍ଗ ଶିଉଳୀ ବା ଦର୍ଶ ପୋଢଳା ଫୁଲ) ଖର ବାଜିଲ ମାତ୍ରେ ଝଡ଼ିପଡ଼େ ।

୨୩—୨୪—ତୁମ୍ଭ କୀର୍ତ୍ତି ଚନ୍ଦ୍ରପରି; କୁଳ—(ବଂଶ) କୁମୁଦ ପରି ହସୁଛି; ତାତ (ପିତା) ସିନ୍ଧୁ ପରି ଫୁଲି ଉଠୁଛନ୍ତି । ମାତା ଚକୋରୀ ପରି ତୃପ୍ତ ହେଉଛନ୍ତି । ଜଗତ ମଣ୍ଡିତ କଲ; ଅନ୍ୟ ନୃପସୁତମାନେ ତୁମ୍ଭ କୀର୍ତ୍ତିପାଖେ ତାରା ପରି; ପର (ଶତ୍ରୁ) ଚୋର ପରି ହେଇ—ସେ ଡ଼ରୁଛି; ଚୋର ଜହ୍ନକୁ ଡ଼ରେ ବୋଲି ପ୍ରସିଦ୍ଧ । କଥାରେ କହନ୍ତି ଚୌର ନିନ୍ଦନ୍ତି ଚନ୍ଦ୍ରମା । ] କାମ ରୂପ ତମରେ (ଅନ୍ଧାରରେ) ଏକା ଆମରି ଜେମା ଗଡି ପରି ପଡ଼ିଛନ୍ତି ।

ଯନ୍ତ୍ର ଭଜିଲେ ମିହିର ମଣି । ଯଥା ଅଗ୍ନି କାଚ କରେ ପୁଣି ।
ତୁମ୍ଭଙ୍କୁ ପ୍ରୀତିରେ ଭଜି ମହାବ୍ୟଥା ତଥା ପାଉଛି ରମଣୀ ମଣି ହେ । ସୁନ୍ଦର । ୨୫ ।
ଆମ୍ଭ ସଖୀ ଅଟି ସ୍ନେହାଧୀନ । ଛାଡ଼ିବକି ହେଲେ ହୀନମାନ ।
ଅନଳେ ଦହିଲେ ତା ସୁବାସ କିକି କେବେ ଛାଡ଼ଇ ଚନ୍ଦ୍ର ଚନ୍ଦନ ହେ । ସୁନ୍ଦର । ୨୬ ।
ମନେ କରିଅଛି ପଙ୍କଜାକ୍ଷୀ[*] ମନ୍ତ ପ୍ରୀତିରେ କପୋତ ପକ୍ଷୀ ।
ଧନ୍ୟ ଶବଦ ତ ସେ ରୂପେ ରହିବ ଆଜ[*] ସ୍ନେହୀରେ ତାହାକୁ ଲେଖ ହେ । ସୁନ୍ଦର । ୨୭ ।
ମହା ଶଙ୍କା ହେଏ ଏହା ଭାବି । ବୀର ପଣେ ବର୍ଣ୍ଣିଛନ୍ତି କବି ।
ଅତି କଠିନ ଉରସ୍ଥଳେ ବାଜିଲେ ସବୁ ରୂପେ ହତ ହୁଏ ପବି ହେ । ସୁନ୍ଦର । ୨୮ ।
ନାରୀ ବୋଧେ ଏହା ଶୁଣିକରି । ହୋଇଥିବ ନାରୀକେଳ ପରି ।
ଦୟାଶୀଳ ନାମ ହୋଇଲେ କାହିଁକି ହୃଦେ ଅଛି ଘନରସ ପୂରି ହେ । ସୁନ୍ଦର । ୨୯ ।
ଚନ୍ଦ୍ର ମାର ଅଶ୍ୱିନୀ କୁମାର । ଏମାନେ ଯେ ପରମ ସୁନ୍ଦର ।
ଏକ ମୂର୍ତ୍ତି ହୋଇ କ୍ଷିତିରେ ଉପତି ବୋଲି ପ୍ରଶଂସା ଖ୍ୟାତ ତୁମ୍ଭର ହେ । ସୁନ୍ଦର । ୩୦ ।

---

[*] ପାଠାନ୍ତର—୬, ଚଞ୍ଚଳାକ୍ଷୀ । ୮, ଅଙ୍ଗ ।

---

୨୫—ଭନୁ—(ଖଗରେ) ମିହିରି ମଣି (ସୂର୍ଯ୍ୟକାନ୍ତ ମଣି)ରୁ ଅଗ୍ନି ବାହାରେ । ସମ୍ଭବତଃ ମିହିର ମଣି ଏକ ପ୍ରକାର ସ୍ଫଟିକ ସ୍ୱଚ୍ଛ ପଦାର୍ଥ ବା କାଚ ।

୨୬—ଚନ୍ଦ୍ର—କର୍ପୂର;

୨୭—କପୋତୀ ଜାଲରେ ପଡ଼ି ଯିବାରୁ କପୋତ ଆପେ ସେହି ଜାଲକୁ ଡ଼େଇଁ ପଡ଼ିଲା । [ଭାଗବତ ୧୧ ସ୍କନ୍ଧ ଅବଧୂତ ଶିକ୍ଷାରେ କପୋତ ଉପାଖ୍ୟାନ ଦେଖ । ]

୨୮—୨୯—ତୁମେ ବୀର ବୋଲି କବିମାନେ ବର୍ଣ୍ଣିଛନ୍ତି । ହେଲେହେଁ ତୋମାର ଅତି କଠିନ ଉରସ୍ଥଳେ (ସ୍ତନରେ) ବାଜିଲେ ପବି (ବଜ୍ର) ମଧ୍ୟ ନିଜେ ନଷ୍ଟ ହୁଏ । [ ସ୍ତନର ଏହିପରି କଠିନତା ବର୍ଣ୍ଣନା ପ୍ରସସ୍ତ । ]
କିନ୍ତୁ ସ୍ତନ ନାରିକେଳ (ନଡ଼ିଆ) ପରି ରସ ପୂର୍ଣ୍ଣ ହୋଇଥିବ ବୋଲି ଶୁଣି ନାରୀ ବୋଧ (ସନ୍ତୁଷ୍ଟ) । ତାହା ନ ହେଲେ ଦୟାଶୀଳ ବୋଲି (୧. ଦୟାଯୁକ୍ତ ୨. ଦୟା ପଥର) ନାମ କାହିଁକି ହୁଅନ୍ତା ଏବଂ ହୃଦୟରେ ଘନରସ (୧. ଜଳ, ୨. ଶୃଙ୍ଗାର) ପୂରିଛି ବୋଲି କାହିଁକି କୁହାଯାନ୍ତା ।

୩୦—୩୧—ଚନ୍ଦ୍ର, ମାର ( କନ୍ଦର୍ପ ) ଅଶ୍ୱିନୀ କୁମାର ( ସ୍ୱର୍ଗ ବୈଦ୍ୟ ) ସେମାନେ ଅତି ସୁନ୍ଦର ବୋଲି ଖ୍ୟାତ । ଏ ସମସ୍ତେ ମିଶି ତୁମେ ଏକ ମୂର୍ତ୍ତି ହୋଇଛ ।

ଶୋଭ ଗ୍ରହି ଶିଳା ଦ୍ରବୀଭୂତ । କର ଉଛନ୍ନ ଯୁବତୀ ଚିତ୍ତ ।
ନୃପ ନନ୍ଦିନୀର ବ୍ୟାଧି ନାଶ କଲେ ଆମ୍ଭେ ଜାଣିମୁଁ ଏ କଥା ସତ ହେ ! ସୁନ୍ଦର ! ୩୧ ।
ଯେହୁ ଗୁଣ ବିଶ୍ରାମ ମଣ୍ଡପ । ସ୍ତୁତି କାହିଁ ତାକୁ ଅନୁରୂପ ।
ଆମ୍ଭ ସଖୀ ଯା ତୁମ୍ଭର ବୋଲଇବ କଉଁ କାଳେ କରିଥିଲ ତପ ହେ ! ସୁନ୍ଦର । ୩୨ ।
ଆଉ ଅଧିକ ଜଣାଣ କିସ । କ୍ଷମା କରିବ ଜଣାଣ ଦୋଷ ।
କମ୍ପ ମୋହ ସ୍ତମ୍ଭ ପ୍ରତିବନ୍ଧ ଘେନି ଲେଖି ନ ପାରିଲ ରମା ଇଷ ହେ ! ସୁନ୍ଦର । ୩୩ ।
ଶିବ ରାତ୍ରି ନାମରେ ଉତ୍ସବ । ରାମେଶ୍ୱର ଦେବଠାରେ ହେବ ।
ଯେବେ କରୁଣା ଅଂଶୁଣାଧରୀ ଠାରେ ଥିବ ସେଠାକୁ ବିଜେ କରିବ ହେ ! ସୁନ୍ଦର ।୩୪।
ପଡ଼େ ପତଙ୍ଗ ସେନେହ ଧରି । ଯଥା ଅନଳ ତାହାକୁ ମାରି ।
ବିଜେ ନ କଲେ ଏ ପୀରତି କୀରତି ଲୋକେ ଖ୍ୟାତ ହେବ ସେହିପରି ହେ ! ସୁନ୍ଦର । ୩୫ ।
ଲେଖି ଏ ରୂପେ ପତ୍ରିକା ବାଳା । ମନ୍ତ୍ରୀ ନନ୍ଦନା ହସ୍ତରେ ଦେଲା ।
ପାଠ କରି ଘେନି ରସ ଗର୍ଭ ଭଷା ଅତି ତୃପତି ହୋଇ ମୁଦିଲା ସେ । ସୁନ୍ଦରି । ୩୬ ।
କରି ବନ୍ଧନ ରୁଚିର ଚୀରେ । ଜତୁ ଦେଲା ଯତନେ ଉପରେ ।
ଦୁର୍ଗା ମାଧବ ସୁମରି ବ୍ରହ୍ମଗ୍ରୀ କରେ ଦେଲା ଅତି ହରଷରେ ସେ । ସୁନ୍ଦରି । ୩୭ ।
କୀର ସହିତେ ଦ୍ୱିଜର ଆଗେ । ସଖୀମାନେ କହିଲେ ସରାଗେ ।
ବେଗେ ଆଗମନ ନକଲେଁ କୁମାର ରମା ହେଲାଟି ଶମନ ଭୋଗ ହେ ! ସୁନ୍ଦର । ୩୮ ।

---

ପାଠାନ୍ତର—୧, ଗମନ ନ କଲେ ସେ

---

ଚନ୍ଦ୍ର ଚନ୍ଦ୍ର କାନ୍ତ ମଣିକି ପାଣି କରିଦିଏ । ସେହିପରି ତମ ଶୋଭକୁ ଦେଖି ପଥର ବି ଘବରେ ପାଣି ହୋଇ ଯାଉଛି । କାମ ପରି ଯୁବତୀ ଚିତ୍ତ ମଧ୍ୟ ଉଛନ୍ନ କରୁଛ । ହେମାର ବିରହ ବ୍ୟାଧି ନାଶ କଲେ ସତରେ ଅର୍ଦ୍ଧିନୀ କୁମାର ବୋଲି ମଧ୍ୟ ଜାଣିବୁ ।

୩୩—କାହିଁକି ହେମା ନିଜେ ଲେଖି ନ ପାରିଲା ତାହାର କାରଣ—କମ୍ପ, ମୋହ, ସ୍ତମ୍ଭ ପ୍ରଭୃତି ହେମାର ସାତ୍ତ୍ୱିକ ଗୁଣମାନେ । [୧୯ ଛାନ୍ଦ ୨୦ ପଦ ଟୀକା ଦେଖ]
ପ୍ରତିବନ୍ଧ—ବାଧା ।

୩୬—ମୁଦିଲା—କାମକଲା ଚିଠି ବନ୍ଦ କଲା;

୩୭—ଚୀର—କନା;—ଜତୁ—ଜଉ, ଲାଖ, ଚିଠି ବନ୍ଦ କରିବାର ପ୍ରଣାଳୀ—ଏହା ।
୩୮—ଶମନ—ଯମ;

ଯେନେ ଘେନିଣ ଅମୂଲ୍ୟ ମୁଦ । ଦୁଇ ଦ୍ୱିଜ ହୋଇଲେ ପ୍ରମୋଦ ।
ମେଲଣି ହୋଇ ସାଧୁତକୁ କହିଣ କରି ହରିଙ୍କି ମଙ୍ଗଳ ପ୍ରଦ ହେ ! ସୁଜନେ । ୩୯ ।

ଘେନି କାଞ୍ଚି ଶୋଭିନୀ ଉଦନ୍ତ । କାଞ୍ଚୀପୁରେ ଗମନ ତ୍ୱରିତ ।
ଉପଇନ୍ଦ୍ର ବୀରବର ଚିତ୍ତ-ଭୃଙ୍ଗ ରମ ପାଦ ପଦ୍ମରେ ରମିତ ହେ ! ସୁଜନେ । ୪୦ ।

---

୩୯—ଦୁଇ ଦ୍ୱିଜ—ଶୁଆ ଓ ବୃହନ୍ନଳା; ଅଣ୍ଡଜ (ଡ଼ିମ୍ବରୁ ଜାତ ଜନ୍ତୁ, ଏବଂ ଦାନ୍ତକୁ ମଧ୍ୟ ଦ୍ୱିଜ କୁହାଯାଏ । ) କରି ହରିଙ୍କି ମଙ୍ଗଳପ୍ରଦ—ବିଷ୍ଣୁଙ୍କୁ ଅନୁକୂଳ ଭୋଗ ଦେଇ ।

୪୦—କାଞ୍ଚି ଶୋଭିନୀ—ଘଣ୍ଟିଯୁକ୍ତ ଚନ୍ଦ୍ରହାର ( ମେଖଳା ଅଣ୍ଟାସୂତା ) ରେ ଯେ ଶୋଭା ପାଏ । ଉଦନ୍ତ—ଖବର;



# ଏକଷଷ୍ଟିଂଶ ଛାନ୍ଦ

## ବେଶ ପ୍ରଶଂସା

(ଚନ୍ଦ୍ରଭାନୁର ବରଷା ଓ ବର୍ଷା ବର୍ଣ୍ଣନ ଶତାଉ ପଠନାନନ୍ତର
ରାମେଶ୍ୱର ଗମନ ବର୍ଣ୍ଣନ
( ରାଗ ଭୈରବ )

ଏଥୁଅନ୍ତେ ଦେଖେ ବୀର ହୋଇଲା ବରଷା । ବିସ୍ମର କରଇ ଥିଲା ଏମନ୍ତ ଭରସା । ୧ ।
ରସାଳସା ସଙ୍ଗ ହେଲା ଉଭାନ୍ତ ହୋଇବ । କେତେ ବେଗେ ଏ ଋତୁକୁ କାଳ ଦୁର୍ଦ୍ଦଇବ । ୨ ।
ବୃଦ୍ଧି ହେଲା ନଦୀମାନ ଲୋକନ କରିବେ । କୋଳ ଅବଲମ୍ବ କରି ପଥିକେ ତରିବେ । ୩ ।
କୋଳ ଅବଲମ୍ବ ନାହିଁ କାମ ନଦୀ ° କେହି । ତରିବି କୋଳ ସ୍ୱରୂପୀ କି ଅଛନ୍ତି ବିହି । ୪ ।
ସୁମନା ଚୁମ୍ବନେ ଭୃଙ୍ଗ ହେବେ ତୋଷମନ । ଥାଉ ସୁମନା ଚୁମ୍ବନ ନାହିଁ ଦରଶନ । ୫ ।
ଘନରସ ଯୋଗେ ବନ ଦାବାନଳ ଲିଭେ । ଘନରସ ଯୋଗ ନାହିଁ କି କରିବି ଏବେ ୬।
ହୃଦବନ କାମାନଳ କେହି ହେବ ଶାନ୍ତି । ମୋର କର୍ମ ଘେନି ହୁଏ ଅପୂରବ ଗତି । ୭ ।
ନ ଲିବଇ ଅଧିକେ ଜଳିବ ଏବେ ଘେନ । ଶିଖୀ ନାମ ଦେଇଛି ଯେ କେକୀକି ସେ ଧନ୍ୟ । ୮ ।

---

ପାଠାନ୍ତର—୧, ସିନ୍ଧୁ ।

---

୧—ବରଷା—ବର୍ଷାକାଳ;

୨—ରସାଳସା—ମଦାଳସା;

୩—ବୃଦ୍ଧ —ବର୍ଦ୍ଧି; ଲୋକନ କରିବେ—ଦେଖିବେ; କୋଲ୍ଲ—ଭେଳା; ଉଡୁପନ୍ତୁ ପ୍ଲବଃ କୋଳଃ—ଇତ୍ୟମରଃ; ଅବଲମ୍ବ—ଆଶ୍ରୟ;

୪—କୋଳ—କ୍ରୋଡ଼ ଅବଲମ୍ବ—ଏଠାରେ ଆଲିଙ୍ଗନ; କେହି—କିପରି; କୋଳ ସ୍ୱରୂପୀ—ବରାହ -ରୂପୀ ବିଷ୍ଣୁ; ବରାହଃ ଶୂକରେ ଘୃଷ୍ଟିଃ, କୋଳଃ ପୋତ୍ରୀ କିରିଃ କିଟିଃ—ଇତ୍ୟମରଃ;

୫—ସୁମନା—ଫୁଲ, ଉତ୍ତମ ମନା ନାରୀ; ଥାଉ—ତେଣିକି ଥାଉ;

୬—ଘନରସ—ଜଳ; ଘନରସ—ଶୃଙ୍ଗାର; ଦାବାନଳ—ବଣନିଆଁ;

୭—ଅପୂରବ ଗତି—ଅଗତି—ଶତ୍ରୁ; ଅର୍ଥାତ୍ ଗତି, ଅଗତି ହୁଏ ।

୮—ଶିଖୀ—କେକୀ—ମୟୂର; ଶିଖୀ—ଅଗ୍ନି;

କାମିହୃଦ ଖାଣ୍ଡବ ଦହନେ ସେ ପାଣ୍ଡବ । କଲନି ଶିଖା ପ୍ରକାଶି ଆନନ୍ଦେ ତାଣ୍ଡବ । ୯ ।
ଆରେ ଶ୍ୟାମା କି କରିବି ତୁହି ପରିତ୍ରାଣ । ବୋଲି ମୋହକୁ ଭଜିଲ କୁମାର ତତ୍କ୍ଷଣ । ୧୦ ।
ସଖା ମୁଖେ ଜଳ ସିଞ୍ଚି ଅଞ୍ଚଳେ ବିଞ୍ଚିଲେ । ଚେତନା ବଶେ ପଲ୍ଲବ ଶେଯେ ଶୁଆଇଲେ । ୧୧।
ଏ ସମୟେ ପରବେଶ ବ୍ରହ୍ମଗିରୀ କୀର । ଏ ରୀତି ଦେଖି ଭସିଲେ ଧୀର ହେବା ଗୀର । ୧୨ ।
ଉଠ ହେ ରସିକ ଯୁବା ସୁନ୍ଦରୀ ସନ୍ନିଧି । ଅଙ୍ଗେ ସାଜିଛି ସେ କାମବ୍ୟାଧି ମହୌଷଧି ।୧୩ ।
ବୀଜ ଶଇବାଳ ନବ ପ୍ରବାଳ ଅଧର । କୋମଳ ବାହୁ କମଳନାଳ ମନୋହର । ୧୪ ।
ପ୍ରେମ ଜଳେ ପୂର୍ଣ୍ଣ ନାଭି ରସ କୂପ ଲେଖ । ହାସ ଘନସାର ଅଉଷଧୀଇଶ ମୁଖ ହେ । ୧୫ ।
ଆହୁରି ରେଚକ ଦ୍ରବ୍ୟମାନ ଅଛି ସର୍ଜି । ମାର ଜ୍ୱର ଛାର କେତେ ଯାଇ ସିନା ଘୁଞ୍ଚି ଯେ ।୧୬।

---

୯–କାମୀ ହୃଦ ଦହନ କରିବା ( ପୋଡ଼ିବା ) ପାଇଁ ସେ ଶିଖା ( ପିଛ ) ଟେକି ନାଚିଲଣି, ବର୍ଷା ଆରମ୍ଭରେ ମୟୂର ସେହିପରି ନାଚେ । ଶିଖା (ଅଗ୍ନି ଶିଖା); ପାଣ୍ଡବ–ଅର୍ଜୁନ; ଖାଣ୍ଡବ–ଖାଣ୍ଡବ ବନ; ଯମୁନା କୂଳରେ ଖାଣ୍ଡବ ବୋଲି ସୁନ୍ଦର ବଣ ଥିଲ । ଅଗ୍ନିଙ୍କର ବ୍ୟାଧି ହେବାରୁ ସେହି ବଣଟି ଖାଇବେ ବୋଲି ଇନ୍ଦ୍ରଙ୍କୁ ମାଗିଲେ । ଇନ୍ଦ୍ର ନାହିଁ କଲେ । ତହୁଁ ଅଗ୍ନି ଅର୍ଜୁନଙ୍କୁ କହିବାରୁ ଅର୍ଜୁନ ଧନୁଶର ଧରି ଜଗିଲେ । ଅଗ୍ନି ବଣଟି ପୋଡ଼ି ଖାଇଗଲେ । [ମହାଭାରତ ଆଦିପର୍ବ । ] ତାଣ୍ଡବ–ପୁରୁଷର ନୃତ୍ୟ ଏଠାରେ ମୟୂର ଓ ଅଗ୍ନିର ନୃତ୍ୟ; ପୁଂ ନୃତ୍ୟଂ ତାଣ୍ଡବ ପ୍ରାହୁଂ ସ୍ତ୍ରୀ ନୃତ୍ୟଂ ଲସ୍ୟ ମୁଚ୍ୟତେ –ଇତି ବିଶ୍ୱଃ ।

୧୦–ଶ୍ୟାମା–ତପ୍ତ କାଞ୍ଚନ ବର୍ଣ୍ଣା ବା ଯୌବନ ମଧ୍ୟସ୍ଥା । "ଶୀତେ ସୁଖୋଷ୍ଣ ସର୍ବାଙ୍ଗୀ ଗ୍ରୀଷ୍ମେ ତୁ ସୁଖ ଶୀତଳା ତପ୍ତ କାଞ୍ଚନ ବର୍ଣ୍ଣାଭ ସା ସ୍ତ୍ରୀ ଶ୍ୟାମେ ତି କଥ୍ୟତେ" ଅପି ଚ "ଶ୍ୟାମା ଯୌବନ ମଧ୍ୟସ୍ଥା"–ଇତି ମତାନ୍ତରଂ

୧୨–ଧୀର ହେବା ନିମନ୍ତେ ଗୀର (କଥା) ଭଷିଲେ

୧୪–୧୫–ଲବଣ୍ୟବତୀର ଶରୀରରେ ଥିବା କାମ ବ୍ୟାଧିର ଔଷଧ ସବୁ ବର୍ଣ୍ଣନା କରୁଛନ୍ତି । ନବ ପ୍ରବାଳ–ନୂତନ ପତ୍ର; ପ୍ରେମ ଜଳରେ ପୂର୍ଣ୍ଣ ହୋଇଛି ଯେ ନାଭି ସେ ରସ ( ୧.ଶୃଙ୍ଗାର ୨. ରସାୟନ ଔଷଧ ) କୂଅ ପରି । ଘନସାର–କର୍ପୂର; ଔଷଧୀଇଶ–ଚନ୍ଦ୍ର, ଶିଉଳି, କଅଁଳ ପତ୍ର ପ୍ରଭୃତି ତାପ ଶାନ୍ତିରେ ଦରକାର ହୁଏ ।

୧୬–୧୭–ପୁଣି ଶରୀରରେ ରେଚକ ( ରୁଚିକର) ପଥ୍ୟମାନ ସାଇତିଛି । ସେଥିରେ କନ୍ଦର୍ପ ଜ୍ୱର ଛାଡ଼ିଯିବ । ଦାଡ଼ିମୀ ବୀଜ–ଡ଼ାଳିମ୍ବ ମଞ୍ଜି; ମାତୁଳଙ୍ଗ–ଟଭ, କମଳା; ସୀତା–ସାକର;

ଦଶନ ଦାଡ଼ିମୀ ବୀଜ ମାତୁଲିଙ୍ଗ ସ୍ତନ । ବଚନ ସିତାରେ ଆଗ ହରିନେବୁ ମନ । ୧୭ ।
ମୃତ ପ୍ରାୟ ହୋଇଥିଲା ମହୀପତି ସୁତ ! ଏ ବାଣୀ ଶ୍ରବଣ ହେଲା ସଞ୍ଜୀବନୀ ମନ୍ତ୍ର । ୧୮ ।
ଉଠି ବସି ଅନାଇଲା ଦୂତଙ୍କ ବଦନ । ନୂତନ ଅନ୍ଧେ ପ୍ରାପତ ହେଲା କି ନୟନ । ୧୯ ।
ଅତି ଦରିଦ୍ର ରତନ ପାଇଲାର ପରି । ଶୁକ ଶିର ଚୁମ୍ବି ଦ୍ୱିଜେ ନମସ୍କାର କରି । ୨୦ ।
କୃତ୍ୟ କୃତ୍ୟ ଦୂତେ ହେଲେ ଘେନିଲେ ଚିଟାଉ । ଶୁଣ କେତେ ରସ ଜାତ ଫିଟାଉ ଫିଟାଉ । ୨୧ ।
ମୁଦ ଦେଖି ମୁଦ ଲଭି ଲୋଭୀ ହୋଇ ନେତ୍ର । ପ୍ରେମ ଅଙ୍କୁର ରୋମାଞ୍ଚ ପୂର୍ଣ୍ଣ ହେଲା ଗାତ୍ର ।୨୨ ।
ସଙ୍କେତ ଜାଣିମା ପାଇଁ ମନ ଉଦବେଗ । କରକୁ ସ୍ତୁତି କରୁଛି ବେଗେ ଭଙ୍ଗ ଭଙ୍ଗ । ୨୩ ।
ଶ୍ରବଣକୁ ଶ୍ରବଣ ଉଚ୍ଛନ୍ନ[୨] ହୋଉ ଅଛି । ରସ ଆସ୍ୱାଦନାକୁ ରସନା ଏକା ଇଚ୍ଛି ଯେ । ୨୪ ।
ଜୀବ କଣ୍ଠେ ଅନୁକୂଳ କଲା ଏହା ଭାବି । ଅସାଉଜାରେ ଯିବି ସାଉଜାରେ ଥିବି ଯେ ।୨୫।
କିବା ବାଳା ମୁଦ ତାକୁ ଶଙ୍ଖେ ପୂରେଇଲା । ତାଟଙ୍କ ଚକ୍ର ଆଛାଡ଼ି ରଖିବି ବୋଇଲା । ୨୬ ।
ସର୍ବେ ନେତ୍ରେ ସ୍ତୁତି କଲେ ହୋଇବୁ ତୁ ମୋହୀ । ମୁଦ୍ର ଫିଟୁ ଦୁଃଖ ତୁଟୁ ବର୍ଣ୍ଣ ଦେଖ ତୁହି ଯେ ।୨୭।

---

ପାଠାନ୍ତର ୨, ଉଚ୍ଛୁକ ।

---

୧୮—ସଞ୍ଜୀବନୀ ମନ୍ତ୍ର—ଯେଉଁ ମନ୍ତ୍ରରେ ମଲା ପରି ବା ମଲାଲୋକ ବଞ୍ଚି ଯାଏ ।

୨୨—ମୁଦ—୧. ଚିଠିରେ ଜଉମୁଦ, ୨. ଆନନ୍ଦ ଲଭି—ଚିଠି ହାତରେ ପାଇ;

୨୩—'ଶିବରାତ୍ରୀ ଦିନ ରାମେଶ୍ୱର କୁ ଆସ' ଏହି ସଙ୍କେତ ଜେମା ଚିଠିରେ ଥିଲା; ସଙ୍କେତ—ପ୍ରେମିକ ପ୍ରେମିକାଙ୍କର ଇଶାରାରେ ସୂଚିତ ଗନ୍ତବ୍ୟ (ଭେଟ ହେବାର) ସ୍ଥାନ;

୨୪—ଶ୍ରବଣକୁ—ଶୁଣିବାକୁ; ଶ୍ରବଣ—କାନ; ରସ ଆସ୍ୱାଦନକୁ—ପାଟି କରି ପଢ଼ି ଆମୋଦ ପାଇବାକୁ;

୨୫—ଜୀବ ( ପ୍ରାଣ ) କଣ୍ଠକୁ ବାହାରି ଆସିଲା; ଚନ୍ଦ୍ରଭାନୁର ପ୍ରାଣ ଉଦ୍‌ବେଗରେ କଣ୍ଠାଗତ ହେଲା ।

୨୬—ବାଳାମୁଦ—ବାଳା ଦେଇଥିବା ଚିଠିର ମୁଦ ବା ବାଳା କଥା ଭାବିବାର ଆନନ୍ଦ; ତାକୁ (ପ୍ରାଣକୁ) ଶଙ୍ଖେ (କଣ୍ଠର ଶଙ୍ଖ ସଙ୍ଗେ ସାଦୃଶ୍ୟ), ବିଷ୍ଣୁଙ୍କର ଆୟୁଧ ଶଙ୍ଖ; ତାଟଙ୍କ ଏଠାରେ ଚନ୍ଦ୍ରଭାନୁ କାନର କୁଣ୍ଡଳ ବା ନୋଳି । ସେ ଚକ୍ର ପରି ହେଲା । ଚକ୍ର ମଧ୍ୟ ବିଷ୍ଣୁଙ୍କର ଆୟୁଧ । ବାଳାର ମୁଦ ବିଷ୍ଣୁପରି ହୋଇ ତା ପ୍ରାଣକୁ ଶଙ୍ଖରେ ପୂରେଇ ଚକ୍ର ଘୋଡ଼ାଇଲା । ଅର୍ଥାତ୍ ପ୍ରାଣ ରହିଲା । ମୁଦ ଶବ୍ଦର ଆନନ୍ଦ ଅର୍ଥ ହେବାରୁ ସେ ବିଷ୍ଣୁରିଲା ନିଷେ ହଁ କରିଛି । ନୋହିଲେ ମୁଦ କାହିଁକି ଦିଅନ୍ତା ।

୨୭—ଏହିପରି ମୁଦକୁ ଗ୍ରହିଁଥିଲେ ତୁ ମୋହୀ (ମୂର୍ଚ୍ଛିତ) ହେବୁ—ଆଉ ଫିଟାଇବାକୁ ତୋର ଜ୍ଞାନ ରହିବ ନାହିଁ—ଆମେ ଦୁଃଖ ପାଉଥିବୁ । ଅତଏବ ତୁ ବର୍ଣ୍ଣ (ଅକ୍ଷର) ଦେଖେ ।

ପ୍ରଥମେ ତୋହ ପରତେ ଘେନି ସିନା ରସ୍ତ । ଆମ୍ଭକୁ ଛାଡ଼ି ତୁ ସୁଖ ଭୁଞ୍ଜୁ କଉଁ ଯଶ୍ଠ ଯେ । ୨୮ ।
ମୂର୍ଖକୁ ବୁଝାଇବାର ଅତି କଷ୍ଟ ଜାଣ । କେତେବେଳେ ବିଳମ୍ବ ତାହାରି ଘେନି ପୁଣ ଯେ । ୨୯ ।
ନିବିଡ଼ ନୀବୀକି ଏହି ରୂପେ ଏହି କର । ଘେନି ଫେଡ଼ିବି ଜନ୍ମିଲ ଏମନ୍ତ ବିଗ୍ରହ ଯେ । ୩୦ ।
ରଖି ସେ ନ ଦେଲ ଆଉ ଇନ୍ଦ୍ରିୟଙ୍କ ଦ୍ୱନ୍ଦ । ଫେଇ ଧର୍ଷିକାକୁ ଗ୍ରହି ହୋଇଲ ଆନନ୍ଦ ଯେ । ୩୧ ।
ବିରଳ ସମବର୍ତ୍ତୁଳ ତା ଅକ୍ଷର ଧାଡ଼ି । ନାଗେଶ୍ୱର ପୁଷ୍ପ କେଶରରେ ତନୁ ଜଡ଼ି ଯେ । ୩୨ ।
ଶ୍ରେଣୀ ଶ୍ରେଣୀ ହୋଇ ଶିଶୁ ମଧୁକର କି ସେ ।ଫୁଲ ପୁଣ୍ଡରୀକେ ବସିଛନ୍ତି ରସ ବଶେ ଯେ । ୩୩ ।
ରଜତ ପତ୍ରେକି ଉକୁଟିଛି ହେମବଲ୍ଲୀ । ଫୁଲ ପଗ ପଦ ବିଶ୍ରାମିତ ସ୍ଥାନ ଫୁଲୀ । ୩୪ ।

---

୨୮—ହାତକୁ କହିଲେ ତୁ ଆଗ ପରିଚିତ ହେଉଛୁ ବୋଲି ଆମେ ତୋ ଠାରେ ରସିଛୁ । ତୁ ଆମକୁ ଛାଡ଼ି ଯେ ଏକାରେ ସୁଖ ଭୁଞ୍ଜୁଛୁ ଏ କେଉଁ ଯଶ (ବଡ଼ ପଣ)—ଅର୍ଥାତ୍ କେତେବେଳ ଯାଏ ମୁଦକୁ ଗ୍ରହି ରହିଲ ଫିଟାଇଲ ନାହିଁ ଏହି ଭବ ।

୨୯—ଏଠାରେ ହାତ ମୂର୍ଖ ।

୩୦—ପରେ ଦେଖା ହେଲେ ଏହି ହାତରେ ଏହିପରି ନୀବୀ ଫିଟାଇବି ବୋଲି ।

୩୧—ପୂର୍ବେ ଇନ୍ଦ୍ରିୟଙ୍କର (କାନ, ମନ ପ୍ରଭୃତି) ଯେ ଦ୍ୱନ୍ଦ (କଳି) କୁହାଯାଇଛି ସେ ହାତକୁ ଆଉ ରଖି ଦେଲ ନାହିଁ ।

୩୨-୩୩—ଅକ୍ଷରର ନିୟମ—"ଧାମାନି ସମ ଶିର୍ଷାଣି ଘନାନି ବିରଳାନିଚ, ବ୍ୟକ୍ତା କଳିତ ମାତ୍ରାଣି ଯୋ ଲିଖେତ୍ ସଚପଣ୍ଡିତଃ" ଏହି ବଚନ ସଙ୍ଗେ ମିଳାଇ ଦେଖିବାକୁ ହେବ । ବିରଳ—ଗୋଟି ଗୋଟିକିଆ; ସମ—ସମସ୍ତେ ସମାନ; ବର୍ତ୍ତୁଳ—ଗୋଲ; ଯେପରିକି ନାଗେଶ୍ୱର ପୁଷ୍ପ କେଶର (ପରାଗ)ରେ ତନୁ (ଦେହ) ଜଡ଼ି (ପୂର୍ଣ୍ଣ କରି) ଧୂସରିତ କରି ଶିଶୁ ମଧୁକର (କ୍ଷୁଦ୍ର ଭ୍ରମର ସବୁ) ଶ୍ରେଣୀ ଶ୍ରେଣୀ—(ଧାଡ଼ି ଧାଡ଼ି) ହୋଇ ରସ ବଶେ (ମଧୁ ନିମନ୍ତେ) ଫୁଲ (ଫୁଟିଲ) ପୁଣ୍ଡରିକେ (ଧଳା ପଦ୍ମରେ) ବସିଛନ୍ତି ସେହିପରି ଦିଶୁଛି । ଧଳା କାଗଜ ଏଠାରେ ପୁଣ୍ଡରୀକ ସଙ୍ଗେ ତୁଳନା ।

୩୪—ଅନ୍ୟ ଉତ୍ପ୍ରେକ୍ଷା—ରଜତ ( ରୂପା ) ପତ୍ରେ ହେମ ( ସୁନା ) ବଲ୍ଲୀ ( ଲତା ) ଉକୁଟିଛି ( ଖିଲେଇ ବା ଚିତ୍ର କରା ହୋଇଛି ) ପଦର ବିଶ୍ରାମିତ ସ୍ଥାନ ( ପଦ ଯେଉଁଠାରେ ସରି ଯାଉଥିଲ ସେଠାରେ ) [ ପଦ ଏଠାରେ ବାକ୍ୟ ଗୀତ ପଦ ] —ଗୋଟିଏ ଫୁଲି ( ଛୋଟ ଫୁଲ ) ଚିତ୍ର କରିବାର ବିଧିଥିଲ । ସେହି ଫୁଲି ହେମ-ବଲ୍ଲୀର ଫୁଲ ପରି ହୋଇଛି ।

ଜାଣି ଉନ୍ମାଦ ଶ୍ୱାସନ ଦହନ ଶୋଷଣ । ସମ୍ମୋହନ ଘେନି ପଞ୍ଚ ବାଣ ପଞ୍ଚବାଣ ଯେ ।୩୫।
ଚୂତ ନବମାଳିକା ଅଶୋକ ନିଳୋତ୍ପଳ । ପଦ୍ମ ଘେନି ପାଞ୍ଚଜାତି ଫୁଲରେ ମଞ୍ଜୁଳ ଯେ ।୩୬।
ମନ୍ତ୍ରବଳେ ସେ କାଳ ତା କୋଟି କୋଟି କଲା । ଏକଶର ଯାର ମହେଶ୍ୱର ନ ସହିଲା ଯେ ।୩୭।
ସହିଲା କେମନ୍ତେ ଏତେ ମନୁଷ୍ୟ ଶରୀରେ । ଘେନ ପଡ଼ି ଭସ୍ମ ସେ ବିରହ କୃଶାନୁରେ ଯେ ।୩୮।
ମନୁ ଜାତ ମାର ମନ୍ଥେ ମନ ମାନ୍ଥ ଜାତ । ସାତ୍ତ୍ୱିକ କୁଳ ସିଦ୍ଧି କି ରଖିଲା ନିୟତ ଯେ ।୩୯।
କୁମାର ପଢ଼ିଲା ପତ୍ର ପୁନଃ ପୁନଃ କରି । ପଦ ପଦକେ ଅଶେଷ ରସ ଅଛି ପୂରି । ୪୦ ।
ଏଥୁ ଜାଣିଲା ତାହାର ରସବତୀ ଗୁଣ । ଦୃଷ୍ଟାନ୍ତରୁ ଆଣିଲା ପଣ୍ଡିତାପଣ ପୁଣ ଯେ । ୪୧ ।
ସଖୀନାମେ ଲେଖିବାରୁ ଜାଣିଲା ଚତୁରୀ । ସଙ୍କେତରୁ ଜାଣିଲା ସେ ବିରହେ ଆତୁରୀ ଯେ ।୪୨।
ଶିରେ ଉରେ ଲଗାଇଲା ପୁନଃ ପୁନଃ ପତ୍ର । କିଛି କିଛି ସାନ୍ତ୍ୱନା ହୋଇଲା ତେଣେ ଗାତ୍ର ଯେ ।୪୩।
ସମ୍ଭାବନା କଲା ଗାତ୍ରକୁହିଁ ଶାନ୍ତି କଲା । ଅଙ୍ଗେ ଅଙ୍ଗେ ଭଗ ନେଲେ ଯେଝା ଭଗ ଦେଲା ଯେ ।୪୪।

---

୩୫—ଉନ୍ମାଦ ପ୍ରଭୃତି କନ୍ଦର୍ପର ପଞ୍ଚବାଣ—ଉନ୍ମାଦନଃ ଶ୍ୱାସନଶ୍ଚ ଦହନଃ ଶୋଷଣସ୍ତଥା ସମ୍ମୋହନଶ୍ଚ କାମସ୍ୟ ପଞ୍ଚ ବାଣାଃ ପ୍ରକୀର୍ତ୍ତିତାଃ ” ଇତି ଅମର କୋଷ ବିଦ୍ୟା ବିନୋଦ ଟୀକାୟାଂ ।

୩୬—କାମର ପଞ୍ଚ ପୁଷ୍ପବାଣ ନିଳୋତ୍ପଳାଦି ପୂର୍ବେ କୁହାଯାଇଛି [ ୬ଷ୍ଠ ଛାନ୍ଦ ୯ମ ପଦ ଟୀକା ଦେଖ ]

୩୭—ଏହି ପଞ୍ଚଶର ମନ୍ତ୍ରବଳରେ ଯେପରିକି କୋଟି କୋଟି ହେଲା ।

୩୮-ଘେନ—ଜାଣ; ବିରହ ରୂପ କୃଶାନୁ ( ଅଗ୍ନି )ରେ ପଡ଼ି ସେ ( କନ୍ଦର୍ପଶର ) ଭସ୍ମ ହୋଇଗଲା । ତେଣୁ ଚନ୍ଦ୍ରାନନର ଶରୀର ରହିଲା ।

୩୯—ମନରୁ ଜାତ ମାର ( କନ୍ଦର୍ପ ) ମନକୁ ମନ୍ଥେ । .ସେହିପରି ଅଗ୍ନିରୂପ କାମରୁ ଜାତ ଯେ ସାତ୍ତ୍ୱିକ ବିକାର ( ଏଠାରେ ଅଷ୍ଟ ସାତ୍ତ୍ୱିକରୁ ଗୋଟିଏ—ସ୍ୱେଦ ) ସେ ଯହିଁରୁ ଜାତ ହୋଇଥିଲା ସେହି କାମାଗ୍ନିକୁ ନଷ୍ଟକଲା । —ଏହିପରି ନିୟତ ନିଶ୍ଚିତ କୁଳ-ସିଦ୍ଧିକି ରଖିଲା । [ ୧୯ ଛାନ୍ଦ ୨୦ ପଦ ଟୀକା ଦେଖ ]

୪୧—ଦୃଷ୍ଟାନ୍ତରୁ-ଉପମାମାନଙ୍କରୁ ;

୪୨—ସଙ୍କେତ—ଶିବରାତ୍ରି ଦିନ ରାମେଶ୍ୱରକୁ ଆସିବା ଅନୁରୋଧ ;

୪୩—ଉରେ—ଛାତିରେ; ତେଣେ—ସେଥିରେ ;

୪୪—ସମ୍ଭାବନା କଲା—ଆଦର କଲା; ସେହି ଆଦରରେ ଗାତ୍ରକୁ ସମ୍ପୂର୍ଣ୍ଣ ଶାନ୍ତି କଲା । ଅଙ୍ଗେ ଅଙ୍ଗେ—( ନେତ୍ରାଦି ) ପ୍ରତ୍ୟେକ ଅଙ୍ଗ; ଭଗ—ଶ୍ରାନ୍ତିର ଭଗ ।

ନେତ୍ର ଦେଖି କର୍ଣ୍ଣ ଶୁଣି ମନ ଘେନି ତୋଷ । ଜବ ଫେଇ ମୁଖ ପିଇ ଯିବ ଭୟ ନାଶ ଯେ । ୪୫ ।
କହେ ମନ୍ତ୍ରୀ ପୁରୋହିତ ସୁତ ମୁଖ ଚାହିଁ । ଶିବ ଗର୍ଭ କି ଯିବାକୁ ପ୍ରିୟା ଅଛି ଲିହି ଯେ । ୪୬ ।
କି ଉପାୟ କରି ଯିବା ପୁଣ ଦେଶ ଦୂର[୩] । ଶୁଣି ସେ କହିଲେ ଅଛି ତହିଁକି ବିଚାର ଯେ । ୪୭ ।
ଆମ୍ଭେ ସମ୍ମତ କରଉଁ ସିନା ଦଣ୍ଡଧାରୀ । ଏ କଉଁ କଥା ସମ୍ମତି କଲ ଯେବେ ନାରୀ ଯେ । ୪୮ ।
ପୁଚ୍ଛେ ବୀର ଦୂତେ ଆଜ କି କହିଛି ଯୋଷା । କୀର କହେ କି କହିବି ଶୁଣ ତାର ଦଶା ହେ । ୪୯ ।
ତରତର ତୁମ୍ଭ ଭେଟେ କି କାତର ତର । ପର ପରଚନ୍ତ୍ର ଦୁଃଖ ସୁରୁଚିର ଚିର ଯେ । ୫୦ ।
ଜର ଜର ତନୁ ବାଜି ଫୁଲଶର ଶର । ଥର ଥର ହୋଇ ବୋଲେ କଷ୍ଟ ହର ହର ଯେ । ୫୧ ।
ବର ବରନାକୁ ଦହେ ସୁଧା କର କର । ସାର ସାରସ ପଲ୍ଲବ ଗନ୍ଧସାର ସାର ଯେ । ୫୨ ।
ମାର ମାରଣ ପୁରେଇଛି ଅଗାର ଗାର । ବାର ବାର ପ୍ରଳାପ ଅନାଇଁ ତାର ତାର ଯେ । ୫୩ ।
ବୀର ବୀରହ ନାଶ ରସନିଧିର ଧୀର । ନ ଥାଇଁ ଆଜ ହେଲେ ବିଳମ୍ବ ଯିବାର ଯେ । ୫୪ ।

---

ପାଠାନ୍ତର—୩, ପଥ ବହୁଦୂର ।

---

୪୫—ଜୀବ—(ପ୍ରାଣ)ର ଭୟ ନାଶ ହେଲ ।

୪୬- ମନ୍ତ୍ରୀ ସୁତ, ପୁରୋହିତ ସୁତ; ଲିହି—ଲେଖି;

୪୮—ଦଣ୍ଡଧାରୀ - ରାଜା, ଚନ୍ଦ୍ରଭାନୁର ପିତା; ଏ କଉଁ କଥା—ଏପରି ଯିବା ନ ଯିବା ସନ୍ଦେହରେ ପଡ଼ିବା ଠିକ୍ ନୁହେ ।

୫୦—କାତର ତର—ଅତ୍ୟନ୍ତ ଅଧୀର ପୁଣି ତୁମ୍ଭ ସଙ୍ଗେ ପର ( ବିଶେଷ ) ପରଚ ( ପରିଚୟର ) ସୁରୁଚିର ( ସୁପ୍ରଜ୍ଜ୍ୱଳ ) ଚିର ( ସ୍ଥାୟୀ, ସବୁବେଳେ )

୫୧—ଫୁଲଶର ଶର—କନ୍ଦର୍ପ ବାଣ; ଜରଜର—ଅତିବ୍ୟସ୍ତ; ହର—ଶିବ; ହର—ହରଣ କର;

୫୨—ବରବରନା—କୁଙ୍କୁମ ବର୍ଣ୍ଣା; ସାର—ଅତି କୋମଳ, ଶ୍ରେଷ୍ଠ; ସାରସ ପଲ୍ଲବ—ପଦ୍ମପତ୍ର; ଗନ୍ଧସାର—( ଅଗୁରୁ ବା ଚନ୍ଦନ ); ତାର ସାର ( ନିର୍ଯ୍ୟାସ, ଅତର ) କିମ୍ବା ଶ୍ରେଷ୍ଠ ଗନ୍ଧସାର;

୫୩—ମାର ( କନ୍ଦର୍ପ ) ତାର ମାରଣ ( ମାରିବା—ଶରଘାତ ) ତାକୁ ଅଗାର (ଘର) ଭିତରେ ପୁରାଇଛି ଏ କଥା ଗାର—ସତ୍ୟ, ତାର ଅନାଇ ତାର ( ବାହାର ) ବାର ବାର ପ୍ରଳାପ ( ଉନ୍ମାଦ ବଚନ, ଅନର୍ଥକ ବଚନ ) ଦେଖି ତାକୁ ତାର ( ଉଦ୍ଧାର କର ) " ପ୍ରଳାପୋ ନର୍ଥକଂ ବଚଃ "—ଇତ୍ୟମରଃ,

୫୪—ହେ ବୀର, ହେ ଧୀର, ରସନିଧିର (ରସ ସ୍ଥାନ ଯେ ଲାବଣ୍ୟବତୀ, ତାର) ବିରହ ନାଶ କର ।

ଏ ବଚନେ ଛଇଳ ହୋଇଲ ଛନ୍ନ ଛନ୍ନ । ଅଶ୍ରୁ ପୁରେଇ ନୟନ ଜଳ ଥନ ଥନ ଯେ । ୫୫ ।
ପୁଣ ସୁଭଇ ପଢ଼ିଲ ସୁନ୍ଦରୀ ସନ୍ଦେଶ । ପଦେ ପଦେ ଅର୍ଥ କରି ଘେନିଲ ସୁରସ ଯେ । ୫୬ ।
ସେ ପତ୍ର ହୋଇଲ ଜାଣ ବିକଶିତ ପଦ୍ମ । ରୋଳମ୍ବ ହୋଇ କୁମାର ମନ କଲ ସଦ୍ମ ଯେ । ୫୭ ।
ପ୍ରତିକ୍ଷଣେ ଶୁକ ବ୍ରହ୍ମଗ୍ରୀ ରମା କଥା । କହିବାରେ ଆତୁର ଅଧିକାଧିକ ବ୍ୟଥା ଯେ । ୫୮ ।
ଫାଲ୍‌ଗୁନ ଫାଲ୍‌ଗୁନ ପୁନଃ ପୁନଃ ଜପକରେ । ଦୁଃଖ-ଭୀଷ୍ମ ନାଶ ହୋଇବାରେ ସେ ବିଗ୍ରହରେ ଯେ । ୫୯ ।
ସ୍ତୁତି କରେ ଶିବ ଗର୍ଭି ପଦ କର ସିଦ୍ଧି । ମୋହଠାରେ ଦର୍ଶନ କରାଅ ଛବିନିଧି ଯେ । ୬୦ ।
କଉଁ ମାସେ କେତେଦିନ କ୍ଷୟ ସେ ଲେଖଇ । ବୃଦ୍ଧି ନୋହିବାକୁ ଚଣ୍ଡୀକବଚ ଗୁଣାଇ ଯେ । ୬୧ ।
ବାଞ୍ଛୀ ପ୍ରିୟ ହୋଇ କରି ବାଜି ବିନାଶନ । ହରି ମିତ୍ର ହୋଇ କରି ହରି ବିଚ୍ଛେଦନ ଯେ । ୬୨ ।
ସ୍ୱୟଂ ଚକ୍ରଧର ଚକ୍ରସୁଖ ହତକାରୀ । ସେ ରାମଚନ୍ଦ୍ର ଚରଣ ଚିତ୍ତରେ ସୁମରି ଯେ । ୬୩ ।
କହେ ଉପ ଭଦ ଭଞ୍ଜ ବୀରବର ରସ । ନୃପ ସୁତ ଉଛନ୍ନ କାରକ ଛାନ୍ଦ ଶେଷ ଯେ । ୬୪ ।

ପାଠାନ୍ତର—୪, ପ୍ରିୟ ।

୫୫—ଛଇଳ-ଚତୁର; ଛନ୍ନ- ଛନ୍ନ—ବିଶେଷ ଦୁଃଖିତ ନୟନ ଥନ ଥନ କଲ—କାନ୍ଦ କାନ୍ଦ ହେଲ । ୫୬- ସୁନ୍ଦରୀ ସନ୍ଦେଶ- ଚିଠିରେ ଲେଖା ଥିବା କଥା;

୫୭—କୁମାର ମନ ଯେ ସେ ରୋଳମ୍ବ (ଭ୍ରମର) ହେଲ; ସଦ୍ମ—ଘର, ରହିବା ସ୍ଥାନ;
୫୮—ଅଧିକାଧିକ—ଅଧିକରୁ ଅଧିକ, ଅତ୍ୟନ୍ତ ବେଶୀ;

୫୯—ଫାଲ୍‌ଗୁନ ମାସ (ଶିବରାତ୍ରି ଯେଉଁ ମାସରେ ହୁଏ) ତାକୁ ବାରମ୍ବାର ଜପ କରେ । ଭିଷ୍ମ (ଭୟଙ୍କର) ଦୁଃଖ ନାଶ ହେବା ନିମନ୍ତେ । ଫାଲ୍‌ଗୁନ ( ଅର୍ଜୁନ ) ଭୀଷ୍ମଙ୍କୁ ମାରିଥିଲେ—ଏ ଅର୍ଥ ଶ୍ଳେଷ ମଧ୍ୟ ଅଛି ।

୬୦—ଶିବ ଗର୍ଭି ପଦର ଅର୍ଥ ମଙ୍ଗଳ ରାତ୍ରି, ଛବିନିଧି (ଏଠାରେ ଲାବଣ୍ୟବତୀ)କୁ ଦର୍ଶନ କରାଇ ସେହି ପଦ ମୋ ଠାରେ ସିଦ୍ଧ (ସାର୍ଥକ) କର ।

୬୧—ଚାନ୍ଦ୍ରମାନ ମାସ ମାନଙ୍କରେ ତିଥି ସବୁର ବୃଦ୍ଧି କ୍ଷୟ ହୁଏ; ଚଣ୍ଡୀ କବଚ ( ସମ୍ପୁଟ ଚଣ୍ଡୀ); ଗୋଟିଏ ଶ୍ଳୋକରେ ନିଜର ଅଭିଷ୍ଟ ବା କାମନା ଥାଏ; ସେହି ଶ୍ଳୋକଟି ଚଣ୍ଡୀ ଶ୍ଳୋକ ମାନଙ୍କର ପ୍ରତ୍ୟେକ ପାଦର ଦୁଇ ପଟେ ଆଦ୍ୟରେ ଓ ଶେଷରେ ଥରେ ଥରେ ଗୁଣିବାକୁ ହୁଏ; ଏହି ପରି ଦେବୀଙ୍କ ପାଖରେ ଚଣ୍ଡୀ ପାଠ କରିବାକୁ ସମ୍ପୁଟ ଚଣ୍ଡୀ ଗୁଣିବା କହନ୍ତି । ୬୨—ଏ ବିରୋଧା ଭାଷ; ଅର୍ଥାତ୍ ବିରୋଧ ପରି ହେଲେ ମଧ୍ୟ ଅର୍ଥରେ ବିରୋଧ ନାହିଁ । ବାଞ୍ଛୀ—ସୀତା, ଓ କିଷ୍କିନ୍ଧ୍ୟା ପତି; ହରି—ସୁଗ୍ରୀବ ବା ମର୍କଟ ଓ ମୃଗ; କୃଷ୍ଣେ କୋକିଳ ଷଟ୍‌ପଦେ କ୍ଷିତି ଜଳେ ସର୍ପେ ମୃଗେ ବାୟସେ—ହରି ଇତି ଚ କୋଷା-ନ୍ତରେ [୧୨ଶ ଛାନ୍ଦ ୩୮ ପଦ ଟୀକା ଦେଖ ]

୬୩—ଚକ୍ର—ବିଷ୍ଣୁଙ୍କ ଆୟୁଧ, ଚକ୍ର ବାକ ପକ୍ଷୀ [୧୫ଶ ଛାନ୍ଦ ୨୭ ପଦ ଟୀକା ଦେଖ]

# ଦ୍ୱାତ୍ରିଂଶ ଛାନ୍ଦ

## (ଲବଣ୍ୟବତୀର ବରହ)

### ରାଗ କାମୋଦୀ

ଦେଖି ନବ କାଳିକା ବକାଳିକା ମାଳିକା ଆଳୀ କାଳୀକା କାନ୍ତ ସ୍ମରି ।
ରକ୍ଷା କେମନ୍ତେ କରି କରିବା ମତ୍ତକରି ଗତି କି ଏମନ୍ତ ବିଗ୍ଭରି ରେ ।
ସହଚରି ! ଭବେ ବଞ୍ଚିଲେ ଏକାଳକୁ । କଥା ଥିବ କାଳ କାଳକୁ ।
ଏକେ ତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ ନ ଲଭୁଁ ବଲ୍ଲଭମେଳକୁ ରେ । ୧ ।
ହିତ ଆନମାନଙ୍କୁ ସତ କାମିଜନଙ୍କୁ ଅହି ପରା ଅହିତ ଏହି ।
ହତ କୃଶାନୁ ସାନୁମାନରୁ ଭାନୁ ଭାନୁ ତାପରୁ ନିସ୍ତରିଲା ମହିରେ ।
ସହଚରି । ବିରହାନଳ ହୃଦସ୍ଥଳେ । ଜଳେ ସେ ହତ ନୋହେ ଜଳେ ।
ଜଳୁଛି ଜାତ ଜାତବେଦକୁ ସତ ଶତହ୍ରଦା–ଛଳରେ ଘନକୋଳେ ରେ । ୨ ।

---

୧–ସଖୀମାନେ ବିଗ୍ଭରୁଛନ୍ତି ଏ ବର୍ଷାକାଳରେ ଆଳୀ (ଆମସଖୀ,ଜେମା) ବକାଳିକା ମାଳିକା (ବକ ସମୂହ ଫୁଲମାଳପରି ଯାହାର)ଏହିପରି ଯେଉଁ ନବ କାଳିକା (ନୂଆ ମେଘ) ଦେଖି କାଳିକା (ଚଣ୍ଡୀ) ବୋଲି ବିଗ୍ଭରି ଡ଼ରି କାଳିକାକାନ୍ତ ଯେ ମହାଦେବ– ''ଶିବଶିବ'' ବୋଲି ସ୍ମରଣେ କରେ । ସେ ତ ମତ୍ତକରୀଗତି (ତା ଗତିରେ ହାତୀ) କାଳିକାର ବାହନସିଂହ–ହାତୀ କି ଦେଖିଲେ ସିଂହ ମାରି ପକାଏ । ଅତଏବ ଆମେ ତାଙ୍କୁ କିପରି ରକ୍ଷା କରିବା–ଏ ବର୍ଷା କାଳରେ ମେଘ ଉଠିଲାବେଳେ ତାକୁ କିପରି ବିରହରୁ ରକ୍ଷା କରିବା ଏହି ଭବ–କିନ୍ତୁ ଭବେ (କୌଣସି ପ୍ରକାରେ) ଏ କାଳକୁ ବଞ୍ଚିଲେ (କଟାଇ ଦେଲେ) କାଳକାଳକୁ କଥା ଥିବ ( ଆମ ନାଁ ରହିଯିବ ) । କିନ୍ତୁ ଏ ଯେ ଦିନ ସେ ଏକେ କ୍ଷୀଣ (ବଳହୀନ) ଦୀନ (କୁତ୍ସିତ, ଅସୁନ୍ଦର) ( ଖରା କ୍ଷୀଣିଲା ବାଟ ପ୍ରଭୃତି ନଥିବାରୁ ) ପୁଣି ବଲ୍ଲଭ ମେଳକୁ ( ବଲ୍ଲଭ ପଦରେ ଏଠାରେ ବଲ + ଲଭ ବା ଭଲ + ଲଭ ଏପରି ବଲ୍ଲଭ ବା ଭଲ୍ଲଭ ଅର୍ଥାତ ବଳ୍ଭ ଲଭ ଏପରି ଅର୍ଥ ଶ୍ଳେଷ ମଧ୍ୟ ଅଛି– (ତା ନ ହେଲେ ଏପରି ପଦ ପ୍ରୟୋଗର ଏଠାରେ କୌଣସି କାରଣ ଦେଖାଯାଉ ନାହିଁ ।) ନ ଲଭୁଁ ( ପାଇବା ପୂର୍ବରୁ ) ଦୁର୍ଦ୍ଦିନ (ମେଘାଚ୍ଛନ୍ନ ଦିନ ବା ମନ୍ଦଦିନ) ହେଲା । (ମେଘାଚ୍ଛନ୍ନେ ଽ ହ୍ନି ଦୁର୍ଦ୍ଦିନଂ– ଇତ୍ୟମରଃ )

୨–ଆନମାନଙ୍କୁ (କାମୀଭିନ୍ନ ଅନ୍ୟ ଲୋକମାନଙ୍କୁ) ହିତ (ମଙ୍ଗଳ କର)–ଏକଥା ସତ । କାମୀଜନଙ୍କୁ (ବିରହି କାମୁକମାନଙ୍କୁ) ଏ (ବର୍ଷାକାଳ) ଅହି ପରା (ସାପପରି) ଅହିତ

ଯଦଇଁ ସୁନ୍ଦରୀ ଦରୀଭୂତରୁ ଗଣ୍ଡ ଧରି ଧରିତ୍ରୀ ଶୟନ କରିଛି ।
କଣ୍ଠେ ଜୀବନ ବନ ପୂର୍ଣ୍ଣ ନୟନ ଘନ ଘନ ନିଶ୍ୱାସକୁ ଛାଡୁଛି ରେ ।
ସହଚରି । ପକାଇ ଆପଣା ଅଙ୍କର । ଲେଡ଼ିଲେ ନ ଲଗଇ କର ।
ଯେହୁ ଏଡ଼େ ଦୁର୍ବଳ ଝଞ୍ଜାନିଳ ପ୍ରବଳ ଉଡ଼ି ଯାଇଟି ଯନ୍ କରରେ । ୩ ।
ଘୋଟୁଁ ଘଟକୁ ମାର ଚିତ୍ତେ ଘଟ କୁମାର ପିକ ଡାକକୁ ଶୁଣି ସେହି ।
ଏ ନାଦ ସହୀ ସହି ହୋଇ ମହା ବିରହୀ ଜୀବନେ ରହିବଟି କେହି ରେ ।
ସହଚରି । ପ୍ରନିତ ବେଳେ କର୍ଣ୍ଣେ କର । ଦେବା ତା ଏ ଉପାୟ କର ।
ପୟୋଧରକୁ ଧର ବିସ୍ମରି ପୟୋଧର ଗ୍ରାସେଟି ପୁରେଦରେ ଭର ହୁରେ । ୪ ।

---

(ଅମଙ୍ଗଳକର) କିପରି ହିତ ? ସାନୁମାନରୁ (ପର୍ବତରୁ) କୃଶାନୁ (ଅଗ୍ନି) ହତ (ଲିଭିଲ) ଭାନୁ (ସୂର୍ଯ୍ୟ) ର ଭାନୁ (ତେଜ, ଖର) ତାପରୁ (ତାତିରୁ) ମହୀ (ପୃଥିବୀ–ମାଟି) ନିସ୍ତରିଲ (ରକ୍ଷା ପାଇଲା) । କିନ୍ତୁ ଅହିତ କାହିଁକି ? ବିରହ ଅଗ୍ନୀ (ହୃଦୟରେ) ଏବେ ଜଳେ (ଜଳୁଛି); ସେ (ସେ ଅଗ୍ନି) ଜଳେ (ବର୍ଷା ପାଣିରେ) ହତ ନୁହେ (ଲିଭୁନାହିଁ) ପୁଣି ଏକାଳ ଘନ କୋଳେ (ମେଘ ଦେହରେ) ଶତହ୍ରଦା (ବିଜୁଳି ଛଳରେ) ଜାତବେଦ ( ଅଗ୍ନି ) କୁ ଜାତ କରୁଛି ସତ (ଏହି ତ ଦେଖୁଛ ! )

୩–ଦରୀଭୂତରୁ (ଭୟଯୁକ୍ତ) ହେବାରୁ [ପୂର୍ବରୁ ଭୟଯୁକ୍ତ ନଥିଲା ବର୍ଷା କାଳ ଦେଖି ଭୟଯୁକ୍ତ ହେଲା । ଏହିପରି ଭବ–ଦର (ଭୟ) ଶବ୍ଦରୁ ଅର୍ଶାଦିଭ୍ୟଃ ଅଚ୍ ପ୍ରତ୍ୟୟ କରି ଦର (ଭୟଯୁକ୍ତ) ଅର୍ଥ କରିବାକୁ ହେବ ।] ଗଣ୍ଡ ଧରି–ଗାଲରେ ହାତ ଦେଇ ଧରିତ୍ରୀ ଶୟନ କରିଛି (ଭୂଇଁରେ ଶୟନ କରିଛି); କଣ୍ଠେ ଜୀବନ ପ୍ରାଣ କଣ୍ଠାଗ୍ରତ) ବନ (ଜଳ–ଏଠାରେ ଲୋତକ ପୂର୍ଣ୍ଣ ନୟନ ହୋଇ; ଆପଣା ଅଙ୍କର (ଆମ କୋଡ଼ରେ) ପକାଇ ଲେଡ଼ିଲେ ଦରଶିଲେ ନ ଲଗାଁନ୍ତ କର (ହାତକୁ ଲାଗୁନାହିଁ) [ଅତି ଦୁର୍ବଳ ଓ ଶୀର୍ଣ୍ଣ ହୋଇଥିବା ହେତୁରୁ–ଏହି ଭାବ] ଅତଏବ ଝଞ୍ଜାନିଳ (ଝଡ଼ି ପବନ) ପ୍ରବଳ ହେଉଛି । କାଳେ ଉଡ଼ି ଯାଏଟି ? ଝଞ୍ଜାନିଳଃ ପ୍ରାବୃଷି ଯୋ ବାସନ୍ତୋ ମଳୟା ନିଳଃ”–ଇତି ତ୍ରିକାଣ୍ଡ ଶେଷ;

୪–ଘଟକୁ (ଶରୀରକୁ) ମାର (କନ୍ଦର୍ପ) ଘୋଟୁ (ଯୌବନ ଆରମ୍ଭ ହେବା ପରେ) ଯେ ପିକ ଡାକକୁ (କୋକିଳ ସ୍ୱରକୁ) ଶୁଣି ଘଟ କୁମାର (ଅଗସ୍ତି ଋଷି ଯେ କି କୁମ୍ଭରୁ ଜନ୍ମ ହୋଇଥିଲେ) [ଅଗସ୍ତ୍ୟଶ୍ଚ ପୁଲସ୍ତ୍ୟଶ୍ଚ ବୈଶମ୍ପାୟନ ଏବଚ, ସୁମନ୍ତୁ ଜୈମିନି ଶ୍ଚୈବ ପଞ୍ଚୈତେ ବଜ୍ର ବାରଣାଃ ।] ବିରହ ହେତୁରୁ ପିକସ୍ୱର ବଜ୍ରପରି ଲାଗେ । ବଜ୍ର ଶୁଣିଲେ ଲୋକେ ଅଗସ୍ତ୍ୟ ଆଦି ସ୍ମରଣ କରନ୍ତି । ଏ ନାଦ (ଏ ପ୍ରକୃତ

କରି ପିକକୁ ମୂକ ମକ ମକ ଶାମୁକ କାମୁକ ଚମକନ୍ତୁ ନିତ୍ୟେ ।
ଗମା ହେବାକୁ ଶିବା ଶିବାଗଣ ପୋଷିବା ଶିବାଙ୍କୁ ମନାଇବା ବ୍ରତେ ରେ ।
ସହଚରି । ତୋଷି ଖଣ୍ଡ ପରଶୁଧର । ନିତି ଲିପାଅ ସୁଧା ପୁର ।
ଧନକୁ ଉପଗ୍ରହ ଧନକୁ କି ବିଗ୍ରହ ପେଷ ତା ନ ପଗ୍ରରି ଘ୍ରର ରେ । ୫ ।

---

ବଜ୍ରନାଦ)କୁ ମହା ବିରହୀ ସହୀ (ସଖୀ)ସହି (ସହନ କରି) କେହି (କିପରି)ବର୍ଞ୍ଚି-ରହିବଟି ? ଅତଏବ ସ୍ତନିତ ବେଳେ (ବଜ୍ର ଗର୍ଜନ ବେଳେ—ସ୍ତନିତଂ ବଜ୍ରନିର୍ଘୋଷଃ ଇତ୍ୟମରଃ) ତା କାନରେ ହାତ ଦେଇ ଦେବା—ଏହି ଉପାୟ କର । ପୟୋଧର ( ମେଘ ) ସେ ପୟୋଧର ସ୍ତନକୁ ଧର (ପର୍ବତ) ବିଗ୍ରହି ଗ୍ରାସେଟି । [ବଜ୍ର ପର୍ବତ ଭର୍ଗ୍ନ ଦିଏ । ] ଅତଏବ ସଖୀକି ପୁରେଦରେ (ଘର ଭିତରେ) ଭର (ଭର୍ତ୍ତି କର) ।

୫—ପିକକୁ ମୂକ କରି ଶାମୁକ ମକ ମକ ହେଉଛି । [ବର୍ଷା କାଳରେ ପିକର ଶବ୍ଦ ବନ୍ଦ ହୋଇଯାଏ । ଶାମୁକା ପାଣି କୂଳେ ମକ ମକ ଶବ୍ଦ କରେ । ସେଥିରେ କାମୁକ ଚମକେ—ବର୍ଷାକାଳ ହେଲଣି ବୋଲି ବ୍ୟସ୍ତ ହୋଇପଡ଼େ ।] ଅତଏବ ଗମା (ଏଠାରେ ଆମର ସଖୀ) ତାକୁ କିପରି ରକ୍ଷା କରିବା ? ସେ ଶିବା ହେବାକୁ (ମଙ୍ଗଳ ଯୁକ୍ତା ହେବାକୁ, ତାର ମଙ୍ଗଳ ହେବା ପାଇଁ) ଶିବାଗଣ (ବିଲୁଆ ମାନଙ୍କୁ) ପୋଷିବା । ତେବେ ସେ ଶାମୁକା ଯାକ ଖୋଜି ଖାଇଯିବେ ଏବଂ ଶିବାଙ୍କୁ (ପାର୍ବତୀଙ୍କୁ) ବ୍ରତ (ପୂଜା ଉପାସ ପ୍ରଭୃତି ଦ୍ୱାରା) ମନେଇବା (ସନ୍ତୁଷ୍ଟ କରିବା) ତାହାହେଲେ ଶିବା (ବିଲୁଆ ବା ଶିଆଳ) ଆମର କିଛି ଅନିଷ୍ଟ ନ କରି କେବଳ ଶାମୁକ ଖାଇବାରେ ରହିବ । ବିଲୁଆ ପୋଷା ମାନିବା ଜନ୍ତୁ ନୁହନ୍ତି । ସେଥିପାଇଁ ପାର୍ବତୀଙ୍କୁ ମନାଇବା ଦରକାର । ଖଣ୍ଡ ପରଶୁଧର (ମହାଦେବ ଓ ଚୂନରା ଗଜ): ମହାଦେବଙ୍କୁ ତୋଷିଲେ ବିଲୁଆ ପୋଷିବାରେ ଉପକାର ହେବ କାହିଁକିନା ସେମାନେ ଶିବା (ମହାଦେବଙ୍କର) । ପୁଣି ଚୂନରା ଗଜଙ୍କୁ ସନ୍ତୋଷ କରି ପ୍ରତିଦିନ ଘରେ ସୁଧା (ଚୂନ) ଲିପାଅ, ତାହାହେଲେ ଚୂନ କରିବା ପାଇଁ ବହୁତ ଶାମୁକା ବଳେ ପୋଡ଼ା ହେବ । ଧନକୁ (ଲାବଣ୍ୟବତୀକୁ) ଉପଗ୍ରହ (କାର୍ଯ୍ୟ) ହେବ । ତେବେ ଧନକୁ (ପଇସା ଖର୍ଚ୍ଚକୁ—ପଇସା ଖର୍ଚ୍ଚ ନ କରିବାକୁ—ନିଷେଧାର୍ଥେ ଚତୁର୍ଥୀ)କି ବିଗ୍ରହ କରୁଛ ? ତା (ଧନକଥା) ନ ପଗ୍ରରି ବିଲୁଆ ଓ ଚୂନରା ଗଜ ଖୋଜିବା ପାଇଁ ଘ୍ରର କି ଲୋକ ପଠାଅ ।

[ଖଣ୍ଡପର୍ଶୁଃ ପର୍ଶୁଗମେ ଶଙ୍କରେ ଚୂର୍ଣ୍ଣ ଲେପିନି—ଇତି ମେଦିନୀ ।]

ଦେଖ କେକୀ କଳାପ ନାଚେ ଟେକି କଳାପ ବିପ୍ରଳାପ କରୁଛି କେତେ ।
ଏହାର କି ଲବଧ କରି ଅବଧ ବଧ ବ୍ୟାଧଙ୍କୁ କହିବା କି ହତେ ରେ ।
ସହଚରି । ପର୍ଣ୍ଣବାଡ଼ ଲଗୁଡ଼ ପାଶ । ଘେନି କରନ୍ତୁ ବେଗେ ନାଶ ।
କରି ଯା ପତ୍ର ଗୋତ୍ର ବ୍ୟଜନ ଆତପତ୍ର ଦେବଙ୍କୁ ଦେବାକୁ ମନାସ ରେ । ୬ ।

ନୁହ ଏଥେଁ ଉଦାସ ଦାସ କରିବା ଦାସ ଆଣୁ ସେ ପାଶେ ପାଶେ ଧରି ।
ଡ଼ାକେ କାଳକଣ୍ଟକ ବିରହିଣୀ କଣ୍ଟକ ଯାଉ ତା ଉତପାତ ସରି ରେ ।
ସହଚରି । ଉପାଡ଼ିବା ପୁଷ୍ପ ଲତାକୁ । ବିମନା ନ କରନ୍ତୁ ତାକୁ ।
ସୁମନାରେ ସୁମନା ଲେଭୀ ଭୃଙ୍ଗ ସୁମନା ହୋଇ ତାପିବେ ସୁମନାକୁ ରେ । ୭ ।

ମରାଳ ମାନସକୁ ଯାଉଛି ମାନସକୁ ଏ କଥା କେବେ ନ ଆଣିବ ।
ଯାର ନାହିଁ ଜୀବେଶ ତାର ଜୀବ ଜୀବେଶ ଦେଶରେ ପ୍ରବେଶ କରିବ ରେ ।
ସହଚରି । ପକ୍ଷ ପକ୍ଷରୁ ଉଡ଼ି ଯାଇ । ଛାଡ଼ି ଦେବା ଉପାଡ଼ି ତାହିଁ ।
ଆମ୍ଭ ନେତ୍ର ସମ୍ମତି ପତି ସଙ୍ଗତି ଗତି ପାଇବା ଯାଏ ଥାଉ ରହି ରେ । ୮ ।

---

୬—କେକୀ କଳାପ (ମୟୂର ସମୂହ) କଳାପ (ପିଛ) ବିପ୍ରଳାପ (ବିରୋଧୋକ୍ତି) (ବିପ୍ରଳାପ ବିରୋଧୋକ୍ତିଃ—ଇତ୍ୟମରଃ )—ବିରୋଧୀ ଲୋକ ଡ଼ାକିଲା ପରି କଥା; ମୟୂରର ସ୍ୱର କେକା—ଯେପରି କି ସେ ମାରିବାକୁ ଖୋଜି ଡ଼ାକୁଛି ବିରହିଣଃ କେ; (ବିରହୀ ପୁରୁଷମାନେ କାହାନ୍ତି); ବିରହିଣ୍ୟଃ କାଃ ! ( ବିରହୀ ସ୍ତ୍ରୀମାନେ କାହାନ୍ତି ) ଏହି ଅଭିପ୍ରାୟ । ଲବଧ—ଲଭ; ଅବଧ ବଧ—ସ୍ତ୍ରୀ ହତ୍ୟା [ ସ୍ତ୍ରୀ ଅବଧ୍ୟ—ଏ ଶାସ୍ତ୍ର ନୀତି ] ବ୍ୟାଧଙ୍କୁ ( ଶବରଙ୍କୁ ) ମୟୂର ହତେ ( ମାରିବା ପାଇଁ ) କହିବା କି ? ପର୍ଣ୍ଣବାଡ଼—ପତ୍ରବାଡ଼; ଲଗୁଡ଼—ଠେଙ୍ଗା; ପାଶ—ଫାଶ, ଜାଲ; ଏ ସବୁ ମୟୂର ମାରିବା ଉପାୟ; ଯା (ଏହି ମୟୂର)ର ପତ୍ର ଗୋତ୍ର (ପରସବୁ) ବ୍ୟଜନ (ବିଞ୍ଚଣା) ଆତପତ୍ର (ଛତା) କରି ଦେବଙ୍କୁ ଦେବାକୁ ମନାସ (ମାନସ କର); ତେବେ ଦେବଙ୍କ ଦୟାରୁ ଏ ସହଜରେ ମରିବ ଓ ଏହାକୁ ମାରିବାର ଦୋଷ ଲାଗିବ ନାହିଁ । ମୟୂର ଚନ୍ଦ୍ରିକାର ବିଞ୍ଚଣା ଓ ଛତା ଦେବତାଙ୍କୁ ଦିଆଯାଏ ।

୭—ଏଥେଁ (ଏ ବିଷୟରେ), ଉଦାସ—ଅମନଯୋଗୀ; ଦାସ—କେଉଟ; ଦାସ କରିବା ଗୁକର ରଖିବା; ପାଶରେ—ଜାଲରେ; ପାଖକୁ କାଳକଣ୍ଟକ (ଡ଼ାହୁକ)କୁ ଧରି ଆଣୁ । "କୈବର୍ତ୍ତୋ ଧୀବର ଦାସଃ"—ଇତ୍ୟମରଃ । ସେ ବିରହିଣୀର କଣ୍ଟକ (କଣ୍ଟାପରି ଶତ୍ରୁ) ବିମନା—ବିମର୍ଷ; ପୁଷ୍ପଲତାମାନେ ନ କରନ୍ତୁ । ତାକୁ (ପ୍ରେମାକୁ); ସୁମନା (ଫୁଲ) ସୁମନା ଲେଭୀ (ଫୁଲ ଲୋଭୀ) ସୁମନା (ରସିକ) ହୋଇ ସୁମନାକୁ (ଉତ୍ତମମନ ଯାହାର, ପ୍ରେମାକୁ) ତାପିବେ (କଷ୍ଟ ଦେବେ) ।

୮—ମରାଳ (ରାଜହଂସ) । ବର୍ଷାରେ ପାଣି ଗୋଳିଆ ହେବାରୁ ମାନସକୁ (ମାନସ ସରୋବରକୁ)

ଜାତ ହୋଏ ସ୍ଫୋଟକ ଯେ ଝଟକ ହାଟକ ତନୁରେ ଲଗିଲେ ଚନ୍ଦନ ।
ଏ ମହୋହ୍ମଜ ଜଳ ଜ୍ୱଳନ ଜନୁଷଜ ଛୁଇଁଲେ କରିବ ଦହନ ରେ ।
ସହଚରି । ଏହାକୁ ଯତ୍ନ କରିଥିବା । ଭ୍ରମରେ ଚତ୍ୱରେ ନ ନେବା ।
ହତ ଉଶୀର ବାଟି କଇ ପଗୟ ବାଟି ଜଳା ଜବାଟିକି ନାଶିବା ରେ । ୯ ।

ଏ ଦୁରନ୍ତ ଦର୍ଦ୍ଦୁର ଚେତନା କରେ ଦୂର ଭିଦୁର କାହିଁ ଆନେ ପଡ଼ି ।
ଜରମକୁ ଏହାର ହର ହାର ଆହାର ଗରୁଡ଼ଂ ଜଇ କିବା ଲେଡ଼ି ରେ
ସହଚରି । ଅରଜି ଅଛି ଏ ଉତ୍ସବ । ଗରଜି ଗରଜି ମରିବ ।
କେ ହେବ ଏ ବରଦ ହୋଇ ସିଂହ ଶରଦ ନୀରଦ ଦ୍ୱିରଦ ଭଞ୍ଜିବ ରେ । ୧୦ ।

---

ଯାଉଛି—ଏ କଥା ମାନସକୁ (ମନକୁ) ଆଣ ନାହିଁ । ଏହା ପ୍ରକୃତ ନୁହେ । ପ୍ରକୃତରେ ଯାର (ଯେଉଁ ଯୁବତୀର) ଜୀବେଶ (ବର, ସ୍ୱାମୀ) ନାହିଁ ତାର ଜୀବ ଜୀବେଶ ଦେଶରେ (ଯମ ପୁରରେ) ପ୍ରବେଶ କରିବାର ଲକ୍ଷଣ ଏ । ତେବେ ଏହାକୁ କିପରି ବନ୍ଦ କରିବା । ଏ ସିନା ପକ୍ଷ ପକ୍ଷରୁ (ସାହାଯ୍ୟରୁ) ଉଡ଼ି ଯାଉଛି । ତାହିଁ (ସେହି ପକ୍ଷକୁ) ନେବ ସମ୍ପରି (ଆଶ୍ରୁଭ ଭାଗ୍ୟ—ଜେମା) ପତି ସଙ୍ଗତି (ବର ସ୍ୱାଙ୍ଗରେ ରହିବା ରୂପ ଗତି, ଭଲ ଅବସ୍ଥା)—["ଯୁବତୀନାଂ ଗତି ଭର୍ତ୍ତା"—ଇତି ବଚନଂ] ରହିଥାଉ—ମାନସକୁ ନ ଯାଉ ।

୯—ଯେଉଁ ହାଟକ (ସୁନା) ପରି ଝଟକୁ ଥିବା ତନୁ (ଶରୀର) ରେ ଚନ୍ଦନ ଲଗିଲେ (ବିରହ ଯୋଗୁଁ) ସ୍ଫୋଟକ (ଫୋଟକା) ହୋଇଯାଏ ତାକୁ ଜ୍ୱଳନ (ଅଗ୍ନି)ର ଜନୁଷଜ ଏହି ଯେ ମହୋହ୍ମଜ (ଆକାଶରୁ ପଡୁଥିବା ସ୍ୱଚ୍ଛ ଜଳ) ସେ ଛୁଇଁଲେ ପୋଡ଼ି ଦେବ । [ 'ଅଦ୍ଭ୍ୟୋଽଗ୍ନିଃ'—ଜଳରୁ ଅଗ୍ନି ବା ତେଜ ସୃଷ୍ଟ ହୋଇଛି ବୋଲି ବୈଦିକ ବା ଦାର୍ଶନିକ ମତ] କିମ୍ବା ସମୁଦ୍ରରୁ ବାଡ଼ବାଗ୍ନି ଜନ୍ମହୁଏ । ଏପରି ମଧ୍ୟ ବୁଝା ଯାଇ ପାରେ । ଏହାକୁ (ଜେମାକୁ) ଭ୍ରମରେ (ଭୁଲରେ) ଚତ୍ୱରେ (ଅଗଣାକୁ) ଅର୍ଥାତ୍ ବର୍ଷାପାଣି ପଡ଼ିବା ଭଳି ସ୍ଥାନକୁ; ହତ ଉଶୀର—ମଇ ଗନ୍ଧ ବେଣାଚେର; ବାଟୀ କଇ ପଗଏ—ଚାଟୁଳି ବଢ଼ିଲ ପରି ବଦଳ କରି (ଶୀତଳରେ) ବାଟି [୧୨ ଛାନ୍ଦ ୩୦ ପଦ ଟୀକା ଦେଖ ]

୧୦—ଦୁରନ୍ତ—ଦୁଷ୍ଟ ; ଦର୍ଦ୍ଦୁର—ବେଙ୍ଗ; ଭିଦୁର—ବଜ୍ର; କାହିଁ ଆନେ ପଡ଼ି—ଏହା ଉପରେ କାହିଁକି ପଡୁ ନାହିଁ । ଜର୍ମକୁ (ଭାଗ୍ୟକୁ) ଗରୁଡ଼ (ଯେ ସାପ ଖାଏ ସେ) ଲେଡ଼ି (ବାଛି) ହର ହାର (ସାପ) ଆହାର କଲା କି ? ନହେଲେ ସାପ ବେଙ୍ଗକୁ ଖାଇ ଯାଆନ୍ତା । କିଏ ଏପରି (ବରଦାୟକ) ହେବ । ଶରଦ (ଶରତ କାଳ) ରୂପ ସିଂହ ହେଉ ତାହାହେଲେ ଦ୍ୱିରଦ (ହାତୀ) ରୂପ ନୀରଦ (ମେଘ) ଭଞ୍ଜିବ (ଗର୍ଜିବ—ପଳାଇବ ) ।

ଏକାଛ  ଏକା ଏକାକୀରେ ପକାଇ ଡ଼କା ବିଦ୍ୟୁ ପତ଼କା ଅଛି ବହି ।
କି କଲେ ଗିରିଟେକା ଚିତ୍ତ ଚମକ ଟେକା କରକା ମାରୁଛି ତୁହାଇରେ
ସହଚରି । ଏହି କାମନା ପଉରୋଷେ । ଏହା ଭିଆଇ ଅଛି ରୋଷେ ।
ଯଥା ନୀପଜାଳକ ତଥା ପରି ପୁଳକ ପୂରୁ ସ୍ୱତନୁ ତନୁ ଦେଶେ ରେ । ୧୧ ।
ଯେମନ୍ତ ନୀର ଧାର ତେମନ୍ତ ନିରନ୍ତର ନୀର ନୀରଜନେତ୍ରୁ ବହୁ ।
ଯଥା ପଙ୍କିଳା ମହୀ ମହିଳାଗଣ ସେହି ପ୍ରତି ପ୍ରତି ଦିନରେ ହୋଉ ରେ
ସହଚରି । ପିକ ପ୍ରାୟ ବାଣୀ ନ ଫିଟୁ । ଅନ୍ଧାର ପ୍ରାୟ ଚିନ୍ତା ଘୋଟୁ ।
ମାର ମାର୍ଗଣଗଣ ପ୍ରହାରେ ପୁଣ ପୁଣ ମାଳତୀ ସଙ୍ଗେ ହୃଦ ଫୁଟୁ ରେ । ୧୨ ।

---

୧୧—ଏକାକୀ-( ଭର୍ତ୍ତୃହୀନା ନାରୀ ବା ଭାର୍ଯ୍ୟାହୀନ ପୁରୁଷ ) ଏକା ( ନିଶ୍ଚୟ ) ବିଦ୍ୟୁ-ପତ଼କା ( ବିଜୁଳି ରୂପ ପତାକା—ବାନା ) ଟେକି ଡ଼କା ପକାଉଛି । ଗିରିଟେକା—ଗୋବର୍ଦ୍ଧନ ଗିରିକୁ ଟେକିଥିବା କୃଷ୍ଣ କି କଲେ? ( କିଛି କଲେ ନାହିଁ ) । ମେଘକୁ ନଷ୍ଟ କରି ଦେଇଥିଲେ ଭଲ କରିଥାନ୍ତେ । [ ଇନ୍ଦ୍ର ପୂଜାପାଇଁ ଯାହା ଯୋଗାଡ଼ ହୋଇଥିଲା, କୃଷ୍ଣ ପିଲାଦିନେ ସାଙ୍ଗମାନଙ୍କୁ ଧରି ତା ସବୁ ଖାଇଗଲେ ଏବଂ ଇନ୍ଦ୍ର ପୂଜା କରିବାକୁ ଲୋକଙ୍କୁ ମନାକଲେ । ତେଣୁ ଇନ୍ଦ୍ର ରାଗ ହୋଇ ସାତ ଦିନ କାଳ ବରଷା କଲେ । କୃଷ୍ଣ ଗୋବର୍ଦ୍ଧନ ଗିରି ଟେକି ଧରି ସମସ୍ତଙ୍କୁ ତା ତଳେ ରଖି-ଦେଲେ । ଇନ୍ଦ୍ର କିଛି କରି ପାରିଲେ ନାହିଁ । ଭଗବତ ୧୦ମସ୍କନ୍ଧ ଗୋପଲୀଳା ଦେଖ ] । ତେଣୁ ବିରହୀର ଚିତ୍ତ (ମନ)କୁ ଚମକ ଭଳି କରକା ( କୁଆପଥର,—ଏଠାରେ ବଡ଼ ପାଣି ଟୋପା ) ରୂପ ଟେକାକୁ ମାରୁଛି । ରାଗରେ ପୌରୁଷ ( ବାହାଦୁରି ନିମନ୍ତେ ) ଏହି କାମନା ଭିଆଇଛି ( ଏହି ଇଚ୍ଛା କରିଛି ) କଣ ? ଯଥା ( ଯେପରି ) ନୀପଜାଳକ ( କଦମ୍ବଫୁଲମାନେ ) ଫୁଟି କରି ଦିଶୁଛନ୍ତି ତଥା ( ସେହିପରି ) ପରିପୁଳକ (ରୋମାଞ୍ଚ) ସ୍ୱତନୁ ( କାମର ) ତନୁଦେଶେ ( ଶରୀରରେ ) ପୂରୁ ( ପୂର୍ଣ୍ଣ ହୋଇ ଯାଉ ) । ବର୍ଷାରେ କଦମ୍ବଫୁଲ ଫୁଟେ । ତାକୁ ଦେଖି ବିରହୀର ସାତ୍ତ୍ୱିକ ବିକାର ହୁଏ—ଏହିଭାବ ।

୧୨—ଉପର ପଦର କାମନା ଚାଲିଛି ।

ନୀରଧାର ( ଜଳଧାର ) ଯେପରି ପଡୁଛି ସେହିପରି ନୀରଜ-ନେତ୍ରୁ ( ପଦ୍ମ ଆଖିରୁ ) ନୀର ( ପାଣି—ଲୁହ ) ବୋହୁ । ମହୀ ( ପୃଥିବୀ ) ବର୍ଷାରେ ଯେପରି ପଙ୍କିଳ ( ଗୋଳିଆ, ମଇଳା ) ହୋଇଛି, ମହିଳାଗଣ ( ଜେମାଗାଳ ) ସେହି ପ୍ରତି ( ସେହି ସଦୃଶ, ସେହିପରି ) [ ପ୍ରତି ପ୍ରତି ନିର୍ଦ୍ଧୋ ବୀପ୍ସା, ଲକ୍ଷଣାଦୌ ପ୍ରୟୋ-

ତାହାର କାନ୍ତି ଗୁପତ ସପତ ହରି ବତ ପର୍ବତବତ ହୋଉ ଜ୍ଞାନ ।
ରଖିଛି ସବୁଠାର ଏହି ପ୍ରକାରେ ଠାର ଧୈର୍ଯ୍ୟ କୁଠକୁଠାର ଘନ ରେ
ସହଚରି । ଯେତେ ଉପାୟ ଭଜିଲଇଁ । ସେ ଚରିତ କିଛି ନୁହଇ ।
ବୃଦ୍ଧି ସରିତ ତୁରିତକୁ ଘେନ ବାରିତ ନୃପତି ଆନ କି କରଇ ରେ । ୧୩ ।

କେ ପୁଣି ବେଗେ ଯିବ ଜୀବଧବେ କହିବ ଜୀବଧବେ ହୋଉଛି ଜୀବ ।
କଉଁକାର୍ଯ୍ୟ ଭଜିବ ପଛେ ଯେମନ୍ତ ଯିବ ନ ଦେଖିବ ମୁଖ ରଜୀବ ରେ
ସହଚରି । ତୁମ୍ଭେ ଚନ୍ଦ୍ର ସେ ଜୀବଞ୍ଜୀବ । ଶୁଣିବା ଉପାୟ ସର୍ଜିବ ।
ଉଚ୍ଚରେ ଥିଲେ ଜୀବ ଏ ଶୁଭ ଅରଜିବ ଆସିବା ବିଳମ୍ବ ତେଜିବ ରେ । ୧୪ ।

ପୂରି ପୂରିଲା ଏହି କାଳେ ହା ରବେ ତହିଁ ନ ସହି ସହୀ ଗଲେ ଧାଇଁ ।
ଅଛି କି ନାହିଁ ତୁଳାକରଣେ ପାଣ ତୁଳା ଜାନୁବର୍ତ୍ତୁଳା ନାସେ ଦେଇ ରେ
ସହଚରି । ଚିତ୍ର ପିତୁଳା ପ୍ରାୟ ଗୃହିଁ । ଟେକି ଫୁଙ୍କିଲେ କର୍ଣ୍ଣକୁଇ ।
ଅର୍ଣ୍ଣ ପର୍ଣ୍ଣରେ ସିଞ୍ଚି ଶୀର୍ଣ୍ଣ କଟିକି ବିଞ୍ଚି ଲଲାଟେ ଚନ୍ଦ୍ର ଚୂର୍ଣ୍ଣ ଦେଇ ରେ । ୧୫ ।

---

ଗତଃ–ଇତ୍ୟମରଃ ] ପ୍ରତି ଦିନ ହେଉ । ପିକ ପରି ମହିଳା ଘର ନ ଫିଟୁ; ମେଘ ଅନ୍ଧାର ପରି ତାକୁ ଚିନ୍ତା ଘୋଟୁ । ମାର୍ଗଣ–ଶର; ମାଳତୀ ଫୁଲ ଫୁଟିବା ସଙ୍ଗେ ହୃଦ ସେହି ଶରରେ ଫୁଟୁ ( ବିଦ୍ଧ ହେଉ )–ମାଳତୀ ଫୁଲ ବର୍ଷାକାଳରେ ଫୁଟେ ।

୧୩–ସେହି କାମନା ଗୁଳିଛି

ସପତ ହରି ( ସପ୍ତରଶ୍ମି ସୂର୍ଯ୍ୟ ) ଯେପରି ମେଘରେ ଗୁପତ ହୁଏ (ଲୁଚିଯାଏ ) ସେହିପରି ଜେମା କାନ୍ତି ଗୁପ୍ତ ହେଉ । ପର୍ବତ ଯେପରି ମେଘରେ ଆଛନ୍ନ, ଜେମାର ଜ୍ଞାନ ସେହିପରି ହେଉ । ସବୁଠାର (ସବୁଠାରେ) ଏହି ପ୍ରକାର ଠାର (ଇଙ୍ଗିତ–ସୂଚନା ) ରଖିଛି କିଏ–ଧୈର୍ଯ୍ୟ ରୂପ କୁଠ ( ଶାଳଗଛ )ର କୁଠାର ( କୁର୍‌ହାଡ଼ୀ ) ପରି ଘନ ( ମେଘ ) । " ଅନୋକହଃ କୁଠଃ ଶାଳଃ"–ଇତ୍ୟମରଃ । ଆମେ ଯେତେ କଥା ବିଗ୍ଭର କଲେଇଁ ସେ ସବୁ କିଛି ନୁହେ । କିପରି ? –ବୃଦ୍ଧି ସରିତ ( ବଢ଼ିରେ ମାଡ଼ି ଆସୁଥିବା) ନଦୀର ତ୍ୱରିତ (ବେଗ) କୁ ନୃପତି ଆନ (ରଜାଙ୍କ ଗଣ) ରୂପ ବାରିତ (ବାରଣ), ମନା କଣ କରିପାରେ ? ଏ କଥାକୁ ଘେନ–ବିଗ୍ଭର କର । କଥାରେ କହନ୍ତି–' ନଈ ବଢ଼ିକି ଦିଅଁଙ୍କ ଗଣ '

୧୪–ଜୀବ ଧବେ ( ୧.ସ୍ୱାମୀକୁ ଚନ୍ଦ୍ରଭାନୁକୁ, ୨. ଯମକୁ ) ଯେମନ୍ତ ଯିବ–ଯେବେ ଯିବ । ଜୀବଞ୍ଜୀବ–ଚକୋର; ଶୁଣିବା–ଶୁଣିବା ମାତ୍ରେ; ଉଚ୍ଚରେ ଥିଲେ ଜୀବ–ବୃହସ୍ପତି ଉଚ୍ଚରେ ଥିଲେ [ଏହା ଫଳିତ ଜ୍ୟୋତିଷର ଶୁଭ ଲକ୍ଷଣ]

୧୫–ଏହି ସମୟରେ ଲବଣ୍ୟବତୀର ମୂର୍ଚ୍ଛା ହେଲା । ସମସ୍ତେ ହା ହା କରି କାନ୍ଦି ଉଠିଲେ । ସହୀମାନେ ଯେ ଯେଉଁଆଡ଼େ ଥିଲେ ପହଞ୍ଚିଲେ । ତୁଳା କରଣେ (ତୁଳିବାକୁ, ଜାଣିବାକୁ) ଜାନୁ ବର୍ତ୍ତୁଳା (ଜଙ୍ଘ ଗୋଲ ଯାହାର) । ନାସେ ତୁଳା ଦେଇ ପ୍ରାଣ

ଚଣ୍ଡୀ ରିଷ୍ଟ ଖଣ୍ଡନେ ଚଣ୍ଡୀ ମନାସି ମନେ ଗ୍ରହ ଶାନ୍ତିକି ବିଗ୍ଭରିଲେ ।
ପୀତ ବସନ କାର୍ତ୍ତସ୍ୱର ବହୁତ ଆର୍ତ୍ତସ୍ୱରେ ଭୂସ୍ଥରେ ଉତ୍ସର୍ଗିଲେ ସେ ।
ପ୍ରାଣସହି । ଭଜନ୍ତି ପାଇ ଆଉ ଜୀବ । ଆମ୍ଭ ଉରକୁ ଆଉଜିବ ।
ତେତେବେଳେ ଚେତନ ପାଇ ରାମାରତନ ଧୀରେ ବୋଇଲା ଶିବଶିବ ସେ ।୧୬।
ସଖୀ ଏମନ୍ତ ମତ୍ତକାଶିନୀ ଚିତ୍ତ ହିତ ନିମିତ୍ତ ବଚନ ରଚିତ ।
ପ୍ରସ୍ଥାନ କାନ୍ତ କାନ୍ତ କଲେ ଉଦନ୍ତ ଦନ୍ତଶୋଭିନି କହିଲେ ସାଧୁତ ରେ
ସହଚରି । ରହିଛନ୍ତି କେଉଁ ଦେଶେ । ନର୍ମଦା ନଦୀ ବୃଦ୍ଧି ବଶେ ।
ଗୁଣମଣି କି ଗୁଣେ ସନ୍ତାପିତ ଦ୍ୱିଗୁଣେ ଫଗୁଣେ ହେବେ ପରବେଶେ ରେ । ୧୭।

---

ଅଛି କି ନାହିଁ ବୋଲି ନିଃଶ୍ୱାସ ବାରିଲେ । ଚିତ୍ର ପିତୁଳା ପରି ଆଖି ତରଟି ଦେଇ ପଡ଼ି ଥିବାର ଦେଖି କାନ ଫୁଙ୍କିଲେ । ଅର୍ଣ୍ଣ–ଜଳ; ପର୍ଣ୍ଣ–ପତ୍ର; ଶୀର୍ଣ୍ଣ କଟୀ (ସରୁ ଅଣ୍ଟା ଯାହାର); ଚନ୍ଦ୍ରଚୂର୍ଣ୍ଣ (କର୍ପୂର ଗୁଣ୍ଡ);

୧୬–ଚଣ୍ଡୀ–ପ୍ରଣୟିନୀ ବା ଯୌବନ ମଧ୍ୟସ୍ଥା, ' ଇଷ୍ଟାଚ ପ୍ରେମଦା କାନ୍ତା ଚଣ୍ଡୀ ପ୍ରଣୟିନୀ ତଥା–" ଇତି ଧନଞ୍ଜୟ କୋଷଃ । " ଚଣ୍ଡୀ ଯୌବନ ମଧ୍ୟସ୍ଥା " ଇତିଚ କୋଷାନ୍ତରେ । ଚଣ୍ଡୀର (ଦୁର୍ଦ୍ଦଶା, ଅନିଷ୍ଟ) ଖଣ୍ଡନ ( ନାଶ ) ନିମନ୍ତେ ଚଣ୍ଡୀ ମନାସି ( ଦେବୀଙ୍କ ପାଖରେ ଚଣ୍ଡୀ ଗୁଣାଇବା ମନାସିଲେ ) ଏବଂ ଗ୍ରହ ପୂଜାଦି କରିବେ ବୋଲି ମଧ୍ୟ ମନରେ ବିଗ୍ଭରିଲେ ( ଜାଚିଲେ ) । ପୀତବସନ ( ହଳଦିଆଲୁଗା ) କାର୍ତ୍ତସ୍ୱର (ସୁନା) ଆର୍ତ୍ତସ୍ୱରେ ( ବ୍ୟାକୁଳ ହୋଇ ) ଭୂସ୍ଥରେ ( ବ୍ରାହ୍ମଣମାନଙ୍କୁ ) ଦେଲେ । ସଖୀମାନେ ବିଗ୍ଭରନ୍ତି ଆଉ ଜୀବ ( ଚେତା ) ପାଇ ଆମ ଉରଂ(ଛାତି) କୁ ଆଉଜି ବସିବ ?–ବୋଲି ମନେ ଅଛି ।

୧୭–ମତ୍ତକାଶିନୀ (ମତ୍ତ–ଯୌବନ ଦୀପ୍ତୀ ଯୁକ୍ତ କାଶ–ପ୍ରକାଶ ଅଛି ଯାହାର)– ଯୌବନ ଶ୍ରୀ ସମ୍ପନ୍ନା–["ବରାରୋହା ମତ୍ତ କାଶିନ୍ୟୁତ୍ତମା ବର ବର୍ଣ୍ଣିନୀ"–ଇତ୍ୟମରଃ] ମତ୍ତକାଶିନୀର ଚିତ୍ତର ହିତ (ମଙ୍ଗଳ) ନିମନ୍ତେ ସଖୀ ଏପରି ବଚନ ରଚିତ (ରଚନା କଲେ) କିପରି–ହେ ଦନ୍ତ ଶୋଭିନୀ (ସୁନ୍ଦରଦନ୍ତୀ) ତୋର କାନ୍ତ (ସୁନ୍ଦର) କାନ୍ତ (ସ୍ୱାମୀ) ସେ ପ୍ରସ୍ଥାନ କଲେଣି (ଘରୁ ବାହାରିଲେଣି–ଶିବରାତ୍ରି ମେଳାକୁ ଆସିବା ପାଇଁ)–ଏ ଉଦନ୍ତ (ଖବର) ସାଧୁତ କହିଲେ । ନର୍ମଦା ନଦୀ ବଢ଼ିଥିବାରୁ କେରଳ ଦେଶରେ ଅଛନ୍ତି । ହେ ଗୁଣମଣି ହେମା, ତୁ ଆଉ ଦୁଇଗୁଣ ହୋଇ କି ଗୁଣେ (କି ହେତୁରୁ) ସନ୍ତାପିତ ହେଉଛୁ । ସେ ଫଗୁଣରେ ଆସି ପହଞ୍ଚିବେ । ବୋଧହୁଏ କାବେରୀରୁ ଦକ୍ଷିଣ ଅଞ୍ଚଳରେ ନର୍ମଦା କହନ୍ତି ଏବଂ ସ୍ଥେଳ ଗଡ୍ୟ

ଏହୁ ପ୍ରମାଣ ମାଣବକ ମୃଗାକ୍ଷୀ ପ୍ରାଣ ପ୍ରାଣକୁ ତେତେ ଦିନ ରଖ ।
ସମ ଅନୁରାଗରେ ନାହିଁ କଉଁ ନଗରେ ସେହି ନାଗରେ ଲେଖା ରେ ।
ସହଚରି । ମହତ ଯେ ଅଟନ୍ତି ସେହି । ତୋ ହତ ଶୁଣିବାକୁ ସହୀ ।
ମରଣକୁ ବରଣ କରିବେ ରଣ ରଣ-ବାଣ ଗଣ ତାପକୁ ବହି ରେ । ୧୮ ।

ଏ ବାଣୀ ତତକ୍ଷଣ ପରଣକୁ ରକ୍ଷଣ କ୍ଷଣ କାନ୍ତି କାନ୍ତିର ହେଲ ।
ବୀଣାଜିଣା ବଚନା ସୁଲୋଚନା ଶୋଚନା ରଚନା କିଛି ଶାନ୍ତ କଲ ସେ ।
ସହଚରି । ଜାଗ୍ରତ କ୍ଷଣଦା ବାସରେ । ହୋଇଣ ଛନ୍ତି ତା ପାଶରେ ।
ଫୁଲ ନାରାଚ ନାରାଚକୁ ହେଲ କବଚ ଦରଶନ ଲୋଭ ଯହିଁ ରେ । ୧୯ ।

ଘନଘୋଷ ଘୋଷଣ ଷଣପୁଷ୍ପ ଦୂଷଣ କାନ୍ତି ଶୁଣି ସେ ଦିନୁ ମଣେ ।
ତେଜି ମହୀ ଶୟନ ପ୍ରକାଶି ବାତାୟନ ନୟନ ନିବେଶେ ତକ୍ଷଣେ ସେ ।
ସହଚରି । ମାନକୁ ଭଷଇ ଏ ଭଷ । ବାହାରେ ମୃଦୁଶୁଲୀ ପେଷ ।
ହେଲେ କି ମାନବେଶ ସୁତ ଆଜ ପ୍ରବେଶ ଏ ଦେଶ ବୁଝ ଏ ସନ୍ଦେଶ ରେ । ୨୦।

---

ଯେତେବେଳେ କର୍ଣାଟ ଥିଲ ସେତେବେଳେ ହୁଏତ କେରଳ ପାଣ୍ଡ୍ୟକୁ ନିଜର କରି କୌଣସି ସମୟରେ କାବେରୀ ଡ଼େଇଁ ଉତ୍ତରକୁ ମାମା ବିସ୍ତାର କରିଥିଲ । ସେହି ସମୟକୁ ଲକ୍ଷ୍ୟ କରି ଉପେନ୍ଦ୍ରଭଞ୍ଜ କାବ୍ୟ ଲେଖିଛନ୍ତି ।

ଫଗୁଣରେ ରମେଶ୍ୱରରେ ପହଞ୍ଚିବା ପାଇଁ ବର୍ଷା ପୂର୍ବରୁ ବା ବର୍ଷା ଆରମ୍ଭରୁ କାଞ୍ଚିରୁ ବାହାରିବା କିଛି ଦରକାର ବୋଧ ହେଉ ନାହିଁ । କିମ୍ବା ପ୍ରେମ ପତ୍ରାଦିରେ ଏତେ ଦୂରରେ ସଙ୍କେତ ଦିନ ରଖିବା ମଧ୍ୟ ସଙ୍ଗତ ନୁହେ । ସମ୍ଭବତଃ କେବଳ ବର୍ଷା ଋତୁର ନାମ ଧରି କେତେ ଗୁଡ଼ାଏ ବର୍ଣ୍ଣନାର ସୁବିଧା କରିବା ପାଇଁ ଉପେନ୍ଦ୍ରଭଞ୍ଜ ଏଠାରେ କାଳକୁ ଏତେ ପଛକୁ ଘେନି ଆସିଛନ୍ତି ।

୧୮—ହେ ପ୍ରାଣ (ହେ ସଖୀ) ହେ ମାଣବକ ମୃଗାକ୍ଷୀ ( ଶିଶୁ ମୃଗ ପରି ଆଖି ଯାହାର ସେ) [ମାଣବକ—କ୍ଷୁଦ୍ର ମାନବ ଅର୍ଥାତ୍ ଶିଶୁ;] ସାର—ଶ୍ରେଷ୍ଠ; ତୋ ହତ—ତୋ ମୃତ୍ୟୁ; ରଣ ରଣ (କନ୍ଦର୍ପ)ର ବାଣ ଗଣେ (ଶରମାନେ) ତାର ସନ୍ତାପ (ଯନ୍ତ୍ରଣା)

୧୯—କ୍ଷଣ କାନ୍ତି କାନ୍ତି (କ୍ଷଣ କାନ୍ତି—ବିଜୁଳି ପରି କାନ୍ତି—ଦେହ ବର୍ଣ୍ଣ ଯାହାର); ରକ୍ଷଣ—ରକ୍ଷକ; ଶୋଚନା ରଚନା—ଶୋକ କରିବା; ଜାଗ୍ରତ—ଚେଇଁ କରିଥାନ୍ତି; କ୍ଷଣଦା—ରତି; ବାସର—ଦିନ; କିନ୍ତୁ ଫୁଲ ନାରାଚ—(କନ୍ଦର୍ପ)ର ନାରାଚ (ଶର)କୁ କବଚ (ସାଞ୍ଜୁ) ପରି ହେଲ । ଦର୍ଶନ ଲୋଭ (ଚନ୍ଦ୍ରଭାନୁକୁ ଦେଖିବା ଲୋଭ)—ସଖୀ ମାନଙ୍କର ଜଗି ବସିବା ବା ଅନ୍ୟ କିଛି ସେ କବଚ ନୁହେଁ ।

୨୦—ଶଣପୁଷ୍ପ-(ଛଣପଟ ଫୁଲ)ର କାନ୍ତି ଦୂଷଣ (ଦୋଷଯୁକ୍ତ) ହୋଇଛି । କାନ୍ତିରେ (ଦେହବର୍ଣ୍ଣେ ତୁଳନାରେ) ଯାହାର ସେ ଜେମା—ସେହିଦିନୁ ଘନ ଘୋଷ (ଘଡ଼ଘଡ଼ି)

ପୁଂସ ଦୃଶ ସଦୃଶ ଘେନି ସାରସ ରସକଳା ଚୁମ୍ବନ ଦିଏ ରସି ।
କରି ମୃଣାଳନାଳ ମାଳ ତମାଳ ମାଳ ମଞ୍ଜୁଳା ବସି ନାମ ଘୋଷି ସେ ।
ସୁକୁମାରୀ । କାନ୍ତି ଛଳେ ପିନ୍ଧେ ଅମ୍ବର । ହାସ ଛଳେ ଘେନେ କର୍ପୂର ।
ହୋଇ ତଭାବମୟ ନେଲ ଘନ ସମୟ ରକ୍ଷା ହେଲେ ସଜନୀବାର ସେ । ୨୧ ।
ଶରଦ କାଳେ ସୁଧାକର କର ବସୁଧା ଭୂଷାକୁ ଦେଖାଇ ନ ଦେଲେ ।
ଋତୁହୀନ ତୁହିନ ନପୁଣ ହେତୁ ହୀନ କରିବ ବୋଲି ବିଗ୍ରରିଲେ ସେ ।
ସହଚରି । ପଦ୍ମିନୀ ପଦ୍ମବାସ ସଖୀ । ପଦ୍ମନୟନୀ ପଦ୍ମମୁଖୀ ।
ପଦ୍ମକର ପୟର ପଦ୍ମପତ୍ର ଉଦର ପଦ୍ମ କୋଷ ଉରଜେ ଯୋଖି ସେ । ୨୨ ।

---

ର ଘୋଷଣ (ଶବ୍ଦ) ଶୁଣି ଭୂମି ଶୟନ ଛାଡ଼ି ବାତାୟନ (ଝରକା, ପଞ୍ଜର) ପ୍ରକାଶି (ଫିଟାଇ) ଗ୍ରହେ । ସହଚରୀଙ୍କି କହେ ମାନବେଶ ସୁତ (ଗଜପୁତ୍ର, ଚନ୍ଦ୍ରଭାନୁ)

୨୧—ପୁଂସ ଦୃଶ—ପୁରୁଷର ଆଖି—ଚନ୍ଦ୍ରଭାନୁର ଆଖି ସଦୃଶ (ପରି); ଘେନି—ବିଗ୍ରହ କରି; ରସକଳା (ଶୃଙ୍ଗାର ପଣ୍ଡିତା) ଜେମା ତମାଳ ମାଳ ମଞ୍ଜୁଳା (ତମାଳ ସମୂହ-ପରି ସୁନ୍ଦର ବାଳ ଯାହାର) ସେ ମୃଣାଳ ନାଳ (ପଦ୍ମନାଳ)ରେ ମାଳି ତିଆରି କରି ନାମକୁ ଜପେ-ତୁଳସୀ ମାଳିରେ ବିଷ୍ଣୁନାମ ଜପିଲା ପରି । ପୁରୁଷର କାନ୍ତି ଛଳେ (କାନ୍ତିବେ ଲି ବିଗ୍ରରି) ସେହି ପୁରୁଷ ବର୍ଣ୍ଣର ଅମ୍ବର (ହଳଦିଆ ବା କଳାଲୁଗା) ପିନ୍ଧେ । [ କଳାବର୍ଣ୍ଣ ପୁରୁଷ ପକ୍ଷରେ ପ୍ରଶସ୍ତ ମାତ୍ର ଉପେନ୍ଦ୍ରଭଞ୍ଜ ବୋଧହୁଏ ତାହା ପସନ୍ଦ କରି ନାହାନ୍ତି । ପ୍ରଥମ ଛାନ୍ଦ ଶେଷରେ ଚନ୍ଦ୍ରଭାନୁର ଜନ୍ମ ବୃତ୍ତାନ୍ତ ଦେଖ । ] ପୁରୁଷର ହାସ ବୋଲି କର୍ପୂର ଘେନେ । ତଭାବ—ପୁରୁଷର ଭବ; ରକ୍ଷା ହେଲେ—ରକ୍ଷା ପାଇଲେ; ଘନ ସମୟ—ବର୍ଷାକାଳ; ସଜନୀବାର—ସଖୀମାନେ ।

୨୨—ଶରତ କାଳରେ ବସୁଧା ଭୂଷାକୁ ସୁଧାକର (ଚନ୍ଦ୍ର) କର (କିରଣ); ଋତୁହୀନ—ଋତୁମାନଙ୍କ ମଧ୍ୟରେ ନାଗର; ତୁହିନ—ଶୀତଋତୁ; ହେତୁହୀନ—ଜ୍ଞାନ ହୀନ; କିମ୍ବା—ଋତୁହୀନତାର (ଶୀତ କାଳର) ତୁହିନ (ହିମ) ହେତୁହୀନ (ଅଜ୍ଞାନ) କାହିଁକି ବିଗ୍ରରିଲେ କି ? ହିମ ପଦ୍ମିନୀ ବା ପଦ୍ମ ଲତାକୁ ପତ୍ର ଫୁଲ କୋଷ (କେଶର) ସହିତ ମାରି ଦିଏ । ପଦ୍ମିନୀର (ଶ୍ରେଷ୍ଠ ନାରୀର) ଦେହରେ ଏତେ ପ୍ରକାର ପଦ୍ମ ପେଟ ପଦ୍ମପତ୍ର ହାତ, ପାଦ ପଦ୍ମ ଯୋଖି (ଯୋଡ଼ିଲେ) ଉରଜ (ସ୍ତନ ସେ ବି କୋଷ (କେଶର) ସଙ୍ଗେ ସମାନ ହେବ ।

ଶୁକପୋତ କପୋତ ରତ ଶୀତ ମରୁତ କର୍ମିତ କରୁଥାଇ ପୁନ ।
ଏ ଚିନ୍ତା ଅଦଭୁତ ଚିତା ହୃଦେ ସମ୍ଭୁତ ସଜୀବେ ସଜନୀ ଦହନ ହେ ।
ସାଧୁଜନେ । ଏ ଛାନ୍ଦ ଏବେ ହେଲା ଶେଷ । ବୁଧ ବୋଧକ ଏ ରହସ୍ୟ ।
ସୁମରି ଉପଇନ୍ଦ୍ର କହଇ ଉପଇନ୍ଦ୍ର ଭଞ୍ଜ ବୀରବର ଏ ରସ ସେ । ୨୩ ।

---

୨୩–ପୁନ–(ତଥାପି–ଏତେ କଲେ ମଧ୍ୟ) ଶୁକପୋତ (ଶୁଆପିଲା) [ଶୀତ ଶେଷକୁ ଶୁଆ ପିଲା ହୁଏ] ଏବଂ କପୋତ (କୋଡ଼ା, ପାରା) ଏମାନଙ୍କର ରତ (ଶବ୍ଦ) ଶୀତ ମରୁତ (ଶୀତ ପବନ), ଏମାନଙ୍କୁ ବନ୍ଦ କରି ନ ହେବାରୁ ଏମାନେ କେମାକୁ କର୍ମିତ କରୁଥାନ୍ତି । ଏସବୁ କିପରି ବନ୍ଦ କରିବାକୁ ହେବ ଏ ଚିନ୍ତା ଅଦ୍ଭୁତ ଚିତା (ଶ୍ମଶାନାଗ୍ନି) ପରି; (ଚିତା ନିର୍ଜୀବ ଦେହ ପୋଡ଼େ)। ଏ ସଜୀବରେ ସଜନୀ ସଖୀ ମାନଙ୍କୁ ପୋଡ଼ିବାରୁ ଅଦ୍ଭୁତ ଚିତା ପରି ହେଲା ।
ଉମେନ୍ଦ୍ର–ବିଷ୍ଣୁ; ସୁମରି–ସ୍ମରଣ କରି ।



# ଏକୋନ୍ନବିଂଶ ଛାନ୍ଦ

## ( ଚନ୍ଦ୍ରଭାନୁର ରାମେଶ୍ୱର ଗମନ )

ରାଗ—କଲ୍ୟାଣ ଆହାରୀ ।

ଦିନେକ ଦିନେଶ ଦଶ ଦଣ୍ଡ ଭୋଗ ମଣ୍ଡପେ ବସିଛି କୁମାର ।
ସଚିବ ନନ୍ଦନ ପ୍ରବେଶ ହୋଇଲା ପଟନୀ ଶାଢୀ ଅଛି ଶିର ।
କହିଲା । ପୁରୋଧା ସୁତ ଜଣାଇଲା
ଶିବ ଉତ୍ସବ ଦେଖିବାକୁ ତୁମ୍ଭଙ୍କୁ ତାତ ସନମତି ହୋଇଲା । ୧ ।
ଜରଠ କାମିନୀ ବାଳକ ଜାଳକ କେବଳ ରହିବେ ନଗରେ ।
ସର୍ବ ଅର୍ବ ଦନ୍ତୀ ପଦାତି ସ୍ୟନ୍ଦନ ପତି ଯିବେ ତୁମ୍ଭ ସଙ୍ଗରେ ।
ଏଥକୁ । ଅଧିକାରୀ ଶାଢୀ ମୋହର ।
ଏ ବାଣୀ ଚନ୍ଦ୍ର ଉଦିତେ ଉଚ୍ଛୁଳିଲା ନାଗର ଆନନ୍ଦ ସାଗର । ୨ ।
ଏ କାଳେ ଡ଼ଗର ଦିଆଇ ନାଗର ଶୁଣି ନଗ୍ର ଜନେ ଉଚ୍ଛନ୍ନ ।
ଲେଖି ନେଲେ ଆସି ମନ୍ତ୍ରୀ ସନ୍ନିଧିରୁ ଥିଲା ଯା ବାକୀ ବରତନ ।
ଝଳି ନୂତନେ । ଝଳି କରି ଶସ୍ତ୍ର ମାନଙ୍କୁ ।
କେ ଯନ୍ତା ଦିଆଇ କେହୁ ହିଙ୍ଗୁଳାଇ କେ ବନ୍ଧାଇ ଆନ କୋଷକୁ । ୩ ।

---

୧—ଦିନେକ—ଏକ ଦିନକରେ; ଦିନେଶ—ସୂର୍ଯ୍ୟ; କୁମାର—ଯୁବରାଜ; ସଚିବ ନନ୍ଦନ—ମନ୍ତ୍ରୀ ପୁଅ; ପଟନୀ ଶାଢୀ—ଅଧିକାରୀ ଶାଢୀ; [ପର ପଦରେ ଦେଖ] ପୁରୋଧା ସୁତ—ପୁରୋହିତ ପୁଅ; ତାତ ସନମତି—ବାପା (ରଜା)ଙ୍କର ମଞ୍ଜୁର ।

୨—ଜରଠ—ବୁଢା; କାମିନୀ—ନାରୀ; ଜାଳକ—ମାନେ; ଅର୍ବ—ଘୋଡ଼ା—ଅଶ୍ୱାରୋହୀ; ଦନ୍ତୀ—ହାତୀ ଅର୍ଥାତ ଗଜାରୋହୀ; ପଦାତି—ପାଇକ, ଚାଲି ଯୁଦ୍ଧ କରିବା ସୈନ୍ୟ; ସ୍ୟନ୍ଦନ—ରଥ ଅର୍ଥାତ୍ ଚତୁରଙ୍ଗ ସେନା;

"ହସ୍ତ୍ୟଶ୍ୱ ରଥ ପାଦାତଂ ସେନାଙ୍ଗସ୍ୟାଚତୁଷ୍ଟୟଂ" ଇତ୍ୟମରଃ
"ପତ୍ତିର୍ନା ପଟରେ ସେନା ବିଶେଷେ ଚ ଗତୌ ସ୍ତ୍ରୀୟାଂ" ଇତି କୋଷଃ ।

ଏ ବାଣୀ—(ଏ ସମ୍ବାଦ) ଚନ୍ଦ୍ର ପରି; ନାଗର (କୁମାର)ର ଆନନ୍ଦ ସାଗର ପରି । ଚନ୍ଦ୍ର ଯୋଗେ ସାଗରରେ ଜୁଆର ହୁଏ ।

୩—ଡ଼ଗର—ଅଗ୍ରଦୂତ; ଯେ ଆଗରେ ଯାଇ ସବୁକଥା ଜଣାଇ ଦିଏ । ଲେଖି ନେଲେ—ହିସାବ କରି ନେଇଗଲେ; ସନ୍ନିଧିରୁ—ପାଖରୁ; ବରତନ—ଦରମା; ଝଳି କରି—ଉଜ୍ଜ୍ୱଳ କରି;—

କେ ଘୃତ ଲଗାଇ କ୍ଷଣକେ ଶୁଖାଇ କେ ସିଆଇଁ ତହିଁ ତୂଣୀର ।
କବଚ କବାଇ ଗଗଜିର ଟୋପି ବକତର ଏହି ପ୍ରକାର ।
ଶକଟ । ଭରବାହ ବଳୀବର୍ଦ୍ଦକୁ ।
ଥିଲା ଯାହାର ସଙ୍ଗ କଲା ନ ଥିଲା ମୂଲ୍ୟ କରି ଆଣି ତାହାକୁ । ୪ ।

ସୁବର୍ଣ୍ଣ ରୌପ୍ୟ ବରାଟକ ସମ୍ବଳ କର୍ମିଳ ଆଦି ଜରୀଚେଳ ।
କଂସାଦି ପାତ୍ର ମଞ୍ଜୁଷ ପେଡ଼ା ପେଢ଼ୀ ଗଣ୍ଡିଗ ମାନ କରି ଠୁଳ ।
କରି ଯେ । ଦ୍ୱିଜରୁ ମାତଙ୍ଗ ପର୍ଯ୍ୟନ୍ତେ ।
ଯେ ଯାହା ବୃତ୍ତିରେ ଆଗମନ ମନ ଉଚ୍ଛନ୍ନ ହୋଇଲେ ସମସ୍ତେ । ୫ ।

କୋଷ ଅଧିକାରୀ ଅତି ତୋଷଭରି ଅମାରି ମଶାରି ସଜାଡ଼ି ।
ତୂର୍ଣ୍ଣ କରି ପୂର୍ଣ୍ଣ କଲ ସେ ସଭବେ ସମ୍ଭାରରେ ଗଡ଼ି ଶଗଡ଼ି ।
ଏମନ୍ତେ । ରଜନୀ ହୋଇଲା ପ୍ରବେଶ ।
କ୍ରମଶଃ କ୍ରମଶଃ ତମସ ବଶରେ ଦିଶ ଦୃଶ୍ୟ ହେଲା ବିନାଶ । ୬ ।

---

ଏଠାରେ ମରମତ କରି; ଯନ୍ତା–ଶାହାଣ; ହିଙ୍ଗୁଳାଇ–ନାଲି ରଙ୍ଗରେ ରଙ୍ଗାଇ; କୋଷ–ଖଣ୍ଡା ଖୋଳ;

୪–ସିଆଇଁ–ସିଲାଇ କଲା; ତୂଣୀର–ଶରମୁଣା; କବଚ–ସାଞ୍ଜୁ; କବାଇ–ମରମତ କଲା; ଗଗଜିର ଟୋପି ବକତର–ହୁଏତ ଶିରସ୍ତ୍ରାଣ ସହିତ ଟୋପି କିମ୍ବା ଯୋଦ୍ଧାର ଅନ୍ୟ କୌଣସି ଶରୀର ଆବରଣ । [ଠିକ୍ ଜଣା ପଡ଼ୁ ନାହିଁ] ଭର ବାହ ବଳୀବର୍ଦ୍ଦ–ଥୋଡ଼ି ବଳଦ ଭର ବୋହିବା ବଳଦ, କିମ୍ବା ଗଧ, ଘୋଡ଼ା ପ୍ରଭୃତି ଭର ବୋହିବା ପଶୁ ଏବଂ ବଳଦ । ଯାହାର ନ ଥିଲା ସେ ମୂଲ କରି କିଣି ଆଣିଲା ।

୫–ସୁବର୍ଣ୍ଣ–ସୁନା; ରୌପ୍ୟ–ରୂପା; ବରାଟକ–କଉଡ଼ି; ସମ୍ବଳ–ଧନ; ଜରୀଚେଳ–ଜରୀ କାମ ହୋଇଥିବା ଲୁଗା; ପାତ୍ର–ବାସନ; ମଞ୍ଜୁଷ–ପେଟରା; ମାତଙ୍ଗ–ଚଣ୍ଡାଳ;
"ଚଣ୍ଡାଳ ପ୍ଳବ ମାତଙ୍ଗାଃ"–ଇତ୍ୟମରଃ ।

୬–କୋଷ ଅଧିକାରୀ–ଭଣ୍ଡାର ଘରିଆ; ତୋଷ ଭରି–ଆନନ୍ଦିତ ହୋଇ; ଅମାରି–ହାତୀ ଉପରେ ଖଟ; (ତହିଁରେ ବନ୍ଧା ହେବା ମଶାରି)–କୁମାର ବିଜେ କରିବା ନିମନ୍ତେ । ତୂର୍ଣ୍ଣ–ଶୀଘ୍ର; ସମ୍ଭାରରେ–ଯଥୋଚିତ ସାମଗ୍ରୀରେ; ଏମନ୍ତେ–ଏହା କରୁ କରୁ; ତମସ–ଅନ୍ଧାର; ଦିଶ ଦୃଶ୍ୟ–ଦିଗ ମାନଙ୍କର ଶୋଭା;

କେତେ କାମୀ ଭୂମଣ୍ଡଳେ କେତେ ମୁହିଁ ଭ୍ରମିବି କାମ କି ପାଞ୍ଚିଲା ।
କଜ୍ଜଳ ମହୋଜ୍ଜ୍ୱଳ ଜଳେ ପ୍ରଳୟ କ୍ଷୟ କରିବାକୁ ବାଞ୍ଛିଲା ।
ଋର୍ଭାନୁ । ଡ଼ରେ କି ପଳାଇଲା ଭାନୁ ।
ତମ–ତନୁରେ ଜଗତ ଗିଳିଛି କି ଭାବି ଆନ ନାହିଁ ଏ ବିନୁ । ୭ ।
ପାଶେ ଥାଇ ଦେଖା ଦେଖି ନୋହି ଦୁଃଖୀ ଭୃଙ୍ଗ ଭୃଙ୍ଗୀ ଧ୍ୱନି ଘୋଷିଲେ ।
ସଙ୍କେତ ସ୍ଥାନେ ଯାଇଥିବା କାମିନୀ ଚମକି ହୃଦ ଆଉଁସିଲେ ।
ଅସିତେ । ଚରଗଣ ଏହି ଆର୍ତ୍ତରେ ।
ଧ୍ୱନି କରିବାର ଶୁଣି ବାରନାରୀ ଆଶାୟୀ ଅନାଇଁ ଦୁଆରେ । ୮ ।
ଅଞ୍ଜନ ଦିଗ ଗଜ ସଜ ଆଜ କି ଯୁଦ୍ଧ ଇଚ୍ଛି ଆମ୍ଭ ସଙ୍ଗରେ ।
ଏହା ବିଗ୍ଭରି ଯେ ରଡ଼ି କି ପଗ୍ଭରି ମତ୍ତମାତଙ୍ଗ ଆତଙ୍କରେ ।
ବଞ୍ଜୁଳ । ମୂଳେ ଥିବାର ବିରହିଣୀ ।
ଶ୍ରବଣେ ବୋଇଲା କାନ୍ତ ସତ୍ୟବାଦୀ କି ଘେନି ବୋଲନ୍ତି ମିତଣୀ । ୯ ।

---

୭–ଭୂମି ମଣ୍ଡଳେ–ପୃଥିବୀରେ; ବୁଲି ବୁଲି ସମସ୍ତଙ୍କୁ ଖୋଜି ମାରି ପାରିବି ନାହିଁ–ଏହା ବୋଲି ମହୋଜ୍ଜ୍ୱଳ (ଅତିଘନ) କଜ୍ଜଳ (କାଳିମା–ଅନ୍ଧାର) ରୂପ ଜଳରେ ପ୍ରଳୟ (କଳ୍ପାନ୍ତ)ର କ୍ଷୟ (ବିନାଶ); ଋର୍ଭାନୁ–ରାହୁ; ଭାନୁ–ସୂର୍ଯ୍ୟ; ଛାହିଁକି ପଳାଇଲା ? ତମ ତନୁ (୧ ଅନ୍ଧାର, ବିସ୍ତାର; ୨.ରାହୁ ରୂପ ଶରୀର) ଗିଳୁଛି ବୋଲି ନିଶ୍ଚୟ ଭାବି–ଏହାଛଡ଼ା ଅନ୍ୟ କିଛି ନୁହେ ।

୮–ଭୃଙ୍ଗ ଭୃଙ୍ଗୀ ଦୁହେଁ କଳା ଥିବାରୁ ଅନ୍ଧାରରେ ଦେଖା ଦେଖି ହୋଇ ନ ପାରି ଖାଲି ଗୁଣୁ ଗୁଣୁ ହେଲେ । ହୃଦ ଆଉଁସିଲେ–ଦୁଃଖରେ ହୃଦ ଆଉଁସିଲେ ଭୃଙ୍ଗ ଶର ରୂପ କନ୍ଦର୍ପ ଶର ହୃଦୟରେ ବାଜିଲା ବୋଲି ଆଉଁସିଲେ–ଏହି ଆଶୟ; ଅସିତ ଚରଗଣ–(ଅସିତ–ଧଳାନୁହେ କଳା, ଚର–ଖୁବ ଖୁବ କଳା•ଯେଉଁମାନେ–ଏହି ଆର୍ତ୍ତରେ (କିଛି ଦେଖି ନ ପାରି) କିମ୍ବା କାମିନୀଙ୍କ ଦୁଃଖରେ ସମ ଦୁଃଖୀ ହୋଇ ଧ୍ୱନି (ରାବ) କଲେ । ତହୁଁ ବାରନାରୀ ମାନେ (ବେଶ୍ୟାମାନେ) ଆଶାୟୀ ହୋଇ ବିଟ ପୁରୁଷ ଆସିବାରି ଆଶାରେ ଦୁଆରେ ଗ୍ଭହିଁ ରହିଲେ । (ସନ୍ଧ୍ୟା ହେଲେ ଏ ସବୁ ହୁଏ) ।

୯– ଅଞ୍ଜନଦିଗ–ପଶ୍ଚିମ ଦିଗ ଗଜର ନାମ ଅଞ୍ଜନ; ଅନ୍ଧାର ମାଡ଼ି ଆସିବାରୁ ସେହି ଗଜ ସଜ ହେଲାଣି ବୋଲି ଯେପରି କି ମାତଙ୍ଗ (ହାତୀମାନେ) ଆତଙ୍କରେ (ମହା–ଭୟରେ) ରଡ଼ିକଲେ । ବଞ୍ଜୁଳ (ଅଶୋକ) ମୂଳରେ ଥିବା ବିରହିଣୀ ଏହାଶୁଣି କହିଲା, ମୋ କାନ୍ତ ସତ୍ୟବାଦୀ ବୋଲି କାହିଁକି କହନ୍ତି । ସେତ ବର୍ଷାରେ ଆସିବେ ବୋଲି କହିଥିଲେ । ବର୍ତ୍ତମାନ ଏତେ ମେଘ ଗର୍ଜନ ହେଲା । ମୁଁ ତ ଅଶୋକମୂଳେ ଅଛି କିନ୍ତୁ ଶୋକ ହୀନ ହେଲି ନାହିଁ–ଏହି ଅଭିପ୍ରାୟ ।

କର୍ଣ୍ଣାଟ ପୁର ଜନେ ଯିବା ଭଛନ୍ନେ ଭନ୍ନିଦ୍ରେ ଏମନ୍ତ ଗର୍ବିରେ ।
କେ କାହା ପୀରତି ଯୁବତୀ କତିକି ଯିବାକୁ କହୁଛି ଦୂତୀରେ ।
ଭେଟାଇ । ଆଣି ପାରିବୁ କି ଧନକୁ ।
ଫୁଲଧନୁ ସୂନୁ ବଲ୍ଲଭୀ–କାଳସ୍ତ୍ର ମୁଁ ଯେ କରିବି ପ୍ରସ୍ଥାନକୁ । ୧୦ ।
କେ ଜାର ଲେଖିଲ୍ଲ ଜୁଳଟା ପାଶକୁ ଆଶା କରି ଦିନ ଯାଉଛି ।
ଯୁଗଳ ନୋହିବାରୁ ରାମକୁମର ଯୁଗ ସରି ମୋତେ ହୋଉଛି ।
ଧନ ରେ । କରିଥାଅ ଏବେ କୃତାର୍ଥ ।
ଯାଉଛି ବିଦେଶ ଯୋଗେ ଦେବଗୁରୁ ଗଲେ ହୋଇବଟି ବିଅର୍ଥ । ୧୧ ।
କେ ଜାର ଭଣି ସ୍ନେହେ ଭବ ରାଶିକି ଗଣି କଳନା ତୋତେ କରି ।
କନ୍ୟା ତୁଳାଅଙ୍ଗୀ ସିଂହ କଟୀ ମୀନ ନୟନା କୁମ୍ଭ ସ୍ତନା ଭରୀ ।
ଭ୍ରୂଲତା । ଧନୁରେ ପୁଣି ମନୋହର ।
ମକର କେତୁ ତାପେ ତୋ ପ୍ରେମ ଜଳେ ମନ–କକଡ଼ା ମଗ୍ନ ମୋର । ୧୨ ।
ବିଚ୍ଛେ ବିଛା ସମ ଘାତ କରୁଛି ମେଷ ବୃଷ କରୁଁ ଦର୍ଶନେ ।
ଏକା ମିଥୁନ ହୋଇଲେ ଯେ ନାୟିକା ସବୁ ହେଲ ତୋ ଅବଧାନେ ।
ଏ ବାଣୀ । ଶୁଣି ସେ ହରଷ ହୋଇଲା ।
ଆଲିଙ୍ଗନ କରି ଇଚ୍ଛାବତୀ ନାରୀ ବୃକ୍ଷାରୂଢ ବନ୍ଧେ ତୋଷିଲା । ୧୩ ।

---

୧୦–ଏମନ୍ତ–ଏହିପରି ହୋଉଛନ୍ତି । ଯେପରି ହୋଇଛନ୍ତି ତାହା ତଳେ ଏକାଧିକ ପଦରେ କୁହା ଯାଉଛି । ପୀରତି ଯୁବତୀ କତିକି–ପ୍ରେମିକା ପାଖକୁ । ଧନକୁ–ପ୍ରେୟସୀକୁ ଫୁଲ ଧନୁ ( କନ୍ଦର୍ପ ) ତାର ସୂନୁ ( ପୁଅ )–ଅନିରୁଦ୍ଧ ତାର ବଲ୍ଲଭୀ ( ସ୍ତ୍ରୀ ) ଅର୍ଥାତ୍ ଉଷା ।

୧୧–ଜାର–ବିଟ ପୁରୁଷ; ଆଶାକରି–ଏ ପର୍ଯ୍ୟନ୍ତ ସଙ୍ଗମ ହୋଇନାହିଁ; ରାମକୁମର–ଲବ, ମତେ ଯୁଗପରି; ଯୋଗେ–ଦୁର୍ଭାଗ୍ୟକୁ; ଦେବଗୁରୁ–ଜୀବ (ଏହା ବୃହସ୍ପତିଙ୍କର ନାମ)

୧୨–୧୩–ଭବରାଶି–ପ୍ରେୟସୀ; ରାଶି–( ମେଷ, ବୃଷାଦି ଦ୍ୱାଦଶ ରାଶି )ରେ ତୋତେ ଭବୁଛି । ହେ କନ୍ୟା ତୁ ତୁଳାଅଙ୍ଗୀ ଇତ୍ୟାଦି । କୁମ୍ଭପରି ସ୍ତନ ଭର ଯାହାର ସେ କୁମ୍ଭ ସ୍ତନ ଭରୀ । ତୋ ଭ୍ରୂଲତା ଧନୁପରି; ମକର କେତୁ ( କନ୍ଦର୍ପ ) ମନ କକଡ଼ା ( ମନରୂପ କଙ୍କଡ଼ା, କର୍କଟ ) ଦର୍ଶନେ ( ଗ୍ରହିଁଲେ ) ମେଷ ବୃଷ ( ଇନ୍ଦ୍ର )– ମେଷର ବୃଷ ( ଜନନେନ୍ଦ୍ରିୟ ) ପରି ବୃଷ ଯାହାର [ " ମୁଷ୍କୋଣ୍ଡ° ବୃଷଃ "– ଇତି ହଳାୟୁଧଃ ] ରାମାୟଣରେ ଅଛି ଇନ୍ଦ୍ର ଅହଲ୍ୟା ହରଣ କରିବା ପରେ ଅହଲ୍ୟାଙ୍କ ସ୍ୱାମୀ ଗୌତମ ଇନ୍ଦ୍ରକୁ ସାପଦେଇ ମୁଷ୍କହୀନ ( ଖାସୁ ) କରିଦେଲେ ।

ପୁଷ୍ପ ସମୟ ନିକଟ ପରକଟ ରମଣୀ ତୁଳେ ବିଟ ରମି ।
ସଖୀକୁ କହେ ବଚନେ ସ୍ନେହାଧୀନା କୋଳେ କମଳା ପରିମାଣି ।
ରଚିଲୁ । ବିଜ୍ଞା କରେ ସ୍ତନ କଠିନ ।
ବୋଲି ଜାଣିଲି ନ ଜାଣିଲି ସୁବର୍ଣ୍ଣ ସୁବର୍ଣ୍ଣ କି ଅବା ଅଞ୍ଜନ । ୧୪ ।

କାହା ବଲ୍ଲଭ ବଲ୍ଲଭୀକି କହୁଛି-କି କଲ୍ଲ ଦାରୁଣ ଦଇବ ।
ମନେ ତ ନ ଥିଲ ତରୁଣ କାଳରେ ତରୁଣୀ ବିଚ୍ଛେଦ ହୋଇବ ।
ଜୀବନ । ତେଜି ଯେ କାତର ବଶରେ ।
ଘେନି ଘେନି ଆରେ ପଗଏ ଦ୍ୱିତୀୟ ଏକ ଅଧିକ ଦିବସରେ । ୧୫ ।

---

ସ୍ୱର୍ଗରେ ଧନ୍ୱନ୍ତରୀ ଏକ ମେଣ୍ଢାର ମୁଷ୍କ ଓ ଅଣ୍ଡକୋଷ ଇନ୍ଦ୍ରଙ୍କଠାରେ ଲଗାଇ ଦେଇ ଥିଲେ । ମିଥୁନ (ସ୍ତ୍ରୀ ପୁରୁଷର ସଙ୍ଗମ); ଇଚ୍ଛାବତୀ—(ଧନା ଦି ଇଚ୍ଛାଥାଏ ଯାହାର, କାମୁକା) ଇଚ୍ଛାବତୀ କାମୁକାସ୍ୟାତ୍—ଇତ୍ୟମରଃ । ବୃକ୍ଷାରେହ ବନ୍ଧ—ଗଛରେ ଚଢ଼ିଲ ପରି ଅନୁକରଣରେ ଏକ ପ୍ରକାର ରଚି ବନ୍ଧ । କାମଶାସ୍ତ୍ରେ ବୃକ୍ଷାରେହ ବନ୍ଧ,

ଯଥା—   ପ୍ରିୟାପାଦଂ ପଦାବଦ୍ଧ୍ୱା ପଦେ କେନ ସ୍ତୁକା ମୁଜଃ ।
ଯୋଜୟିତ୍ୱୋରୁମତ୍ୟନ୍ତଂ ଭୁଜାଭ୍ୟାଂ ପୃଷ୍ଠ ମୁଦ୍ଧୃତଃ
ବୃକ୍ଷାରୁଢାଲିଙ୍ଗନଂତତ୍ କଥିତଂ ରସିକୋତ୍ତମୈଃ ।

୧୪—ପୁଷ୍ପ ସମୟ......ରମଣୀ—ନିକଟରେ ରଜସ୍ୱଳା ହୋଇଥିବା ସ୍ତ୍ରୀ; ବଚନେ (କଥାରୁ) ଜାଣିଲି; କୋଳେ ପରିମାଣି—କୋଳ କରିବାରୁ ଜାଣିଲି; ବିଜ୍ଞା—କେଳି ପଣ୍ଡିତା; କରେ—ହାତରେ ଚିପିବାରୁ ଏସବୁ ଜାଣିଲି ସତ କିନ୍ତୁ ଭବରେ ଏକ ପ୍ରକାର ଅନ୍ଧ ହୋଇଥିବାରୁ ତାର ସୁବର୍ଣ୍ଣ ଉତ୍ତମ ବର୍ଣ୍ଣ ସେ ସୁବର୍ଣ୍ଣ (ସୁନା) ଅଞ୍ଜନ(କଜ୍ଜଳ) ଜାଣି ପାରିଲି ନାହିଁ ।

୧୫—ହେ ପଗଣ ଦ୍ୱିତୀୟ (ଦୋଷର) ଏକ ଅଧିକ ଦିବସରେ (ଦିନକରୁ ବେଶି ବିଚ୍ଛେଦ ହେଲେ) କାତର ବସରେ ଜୀବନ ତେଜି (ଜୀବନ ଉପାୟ—ଖାଇବା ପ୍ରଭୃତି ଛାଡୁଥିଲି) 'ଆଜୀବୋ ଜୀବିକା ବାର୍ତ୍ତା ବୃତ୍ତିର୍ବର୍ତ୍ତନ ଜୀବନେ'—ଇତ୍ୟମରଃ । ବର୍ତ୍ତମାନ ଏତେ ଦୀର୍ଘ ବିଚ୍ଛେଦ କିପରି ସହିବି ଏହି ଅଭିପ୍ରାୟ; ଘେନ—ଘେନ ଆବେଗରେ ବିପ୍ସା ବା ଦ୍ୱିରୁକ୍ତି । କିମ୍ବା ଆରେ ପଗଣ ଦ୍ୱିତୀୟରୁ (ଦୁଇରୁ) ଏକ ଅଧିକ ଦିବସରେ (ତିନିଦିନ) ଋତୁ କାଳୀନ ବିଚ୍ଛେଦରେ ଏପରି ଅର୍ଥ କରା-ଯାଇପାରେ ।

ସୁନ୍ଦରୀକି କୋଳେ ବସାଇ ଉଷେ କେ ରସାଇ ପ୍ରକାଶିଣ ପ୍ରେମ ।
ଦଣ୍ଡଧର ଅନୁଗତ ଭଲ ନୋହେ ସେହି ନୋହିବାର ଉତ୍ତମ ।
ଗୁଣି ତୁ । ମାଗୁଣି ଏତେକ ମୋହର ।
ମନେ ପଡୁଥିବି ରଜନୀ ଦିବସେ ଜାଣୁ ତା ଯେମନ୍ତ ମୁଁ ତୋର । ୧୬ ।

କେ ପ୍ରିୟା ଚିବୁକ ଧରିଣ ଉନ୍ନତି ଛାଡ଼ି ଭସିଲ୍ଲ ଏ ବିନତି ।
ଶୀତକୁ ରଜା ଶୀତେ କାମ ଇଷିତ ନାରଚେ ହୋଇ ଅଛି ଭୀତି ।
କରିବି । କବଚ ପାଞ୍ଚି ମୋ ଏସନ ।
ବରବର୍ଣ୍ଣିନୀ ସଞ୍ଚାଥିଲ୍ଲ କରିଣ ଦିଅ ମୋତେ ପିନ୍ଧା ବସନ । ୧୭ ।

କେ ପ୍ରଦୀପ ପ୍ରଦୀପକ କରି ପୁରେ ପୁରତେ ପ୍ରିୟାକୁ ବସାଇ ।
ଚିତ୍ରେ ବିଚିତ୍ରେ ଲେଖିଲ୍ଲ ସ୍ୱରୂପକୁ ପ୍ରଭତ ଦରଶନ ପାଇଁ
ସେ ଦେଖି । ଧୀର କରି ଏହା ବୋଇଲ୍ଲ ।
ବିଦେହଜା ପ୍ରିୟ ସଙ୍ଗେ ନ ନେଲେ କି ମୋତେ ସଙ୍ଗେ ନେଲେ **କି ହେଲ୍ଲ** ।୧୮।

---

୧୬–ଦଣ୍ଡଧର–ରଜା, ଯମ; ସେହି ହୋଇବାର –ଦଣ୍ଡଧର ଅନୁଗତ ହୋଇବାର ବା ଦଣ୍ଡଧର ହୋଇବାର ପ୍ରଥମରେ ବିରୋଧା ଭଷ; ରଜାର ଅନୁଗତ ହେବା ଭଲ ନୁହେ; ଯମର ଅନୁଗତ ହେବା ( ମରିବା ) ଭଲ । କିମ୍ବା ରଜାର ଚାକିରିଆ ହେବା ନୁହେ ନିଜେ ରଜା ହେବାହିଁ ଭଲ । ମାତ୍ର ଏ ଦ୍ୱିତୀୟ ଭବରେ ଉପେନ୍ଦ୍ରଭଞ୍ଜ ଲେଖିଥିବାର ମନେ ହୁଏ ନାହିଁ ।

୧୭- ଉନ୍ନତି ଛାଡ଼ି–ପୁରୁଷ ବୋଲି ଯେ ଅହଙ୍କାର ତାକୁ ଛାଡ଼ି; ହେ ସିତ କରଜା–ସିତ ( ଶୁକ୍ଳ ) କରଜ ( ନଖ ) ଯାହାର–ସୁନ୍ଦରୀ; ଶିତ–ଶାହାଣ ଦିଆ; କାମଇଷିତ ( କାମ ପ୍ରେରିତ, କନ୍ଦର୍ପ ମାରୁଥିବା ) ନାରଚ– ( ବାଣ ) ରେ ମୋର ଭୀତି ( ଭୟ ) ହେଉଛି । କବଚ –ସାଞ୍ଜୁ; ପାଞ୍ଚ ମୋ–ମୋର ବିଗ୍ରହ; ବରବର୍ଣ୍ଣିନୀ– ହଳଦୀ; ହରିଦ୍ରା ବରବର୍ଣ୍ଣିନୀ–ଇତ୍ୟମରଃ । ସଞ୍ଚାଥିବା–ସଞ୍ଚାରଥିବା, ଲାଗି ଯାଇ-ଥିବା; ଅର୍ଥାତ୍ ହଳଦୀ ଲାଗି ଯାଇଥିବା ତୋ ପିନ୍ଧା ଲୁଗା ଦେଲେ ମୁଁ ତାକୁ ଦେହରେ ଲଗାଇ ସବୁବେଳେ ତୋତେ ମନେ ପକାଇବାରେ ଅନ୍ୟ କାମ ପ୍ରବୃତ୍ତିରେ ପଡ଼ିବି ନାହିଁ ।

୧। –ପ୍ରଦୀପ ( ଦୀପ )କୁ ପୁରେ ( ଘରେ ) ପ୍ରଦୀପକ ( ଜଳାଇ କରି ) ପ୍ରଭତ ଦର-ଶନ ପାଇଁ ( ବିଦେଶରେ ନିତି ସକାଳୁ ଦେଖିବା ପାଇଁ ) ବିଦେହଜା ପ୍ରିୟ– ( ସୀତାଙ୍କ ସ୍ୱାମୀ–ରାମ ) ସେ କଣ ଭାର୍ଯ୍ୟାଙ୍କୁ ସାଙ୍ଗରେ ନେଇ ନ ଥିଲେ ?

କାହାର ବାଳୀ ନବୀନା ବିପରୀତ ବିନା ସକଳ ଭୋଗି ଥିଲା ।
ମଣି ଦୀପିତକ ଦର୍ପଣ ବିତାନ ଥିଲା ପୁରେ ରତି ବିହିଲା ।
ସେ ଭୋଗ । ପାଇଲା ଦଇବ ବଶକୁ ।
ଭବେ ଅଧିକ ଦେବାକୁ ରଖିଥିଲା ଯିବା ବେଳକୁ ବିଦେଶକୁ । ୧୯ ।
କଉଁ ଦମ୍ପତି ରତି ସୁଖ ସମ୍ପତ୍ତି ବଶୁଁ ମତିରେ ଏହା ଧ୍ୟାୟି ।
ସୁର ଅଗତି ହେବ ଗତି ନ ପାହୁ ତାହା ରଜନୀ କରୁ ବିହି ।
ଯେ ପୁଣି । ବିହିଲା ବିଚ୍ଛେଦ ବିପତ୍ତି ।
ପୁଂଲିଙ୍ଗ ସ୍ତ୍ରୀଲିଙ୍ଗେ ତାହା ଶବ୍ଦ ରୂପ କେବେ ନୋହିଥିବ ସମ୍ମତି । ୨୦ ।
କେ ପୁଂସ ସବୁରେ ତବୁରେ ଗୋପିତ କଲା ଆଣି ଜାତୀ ଲତାକୁ ।
ପରିବାରିକାକୁ ଡ଼ାକିଣ କହିଲା କୋଳେ ବସାଇ ବନିତାକୁ ।
ଏହା ତୁ । ଯତ୍ନ କରି ଥିବୁ ସତତେ ।
ପ୍ରବାସ ପ୍ରୟାଣ ଦୋଷ ନ ଘେନିବ ଯାଉଅଛି ଅଣଆୟତେ । ୨୧ ।
କେ ଜାୟା ପତି ଯୋଗ ହୋଇ ନ ଥିଲେ ସେ ଉତ୍ସବ କଲେ ସେ ଗତି ।
ନାନା ଗତି ରତି ପ୍ରକାଶିଲା ରତି ପତି–ଭୋଳରେ ରସବତୀ ।
ଉତାନ୍ତେ । ରମଣ ମୁଖକୁ ଗୁହିଁଲା ।
ମୟୂର କଣ୍ଟକ ବୃକ୍ଷ ପଟେ ଲେଖି କାମ ବିମନକୁ ହରିଲା । ୨୨ ।

---

୧୯–ବିପରୀତ [ ୧୭ଶ ଛାନ୍ଦ ୪ର୍ଥ ପଦ ଟୀକା ଦେଖ । ] ଘର ଛାତ ତଳେ ଥିବା ବିତାନ ( ଚାନ୍ଦୁଆ ) ର ମଣି ଦର୍ପଣରେ; ଦଇବ ବଶକୁ–ଦୈବାତ୍ ତଳୁ ପ୍ରତିବିମ୍ବ ପଡ଼ି ବିପରୀତ ପରି ଦେଖାଗଲା । ଭବେ–ଭାବିଲା;– ଏହିତକ ଅଧିକ ଇତ୍ୟାଦି ।

୨୦–ଦମ୍ପତି–ଜାୟା ପତି, ଭାର୍ଯ୍ୟା ବର ଦୁହିଁଙ୍କୁ ଏକତ୍ରରେ ଦମ୍ପତି କୁହାଯାଏ; ବଶୁଁ–ହେତୁରୁ; ଅଗତି–ଶତ୍ରୁ; ନ ପାଉ–ଶେଷ ନ ହେଉ ନ ସରୁ; ବିହି ( ବ୍ରହ୍ମା ) ତାହା (ନିଜ) ରଜନୀ ( ଗତି–ଏକ କଳ୍ପାର୍ଦ୍ଧ ପରିମାଣ ସମୟ–[ ୧୯ଶ ଛାନ୍ଦ ୪ର୍ଥ ପଦ ଟୀକା ଓ ୨ୟ ଛାନ୍ଦ ୪୭ ପଦ ଟୀକା ଦେଖ ] ) ବିଚ୍ଛେଦ ବିପତ୍ତି ଯେ କଲା ସଂସ୍କୃତ ବ୍ୟାକରଣର ଶବ୍ଦରୂପ ପ୍ରକରଣରେ ପୁଂଲିଙ୍ଗ ବା ସ୍ତ୍ରୀଲିଙ୍ଗରେ ତା ନାମର ରୂପ ସମ୍ମତ ହେବ ନାହିଁ ( ସେ ନପୁଂସକ ବା କ୍ଲୀବଲିଙ୍ଗ ହୋଇଥିବ ! )

୨୧–ଜାତୀଲତା–ଯାଇଫୁଲ ଗଛ । ଏହାର ଫୁଲ ଫୁଟିଲା ବେଳକୁ ମୁଁ ଫେରି ଆସିବି–ଏହିଭାବ ।

୨୨–କୌଣସି ଜାୟା ପତିଙ୍କର ନବ ମଧୁଶଯ୍ୟାର କଥା ଏ । ରତିପତି ଭୋଳରେ ( କାମ ବିହ୍ୱଳ ହୋଇ ) । କାହୁଁ ଶିଖିଲୁ ବୋଲି ଅଭିପ୍ରାୟରେ ରମଣୀ ମୁହଁକୁ ଗୁହିଁଲା ।

କେ ଦମ୍ଭହାରି ମନୋହାରୀ କି କହେ ଏ କଥା ଚିତ୍ତ ଲଗେ ମୋତେ ।
ଜୀବନ ତେଜି ପିଣ୍ଡକୁ ସଙ୍ଗେ ନେଇ ପୁରୁଷେ ଜାଇବେ କେମନ୍ତେ ।
ଏ ତନୁ । ପୁଲକ ପୁଣି ନ ବହିବ ।
ସେ ପୁଣି ଗଦ୍‌ଗଦେ ବୋଇଲ କେଜାଣି କି କି ଲିଖାଇଲ ଦଇବ । ୨୩ ।
କଉଁ ସୁନ୍ଦରୀ କେତକୀ ଦଳୋଦରେ ଦୟିତ ନାମକୁ ଲେଖିଲ ।
ମୁଁ ଯେ ଜୀବଧବ ତୁମ୍ଭଙ୍କୁ ବୋଲିବା ଏହିଠାରେ ସାର୍ଥ ହୋଇଲ ।
ତୁମ୍ଭର । ଅଛି ଲୋହମୟ କବଚ ।
ତୁମ୍ଭେ ସିନା ମୋର ଦୂର ହେବ କେହି ସହିବି ବିଷମ ନାରାଚ । ୨୪ ।
କଉଁ ନାରୀ ଚିତ୍ର ପ୍ରତିମା ପରିରେ ବାରି ନୟନରେ ଭରିଲ ।
କେହି କି କରିବି ବୋଲି କାନ୍ତ ଗଳାଧରି ପ୍ରେମ ଭରେ ଥରିଲ ।
କେ କହେ । ଯିବାପଛେ ଅନ୍ୟ ଦେଶକୁ ।
ନ ଗଲେ ଯେବେ ନରପତି ସଗେଷ ହୋଇବେ କରମ ବଶକୁ । ୨୫ ।
କେ କହେ ସଖୀଙ୍କି ଚନ୍ଦ୍ର ଶେଖରଙ୍କୁ ପୂଜନ କର ଏଥିପାଇଁ ।
ପ୍ରିୟ ନ ଯାଉ ଜୀବନ ଯାଉ ମୋର ଦୁଃଖୀ ନୋହିବି ଟିକି ମୁହିଁ ।
କେ ଘଳେ । ବିଲଗ୍ନ ହେଲେ ଉର୍ଦ୍ଧ୍ବ ଉର ।
ନିଦ୍ରା ନ ମାଡ଼ଇ ଏ ନିଶିକି କେହି ବଞ୍ଚିବି କି କର୍ମ ମୋହର । ୨୬ ।

---

ସେ ସ୍ତ୍ରୀ କଣ୍ଟା ଗଛକୁ କଣ୍ଟା କିଏ କରିଛି ? ମୟୂରକୁ ଚିତ୍ର କିଏ କରିଛି ? ସେହି ମତେ ଶିଖାଇଲ ଏହି ଅଭିପ୍ରାୟରେ । ପଟେ ( ଚିତ୍ର କରିବା କନା ଉପରେ ) କଣ୍ଟାଗଛ ଓ ମୟୂର ଲେଖିଦେଲ ।

୨୩–ପୁରୁଷ ସ୍ତ୍ରୀକୁ କହୁଛି–ତୋ ପାଖେ ଜୀବନ ରହିଲ ମୁଁ ପିଣ୍ଡ ମାତ୍ର ନେଇ ଯାଉଛି । ଏ ତନୁ ( ଏ ଗୋଟେ ଶରୀରରେ ) ତୋର ମୋର ଯୋଡ଼େ ଶରୀର ରହି ହେବ ନାହିଁ; ଅନ୍ୟ ଅର୍ଥ–ତୁ ନଥିବା ବେଳେ ଏ ଶରୀର କେବେ ଅନ୍ୟ କାହାରି ଦ୍ୱାରା ପୁଲକ ହେବ ନାହିଁ–ଏ ଆଶୟ । ସ୍ତ୍ରୀ କହିଲ, ବିଧାତା କଣ ବିଗ୍ରହିଛି ତା ସେ ଜାଣେ । ( ବିଚ୍ଛେଦରେ ମୁଁ ବଞ୍ଚିବି ନାହିଁ ? ତୁମ ଯୁଗଳ ତନୁରେ ହୁଏତ କିଛି ଆପତ୍ତି ହେବ ନାହିଁ । )

୨୪–କେତକୀ ଦଳୋଦରେ-କେତକୀ ପାଖୁଡ଼ା ଭିତରେ; ଦୟିତ–ପ୍ରଣୟୀ; ଜୀବଧବ–ସ୍ୱାମୀ, ଯମ; ( ତୁମେ ମୋର ଯମ–ବିଚ୍ଛେଦରେ ମୁଁ ମରିବି–ଏହି ଗୂଢାର୍ଥ ) ତୁମର ଲୁହା କବଚ ଅଛି ତୁମେ ସବୁ ସହିପାର କିନ୍ତୁ ତୁମେ ସିନା ମୋର କବଚ ( ସାନ୍ତ୍ୱ ) କେହି– କିପରି, ବିଷମ ନାରାଚ–କନ୍ଦର୍ପଶର;

୨୬–ବିଲଗ–ଅଲଗା; ଉର୍ଦ୍ଧ୍ବ ଉର–ଛାତିରୁ ଛାତି; ଏ ନିଶିକି–ଏତେ ଗୁଡ଼ାଏ ବିରହ ନିଶାକୁ; କେହି–କିପରି;

କେହୁ ବଲ୍ଲଭେ ନିୟମ କରାଇଲ ଆନ ଯୁବତୀ ନ ଛୁଇଁବ ।
କେ ବୋଇଲା ଜାତ ଚିତ୍ତେ ମୁଁ ଥିବିଟି ମୋ ପାଇଁ ଦର୍ଶନ କରିବ ।
କେ ହାର । ବାହାର କରି କଣ୍ଠେ ଦେଇ ।
ଦେଖୁଥିଲେ ମୁହିଁ ମନେ ପଡ଼ୁ ଥିବି ଏମନ୍ତ ଭାବନା ହୋଇଲା । ୨୭ ।
କେ ଜାଣି ବିରହ ଜ୍ୱର ଜାତ ଉରେ ଥୋଇ ପଙ୍କେ ରୁହ-ଦଳକୁ ।
କିଛି ନ କହି ନାୟକ କରେ ଦେଲା ମେଲାଣି ମାଗିଲା ବେଳକୁ ।
କେ ଭାବେ । ଅବଧ ହେଲା ମୋ ସଙ୍ଗତି ।
ଦରିଦ୍ର ରତନ ପାଇ ହଜାଇଲା ପରାୟ ହୋଇଲା ବିମତି । ୨୮ ।
କେ ଲେଖିଲା ପଟେ ପତିକି ବସାଇ ଆପେ ପାଦ ସେବା କରଇ ।
ଯେବେ ଦୂରେ ଥିଲେ ଏ ରୂପେ ଅଗ୍ରତେ ଅଛି ମୁଁ ଏ ଅକ୍ଷର ଲିହି ।
ବାନ୍ଧି ତା । ଝିନ ବସନେ ପେଡ଼ିପରେ ।
ଥୋଇଲା ଚାତୁରୀ କି ସ୍ନେହ ଆତୁରୀ ମାନସ ମୋହିବା ବିଗ୍ରହେ । ୨୯ ।
କେ ବୋଇଲା ମୋହ ପାଇଁ ନ ଭଜିବ ସାରିବ ବେଳ କାଳେ ନୀତି ।
ତୁମ୍ଭେ ସର୍ବଗୁଣେ ଥିଲେ ସବୁ ଅଛି ନ ମିଳିବେ କେତେ ଯୁବତୀ ।
କେ ସଖୀ । ଦ୍ୱାରରେ ଏମନ୍ତ କୁହାଇ ।
ବାହୁଡ଼ି ଆସି ଯାହାକୁ ଦେଖି ହେବ ଏ ରୂପେ ନୋହିବ ଅସ୍ନେହୀ । ୩୦ ।
କେ ପତି ଯିବାକୁ ତୁପତି ମତିରେ ଜାରେ ବୋଇଲା ଦିନେ ଥାଅ ।
ଅନେକ କାଳୁ ବାଞ୍ଛିତ କଲା ସୁଖ ମୋତେ ହେ ଦିଅ ତୁମ୍ଭେ ପାଅ ।
କେ ଶାଶୁ । ନଣନ୍ଦ ଭୟରେ ପ୍ରିୟକୁ ।
କିଛି ନ କହି ତକ୍ଷଣେ ଜାତ କରି ଇକ୍ଷଣେ ନିବାରି ପଯକୁ । ୩୧ ।

---

୨୭—ମୁଁ ତୁମ ମନ ଭିତରେ ଥିବି—ଏ କଥା ଜାଣି ନିତ୍ୟେ ଦର୍ଶନ କଲାବେଳେ ମୋ ପାଇଁ ଦର୍ଶନ କରିବ । [ ଏଠାରେ ଏ ଭାବ ଅତି ରମଣୀୟ ]

୨୮—ଉରେ (ଛାତିରେ) ପଙ୍କେ ରୁହ ଦଳ (ପଦ୍ମପତ୍ର) ଥୋଇ ବିରହ ଜ୍ୱର ହେତୁ ତାହା ସାରାପରି ସିଝି ଯାଇଥିଲା ।

୨୯—ଅକ୍ଷର ଲିହି—ଚିତ୍ର ତଳେ ସେହି କଥା ଲେଖିଦେଲା;

୩୦—ବେଳ କାଳେ—ଠିକ୍ ସମୟରେ; ନୀତି—ଗାଧୋଇବା ଖାଇବା ପ୍ରଭୃତି ନିତ୍ୟକର୍ମ; [ ଏ ପଦରେ ହିନ୍ଦୁନାରୀର ଆତ୍ମତ୍ୟାଗ ସ୍ପଷ୍ଟ । ଏ ଭାବ ମଧ୍ୟ ଏ ଦେଶରେ ବଡ଼ ସ୍ୱାଭାବିକ । ]

୩୧—ପତି ଯିବାକୁ ତୁପତି ମତି—(ପତି ଯିବାରେ ସନ୍ତୁଷ୍ଟ ଚିତ୍ତ) କାହିଁକି ? ସେ ଦ୍ୱିଚାରିଣୀ; ଜାରେ—ବିଟ ପୁରୁଷକୁ; ଅନେକ କାଳ ବାଞ୍ଛିତ—କାରଣ ପତି ଘରେ ଥିବାରୁ

କାହା ସହଚରୀ ପ୍ରଶ୍ନେ ପଶ୍ୱରି ଯାଉଛ କଉଁ ଶିବ ଦେଖି ।
ବକ୍ଷରେ ସ୍ୱଚ୍ଛରେ ଶମ୍ଭୁ ଯୁଗଳକୁ ଜନମ କରିଛି ମୋ ସଖୀ ।
ଏ ବିଧି । ତରୁଣ ତରୁଣୀ ଉଛନ ।
ବହୁତ ଛାନ୍ଦେ କଲେ ତାହା ବର୍ଣ୍ଣନା କେବେହେଁ ନୋହିବ ସମ୍ପୂର୍ଣ୍ଣ । ୩୨ ।
ଏମନ୍ତ ନିଶି ଶେଷରେ ଦରଘୋଷ ଘର ଲଭିଲେ ଜାର ବ୍ୟୂହ ।
କୁକ୍‌କୁଟ ବାଣୀ କୁଠାରେ ହାଣି ଦେଲା ଦମ୍ପତି ସୁଖ ମହୀରୁହ ।
ପତାଚି । ବହିଲା ଅରୁଣ ବର୍ଣ୍ଣକୁ ।
ଡ଼ଗର ନାଗର କରାଇଲା ତୂର ସାଜ ସାଜ ବୋଲି ସୈନ୍ୟକୁ । ୩୩ ।
ବାଜିଲା ତୂର ସାଜିଲେ ଚତୁରଙ୍ଗ ପ୍ରବେଶ ହେଲେ ସିଂହଦ୍ୱାର ।
କହେ ଜ୍ୟୋତିଷ ମଙ୍ଗଳ ବେଳ ହେଲା ଅନୁକୂଳ କର କୁମାର ।
ସାଜିଲେ । ରମ୍ଭା ବୃକ୍ଷ କୁମ୍ଭ ପୂରତେ ।
କ୍ଷଣେ ଆରମ୍ଭା ରମ୍ଭା ପରି ବେଶ୍ୟା ମୋହିଲେ ସୁମଙ୍ଗଳ ଗୀତେ । ୩୪ ।
ରମାଭିଷେକ ପଟ ଭୃତ୍ୟେ ଦେଖାଇ ଦିଅନ୍ତି ରମା ହୁଳ ହୁଳି ।
ବିଧାତା ବିଧାନେ ପୁରୋଧା ନନ୍ଦନେ ମଙ୍ଗଳାରୋପଣେ କୁଶଳୀ ।
କୀରତି । ବନ୍ଦନା ବନ୍ଦୀବୃନ୍ଦ କରେ ।
ବାହାର ହୋଇଲେ ନୃପତି ନନ୍ଦନ ବାଞ୍ଛା ରୂପ ଚିନ୍ତି ଚିତ୍ତରେ । ୩୫ ।

---

ବାଞ୍ଛା ପୂର୍ଣ୍ଣ ହୋଇ ପାରୁ ନ ଥିଲା । ଇକ୍ଷଣେ–ଆଖିରେ; ଜାତ କରି ନିବାରି ପଯକୁ–ଆଖି ଲୁହ ଆଖିରେ ମାରିଦେଲା । ଏ ପଦର ଦୁଇଟି ଭାଗରେ ଦୁଇଟି ଅର୍ଦ୍ଧ ଖାପ ନ ଖାଇବା ଭଳି ଭାବ ଦେଖା ଯାଉଛି । ପ୍ରଥମ ଭାଗରେ ଭାବ ଯେପରି କୃତ୍ରିମ ପୂର୍ଣ୍ଣ, ଦ୍ୱିତୀୟ ଭାଗରେ ଭାବ ସେପରି ମଧୁର ଓ ପ୍ରାକୃତିକ ।

୩୨–ଭାର୍ଯ୍ୟାର ସଖୀ ଭାର୍ଯ୍ୟାର ସ୍ତନ ଯୁଗଳକୁ ଲକ୍ଷକରି ବରକୁ କହୁଛି ।

୩୩–ଦରଘୋଷ–ଶଙ୍ଖ ଧ୍ୱନି; ସକାଳୁ ମନ୍ଦିରରେ ଏବଂ ନୈଷ୍ଠିକ ଗୃହସ୍ଥ ମାନଙ୍କ ଘରେ ଶଙ୍ଖ ଧ୍ୱନି ହୁଏ । ଦର–ଭୟ; ମହୀରୁହ–ଗଛ; ରାଗ ହେଲେ ଆଖି ନାଲି ହୁଏ; ସକାଳୁ ପ୍ରାଚୀ (ପୂର୍ବ) ନାଲି ହେଲା ।

୩୪–ତୂର–ତୂରୀ (ମଙ୍ଗଳ ବାଦ୍ୟ) ଚତୁରଙ୍ଗ–ଉପରେ ୨ୟ ପଦ ଦେଖ । କଦଳୀ ଗଛ ପୋତିବା, ପୂର୍ଣ୍ଣ କୁମ୍ଭ ବସାଇବା ପ୍ରଭୃତି ଶୁଭ ଅନୁକୂଳ ବିଧି । ଦକ୍ଷିଣି ରାଜା-ମାନଙ୍କ ଘରେ ଅନୁକୂଳ ବେଳେ ବେଶ୍ୟାମାନେ ଗୀତ ବୋଲନ୍ତି । ଏହା ଏକ ଦ୍ରାବିଡ଼ ବିଧି । ଓଡ଼ିଶାର ଅନେକ ରାଜା ପରେ ଏହା ଅନୁକରଣ କରିଥିଲେ ।

୩୫–ମଙ୍ଗଳ ଅନୁକୂଳ ବିଧିର ବର୍ଣ୍ଣନା ଚାଲିଛି । ଭୃତ୍ୟେ–(ଚାକର ମାନେ) ରମାଙ୍କର ଅଭିଷେକ ଚିତ୍ର ହୋଇଥିବା ପଟ ଚିତ୍ର ପଟିମାନ ଦେଖାଇଲେ । ରମା (ସ୍ତ୍ରୀ ମାନେ)

ପଲ୍ଲବ ତୋରଣା ଅଧର ପୟୋଧର ପୂର୍ଣ୍ଣକୁମ୍ଭ ମୀନ ନୟନ ।
ଗତି ହଂସ ବତ ପାରାବତ ଗଳ ମଙ୍ଗଳ ଅଷ୍ଟକ ବଚନ ।
ଜଘନ । ଉଦ୍‌ବାସନ ଉରୁ କଦଳୀ ।
ଶଙ୍ଖ ମୃଦୁହାସ ଚୁଚୁକ କ୍ରମୁକ ସର୍ବ ମଙ୍ଗଳପ୍ରଦ ଭଳି । ୩୬ ।
ସୁକୁମାରୀ ରାଜକୁମାରୀକି ଭାବି କରି ଅମାରି ପରେ ବିଜେ ।
କ୍ଷତ୍ରିଠାରୁ ଶୂଦ୍ର ଯାଏ ପ୍ରଣମିତ କଲ୍ୟାଣ ବାଞ୍ଛା କଲେ ଦ୍ୱିଜେ ।
କଲେ ଯେ । ସମ୍ଭାରରେ ସୈନ୍ୟ ଗମନ ।
ମହୀ କମ୍ପନ ପନ୍ନଗପତି ଶଙ୍କି ଧୂଳିରେ ଲୁଚିଲେ ତପନ । ୩୭ ।
ସର ସଦ୍ମ ଚକ୍ରବାକ କଲେ ପଦ୍ମ ଅବଲୋକ ମଣି ସର୍ବରୀ ।
ଚଥାଙ୍ଗ ନାଦେ କଳାପୀ ନାଚେ ମୋଦେ କୁଳଟା ହେଲେ ଅଭିସାରୀ ।
କାକ ରେ । ନିଳୟ ଗତି ଲୀଳା କରେ ।
କୁଳ ପାଳିକା ବାଳିକା ଦୀପାଳିକା ପୁରମାନଙ୍କରେ ଜାଳିଲେ । ୩୮ ।

---

ହୁଳ ହୁଳି ଦେଲେ । ପୁରୋହିତ ପୁଅଙ୍କୁ ବିଧି ମଙ୍ଗଳ କାର୍ଯ୍ୟମାନ ଆରୋପଣ (କରିବା) ପାଇଁ ଗର୍ଜିଲା ପରି ସେ କୁଶଳୀ ହେଲେ (ନିଜର ବିଦ୍ୟା ଦେଖାଇଲେ); ବନ୍ଦି ବୃନ୍ଦ– ଭଟମାନେ କୀର୍ତ୍ତି ଗାଇଲେ । ବାଜାରୂପ (ଲାବଣ୍ୟବତୀ ରୂପ)

୩୬–ମଙ୍ଗଳା ରୋପଣରେ ବାଜା ରୂପକୁ କିପରି ଭାବିଲେ ସେହି ବର୍ଣ୍ଣନା । ପଲ୍ଲବ (ଏଠାରେ କଅଁଳ ପତ୍ର) ତୋରଣା ଅଧର ହେଲା; ପୂର୍ଣ୍ଣକୁମ୍ଭ ପୟୋଧର (ସ୍ତନ) ହେଲା; ମଙ୍ଗଳ ସୂଚକ ମାଛ ମଧ୍ୟ ଦେଖିବାକୁ ରଖାଯାଏ । ହଂସ ଓ ପାରା (ବୋଧହୁଏ) ତୋରଣାରେ ଚିତ୍ର ହୋଇଥିଲା । ଯେଉଁ ମଙ୍ଗଳାଷ୍ଟକ ବୋଲା ହେଲା ସେ ବାଜାର ବଚନ । ଯେଉଁ ଉଦ୍‌ବାସନ (ସିଂହାସନ) ମଙ୍ଗଳା ରୋପଣ ପାଇଁ ତିଆରି ହୋଇଥିଲା ସେ ଜଂଘ; ଶଙ୍ଖ (ଯହିଁରେ ମଙ୍ଗଳା ରୋପଣ ପାଣି ଦିଆ ଯାଉ- ଥିଲା । ) ସେ ମୃଦୁହାସ; ଯେଉଁ କ୍ରମୁକ (କର୍ମରେ ଦରକାର ହେଉଥିବା ଗୁଆ) ସେ ଚୁଚୁକ (କୁଚାଗ୍ର)

୩୭–ପ୍ରଣମିତ–ପ୍ରଣାମ କଲେ; ମହୀ କମ୍ପନେ ( ପୃଥିବୀ ଏପରି କମ୍ପିଲା ଯେ ) ପନ୍ନଗ- ପତି ( ସର୍ପରାଜ–ବାସୁକୀ ) ଶଙ୍କିଲେ । ଏତେ ଧୂଳି ଉଡ଼ିଲା ଯେ ସୂର୍ଯ୍ୟ ଲୁଚିଲେ । ସମ୍ଭାରରେ–ସବୁ ଯୋଗାଡ଼ ପୂର୍ଣ୍ଣକରି " ସମ୍ଭାରଃ ସର୍ବ ପୂର୍ଣ୍ଣତ୍ୱେ "–ଇତି ତ୍ରିକାଣ୍ଡ ଶେଷଃ ।

୩୮–ଧୂଳିରେ ସୂର୍ଯ୍ୟ ଲୁଚି ଯିବାରୁ ସନ୍ଧ୍ୟା ହେବାର ଭ୍ରମ ହେଲା । ତହୁଁ ସର ସଦ୍ମ ( ପୋଖରୀ ଘର ଯାହାର ) ଚକ୍ରବାକମାନେ ପଦ୍ମକୁ ଚାହିଁଲେ । ଠ ପଦ୍ମ ତ ମୁଦି

ବାଦ୍ୟ ଦମକ ଖଡ଼ଗ ଫରୀ ଝମକ ଧନୁ ଘୋଷ ଗଜ ଝଙ୍କାର ।
ତୁରଙ୍ଗ ହ୍ରେଷା ଆଶାରେ ପୂର୍ଣ୍ଣହେଲେ ଦିଗଦନ୍ତୀ ମାନେ କାତର ।
ମଣିଲେ । ଗର୍ଜିକି ସେ ମହାକେଶରୀ ।
ମଇନାକ ଲୁଚେ ଇନ୍ଦ୍ର ଶତକୋଟି କୋଟି କୋଟି ମାରେ ବିଗ୍ଭରି । ୩୯ ।
ପଥ ଗଜନ ପ୍ରଜାଜନ ସମାନ ପୂଜନ କଲେ ସ୍ଥାନେ ସ୍ଥାନେ ।
ଜଳ ହୀନ ହେଲେ ସରିତ କାସାର ଆନନ୍ଦେ ଶିବା ଗୃଧ୍ରମାନେ ।
ଯାବତ । ଯାଦ—ମେଦ ସ୍ୱାଦ ଲଭିଲେ ।
ବହୁତ ଦିନରେ ଯାଇ ସେ କିସ୍କିନ୍ଧ୍ୟାପୁର ପ୍ରଦେଶକୁ ଲଭିଲେ । ୪୦ ।

---

ହୋଇନାହିଁ ସନ୍ଧ୍ୟା କିପରି ହେଲା ? ] ଶର୍ବରୀ-ଗତି; ସେହି ରଥାଙ୍ଗ (ଚକ୍ରବାକ)ଙ୍କ ନାଦରେ ମେଘ ଗର୍ଜିଲା ବୋଲି ବିଗ୍ଭରି ମୋଦେ ( ଆନନ୍ଦରେ) କଳାପୀ (ମୟୂର) ନାଚିଲେ । କୁଳଟା ( ବ୍ୟଭିଗ୍ଭରିଣୀ ସ୍ତ୍ରୀ ) ଅଭିସାରୀ ହେଲେ ( ସଙ୍କେତ ସ୍ଥାନକୁ ଗଲେ ) [ ୨୦ଶ ଛାନ୍ଦ ୧୪ ପଦ ଟୀକା ଦେଖ ] କାକଚୀ ( କୁଆମାନେ ) ନିଜୟ ଗତି ( ବସାକୁ ଯିବା ) କୁଳ ପାଳିକା ବାଳିକା (କୁଳ ସ୍ତ୍ରୀ ) ଦୀପାଳିକା ଜାଳିଲେ ( ସନ୍ଧ୍ୟାଦୀପ ଦେଲେ ); ପୁର—ଘର ;

୩୯—ଦମକ-ଦମ ଦମ ଶବ୍ଦ; ଫରୀ—ଢ଼ାଲ; ଝମକ- ଝମଝମ ଶବ୍ଦ, ଘୋଷ—ଟଙ୍କାର ଝଙ୍କାର—ବୃଂହିତ ଗଜଶବ୍ଦ ; ଘୋଡ଼ାର ଶବ୍ଦକୁ ହ୍ରେଷା କହନ୍ତି । ଆଶା—ଦିଗ; ଦିଗଦନ୍ତୀ—ଦିଗ୍‌ଗଜ; ଆଠ ଦିଗର ଅଧିପତି ହୋଇ ଆଠୋଟି ହାତୀ ଅଛନ୍ତି ବୋଲି ପୁରାଣରେ ଅଛି । " ଐରାବତଃ ପୁଣ୍ଡରିକୋ ବାମନଃ କୁମୁଦୋଽଞ୍ଜନ ପୁଷ୍ପଦନ୍ତଃ ସାର୍ବଭୌମଃ ସୁପ୍ରତୀକଶ୍ଚ ଦିଗଗଜାଃ "—ଇତି ଅମରଃ । କ୍ରମେ ପୂର୍ବ ଦିଗରୁ ଆରମ୍ଭ କରି ଏହି ଆଠୋଟି ଦିଗଦନ୍ତୀ ଏମାନେ ସୈନ୍ୟ ଗର୍ଜନକୁ ସିଂହ ଗର୍ଜନ ମଣିଲେ । ଶତକୋଟି—ବଜ୍ର, କୋଟି କୋଟି- ଅସଂଖ୍ୟ; ଇନ୍ଦ୍ରଙ୍କ ବଜ୍ର ଭୟରେ ମୈନାକ ପର୍ବତ ସମୁଦ୍ରରେ ଲୁଚିଥିଲା ବୋଲି ପୁରାଣରେ ଅଛି ।

୪୦—ବାଟର ଅନ୍ୟ ରଜାଙ୍କ ପ୍ରଜାମାନେ ସମାନେ (ଗୌରବରେ, ମାନ ସହିତ); ସରିତ (ନଦୀ) କାସାର (ପୋଖରୀ) [ବହୁତ ସୈନ୍ୟଙ୍କ ବ୍ୟବହାରରେ] ଜଳ ହୀନ ହେବାରୁ ଜଳ ଜନ୍ତୁମାନେ ଉପରେ ପଡ଼ିଲେ । ଶିବା (ବିଲୁଆ) ଗୃଧ୍ର (ଶାଗୁଣା) ମାନେ ଯାବତ (ସେ ସବୁ) ଯାଦ (ଜଳଜନ୍ତୁ)ର ମେଦ (ମାଂସ); କିସ୍କିନ୍ଧ୍ୟାପୁର— ଆଜି କାଲିର ଦକ୍ଷିଣ ମହୀଶୂର ବୋଲି ପଣ୍ଡିତମାନେ କହୁଛନ୍ତି । ରାମାୟଣ କାଳରେ ଏହିଠାରେ ସୁଗ୍ରୀବର ରାଜ୍ୟ ଥିଲା ।

ବାସବ ସଦନ ପ୍ରକାରେ ସେ ବନ କଟକ ସମାନ ଶୋଭନ ।
ନିଷାର୍ଦ୍ଧେ ନିଷାଦେ ଭ୍ରମିଲେ ବିଷାଦେ ହୀନ ହୋଇ ଜନ ଶୟନ ।
ମନୁଜ । ରୂପୀ ମନୋଜ ମନୋହର ।
ଦନୁଜ ତନୁ ଦାରଣ ରାମ ଚିନ୍ତି କହଇ ଭଞ୍ଜ ବୀରବର । ୪୧ ।

---

୪୧–ବାସ ସଦନ–(ଲୁଗାଘର, ତମ୍ବୁ) ପ୍ରକାର (ପରି) ହୋଇ ମଧ୍ୟ କଟକ (ରାଜଧାନୀ) ପରି; ନିଶାର୍ଦ୍ଧେ–(ରାତି ଅଧରେ) ନିଷାଦେ (ଦଣ୍ଡାସି ଗୋକିଆମାନେ); ବିଷାଦରେ (ଶୋକ ମୋହ ଜନିତ ଦୁଃଖରୁ) ଲୋକଙ୍କର ଶୟନ ହୀନ ହେଲା (ନିଦ୍ରା ହେଲା ନାହିଁ); ମନୁଜ ରୂପୀ (ମାନବ ଦେହ ଧାରୀ) କନ୍ଦର୍ପ ସୁନ୍ଦର ଦନୁଜ ତନୁ (ରାକ୍ଷସ ଶରୀର) ଦାରଣ (ବିଦାରଣ କାରୀ) ଏହିପରି ଯେ ରାମଚନ୍ଦ୍ର ।

*  *

# ଚତୁର୍ବିଂଶ ଛାନ୍ଦ

(ଲବଣ୍ୟବତୀ ନିକଟକୁ ଦୂତ ପ୍ରେରଣ, ଚନ୍ଦ୍ରଭାନୁର ଶିକାର)

ରାଗ—ପାହାଡ଼ିଆ କେଦାର

ଶୁଣ ସୁମତି ବିନାୟ ଗତି ପୂର୍ବ ହରିତ କୁଙ୍କୁମ କାନ୍ତି
ଚେତି ମାଗଧ ଆରମ୍ଭେ ସ୍ତୁତି କୀର୍ତ୍ତି ନିକର ଯେ ।
ଟେକି ମୁକୁଟ ଡ଼ାକେ କୁକ୍କୁଟ ସେ ବାଣୀ ଭର୍ଯ୍ୟା ପତିଙ୍କି କୂଟ
ସର ମାନଙ୍କେ ସାରସ ସ୍ଫୁଟ ଗନ୍ଧେ ଭ୍ରମର ଯେ ।
ଉଠି କୁମାର କାଠି ଲଗି ହୁଅଇ ଯେ ।
କର ଯୋଡ଼ି ସଚିବ ସୁତ ଜଣାଇ ଯେ ।
କହୁ ଅଛନ୍ତି ଶିକାରୀ ଜନ ବହୁ ଜୀବରେ ଏ ବନ ଘନ
ହେବ କି ବିଭେ ଶିକାର ମାନ ଆଜକ ରହି ଯେ । ୧ ।
ଶୁଣି ଏମନ୍ତ ଚିତ୍ତେ ବିଚାରି, ଆଗ ପେଷିଲେ ସେ ବ୍ରହ୍ମଚାରୀ
ରାଜପୁତ୍ରିକା ପାଶେ ବିନୟ ପତ୍ରିକା ଦେଇ ଯେ ।
ତଦନନ୍ତର ଶିକାର ସଜ ଅଣ ବୋଲନ୍ତି ନୃପ ଆତ୍ମଜ
ଶୁଭିଲା ଡ଼ାକ ସଜନ ସାଜ ତୁରିତେ ତହିଁ ଯେ ।
ପ୍ରଥମରେ ଏ ବଳ ହେଲେ ବାହାର ଯେ ।
ଲେଧା ଗୋଧାରେ କରି ମଣ୍ଡନ କର ଯେ ।
ଭ୍ରମକ ପଶୁ ଷ୍ଟୋମରେ ସେହି ସୁଚର୍ମ ବର୍ମ୍ମ ତୋମର ଶୋହି
ବାଜ ବଇରୀ ହସ୍ତେ ବସାଇ ଭସ୍ତ୍ର ଜର୍ଜ୍ଜର ଯେ । ୨ ।

---

୧—ପୂର୍ବ ହରିତ—ପୂର୍ବ ଦିଗ; ମାଗଧ—ବନ୍ଦୀ, ଭଟ—ଏମାନେ ସକାଳୁ ଉଠ ବୀର ମାନଙ୍କ ସ୍ତୁତି ଗାଇବା ଦ୍ୱାରା ରାଜପୁତ୍ର ମାନଙ୍କୁ ଉଠାଉଥିଲେ । କୂଟ—ଲୌହ ମୁଦ୍‌ଗର; ସାରସ—ପଦ୍ମ; ସ୍ଫୁଟ—ପ୍ରସ୍ଫୁଟିତ । ରଜା ମାନଙ୍କ ଘରେ ଦାନ୍ତ ଘଷିବାକୁ କାଠି ଲଗି ହେବା କହନ୍ତି । ସଚିବ ସୁତ—ମନ୍ତ୍ରୀପୁତ୍ର;

୨—ରାଜପୁତ୍ରିକା—ଏଠାରେ ଲବଣ୍ୟବତୀ; ପତ୍ରିକା—ଚିଠି; ନୃପ ଆତ୍ମଜ-କୁମାର ଚନ୍ଦ୍ରଭାନୁ ଲେଧା ଗୋଧା—ଲେଧା ( ନିଚ ଜାତି ବିଶେଷ ) ଗୋଧା- ଧନୁଗୁଣ ନ କାଟିବ— ବୋଲି ଆଙ୍ଗୁଠିରେ ଯେଉଁ ଅଙ୍ଗୁଳିତ୍ର (ବୋଧହୁଏ ଗୋଧି ଚମଡ଼ାରେ ତିଆରି)

ଶବର ପତି କି ଭୟଙ୍କର ଯଥା ପରେତଗଟ କିଙ୍କର
ଭୂଷା ବଗଟ ଗୁଞ୍ଜନିକର ମଧୁରେ ମର ଯେ ।
ମତର ପର୍ଡ଼ି ଧୂଳି ଉଡ଼ାଇ ଗଲେ ସେ ପଶୁପଦ ଗୋଡ଼ାଇ
ଧମନି ଘପେ କାଣ୍ଡ ଚଢ଼ାଇ ଟାଙ୍ଗି ଗୃହୀତ ଯେ ।
ବ୍ୟାଧେ ବହିଣ ନଳ ଚାଳତାଟୀକି ଯେ ।
ନଳି ଅଳିରେ ଶେନି ଅଠା କାଠିକି ଯେ ।
ବହି ବାଗୁର କେ ତହିଁ ତ୍ୱର ବହୁତ ମୃଗଦଂଶକ ଧର
ଶାଖା ବେଷ୍ଟନେ ବଲ୍ଲରୀ ପର ଇଦ୍ଧି ଦୃଷ୍ଟି କି ଯେ । ୩ ।
କୁମାର ବିଜେ ହୟ ପିଠିରେ ତାକୁ ସମାନ ନାହିଁ ସୃଷ୍ଟିରେ ।
ଏମନ୍ତ ହୋଏ କବି ଦୃଷ୍ଟିରେ ସମ୍ଭାବ୍ୟ ତହିଁ ଯେ ।

---

'ଗୋଧା ଜ୍ୟାଘାତ ବାରିଣୀ'–ଇତ୍ୟମରଃ । ସେହି (ଗୋଧା ବଳ) ଯେ କି ପଶୁ ସ୍ତୋମରେ (ପଶୁ ସମୂହର) ଭ୍ରମକ (ଅନ୍ୱେଷକ) ଖୋଜିବାରେ ପ୍ରବୃତ୍ତ, ସେ ସ୍ୱଚର୍ମ (ଭଲ ଢାଲ) ବର୍ମ (ସାଞ୍ଜୁ) ତୋମର (ଚମଡ଼ାର ହାତ ମୁଣା) ପ୍ରଭୃତିରେ ଶୋହିଁ ବାଜ (ଶିକାରୀ ସଞ୍ଚାଣ) ବଲ୍ଲରୀ (ବୋଧହୁଏ ସେହି ପ୍ରକାର ଅନ୍ୟ କୌଣସି ପକ୍ଷୀ ଶୀକାର ବେଳେ ସେମାନଙ୍କୁ ହାତରେ ବସାଇ ବାହାରନ୍ତି;) ଭସ୍ମ ଢର୍ଜର-ପାଉଁଶ ବୋଳି ହୋଇ ।

୩–ଗୋଧାଙ୍କ ପରେ ଶବରମାନେ ବାହାରିଲେ । ପରେତଗଟ କିଙ୍କର–ଯମଦୂତ; ବଗଟ–( କଉଡ଼ି ) ଗୁଞ୍ଜା ( କାଇଁଚ ) ନିକର ( ସମୂହ ) ମଧୁ–ମଦ; ଶବରମାନେ ମନ୍ତପର୍ଡ଼ି ପଶୁକୁ ଅନ୍ଧ କରିବା ପାଇଁ ଧୂଳି ଉଡ଼ାନ୍ତି; ପଶୁପଦେ–ପଶୁ ପଛରେ; ଧମନୀ ଘପ–ଯେଉଁ ଧନୁରେ ଶିର ବା ଅନ୍ତ ଗୁଣ ହୋଇଥାଏ । କାଣ୍ଡ–ଶର; ଟାଙ୍ଗି–ଫାରସା; ତାପରେ ବ୍ୟାଧମାନେ ଘୃଛିଛନ୍ତି: ନଳ ଓ ଚାଳତାଟି ଧରିଛନ୍ତି; ନଳି ଅଳି–ନଳ ସମୂହ; ଅଠାକାଠି ନଳି ଉପରେ ଲଗୁଥିବା କାଣ୍ଡିଆ [ ୧୧ ଛାନ୍ଦ ୧୪ ପଦ ଟୀକା ଦେଖ ] ବାଗୁର–ଜାଲ ଫାଶ; ମୃଗ ଦଂଶନ–ଶିକାରୀ କୁକୁର; ସେମାନେ ଶାଖାବେଷ୍ଟନେ ( ଦେହରେ ଡ଼ାଳ ବାନ୍ଧି ) ଗଲୁଥିବାରୁ ଧର ( ପୃଥିବୀ ) ବଲ୍ଲରୀ ( ଲତା ) ପରି ଦେଖା ଯାଉଥିଲ ।

୪–ହୟ–ଘୋଡା; ତାକୁ–ସେ ଘୋଡ଼ାକୁ; ସୁବର୍ଣ୍ଣ ଜଟାକ୍ଷ–(ସୁନା ଜରୀରେ କାମ କର ହୋଇଛି ଯହିଁରେ) ଏପରି ଯେଉଁ ବାଖର ପହ୍ନା ( ଘୋଡ଼ା ପିଠିରେ ଜିନ ତଳେ ପଡ଼ିଥିବା ଲୁଗାର ବୋଧ ହୁଏ ଏହି ନାମ ) ଡ଼େଣା–ପକ୍ଷ, ବୀର

ସ୍ବର୍ଣ୍ଣ ଜରୀକଶ ବାଖର ପନ୍ହା ଡ଼େଣାକି ବିସ୍ତାରେ ତାର
ଡ଼େଇଁ ଯିବାକୁ ସପ୍ତସାଗର ଇଚ୍ଛା କରଇ ଯେ ।
ବୀର ବଳକୁ ଲଙ୍ଘି ନ ପାରି ରହି ଯେ ।
ଯେଣୁ ସୁଜାଣ ଅଛି କରକୁ ଗ୍ରହି ଯେ ।
ମେରୁ ମହୀରେ ମିଶିବ ଯେବେ ଖୁରିକି ସ୍ଥାନ ନୋହିବ ତେବେ
ତା ଚୂର୍ଣ୍ଣ ଭବି ରହିବା ଠାବେ ଖୁର ମାରଇ ଯେ ।୪।
ସଙ୍ଗେ ଥିବାର ତୁରଙ୍ଗ ବଂଶ ପ୍ରଶଂସା ଆଉ କରିବା କିସ
ଜବକୁ ପବମାନ ସଦୃଶ ପୂର୍ଣ୍ଣ ଲକ୍ଷଣ ଯେ ।
ହୋଇଲେ ବେଗବନ୍ତ ମାତଙ୍ଗ ନ ଦିଶେ ସାଦି ସୁଭତ୍ତମାଙ୍ଗ
କୁସୁମ ଝର ଏଡ଼େ ଉତୁଙ୍ଗ ଅଟନ୍ତି ଜାଣ ଯେ ।
ଅତିଶୀଘ୍ରେ ଗଉତ ମାହୁନ୍ତଚୟ ଯେ ।
ବେଢ଼ି ବୀରକୁ କଲେ ଶୋଭ ଉଦୟ ଯେ ।
ପଦାତି ପନ୍ତି ସଙ୍ଗେ ଧାଇଁଲେ ରମ୍ୟ ବିପିନ ଯାଇ ପାଇଲେ
ଅଦ୍ଭୁତ ଶୋଭମାନ ଗ୍ରହିଲେ ତୋଷ ଉଦୟ ଯେ ।୫।

---

(କୁମାର) ତାର ବଳକୁ ଲଙ୍ଘି ନ ପାରି ( ମାନି ) ସପ୍ତ ସାଗର ଡ଼େଇଁ ନ ଯାଇ ରହିଛି । ସୁଜାଣ (ସୁଶିକ୍ଷିତ) ଥିବାରୁ ବୀର କରକୁ (ହାତକୁ) ଗ୍ରହିଛି । କଳିଆର ଉଶ୍ବାସ କରିଦେଲେ ଡ଼େଇଁଯିବ ପରା—ଏହିଭବ । ମେରୁ ପର୍ବତ ଯେବେ ପୃଥିବୀରେ ମିଶିଯିବ ତେବେ ତାର ଖୁରିକି (ଖୁର ମାରିବାକୁ) ସ୍ଥାନ ହେବ ବୋଲି ବିଗ୍ଭରି ଯେପରିକି ତା ଚୂର୍ଣ୍ଣ ଭବି (ମେରୁକୁ ଚୂରି ଦେବା ପାଇଁ ) ବିଗ୍ଭରି, ରହିବା ଠାବେ ( ଛିଡ଼ା ହେବା ସ୍ଥାନରେ ) ଖୁର (ଖୁରା) ବାଡ଼ୋଉଛି ।

୫—ବଂଶ—ସମୂହ; ଜବକୁ—ବେଗକୁ, ପବମାନ—ପବନ; ପୂର୍ଣ୍ଣ ଲକ୍ଷଣ—ଘୋଡ଼ାଙ୍କର ସବୁ ଭଲ ଲକ୍ଷଣ ଥିଲ, ପଞ୍ଚକଲ୍ୟାଣୀ; ମାତଙ୍ଗ—ହାତୀ; ସାଦି—ଅଶ୍ବାରୋହୀ ଏଠାରେ ନିଷାଦି ଅର୍ଥାତ୍ ଗଜାରୋହୀ ପରିବର୍ତ୍ତେ ବ୍ୟବହୃତ ହୋଇଛି । ସୁଉତ୍ତମାଙ୍ଗ—ପଗଡ଼ିଥିବା ମୁଣ୍ଡ; କୁସୁମ ଝର—ହାତୀ ମୁଣ୍ଡରେ ଫୁଲର ଝରଥାଏ ବା ସେହି ଭଳି ଚିତ୍ର ହୋଇ ଥାଏ; ଉତୁଙ୍ଗ—ଉଚ୍ଚ; ହାତୀ ବେଗରେ ଗ୍ଭଲିବାରୁ ହାତୀ ମୁଣ୍ଡ ଟେକି ହୋଇଗଲ ତହୁଁ ନିଷାଦିର ମୁଣ୍ଡ ଦିଶିଲ ନାହିଁ । ଗଉତ—ସାଦି ମାହୁନ୍ତ—ନିଷାଦି କିଂବା ନିଷାଦି ଆଗରେ ବସିଥିବା ହାତୀକୁ ଚଳାଇବା ଲୋକ; ପଦାତି—ପଦାତିକ; ପାଦରେ ଗ୍ଭଲି ଯେଉଁମାନେ ଯୁଦ୍ଧ କରନ୍ତି ।

ନ ଥିଲ ହୋଇ ପାଦପ ତହିଁ          ଆଉ ଚଉଦ ଭୁବନେ ନାହିଁ
ମରିଚ ଅଳାଇଚ କକ୍‌କୋଳ ସଘନ ଯହିଁ ଯେ ।
ବୈଦ୍ୟ ଭବନ୍ତି ଔଷଧ ପତି          ପ୍ରଭାରେ ଅତି ଥିବେ ଯେ ପ୍ରତି
ରଜନୀ ଏଥି ଗୃହନୀ ଗତି କାନ୍ତି କି ବହି ଯେ ।
ଫଳେ ହେଠ କମାଳୀ କୁମ୍ଭୀ ଜମ୍ଭୀର ଯେ ।
ଦିଶୁଛନ୍ତି ପ୍ରଣାମ କଲ ପ୍ରକାର ଯେ ।
ବାରମାସରେ ବିକାଶ ଜାତୀ          ନୀପ କୁଟଜ କୁସୁମ ବତୀ
ହୃଦ ହରଷ ଦେଖାଉଛନ୍ତି କି ନିରନ୍ତର ଯେ । ୬ ।

ସଫଳ ତହିଁ ପୂଗ ନାରଙ୍ଗ          ଶ୍ରୀଫଳ ତୁଙ୍ଗ ସୁମାତୁଳଙ୍ଗ
ଲଙ୍ଗଳୀ କରମଙ୍ଗାହିଁ ସଙ୍ଗ ବିପୁଳ ଭବ ଯେ ।
ଶିଶୁ ଠାବରୁ ଜରତୀ ସରି          ସ୍ତନ ଶୋଭନ ଥିବାରୁ ଧରି
ଉତ୍‌ଫୁଲ୍ଲ ସ୍ତମ୍ଭ ଅଛି ଆଦରି ପୁନ୍ନାଗ ଧବ ଯେ ।
ଅଙ୍ଗବାସ ମାଧବୀ ସୁପରିମଳ ଯେ ।
ହୋଇ ପ୍ରସରୁ ଅଛି ମନ୍ଦ ଅନିଳ ଯେ ।
ବଗହଦାଢ ନବ ମାଳିକା          ନୂତନ କରବୀର କଳିକା
ଯଥା ବାଳିକା ନଖ ମାଳିକା ମହା ଉଜ୍ଜ୍ୱଳ ଯେ । ୭ ।

---

୬—କକ୍‌କୋଳ—କାଙ୍ଗୁଲ; ଏ ଫଳ ଘଷି ସୁବାସ ପାଣି କରନ୍ତି; ଔଷଧ ପତି—ଔଷଧ ହେବା ଭଳି ଗଛମାନେ, ଏମାନଙ୍କ ମଧ୍ୟରୁ ଅନେକ ରାତିରେ ଆଲୁଅ ଦିଅନ୍ତି ବୋଲି ପ୍ରବାଦ । ଫଳେ ହେଠ—ଫଳରେ ନମ୍ର, ଲଇଁ ଯାଇଛନ୍ତି; ଏହି ଅର୍ଥରେ 'ହେଠ' ଶବ୍ଦ ବଙ୍ଗଳାରେ ଖୁବ୍ ଚଳେ । କୁମ୍ଭୀ—ଟଭ; ଜମ୍ଭୀର—ଟଭପରି ଏକ ବଡ଼ ଫଳ ଜମ୍ବିରୁ; ଜାତୀ—ଯାଇ (ବସନ୍ତରେ ଫୁଟେ) କୁଟଜ କୋରହୁଁଆ, ପିତା କୋରମା ବା ଇନ୍ଦ୍ରଯବ (ବର୍ଷା ଶେଷକୁ ଫୁଟେ)—ଏହି ଗଛମାନେ କୁସୁମବତୀ (ପୁଷ୍ପବତୀ) ହୋଇ ଫୁଲ ଛଳରେ ହୃଦୟର ହର୍ଷ ଦେଖାଉଛନ୍ତି । ବାରମାସରେ ଭିନ୍ନଭିନ୍ନ ଋତୁର ଫୁଲ ଏକାବେଳେ ଫୁଟିଛନ୍ତି; ( ଏଠାରେ ନିତ୍ୟ ବସନ୍ତ )

୭—ପୂଗ ଗୁଆ; ଶ୍ରୀଫଳ—ବେଲ; ସୁମାତୁଳଙ୍ଗ—ଭଲ ଟଭ; ଲଙ୍ଗଳୀ—ନଡ଼ିଆ; ବିପୁଳଭବ ବହୁତ ପ୍ରକାରରେ; ଶିଶୁ (ବାଳିକା) ଠାରୁ ଜରତୀ (ବୁଢ଼ୀ) ସମସ୍ତଙ୍କର ସ୍ତନ ଭଳି (ଗୁଆ ଠାରୁ ନଡ଼ିଆ ପର୍ଯ୍ୟନ୍ତ) ଥିବାରୁ ପୁନ୍ନାଗ (ମୁରୁଷ ଶ୍ରେଷ୍ଠ)—(ଏଠ ରେ ପୁଲଙ୍ଗ ଗଛ) ଉତ୍‌ଫୁଲ୍ଲ ହୋଇ (ଖୁସୀ ହୋଇ ପୁଷ୍ପବନ୍ତ ହୋଇ) ସ୍ତମ୍ଭ (ଭାବରେ ସମ୍ଭୂତ)

କୁଞ୍ଜ କୁଟୀର ମାନ ରୁଚିର　　　ଯୂଥିକା ମୋତି ବିତାନ ଚୀର
　　ପତନ ପୁଷ୍ପ ଶଯ୍ୟା ପ୍ରକାର ଶେଫାଳିକାର ଯେ ।
ଭକ୍ଷନ୍ତି ଭକ୍ଷ ସାରୀ କପୋତ　　　ସୁମନ ରତି ରସରେ ମତ୍ତ
　　ପାନ ଖଦିର ଲବଙ୍ଗ ସ୍ଥିତ କି ମନୋହର ଯେ ।
　　ଦୀକ୍ଷା ବିହୀନେ ଶିକ୍ଷା କନ୍ଦର୍ପ କେଳି ଯେ ।
　　ପଶୁ ବସନ୍ତି ପାରାବତହିଁ ଖେଳି ଯେ ।
ପକ୍ୱଣ ବାସ ଅଶୋକ ଡ଼ାଳୀ　　　ସ୍ତବକ ରବିଦ୍ୟୋତରେ ଝଳି
　　ଭ୍ରମ କରିଣ ଶଶା ହରିଣ ସମ୍ବର ମିଳି ଯେ ।୮।

ଚନ୍ଦ୍ରକ ଟେକି ନାଚନ୍ତି କେକୀ　　　ଉର୍ଦ୍ଧ୍ୱରୁ ଖସୁଛନ୍ତି ଗୃତକୀ
　　ଯହିଁ ତମାଳ ତରୁକୁ ତର୍କି ଜଳଦ କରି ଯେ ।
ଅମ୍ଳାନ ଗୁଳ୍ମ ବଲ୍ଲୀକବତ　　　କୁସୁମ ପୀତ ରଙ୍ଗ ଅଶିତ
　　ଶ୍ରେଣୀଭୂତଧେ ସେ ପୁରୁହୂତ କୋଦଣ୍ଡ ପରି ଯେ ।

---

ହୋଇଛି, କିମ୍ବା ଖମ୍ବପରି ସ୍ଥିର ହୋଇ ଠିଆ ହୋଇଛି । ଧବ—ସ୍ୱାମୀ; ସ୍ତ୍ରୀ ମାନଙ୍କର ଅଙ୍ଗବାସ ପରି ମାଧବୀ ଲତା ସୁପରିମଳ (ସୁଗନ୍ଧ ପବନ) ନବ ମାଳିକା—ନିଆଳୀ; କରବୀର (କନିଅର), ଏ ସବୁ ବାଳିକା (ସ୍ତ୍ରୀ)ର ନଖ ମାଳାପରି ଦିଶୁଛନ୍ତି ।

୮—ବଣ ଭିତରର କୁଞ୍ଜ କୁଟୀର (ପତ୍ର ଗହଳିଆ ଘର) ମାନ; ଯୂଥିକା—(ଯୁଇ) ମାଳାରୁ ଛିଡ଼ି ପଡ଼ିଥିବା ମୋତି ହେଲା । ବିତାନ—(ଅଗଣା) ଚୀର (ଖେଯ ଲୁଗା) ହେଲା; ଶେଫାଳିକା (ଗଙ୍ଗ ଶିଉଳୀ)ର ପତନ (ଝଡ଼ି ପଡ଼ିଥିବା) ପୁଷ୍ପ ଶଯ୍ୟା ହେଲା; ସେଠାରେ ସାରୀ, କପୋତ (କାଉ୍ତା) ସୁମନ (ଫୁଲ)ର ରତି (ସ୍ନେହ) ରସରେ ମତ୍ତ ହୋଇ ଭକ୍ଷନ୍ତି (ଖାଆନ୍ତି, ଯତ୍ନ କରନ୍ତି); ପାନ, ଖଇର ଲବଙ୍ଗ ଗଛମାନେ ସେଠାରେ ଅଛନ୍ତି । ପାରାବତ ମାନେ (ପାରାମାନେ) ଏହିପରି ପୁଷ୍ପଶଯ୍ୟାଦି ଯୁକ୍ତ କୁଞ୍ଜ କୁଟୀରରେ ଦୀକ୍ଷା ବିହୀନେ (କାହାରି ଠାରୁ ଦୀକ୍ଷା—ଦୃଷ୍ଟାନ୍ତରେ ଶିକ୍ଷା, ନପାଇ ମଧ୍ୟ); ପକ୍ୱଣବାସ (ଶବର ଘରେଥିବା) ଅଶୋକ ବଲ୍ଲୀ (ଗଛ) ସ୍ତବକ (ଫୁଲ ପେନ୍ଥା) ରବିଦ୍ୟୋତି (ଖରା)ରେ ନିଆଁ ପରି ଉଜ୍ଜ୍ୱଳ ହୋଇ ଥିବାରୁ ଶଶା (ଠେକୁଆ) ହରିଣ, ସମ୍ବର ପ୍ରଭୃତି ଭ୍ରମ ହୋଇ (ଭ୍ରମରେ ପଡ଼ି) ସେଠାରୁ ବାହାରି ଆସୁଛନ୍ତି । ରତିରେ ବଣରେ ନିଆଁ ଦେଖିଲେ ଏ ଜନ୍ତୁମାନେ ନିଆଁ ପାଖକୁ ଆସନ୍ତି ।

୯— ସେ ବନ ବର୍ଷାକାଳ ପରି ହୋଇଛି· ଚନ୍ଦ୍ରକ (ପିଛ); କେକୀ—ମୟୂର; ତମାଳ ଗଛକୁ ତର୍କି ( ବିଗୁରି ); ଅମ୍ଳାନ ଗୁଳ୍ମ—ଲଟଳା ବା ଟିଣିଆ ଗଛ—ଏହାର ଧଳା-

ମରଦିରଦ ନାଦ ଉଚ୍ଚରେ ଶୁଭେ ଯେ ।
ଚମ୍ପା ସମ୍ପାତ ଶମ୍ପାକୁ ସମ ଇଭେ ଯେ ।
ବନ୍ଧୁଜ ମକରନ୍ଦ ବରଷେ ଡ୍ରାହୁକ କେକା ବାଣୀକି ଘୋଷେ
ବକାଳୀ ଗତ ଆଗତ ବଶେ ସ୍ୱଭବେ ଶୋଭ ଯେ । ୯ ।
ପ୍ରଫୁଲ୍ଲ ମଲ୍ଲୀବଲ୍ଲିକାମାନ ତାଗ ସହିତେ ନୀଳ ଗଗନ
ଛିଡ଼ି ପଡ଼ିଲା ଧର ଶୋଭନ ଛନ୍ନ ବର୍ତ୍ତିକ ଯେ ।
ଅନାଇ ତାହା ଅଶିତ ନୀଳ- ଦାସୀ ପ୍ରକାଶ ରଥାଙ୍ଗ କୁଳ
ପ୍ରବେଶ ହୋଇ ମହାବ୍ୟାକୁଳ ପକ୍ଷ ବିବେକ ଯେ ।
ଗ୍ରହିଁ ଚକୋର ପକ୍ଷୀ ଚକ୍ଷୁ ଯୁଗୁକୁ ଯେ ।
ରଖେ ଚତୁର ପଣେ କାନ୍ତା ଯୋଗକୁ ଯେ ।
ବାରୁଣୀ ପୁଷ୍ପବନ୍ତ ମନ୍ଦାର ଦେଖି ଆନନ୍ଦ ଦିବାନ୍ଧବାର
ତନୁ ଦୋଳିକା ଆଦି ବିଗ୍ରର କରେ ରଙ୍ଗକୁ ଯେ । ୧୦ ।
କିଂଶୁକ ଶୁକ ଯେ ବୃକ୍ଷେ ଥାଇ ଭ୍ରମରେ ସେହୁ ଭ୍ରମ କରଇ
ଚୂତ ପରଗେ ସେ ଅନ୍ଧ ହୋଇ ହୋଇଁ ପତନ ଯେ ।

---

ଫୁଲ ବାସି ହେଲେ କ୍ରମେ ହଳଦିଆ ଓ ନାଲି ହୋଇଯାଏ । ସେ ଗଛ ବଲ୍ମୀକବତ (ଉଇ ହୁଙ୍କା ପରି ) ହେଲ; ପୁରୁହୂତ କୋଦଣ୍ଡ—ଇନ୍ଦ୍ରଧନୁ ଉଇହୁଙ୍କାରୁ ଇନ୍ଦ୍ରଧନୁ ବାହାରେ ବୋଲି ପୂର୍ବେ ବିଶ୍ୱାସ ଥିଲା । ଚମ୍ପା ସମ୍ପାତ (ଚମ୍ପାଫୁଲ ପଡ଼ିବା) ଶମ୍ପା ( ବିଜୁଳି ); ବନ୍ଧୁଜ; (ବଉଳ); ବର୍ଷା ଦିନରେ ବକାଳୀ ( ବଗମାନେ ) ଉଡ଼ନ୍ତି ।

୧୦—ମଲ୍ଲୀ ଫୁଲ ଥାଇ ମଲ୍ଲୀ ବୁଦାମାନ ଛିଡ଼ି ପଡ଼ିଲା ଆକାଶ ପରି; ବର୍ତ୍ତିକ—ବଣୀ ବା ଟିଂଟିଆ ବା ଟେଣ୍ଟଇ ଚଢ଼େଇ; [ କଥା ଅଛି ଏ ଚଢ଼େଇ ରାତିରେ ଆକାଶ ଛିଡ଼ି ପଡ଼ିବା ଭୟରେ ଉପରକୁ ଗୋଡ଼ କରି ଶୁଏ; ] ଛିନ୍ନ—ବ୍ୟାକୁଳ; ଅତସୀ—ଏକ ପ୍ରକାର କଳା ଫୁଲ; ନୀଳଦାସୀ—କଳା ଦାସକେରେଣ୍ଡା; ରଥାଙ୍ଗ—ଚକ୍ରବାକ; ଚକୋର ପକ୍ଷୀରଆଖି ରାତିରେ ନିଆଁ ପରି ଜଳେ; କାନ୍ତା ଯୋଗକୁ ରଖେ—କାନ୍ତାକୁ ଛାଡ଼ି ଯାଏ ନାହିଁ; ବାରୁଣୀ—ପଶ୍ଚିମ ଦିଗରେ; ମନ୍ଦାର—ମନ୍ଦାର ଗଛ; ଦିବାନ୍ଧବାର —ପେଚାମାନେ; ତନୁ ଦୋଳିକା ଆଦି- ଚେମେଣୀ ବାଜୁର ପ୍ରଭୃତି; ପଶ୍ଚିମରେ ରଙ୍ଗ ଦେଖି ସନ୍ଧ୍ୟା ହେଲା ବୋଲି ବିଗ୍ରରନ୍ତି ।

୧୧—[ ଚତୁର୍ଥ ଛାନ୍ଦ ୨୪ ପଦ ଟୀକା ଦେଖ । ]
ଭ୍ରମରେ (ଭ୍ରମରକୁ) କିଂଶୁକ (ପଳାସ) ଭ୍ରମ (ଭୁଲ) କରଏ; ଶୁଆ ବିମ୍ବ ପାଖକୁ ଇଚ୍ଛାରେ ବାହାରି ଗଲାବେଳେ ତାକୁ ଜମ୍ବୁକ 'ଗଲରେ' ବୋଲି ଥଟା କରି ଗର୍ଜେ ।

ଜମ୍ବୁ ବିଗ୍ରରେ ଉଡ଼ିଣ ସେ ଯେ    ବିମ୍ବ ପାଶକୁ ବାହୁଡ଼ି ଲଜେ
ଗଲରେ ବୋଲି ଜମ୍ବୁକ ଗର୍ଜେ କରି ଲୋକନ ଯେ ।
ଗ୍ରହିଁ କସ୍ତୁରୀ ପଙ୍କେ ପର୍କିତା ମହୀ ଯେ ।
ସଡ଼ି ପଡ଼ି ଏମନ୍ତ କୋକିଳ ଧ୍ୟାୟି ଯେ ।
ଆଷାଢେ କରି ଏ ରସ ପାନ    କରଇ ମୁଁ ଯେ ପଞ୍ଚମ ଗାନ
ଏହା ଯା ଜାଣୁ ନାହାନ୍ତି ଆନ ମୋ ଭାଗ୍ୟ ଏହି ଯେ । ୧୧ ।
ଡ଼ାଳିମ୍ବ ତୋଳେ ତଳେ ଅବନୀ    ବୁଣିଲ ପ୍ରାୟ ମାଣିକ୍ୟ ଚୂନୀ
ଖଞ୍ଜନେ ମିଳୁଛନ୍ତି ଏ ଘେନି କରଣେ ସ୍ଥାନ ଯେ ।
ପଡ଼ି ଗୁଗ୍‌ଗୁଳ ଶାଳ ନିର୍ଯାସେ    ବଂଶ ଅନଳେ ଧୂପ ପ୍ରକାଶେ
ପୁଳିନ୍ଦ ଅଗ୍ନି ଦେବାର ଭାସେ ସରଘା ମାନ ଯେ ।
ଉଡ଼ୁ ଅଛନ୍ତି ଛାଡ଼ି ମଧୁ କୋଷକୁ ଯେ ।
କରି ମଣ୍ଡଳୀ କରୁଛନ୍ତି ଘୋଷକୁ ଯେ ।
ଯେଣେ ଘ୍ରହିଲେ ନବ ପାଟଳୀ    ଜୟନ୍ତୀ କୁରୁବକ ଶାଳ୍ମଳୀ
ପୁଷ୍ପିତ କେନ୍ଦୁ ପଲ୍ଲବେ ଝଳି ସେହି ଭାସକୁ ଯେ । ୧୨ ।
କୃଷ୍ଣ ଚମରୀ ଗଣ ଚରମେ    ହଂସ ସରଳୀ କାଳନ୍ଦୀ ଭ୍ରମେ
ବିହାର କରୁଛନ୍ତି ଅଗମ୍ୟେ ସୁମନୋରମେ ଯେ ।

---

କସ୍ତୂରୀ ପଙ୍କ (ବୋଧହୁଏ ଏଠାରେ ବର୍ଷାର କଳା ପଙ୍କ) ପଡ଼ି ସର୍ତ୍ତି (ଚୂତ ପରାଗ ମର୍ତ୍ତି); କୋଇଲି ଆଷାଢରେ ଏ ରସ ପାନ କରି ବସନ୍ତରେ ଗାଏ । [ ମାତ୍ର ଏଠାରେ ଆଶୟ କିଛି ସ୍ପଷ୍ଟ ହେଉ ନାହିଁ । ]

୧୨—ଡ଼ାଳିମ୍ବ ମଞ୍ଜି ସବୁ ଗଛ ତଳେ ମାଣିକ୍ୟ ଚୂନୀ କରି ବୁଣିଲ ପରି ହୋଇଛି । କଥା ଅଛି ଯେଉଁ ଭୂମିରେ ନିଧି ନଥାଏ ସେଠାରେ ଖଞ୍ଜନ ରହେ ନାହିଁ । ଗୁଗ୍‌ଗୁଳ (ଗୁଗ୍‌ଗୁଳ ଗଛର ସାର) ଶାଳ ନିର୍ଯାସ (ଝୁଣା) ବଂଶ ଅନଳେ (ବାଉଁଶ ଗଛ ନିଆଁରେ) ଧୂପ (ସୁବାସିତ ଧୂଆଁ); ସରଘା—ମହୁମାଛି; ପାଟଳୀ, ଜୟନ୍ତୀ, କୁରୁବକ (କଣ୍ଟା କୁସୁମ) ଶାଳ୍ମଳୀ (ଶିମିଳି) ଏମାନେ ସବୁ ନୂଆ ଫୁଲରେ ଏବଂ କେନ୍ଦୁ କଅଁଳ ପତ୍ରରେ—(କଅଁଳ କେନ୍ଦୁପତ୍ର ସେହି ସବୁ ଫୁଲ ପରି ରଙ୍ଗ) ଏ ସମସ୍ତେ ନାଲି ହେବାରୁ ସେହି ନିଆଁର ଭାସ (ଭୟ) କୁ ଝଳି (ବିଶେଷରେ) ପ୍ରକାଶ କରୁଛନ୍ତି ।

୧୩—କୃଷ୍ଣ ଚମରୀ ( କଳା ଚମରୀ ଗାଇ ବା ମୃଗ ) ଙ୍କର ଚରମେ ( ପିଠିରେ ) [ କଳା ହେବାରୁ କାଳିନ୍ଦୀ ( ଯମୁନା ) ଭ୍ରମ କରି ହଂସ ସରଳୀ (ହଂସରଡ଼ୀ)

ବ୍ୟାଳେ ମୃଣାଳ ବୁଦ୍ଧି କରନ୍ତି କଙ୍କ ନକୁଳ ଯେଁ ନ ଧରନ୍ତି
ପକ୍ଷୀ ଛାୟାକୁ ଡାଳେ ଧାମନ୍ତି ବିଡ଼ାଳେ ଶ୍ରମେ ଯେ ।
ଅର୍କ ପାଷାଣମାନେ ସେ ବନ କ୍ଷିତି ଯେ ।
ବଡ଼ ବଡ଼ ହୋଇଣ ପଡ଼ି ଅଛନ୍ତି ଯେ ।
ମତ୍ତ ଗର୍ବିତ ସିଂହ ସନ୍ଦୋହ ତହିଁ ଅନାଇଁ ଜାତ ସନ୍ଦେହ
ଆରମ୍ଭି ଆସୁଛନ୍ତି କଳଶ୍ୱନାଦେ ଅତି ଯେ । ୧୩ ।
ପତନ ଜାତୀଫଳ ଅମୃତା ପକ୍ୱ ବଦରୀ ଗଜ ମୁକୁତା
ବିବେକ ନ କରିଣ ମାଡ଼ି ତା ଗମିଲେ ସୈନ୍ୟ ଯେ ।
ଏଳାଦି ଭରଦ୍ୱାଜ ପତ୍ରରେ ଚିହ୍ନିତ ପଥ କି ବିଚିତ୍ରରେ
ସର୍ବେ ପ୍ରଶଂସା କଲେ ଉତ୍ତରେ ଏ ବନ ଧନ୍ୟ ଯେ ।
ଅତି ମୁଖ ଚହଳ ନିଶାଣ ଘାତେ ଯେ ।
ହେଲେ ଚକିତ ପଶୁ ପତଙ୍ଗ ଯେତେ ଯେ ।
ଛାଡ଼ୁଁ ସେ ବନ ସେ ବନଧର ମାଡ଼ି ଆସିଲ ମଣି ସାଗର
ଅତ୍ୟନ୍ତ ଲୋଳ ପତାକା ଚୀର କଲ୍ଲୋଳ ପ୍ରତେ ଯେ । ୧୪ ।

---

ପାତିହଂସ) ଅଗମ୍ୟେ (ବଣ ଭିତରେ); ବ୍ୟାଳେ (ସାପରେ) ମୃଣାଳ (କଇଁନାଡ) ବୁଦ୍ଧି କରନ୍ତି ( ଜ୍ଞାନ କରନ୍ତି ) କଙ୍କ (ବର୍ତ୍ତିକାଙ୍କ) ନକୁଳ ( ନେଉଳ ) ଏମାନେ ମଧ୍ୟ ସେ ସାପକୁ ଧରୁ ନାହାନ୍ତି; ବିରଡ଼ି ମାନେ ଶ୍ରମେ ( କ୍ଳାନ୍ତ ହୋଇ ) ପକ୍ଷୀଙ୍କ ପକ୍ଷ ଛାୟାରେ ରହିବା ପାଇଁ ଡ଼ାଳକୁ ଦୌଡୁଛନ୍ତି । ଅର୍କ ପାଷାଣ ( ସ୍ଫଟିକ ପଥର, ମଣି ) [ ଅର୍କଃ ସ୍ଫଟିକ ସୂର୍ଯ୍ୟୟୋଃ–ଇତ୍ୟମରଃ ]; ସିଂହ ସନ୍ଦୋହ ( ସିଂହ ସମୂହ ) ଦେଖିଲେ ମନେ ହୁଏ କଳ ହଂସମାନେ ଆସୁଛନ୍ତି । ଘୋର ବନ ହେବାରୁ ଏପରି ଭ୍ରମ ହେଉଛି ।

୧୪–ଜାତୀଫଳ– ( ଜାଇଫଳ ) ଏବଂ ଅମୃତା (ହରିଦ୍ରା) ପୁଣି ପକ୍ୱ ବଦରୀ (ପାଚିଲା ବର କୋଳି) ଓ ଗଜ ମୁକୁତା ଏହା ଭିତରେ ବିବେକ ନ କରି (ପ୍ରଭେଦ ନ କରି); ଏଳାଦି ( ଅଳାଇଚ ପ୍ରଭୃତି, ଏଠାରେ ଅଳାଇଚ ପ୍ରଭୃତିର ଫୁଲ ) ଭରଦ୍ୱାଜ ପତ୍ର (ହଳଦୀ ବସନ୍ତ ଚଢେଇର ପକ୍ଷୀ ); ମୁଖ ଚହଳ–କଥାବାର୍ତ୍ତା ଗୋଳମାଳ; ନିଶାଣ ପତାକା; ବନଧର–ସୈନ୍ୟ; ମାଡ଼ି ଆସିଲ ସାଗର–ସମୁଦ୍ର ଜୋରରେ ମାଡ଼ି ଆସୁଥିବା ମଣି–ବିଗ୍ରହି, କାହିଁକି ? –ଅତ୍ୟନ୍ତ ଲୋଳ (ଚଞ୍ଚଳ) ଯେ ପତକା ଚୀର ( କନା ) ସେ କଲ୍ଲୋଳ ( ଲହରୀ ) ପରି ।

କରୀ ମଣିଙ୍କେ ମକରୀ କରି ତୁରଙ୍ଗ ତହିଁ ଶଫରୀ ପରି
କୂର୍ମ ସୁଚର୍ମ ସୁଷମ ଫରୀ ଉଷ୍ଣୀଷ ଫେନ ଯେ ।
କୃପାଣ ଝଟ ଝଟ ଝଟକ ବହଇ ଯନ୍ ରନ୍ ଝଟକ
ଭ୍ରମ ପଦାତି ଭଉଁରୀ ଠିକ ବାଦ୍ୟ ଗର୍ଜନ ଯେ ।
ପୂରି ଏସନ ସୈନ୍ୟ ସେ ମହାରଣ୍ୟ ଯେ ।
ପଞ୍ଚକ୍ରୋଶ ମଧ୍ୟରେ ରମ୍ଭଣ ସ୍ଥାନ ଯେ ।
ଘଞ୍ଚରେ ଯାଇ ବାଡ଼ ବେଢାଇ ଉଚ୍ଚରେ ବୃକ୍ଷେ ମଞ୍ଚା ବନ୍ଧାଇ
ଯନ୍ତା ବସାଇ ଟୋପ ଖୋଳାଇ ଜଗିଲେ ଜନ ଯେ ।୧୫।
ପଳାଇ ଜୀବେ ଯହିଁରେ ସ୍ଥିତି ବହି ସେ ଦନ୍ତି ଦନ୍ତ ଆକୃତି
ତହିଁ ମର୍କତ ଶିଳାର ଜ୍ୟୋତି ଯାଇଛି ନଭେ ଯେ ।
ଟେକି ଅଛି କି ଏଥିକି କର ପିଇବ ଆଣି ସ୍ୱର୍ନଦୀ ନୀର
କରଟ ଦନ୍ତ କଟକେ ତାର ପେଚକ ଶୋଭେ ଯେ ।
ଧାତୁ ଧାର ଶିକଳା ମାଳା ସଦୃଶୀ ଯେ ।
ଜଳ ପ୍ରବାହ ଦାନ ଜଳ ବରଷି ଯେ ।
ପପ୍ପଳ ଅଶନକୁ ଗୃହୀତ କରି ସିନ୍ଦୂରେ ତିଳକେ ଯୁତ
ଦିବସ ଚନ୍ଦ୍ର ଯହୁଁ ମାହୁନ୍ତ ପରାୟ ଦିଶି ଯେ ।୧୬।

---

୧୫—ସମୁଦ୍ର ସଙ୍ଗେ ତୁଳନା ଗଲିଛି । କରୀ (ହାତୀ) ମକରୀ (କୁମ୍ଭୀର) ପରି; ତୁରଙ୍ଗ (ଘୋଡ଼ା) ସଫରୀ (ମାଛ) ପରି; ସୁଚର୍ମ ସୁଷମ ଫରୀ (ଗଣ୍ଡା ଚମର ସୁନ୍ଦର ଢାଲ) କୂର୍ମ (କଚ୍ଛପ) ପରି; ଉଷ୍ଣୀଷ (ପଗଡ଼ି) ଫେଣ ପରି; କୃପାଣ (ଖଣ୍ଡା)ର ଝଟଝଟ ଝଟକ ଯନ୍ତ୍ରରେ ରନ୍ ଝଟକ (ଜ୍ୟୋତି) ବହେ (ବହନ କରେ); ପଦାତି ମାନଙ୍କର ଭଉଁରୀ (ବୁଲି ବୁଲି ଗଲିବା) ଭ୍ରମ (ପାଣି ଭଉଁରୀ) ପରି; ଠିକ୍—(ନିଶ୍ଚୟରେ)ବାଦ୍ୟ—ସମୁଦ୍ର ଗର୍ଜନ ପରି; ଘଞ୍ଚରେ-ଲଗା ଲାଗି କରି; ବାର୍ହା ପ୍ରଭୃତି ଶୀକାରରେ ପତ୍ର ବାଡ଼ କରି ଘରେ ଲୁଚି ଜଗି ବସନ୍ତି; ବାଘ ପ୍ରଭୃତି ଶୀକାରରେ ଗଛ ଉପରେ ମଞ୍ଚାବାନ୍ଧି ବସନ୍ତି; ହାତୀ ପ୍ରଭୃତି ଧରିବାରେ ଟୋପ-(ବଡ଼ ଗାତ) ଖୋଳନ୍ତି । ଟୋପରେ ହରିଣ ସମ୍ବର ପ୍ରଭୃତି ମଧ୍ୟ ଧରା ହୁଅନ୍ତି ।

୧୬—ଜୀବମାନେ ପଳାଇ କରି ଯହିଁରେ ରହିଲେ ସେ ଦନ୍ତୀ (ପର୍ବତ) ଦନ୍ତୀ (ହାତୀ) ଆକୃତି (ଆକାର) ବହେ । ଯେଉଁ ପର୍ବତରେ ମର୍କତ ଶୀଳାର(ମର୍କତ ମଣିର)ତେଜ ଆକାଶକୁ ଉଠିଛି । ବୋଧ ହେଉଛି ଏ ହାତୀ ସ୍ୱର୍ନଦୀ (ସ୍ୱର୍ଗ ଗଙ୍ଗା) ତାହାର ପାଣି ପିଇବ ବୋଲି ଥୋଢ଼ ପାହାଡ଼ ଟେକିଛି । କରଟ (୧. କୁଆ, ୨, ହାତୀର

ସେ ଗ୍ରୀବୁଁ ଜୀବ ସବୁରେ ଛାଟୀ        ଦେଇ କୁହାଟ ଟମ୍ଭକ ଡ଼ାଟି
ଫିଙ୍ଗିଲେ ଷାନ୍ଦି କୁନ୍ତ ଶାବଳୀ ବିନ୍ଧିଲେ ତୀର ଯେ ।
ଘଟି ନଳିବୁ ଗୁଳି ବାହାରି        ଧାଡ଼ି ଦେବାର ବାଜ ବଇରୀ
ମ ଡ଼ି ବସିଲେ ପକ୍ଷୀଙ୍କି ଧରି କି ମନୋହର ଯେ ।
ଜାଲେ ପଡ଼ିଲେ ଅର୍ଦ୍ଧେ ପଶୁ ନିକର ଯେ ।
ଗର୍ତ୍ତେ ପଡ଼ିଲେ କେତେ କେତେ କୁଞ୍ଜର ଯେ ।
ମାରରେ ମାର ଏ ବୀର ଘିର        ପୂରିତ ହେଲା ଅମର ପୁର
ସାଜିଲା ଅବା କହିଁ ଅସୁର ଭାବିଲେ ସୁର ଯେ । ୧୭ ।

ଭଲ୍ଲରେ ଭଲ୍ଲ ଭଲ୍ଲ ଭୁଷିଲେ        ମଲ୍ଲ ଯୁଝିଲେ ଶାର୍ଦ୍ଦୂଳ ତୁଲେ
ଖଡ଼ଗ ଲ୍ଗେଟ ପରୀକ୍ଷା କଲେ ଖଡ଼ଗ ପରେ ଯେ ।
ଶରଭ ଶରଭରେ ବିନାସି        ବାରଣ କଲେ ଭୂଦାର ମିଶି
ସ୍ତୁଦାଢ଼ ଯମଦାଢ଼ ପ୍ରକାଶି ଅତି କୋପରେ ଯେ ।

---

ଗଣ୍ଡ) ଦନ୍ତ (୧. ଗିରିଶୃଙ୍ଗ, ୨. ହାତୀ ଦାନ୍ତ) କଟକ (୧, ଗିରି ନିତମ୍ବ, ୨. ହାତୀ ଦାନ୍ତର ବଳା) ପେଚକ (୧, ପେଚା, ୨. ହାତୀ ଲାଙ୍ଗୁଳର ମୂଳ ଠାରୁ ଶେଷଯାଏ) "ପେଚକୋ ଗଜ ଲାଙ୍ଗୁଳ ମୂଳେ। ପାଣ୍ଡେଚ କୌଶିକେ"–ଇତି ଶବ୍ଦ କୋଷ; ଧାତୁ ଧାଉ (ଗେରୁ ପ୍ରଭୃତି ଭୂମିମାନେ ହାତୀ ଉପରେ ଚିତ୍ର ହୋଇଥିବା ଶିକଳା ମାଳା ସଦୃଶୀ) ପର୍ବତର ଜଳ ପ୍ରବାହ ହାତୀର ଦାନ ଜଳ (ମଦବାରି –ପାହାକି ହାତୀର କର, ଗଣ୍ଡ ପ୍ରଭୃତିରୁ ବହେ । ପିପ୍ପଳ (ଅଶ୍ୱତ୍ଥ ଅଶନ (ଏକ ...ର କାଠ ଗଛ) ସେ ହାତୀର ପିପ୍ପଳ ଅଶନ (ଓଷ୍ଠ ଦ୍ୱାର ଖାଇବା) ହେଲା ସିନ୍ଦୂର ଓ ତିଳକ ଗଛ ସବୁ ହାତୀ ମୁଣ୍ଡରେ ଚିତ୍ର ହୋଇଥିବା ସିନ୍ଦୁର ଟିକଳ ପରି ହେଲା । ଦିବସ ବନ୍ଧୁ (ସୂର୍ଯ୍ୟ) ମାହୁନ୍ତ ପରି ହେଲେ ।

୧୭–ଗୋତ୍ର–ପର୍ବତ; ବହୁ ଦୂରରୁ ଲୋକେ ଧାଡ଼ି ଧରି ଜନ୍ତୁଙ୍କୁ ଶିକାରୀ ପାଖକୁ ବାଡ଼େଇ ଆଣିବାକୁ ଜାଳିବା କହନ୍ତି । ଜାଳିବାରେ କୁହାଟି ଦେବା, ଡାକି ମାରିବା, ଟମକ ବଜାଇବା ଦରକାର ହୁଏ । କୁନ୍ତ (ବର୍ଚ୍ଛା) ଶାବେଳୀ (ଶାବଳ ଖାଲି ଲୁହାରେ ତିଆରି ହୋଇଥିବା ବର୍ଚ୍ଛା) ନଳି (ବନ୍ଧୁକ) ସାଜିଲ–(ସ୍ୱର୍ଗ) ଜିଣିବାକୁ ଯୁଦ୍ଧ ସଜା କଲା ।

୧୮–ଭଲ୍ଲ–ଭଲି, ବର୍ଚ୍ଛା; ମଲ୍ଲ–ମାଲ; ଶାର୍ଦ୍ଦୂଳ–ବାଘ; ଖଡ଼ଗ–୧. ଖଣ୍ଡା, ୨ ଗଣ୍ଡା ଶରଭ–ଆଠ ଗୋଡ଼ିଆ ଜନ୍ତୁ [୧୪ଶ ଛାନ୍ଦ ୨୬ ପଦ ଟୀକା ଦେଖ ।] ଶରଭରେ–

ଛାଡ଼ି ଶଇକି ପଇ ଶ୍ୱାନହିଁ ଦଂସେ ଯେ ।
ମହୀ କି ଲଲ ଦିଶେ କି ଲଲ ବଶେ ଯେ ।
ସର୍ବାଙ୍ଗ ରଙ୍ଗ କଲେ ଜନାଳି ଗଜ ବରଛା ତୁରଙ୍ଗ ନଳି
ଯୋଗରେ ଫଗୁ ପିଚିକା ଚଳି ଅତି ରହସ୍ୟେ ଯେ । ୧୮ ।
କୁମାର ରଚୁଁ ମୃଗୟା ରସ ଲଭିଣ ତ୍ରାସ ପୁଛେ ମହିଷ
ଅଛି କି ନାହିଁ ମୋର ଆୟୁଷ ବୃଷ କୀବେଶ ହେ ।
ଶଙ୍କର ଶଶାଙ୍କ କର ଉର ବାତ ଅଶନ ଦୁର୍ଗା ପୟର
ବହିଲ ସେହି ଦଣ୍ଡକ ଥର ବର୍ଣ୍ଣିବା କିସ ଯେ ।
ସ୍ୱାମୀ କରଇ ତାର ଶିଖୀକି ସ୍ଥିର ଯେ ।
ଷଣ୍ଡ ଶବଦ ଅଛି ତୋର ନ ଡ଼ର ଯେ ।
ସର୍ବଜ୍ଞ ପଣେ ବିଧି ଶିଖାଇ କର କୁମାର ଉଦନ୍ତ ତୁହି
ଲବଣ୍ୟବତୀ ଛାମୁକୁ ଯାଇ ମରାଳ ବର ଯେ । ୧୯ ।

---

ଶରଦ୍ୱାର; ଦାରଣ–ବିଦାରଣ; ଦୁଦାର–ବାରଦ୍ୱା; ମିଶି–ଆଗକୁ ଗ୍ଲଲିଯାଇ–ମିଶିଯାଇ; ସୁଦାଢ–ଦାଢୁଆ; ଯମଦାଢ–କଟାରୀ; [ ୭ମ ଛାନ୍ଦ ୩୦ ପଦ ଟୀକା ଦେଖ ] ଶଇକୀ–(ଝିଙ୍କ)ର ଶଲ୍ୟ (କଣ୍ଟା) ଛାଡ଼ି (ନ ମାନି) ଶ୍ୱାନ (କୁକୁର) ଦଂଶେ (କାମୁଡ଼ିଲ) କି ଲଲ-(ରକ୍ତ) ବଶେ (ଯୋଗୁଁ) ମହୀ (ପୃଥିବୀ) କି ଲଲ ଦେଖା ଯାଉଛି; ଜନାଳି (ଲୋକମାନେ) ଗଜ, ବରଛା, ତୁରଙ୍ଗ (ଘୋଡ଼ା) ନଳି (ବନ୍ଧୁକ) ଅତି ରହସ୍ୟେ ଫଗ ପିଚିକା ଖେଳିଲ ପରି ଦେହ ଲଲ କଲେ ।

୧୯–କୁମାର ମୃଗୟା ରସ ରଚୁଁ (ଶିକାର କରିବାରୁ) ମହିଷ (ମଇଁଷି) କୀବେଶ (ଯମ)-କୁ–ଯମଙ୍କ ବାହାନ ମହିଷ–କହିଲ; ଶଙ୍କର ଉର (ମହାଦେବଙ୍କ ଛାତିରେ) ଶଶାଙ୍କ (ଚନ୍ଦ୍ର) କର (କିରଣ)ରେ ବାତ ଅଶନ (ସାପ) ଏବଂ ଦୁର୍ଗାର ଯାନ (ସିଂହ) ସେହି ଦଣ୍ଡକ (ପାରିଧି କାଳତକ) ଥର (କମ୍ପ) ବହିଲେ (ଭୟରେ ଥରିଲେ); ସ୍ୱାମୀ (କାର୍ତ୍ତିକେୟ) ତାର ବାହାନ ଶିଖୀ (ମୟୁର) ତାକୁ ସ୍ଥିର କଲ (ବୋଧଦେଲ)–ତୋ ଠାରେ ଷଣ୍ଡ ଶବଦ ଅଛି (ଷଣ୍ଡ–ନପୁଂସକ)–[ମୟୁର ନପୁଂସକ ବୋଲି ପ୍ରସିଦ୍ଧ; ପ୍ରବାଦ ଅଛି ମୟୂର ମୟୂରୀର ସଙ୍ଗମ ହୁଏ ନାହିଁ । ମୟୂର ପିଚ୍ଛ ଟେକି ନାଚିଲ ବେଳେ ମୟୂରର ରେତ ତଳେ ପଡ଼ିଯାଏ, ମୟୂରୀ ତାକୁ ଖାଏ ]-ତୋର ଭୟ ନାହିଁ;–[ କୌଣସି ବୀର ପୁରୁଷ ନପୁଂସକ ସଙ୍ଗେ ଯୁଦ୍ଧ କରନ୍ତି ନାହିଁ, ଏହା ଶାସ୍ତ୍ରରେ ମନା । ] ସର୍ବଜ୍ଞ ହୋଇ ଥିବାରୁ ବିଧି (ବ୍ରହ୍ମା) ସେ ନିଜର ବାହନ ମରାଳ (ହଂସକୁ) ଶିଖାଇଲେ ।

ମୃଗୟା ଶେଷେ ଯୁବ ନରେଶ ବାହୁଡ଼ି ହେଲେ ବସା ପ୍ରବେଶ
ମେଦ ବଣ୍ଟାଇ ମୋଦ ଅଶେଷ ସଚିବ ସୁତ ଯେ ।
କୋଷେ ରହିଲ ଗନ୍ଧ ମାର୍ଜ୍ଜାର ବରଗଙ୍ଗ ଗଜ ମୋତି ଚ୍ଚମର
ଖଡ଼ଗ ପାତ୍ର ଦତ୍ତ ଭୂସୁର ଗଣେ ସତ୍ୱର ଯେ ।
ତୋଷି ବୈଷ୍ଣବ ଦ୍ୱିପୀ ଅଜିନ ଦେଇ ଯେ ।
ଶିଶୁ ଲଳସୀ ଲୋକେ କରଜ ନେଇ ଯେ ।
ବଜ୍ର କବଚ ଗଣ୍ଡକ ଛାଡ଼ି ଲଭେ ବହୁତ ଗଉତ ପତି
ପାଦଗ ପକ୍ଷ ଦାନେ ନୃପତି ବିଶେଷ ହୋଇ ଯେ । ୨୦ ।
କରି ଦଶନ ଲଭି ତକ୍ଷକେ ଶୃଙ୍ଗ ପ୍ରଦାନ କୁନ୍ଦ କାରକେ
ଚର୍ମ କାରକୁ ଚର୍ମ ଉସ୍ତକେ ନିଅ ବୋଇଲେ ଯେ ।
ବରହ ଲୋମ ପାଟଗ ଲୋକେ ମୃଗ ନାଭିକି ପାଇ ବଣିକେ
ମନ୍ତ୍ରୀ ନନ୍ଦନ ଗୁଣ ଅଧିକେ ପ୍ରଶଂସା କଲେ ଯେ ।
ପାକ ଲୋକ ନିକର କରିଣ ସିଦ୍ଧି ଯେ ।
ତୋଷି ଉଦର କଲେ ଶୟନ ବିଧି ଯେ ।
ପ୍ରଭାତେ ସୈନ୍ୟ ସାଜି ଗମନ ଶୁଭିଲା ଉଚ୍ଚେ ନାଗର ସ୍ୱନ
ଶ୍ରୀ ରାମନାମ ଉପେନ୍ଦ୍ର ଭଞ୍ଜ ବ୍ୟାଧି ଔଷଧି ଯେ । ୨୧ ।

---

୨୦—ମେଦ—ମାଂସ; ମୋଦ—ଆନନ୍ଦ; କୋଷେ—(ନିଜ ଭଣ୍ଡାରରେ); ଗନ୍ଧ ମାର୍ଜ୍ଜାର ବରଗଙ୍ଗ—ଶିଆଳିଆପତନି କୋଷ—ଏହା ସୁବାସିତ ଏବଂ ଏହା ଘୋରି ଦେଲେ ବ୍ରଣ ଅତିଶୀଘ୍ର ଆରୋଗ୍ୟ ହୋଇଯାଏ । ଗଜ ମୋତି ( ହାତୀ ମୁଣ୍ଡରୁ ବାହାରିଥିବା ମୁକ୍ତା ) ଚ୍ଚମର ( ଚମରୀ ମୃଗର ଲାଞ୍ଜ ) ଏ ମଧ୍ୟ କୋଷରେ ରହିଲା ।
ଖଡ଼ଗ ପାତ୍ର—ଗଣ୍ଡା ଥୋମୋଣିରୁ ବାହାରିଥିବା ପାତ୍ରୀ ପରି ହାଡ଼; ଏହା ବ୍ରାହ୍ମଣ ମାନଙ୍କର କର୍ମ କର୍ମାଣୀରେ ଦରକାର ହୁଏ ।
ଭୂସୁର—ବ୍ରାହ୍ମଣ; ସତ୍ୱର—ଶୀଘ୍ର; ଦ୍ୱିପୀ ଅଜିନ—ବାଘଚମ; କରଜ—( ବାଘ )ନଖ ( ପିଲାଙ୍କ ପାଇଁ ); ବଜ୍ର କବଚ ( ବଜ୍ର ଛାପଡ଼ା )—ଏହା କାଟି ଭରି ଟାଣ, ଏଥିରେ ସାଞ୍ଜୁ ତିଆରି ହୁଏ; ଗଣ୍ଡକ (ଗଣ୍ଡା) କୁରି (ଚମଡ଼ା) ଗଉତ—ଅଶ୍ୱାରୋହୀ; ପଦଗ ( ପଦାତି );—ଏମାନେ ପାଗରେ ବାନ୍ଧିବା ପାଇଁ ପକ୍ଷୀ ଦରକାର ।
୨୧—କରି ଦଶନ—ହାତୀ ଦାନ୍ତ; ତକ୍ଷକ—ବଢ଼େଇ; କୁନ୍ଦ କାରକ—କୁନ୍ଦ କରିବା ଲୋକ ; ଚର୍ମକାର—ମୋଚି; ପାକ ଲୋକ—ଶୁଆର ।



# ପଞ୍ଚବିଂଶ ଛାନ୍ଦ

## ( ଲାବଣ୍ୟବତୀର ଚଉତିଶା ପାଠ ଓ ପ୍ରତ୍ୟୁତ୍ତର ଦାନ )

ରାଗ ଘଣ୍ଟାରବ ।

ଫାଲ୍‌ଗୁନ ଶୋଭା ପ୍ରକାଶି । ଶିଶିର ବସନ୍ତ ମିଶି ।

ବାଳ ବାମା ତନୁ ସୀମାକୁ ଆଶ୍ଳେଷ କଲା କି ଆସି । ୧ ।

କୁଜ୍‌ଝଟି ରେଣୁ ବିହାର । କ୍ରମେ କ୍ରମେ ହେଲା ଦୂର ।

ନୂତନ ସ୍ତବକ ସ୍ତନ ଅଙ୍କୁରିଲା ପିକବାଣୀ କି ମଧୁର ।୨ ।

କାନ୍ତି କେତକୀ ମାଧୁରୀ । ନିଆଳୀ କରଜ ପରି ।

ଡୋଳା ଚଞ୍ଚରୀକେ ଚଞ୍ଚଳ ଗ୍ରତୁଲୀ ଅଣିଲା ବିଶେଷ କରି । ୩ ।

କାମେ ଭୟ ଉପୁଜାଇ । ପୁନ୍ନାଗେ ଉତ୍‌ଫୁଲ୍ଲ ଦେଇ ।

ଦର ବିକଶିତ ମଲ୍ଲୀ ମୃଦୁହାସ ପଲ୍ଲବ ଓଷ୍ଠ ଦେଖାଇ । ୪ ।

ଏକାଳେ ସିଂହଳଈଶ । ମତି କରି ଅତି ତୋଷ ।

ବୋହିତେ ଗ୍ଲିଦେଲେ ଅନ୍ତପୁରସ୍ଥ ରମେଶ୍ୱରଦେବ ପାଶ । ୫ ।

ସେ ମହୀପତି କୁମାରୀ । ଯାରବାର ହୋଇ ଡାରି ।

କି କରିବି ମୁଁ ନ ଗଲା ଏହି ଚିନ୍ତା ସଙ୍ଗ ସଖୀଙ୍କି ପଗ୍ରରି । ୬ ।

---

୧।୪–ଶିଶିରରେ ବସନ୍ତ ମିଶିବାଟା ବାଳିକା ଶରୀରରେ ଯୌବନ ବିକାଶିବା ପରି ଉପମାରେ କୁହାଯାଇଛି । [ ୩ୟ ଛାନ୍ଦ ୮୩–୮୬ ପଦ ଟୀକାଦେଖ ] ଫାଲ୍‌ଗୁନ ମାସରେ ଶିଶିର ଋତୁ ଛାଡ଼ିଯାଇ ବସନ୍ତ ଆରମ୍ଭ ହୁଏ । ଆଶ୍ଳେଷ–ଆଲିଙ୍ଗନ; କୁଜ୍‌ଝଟି–କୁହୁଡ଼ି; ରେଣୁବିହାର- ଧୂଳିଖେଳ; ସ୍ତବକେ–ଫୁଲପେଣ୍ଡା; ଚଞ୍ଚରୀକ–ଭ୍ରମର; ପୁନ୍ନାଗ–(୧ ପୁଲଙ୍ଗ, ୨ ଶ୍ରେଷ୍ଠ ପୁରୁଷ ); କାମ–(୧ ଆମ୍ବଗଛ, ୨ କନ୍ଦର୍ପ; [ ବୋଧହୁଏ ବଉଳ ପୋଡ଼ିପିବା ଭୟ ] ଏ ଗ୍ରରି ପଦ ରୂପକ ;

୫–ଅନ୍ତପୁରସ୍ଥା–ଉଆସ ନାରୀମାନଙ୍କୁ, ସିଂହଳରୁ ବୋଇତରେ ପାରିହୋଇ ଆସିଲେ ଏ ପାଖେ ରମେଶ୍ୱର;

୬–ମହୀପତି କୁମାରୀ–ଲାବଣ୍ୟବତୀ

ଏବେ ତ ନଗର ଦୂର । ଦୂରେ ସେ ନାଗରବର ।
ଯୁବାମଣି ଅବା ବିଢେ ନ କରିବେ ସରିଲ ସଂସାର ମୋର ୭ ।
ମୁଁ ଯେ ଗଜସୁତା ହୋଇ । ଦୁର୍ଲଭେ ମନ ବଳାଇ ।
ଆକାଶ ପ୍ରକାଶ ଚନ୍ଦ୍ର ଧରିବାକୁ ନିଃଶ୍ରେଣୀ କାହିଁ ଖୋଜାଇ । ୮ ।
ଏମନ୍ତ ବିଗ୍ରର ବେଳେ । କାମକଳା ଆସି ମିଳେ ।
ବୋଲେ ଦୀର୍ଘନେତ୍ରା ଏ ଯାତ୍ରା ଭିଆଣ ତୋର ବିଘ୍ନ ହେବା ଛଳେ । ୯ ।
ପୁରିଲା କାମନା ତୋର । ବରିବୁ ମନକୁ ବର ।
ଚନ୍ଦ୍ର ଆନନି, ଜନନୀ ଡ଼ାକି ମୋତେ କହୁଥିଲେ ଏ ବିଗ୍ରର । ୧୦ ।
ଗଲା ପ୍ରତି ବନ୍ଧ ସବୁ । ଆଉ କି ଚିନ୍ତାର୍ଥୀ ହେବୁ ।
ବାଳା ଗୁପ୍ତେ ମାଳା ଦେଲା ଫୁସ ବାହୁ ଗଳାକୁ ମାଳା କରିବୁ । ୧୧ ।
ଏକାଳେ ବୋହିତ୍ର ବେଳା । ଲଭିଲା ଆରେହି ଦୋଳା ।
ଯିବା କାଳେ ବ୍ରହ୍ମଗ୍ରରୀ ସହଚରୀ ହସ୍ତରେ ପତ୍ରିକା ଦେଲା । ୧୨ ।
ଦିବ୍ୟ ମନ୍ଦିରେ ଉତୁରି । ପଲ୍ୟଙ୍କେ ବସୁ ଚତୁରୀ ।
ଦ୍ୱିଦନ୍ତ ଗମନ-କନ୍ୟେ ସେ ଉଦନ୍ତ ଦେଲା ଯେ ହେମମଞ୍ଜରୀ । ୧୩ ।
ଦେଖିଲା ପଦ୍ମମଧ୍ୟର । ଲେଖିଲା କାହ୍ନୀ ଅକ୍ଷର ।
ପାରିନ୍ଦ୍ରମଧ୍ୟା ପଗ୍ରରି ନ ପାରିଲା ନ ଆସିବା ଆସିବାର । ୧୪ ।
ଏ ପାଞ୍ଚ ଦେଲା ପକାଇ । କାତର ଅନ୍ତର ହୋଇ ।
ବହୁତ ଦିନ ନବୀନ ହୋଇଥିଲେ ମଳିନତା ଥାନ୍ତା ପାଇ । ୧୫ ।

---

୭–ନଗର–କାଞ୍ଚିନଗର; ଯୁବାମଣି–ଯୁବାଶ୍ରେଷ୍ଠ, ଚନ୍ଦ୍ରଭାନୁ;

୮–"ଚନ୍ଦ୍ରକୁ ନିଶୁଣୀ"

୧୧–ପ୍ରତିବନ୍ଧ-ବାଧା, ସ୍ୱପ୍ନରେ ଯେଉଁ ପୁରୁଷର ଗଳାରେ ଗୁପ୍ତରେ ମାଳା ଦେଇଥିଲୁ ତାହାରି ବାହୁ;

୧୨–ଦୋଳାରେ ଜାହାଜରୁ କୂଳକୁ ଆସନ୍ତି । ପତ୍ରିକା–କୁମାର ମୃଗୟା ପୂର୍ବରୁ ଯାହା ଲେଖି ପଠାଇଥିଲା ।

୧୩–ଦିବ୍ୟ ମନ୍ଦିର–ଭଲ ଘର; ଦ୍ୱିଦନ୍ତ–ହାତୀ;

୧୪ ଲେଖିଲା–ଲେଖା ହୋଇଥିବା; ପାରିନ୍ଦ୍ର ମଧ୍ୟା–ସିଂହକଟୀ;

୧୫–ଆସିବା ନ ଆସିବା ପାଞ୍ଚ (ବିଗ୍ରର) କାତର (ଉଚ୍ଛନ୍ନ) ହେବାରୁ ପକାଇ ଦେଲା (ମନରୁ ଦୂର କରି ଦେଲା) ବାଟରୁ ନ ଲେଖି କାଞ୍ଚିରୁ ଲେଖିଥିଲେ ଏ ପଦ୍ମ ଶୁଖି ଯାଇଥାନ୍ତା ବିଗ୍ରରି । ଏହାପରେ ଚିଠି ଆରମ୍ଭ ହେଲା ।

ଅବନୀ ଶିରୀ ସୁନ୍ଦରୀ । ଈଶ୍ୱରୀ ନବ କିଶୋରୀ ।
ଲୀଳା ବିଳାସୀ ଭୃତ୍ୟଚିତ୍ତ–ଉଲ୍ଲାସୀ ନାଗରୀ ରସ ସାଗରୀ । ୧୬ ।
ଆନନ୍ଦ–ଦ ଯୌନୀ କାମେ । ଜ୍ଞାନହାରିଣୀ ତା ବାମେ ।
କୁନ୍ଦ ସୁନ୍ଦର ରଦନାକୁ ଚଉଦ ବ୍ରହ୍ମାଣ୍ଡରେ ନାହିଁ ସମେ । ୧୭ ।
ତୋଷ ଗଜହଂସ ଚିତ୍ତ । ରହିଥିଲେ ଯହିଁ ସତ ।
ଜାଣୁ ଜାଣୁ ମଣି ମାନ ସରୋବରେ ବରଷାରେ ଉପଗତ । ୧୮ ।
ହାଟକ ଘଟକ ଦେହା । ଇନ୍ଦୁହାସୀ ଗୁରୁସ୍ନେହା ।
ଛାଡ଼ିବ ଗୁମାନ ମାନସୁଁ ମଦନ ତୁ ହୋଇଲ କ୍ଷଣି ସାହା । ୧୯ ।
ତାରକା ଶୋଭି ବାଳାକୁ । ହାର କରିବି ଗଳାକୁ ।
କରିଛି ମନେ ଗୁଣବନ୍ତ ମାଳିକା ରତନ ରସ କଳାକୁ । ୨୦ ।
ରଘୁନାଥଙ୍କୁ ଜଣାଇ । ଏତେ ପଢି ଦେଲ ରହିଁ ।
ଅନ୍ତର ଲିପିରେ କି ମନ୍ତର ଏଥି ରସିକ ଅଛିକି ଲିହି । ୨୧ ।
"ଅଇଲି ଆଜ୍ଞାକୁ ତୋର । ଯାହା ଇଚ୍ଛା ତାହା କର ।
ପାଦୁଁ ପାଦୁଁ ବର୍ଣ୍ଣେ ବର୍ଣ୍ଣେ ଘେନି ହେଲ ଘନଜଘନା ଜର୍ଜର । ୨୨ ।
ସଖୀଙ୍କି ଜଣାଇ ଦେଲ । ଚିଟାଉ ରଚନା କଲ ।
ଚତୁରୀ ଘରୁ ଚେଟିନୀ ଜଣେ ଘେନି ଶିବ ଦେଉଳକୁ ଗଲ । ୨୩ ।

---

୧୭–ବାମେ–ସୁନ୍ଦର (ଏଠାରେ ସୌନ୍ଦର୍ଯ୍ୟରେ)

୧୮–ଏହାର ହଂସକ ( ନୂପୁର )ରେ ଏବଂ ହଂସ ଗମନରେ ଆକୃଷ୍ଟ ହୋଇ ଗଜହଂସର ମନ ଏହାଠାରେ ଥିଲ । ଗଜହଂସ–ରଜା ରୂପହଂସ, ଚନ୍ଦ୍ରଭାନୁ–ଏହି ଶ୍ଳେଷ; ଉତ୍ପ୍ରେକ୍ଷା କରୁଛି–ଜାଣ (ବୃଝ) ବରଷାରେ ମାନସରୋବର ବୋଲି ଜାଣୁ (ଜାଣିବାରୁ) ଏହା ପାଖରେ ପହଞ୍ଚିଛି କି ? ମାନର ସରୋବର, ସ୍ଥାନ–ଏହି ଅର୍ଥ ଶ୍ଳେଷ ଅଛି ।

୧୯–ହାଟକ–ସୁବର୍ଣ୍ଣ; ଇନ୍ଦୁ–ଚନ୍ଦ୍ର; ଗୁମାନ–ଗର୍ବ;

୨୦–ଗୁଣବନ୍ତ ମାଳିକା–ଗୁଣ ( ସୂତା )ରେ ଗୁନ୍ଥା ହୋଇଥିବା ମାଳା–ଏହି ଅର୍ଥ ଶ୍ଳେଷ ।

୨୧–୧୬ ପଦଠାରୁ ୨୧ ପଦର ପ୍ରଥମ ପାଦ ଶେଷ ପର୍ଯ୍ୟନ୍ତ ପ୍ରତି ପାଦର ମୂଳ ଅକ୍ଷର ମାନଙ୍କୁ ପଢିଲେ ୨୨ ପଦର ପ୍ରଥମ ଦୁଇପାଦ ହେବ । ଏହା ବହି ର୍ଲିପି । ଅନ୍ତର୍ଲିପି ବୋଲି କୁହା ଯାଇଛି । [ ଷଷ୍ଠ ଛାନ୍ଦ ୫୫ ପଦ ଟୀକା ଦେଖ ]

୨୨–ଘନ ଜଘନା–ସ୍ଥୂଳଜଘ ଯାହାର । ଜର୍ଜର–ଭବାନ୍ୱିତ ;

୨୩–ଚେଟିନୀ- ଦାସୀ

ଏକାଳେ କୁମାରବର । ପ୍ରବେଶ ପ୍ରାସାଦ ଦ୍ୱାର ।

ଗ୍ରହିଁ ବିଗ୍ରହର ମେରୁ ଏ ଉଚଚ ପଗ ଧଗ ବନିତାରୁ । ୨୪ ।

ମନ୍ଦାକିନୀ ଧାର ହାର । ଶୋଭ କରିଛି ଅମ୍ବର ।

ବିଚିତ୍ର ଚିତ୍ର ଚନ୍ଦ୍ର ଲେପ ଉଜ୍ଜ୍ୱଳ ଦରଶନେ ମନୋହର । ୨୫ ।

ତହୁଁ ଭିତରକୁ ଗଲ । ହର ଦରଶନ କଲ ।

ଚମ୍ପାଗୋରୀ ଅନୁକମ୍ପା କରିବାକୁ କେତେ ଚମ୍ପା ଚଢାଇଲ । ୨୬ ।

କୁମାର ତହୁଁ ବାହାରି । ଆଗେ ଅଛି ବ୍ରହ୍ମଗ୍ରାରୀ ।

ଉମା ଦରଶନେ ବାଳା ବାମା ଦେଇ କେତକୀ ପ୍ରସାଦ କରି । ୨୭ ।

ଘେନିଲ ହୃଦେ ଲଗାଇ । ମୁଦେ ଅକ୍ଷରକୁ ଗ୍ରହିଁ ।

ଉଲସି ହୋଇ ଉଠିଲ ଲୋମ ତାର ଏତିକି ହୋଇଛ କହି । ୨୮ ।

ଶ୍ରୀକଣ୍ଠ ଅନ୍ଧକ ଘାତୀ । ଗଙ୍ଗାଧର ମୁକ୍ତା କାନ୍ତି ।

ଶଂକର ଖଟ୍ୱାଙ୍ଗ ଲୁବ୍ଧ ଉମାରସେ ଛିଦ୍ରେଶୟ ଭୂଷା ପ୍ରୀତି ।୨୯।

---

୨୪—ଗ୍ରହିଁ ବିଗ୍ରହର ଏ ପ୍ରାସାଦ (ଅଟ୍ଟାଳିକା) ମେରୁ ପରି ଉଚ; ତେଣୁ ଧଗ (ପୃଥିବୀ) ରୂପକ ବନିତାର ଉଚ୍ଚେ ( ସ୍ତନ ) ପରି; ପ୍ରାସାଦ--( ଗମେଶ୍ୱର ମନ୍ଦିର ) ମୂଳ ମୋଟା ହୋଇ ଉପର ଗୋଳ୍ପା ହେବାରୁ ସ୍ତନ ପରି ।

୨୫—ମନ୍ଦାକିନୀ ଧାର—ସ୍ୱର୍ଗ ଗଙ୍ଗାର ଧାର—ପ୍ରାସାଦ ସ୍ୱର୍ଗକୁ ଲଗିଛି ଏହିପରି କଳ୍ପନା, ସେ ଏ ସ୍ତନ ଉପରେ ହାର ( ମୁକ୍ତାମାଳା ) ହେଲ । ଅମ୍ବର ( ଆକାଶ ) ଏ ସ୍ତନ ଉପରେ ବସ୍ତ୍ର ପରି ହେଲ, ପ୍ରାସାଦର ବିଚିତ୍ର ଚିତ୍ର ସବୁ ଏହି ସ୍ତନ ଉପରେ ଚନ୍ଦ୍ର ଲେପ ( ଚନ୍ଦନ ଚିତ୍ର ) ପରି ହେଲ । ମନ୍ଦାକିନୀ ( ବିୟତ୍ ଗଙ୍ଗା)ର ଧାର ଦେଖା ନ ଗଲେ ମଧ୍ୟ ଏହା ଉପରେ ପଡ଼ିଛି ବୋଲି କଳ୍ପନା; ଦେଉଳର ପତାକାକୁ ମଧ୍ୟ ମନ୍ଦାକିନୀ ଧାର ଲକ୍ଷରେ କୁହା ଯାଇଥିବା ସମ୍ଭବ ।

୨୬—ଅନୁକମ୍ପା - ଦୟା ;

୨୭—ଚେଟିକା ଏଠାରେ ପ୍ରସାଦ ବାଣ୍ଟିଲ ବାହାନାରେ କେତକୀ ପାଖୁଡ଼ାରେ ଲେଖା ହୋଇଥିବା ଚିଠିଖଣ୍ଡି ଦେଲ ।

୨୮—ଏତିକି- ଯାହା ପର ପଦରେ କୁହା ଯାଉଛି ।

୨୯—ମହାଦେବଙ୍କର କେତେ ଗୁଡ଼ିଏ ନାମ ମାତ୍ର କହିଗଲ । ସେଥିରୁ ବର୍ଣ୍ଣିଲିପିରେ ବାହାରିଲ " ଶ୍ରୀଅଙ୍ଗ ମୁଁ ସଂଖଳୁଛି, ' ଶ୍ରୀ ( ବିଷ ) କଣ୍ଠରେ ଯାହାର । ଶିବ ଅନ୍ଧକ ରାକ୍ଷସକୁ ନାଶ କରିଥିଲେ; ଜଟାରେ ଗଙ୍ଗା; ମୁକ୍ତାପରି ଉଜ୍ଜ୍ୱଳ ଦେହକାନ୍ତି;

ଅଛି ପତ୍ର କରେ ଧରି । ମଣ୍ଡିଲ କରି ଅମାରୀ ।
ଶିଶୁ ଅଙ୍ଗନା ସେହିଠାରୁ ବାହୁଡ଼ି ପରବେଶ ଅନ୍ତଃପୁରୀ । ୩୦ ।
ଲେଖ ଦେବା ବିଧି ତହିଁ । ସମସ୍ତ ସଖୀଙ୍କି କହି ।
ପତ୍ର ପାଇବାରୁ ଯେମନ୍ତ ବୋଇଲ ପୁଲକାଇ ଦେଇ ଦେହି । ୩୧ ।
କେ ବୋଲେ ସୁବର୍ଣ୍ଣ ଗ୍ରହିଁ । ମାର ଥିବ ତନୁ ଦହି ।
ସେ ତାପ ହରଣେ ହରନାମ ମାନ ବିଶେଷରେ ଦେଲ କହି । ୩୨ ।
କେ ବୋଇଲ ଏଥେ ଅଛି । ଶ୍ରୀଅଙ୍ଗ ମୁଁ ସଂଖୋଳୁଛି ।
ସମସ୍ତେ ଘେନିଲେ ଏହି ଭଷା ତାର ରସାନୁଭବୀ ହୋଇଛି । ୩୩ ।
ଭେଟେ ଆମ୍ଭ କୋମଳାଙ୍ଗୀ । ହୋଇଛି ତା ପ୍ରାଣ ସଙ୍ଗୀ ।
କୋପ କଲବେଳେ କୋପନା ନାମରେ କହୁଥିବ ଦେଇ ଭଙ୍ଗୀ ।୩୪।
ଏମନ୍ତେ ନୃପନନ୍ଦନ । ପ୍ରବେଶ କେଶରବନ ।
ମଣ୍ଡପ କରି ମଣ୍ଡପ ଘେନେ ବାଳା ପତ୍ର ପଢ଼ି ପୁନଃ ପୁନଃ । ୩୫ ।
ହେ ପ୍ରଭେ ଆମ୍ଭ ସଜନୀ । ସୁନ୍ଦର ରକା–ରଜନୀ ।
ଏ ପୁର ଆକାଶ ପ୍ରକାଶ ଲଭିଲ ତୁମ୍ଭେ ଚନ୍ଦ୍ର ହେବା ଘେନି । ୩୬ ।

---

ଶଂ ( ମଙ୍ଗଳ ) ର କର୍ତ୍ତା ଖଟ୍ୱାଙ୍ଗ ନାମକ ଶିବଙ୍କର ଗଦା; ଉମା (ପାର୍ବତୀ)ରସେ ( କେଳିରେ ) ଲୁବ୍ଧ ( ଲୋଭୀ ); ଛିଦ୍ରେଶୟ ( ସାପ ) ଭୂଷା ( ଭୂଷଣ ) ରେ ପ୍ରୀତି ଯାହାର ;

୩୦–ଶିଶୁ ଅଙ୍ଗନା–ଚେଟିନୀ ବାଳିକା ;

୩୧–ତନୁ–ନିଜର ଶରୀର; ପୁଲକ–ରୋମାଞ୍ଚ

୩୨–ସୁବର୍ଣ୍ଣ–୧. ଉତ୍ତମ ବର୍ଣ୍ଣ;(କୁମାରର)ଉତ୍ତମ ଅକ୍ଷର; ୨. ସୁନା; ସୁନାକୁ ପୋଡ଼ାଯାଏ ।

୩୪–ହେ କୋପନା ( କୋପମୟୀ ) ତୁ କୋପ ନା ( କୋପ କରନା )–ଏହିପରି ଭଙ୍ଗୀରେ କହୁଥିବ; ଅର୍ଥାତ୍ ସେ ଭଙ୍ଗୀରେ କଥା କହି ଜାଣେ ବୋଲି ତା ବହିର୍ଲିପି କଥାରୁ ଜଣା ପଡୁଛି ।

୩୫- କେଶର ବନ–ବଉଳ ବନ ବା ନାଗେଶ୍ୱର ବନ ।

୩୬–ଚିଠିରେ ଏହା ସଖୀମାନେ ଲେଖିଲ ପରି ଲେଖାଥିଲ । ରକା ରଜନୀ–ପୂର୍ଣ୍ଣମୀ ରାତ୍ରି ।

ହୃଦ କୁମୁଦ ଏହାର । ଆଗୁଁ ତ ଉତ୍‌ଫୁଲ୍ଲ କର ।
ଏ ନିଶା ଲୋଚନ ଚକୋର ତୃଷାକୁ ବିଳମ୍ବ ନ କରି ହର । ୩୭ ।
ବିଧାତା ବିଧାନ ଏହି । ଶ୍ୟାମା ଯୌବନା କରଛ ।
ସଙ୍ଗେ ରଙ୍ଗେ ତୁମ୍ଭେ ନଗର ଚରମନଗକୁ ମଣ୍ଡିବ ଯାଇ । ୩୮ ।
ପଢ଼ି ଜର ଜର ହୋଇ । ବୋଇଲା ମିତ୍ରଙ୍କୁ ଗୁହିଁ ।
କେମନ୍ତ ସନ୍ଦର୍ଭ ରସ ଗର୍ଭ ଭଷ ବାଳା ମଣି ଠାରେ ଥାଇ । ୩୯ ।
ଚତୁରୀ ଗୁଣରେ ଦେଖ । ସଖୀ ଏ ସୁନ୍ଦରୀ ଯୋଖ ।
ଏଥି ଭୃଙ୍ଗ ସଙ୍ଗ ଦୁର୍ଲଭ ବୋଲିଟି ଲେଖିଲେ କେତକୀ ଲେଖ ।୪୦ ।
ସଖା କହେ ଶଙ୍କା ଏତେ । କରନ୍ତି ତାତ ସମ୍ମତେ ।
ଶୁକ ପଗ୍ରୁ ସାକ୍ଷାତ ହୋଇବାକୁ କଉଁ ସ୍ଥାନରେ କେମନ୍ତେ । ୪୧ ।
ବାମେ ବାମାବର ସ୍ଥିତି । ଦକ୍ଷିଣେ ଲକ୍ଷ୍ମଣ ଯତି ।
ମଧ୍ୟେ ବିଜେ ଯଉଁ ଶ୍ୟାମଳ ସୁନ୍ଦର ତାଙ୍କୁ ଉପଇନ୍ଦ୍ର ଚିନ୍ତି । ୪୨ ।

---

୩୭–ଉତ୍‌ଫୁଲ୍ଲ କର–ଉତ୍‌ଫୁଲ୍ଲ କାରୀ ହୋଇଛ ( ୧. ଫୁଟାଇଛ, ୨ ପ୍ରଫୁଲ୍ଲ କରିଛ )
୩୮–ଶ୍ୟାମା–ନବ ଯୌବନା (ହେମା) ତୁମ୍ଭ ସଙ୍ଗ ରଙ୍ଗରେ ( ସହବାସ ପ୍ରଣାଳୀରେ ) ତୁମ ନଗର ରୂପ (କାଞ୍ଚି ରୂପ) ଚରମନଗ (ଅସ୍ତାଚଳ) [ସୂର୍ଯ୍ୟ ଅସ୍ତାଚଳରେ ଥିଲେ ଚନ୍ଦ୍ରର ଶୋଭା ବଢ଼େ];
୩୯–ସନ୍ଦର୍ଭ–ରଚନା ପରିପାଟୀ;
୪୦–ଚତୁରତାରୁ ସଖୀ ନାମରେ ଲେଖିଛି ଏବଂ ଭ୍ରମର ସଙ୍ଗ ନାହିଁ ବୋଲି ବୁଝାଇ ଦେବା ପାଇଁ କେତକୀ ପାଖୁଡ଼ାରେ ଲେଖିଛି ।
୪୧–କୁମାରର ସଖା କହିଲେ କେବଳ ହେମାର ତାତ (ବାପା) ମାନିବେ କି ନାହିଁ ଏତିକି ଶଙ୍କା–ହେମାର ପୂର୍ଣ୍ଣ ସମ୍ମତି ଅଛି । ତେବେ ଶୁକ (ଶୁଆ) ଯାଇ ପଗ୍ରୁ (ବୁଝି ଆସୁ) କିପରି କେଉଁ ଠାରେ ସାକ୍ଷାତ ହେବ ।
୪୨–ବାମେ- ବାଁ ପଟରେ, ବାମା- ସୀତା; ସ୍ଥିତ–ବିଦ୍ୟମାନ ।

## ଷଡ଼ବିଂଶ ଛାନ୍ଦ

### ( ଚନ୍ଦ୍ରଭାନୁର ସିଂହଳ ମନ୍ତ୍ରୀସହ ଉଦ୍ଧବ ସ୍ଥାନରେ ପ୍ରବେଶ । )

ରାଗ—ଚିନ୍ତା ଦେଶାକ୍ଷ ।

ମେଧାବିନୀ ଶୁଣି ଗତି ଅନ୍ତଃ ପୁରୀକି ।
ଭେଟିଲା ରାଜ କୁମାରୀ ସୁକୁମାରୀକି । ୧ ।
ପଚାରିଲା ପ୍ରିୟ ସହଚରୀ କି ତହିଁ ।
ସାକ୍ଷାତ ଦର୍ଶନ ହେବ କେମନ୍ତ ହୋଇ । ୨ ।
ବିଚାରି ମନ୍ତ୍ରୀ ନନ୍ଦନା କଲା ଉତ୍ତର ।
ନାରୀ ବେଶ ଧରିବେ ମଦନ ସୁନ୍ଦର । ୩ ।
ନାରୀ ବେଶ ବୋଲି ଏତେ ମାତ୍ର କରିବେ ।
ଚଳକୁ ସେ କୋମଳ ବାଳକୁ ବାନ୍ଧିବେ । ୪ ।
ନୀଳ ନିଚୋଳ ଓଢ଼ିଣ ଥିବେ ସର୍ବାଙ୍ଗେ ।
ଚାଲିବେ ବାମ ଚରଣ ଚାଲିରେ ଆଗେ । ୫ ।
ମଞ୍ଜୁ ମଞ୍ଜୀର ଖଞ୍ଜିବେ ସୁରଙ୍ଗ ପାଦେ ।
ଦ୍ୱାସ୍ଥେ ହେବ ନାରୀ ଭ୍ରମ ଏତେକ ଉଦେ । ୬ ।
ଚତୁର ବନ୍ଧୁ କାମିନୀ ବୃନ୍ଦରେ ମିଶି ।
ହେଜିଥିବେ ଦ୍ୱାରେ ଯିବା ବେଳକୁ ପଶି । ୭ ।

---

୧—ମେଧାବିନୀ—ଶୁଆ; ଅନ୍ତଃପୁରୀକି—ଜେମା ପ୍ରଭୃତି ଯେଉଁଠାରେ ଥିଲେ;

୫—ନୀଳ ନିଚୋଳ—ଏଠାରେ ନେଳୀ ଶାଢ଼ି (କାଞ୍ଚଲା ନୁହେ) କିମ୍ବା ନେଳୀ କାଞ୍ଚଲା ପିନ୍ଧି ତା ଉପରେ ଶାଢ଼ି ଘୋଡ଼ାଇଥିବେ; ସ୍ତ୍ରୀ ମାନେ ଚାଲିଲା ବେଳେ ବାଁ ଗୋଡ଼ ଆଗକୁ ପକାନ୍ତି ।

୬—ମଞ୍ଜୀର—ନୂପୁର, ପାହୁଡ଼; ସୁରଙ୍ଗ- ଅଳତା ଦିଆ; ଦ୍ୱାସ୍ଥ—ଦୁଆରୀ, ଦ୍ୱାରପାଳ; ଏତେକ ଉଦେ—ଏହା ହେଲେ;

୭—ଚତୁର- (ଜେମା)ର ବନ୍ଧୁ (କୁମାର) କାମିନୀ ବୃନ୍ଦରେ ( ସ୍ତ୍ରୀମାନଙ୍କ ମଧ୍ୟରେ )

କେମା ଦରଶନ ବେଳେ ଗମା ମାତର ।
ପୂରିଥିବେ ସିନା ସେ ପ୍ରାସାଦ ଭିତର । ୮ ।
ସ୍ୱରୂପେ ଆମ୍ଭଙ୍କୁ ଦେଖା ଦେଇ ତାରିବେ ।
ଆସିବା ବେଳକୁ ଏହି ବିଧି କରିବେ । ୯ ।
କୀର ଭଷେ ଯାହା ବୋଲେ ଜୀବନ ଦେବ ।
ନାରୀ ବେଶେ କିପାଁ ଅଙ୍ଗୀକାର ନୋହିବ । ୧୦ ।
ତରୁଣୀ ମଣି ତ ରଣୀ ନୋହିବ କେବେ ।
ପୁରୁଷ ହୋଇ ଯୁଝିବ ଭବେ ସ୍ୱଭବେ । ୧୧ ।
ବୀଣା ଭଷୀ କିଣା ସିନା ତରୁଣବର ।
ତାହା ଉଣା ଅଧିକ କରୁଣା ଏହାର । ୧୨ ।
ଗମା ନାମ କବଚରେ କବଚି ଦେହୀ ।
ଫୁଲବାଣ ବାଣଗଣ ସେ ପୁଣ ସହିଁ । ୧୩ ।
ବାତ୍ସ୍ୟାୟନ ଋଷି ଅନୁଷ୍ଟୁପ ଛନ୍ଦରେ ।
ରତି ବୀଜ ମହାଦେବ ଦେବତା କରେ । ୧୪ ।
ବୋଲେ ମୁଖ ରଖୁ ଚନ୍ଦ୍ରଜିତ ବଦନା ।
ତରଙ୍ଗ ନେତ୍ରୀ ମୋ ନେତ୍ରସମ୍ପତ୍ତି ସିନା । ୧୫ ।

---

୮—ଗମା ମାତର—କେବଳ ସ୍ତ୍ରୀ ମାନେ;

୧୦—ଯାହା ବୋଲେ——ଯାହା ଆଦେଶରେ;

୧୧—ରଣୀ—ଧାରୁଆ, ଅଧମର୍ଣ୍ଣ; ଭବେ—କେଳିରେ; ପୁରୁଷ ହୋଇ—ପୁରୁଷାୟିତ ବା ବିପରୀତ ରତିରେ;

୧୨—କୁମାର ବଡ଼ ହେବ କି ସାନ ହେବ ଯାହା ହେବ ତାହା କେମାର କରୁଣା ହେତୁରୁ ।

୧୪—ବାତ୍ସ୍ୟାୟନ ଋଷି କାମ ସୂତ୍ର ଗ୍ରନ୍ଥର ରଚୟିତା । ସୂତ୍ର କୌଣସି ଛନ୍ଦରେ ଲେଖା ନ ହେଲେ ମଧ୍ୟ ପରେ ବାତ୍ସ୍ୟାୟନ ରତି ଶାସ୍ତ୍ର ଆଠ ଅକ୍ଷରୀ ସମ୍ବଳିତ ଅନୁଷ୍ଟୁପ୍ ଛନ୍ଦରେ ଲେଖା ହୋଇ ଅଛି । ସେହି ବାତ୍ସାୟନ ଋଷି ରତି ବୀଜ ( ରତି ସୁଖ ) ମହାଦେବ ରୂପରେ ତା ହାତରେ ଦେବ ବୋଲି କୁମାର କାମନା କରେ । କେମାର ସ୍ତନ ସେହି ମହାଦେବ ପରି, ଏହା ଶୁଆ କହୁଛି ।

୧୫—ବୋଲେ—କୁମାର କହେ; ମୁଖ ରଖୁ;—ମୋ ଇଜ୍ଜତ୍ ରଖ;

କୋକିଳ ବଚନ୍ ପଦେ ଶ୍ରବଣ ଛୁଇଁ ।
ଅଧୀର ଧରି ଅରୁଣା-ଧରୀ ବୋଲଇ । ୧୬ ।
କମ୍ବୁ କଣ୍ଠୀ ମୋର କର୍ଣ୍ଣ ମାଳାର ବତ ।
ବୋଲି କଣ୍ଠ ଛୁଇଁ ଦେଇ ଭବ କେମନ୍ତ । ୧୭ ।
ନାସିକାକୁ ବୋଲେ ଅତି ତୋଷିକା ତୋର ।
ରସ ଗଜ ପୁର ବାସୀ ରସିକା ବର । ୧୮ ।
ହୃଦୟରେ କର ଭୂଷା ଉଦୟ କରି ।
ନାରଙ୍ଗ କର୍ଦ୍ଦି ଉରଜ ରକ୍ଷା ତୋହରି । ୧୯ ।
ମଧ୍ୟେ ସିଂହ ମଧ୍ୟମା ରମ୍ଭୋରୁ ଉରୁରେ ।
ଭୁଜେ ବିଷଭୁଜ ଧନ୍ ଭ୍ରୂରୁ ଭ୍ରୂରୁରେ । ୨୦ ।
ଉଦରେ କୃଶ ଉଦରୀ ପଦ କହଇ ।
ପକ୍ଷୀ ଜନ୍ତୁ ସିନା କେତେ କହିବି ମୁହିଁ । ୨୧ ।
ମନ୍ତ୍ରୀଙ୍କା ବୋଇଲ ସେ ପୁରୁଷ ଭ୍ରମର ।
ଅଧିକ ହେଲ ଏମନ୍ତ ହେବା ତାଙ୍କର । ୨୨ ।
ମାଳତୀ ବିକାଶ ଏକା ଭ୍ରମର ପାଇଁ ।
ଆମ୍ଭ ସଖୀ ବେଦ୍‌ନା କି ହୋଇବ କାହିଁ । ୨୩ ।

---

୧୬—ଶ୍ରବଣ ଛୁଇଁ—ଶୁଣି; ଅଧୀର ଧରି—ଅଧର୍ଯ୍ୟ ହୋଇ; ବୋଲଇ—ଡ଼ାକଇ;

୧୭—ବତ—ସଦୃଶ;

୧୮—ନିଜର ନାକକୁ କହେ ସଜ ସରୋଜ (ସଜ ପଦ୍ମ) ପରି ସୁବାସ ଯାହାର ସେହି ରସିକା (ଜେମା) ତୋର ତୋଷିକା (ସନ୍ତୋଷ ଦାୟିକା)

୧୯—ହୃଦୟରେ ହାତ ଦେଇ କହେ; ରକ୍ଷା—ରକ୍ଷକ;

୨୦—ନିଜ ଅଙ୍ଗ—ମାନଙ୍କୁ ବାଳାର ସେହି ଅଙ୍ଗମାନେ ରକ୍ଷକ ବୋଲି କହୁଛି; ମଧ୍ୟେ (ନିଜ ଅଣ୍ଟାରେ) ସିଂହ ମଧ୍ୟମା (ଜେମା)ର ଅଣ୍ଟକୁ ଲକ୍ଷ; ଉରୁରେ (ଜଙ୍ଘରେ) ତାର ରମ୍ଭା ପରି (କଦଳୀ ପରି) ଉରୁ; ନିଜ ଭୁଜରେ ତାର ବିଷ (କଇଁ ନାଡ଼) ପରି ଭୁଜ; ଭ୍ରୂରୁ (ଭ୍ରୂଲତା)ରେ ତାର ଧନୁ ପରି ଭ୍ରୂରୁ;

୨୧—ଉଦରେ (ନିଜ ପେଟରେ) କୃଶୋଦରୀ ଜେମାର ପଦ (ସ୍ଥାନ) ବୋଲି କହେ ।

୨୨—ପୁରୁଷ ଭ୍ରମର ପରି ଅନେକ ଫୁଲରେ ବିହାର କରେ—ଏହି ଅଭିପ୍ରାୟ;

୨୩—ମାଳତୀ ଫୁଲ ପରି ଆମ ଜେମା; ତାଙ୍କର ଏକମାତ୍ର ପୁରୁଷ ସେହି ଭ୍ରମର—ଏହି ଅଭିପ୍ରାୟ ।

ପଲ୍ଲବ ଶେଯରେ ଶୁଆଇବା ବେଳରେ ।
ଘନାଳ କମଳ ଦେଉଁ ହୃଦ ସ୍ଥଳରେ । ୨୪ ।
ବୋଲଇ ନୁହଇ ଆନ ବିହିଛି ବିହି ।
ମଙ୍ଗଳ ଗ୍ରହ ସର୍ବଦା ଶୁଭଦ ନୋହି । ୨୫ ।
ତପସ୍ୟା କି କେବେ ହୋଇଅଛି ବିଫଳ ।
ଉପଗ୍ରର ସୁବାହୁ ଘନାଳ କମଳ । ୨୬ ।
ସବୁ ଉପଗ୍ରର ଏହି ପ୍ରକାରେ ବ୍ୟର୍ଥ ।
ଏ ତାପ ନାଶନେ ଏକା ବୀର ସମର୍ଥ । ୨୭ ।
ଆଜ ରଜନୀରେ କରାଇବୁଁ ସାକ୍ଷାତ ।
ଏତେବେଳ ଯାଏଁ ଥିଲ ଆମ୍ଭ ଆୟତ୍ତ । ୨୮ ।
ଏଣିକି ଏଣୀ ନୟନା କରମେ ଯାହା ।
ଧାତା ଲେଖିଥିବ ଭୋଗ କରିବ ତାହା । ୨୯ ।
ଶୁକ ବୋଇଲ୍ଲ ସୁକର୍ମବନ୍ତ ଏ ବେନି ।
ଦେଖି ତାତ ସନମତ ହେବ ଏ ଘେନି । ୩୦ ।
ଏତେ କହି ଫଳାଶନ ମେଲଣି ହେଲ ।
କୁମାର ଛାମୁରେ ଯାଇଁ ସବୁ କହିଲ । ୩୧ ।
ସିଂହଳେଶ୍ୱର ମନ୍ତ୍ରୀକି ପ୍ରେଷିତ କଲେ ।
ସେ ଆସି ପୁତ୍ର ନରେଶ ଘେନିଣ ଗଲେ । ୩୨ ।
ରଜା ସଙ୍ଗେ ସଙ୍ଗ ହୋଇ ସୁନ୍ଦର ଈଶ ।
ପ୍ରାସାଦେ ଉତ୍ସବ ସ୍ଥାନେ ହେଲେ ପ୍ରବେଶ । ୩୩ ।
ନୃପତି ସମୂହ ଋଣ୍ଡାଭୂତ ସେଠାରେ ।
ଗ୍ରେଳ କୁନ୍ତଳ କେରଳ ମଘ ମହ୍ଲାରେ । ୩୪ ।

---

୨୪—୨୫—ସଖୀ କହେ—ଏ ମୋର ଭଲ କରିବ ନାହିଁ (କାମ ତାପ ନାଶ କରିବ ନାହିଁ) କାହିଁକିନା ଗ୍ରହର ନାମ ମଙ୍ଗଳ ହେଲେ ମଧ୍ୟ ସେ ସବୁବେଳେ ମଙ୍ଗଳ ପାଇଁ ନୁହେଁ;

୨୬-ତପସ୍ୟା ଯେପରି କେବେ ବିଫଳ ନୁହେ ସେହିପରି ସୁବାହୁ (ବୀର ବାହୁ ରୂପ) ସନାଳ କମଳ (ନାଳ ଥିବା ପଦ୍ମ) ଏ କାମ ତାପର କେବଳ ଔଷଧ;

୩୧—ଫଳାଶନ—ଶୁକ ;

୩୪-୩୮—ଭିନ୍ନ ଦେଶର ରଜାମାନେ: ଦେଶମାନଙ୍କର ନାମ ପୁରାଣ ଓ ଇତିହାସରୁ କୁହା-ଯାଇଛି । ଏଥିରେ ସମସାମୟିକ ଭୌଗଳିକ ଭିତ୍ତି ନାହିଁ । କୁନ୍ତଳ, ମଘ, ମହ୍ଲାର,

ମତ୍ସ୍ୟ କଚ୍ଛ ଡାହାଳ କୁଶଳ ଗ୍ରେଡଙ୍ଗ ।
ବିଦେହ ବିଦର୍ଭ ଅଙ୍ଗ ବଙ୍ଗ କଳିଙ୍ଗ । ୩୫ ।
ମଗଧ ନିଷେଧ ମହାରାଷ୍ଟ୍ର ଶ୍ରୀହଟ୍ଟ ।
ଗୁର୍ଜୁରାଟି ନିହୁଡି ମାଳବ ସୌରାଷ୍ଟ୍ର । ୩୬ ।
କମ୍ବୋଜ ଲାହୁର ଚେଦି ଭେଟ ଦ୍ରାବିଡ଼ ।
ମଲ୍ଲ ନେପାଳ ଉତ୍କଳ କୋଂମଶ ଗୌଡ଼ । ୩୭ ।
ରାଜାଏ ବୀରଙ୍କୁ ଦେଖି କଲେ ପ୍ରଶଂସା ।
ଛାଡ଼ିଲେ ଲାବଣ୍ୟବତୀ ଲଭିବା ଆଶା । ୩୮ ।
ଯେମନ୍ତ ଉତ୍ସବ ହୋଇ ଅଛି ସେ ସ୍ଥାନ ।
ନାହିଁ ନ ଥିବ ନୋହିବ ଏ ଅନୁମାନ । ୩୯ ।
ତମୋନୁଦ ପ୍ରଦୀପର ଗଣଣା ନାହିଁ ।
ଚନ୍ଦ୍ର ଉଦିଆ ପ୍ରକାଶ ବିଶେଷ ତହିଁ । ୪୦ ।
ସେହି ଆଲୋକରେ ଝବା ତାମସୀ ନିଶି ।
ଚାନ୍ଦନୀ ରତିକି ସବୁ ପ୍ରକାରେ ହସି । ୪୧ ।
ବାଣଗଣ କିରଣରେ ଶୋଭିତ ତାରା ।
ବିଧୁଙ୍କୁ ଖୋଜନ୍ତି ଯୁଦ୍ଧ କରିବେ ପରା । ୪୨ ।
ମୁଖର ମୁଖରବରେ ଲଜ୍ଜେ ସାଗର ।
କଉଁ ସିନ୍ଧୁ କାଳିକି ପ୍ରଳୟ ସଞ୍ଚାର । ୪୩ ।

---

ଶ୍ରୀହଟ୍ଟ, କୁଞ୍ଜଗଳ, ନଟମଲ୍ଲ, ନେପାଳି ମ୍ଲେଚ୍ଛ, ବାର୍ତ୍ତିକ--ଏ ସବୁ କେଉଁଠାରେ ଏବେ ଜାଣିବା ଦୁଷ୍କର । ନିହୁଡି—ମଜଫର ପୁର; କାମ୍ବୋଜ- -କାମ୍ବୋଡ଼ିଆ-- ମାଳୟ ବା ଦକ୍ଷିଣ ପାରସ୍ୟ ପ୍ରାଚୀନ କାମ୍ବୋଦ ରାଜ୍ୟ; ଭେଟ -ଭୁଟାନ୍; କାଲବରଗ-- ଗୁଲ୍‌ବର୍ଗା । ସିନ୍ଧୁ, ତୁରଷ୍କ ପ୍ରଭୃତି ମୁସଲମାନ ରାଜ୍ୟ--ବାକି ରାଜ୍ୟମାନଙ୍କ ବିଷୟରେ ଅଷ୍ଟମ ଛାନ୍ଦ ଦେଖ;

୪୦—ତମୋନୁଦ—ଦୁହୁଡ଼ି; ଚନ୍ଦ୍ର ଉଦିଆ—ଖାର, ଗନ୍ଧକ, ହରିତାଳ ମିଶାଇ ଯେଉଁ ଚୂନା କରଯାଏ ତାହା ଜଳିଲେ ଚନ୍ଦ୍ର କିରଣ ପରି ଦିଶେ ।

୪୨—ବାଣଗଣ - ଭିନ୍ନ ଭିନ୍ନ ପ୍ରକାରର ଆତସବାଜୀ ।

୪୩—ମୁଖର—କୋଳାହଳମୟ; ମୁଖରବରେ—ପାଟିତୁଣ୍ଡରେ ।

ତୂର ନାଦେ ଲଙ୍କା ପୁର ବାସୀ ଆତୁର ।
ଚିତ୍ତେ କରି ହନୁମନ୍ତ ରଙ୍କ ପ୍ରକାର । ୪୪ ।
ରାଜସୂୟ ଯାଗ ସଜ୍ଞ କରି ସେଠାର ।
ଜନ ରହଳରେ ହୋଇଅଛି ସୁନ୍ଦର । ୪୫ ।
ନାଟକାରେ ନାଟ ନଟ ହଟ କରଇ ।
ଘଟ ଠାରୁ ପାଟ ଶାଟୀ ବରଟ ପାଇ । ୪୬ ।
ଭଟ କବିତ୍ୱ ପଟଳେ କହନ୍ତି କୀର୍ତ୍ତି ।
ସାଧୁ ବିଧୁ ଶେଖରଙ୍କୁ କରନ୍ତି ସ୍ତୁତି । ୪୭ ।
ଥେଣ୍ଟେ ଖଣ୍ଡ ପରକଟ ନିକଟ ହୋଇ ।
କଳକଣ୍ଠ କଣ୍ଠୀ କର୍ଣ୍ଣି ନିଏ ଛିଣ୍ଡାଇ । ୪୮ ।
ନଟ ବିଟପୀଙ୍କି ନେତ୍ରାନ୍ତରେ ଠାରନ୍ତି ।
ଗଣିକାଙ୍କୁ ଧନିଏ ସୁବର୍ଣ୍ଣ ଦେଖାନ୍ତି । ୪୯ ।
ଦୁଷ୍ଟ ନଷ୍ଟ ବ୍ୟୂହ କଳହରେ ଉନ୍ମତ୍ତ ।
କୁଳଟା ହଟା ନିଷାଦ କରେ ଉଦିତ । ୫୦ ।
ପାଟର ପଟଳ ନାନା ବାଟେ ଭ୍ରମନ୍ତି ।
ପାଟକ ହାଟରେ କ୍ରୟ-ବିକ୍ରେ କରନ୍ତି । ୫୧ ।
କାନ୍ତ କଟୀ ବାସ ଧଟୀ ଦୃଢରେ ଧରି ।
ଖର୍ବଟକ ନାରୀଚୟ ବିହାର କରି । ୫୨ ।

---

୪୫–ରାଜସୂୟ ଯାଗ–ଦିଗ୍‌ବିଜୟ କରିସାରି ସବୁ ସାମନ୍ତ ରାଜାମାନଙ୍କୁ ନିମନ୍ତ୍ରଣ କରି ସମ୍ରାଟମାନେ ଯେଉଁ ଯାଗ କରନ୍ତି ।

୪୬–ନାଟକାର–ନାଚୁଆ; ନାଟ–ନାଚ; ନଟ–କେଳା; ହଟ–ହଟଚମଟ, କୁହୁକ; ଘଟ–ରଜା; ଶାଟୀ–ଶାଢୀ; ବରଟ–କଉଡ଼ି ;

୪୭–ସାଧୁ–ବାବାଜି, ବିଧୁ ଶେଖର–ମହାଦେବ, ଏଠାରେ ଘମେଶ୍ୱର ମହାଦେବ ।

୪୮–ଥେଣ୍ଟ–ଠକ; ଖଣ୍ଡ–ଚୋର; କଳ କଣ୍ଠ କଣ୍ଠୀ (ସୁନ୍ଦରୀ ସ୍ତ୍ରୀ)ର କର୍ଣ୍ଣି (କର୍ଣ୍ଣିମାଳି)

୫୦–ବ୍ୟୂହ–ସମୂହ; ହଟା–ଦୁର୍ନାମ;

୫୧–ପାଟର ପଟଳ–କର୍ଣ୍ଣି ଗୁଛା କାରବାରିଙ୍କର ସମୂହ; ପାଟକ–ତେଲି, ଗୁଡ଼ିଆ ପ୍ରଭୃତି ଭିନ୍ନ ଭିନ୍ନ ବ୍ୟବସାୟର ଜାତି ମାନଙ୍କୁ ପାଟକ କୁହାଯାଏ;

୫୨–କାନ୍ତ କଟୀ ବାସଧଟୀ–ସ୍ୱାମୀର ପିନ୍ଧା ଲୁଗା ଧଡ଼ି; ଖର୍ବଟକ–ସମୁଦ୍ର କୂଳର ଛୋଟ ପାଟଣା (ଯେଉଁଠାରେ କିଣାବିକା ହୁଏ) କିମ୍ବା ପାହାଡ଼ ତଳିଆ ଗାଁ;

କଟକ ନାରୀ ଛଟକ କହି ନୁହଇ ।
ହାସ ଝଟକେ ନିଅନ୍ତି ମନକୁ ମୋହି । ୫୩ ।

ଯଜମାନ ଦ୍ୱିଜମାନେ ଘେନି ଗମନ୍ତି ।
ହର ଦରଶନରେ ଉଛନ୍ନ ହୁଅନ୍ତି । ୫୪ ।

ଯୁବା ପୁରୁଷ ସୁନ୍ଦରୀ ଯୁବତୀ ଗହିଁ ।
ପଛେ ଗୋଡ଼ାଇ ମଦନେ ହୁଅନ୍ତି ମୋହି । ୫୫ ।

କେ କାହାକୁ ନିଷେଧେ ଏ ନୋହେ ବିହିତ ।
ହର ଦରଶନେ ଆସି କର ଦୁରିତ । ୫୬ ।

ଯେ ଯାହାକୁ କାଳାନ୍ତରେ ଦେଖି ନ ଥିଲେ ।
ସେହି ସମୟରେ ଚକ୍ଷୁଗକ୍ଷ ହୋଇଲେ । ୫୭ ।

ବସନ ଭୂଷଣ ଯେ ଯାହାର ସଞ୍ଚିତ ।
ସେଦିନ ହୋଇ ଅଛନ୍ତି ସର୍ବ ଭୂଷିତ । ୫୮ ।

ହାଟର ଝଟକ କହିବାର ନୁହଇ ।
ଜନନୀ ଜନକ ଛାଡ଼ି ସବୁ ମିଳଇ । ୫୯ ।

ଉରଜ କୁମ୍ଭକାରକ ନାରୀ ବିବେକୀ ।
ଲୁଗ୍ରଇ ଉରଜ କୁମ୍ଭ ସପୁଟ ବିକି । ୬୦ ।

ଚନ୍ଦ୍ର ଭ୍ରମରୀ ସିନ୍ଦୂର ବିକନ୍ତି ଯହିଁ ।
ନାଗର ପ୍ରତ୍ୟକ୍ଷେ ତାଙ୍କୁ ଭଙ୍ଗୀରେ କହି । ୬୧ ।
ହାସ କେଶ ଅଧରେ ଦେଖାଇ ଅଙ୍ଗୁଳି ।
ଏହା ଛାଡ଼ି ଏହା ବିକ କିପାଁଇ ବାଳି । ୬୨ ।

---

୫୩-କଟକ-ସହର;

୫୪-ଦ୍ୱିଜ-ପଣ୍ଡା (ଗମେଶ୍ୱରଙ୍କର); ଯଜମାନ-ଦର୍ଶନ କରିବା ଲୋକ; ଯାତ୍ରୀମାନଙ୍କୁ ପଣ୍ଡାଙ୍କର ଯଜମାନ ବୋଲି କୁହାଯାଏ;

୫୬-ଦୁରିତ-ପାପ;

୫୯-କଥାରେ କହନ୍ତି ବାପ, ମା ଛାଡ଼ି ସବୁ ମିଳେ;

୬୦-ଉରଜ-ବୈଶ୍ୟ; କୁମ୍ଭକାରକ-କୁମ୍ଭାର; ଏ ଦୁଇ ଜାତିର ସ୍ତ୍ରୀ ମାନେ ନିଜର ନିଜର (କୁଚ କୁ ଲୁଗ୍ରଇ କୁମ୍ଭ (ମାଠିଆ) ସପୁଟ (ଫରୁଆ) ବିକୁଛନ୍ତି । ଗ୍ରାହକ ମାନେ ସ୍ତନ ଦେଖିଲେ ମାଟି ମାଠିଆ, କାଠ ଫରୁଆ କାହିଁକି ନେବେ ?

୬୧-୬୨-ଚନ୍ଦ୍ର (କର୍ପୂର ପରି)ହାସ; ଭ୍ରମରୀ-ଭ୍ରମର ପରି କେଶ; ସିନ୍ଦୁର ପରି ଅଧର;

ଗୁଡ଼ାକାର ବାଛାଙ୍କ ପସରା ସନ୍ନିଧେ ।
ସିତାରୁ ସ୍ୱାଦୁ ଅଛି କି ପୁଛନ୍ତି ବୁଧେ । ୬୩ ।
ସେ ବୋଲନ୍ତି ଅଛି ହେ ପ୍ରବାଳ ମଧ୍ୟରେ ।
ଚେମନ୍ତ ସ୍ୱାଦୁ ପଦାର୍ଥ ନାହିଁ ବିଧୁରେ । ୬୪ ।
ବର୍ଣ୍ଣିଲେ ତ ସରିବାରି ପ୍ରସଙ୍ଗ ନୋହି ।
ଚରିତ୍ର ମାତ୍ରକୁ କିଛି ଦେଲଇଁ କହି । ୬୫ ।
କୁମାରୀ ଦର୍ଶନକୁ ଉଛନ୍ନ କୁମାର ।
ମନକୁ ମନ୍ଥନ ତାର କରଇ ମାର । ୬୬ ।
କେଶର ବନକୁ ସେ ଗମନ ତ୍ୱରିତ ।
ସିଂହକେଶ ପାଶେ ମନ୍ତ୍ରୀ ସୁତ ପ୍ରେଷିତ । ୬୭ ।
ସେ ଯାଇ କହିଲା ଗଜା କର୍ଣ୍ଣ କୂଟରେ ।
ଅନ୍ତଃପୁର ନାରୀଛନ୍ତି ବୀର ସଙ୍ଗରେ । ୬୮ ।
ସେ ଦରଶନ କରିବେ ଶୁଣି ନୃପତି ।
ପରୀକ୍ଷା ହକାରି ଆଜ୍ଞା ଦେଲେ ତତ୍ପତି । ୬୯ ।
ଯେତେବେଳେ ଅବରୋଧ ଦର୍ଶନ ହେବ ।
ଏହାଙ୍କ ଅନ୍ତଃପୁରସ୍ଥା ଗଣ ଛାଡ଼ିବ । ୭୦ ।
ବୀରପାଶେ ଆଗମନ ସଚିବ ସୁତ ।
କହିଲା ନୃପତି ସୀଉକାର ଉଦନ୍ତ । ୭୧ ।

---

୬୩—ଗୁଡ଼ାକାର—ଗୁଡ଼ିଆ; ସିତାରୁ—ଶାକରୁ।

୬୪—ପ୍ରବାଳ—( ପୋହଳା ପରି ଇଲ ଯେ ଓଠ ) ତାହା ମଧ୍ୟରେ; କିମ୍ବା ପ୍ରବାଳ ବିଶେଷରେ ଲେମ—ଏପରି ଅଶ୍ଳୀଳ ଅର୍ଥ ମଧ୍ୟ ଥାଇ ପାରେ; ଅଥଚ ପ୍ରକାଶିତ ଅର୍ଥରେ ପୋହଳାରେ ତିଆର ହୋଇଥିବା ବହୁ ମୂଲ୍ୟ ପାତ୍ର ଭିତରେ; ବିଧୁରେ—ଚନ୍ଦ୍ରରେ—ଅର୍ଥାତ ଚନ୍ଦ୍ରରେ ଥିବା ଅମୃତ ଠାରୁ ଆହୁରି ସ୍ୱାଦୁ; ବିଧୂରେ (ବିରହୀ ପକ୍ଷରେ)—ଏହି ଗୂଢ଼ାର୍ଥ ।

୬୫—ଚରିତ୍ର ମାତ୍ରକୁ-ନିତାନ୍ତ ବର୍ଣ୍ଣନା ନ କଲେ ନ ଚଳେ ବୋଲି;

୬୮—କର୍ଣ୍ଣ କୂଟରେ—କାନରେ ( ଚୁନି କରି କହିଲା ) କହିଲା—କୁମାର ସଙ୍ଗେ ସ୍ତ୍ରୀ ଲୋକ ଅଛନ୍ତି ।

ମାଳିକ କାମିନୀଗଣ ସଙ୍ଗ ବିଗ୍ଭରି ।
ଚନ୍ଦ୍ରମୟ ହାନ୍ଦୋଳା ଆରୋହଣ କରି । ୭୨ ।
ପ୍ରବେଶ ହେଲେ ଦେଉଳ ପଶ୍ଚିମ ଦ୍ୱାରେ ।
ବେତ୍ରକ ନିଷେଧ କରିଦେଲେ ସତ୍ୱରେ । ୭୩ ।
ସେ ଗ୍ଭରି ମିତ୍ର ପ୍ରାକାରଂଅନ୍ତରେ ରହି ।
ଗଜ ଜେମା ବିଜୟ ପଥକୁ ଅନାଇଁ । ୭୪ ।
ଏ କାଳେ ନୃପ ଆଜ୍ଞାରେ କୁମାରୀ ବିଜେ ।
ପୁରତରେ ନାନାବିଧ ବାଦ୍ୟହିଁ ବାଜେ । ୭୫ ।
ସୁଖାସନ ବେଢ଼ି ପରିଗ୍ଭରୀ ନିକର ।
ଚଳାନ୍ତି ମୟୂରପୁଚ୍ଛ ଖଡି ଗ୍ଭମର । ୭୬ ।
ଚନ୍ଦ୍ର ସୂର୍ଯ୍ୟ ତାରା ଯୁତ ଉହାଡ଼ି ଜଲ ।
ନୀଳ ଗିରିଦରୀରୁ କି ବିଜେ କମଳା । ୭୭ ।
ଯେତେ ନିକଟେ ବାଜଇ ବାଦ୍ୟ ନିଃସ୍ୱନ ।
ତେତେ ସଜାଡ଼ି ବିନ୍ଧୁଛି ଶର ମଦନ । ୭୮ ।
ତେତିକ ମନ ଆନନ୍ଦ ବୃଦ୍ଧି ହେଉଛି ।
ଉଚ୍ଛନ୍ନ ସହିତ ଉହଟକୁ ପାଉଛି । ୭୯ ।
ପୟେକାର ମୁଦୁଲୀ କଞ୍ଚୁକୀ ନିକର ।
ଆଡ଼ହୋ ଆଡ଼ହୋ ଡ଼ାକେ କରି କାତର । ୮୦ ।

---

୭୨—ମାଳିକ କାମିନୀ—ମାଲୁଣୀ;

୭୩—ବେତ୍ରକେ—ଦ୍ୱାରପାଳ ମାନେ; ନିଷେଧ—ଦେଉଳ ଶୋଧ (ଦେଉଳରୁ ଅନ୍ୟ ସମସ୍ତଙ୍କୁ ବାହାର କରିଦେବା); ରଜା, ବଡ଼ ଲୋକଙ୍କ ସ୍ତ୍ରୀ ମାନେ ଦର୍ଶନ କଲାବେଳେ ଏପରି ହୁଏ

୭୪—ପ୍ରାକାର ଅନ୍ତରେ- ପାଚେରୀ ବାହାରେ;

୭୫—ପୁରତରେ—ସମ୍ମୁଖରେ, ଆଗରେ;

୭୬—ସୁଖାସନ- ହାନ୍ଦୋଳା; ଖଡି ଗ୍ଭମର [ ୩ୟ ଛାନ୍ଦ ୨୬ ପଦ ଟୀକା ଦେଖ ]

୭୭—ମୟୂର ଚନ୍ଦ୍ରିକା ଥିବାରୁ ଚନ୍ଦ୍ର, ସୂର୍ଯ୍ୟ, ତାରା ଥିଲା ପରି ଉହାଡ଼ ଜଲ । (ଶାଢ଼ୀ ଉପରେ ପକାଇ କରି); ହାନ୍ଦୋଳାରେ ନେଳୀ ଲୁଗା ପଡ଼ି ଥିବାରୁ ନୀଳ ଗିରିଦରୀ ସଙ୍ଗେ ଉପମା;

୮୦—ପୟେକାର—ପଇକାଟୀ, ପାଦଗ୍ଭରୀ ( ପାଦରେ ଗ୍ଭଲୁଥିବା ); କଞ୍ଚୁକୀ—ଖୋଜା; [୧୨ଶ ଛାନ୍ଦ ୫ମ ପଦ ଟୀକା ଦେଖ] ଆଡ଼ହୋ—ଆଡ଼ିଆଅ, ବାଟରୁ ପାଖେଇ ଯାଅ;

ମଣିମା ଡ଼ାକ ଅଣିମା ସୁଖ ଦାୟିନ ।
ପ୍ରବେଶ ପଶ୍ଚିମ ଦ୍ୱାରେ ହାନ୍ଦୋଳା ମାନ । ୮୧ ।
ଘଣ୍ଟିନାଦେ କର୍ଣ୍ଣ ଟେକେ ଯେମନ୍ତ ମୃଗ ।
ତପଗ ବୃଦ୍ଧି ନୃପତି ସୁତ ଉଦ୍‌ବେଗ । ୮୨ ।
ମନରେ ଭାବନା କରି ଧନ୍ୟ ଏ ନିଶି ।
ଯେଣୁ ଏ କଳା ପ୍ରବୀଣା ମୋ ମନ ତୋଷି । ୮୩ ।
ଚତୁରଦଶୀର ନିଶୀ ହୋଇ ତରୁଣୀ ।
ଦୂତୀ ହୋଇ ଭେଟାଉଛି ନବ ତରୁଣୀ । ୮୪ ।
ବିରହୀ ବଲ୍ଲଭା ସବୁକାଳେ ଦରଶ ।
ତାଙ୍କୁ ଚନ୍ଦ୍ର ତାପେ ବୋଲି କରେ ବିନାଶ । ୮୫ ।
ପୂର୍ଣ୍ଣପକ୍ଷ ଦିନ ବୋଲି ଏ ପୂର୍ଣ୍ଣପକ୍ଷ ।
ମୋତେ କଲା ଦେଖି ଅତି ଦୀନ ଅରକ୍ଷ । ୮୬ ।
ରାମ ଜାଣେ ଯେତେ ସୁଖ ଜାତ ଏ କାଳେ ।
ସୀତା ମାଳ ଘେନି ବରି ଆସିବା ବେଳେ । ୮୭ ।
ଉପଇନ୍ଦ୍ର ବୀରବର ତାଙ୍କ କୋୟର ।
ଏଣୁ ହେଲା ବର୍ଣ୍ଣିବାକୁ କିଛି ଗୋଚର । ୮୮ ।

---

୮୧—ମଣିମା—ଢେମା ପ୍ରତି ଡ଼ାକ ; ଅଣିମା ସୁଖ-[୦୧୧ଶ ଛାନ୍ଦ ୧୨ପଦ ଟୀକା ଦେଖ]

୮୨—ଘଣ୍ଟି ଶୁଣିଲେ ଦୂରରୁ ମୃଗ କାନ ଟେକି ଛିଡ଼ା ହୁଏ, ଉଦ୍‌ବେଗ ଯେ ସେ ତପଗ ବୃଦ୍ଧି ( ସେହି ଢେମା ଆସିବାର କ୍ରମ ବୃଦ୍ଧି ) ପାଇଲା ।

୮୪ । ୮୫—ସେ ଦିନ ଶିବଚତୁର୍ଦ୍ଦଶୀରେ ଅମାବାସ୍ୟା ମିଶିଥିଲା; ଦରଶ—ଅମାବାସ୍ୟା—ଗତି; ବିରହୀ ବଲ୍ଲଭ ( ବିରହୀ ପ୍ରିୟ ); କାହିଁକି ନା ତାଙ୍କୁ ( ବିରହୀଙ୍କୁ ) ଚନ୍ଦ୍ର ତାପ ଦିଏ ବୋଲି ସେ ଚନ୍ଦ୍ରକୁ ବିନାଶ କରେ ।

୮୬—ମୋତେ ଅତି ଦୀନ ( ଦୁଃଖୀ ) ଓ ଅରକ୍ଷ ( ଅସହାୟ ଦେଖି ) ଏ ପୂର୍ଣ୍ଣପକ୍ଷ ଦିନ ( ଅମାବାସ୍ୟ ) ବୋଲି ମୋତେ ପୂର୍ଣ୍ଣପକ୍ଷ କଲା ( ସମ୍ପୂର୍ଣ୍ଣ ସହାୟ ହେଲା ) ।

୮୮—କୋୟର —ଦାସ ;



# ସପ୍ତବଂଶ ଛାନ୍ଦ

## ( ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ଦେବାଳୟରେ ସାକ୍ଷାତ )

ରାଗ–ବସନ୍ତ ବରାଡ଼ି ।

ବିରଞ୍ଚି ରଚିଛି ଏ ସଂସାର ସାର ସୁନ୍ଦରୀ ଯାକ ଏକ କରି ।
ଶ୍ରୀଧାମ ମୁଖ ସ୍ୱଭାବେ ରାଗଲତା ସୁକାନ୍ତିରେ କରି ଗଉରୀ ।
ସର୍ବଦା । ସୁଭଦ୍ରା ସେ ଯେ ମନ୍ଦୋଦରୀ ।
ରମ୍ଭା ଉରୁ ସୀତା ମଧୁର ବଚନା ତାରା ତନୁ କରେ ମାଧୁରୀ । ୧ ।
ପାଳିଙ୍କି ଅଙ୍କରୁ ଉତୁରି ଝଲକି ଏମନ୍ତ ଚତୁରୀ ରତନ ।
ଋଷି ବସିବେ ସଂସାର କରିବାକୁ ଯୋଗେ ହେଲେ ନେତ୍ର ପତନ ।
ଭାଳିବେ । ଏ ଚତୁରୀ କାମ କତୁରୀ ।
ନାଗରୀ ନାଗରିପୁ ମଧ୍ୟା ମଞ୍ଜୁଳ ନଗରୀ ସୁରସ ସାଗରୀ । ୨ ।
ଅବନୀ ମଣ୍ଡରେ[୩] ମଘବା–ପଦକୁ ପଦକୁ ଗୁଳିବାରେ ଦେଇ ।
କିଙ୍କିଣି କିଣି କିଣି କି ଅଣିମାଦି ସୁଖ ଶ୍ରୁତିକି ଦେ ।ପାଇଁ ।
ଡ଼ାକିଲେ । ହଂସକେ ହଂସ କେ ସମାନ ।
କର ଏ ଗତିକି ସମଦ ଦ୍ୱିରଦ ମଦ କରଇ ଯେ ମର୍ଦ୍ଦନ । ୩ ।

---

ପାଠାନ୍ତର—୧, ବନତା ।

---

୧– ନବ ସୁନ୍ଦରୀ ଏ ବାଳା ଦେହରେ ଏକାଠି ହୋଇଛନ୍ତି; ଯଥା-ମୁଖ ଯେ ସେ ଶ୍ରୀ ( ଶୋଭା, ଲକ୍ଷ୍ମୀ ) ଧାମ ( ସ୍ଥାନ ); ସ୍ୱଭାବରେ ଏ ରାଗଲତା ( ଅନୁରାଗର ସ୍ୱରୂପ, ରତିଦେବୀ ); କାନ୍ତିରେ ଗୌରୀ (ଗୌରୀ, ପାର୍ବତୀ); ଏ ସୁଭଦ୍ରା (ମଙ୍ଗଳ-ମୟୀ ଅର୍ଜ୍ଜୁନ ପତ୍ନୀ ); ଏ ମନ୍ଦୋଦରୀ ( କ୍ଷୀଣ ମଧ୍ୟା, ରାବଣ ପତ୍ନୀ ); ଏହାର ଉରୁ ରମ୍ଭା ( କଦଳୀ ଗଛ, ସ୍ୱର୍ଗ ବେଶ୍ୟା ); ଏହାର ବଚନ ସୀତା ( ଉଜ୍ଜ୍ୱଳ, ଜାନକୀ ); ତନୁ ତାରା ( ତୋରା, ସୁଗ୍ରୀବ ପତ୍ନୀ ) ରାଗଲତା–"ରତିଃ, ସୁରପ୍ରିୟା, କେଳି କଳା, ରାଗଲତା"–ଇତି ତ୍ରିକାଣ୍ଡ ଶେଷଃ;

୨– ନାଗରୀ–ନଗରେଭବା ରତି ପଣ୍ଡିତା ନାରୀ; ନାଗ ( ହାତୀ )ର ରିପୁ ( ବୈରୀ ) –ସିଂହପରି ମଧ୍ୟ ( ଅଣ୍ଟା ) ଯାହାର; ମଞ୍ଜୁଳ ନଗରୀ–ସୌନ୍ଦର୍ଯ୍ୟର ( ସ୍ଥାନ ) କିମ୍ବା ସୁନ୍ଦର ଅଟେ ନଗରୀ ଯାହା ହେତୁରୁ; ସୁରସ– (କେଳି ରସର)ସାଗର ପରି;

୩– ପଦକୁ ( ପାଦକୁ ) ଗୁଳିବାରେ ଅବନୀ ମଣ୍ଡରେ (ପୃଥିବୀ କି ମଣ୍ଡନ କରିବାରେ) ମଘବାପଦ ( ଇନ୍ଦ୍ରପଦ )କୁ ଦେଇ–କିମ୍ବା ମଣ୍ଡରେ ( ମଠରେ ) ପାଦ ଗୁଳିବାରେ

ଅତନୁ ସ୍ୟନ୍ଦନ ବନ୍ଦନ ଚନ୍ଦନ ଶୀତଳ ତନୁକୁ ରଞ୍ଜାଇ ।
ପହଣ୍ଡ ମଣାଇ ସଙ୍ଗୀତ ପ୍ରବୀଣା ସର୍ଜିନୀଏ ବୀଣା ବଜାଇ ।
କୁମାର । ଥିବା ସ୍ଥାନକୁ ଅନୁସରି ।
ଶୋଭଙ୍ଗୀକି ପାନ ଭର୍ଜି ଦେଇ ମନ ତୋଷୁ ଅଛି ମନ୍ତ୍ରୀ କୁମାରୀ । ୪ ।

ଅମର ମୋହିନୀ ଭ୍ରମର କେଶିନୀ ମେଘ ମାଳା ଗ୍ଳେ ଗ୍ରମର ।
ବିମ୍ବ ବିଡ଼ମ୍ବ ଡ଼ାଳିମ୍ବ ପୁଷ୍ପାଧରୀ ଧରିଛି ଧାତ୍ରୀ ପୁତ୍ରୀ କର ।
ଆଗରେ । ପରିବାରିକାଏ ମଞ୍ଜୁଳ ।
ବିଜୁଳି ଜ୍ୟୋତିରେ ଘେଉଡ଼ି ନେଉ ସେ ଅଛନ୍ତି ଅନ୍ଧାର ପଟଳ । ୫ ।

ସୁରସିକ ରସନିଧିର ସନ୍ନିଧି ଏ ବିଧିରେ ହୋଇଁ ପ୍ରବେଶ ।
ମହା ଅନୁଭୂତ ଶୋଭା ସେ ଦେଖିଲେ ସମ୍ଭୃତ ଉପମା ଅଶେଷ ।
ମଧୁର । ହାସ ବିଗଳିତ ଅଧରେ ।
କି ରତିଜିତ କୀରତି ଉଦେ ବାଳା କରୁଛି ଅରୁଣ ମଧ୍ୟରେ । ୬ ।

ତାଟଙ୍କ ହୀର ଝଟକ ଦୀପ ପର ଲପନ ଶୋଭକୁ ଦେଖାଇ ।
ଦର୍ପକ ଦର୍ପଣ ଦର୍ପହର ବୋଲି ଅଳକା ଅକ୍ଷରେ ଲେଖାଇ ।
ରହିଲା । ସେହି କତିକି ମୋଡ଼ି ହୋଇ[୨] ।
ଆନନ ବିନ୍ଦରେ ଆନ ନବୀନାରେ ଦୃଷ୍ଟିପାତ ନୋହୁ ଧିଆଇ । ୭ ।

---

ପାଠାନ୍ତର—[୨], ସେହି କବଳ ମୋଡି ହୋଇ ।

---

ଅବନୀରେ ଇନ୍ଦ୍ରପଦ ଦେଇ;—ଶ୍ରୁତିକୁ ( କାନକୁ ); ଦେବାପାଇଁକି—ଏ ଉତ୍ପ୍ରେକ୍ଷା । ଅଣିମାଦି [ ୧୧ଶ ଛାନ୍ଦ ୧୨ ପଦ ଟୀକା ଦେଖ । ] ହଂସକେ ( ପାହୁଣ୍ଡମାନେ ) ଡ଼ାକିଲେ ( କହିଲେ ) ସମଦ ( ମଦୋନ୍ମଦ ) ଦ୍ୱିରଦ ( ହାତୀ )ର ମଦ (ଦର୍ପ) ଯେ ମର୍ଦ୍ଦନ ( ଜବତ ) କରୁଛି ସେହି ଏ ଜେମାର ଗତିକି ହଂସ କେ ( କିଏ ) ସମାନ କରୁଛି ?

୪— ଅତନୁ ସ୍ୟନ୍ଦନ ( କନ୍ଦର୍ପର ବୋହି ପଡୁଥିବା ଧାର ପରି ହୋଇଛି ), ଏହିପରି ଯେଉଁ ବନ୍ଦନ ଚନ୍ଦନ ( ଅତି ସୁବାସିତ ଚନ୍ଦନ ) ସେଥିରେ ଶୀତଳ କରିବା ନିମନ୍ତେ ତନୁ ( ଶରୀର )କୁ ରଞ୍ଜାଇ ( ଚିତ୍ରିତ କରିଛନ୍ତି ) ପହଣ୍ଡ-ପାହୁଣ୍ଡ ;

୫—ବିଡ଼ମ୍ବ—ଅନୁକରଣ; ବିମ୍ବ ବିଡମ୍ବ—ବିମ୍ବପରି; କିମ୍ବା ବିମ୍ବକୁ ବିଡ଼ମ୍ବ (ଅନ୍ତ) କରୁଛି ଯେ;

୬—ରତିଜିତ—ରତିକୁ ଜିଣିବା ଭଳି; କି କୀରତି—କି ସୁନ୍ଦର ଶୋଭା, ଓଠ ଲାଲ ହେବାରୁ ଅରୁଣ;

୭—ଦୀପ ପରି ତାଟଙ୍କ ହୀର ମୁହଁକୁ ଦେଖାଇ ଦେଉଛି; ଦର୍ପକ (କନ୍ଦର୍ପ ର ଦର୍ପଣର ଯେ ଦର୍ପ (ସ୍ୱଚ୍ଛତା ରୂପ ଯେ ଗର୍ବ) ତାର ହର (ନାଶ କର୍ତ୍ତା) ଏ ମୁହଁ ବୋଲି ଅଳକା

ଉସିକା ମଣିର ସେ ନାସିକା ଫଳେ ତିଳ ଫୁଲେ କରେ ଧିକାର ।
ବିରହ ଅନଳ ପ୍ରଜ୍ୱଳ ହେବାକୁ ଯନ୍ତ ତାଇ ଦେଲା ପ୍ରକାର ।
କୁଟିଳ । କୁନ୍ତଳ କି ଶୋଭା ଦିଶୁଛି ।
ବାଳିକା ମଲ୍ଲିକା ମାଳିକା କବରୀ ଘନ ଶର୍ବରୀକି ହସୁଛି । ୮ ।
ଦରକର୍ଣ୍ଣିନୀର ଦରକମ୍ପା ଶିର ଝଲକା ଝଲକ ଥରଇ ।
ଜାନୁ ବର୍ତ୍ତୁଳା ତୁଳା ହୋଇ ଅବଳା କାହିଁ ନାହିଁ ନାହିଁ କରଇ ।
ସୁନ୍ଦରୀ । ସୃଷ୍ଟିରେ ବାଳା ଚକ୍ରବର୍ତ୍ତୀ ।
ହୋଇଛି ବୋଲିକି କର୍ଣ୍ଣ ଧରି ଅଛି ସୁଜ୍ୟୋତି ମୋତି ଫୁଲଛତି । ୯ ।

ତାମରସ ବାସୀ ପ୍ରେମରସ ଭଷୀ ପୁସ୍ତକ ପରାୟ ଏ ଘେନି ।
ଅମୂଲ୍ୟ ଗୁଣରେ ସଂଯୁକ୍ତ ହୋଇଣ ସୁମନ ସୁମନ ମୋହିନୀ ।
ଲଲାଟେ । ଚିତ୍ରକ କର୍ପୂରେ କସ୍ତୂରୀ ।
ମାଣିକ୍ୟ ମରକତ ମୀନା ଫୁଙ୍କିଛି ସୁନା ପଟାରେ କି ସୁନାରୀ । ୧୦ ।

---

(ସୀମନ୍ତ) ରୂପ ଅକ୍ଷରରେ ଲେଖାଇ ଦେଇଛି । ସେହିଁ କତିକି ସେହି ମୁହଁ ଆଡ଼କୁ) ମୋଡ଼ି ହୋଇ (ବଙ୍କେଇ ହୋଇ) କୁମାର ରହିଲା; କାହିଁକି—ଏ ଆନନ (ମୁହଁ) ବିନା ଆନ ନବୀନା (ଅନ୍ୟ ସ୍ତ୍ରୀ) ଉପରେ ଦୃଷ୍ଟିପାତ ନୋହୁ ବୋଲି ।

୮—ଯନ୍ତ ତାଇ ଦେବା-କମାର ଯନ୍ତାରେ ପବନ ପୂରଇ ବୁଜି ଚିପି ଦେବା; କବରୀ—କେଶ ପାଶ, ବାଳ ବନ୍ଧା; ଘନ ଶର୍ବରୀ—ବର୍ଷା ରାତି; ଅନ୍ଧାରରେ ଟୋପା ଟୋପା ଉଜ୍ୱଳ ପାଣି ପଡ଼ିଲା ପରି । କିମ୍ବା କଳା ମେଘ ପାଖେ ଖଣ୍ଡେ ଖଣ୍ଡେ ସଫା ଆକାଶରେ ତାରା ଦିଶିଲା ପରି;

୯—ଝଲକା (କାପର ପେଣ୍ଡି) ମୁଣ୍ଡ ହଲିବାରୁ ଥରୁଛି; ଯେପରି କି ଏ ଜାନୁ ବର୍ତ୍ତୁଳା (ଗୋଲ ଜଙ୍ଘ ଯାହାର) ତାର ତୁଳା (ସମାନ) ଅବଳା ନାହିଁ—ଏହା କହୁଛି;

୧୦ ତାମରସ—( ପଦ୍ମ ); ତାମରସ ବାସୀ ( ଲକ୍ଷ୍ମୀ ) ପ୍ରେମରସ ଭଷୀ ( ପ୍ରେମରସ ଭଷାରେ ଲିଖିତ ) ପୁସ୍ତକ ( ପୋଥି ) ପରି ହୋଇଛି । ପୋଥିରେ ଗୁଣ ( ଦଉଡ଼ି ଥାଏ ); ଏହାଠାରେ ଅମୂଲ୍ୟ ଗୁଣ ଅଛି ; ପୁସ୍ତକ ସୁମନା ( ପଣ୍ଡିତ ) ଙ୍କୁ ମୁଗ୍ଧ କରେ ; ଏ ସୁମନା ( ଉତ୍ତମ ମନା, ଲକ୍ଷ୍ମୀ ) ସୁମନା ( ଦେବତା ) ମୋହିନୀ; କପାଳର ସିନ୍ଦୁର କସ୍ତୂରୀ ଚିତ୍ର ସୁନାପଟା ଉପରେ ମାଣିକ୍ୟ ଗୁଣ୍ଡ ଗୋଳି ସେଥିରେ ମର୍କତ ମୀନା ଫୁଙ୍କିଲା ପରି ହୋଇଛି । [ ୪ର୍ଥ ଛାନ୍ଦ ୩୦ ପଦ ଟୀକା ଦେଖ ]

କମଳ ଦଳେ ଢଳ ଢଳ କାଳନ୍ଦୀ ଜଳ ପରି ଡୋଳା ଢଳୁଛି ।
କଜ୍ଜ୍ୱଳ ସୂତ୍ରରେ ଲଗି ନୀଳମଣି ସାରଣି କି ଅବା ଚଳୁଛି ।
ଭ୍ରୂଲତା । ଚାପେ କରି ଶର ସନ୍ଧାନ ।
ଧର୍ଯ୍ୟ କୁରଙ୍ଗକୁ ମୃଗୟା ରଙ୍ଗରେ ବିନ୍ଧି ଆସୁଛି କି ମଦନ । ୧୧ ।
ସେ କାଳେ ବଦନ ମଦନ ରଞ୍ଜନ ନାଟ ସଦନ ସୁରଞ୍ଜନ ।
ନୂପୁର ବାଦ୍ୟ ନାଦେ ବାଦେ ନାଚନ୍ତି ଯୋଷ ପୋଷା ବେନି ଖଞ୍ଜନ ।
କାହିଁକି । ନିରଚେ କୋଣକୁ ଯାଉଛି ।
ଚାହିଁକି ଉତ୍ତଂସ ଅନଳ ସରଗେ ସେହି ଦିଗେ ମୀନ ଧାଉଁଛି । ୧୨ ।
ଏ କଉଁ ଚରିତ ତ୍ୱରିତ ତ୍ୱରିତ ଦୁଇ ଦିଗକୁ ସେ ଯାଉଛି ।
ଶ୍ରୁତିରେ ପାଶ ଆଶଙ୍କାକୁ କରିଣ ହରିଣ ଚଞ୍ଚଳ ହୋଉଛି ।
କି ଅବା । ଅମୃତ କୁଣ୍ଡରେ ମଜ୍ଜାଇ ।
କଳାବତୀ କଳା କମଳ ଦୃଷ୍ଟିକି ଦୃଷ୍ଟି ଯୋଗରେ କରିଯାଇ । ୧୩ ।
ଅତିହିଁ ବିସ୍ତାରିତ ଲୋଳ ଲୋଚନ ବର୍ଦ୍ଧି ମୁଖ ଶୋଭ ଗ୍ରାସିବ ।
ବିଚାରିଲ ଚାରିମୁଖ ମାର ମୋର ସଂସାର ରଚନା ନାଶିବ ।
ଏଣୁ କି । ସୀମା ବାରଣ କରି ଗାର ।
ଅଞ୍ଜନେ ଦେଇଛି ଆଉ ନ ବର୍ଦ୍ଧିବୁ ତେବେ କର୍ଣ୍ଣଗତ ସଂଗ୍ରହ । ୧୪ ।

---

୧୧–କମଳଦଳ ( ପଦ୍ମ ପାଖୁଡ଼ା ) ରେ ଢଳ ଢଳ କାଳିନ୍ଦୀ ( ଯମୁନା ) ର କାଳିଆ ପାଣି ଟୋପା ପରି; ବଢେଇମାନେ ସାରଣି ଭଅଁରରେ ଦଉଡ଼ି ଲଗାଇଁ ସେହି ଦଉଡ଼ିକୁ ଝିଙ୍କି ବିନ୍ଧ କରନ୍ତି । ଚାପ–ଧନୁ; ବିନ୍ଧି ଆସୁଛି–ବିନ୍ଧିବାକୁ ତିଆର ହେଉଛି ।
୧୨–ସୁରଞ୍ଜନ–ଅତିସୁନ୍ଦର; ନାଟ ସଦନ–ନାଟ ଘର ପରି; ନିରୁଚେ–ଥରକୁ ଥର, କଟାକ୍ଷ କରିବାକୁ ଲକ୍ଷ; ଉତ୍ତଂସ–କୁଣ୍ଡଳ; ନିଆଁ ଦେଖିଲେ ମାଛ ତା ଉପରକୁ ଡେ଼ଇଁ ପଡ଼ନ୍ତି;
୧୩–ଏ କି କଥା ? ଆଖି ଡୋଳା ଶୀଘ୍ର ଶୀଘ୍ର ଦୁଇ ଆଡ଼କୁ ଯାଉଛି; କାନ ପାଶ ବା ଜାଲ ବୋଲି ହରିଣ ଆଶଙ୍କା କଲପରି; କିମ୍ବା କଳାବତୀ ( ଢେମା ) କମଳ ଦୃଷ୍ଟି ( ପଦ୍ମ ପରି ଆଖିକୁ ) କାନ ରୂପ ଅମୃତ କୁଣ୍ଡରେ ବୁଡ଼ାଇ କରି ଦୃଷ୍ଟି ଚୋଚରରେ ( ଦର୍ଶନ ଚାତୁରିରେ ) କଳା କରୁଛି ( ନାଟ କରୁଛି ).
୧୪–ଅତି ବିସ୍ତାରିତ ଅତି ବଡ଼, ଖୁବ୍ ବଡ଼; ଗ୍ରାସିବ- ଗିଳେଇ ପକାଇବ, ନଷ୍ଟ କରିବ; ଚାରିମୁଖ–ବ୍ରହ୍ମା; ମାର–କନ୍ଦର୍ପ; ମୁହଁ ଆଖି ଦୁହିଁଙ୍କ ଭିତରେ ସୀମା ବାରଣ (ବାଡ଼) କଲ ପରି ଅଞ୍ଜନ (କଜ୍ଜଳ) ଦେଲେ ହେଁ ଆଖି କାନ ପର୍ଯ୍ୟନ୍ତ ଚାଲିଗଲ ପରି ହୋଇଛି ।

ବିଧି ବଚନ ନ ମାନିଲା ଲୋଚନ ସହଜେ ସ୍ୱଇଚ୍ଛା ବିହାରୀ ।
ଗର୍ଣ୍ଣ ନ ରଖୁ ତରୁଣ ସୃଷ୍ଟି ଯାକ ଜାଣନ୍ତୁ ଆୟତ ତାହାରି ।
ଏଥିକି । ହୋଇଛି କି ନୀଳ ଲୋହିତ ।
ନୀଳ ଲୋହିତ ଆଗରେ ପଡ଼ିଗଲେ ସମ୍ପାଦିବ କାମ ମହତ । ୧୫ ।
ଝିନ ବସନ ଫୁଟି ଦିଶେ ପ୍ରସନ୍ନ ରୋମାଳୀ ପୟୋଧର ଦୁଇ ।
ଶୃଙ୍ଗାର ରସଲତା ଉର୍ଦ୍ଧ୍ୱେ ବିଧାତା ପ୍ରେମାମୃତ ଫଳ ଫଳାଇ ।
ପଦ୍ମିନୀ । ଯେଣୁ କୋରକ ବେନି ବହି ।
ସେ ଯେବେ ଫୁଟିବେ ଏ ତେବେ ଚୁମ୍ବିବେ ଭୃଙ୍ଗପନ୍ତି ଏହି ଆଶାୟୀ । ୧୬ ।
ସ୍ୱୟମ୍ଭୁ ଶମ୍ଭୁ କନ୍ଧୁରସ୍ତକୁ ଦୟାରୁ ସଞ୍ଜୀବନୀ ମନ୍ତ୍ର ।
ସେହିସ୍ଥାନେ ଦେଇ ମନୋଭବ କଲେ ଏମନ୍ତ ଘେନୁ ଅଛି ଚିତ୍ତ ।
ନିକଟେ । ରହିଛି ଅହି ହୋଇ ସ୍ୱଚ୍ଛ ।
ଯୁବା ବଇକୁଣ୍ଠ ବଡ଼ଭୀ କି କିବା ଇନ୍ଦ୍ରନୀଳମଣି ପାବଚ୍ଛ । ୧୭ ।

---

ତାର ଆକର୍ଣ୍ଣ ବିସ୍ତୃତ ବିଶାଳ ନେତ୍ର—ଏହି ଅଭିପ୍ରାୟ; କିମ୍ବା କଜ୍ଜଳ ଲଞ୍ଜି କାନକୁ ଲାଗିଛି ଏଭଳି ଅର୍ଥ ହୋଇପାରେ ;

୧୫—ଚକ୍ଷୁ ବ୍ରହ୍ମାକଥା ନ ମାନି ସ୍ୱେଚ୍ଛାଚାରୀ ହୋଇଛି; ଏଣିକି ଯୁବା ସ୍ପର୍ଷ ରଖୁ ବା ନ ରଖୁ ଯୁବାସୃଷ୍ଟି ତାର ( ଚକ୍ଷୁର ) ଆୟତ ( ବଳ ) ଜାଣନ୍ତୁ; କଥାରେ କହନ୍ତି ମୋର ଆୟିତ ( ଆୟତ ) ନାହିଁ—ମୋର ବଳନାହିଁ; ନୀଳ ଲୋହିତ ମଝି ଡ଼ୋଳା ନୀଳ, ଆଖି ଦୁଇକୁଣ ଲୋହିତ ( ଲାଲ ) । ନୀଳ ଲୋହିତ—ମହାଦେବ; ସ୍ତ୍ରୀର ଚକ୍ଷୁକୁ କନ୍ଦର୍ପର ବାଣ ବୋଲି ବର୍ଣ୍ଣନା କରାଯାଏ; ଥରେ ମହାଦେବ କନ୍ଦର୍ପଙ୍କୁ ପୋଡ଼ିଥିଲେ; ତା ପାଖେ ଭଲ ଶର ନ ଥିଲା ବୋଲି; ଏବେ ଏ ଆଖିକି ପାଇଲଣି, ମହତ୍ ସମ୍ପାଦିବ ( ଦାଉ ସାଧିବ )

୧୬—ପଦ୍ମିନୀ—୧. ପଦ୍ମିନୀ ସ୍ତ୍ରୀ, ୨. ପଦ୍ମବୁଦା; ରୋମାଳୀ ଭୃଙ୍ଗପନ୍ତି ( ଭ୍ରମର ମାଳା ) ପରି; ଆଶାୟୀ—ଆଶାବନ୍ତ ;

୧୭—ସ୍ୱୟମ୍ଭୁ ଶମ୍ଭୁ—( ମହାଦେବ ) କନ୍ଦର୍ପଙ୍କୁ ଜାଳିସାରି ପୁଣି ଦୟାରେ ସଞ୍ଜୀବନୀ ମନ୍ତ୍ର ଦେଇ ମନୋଭବ ( ହୃଦୟ ଜାତ ) କରିଥିଲେ । ଏଠାରେ ସ୍ତନ ରୂପେ ସେହି ଶମ୍ଭୁ ବସିଛନ୍ତି । ତାଙ୍କ ସର୍ପ ରୂପ ରୋମାଳୀ ଲମ୍ବିଛି । କନ୍ଦର୍ପ କେମିତିରେ ମନୋଭବ ହୋଇଛି । କିମ୍ବା ରୋମାଳୀ ଅହି ( ସାପ ) ନୁହେ; ଯୁବକର ବୈକୁଣ୍ଠ ରୂପ ବଡ଼ କୋଠାକୁ ( ଏଠାରେ ସ୍ତନକୁ ) ଯିବାପାଇଁ ଏହା ଇନ୍ଦ୍ରନୀଳମଣି ପାଉଚ କି ?

ଲବଣ୍ୟନୀରେ ଯୌବନ କରୀ ଧାରେ ମଜ୍ଜନ ହୋଇ କି ରହିଛି ।
ଜନ ଅଦମ୍ଭକର କୁମ୍ଭ କରକୁ କେବଳ ମାତ୍ର ଦେଖାଇଛି ।
ଏଣୁଟି । ଗଇରିକରେ ସେ ଚିତ୍ରିତ ।
ଯେ ହେବ ମାହୁନ୍ତ ନଖାଙ୍କୁଶ ଘାତ କରିବ କେତେ ତା ସୁକୃତ । ୧୮ ।
ସୁକଣ୍ଠୀ କଣ୍ଠୀରବ ମଧ୍ୟା ହୃଦରେ ରସରତନ ଗଣ୍ଠି ଥୋଇ ।
ଜଗଛି କି ଅବା ଲଜ୍ଜା ଅଧିକାରୀ ମର୍କତ ଦଣ୍ଡ ଢେରି ଦେଇ ।
ଚତୁର । ମନ ପଶି ଏଣୁ ନ ପାରି ।
ନିଶି ଦିବସରେ ରସିଅଛି କଉଁ ପ୍ରକାରେ କରିବଟି ସ୍ୱୈରୀ । ୧୯ ।
ଏକେ ମନକୁ ଅଗମ୍ୟ ହେଲ ଦ୍ବିକେ କଠିନ ସଙ୍ଗ କରି ପ୍ରୀତି ।
କବି ପଣହିଁ ଅତ୍ୟନ୍ତ ଟାଣ ହେଲ ଏଣୁ ବର୍ଣ୍ଣିବାରୁ ନିବର୍ତ୍ତି ।
କୁମାର । ସ୍ତନହିଁ ବେଳୁ ବେଳ ଲେଲୁପ ।
ନୟନ ଅୟନେ ପଥିକ କଲ ଯେ ଏକା ରସିକାବର ରୂପ । ୨୦ ।

---

ପାଉଚ ବା ପାହୁଚ ଶବ୍ଦକୁ ପାବଛ ଲେଖି ସଂସ୍କୃତ ଭଳି କରିବା ବୋଧହୁଏ ଏହି ଉପେନ୍ଦ୍ରଭଞ୍ଜ ଯୁଗରୁ ଆରମ୍ଭ ହୋଇଛି । ସେହିପରି ଏବେ ମଧ୍ୟ ଲେଖୁଛନ୍ତି 'ଛଟିଳ,' 'ଗଠନ' । ମାତ୍ର 'ଛଇଳ' 'ଗଢଣ' ଏମାନେ ଯଥାର୍ଥ ମୂଳ ଶବ୍ଦ ଓ ସାଧୁ । 'ପାବଚ୍ଛ', 'ଛବିଲ' ( ଚତୁର ) 'ଗଠନ' ଏପରି ଶବ୍ଦ ସଂସ୍କୃତରେ ନହିଁ ।

୧୮—ଯୌବନ ରୂପ ହାତୀ ଲବଣ୍ୟ ପାଣିରେ ବୁଡ଼ି କରି ଲୋକଙ୍କୁ ଅଦମ୍ଭ କରିବା ପାଇଁ ( ଡ଼ରାଇବା ପାଇଁ ) ଖାଲି କୁମ୍ଭ ( ହାତୀ ମୁଣ୍ଡର ଦୁଇପଟ ଗୋଲ ) ଓ କର ( ଥୋଡ଼ ପାହାଡ଼ )—ସ୍ତନ ରୋମାଳୀର ସାଦୃଶ୍ୟ—ଦେଖାଉଛି, କୁଚର *କୁଙ୍କୁମ ଚିତ୍ରକୁ ହାତୀ ମୁଣ୍ଡର ଗୈରିକ ( ଡାଉ ) ଚିତ୍ର ସଙ୍ଗେ ତୁଳନା କରା ଯାଇଛି । ପୁରୁଷର ନଖ ଏ ହାତୀ ମୁଣ୍ଡରେ ଅାଙ୍କୁଶ ହୋଇ ବାଜିବ—ଏହାହିଁ ଅଭିପ୍ରାୟ ;

୧୯—କଣ୍ଠୀରବ-ସିଂହ; ଜେମା ହୃଦୟରେ ତା ଲଜ୍ଜାର ଅଧିକାରୀ ଯେ କନ୍ଦର୍ପ କିମ୍ବା ଲଜ୍ଜା ଯେ ସେହିଂହେଲ ଧନର ଅଧିକାରୀ, ସେ ରସ (ଶୃଙ୍ଗାର ରୂପ) ରତନ ଗଣ୍ଠି (ଧନ ବୁଜୁଳା) [ଯୋଡ଼ିକ] ରୋମାଳୀ ରୂପ ମର୍କତ (ଶାଗୁଆ ମଣି) ନିର୍ମିତ ଦଣ୍ଡ (ଠେଙ୍ଗା) ଢେରି ଦେଇ ଜଗିଛି । ପୁରୁଷର ମନରୂପ ସ୍ୱୈର ଗତି ଦିନ ଛକିଛି କିନ୍ତୁ ହାତ ମାରି ପାରୁ ନାହିଁ ।

୨୦—ସ୍ତନ ଏକେ ମନର ଅଗମ୍ୟ (ଉପରେ କୁହା ଯାଇଛି ଦ୍ବିକେ (ପୁଣି) କଠିନ (କଠିନତା) ସଙ୍ଗେ ପ୍ରୀତି କରିବାରୁ ମୋ କବି ପଣକୁ ବି ଟାଣ ହେଲ । ଲେଲୁପ—ଲୋଭୀ; ଅୟନ—ମାର୍ଗ; ବର-ଶ୍ରେଷ୍ଠ;

ଯାବତ ବ୍ରତଫଳ ହେଲା ସଫଳ ତୀର୍ଥ ପରମାର୍ଥ[୩] ମିଶିଲା ।
ନେତ୍ରେ ଦରଶନ ଦାନ ପୁଣ୍ୟମାନ ସେହି ସେହିଠାକୁ ଆସିଲା ।
ଗଣୀ ଯେ । ହୋଇଥିଲେ ପୁଂସ ରତ୍ନରେ ।
କୋଟି ଗୁଣ କରି ଲେଖି ଦେଇଗଲେ ଆକ୍ଷିଠାରେ ଅତି ଯତ୍ନରେ । ୨୧ ।
ସର୍ବାଙ୍ଗ ଢଳସି ଉଠି ସ୍ୱେଦ ଛଳେ ଦ୍ରବିଗଲା ନିଷ୍ଠେ ତାହାର ।
ନିହାରକର ବିହାର ଗ୍ରହି କଇରବ ଚନ୍ଦ୍ରମଣି ପ୍ରକାର ।
ହୋଇଲେ । ଲକ୍ଷ ବିଷମବିଶିଖକୁ ।
ଦୁଃଖକୁ ପଛକୁ ପକାଇ ଦେଇ ସେ ଲଭିଲେ ଅଲେଖ ସୁଖକୁ । ୨୨ ।
ପ୍ରିୟ ସହଚରୀ ବିଜ୍ଞା ଅନୁସରି ତରୁଣ କେଶରୀ ଥିବାକୁ ।
ଧର ପାନ ବୋଲି ଡ଼ାହାଣେ ଯାଚିଲା ପାଞ୍ଚିଲା ନେତ୍ର ପଡ଼ିବାକୁ ।
ସେ ଲଗେ । ଶୁକ ପଢ଼ିଦେଲା ଏ ଭଷା ।
ସୁମନା ରସାତୁର ହୋଇ ଭ୍ରମର ଏ ଦିଗେ କରି ଅଛି ଆଶା । ୨୩ ।
ବକ୍ର କରି ଗ୍ରୀବା ଗ୍ରହି ଦେଲା ଯୁବା ରମଣୀ ରମା ସୁଲକ୍ଷଣୀ ।
ଅକ୍ଷୀଣାଙ୍କହୀନ ଚନ୍ଦ୍ରମା ଦକ୍ଷିଣାବର୍ତ୍ତକ ହେଲା କି ସେକ୍ଷଣି ।
କି ଶୋଭା । ଦିଶିଲା ସିହାଣୀ ଗ୍ରହାଣି ।
ନେତ୍ର ପାତରେ ହରଷ ରସ ଅନୁରାଗକୁ ଡାକି ଦେଲା ଆଣି । ୨୪ ।

---

ପାଠାନ୍ତର—୩, ଫଳହିଁ ଯେ ।

---

୨୧—ଯାବନ୍ତ—ସବୁ; ତୀର୍ଥ—(ଗମେଶ୍ୱର ତୀର୍ଥ)ର ପରମାର୍ଥ (ବିଶେଷ ଫଳ); ଏ ଦୁଇର ଫଳ ଏବଂ ଦର୍ଶନ ଓ ଦାନର ପୁଣ୍ୟ ଯେପରି କି କୁମାର ଠାରେ ଧାଡିଥିଲେ । ହେମାର ଆଖି ଠାରରେ କୋଟି ଗୁଣରେ ହିସାବ କରି ସୁଝିଗଲେ । ସବୁ ବ୍ରତ ତୀର୍ଥ ଦର୍ଶନ ଦାନର ଫଳ ଠାରୁ କୋଟି ଗୁଣରେ ବେଶି ହେଲା ହେମାର ଆଖିଠାର ।

୨୨—ହେମାର ଆଖି ଠାରରେ ସର୍ବାଙ୍ଗ ଢଳସି ଉଠିଲା (ରୋମାଞ୍ଚିତ ହେଲା) ଓ ଝାଳରେ ବୁଡ଼ିଗଲା; ନିହାରକର—(ଚନ୍ଦ୍ର) ତାର ବିହାର (ବିକାଶ) ଦେଖି କରି ଚନ୍ଦ୍ରକାନ୍ତ ମଣି ଯେପରି ଦ୍ରବ ହୁଏ (ତରଳି ଯାଏ); ଅଲେଖ—(ଅକଥନୀୟ)

୨୩—ଅନୁସରି—ପଛରେ ଲଗିଯାଇ; ଥିବାକୁ—ଥିବାଠାକୁ; ସୁମନା—ଫୁଲ ଓ ନାୟିକା; "ସୁମନା ପୁଷ୍ପମାଳତ୍ୟୋଃ ସ୍ତ୍ରିୟାଂନା ଦେବ ଧୀରୟୋଃ" 'ଭ୍ରମର କାମୁକେ ଭୃଙ୍ଗେ'—ଇତିବିଶ୍ୱଃ ।

୨୪—ଅକ୍ଷୀଣ—ପୂର୍ଣ୍ଣ; ଅଙ୍କହୀନ-ନିଷ୍କଳଙ୍କ; ଦକ୍ଷିଣାବର୍ତ୍ତକ ହେଲା—ଡ଼ାହାଣକୁ ବୁଲି ପଡ଼ିଲା ।

ଅତୁଲ୍ୟ ଚତୁରୀ ଜାଣିବା ପାଇଁ କି ସୁରସିକ ଏଡ଼େ ଗୁଣିକ ।
ଏକା ବେଳକେ କି ମୂଲ୍ୟ ବୋଲି ଦେଖାଇଲା ହୀରା ନୀଳା ମାଣିକ୍ୟ ।
ଅଞ୍ଜନ । ସୂତ୍ରେ ଗୁନ୍ଥି ତିନି କମଳ ।
ଚରଣ ମାଳା କରି ଦେଇ ବାରଣ ଗମନୀ ହୋଇ କି ଚଞ୍ଚଳ । ୨୫ ।
ଗ୍ରହିଁଲ ନ ଗ୍ରହିଁଲ ହୋଇ ଲଜ୍ଜରୁ ମୁଖକୁ ଥୋଇଲା ଉରଜେ ।
ସେ ପତି ପ୍ରାପତି ଇଚ୍ଛା କରି ନାରୀ ଶମ୍ଭୁ ପୂଜିଲା କି ନୀରଜେ ।
ଲବଣୀ । ପିତୁଳା ପ୍ରେମଶୀଳା ସତ ।
ବୀର ଏହି ନାମ ବିପରୀତ ହୋଇ ତରଳିତ କଲା ତୁରିତ । ୨୬ ।
ବିଦ୍ୟୁ ଝଟକ ଲୀନ ହେବା ପରାୟେ ମଞ୍ଜୁ ଗ୍ରହାଣି ସହରିଲା ।
ଝଟକେ ଛଟକେ ସଙ୍ଗରେ ମନାଇ ମନ ନେତ୍ରକୁ ଘେନିଗଲା ।
ପୋଷିଲା । ସୁଧାରୁ ସୁସ୍ୱାଦୁ ଅଶନେ ।
ପ୍ରେମମଞ୍ଜରୀ ସ୍ତନ ବେନି ପଞ୍ଜରୀମଧ୍ୟେ ରଖି ପକ୍ଷୀ ବିଧାନେ । ୨୭ ।
ବାଞ୍ଛାମନ ନେତ୍ର କୁରଙ୍ଗ ସୁରଙ୍ଗ କରୁଥିଲେ ତନୁ ବନରେ ।
ମାର ନିନ୍ଦିତ କୁମାର ଶୋଷ ଜାଲେ ପଡ଼ିଲେ ଅତି ଉଛନ୍ନରେ ।
ନିବାକୁ । ଫିଟି ନ ଦିଶିଲା ଉପାୟ ।
ଯେ ଯାହା ଅର୍ଜଇ ସେ ତାହା ଭୁଞ୍ଜଇ ଏଥି ଅଛି କଉଁ ସଂଶୟ । ୨୮ ।

---

୨୫–ଅତୁଲ୍ୟ ଚତୁରୀ–ଅତୁଳନୀୟ ଚତୁରତା ଯାହାର; ସୁରସିକ କେଡ଼େ ଗୁଣିକ ଏହା ପାଇଁ; କି ମୂଲ୍ୟ (କେତେ ମୂଲ୍ୟ) ଏହା ଠିକ କର ହୀରା ନୀଳା ମାଣିକ୍ୟ ଆଖିର ଧଳା ଓ କଳା ଡ଼ୋଳା ଏବଂ ରଙ୍ଗ କୋଣ; ଅଞ୍ଜନ (କଜଳ) ସୂତାରେ ଦୁଇ ଆଖି ମୁହଁ କିମ୍ବା ଆଖିର ଧଳା, କଳା ଓ ରଙ୍ଗ ପଦ୍ମ ଇନ୍ଦିବର–(କୋକନଦ) ଏହି ତିନି କମଳ । ବାରଣ ଗମନୀ–ଗଜ ଗମନା;

୨୬–ବୀର ବିପରୀତ 'ରବି'–(ସୂର୍ଯ୍ୟ); ସ୍ତନ ଉପରେ ମୁହଁ, ମହାଦେବଙ୍କୁ ନୀରଜେ ପଦ୍ମରେ ପୂଜା କଲା ପରି;

୨୭–ବିଜୁଳି ଝଟକି ଲିଭିଗଲା ପରି ସହରିଲା (ଫେରାଇ ନେଇ) ଯେହିଁ ଗ୍ରହାଣିର ଝଟକ ଛଟକ ସଙ୍ଗେ ମନାଇ (ମଗାଇ) ପୁରୁଷର ମନ ଓ ନେତ୍ରକୁ ଘେନିଗଲା । ଅଶନେ (ଭୋଜନେ ଆସ୍ୱାଦନରେ) । ପ୍ରେମ ମଞ୍ଜରୀ–ହେମଲତା, ହେମା; ଦୁଇସ୍ତନ ପଞ୍ଜୁରୀ ମଧ୍ୟରେ ଦୁଇ ଆଖିକି ପକ୍ଷୀ (ଚଢ଼େଇ) ପରି ରଖିଲା ।

୨୮–ସୁରଙ୍ଗ ( କ୍ରୀଡ଼ା ) ତନୁ ( ଶରୀର ) ରୂପ ବନରେ; ମାର ନିନ୍ଦିତ–କନ୍ଦର୍ପଠାରୁ

ଯେ ସରଣୀ ହେଲା ଚକ୍ରବାଡ଼ ଗିରି ଚରଣ ଅରୁଣ ଅମ୍ବୁଜେ ।
ଲଭି ନ ପାରଇ ମନ୍ଥର ଗମନା ଗୃହିଁ ନ ଗୃହିଁ ଭାବ ଲାଜେ ।
ଦୁହିଁଙ୍କ । ମୃଦୁହାସ ହେଲା ଜାହ୍ନବୀ ।
ଚତୁର ନୟନେ ମଜ୍ଜନ ଅନିଶେ ମହାବାରୁଣୀ ଯୋଗ ଲଭି । ୨୯ ।
ହୋଇଲେ ସେ ବେନି ଶୋଭା ରତ୍ନାକର ଦରଶନ ଲେଖି ନୟନେ ।
ପ୍ରେମ ରତନ ପତନ କରି ଖୋଜୁ ଅଛନ୍ତି ସେ ଅନବଚ୍ଛିନ୍ନେ ।
ମଦନ । ମହାକୃପଣ ଜନପରି ।
ସେ ବେନି କାମଧେନୁ କଳ୍ପପାଦପ ଯେଣୁ ବାଞ୍ଛାକୁ ସିଦ୍ଧି କରି । ୩୦ ।
ପ୍ରବେଶ ସେଠାରେ ହୋଇଲା କୁଠାର ପ୍ରାୟ ଜରତୀ ମୁଦ୍ଗୁଲୀ ।
ଅଲେଖ ସୁଖ ମହୀରୁହ ଛେଦନେ ବଦନେ ଏମନ୍ତ ଉଚ୍ଚାରି ।
ଶୁଣ ଗୋ । ମନ୍ତ୍ରୀ ନନ୍ଦନା ଗୃହ ଭିଜ୍ଞ ।
ଜନନୀ ଆଜ୍ଞା ପରସନ୍ନ ଆନନୀ ସତ୍ୱର ଦରଶନ ସାରୁ । ୩୧ ।

---

ବେଶି ସୁନ୍ଦର; ଉଛନ୍ନରେ—ଉଦ୍‌ବେଗରେ; କୁମାରର ଶୋଭା ରୂପ ଜାଲକୁ ଆସିବା ଅର୍ଜିଥିଲେ ଅତ·ଏବ ପଡ଼ିଲେ; ଜେମା କୁମାରକୁ ଦେଖିଲା—ଏହି ଅଭିପ୍ରାୟ ।

୨୯—ସରଣୀ—ବାଟ, ବା ଗଳିବା; ଚକ୍ରବାଡ଼—ଚକ୍ରବାଟ, ସୀମାବାଡ଼; ଚକ୍ରବାଡ଼ଗିରି—ଏଠାରେ ଦିଗ୍‌ବଳୟର ଅସ୍ତ ପର୍ବତ; ଅରୁଣ ଅମ୍ବୁଜ ( ରକ୍ତ ପଦ୍ମ )ପରି ସ୍ତ୍ରୀ ଚରଣ ସେଥିରେ ଥିବାରୁ; ମନ୍ଥର ଗମନା—ଧୀର ଗମନା ଅର୍ଥାତ୍ ଗୃହିଁଲା କ୍ଷଣି ତା ପାଦ ଥକ କିନି ରହିଗଲା । ସୂର୍ଯ୍ୟ ଯେପରି ବୁଡ଼ିବା ପୂର୍ବରୁ ଲାଲ ହୋଇ ଦିକ୍ ଦିକ ହୋଇ ରହିଲା ପରି ଦିଶେ ଏ ଜେମା ଲଜରେ ଗୃହିଁ ନ ଗୃହିଁ ସେହିପରି ହେଲା । ଚତୁର ନୟନେ—ଲଭି ଆଖିଯାକ ; ଗଙ୍ଗାରେ ବାରୁଣୀ ଯୋଗ ପଡ଼ିଲେ ସମସ୍ତେ ସ୍ନାନ କରନ୍ତି । ଏ ସ୍ନାନ ଭାରି ଫଳପ୍ରଦ ।

୩୦—ବେନି—ଜେମା ଓ କୁମାର; ରତ୍ନାକର—ରତ୍ନର ସ୍ଥାନ, ସମୁଦ୍ର; ଅନବଚ୍ଛିନ୍ନେ—ବରବର ଟିକିଏ ବନ୍ଦ ନ କରି; ମାତ୍ର ମଦନ କୃପଣ ହୋଇ ପ୍ରେମରୂପ ରତ୍ନକୁ ଦେଖାଇ ଦେଉ ନାହିଁ । ଅର୍ଥାତ୍ କେଳିର ଅବକାଶ ଦେଉ ନାହିଁ । ଯାହା ହେଉ ସେ ଦୁହେଁ କାମଧେନୁ ଏବଂ କଳ୍ପତରୁ ପରି ହୋଇଛନ୍ତି । କାହିଁକିନା—ଦେଖିବାର ସମସ୍ତ କାମନା ତାଙ୍କର ସିଦ୍ଧ ହେଉଛି । କାମଧେନୁ—[ ୧୯ଶ ଛାନ୍ଦ ୧୦ମ ପଦ ଟୀକା ଦେଖ ; ] କଳ୍ପ ପାଦପ—ସୁରତରୁ [ ୧୯ଶ ଛାନ୍ଦ ୧୦ମ ପଦ ଟୀକା ଦେଖ । ]

୩ —ଜରତୀ ମୁଦ୍ଗୁଲୀ—ବୁଢୀ ଦାସୀ; କୁଠାର—କୁରାଢୀ; ପରସନ୍ନ ଆନନୀ—ପ୍ରସନ୍ନ ମୁଖୀ, ଜେମା;

ପିତା ପୁତ୍ର ପରି ମାତା ଦୁହିତାର ଏକ ସଙ୍ଗେ ଖିବ ଦର୍ଶନ ।
ଦୋଷ ବୋଲି ଅଛି ଅଶେଷ ପୁସ୍ତକେ ଏ ବଚନ ଗହୁ ଯେସନ ।
ଗିଳିଲ । ହରଷ–ହର ଭୂଷଣକୁ ।
ବାହୁଡ଼ିଲ ବେଗେ ଶିବ ଦେଖି ଗମା ଜଣାଇ ଥୁଦ କଷଣକୁ । ୩୨ ।
ମଦନେ ଆବେଶ କୁମାର ପ୍ରବେଶ ହୋଇଲ କେଶର କାନନ ।
ଯେଣେ ଅନାଇଲେ ତେଣେ ଦିଶୁଅଛି କେବଳ ସୁନ୍ଦରୀ ଆନନ ।
କହଇ । ଉପଇନ୍ଦ୍ରଭଞ୍ଜ ଏ ରସ ।
ଶୀଗମେ ମାଳା ଜାନକୀ ଦେବା କାଳ–ଉତ୍ସବକୁ ଘେନି ମାନସ । ୩୩ ।

---

୩୨-ବାପ,ପୁଅ ଏବଂ ମା' ଝିଅ ଏକତ୍ରରେ ଦିଅଁ ଦର୍ଶନ କରିବା ମନା ବୋଲି ଏଠାରେ ମୃଦୁସ୍ଥଲୀ କହୁଛି । ମୃଦୁସ୍ଥଲୀର ଏ ବଚନ ଗହୁ ହେଲ । କୁମାର ହର୍ଷ ( ଆନନ୍ଦ ) ହରଭୂଷଣ ( ଚନ୍ଦ୍ର ) ହେଲ ।

୩୩-ମଦନେ ଆବେଶ–ଶୃଙ୍ଗାର ଭବାପନ; ମାଳା–ବରଣମାଳା ;



# ଅଷ୍ଟାବିଂଶ ଛାନ୍ଦ

## (ସିଂହଳ ଦେଶର ପୁତ୍ରାହୂତ ସହିତ ଚନ୍ଦ୍ରଭାନୁର କଥୋପକଥନ)

ରାଗ–ମଙ୍ଗଳ ।

ଏଥୁ ଅନନ୍ତରେ ଯେ ଯାମିନୀ ହେଲା ଶେଷ
ବିଚ୍ଛେଦୀ ଚକ୍ର କାମିନୀ ପାଶେ ପରବେଶ ଯେ ।
ଶଶି ମନୋହାରୀ ନିଶି ସଙ୍ଗ କଲା ପାପ୍–
ବଶେ ଦିବସେ ମଳିନ ହେଲା ଜ୍ୟୋତି ଦୀପ ଯେ । ୧ ।
ଅରୁଣ ମଣ୍ଡଳେ ଉଦେ ତ୍ରୁଟି ନାହିଁ କିଛି ।
କାଲି ବାରୁଣୀ ସେବିବା ରଙ୍ଗ ଆଜି ଅଛି ଯେ ।
କକୁଭ ପ୍ରାଙ୍ଗଣେ ନିଜ ପତି-ବିଜେ ଗୃହି ।
ପଦ୍ମିନୀ ହସିଲା ଦରମୁକୁଳିତ ହୋଇ ଯେ । ୨ ।
ଗର୍ଜି ଭୃଙ୍ଗରାଜି କୁମୁଦିନୀ ପାଶୁଁ ଗଲେ ।
କୁଞ୍ଚଟା ହଟାକୁ ତାର ପରକାଶ କଲେ ଯେ ।
ବିଟପ କି ଛାଡ଼ିଅଛି ନିର୍ଲଜ୍ଜ ସ୍ୱଭାବ ।
ପରେ ପ୍ରକଟ କଲେ ଆପଣା କଲା ଭାବ ଯେ । ୩ ।

---

୧– କାମିନୀ–ଚକ୍ରବାକିନୀ; ସକାଳ ହେବାରୁ ଚକୁଆ ଚକୋଇ ପୁଣି ଏକାଠି ହେଲେ । ଶଶି ମନୋହାରୀ–( ଚନ୍ଦ୍ରର ସ୍ତ୍ରୀ ) ଯେ ନିଶି ( ରାତି ) ତାର ସଙ୍ଗ କରି ପାପ କରିଥିଲା ଯେ ଦୀପ ସେହି ପାପ ଫଳରେ ସେ ମଳିନ ଜ୍ୟୋତି ହେଲା (ମୌଳିଲା) ଦିନରେ ଦୀପ ଜ୍ୟୋତି ଦିଶେନାହିଁ ।

୨– ଅରୁଣ ( ଲାଲ ) ସୂର୍ଯ୍ୟ ମଣ୍ଡଳରେ କାଲି–ଗତ ସଂଧ୍ୟାରେ–ବାରୁଣୀ ସେବିବା ( ୧. ପଶ୍ଚିମ ଦିଗକୁ ଆଶ୍ରୟ କରିବା, ୨. ବରୁଣ ଗଛରୁ ତିଆରି ହେଉଥିବା ବାରୁଣୀ ମଦ ପିଇବା ) ହେତୁରୁ ଯେ ରଙ୍ଗ ( ନାଲି ) ସେ ଆଜି ଉଠିଲା ବେଳକୁ ମଧ୍ୟ ତ୍ରୁଟି ନାହିଁ ( ଛାଡ଼ିନାହିଁ ) । ମଦ ଖାଇଲେ ଆଖି ଲାଲ ହୁଏ । କକୁଭ ( ଦିଗ ) ରୂପ ପ୍ରାଙ୍ଗଣେ ( ଅଗଣାରେ ) । ପଦ୍ମିନୀର ପତି ସୂର୍ଯ୍ୟ ।

୩– ଭ୍ରମର କଇଁରୁ ବାହାରି ପଦ୍ମକୁ ଗଲେ । ଏ ତାପ ବିଟପ ବୃତ୍ତି । ବିଟପକୁ ଘରେ ରଖିଥିବାରୁ କଇଁ କୁଞ୍ଚଟା । ଆପଣା କଲା ଭାବ–ତୁ ମୋର ବୋଲି କହିବାର ଯେ ଭାବ ବା ଭଙ୍ଗୀ; ପରେ–ପଦ୍ମ ପାଖରେ;

ଏ ସମୟେ ସିଂହଳ ଭୂପାଳ ନିଦ୍ରାହତ ।
ନିତ୍ୟକର୍ମ ସାରି ଡାକି ନିଜ ପୁରୋହିତ ଯେ ।
କହିଲେ କର୍ଣ୍ଣାଟ ଯୁବରାଜ ପାଶେ ଯିବ ।
ପାଠ ଶୁଣାଇ ତା ମନ ସନ୍ତୋଷ କରିବ ହେ । ୪ ।
ଆତ୍ମକନ୍ୟା ଯାଚିବାଂନୋହିବ ସନମତ ।
କରିବ ଯେମନ୍ତ କର ଉପାୟ ତେମନ୍ତ ଯେ ।
ଶୁଣି ସେ କାର୍ଯ୍ୟକୁଶଳାଚାର୍ଯ୍ୟ ଆଗମନ ।
ତେଣେ ନୃପସୁତ କରି ପଲ୍ଲବେ ଶୟନ ଯେ । ୫ ।
ବାଳା ଶୋଭ ତନୁ ଦରଶନେ ଧ୍ୟାନ କନ୍ତି ।
ଏସନ ପ୍ରସଙ୍ଗ ମାନ ମାନସେ ବିଚାରି ଯେ ।
ଦେବଙ୍କୁ ଦୁର୍ଲ୍ଲଭ ଯଉଁ ରମଣୀ ରତନ ।
କେହି ହେବି ମୁହିଁ ତାହା ସଙ୍ଗକୁ ଭଜନ ଯେ । ୬ ।
ଦର୍ଶନ ପାଇଲି ସୀଉକାର କରଇଲି ।
ଯୁବା ସୃଷ୍ଟିରେ ମୁଁ ଗଜଛତ୍ର ଧରଇଲି ଯେ ।
ରସିକ ସଂସାରେ ତ ଥୋଇଲି ପ୍ରଶଂସାକୁ ।
ବଶ କଲି ବୋଲି ଅଛି ଉତ୍ତମ ଯୋଷାକୁ ଯେ । ୭ ।
ଜନ୍ମାନ୍ତେ ତ୍ରିଶୂଳୀ କରି ଶୂଳୀଙ୍କି ମନାଇ ।
ଗଙ୍ଗାସାଗର ସଙ୍ଗମେ ଅଙ୍ଗ ଥିଲି ଦାହି ଯେ ।
ସେ ସୁକୃତ ବାଳାରୂପ ଚିତ୍ରେ ଲେଖାଇଲ ।
ବିଧାତା କି ଋଣୀ ହୋଇଥିଲ ଦେଖାଇଲ ଯେ । ୮ ।

---

୫– କରିବ–ଆତ୍ମ ଆତ୍ମ ଯାଚିବା ସମ୍ମତ ନ ହେଲ ଭଳି; ଆଚାର୍ଯ୍ୟ–ପୁରୋହିତ; ପଲ୍ଲବେ–ପତ୍ରରେ ( କାମ ତାପରୁ ) ;

୬– ଶୋଭ–ସୁନ୍ଦର; କେହି–କିପରି;

୮–ତ୍ରିଶୂଳୀ କରିବା ବୋଧହୁଏ ଏକ ପ୍ରକାର ଶିବ ମନ୍ତ୍ର ସାଧନା ଜନ୍ମାନ୍ତେ–ଜନ୍ମାନ୍ତରେ ପୂର୍ବ ଜନ୍ମରେ; ଶୂଳୀ–ମହାଦେବ; ଦାହି–ଏଠାରେ ପୋଡ଼ି ନୁହେ–ଝାସି; ସେ ସୁକୃତରୁ ଚିତ୍ରରେ ଦେଖିଥିଲି, ଏବେ ବିଧାତା ଋଣୀ ( ଧାରୁଆ ) ଥିବାରୁ ସାକ୍ଷାତରେ ଦେଖିଲି ।

ଅସମ୍ଭାବିତ ସାହସ କରିଅଛି ମହିଁ ।
ମନକୁ ନ ଆସେ ଏ ସଫଳ ହେବ କେହି ଯେ ।
ଆସିବ ମୁକୁର ବିମ୍ବ କେହି ଆଲିଙ୍ଗନେ ।
ପାରଦ ରହିବ ମୁଠା ଭିତରେ କେସନେ ଯେ । ୯ ।
କେତକୀ କୁସୁମେ କେହି ବିହରିବ ଅଳି ।
ପାତକୀ କି ହେବ ପୁରନ୍ଦର ପଦ ଭଜି ଯେ ।
ଙ୍ଖେଷ୍ଟେ ନଷ୍ଟ କରି ଯେବେ ହୋଇବ ଗିଯିକି ।
ସାଧିବି ଜୀବନେ ଥାଉଁ ହର ବଇରୀ କି ଯେ । ୧୦ ।
ବିନାଶ ହୋଇବ ଯେବେ କସ୍ତୁରୀରୁ କଳା ।
ଘେନେ ବିନାଶ ହୋଇବ ମୋ ବିରହଜ୍ୱାଳା ଯେ ।
ଭେଳା ପକ୍ଷ ବିନା ଏକ ନିଶ୍ୱାସେ ସାଗର ।
ତରିଲେ ଲଭିବି ଅବା ଶୋକ ସିନ୍ଧୁ ପାର ଯେ । ୧୧ ।
ପଶ୍ଚିମେ ଉଦୟ ଯେବେ ହୋଇବ ମିହିର ।
ତେବେ ବା ହୋଇବ କନ୍ୟା ତାତ ସୀଢ଼କାର ଯେ ।
ରମାମଣି ସୀଢ଼କାର ହୋଇଲାନି ଯଦି ।
ତାତ ସୀଢ଼କାରେ କିପା ଏତେ ପ୍ରତିବାଦୀ ଯେ । ୧୨ ।
ଯଉଁ କର୍ମେ କର୍ପୂରୁଁ ହୋଇଛି ଅଗ୍ନିଜାତ ।
ସୁମନସ କରୁଛି ଅଶନି ସମଘାତ ଯେ ।
ସେହି କର୍ମେ ସ୍ୱପ୍ନ-ଧନେ କରିବି ବାଣିଜ୍ୟ ।
ସଫଳ ହୋଇବ ତେବେ କାମନା ସମାଜ ଯେ । ୧୩ ।

---

୯—ପାରଦ—ପାରା; ପାରା ମୁଠାରେ ଧଇଲେ ଗଳିପଡ଼େ ।

୧୦—କେତକୀରେ କଣ୍ଟା ଥିବାରୁ ଅଳି (ଭ୍ରମର) ବସେ ନାହିଁ; ପାତକୀ—ପାପୀ; ପୁରନ୍ଦର—ଇନ୍ଦ୍ର; ମାତ୍ର ପ୍ରହ୍ଲାଦଙ୍କ ପରି ଧାର୍ମିକମାନେ ଇନ୍ଦ୍ରପଦ ପାନ୍ତି । ଙ୍ଖେଷ୍ଟ (ଟେକା, ଢ଼େଣ୍ଡୁଆ) ନଷ୍ଟକରି- ଭଙ୍ଗିଦେଇ; ହର ବଇରୀ—କାମ;

୧୧-କସ୍ତୁରୀର ରଙ୍ଗ କାଳିଆ;

୧୨—ମିହିର—ସୂର୍ଯ୍ୟ; ତାତ—ବାପ;

୧୩—ଯଉଁ କର୍ମେ—ଯେଉଁ କପାଳକୁ; ଅଶନି—ବଜ୍ର; କର୍ପୂରରୁ ଅଗ୍ନି, ଫୁଲ ବଜ୍ର ପରି ଏ ସବୁ ବିରହ ଲକ୍ଷଣ; ସୁମନସ-ଫୁଲ; ସ୍ୱପ୍ନ ଧନ-(୧) ସତ ଧନ ନୁହେଁ, (୨) ସ୍ୱପ୍ନରେ ଦେଖିଥିବା ଧନ; ବଣିଜ-ବେପାର; କାମନା ସମାଜ—କାମନାମାନେ

ଇଚ୍ଛା କରୁଅଛି ଅରୁଣରୁ ସୁଧା ପାନ ।
ଘିର କରି ବିଜୁଳି କରିବ ଆଲିଙ୍ଗନ ଯେ ।
କରେ ଧରି ଚୁମ୍ବିବା ଇଚ୍ଛଇଁ ସୁଧାକର ।
ହେମଫୁଲୁଁ ଗନ୍ଧ ଲଭିବାକୁ ମନ ମୋର ଯେ । ୧୪ ।
ପିକଠାରୁ କଥା ଶୁଣିବାକୁ ସ୍ନେହ ଅତି ।
ମନ୍ଦରକୁ କମଳେ ଘୋଡ଼ାଇ ଲୋଡ଼େ ମତି ଯେ ।
ଚମ୍ପକ ଭ୍ରମର ମେଳ କରିବାକୁ ମନ ।
ନକ୍ଷତ୍ରମାଳା କରିବ ମହୀ ଉଦୀପନ ହେ । ୧୫ ।
ବିନା ମେଘେ ଘନ ରସ ବରଷା ହୋଇବ ।
ଭସ୍ମ ହୋଇଥିବା ଜନ ମୂର୍ତ୍ତି କି ପାଇବ ଯେ ।
ଏମନ୍ତ ବିଗ୍ଭର ବେଳେ ଜଣାଇଲ ଦ୍ୱାସ୍ଥ ।
ଭେଟିବେ ବୋଲିଣ ଦ୍ୱିଜୋତ୍ତମେ ଉପଗତ ଯେ ।୧୬।
କାହିଁର ସେ ବୋଲି ମନ୍ତ୍ରୀସୁତ ପଗ୍ଭରିଲ ।
ବେତ୍ର କର ଏହି ଦେଶ ପୁରୋଧା ବୋଇଲ ଯେ ।
ଆସନ୍ତୁ ସେ ବୋଲି ଆଜ୍ଞା ଦେଲେ ମିତ୍ର ବେନି ।
ଗଲା ଦୀଉକାର ହେଲ ପଗ ଚିତ୍ତେ ଘେନି ଯେ ।୧୭।
ବିପ୍ରେ ଆଣ ପରବେଶ ଦ୍ୱାରପାଳ କଲେ ।
କଲ୍ୟାଣ ବାଞ୍ଛିଲ ସେ ନୃପଜ ନମସ୍କାରେ ଯେ ।
ଆସନ ପାଇ ବସୁଧା ଦେବ ଅତି ତୋଷୀ ।
ଛାମୁରେ କରିବୁ ପାଠ ଶାଠ ବୋଲି ଭଷି ଯେ । ୧୮ ।

---

୧୪-ଅରୁଣରୁ-ସୂର୍ଯ୍ୟରୁ; ହେମଫୁଲ-ସୁନାରେ ତିଆର ହୋଇଥିବା ଫୁଲ;

୧୫-ମନ୍ଦର ପର୍ବତକୁ କମଳେ ( ପଦ୍ମରେ ବା କମଳ ନାମକ ଘୋଡ଼ିହେଲେ ମଧ୍ୟ ଅର୍ଥ ହୋଇ ପାରେ); ଚମ୍ପାରେ ଭ୍ରମର ବସେ ନାହିଁ; ନକ୍ଷତ୍ରମାଳା ପୃଥିବୀରେ ଉଦୀପନ ହୁଏ ନାହିଁ ( ଜଳେ ନାହିଁ )

୧୬-ଘନରସ-ପାଣି; ଏସବୁ ଅସମ୍ଭବ ସମ୍ଭବ ହେଲେ ମୁଁ ତୋମାକୁ ପାଇବି ଏହି ଅଭିପ୍ରାୟ; ଦ୍ୱାସ୍ଥ-ଦ୍ୱାରୀ, ଦ୍ୱାରପାଳ;

୧୭-କାହିଁର-କେଉଁଠାର;

୧୮-ସେ-ଚନ୍ଦ୍ରଗଧ; ନୃପଜ-ଚନ୍ଦ୍ରଭାନୁ ; ବସୁଧାଦେବ-ବ୍ରାହ୍ମଣ, ଏଠାରେ ଆସି ପହଞ୍ଚିଥିବା ପୁରୋହିତ;

ନୃପଙ୍କ ପ୍ରଶଂସା ଶ୍ଳୋକ ପ୍ରଥମେ ପଠନ ।
କୁମାର ବୋଲିବା ଖ୍ୟାତ ବେନି ରସେ ଘେନ ଯେ ।
ବିଧୁ ସମ ଯଶ ପରଚକ୍ର ଦରକର ।
କଲ୍ଲ ସେ ବିବିଧ ଶ୍ଳେଷ ଘେନି ଅଙ୍ଗୀକର ଯେ । ୧୯ ।
ତଦୁତ୍ତାରେ କାମ ଶାସ୍ତ୍ର ରସ ପଜାଇଲ୍ଲ ।
କାମିନୀ ବର୍ଣ୍ଣନା ଅତିଶୟ କରି କଲ୍ଲ ଯେ ।
ନାରୀରୁ ଅଧିକ ହୋଇ ନାହିଁ ତିନି ପୁରୀ ।
ପରମ ପଦାର୍ଥ ଏକା ବୋଲଇ ସେ ନାରୀ । ୨୦ ।
ସ୍ତମ୍ଭନ ମୋହନ ବଶ ଉଚାଟନ ଗ୍ଭରି ।
ଜନୟିତ୍ରୀ ବୋଲି ଜାଣ ପୀନ ପୟୋଧରୀ
ରମା ନ ମୋହିଲ୍ଲ ହୋଇ ଚଉଦ ଭୁବନ ।
ଆନ ନାହିଁ ଥିଲେ ଥିବେ ନପୁଂସକ ଜନ ଯେ । ୨୧ ।
ବିକାର ନଥିଲେ ବ୍ୟାକୁଳତା ତାଙ୍କ ଅଛି ।
ଭଜୁଛନ୍ତି ଆମ୍ଭର ଜୀବନ ନୋହେ କିଛି ଯେ ।
ସ୍ୱର୍ଗ ଅପବର୍ଗରୁ ଅଧିକ ସୁଖ ନାହିଁ ।
ରତି ସୁଖ ସଙ୍ଗେ ସେ ସମାନ ହେବ କେହି ଯେ ।୨୨।

---

୧୯—କୁମାରର ଦୁଇ ଅର୍ଥ-(୧) କାର୍ତ୍ତିକେୟ, ବୀରତ୍ୱରେ ଏବଂ ବୀରରସ; (୨)କୁ(କୁତ୍ସିତ) ମାର (କନ୍ଦର୍ପ) ଯାହାଙ୍କଠାରୁ କିମ୍ବା କୁ (ପୃଥିବୀ)ରେ ମାର (କନ୍ଦର୍ପ) ପରି—ଏ ଶୃଙ୍ଗାର ରସ—ଏହି ପରି ବେନି (ଦୁଇ) ରସ ହେଲ୍ଲ । ବିଧୁସମ ଇତ୍ୟାଦି—(୧) ବିଧୁ (ବିଷ୍ଣୁ)ଙ୍କ ପରି, ସାଧୁ (ଭକ୍ତ ମାନଙ୍କର) ପର (ଆଦରକର୍ତ୍ତା) ଚକ୍ର (ସୁଦର୍ଶନ ଚକ୍ର) ଦର (ଶଙ୍ଖ) କର (ହାତ)ରେ ଯାହାର; (୨.) ବିଧୁ (ଚନ୍ଦ୍ର) ସମାନ ସାଧୁ (ସୁନ୍ଦର)ଙ୍କର ପ୍ରଧାନ ଚକ୍ର (ଚକ୍ରବାକ) ତାର ଦରକର (ଭୟକର); (୩) ତୁମେ ବିଧୁ ସମ ( ଚନ୍ଦ୍ରପରି ) ସାଧୁ (ସୁନ୍ଦର) ପରଚକ୍ର (ଶତ୍ରୁ ସମୂହର) ଦରକର ( ଭୟଙ୍କର );—ଏହିପରି ବିବିଧ ( ନାନାପ୍ରକାର ) ଶ୍ଳେଷକୁ ସ୍ୱୀକାର କଲ୍ଲ ଏ ପଦ ।

୨୧—ସ୍ତମ୍ଭନ ପ୍ରଭୃତି—[ ୯ମ ଛାନ୍ଦ ୭ମ ପଦ ଟୀକା ଦେଖ ।] ଜନୟିତ୍ରୀ—ଯେ ଜନମାଏ; ପୀନ—ପୃଥୂଳ, ବଡ; ରମା (ସ୍ତ୍ରୀ) ମୁଗ୍ଧ କରେ ନାହିଁ ଏପରି ଆଉ କେହି ନାହିଁ । ଏକା ନପୁଂସକ ଅବା ଥିବେ ।

୨୨—ବିକାର—କାମଚେଷ୍ଟା, (ନପୁଂସକଙ୍କର) ସ୍ୱର୍ଗ—ସ୍ୱର୍ଗ ଭୋଗ; ଅପବର୍ଗ—ମୋକ୍ଷ;

ସ୍ୱର୍ଗ ସୁଖ ଇନ୍ଦ୍ର ବଡ଼ କାହା ଭୁକ୍ତ ମାନ ।
ସେ ରତି ଲୁବ୍‌ଧୁଁ ଶାପେଟି ସହସ୍ର ଲୋଚନ ଯେ ।
ଅପବର୍ଗ ବ୍ରହ୍ମର ଆୟାସ ବୋଲି କହି ।
ରତି ରସେ ବ୍ରହ୍ମ ଲୀନ ପୁଣ ଅଛି କହି ଯେ । ୨୩ ।

କଉଁଠାରେ ବୋଲିବ ବା ଶୁଣ ଦୃଷ୍ଟାନ୍ତର ।
ଯୋଗମାୟା ଆଶ୍ରୟ ପୁରୁଷ ଗଦାଧର ଯେ ।
ଗୋପାଙ୍ଗନା ଲମ୍ପଟ ନିଷେଧ ଆଚରଣେ ।
ଶିବ-ଅର୍ଦ୍ଧ ଅଙ୍ଗ ଗିରି ସୁତା ପ୍ରତିକ୍ଷଣେ ଯେ । ୨୪ ।

ରତି ପଦେ ଶୃଙ୍ଗାର ରତି ପଦରେ ସ୍ନେହ
ବେନି ରତିଙ୍କୁ ପୃଥୁଳ ନିତମ୍ବିନୀ ଗୃହ ଯେ ।
ନାରୀ ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ, ହସ୍ତିନୀ, ।
ଚାରି ଜାତି ପ୍ରଧାନ ଆଉ ସଙ୍କରୀ ଘେନି ଯେ ।୨୫।

---

୨୩—ସ୍ୱର୍ଗ ଭୋଗ ଇନ୍ଦ୍ରର ଅଛି; କାହାର ଭୁକ୍ତ (ଭୋଗ) ମାନ [ସେହି ଇନ୍ଦ୍ର ଭୋଗରୁ ବା ] ବଡ଼ ଅଛି । ସେ (ସେହି ଇନ୍ଦ୍ର) ରତି ଲୁବ୍‌ଧୁଁ (ଅହଲ୍ୟାଙ୍କ ସଙ୍ଗେ ରତି ଲୋଭରୁ)— [୮ମ ଛାନ୍ଦ ୭୧ ପଦ ଟୀକା ଦେଖ ।] ଗୌତମଙ୍କ ଶାପରେ ସହସ୍ର ଲୋଚନ (ସହସ୍ରାକ୍ଷ) ହୋଇଥିଲେ । ତାଙ୍କର ହଜାରେ ଯୋନି ହେଉ ବୋଲି ଆଗେ ଗୌତମ ଅଭିଶାପ ଦେଇ ପରେ ସେହି ଯୋନି ମାନଙ୍କୁ ଆଖି କରିଦେଲେ ବୋଲି ପୁରାଣରେ ଅଛି । ଅପବର୍ଗ ଯେ ମୋକ୍ଷ ସେ ବ୍ରହ୍ମ (ବ୍ରହ୍ମା)ଙ୍କର ଆୟତ୍ତ (ଅଧୀନ); ତଥାପି ସେ ବ୍ରହ୍ମା ମଧ୍ୟ ରତିରେ ଲୀନ (ଲିପ୍ତ); ବ୍ରହ୍ମାଙ୍କ କାମ ବିକାର ବିଷୟରେ ବହୁତ କଥା ପୁରାଣରେ ଅଛି । [୩୧ ଛାନ୍ଦ ୪ ପଦ ଦେଖ] ।

୨୪—କେଉଁଠି ଏପରି ରତିର ବିଶେଷତ୍ୱ ଅଛି ବୋଲି ଯେବେ କହିବ ତେବେ ଦୃଷ୍ଟାନ୍ତର (ଉଦାହରଣ) ଶୁଣ । ଗଦାଧର—(ବିଷ୍ଣୁ) ଯୋଗ ମାୟା ଆଶ୍ରୟ କରିଛନ୍ତି । ବିଷ୍ଣୁ ଯୋଗରେ ମାୟା ଆଶ୍ରୟ କରି ସୃଷ୍ଟି କରନ୍ତି—ଏହା ପୌରାଣିକ ଦର୍ଶନମତ; ନିଷେଧ ଆଚରଣରେ (ବିଟ ପୁରୁଷର କାର୍ଯ୍ୟ କରି) କୃଷ୍ଣ ଗୋପାଙ୍ଗନା (ଗୋପୀ) ମାନଙ୍କର ସଙ୍ଗେ ଲମ୍ପଟ (ଲଟପଟ); ଗିରିସୁତା (ପାର୍ବତୀ) ତାଙ୍କୁ ସବୁବେଳେ ଶିବ ବାଁ ଜଙ୍ଘରେ ବସାଇଛନ୍ତି । ସେଥିପାଇଁ ଶିବଙ୍କୁ ଅର୍ଦ୍ଧ ନାରୀଶ୍ୱର କହନ୍ତି ।

୨୫—ରତି ଶବ୍ଦର ଦୁଇ ଅର୍ଥ—୧. ଶୃଙ୍ଗାର, ୨. ସ୍ନେହ । ନିତମ୍ବିନୀ (ସ୍ତ୍ରୀ) ଏହି ବେନି ରତିର (ସ୍ନେହ ଓ ଶୃଙ୍ଗାରର) ପୃଥୁଳ (ବଡ଼) ଗୃହ (ଘର) ପରି । ରତି ଶାସ୍ତ୍ରରେ ନାରୀ ପଦ୍ମିନୀ ପ୍ରଭୃତି ଚାରି ପ୍ରକାର । ରତି ମଞ୍ଜରୀରେ ଯଥା—

ଦେବ, ଗନ୍ଧର୍ବ, ଯକ୍ଷ ପ୍ରେତ ସତ୍ୱାଦି କ୍ରମେ ।
ଯେ ପୁଂସର ଯେତେ– ଭଗ୍ୟ ସେ ଲଭି ତା ରମେ ହେ ।
ହୀର ନୀଳା ମାଣିକ୍ୟ ମୁକୁତା ବିଦ୍ରୁମର ।
ମୂଲ୍ୟ ଅଛି ମୂଲ୍ୟ ନାହିଁ ସ୍ତିରୀ ରତନର ଯେ ।୨୬।

ଫୁଲର ନାଧା ଡ୍ରୋଡ଼ାକୁ ଖେଳାଇ ନେବାର ।
ମୁଖ ହଲଇ ଗେହ୍ଲାଇ ଭଷା କହିବାର ଯେ ।
ଚିବୁକେ ତର୍ଜନୀ ଦେଇ ହୋଇବାର ଭଙ୍ଗ ।
ନେତ୍ର ଦେଖିଥିବ କି ଏପରି ଆନ ଶୋଭା ଯେ ।୨୭।

---

ପଦ୍ମିନୀ– "ଭବତି କମଳ ନେତ୍ରା ନାସିକା କ୍ଷୁଦ୍ର ରନ୍ଧ୍ରା,
ଅବିରଳ କୁଚ ଯୁଗ୍ମା ଘନ୍ତ କେଶୀ କୃଶାଙ୍ଗୀ
ମୃଦୁ ବଚନ ଶୁଶୀଳା ଗୀତବାଦ୍ୟାନୁରକ୍ତା,
ସକଳ ତନୁ ସୁବେଶା ପଦ୍ମିନୀ ପଦ୍ମଗନ୍ଧା"

ଚିତ୍ରିଣୀ– ଭବତି ରତିରସଜ୍ଞା ନାତି ଖର୍ବା ନ ଦୀର୍ଘା,
ତିଳ କୁସୁମ ସୁନାସା ସ୍ନିଗ୍ଧ ନୀଳୋତ୍ପଳାକ୍ଷୀ
ଘନ କଠିନ କୁଚାଢ୍ୟା ସୁନ୍ଦରୀ ବନ୍ଧଶୀଳା,
ସକଳ ଗୁଣ ବିଚିତ୍ରା ଚିତ୍ରିଣୀ ଚିତ୍ର ବକ୍ତ୍ରା ।

ଶଙ୍ଖିନୀ– ଦୀର୍ଘାତି ଦୀର୍ଘ ନୟନା ବର ସୁନ୍ଦରୀ ଯା
କାମୋପ-ଭୋଗ ରସିକା ଗୁଣଶୀଳ ଯୁକ୍ତା
ରେଖାତ୍ରୟେଣ ଚ ବିଭୂଷିତ କଣ୍ଠ ଦେଶା,
ସମ୍ଭୋଗ କେଳି ରସିକା କିଳ ଶଙ୍ଖିନୀ ସା ।

ହସ୍ତିନୀ– ସ୍ଥୂଳ ଧର ସ୍ଥୂଳନୀତମ୍ବ ବିମ୍ବା ସ୍ଥୂଳାଙ୍ଗୁଳିଃ ସ୍ଥୂଳ କୁଚ, ଶୁଶୀଳା
କାମୋତ୍ସୁକା ଗାଢ଼ ରତି ପ୍ରିୟା ଚ ନିତାନ୍ତ ଭୋକ୍ତ୍ରୀ ଖଲୁ ହସ୍ତିନୀ ସ୍ୟାତ୍

ଏ ଚାରି ଜାତି ପ୍ରଧାନ; ଆଉ ଶଙ୍କରୀ (ଶୁଭଙ୍କରୀ) କିମ୍ବା ସଙ୍କରୀ (ଚାରି ଜାତିଙ୍କ-ମିଶା) ଆଉ ଜାତି ମାନ ।

୨୬–ଦେବତା, ଗନ୍ଧର୍ବ ( ଦେବ ଗାୟକ ) ଯକ୍ଷ ( କୁବେର ଗଣ ) ପ୍ରେତ ( ଯମପୁର-ବାସୀ ) ଏହି ସତ୍ୱ ( ପ୍ରାଣୀମାନେ, ମନୁଷ୍ୟମାନେ ) ଏହି ମାନଙ୍କ ମଧ୍ୟରୁ ଯେଉଁ ପୁରୁଷର ଯେପରି ଭଗ୍ୟ ସେ ତା ( ସେହିପରି ସ୍ତ୍ରୀ ) ପାଇ ରମେ ( ରତିକରେ ) ବିଦ୍ରୁମ–ପୋହଳା ;

୨୭–ଚିବୁକ–ଓଠତଳ; ତର୍ଜନୀ–ବିଷି ଅଙ୍ଗୁଠି ;

ନୀବୀ ଫେଡ଼ାବେଳେ କହିବାର ନାହିଁ ନ ହିଁ ।
ବଚନ ସମ ସୁସ୍ୱର ବୀଣା ପିକେ କାହିଁ ଯେ ।
ବିପରୀତ ମାଗୁଁ କେ ଜାଣଇ ବୋଲିବାର ।
ସଞ୍ଜୀବନୀ ମନ୍ତ୍ର ସମ ନିକି ତା ତୁଚ୍ଛର ଯେ । ୨୮ ।

ଶୟନରେ ଅଣିକରି କୋଳେ ଆଣିବାର ।
ଅଣିମାଦି ସୁଖ ନିକି ସମ ତା ସଙ୍ଗର ଯେ ।
ରତିକାଳେ ମୁଦି ଫେଇବାର ନେତ୍ର ଦୁଇ ।
କଳ ନୀଳୋତ୍ପଳକୁ ଧିକାର କରୁଥାଇ ଯେ । ୨୯ ।

ଏତିକି ହୋଉ ବୋଲିଣ ଭିଡ଼ିବାର କ୍ଷଣେ ।
ସେ ସୁଖ ପାଇବ ଯୁବା କଉଁ ଗଜପଣେ ଯେ ।
ଯାହାଠାରେ ଅଭିଳାଷ କରେ ଯାହା ମନ ।
ସେହି ତାର ସକଳ ସୁଗତି ବୋଲି ସେନ ଯେ ।୩୦।

ମୁଗ୍‌ଧାରୁ ମଧ୍ୟା ପ୍ରଗଲ୍‌ଭ ଯାଏ ସୀମନ୍ତିନୀ ।
ପୁରୁଷର ହୁଅଇ ଅଶେଷ ସୁଖ ଦାନୀ ଯେ ।
ଉଦୟରୁ ଅସ୍ତଯାଏ ଚନ୍ଦ୍ରିକା ମଣ୍ଡଳ ।
ଯଥା କରଇ ଚକୋର ସୁଖକୁ ସଫଳ ଯେ । ୩୧ ।

---

୨୮–ନୀବୀ–ଅଣ୍ଟା ଖୋଷଣୀ ବା କଛା; ଫେଡ଼ା–ଫିଟାଇବା; ବିପରୀତ–[୮,୧୬ଶ ଛାନ୍ଦ ୪ ପଦ ଟୀକା ଦେଖ । ] କେ ଜାଣଇ–କିଏ ଜାଣେ ସେ କଥା କଣ (ମୁଁ ଜାଣେ ନାହିଁ ) ସଞ୍ଜୀବନୀ ମନ୍ତ୍ର–ଯେଉଁ ମନ୍ତ୍ରରେ ମଲାଲୋକ ବଞ୍ଚିଯାଏ ।

୨୯–ଅଣିମାଦି–[୧୧ଶ ଛାନ୍ଦ ୧୨ ପଦ ଟୀକା ଦେଖ । ] ଅଣିକରି–ସ୍ତ୍ରୀକୁ ଅଣେଇ କରି; କମଳ ( ଜଳ )ରୁ ଜ( ଜାତ ) –ପଦ୍ମ;
" କମଳଂ ସଲିଳେ ତାମ୍ରେ ଜଳଜେ ବ୍ୟୋମ୍ନି ଭେଷଜେ "–ଇତି ମେଦିନୀ ।

୩୦–ସୁଗତି–ପରମ ଗତି, ଶ୍ରେଷ୍ଠ ଆଶ୍ରୟ;

୩୧–ମୁଗ୍‌ଧା, ମଧ୍ୟା, ପ୍ରଗଲ୍‌ଭ–ଅଳଙ୍କାର ଶାସ୍ତ୍ରରେ ଭିନ୍ନ ଭିନ୍ନ ନାୟିକା–[ ସାହିତ୍ୟ ଦର୍ପଣ ଦେଖ । ] ସୀମନ୍ତିନୀ–ନାରୀ; ମୁଗ୍‌ଧା–ଅତି ନବୀନା (କେଳି ଜ୍ଞାନହୀନା); ପ୍ରଗଲ୍‌ଭ–ଚତୁରୀ ( ଯେ ପୁରୁଷର ମନକୁ ମଜାଇ ବଶ କରିପାରେ ); ମଧ୍ୟା–ଏ ଦୁହିଁଙ୍କର ମଝି; ଚକୋରକୁ ଚନ୍ଦ୍ର ଉଦୟ ଠାରୁ ଅସ୍ତଯାଏ ଯେପରି ଭିନ୍ନ ଭିନ୍ନ ଭାବରେ ସୁଖ ଦିଏ ।

ଯୁବତୀରୁ ଜାତ ଲେଭ ଲେଭୁଁ ପ୍ରୀତି ଲେଖ ।
ପ୍ରୀତିରୁ ସୁରତି ଜାତ ସୁରତିରୁ ସୁଖ ହେ ।

ପ୍ରାଣ ଛାଡ଼ି ହୋଏ ସ୍ତିରୀ ଛାଡ଼ି ନୋହେ କେବେ ।
ରବଣାଦିଠାରୁଁ ଶୁଣିଥିବ ତ ପ୍ରସ୍ତାବେ ଯେ । ୩୨।

ପୁଣି ନେତ୍ର ବୁଜିକରି ସେ ଆସ୍ୱାଦନ ।
ହୃଦ ଘେନି କହେ ପୁଂସ ହେବ ଏ ବିଧାନ ଯେ ।

ସୁଖୀ ହୋଇଥିବ ନୃପ-ଉପଜୀବୀ ନୋହି ।
ବିଦ୍ୟା ଥିବ ଦିବ୍ୟ ସ୍ତିରୀ ମିଳଥିବ ତହିଁ ଯେ ।୩୩।

କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦରେ ।
ସ୍ତିରୀ ହୀନ ଠାରୁ ପାପୀ ନାହିଁ ଏ ସଂସାରେ ଯେ ।

ରସିକ ବୋଲିଣ ବୋଲି ଏହି ପୁରୁଷକୁ
ଯେ ଘେନିଣ ଥାଇ ଏତେ ଲକ୍ଷଣ ବଂଶକୁ ଯେ । ୩୪।

ଦୋଷ କଲେ ରମ ରୋଷ ନ ଘେନଇ ମନେ ।
ଦାସ ପ୍ରାୟ ସ୍ତୁତି ବିରଚଇ ପ୍ରିୟା ମାନେ ଯେ ।

ପଛ ନ କରଇ ତାକୁ ଶୟନେ ଗମନେ ।
ଜାଣି ଥାଇ କାମ ଶାସ୍ତ୍ର ବହୁତ ବିଧାନେ ଯେ । ୩୫।

କରି ନାହିଁ ଯେ ଦର୍ଶନ ବାଳା ବିବସନ ।
ଅନ୍ଧ ସେହୁ ଜନ ଥାଇ ନିର୍ମଳ ନୟନ ଯେ ।

ଯୋଷା ପରିହାସ ଭଷା ଯେହୁ ନ ଶୁଣିଛି ।
କର୍ଣ୍ଣ ନୋହେ କୁହର ଯୁଗଳ ସେ ବହିଛି ଯେ ।୩୬।

ଯେ କରି ନାହିଁ ସୁନ୍ଦରୀ ବିମ୍ବାଧର ପାନ ।
କି ସ୍ୱାଦୁ ଜାଣିଛି ଧିକ ତାହାର ଜୀବନ ଯେ ।

ମହା ମହା ଦାନ ଦେଇ ନାହିଁ ଯେହୁ କରେ
ସେ କାହିଁ ପାଡ଼ିବ ରସବତୀ ଚିବୁକରେ ଯେ । ୩୭।

---

୩୨-ରବଣ ପ୍ରାଣ ଛାଡ଼ିଲ ସୀତାଙ୍କୁ ଛାଡ଼ିଲ ନାହିଁ; ପ୍ରସ୍ତାବେ-ପୁରଣାଦିରେ;

୩୩-ପୁରୁଷେ ସ୍ତ୍ରୀକୁ ହୃଦେ ଘେନି (କୁଣ୍ଢାଇ) କଣ କହେ ତା କହୁଛନ୍ତି-ନୃପ-ଉପଜୀବୀ-ରଜ ସରକାରରେ ଚାକର;

୩୪-ବଂଶ-ସମୂହ;

୩୫-ମାନେ-ଅଭିମାନ କଲବେଳେ;

୩୬-ବିବସନ-ଲୁଗା ଫିଟାଇବା; ଯୋଷା-ନାରୀ;
କୁହର ଯୁଗଳ-ଗାତ ଯୋଡ଼େ;

ସ୍ୱୟମ୍ଭୁ ଶମ୍ଭୁ ସେବାରେ ଯାହା ତନମନ ।
ସେ ସ୍ୱଭକ୍ଷ କରନ୍ତି ସାରସ–କୋଷ–ଛନ ହେ ।
କହୁଥିଲେ ସରିବାର ନୋହେ ଏ ଚରିତ ।
ସ୍ୱର ଶାସ୍ତ୍ର ଅଳଙ୍କାରେ ଯେ ପ୍ରତିପାଦିତ ହେ ।୩୮।

ତୁମ୍ଭେ ରାଜ ପୁତ୍ର ଯୁବା–ସୁନ୍ଦର–ରସିକ
ତୁମ୍ଭଙ୍କୁ କି ଅଗୋଚର କାବ୍ୟରୀତି ଯାକ ହେ ।
ଏକା କାବ୍ୟରୀତି କିପାଁ ଅନୁଭବୀ ପୁଣ ।
ଯାହା ସେବା ନିପୁଣ ନୃପତି ସୁତାଗଣ ଯେ ।୩୯।

ତହିଁକି ପ୍ରତି ଉତ୍ତର କଲା ରତ୍ନଧ୍ୱଜ ।
ବିଭା ହୋଇ ନାହାନ୍ତି ଆମ୍ଭର ଯୁବରାଜ ଯେ ।
ସମେ କନ୍ୟା ନ ମିଳିଲା ପୃଥିବୀ ମଣ୍ଡଳେ ।
ଊଣା ଅଧିକ ଦ୍ରବ୍ୟ କି ପାତ୍ରେ ରହେ ତୁଲେ ଯେ ।୪୦।

ପାରିଲେ ଲଗାଅ ତୁମ୍ଭ ରାଜପୁତ୍ରୀ ଅଛି ।
ସୁନ୍ଦରୀ ବୋଲି ଶବଦ ଲୋକେ ପ୍ରକଟିଛି ହେ ।
ଦେଖିଲା ଯେଡ଼େ ସୁନ୍ଦର ଆମ୍ଭ ନୃପାତ୍ମଜ ।
ଯେ ହେଉ ସେ ହେଉ କରନ୍ତାଇଁ ବିଭା କାର୍ଯ୍ୟ ହେ ।୪୧।

ଦ୍ୱିଜ କହେ କି କହୁଛ ମରଇଁ ମରଇଁ ।
ଏଡ଼େ ସୁକୁମାର ଦେହ ମାର ପ୍ରହାରଇ ହେ ।
ହେଲେ ହେଲା କି ହେଲା କି ଦୁହେଁ ବଡ଼ ରଜା ।
ରାଜପୁତ୍ରେ ବିଭା ସିନା ରଜାର ତନୁଜା ହେ ।୪୨।

---

୩୮–ସାରସ କୋଷ–ପଦ୍ମ କଢ଼ା; ସ୍ୱର ଶାସ୍ତ୍ର–ଛନ୍ଦି ଶାସ୍ତ୍ର; ଅଳଙ୍କାର–ସାହିତ୍ୟ ଶାସ୍ତ୍ର; ପ୍ରତିପାଦିତ–ପ୍ରମାଣିତ;

୩୯–କାବ୍ୟରୀତି–କବିତାର ବର୍ଣ୍ଣନା; ସେବା ନିପୁଣ–ସେବାରେ ଲାଗିଥାନ୍ତି; ନୃପତି ସୁତାଗଣ–କୁମାରଙ୍କୁ ବିବାହିତ ବୋଲି ଏଠାରେ ସୂଚନା ଦେଇ କହିଲା ।

୪୦–ରତ୍ନଧ୍ୱଜ–କୁମାରର ସାଙ୍ଗ ପୁରୋହିତ ପୁଅ, ଊଣା ଅଧିକ ଇତ୍ୟାଦି–ଗରୁ ଲଘୁ ଯୋଡ଼ାଏ ଜିନିଷ ନିକିତିର ଦୁଇ ପାଖରେ ପକାଇଲେ ନିକିତିର ଦୁଇପାତ୍ର (ପଲା) ତୁଲେ (ସମାନ)ରେ ରହେ କି ?

୪୧–ଯେ ହେଉ ସେ ହେଉ–ଯେ କୌଣସି ପ୍ରକାରେ;

୪୨–ମାର ପ୍ରହାରଇ–ବିବାହ ବା ସ୍ତ୍ରୀ ସଙ୍ଗ ନ ହୋଇ ଥିବାରୁ; ହେଲେ ହେଲା କି ହେଲା–(ଏ ବିବାହ) ହେଲେ ହୁଅନ୍ତା, କ୍ଷତି କଣ ?

ତଥାପି ଲାବଣ୍ୟବତୀ ତ୍ରିପୁରଳଙ୍କାର ।
ସୁନ୍ଦର ପଣେ ତାହାର ନାହିଁ ସମଗାର ହେ ।
ଭୟରୁ କି ସମ ସ୍ନେହେ କରିବାକୁ ତପ ।
ବନେ ପଶିଛନ୍ତି ଯାଇ କମଳ କଳାପ ହେ ।୪୩।
ଏମନ୍ତ ମୁଖ ନୟନ ରୁଚିର ତାହାର ।
ବୁଧେ ବୋଲନ୍ତି ମଦନ ମନୋହର ଶର ଯେ ।
କବି ଗଣେଷ ବର୍ଣ୍ଣନା ନ ପାରନ୍ତି କରି ।
ଗୁଣ ସ୍ମରଣ କରନ୍ତି ଜପାମାଳି ଧରି ହେ । ୪୪ ।
ଅଧିକ ନେତ୍ର ବହିଲେ ବୃଷା ବୃଷାସନ ।
କରିବାକୁ ଶୋଭବତୀ ଶୋଭ ଦରଶନ ହେ ।
ବିଧି କୁମାର ଅନନ୍ତ ମୁଖାଧିକ ହୋଇ ।
ବିଗ୍ରହନ୍ତି ତାହା ଶୋଭ ବର୍ଣ୍ଣିବାର ପାଇଁ ଯେ ।୪୫।
ଏସନ ଯଉଁ ସୁନ୍ଦରୀ ଇତର ତପରେ ।
ପଗପତ ହୁଅଇ କି ଶରୀରୀ ଜନରେ ଯେ ।

---

୪୩–ତ୍ରିପୁର ( ତ୍ରିଭୁବନର ) ଅଳଙ୍କାର ପରି; ସମଗାର–ସମାନ ବୋଲି ଗାର ପକାଇବାକୁ; ଭୟରେ–ଆଖି ଓ ମୁହଁ ସାଙ୍ଗେ ସମାନ ହୋଇ ନ ପାରିବା ଭୟରେ; ସମସ୍ନେହେ–ସମାନ ହେବାକୁ ମନକରି; ବନେ– ( ୧. ଜଳରେ, ୨. ଅରଣ୍ୟରେ ) ତପସ୍ୟା କରିବାକୁ ଅରଣ୍ୟକୁ ଯାନ୍ତି । ସେଥିପାଇଁ ଜଳ ଅର୍ଥରେ ଏଠାରେ ବନ ଶବ୍ଦର ପ୍ରୟୋଗ । କମଳ ଅର୍ଥରେ ମୃଗ ମଧ୍ୟ ହୁଏ; " ମୃଗ ଭେଦେଽପି କମଳଃ" -ଇତି ମେଦିନୀ । କଳାପ–ସମୂହ; " ବନ ନୀରେ କାନନେ ଚ ରୁଚିରେ କନକେଽପିଚ"–ଇତି ଶବ୍ଦମାଳା ।

୪୪–ନିଳୋତ୍ପଳ, ଅରବିନ୍ଦ; ଏ ମଦନର ପଞ୍ଚଶରରୁ ଯୋଡ଼ିଏ, [ ୬ଷ୍ଠ ଛାନ୍ଦ ୯ମ ପଦ ଟୀକା ଦେଖ । ]

୪୫–ବୃଷା–( ଇନ୍ଦ୍ର ) ଙ୍କର ସହସ୍ର ନେତ୍ର; ବୃଷାସନ ( ମହାଦେବ ) ଙ୍କର ତିନି ଆଖି; ବିଧି ( ବ୍ରହ୍ମା ) ତାଙ୍କର ଚାରିମୁହଁ; କୁମାର ( କାର୍ତ୍ତିକେୟ ) ଙ୍କର ଛ ମୁହଁ; ଅନନ୍ତ ( ବାସୁକୀ ) ଙ୍କର୍ ହଜାର ଫଣା ବା ମୁହଁ; ମୁଖାଧିକ–ଏକାଧିକ ମୁଖ;

୪୬–ଶରୀରୀଜନ–ମନୁଷ୍ୟ; ସୁନ୍ଦରିମା–( ସୌନ୍ଦର୍ଯ୍ୟ )କୁ ପଣ ( ପ୍ରତିଜ୍ଞା ) କରିବେ–

ସୁନ୍ଦରିମା ପଣ ଯେବେ କରିବେ ଭୂପତି ।
ବିଭକରି ନ ପାରିବେ ମନୋହରବତୀ ଯେ ।୪୬।
ନାକ ନାଗେ ସମ ନାହିଁ ଥାଉ ଆଉ ଧଗ ।
ବର ଖୋଜି ମନ୍ତ୍ରୀକି ହୋଇଲ ମହାଭାଗ ହେ ।
ତା ବିଗ୍ରରେ କୁଳିନଗୁଣେ ମିଳିଲେ ପୁଂସ ।
ନୃପେ ପ୍ରବର୍ତ୍ତାଇ ବିଭ କରିବା ଅବଶ୍ୟ ହେ ।୪୭।
ତୃଷାର୍ତ୍ତୀ ସିନା ଚଳିଲ ପାଶେ ଉପଗତ ।
ପାଣି ତୃଷାର୍ତ୍ତ ପାଶକୁ ଆସେ କି ଘେନ ତ ହେ ।
ନଦୀ ସନ୍ନିଧିକୁ ଜଳ ପାନ କରି ଗଲେ ।
ତାହା ଅସନମତ ହୋଇଛି କଉଁ କାଳେ ହେ ।୪୮।
ଆପଣେ ଆମ୍ଭ ସଙ୍ଗତେ ହୁଅ ଆସିବାକୁ ।
ନୃପେ କହି ନିର୍ବାହ କରିବା ଏ କାର୍ଯ୍ୟକୁ ଯେ ।
ଏ ଉତ୍ତାରେ ରତ୍ନଧ୍ୱଜ ଦ୍ୱିଜ ସଙ୍ଗେ ଯାଇ ।
ସଚିବକୁ ଘେନି ନୃପ ଛାମୁରେ ପକାଇ ଯେ ।୪୯।
ସେ ବୋଇଲେ ସବୁରୂପେ ଆମ୍ଭର ସମ୍ମତ ।
ଜାତକ ବିରୁଦ୍ଧେ ନାହିଁ କେବଣ ଆୟତ ଯେ ।
ପାଟଯୋଷୀ ଡ଼ାକି ଭଲ ବେଳକୁ ଜାଣିଲେ ।
ଉତ୍ତମ ସୁଝିଲ ବେନି ଜାତକ ବୁଝିଲେ ଯେ ।୫୦।

---

ଅର୍ଥାତ୍ ଜେମା ସମାନ ଯେ ସୁନ୍ଦର ତାକୁ ଜେମାକୁ ଦେବି ବୋଲି ଯେବେ ଠିକ୍ କରିବେ; ମନୋହରବତୀ–ଅତି ସୁନ୍ଦରୀ ଜେମା ;

୪୭–ନାକ–( ସ୍ୱର୍ଗପୁରୀ ) ରେ; ନାଗେ ( ନାଗଲୋକ, ପାତାଳପୁରୀରେ ) ଧଗ ଥାଉ ( ପୃଥିବୀ କଥା ଛାଡ଼); ତା ବିଗ୍ରରରେ–( ମନ୍ତ୍ରୀ ବିଗ୍ରରରେ ) ସୁନ୍ଦର ବ ମିଳିବେ ନାହିଁ, ତେବେ କୁଳିନ ଗୁଣେ ( ଆଭିଜାତ୍ୟରେ ) ପୁରୁଷ ମିଳିଲେ ;

୪୯–ସଚିବ–( ସିଂହଳପତିଙ୍କ ମନ୍ତ୍ରୀ )

୫୦–ସେ–ସିଂହଳ ରଜା; ଜାତକ ବିରୁଦ୍ଧେ–ବର କନ୍ୟାଙ୍କ ଜାତକ ନ ମିଳିଲେ; ପାଟ· ଯୋଷୀ–ରଜାଦତ୍ତ ଏକ ଉପାଧି–ଜ୍ୟୋତିଷ, ପୁରୋହିତ ବ୍ରାହ୍ମଣଙ୍କୁ ବିଶେଷରେ ଦିଆହୁଏ ।

ନୃପ ଆଜ୍ଞା ଦେଲେ ପୁରେ ଯିବା ହୁଅ ସଜ ।
ମନ୍ତ୍ରୀ କି ଘେନି କୁମାର ପାଶେ ଗଲେ ଦ୍ୱିଜ ହେ ।
ନୃପତି ସମ୍ମତି ଶୁଣି ହୋଇଲେ ହରଷ ।
ଚିର କ୍ଷୁଧାର୍ତ୍ତ ପାଇଲା କି ପୀୟୂଷରସ ହେ ।୫୧।
ତେଣେ ଅରୁଣ ଅଧରୀ ପୀନପୟୋଧରୀ ।
ଏକାନ୍ତେ ବସି କୁମାର ଦର୍ଶନ ସ୍ମରି ଯେ ।
କେତେ ଅଦଭୁତ ଶୋଭା ଦେଖିଲା ନୟନ ।
ଉପମାକୁ ସମ ହୋଇ ନାହିଁ ଯେ ବଚନ ଯେ ।୫୨।
ଏ ସମୟେ ପରବେଶ ହେଲା ଚନ୍ଦ୍ରାବଳୀ ।
ତାପ ଧ୍ୱଂସି କଲା ଏ ବଚନାମୃତ ଢାଳି ଯେ ।
କର୍ଣ୍ଣାଟ ଯୁବରାଜଙ୍କୁ ତୋତେ ଦେବା ପାଇଁ ।
କଥା ହୋଇ ରାଜା ମନ୍ତ୍ରୀ ଦେଲେ ପଠାଇ ଯେ ।୫୩।

ସତେ କି ବୋଲି କେତକୀ ବରନା ପଚାରି ।
ଆନ ଅଛି ବୋଇଲା ସୁନ୍ଦରୀ ସହଚରୀ ଯେ ।
ସିନ୍ଧୁର ଗତି ଆନନ୍ଦ ସିନ୍ଧୁ ଉଛୁଳିଲା ।
କେତେ ଦେବତାଙ୍କୁ କେତେ ଭୋଗ ମନାସିଲା ଯେ ।୫୪।
ଦରଶନ ଭାବନା ହୋଇଲା ଆନ ତାର ।
ବିରହ ଉତ୍କଣ୍ଠିତା ହୋଇଲା ଗମାବର ଯେ ।
ଅନୁଗ୍ରହ ରତ୍ନ ଦେଇ ମନ କୋହେ ତୋଷ ।
ପୁନଃ ପୁନଃ କଲା ପ୍ରିୟ ସଖୀଙ୍କି ଆଶ୍ଳେଷ ଯେ ।୫୫।

---

୫୧—ପୀୟୂଷରସ—ଅମୃତ ଭୋଜନ; ପୁରେ ଯିବା—ସିଂହଳକୁ ଯିବା ;

୫୪—ଆନ ଅଛି—ଗଣ ଅଛି, ସିନ୍ଧୁର—ହାତୀ;

୫୫—ଦରଶନ—ଦେବ ଦରଶନ; ହୋଇଲା ଆନ—ମନରୁ ଅଲଗା ହୋଇଗଲା; ବିରହ ଉତ୍କଣ୍ଠିତା—ବିରହରେ ସଙ୍ଗମ ପାଇଁ ଟାକି ରହିବା ଭାବ; ଉତ୍କଣ୍ଠିତା—ଅଷ୍ଟ ନାୟିକା ମଧ୍ୟରୁ ଏକ ପ୍ରକାର ନାୟିକା—[ସାହିତ୍ୟ ଦର୍ପଣ ଦେଖ] ଉତ୍କଣ୍ଠିତା ଲକ୍ଷଣ—

"ଆଗନ୍ତୁ କୃତ ଚିତ୍ତୋଽପି ଦୈବାନ୍ନାୟାତି ଯତ୍ ପ୍ରିୟଃ ତଦନାଗମ ଦୁଃଖାର୍ତ୍ତା ବିରହୋତ୍କଣ୍ଠିତା ତୁ ସା" । ମାତ୍ର ଏଠାରେ ଏପରି ଉତ୍କଣ୍ଠିତା ଭାବ ନୁହେ । ଯେ ଖବର ଦେଲା ତାକୁ ଅନୁଗ୍ରହ କରି ରତ୍ନ ଦେଲା । ଆଶ୍ଳେଷ—ଆଲିଙ୍ଗନ (ଆନନ୍ଦରେ)

ଆହେ ରାମ କରୁଣା ସାଗର ଶ୍ୱପଧର ।
ଖର—ପ୍ରଖର ଦୂଷଣ—ତ୍ରିଶିର—ପ୍ରହାର ହେ ।
ମୁନିଜନ ତୋଷ ଜନପଦ ଘିର କର ।
ଉପଇନ୍ଦ୍ର ଭକ୍ତ ବୀରୁବର ତାପ ହର ହେ । ୫୬ ।

---

୫୬—ଶ୍ୱପଧର—ଧନୁର୍ଧର; ପ୍ରଖର—ପ୍ରଚଣ୍ଡ; ଖର ଦୂଷଣ ଓ ତ୍ରିଶିର ନାମକ ତିନି ରାକ୍ଷସଙ୍କୁ ରାମ ପଞ୍ଚବଟୀରେ ମାରିଥିଲେ । ଜନପଦ ( ଅଧୁନାର ରାଜ୍ୟ ) ରାକ୍ଷସ ବା ଶତ୍ରୁ ଭୟରୁ ଘିର (ନିର୍ଭୟ) କରିଥିଲେ; କିମ୍ବା ଜନପଦ (ଜନ ସ୍ଥାନ ନାମକ ବନ) ତାଙ୍କୁ ଘିର (ନିର୍ଭୟ) କରି ମୁନି ମାନଙ୍କୁ ସନ୍ତୁଷ୍ଟ କରିଥିଲେ ।
ତାପହର—ତ୍ରିତାପ ନାଶକାରୀ--ଆଧିଭୌତିକ (ରୋଗ ପ୍ରଭୃତି) ଆଧିଦୈବିକ (ଗ୍ରହାଗ୍ରହ ପ୍ରଭୃତି) ଆଧ୍ୟାତ୍ମିକ (ଚିତ୍ତ ବିକ୍ଷୋଭ ପ୍ରଭୃତି) ମନୁଷ୍ୟର ତିନି ପ୍ରକାର ତାପ ହୁଏ ।



## ଊନବିଂଶ ଛାନ୍ଦ

### ( ସଖୀମାନଙ୍କର ରହସ୍ୟ କଥୋପ କଥନ )

ରାଗ- ନଳିନୀ ଗୌଡ଼ା ।

ସିଂହଳେଶ ତୋଷଭର । ଗ୍ଭଳିଦେଲେ ଅନ୍ତଃପୁର ।
ନାରୀ ବୋହିତ୍ରେ ବସାଇ । ସୁନ୍ଦରୀ ଚିତ୍ତେ ଭଳଇ । ୧ ।
କୁମାର ବାହୁଡ଼ି ଯିବ । କାହିଁକି ଥିବ ଏ ଜୀବ ।
ପଡ଼ିବି ସିନ୍ଧୁ ମଧ୍ୟର । ଏ ବିଗ୍ଭର ସବୁ ସାର । ୨ ।
ମନାସି ମୁଁ ଝାସିଥିବି । ଜନମାନ୍ତରେ ପାଇବି ।
ଆନ ବିଧିରେ ମରଣ । ହେଲେ ହେବ ଅକାରଣ । ୩ ।
ଏ ବିଗ୍ଭର ମୂଳ କରି । ବିଜେ ବୋହିତ୍ରେ ସୁନ୍ଦରୀ ।
ନିଜ ମାତା ତାହା ରୂପ । ଅନାଇଁ ଲଭିଲେ ତାପ । ୪ ।
କହିଲେ ସଖୀଙ୍କି ଚଳି । କି ଦିଶୁଛି ନବବାଳୀ ।
ତାତ କର୍ଣ୍ଣାଟେଶ ସୁତ । ବର କଲେ କାଲି ସତ । ୫ ।
ଆସିବେ ରହିଲେ ପଛେ । ବୋହିତ୍ରେ ବସାଇ ଅଛେ ।
ଏବେ ନ କଲେ ଯତନ । ପାଇବଟି ନିନ୍ଦାମାନ । ୬ ।
ଏ ବାଣୀ ଶୁଣି ତକ୍ଷଣ । ହେମାର ଜୀବ ରକ୍ଷଣ ।
ସମୁଦ୍ର ହୋଇଲେ ପାର । ଚଳିଲେ ସନ୍ତୋଷେ ଘର । ୭ ।
କୁମାର ଘେନି ନୃପତି । ପାରି ହୋଇ ପୁରେ ସ୍ଥିତି ।
ଦିବ୍ୟପୁରେ ବସାଦେଇ । ରଞ୍ଜିଲେ ହରଷ ହୋଇ । ୮ ।
ସର୍ବ ନୃପତି ନିଗଣ । ବାହୁଡ଼ି ଗଲେ ସ୍ୱଦେଶ ।

---

୧— ସିଂହଳେଶ–ସିଂହଳରାଜା; ତୋଷଭର–ସନ୍ତୋଷ ହୋଇ, ( ବିବାହ ସମ୍ବନ୍ଧ ହୋଇ ଯିବାରୁ ) ନିଜର ଅନ୍ତଃପୁର ନାରୀ ( ହେମା ପ୍ରଭୃତି ଉଆସର ନାରୀମାନଙ୍କୁ ); ସୁନ୍ଦରୀ–ହେମା ;

୨— ସବୁ ସାର –ସବୁଠାରୁ ଭଲ ;

୫— ଚଳି–ବିରକ୍ତ ହୋଇ ;

୬— ବୋଇତରେ କୁମାରକୁ ବସାଇ ;

ନିରଶ ଅମୃତ ପାନେ । ଯେମନ୍ତ ଅସୁର ମାନେ । ୯ ।
ସିଂହଳ ଦ୍ୱୀପକୁ ଦେଖି । ଯୁବରାଜ ଅତି ସୁଖୀ ।
ଭଲିଲ ଲବଣ୍ୟବତୀ । ଜନ୍ମସ୍ଥାନ ଯହିଁ କ୍ଷିତି । ୧୦ ।
ତାକୁ ସ୍ୱର୍ଗ ସମ କାହିଁ । ବୋଲିବା ଆଶ୍ଚର୍ଯ୍ୟ ନୋହି ।
ଏଣୁ କରି ଅନୁପମା । ମେଦିନୀ ମଧ୍ୟେ ଏ ସୀମା[୧] । ୧୧ ।
ଶୁଭିଲ କିନ୍ନରୀ ଗୀତ । ଏଥି ବୀଣା ଧ୍ୱନି ମତ ।
ହୋଇଥିବ ବାଳାମଣି । ଏମନ୍ତ ମନକୁ ଆଣି । ୧୨ ।
ଲେଖିଲ ସେ ମନେ ମନ । ଅଛି ଆଉ କେତେ ଦିନ ।
ମୋ ଅଙ୍କ ପଲ୍ୟଙ୍କ କରି । ବସିବ ଅବନୀ ଶିରୀ । ୧୩ ।
ରସିବ ଚାଟୁକୁ ଶୁଣି । ହସିବ ଅଳପ ପୁଣି ।
ଦିଶିବ ମୁଖ ଯେସନ । ସେହି କାଳରେ ପ୍ରଯନ୍ନ । ୧୪ ।
ସେ ଶୋଭ ସନ୍ଦର୍ଭ ତିଳେ । ନଥିବ ଚନ୍ଦ୍ର ମଣ୍ଡଳେ ।
ହୋଇବ ପଦ୍ମ ମୁକୁର । କାହିଁକି ତୁଳନା ତାର । ୧୫ ।
ମୋତେ ଗ୍ରହିବ ଶ୍ରଦ୍ଧାରେ । ନେଉଥିବ ନେତ୍ରାନ୍ତରେ ।
ଡ଼ୋଳା ଖେଳାଇ ଖେଳାଇ । ସେ ଯେ ଲଜ ଲଜ ହୋଇ । ୧୬ ।
ଅନଙ୍ଗ ତୁରଙ୍ଗ ଲୀଳା । ହେବ ଅବା କେତେ ତୁଳା ।
ମତ୍ତ ଖଞ୍ଜନ କୁରଙ୍ଗୀ । କାହିଁ ପାଇବ ସେ ଭଙ୍ଗୀ । ୧୭ ।

---

ପାଠାନ୍ତର—୧, ସଂସାରେ ନାହିଁ ଉପମା ।

---

୯— ଅନ୍ୟ ଯେଉଁ ରଜାମାନେ ରମେଶ୍ୱର ଦର୍ଶନକୁ ଆସିଥିଲେ ସେମାନେ ଲବଣ୍ୟବତୀ ପାଇବା ବିଷୟରେ ନିରଶ ହୋଇ ଫେରିଗଲେ ।

୧୧— ମେଦିନୀ ମଧ୍ୟେ ଏ ସୀମା-ପୃଥିବୀରେ ଶୋଭ ବିଷୟରେ ଏ ସିଂହଳ ସୀମା ( ଶେଷସୀମା, ପରକାଷ୍ଠା )

୧୨—କିନ୍ନରୀ-(ଦେବ ଗାୟିକା) ମାନେ ବୀଣା ଶବ୍ଦ ପରି ସିଂହଳରେ ଗାଉଥିଲେ । ସେହି ଗୀତକୁ ବାଳା (କେମା)ର ବାଣୀ (ଗୀତ) ଏହିପରି ହୋଇଥିବ ବୋଲି ବିଚାରିଲ ।

୧୪—ଚାଟୁ- କାମୀର ବିନୟ ବଚନ;

୧୫- ସନ୍ଦର୍ଭ-ମନୋହାରୀତା;

୧୬—ଅନଙ୍ଗ (କନ୍ଦର୍ପ) ଏ ତୁରଙ୍ଗ ଲୀଳା (ଘୋଡ଼ାରେ ଚଢ଼ି ଶୀଘ୍ର ଯିବାର ଯେ ଭଙ୍ଗୀ);

ଯେଉଁ ଭଙ୍ଗୀ ଅନୁସରି । ଭୃଙ୍ଗ କମଳେ ବିହରି ।
ଜୀବୋପଜ କାଟେ ଚଢେ । ଇଚ୍ଛାରେ ଭୁଜଙ୍ଗ ଖେଳେ । ୧୮ ।
ଗ୍ରହି କି ସନ୍ତୋଷ ହେବି । ସବୁ ଚୁମ୍ବନ ମୁଁ ଦେବି ।
ନେବ ମୁଣ୍ଡ ଆଢ଼େ କରି । ତନୁରେ ପୁଲକ ଭରି । ୧୯ ।
ସୁବର୍ଣ୍ଣ ପନସ ସମ । ଦିଶୁଥିବ ମନୋରମ ।
ଭଜିବି ପକାଇ ହୃଦେ । କି କାର୍ଯ୍ୟ ଇନ୍ଦୁ ସମ୍ପଦେ । ୨୦ ।
ଏମନ୍ତ ଭାବନା ବେଳେ । ମାଳାକାର ନାରୀ ମିଳେ ।
ବହିଛି ଫୁଲ ଚନ୍ଦନ । ପ୍ରୀତି ଯୁକ୍ତ ବାଣୀମାନ । ୨୧ ।
ଶୁକ ଯେ ଦେଲା ଚିହ୍ନାଇ । ଆନନ୍ଦ ପୁଂସ ଅନାଇ ।
ଶୋଭ ସେ ଚନ୍ଦନ ଫୁଲେ । ଅଙ୍ଗକୁ କଲା ଚପଳେ । ୨୨ ।
ବୋଇଲା ଏ ଦ୍ରବ୍ୟେ କର । ଜୀବନ ପ୍ରଭୁର ମୋର ।
ଲଗି ଥିବାରୁ ଶୀତଳ । କରିବ ବିରହାନଳ । ୨୩ ।
ନୋହିଲେ ଏ ଦ୍ରବ୍ୟ ମାନେ । ଦହୁଥିଲେ ନିଶିଦିନେ ।
ଚତୁର ହସିଲା ହୋଇ । ମଧୁରେ ଭଷିଲା ତହିଁ । ୨୪ ।
ଏହି ବଚନରେ କିଣି । ପକାଇଲା ରମାମଣି ।
ସୂଚିଶରେ ଭେଦେ ଉର[୨] । ଗୁଣବନ୍ତ ମାଳାକାର । ୨୫ ।

---

ପାଠାନ୍ତର—[୨], ମାର ।

---

୧୮- ଯେଉଁ ଚକ୍ଷୁ ଭଙ୍ଗୀକି ଅନୁସରି (ଆଖି ଯେପରି ଚଞ୍ଚଳ ଗତି କରୁଛି ତାକୁ ଅନୁକରଣ କରି); ଇଚ୍ଛାରେ—ମନକୁ;

୧୯—ଆଢ଼େ କରି—ଆଢ଼େଇକରି; ପୁଲକ—ରୋମାଞ୍ଚ;

୨୦—ରୋମାଞ୍ଚରେ ସୁବର୍ଣ୍ଣ (ହଳଦିଆ) ପଣସ ପରି ଦିଶୁଥିବ; କି କାର୍ଯ୍ୟ—କି ଲଭ;

୨୧—ମାଳାକାର ନାରୀ—ମାଳୁଣୀ; (ଚତୁର) [୧୨ଶ ଛାନ୍ଦ ୩୬ ପଦ ଦେଖ]

୨୨—ଅଙ୍ଗକୁ ଶୋଭ (ସୁନ୍ଦର) କଲା; ଚପଳେ—ଶୀଘ୍ର;

୨୩-ଜୀବନ ପ୍ରଭୁ—(ପ୍ରିୟା)ର କର (ହାତ) ଲଗି ଥିବାରୁ;

୨୪—ହସିଲା ହୋଇ—ହସ କରି;

୨୫—ଏ ରଜାପୁଅ, ରମାମଣି ( ଆମ ଜେମା ) ତାକୁ କିଣି ପକାଇଲା । ଏ ରଜାପୁଅ ବଡ଼ ଗୁଣବନ୍ତ ମାଳାକାର, କାହିଁକି ନା ସୂଚିପରି ଶରରେ ଉର ( ମର୍ମସ୍ଥଳକୁ ) ଫୋଡ଼ି ଦେଉଛି—ମାଳି ଯେପରି ଫୁଲକୁ ଫୋଡ଼େ ।

ଏ ବିଧିରେ ନିତି ନିତି । ବୃଦ୍ଧି ହେଲ ବେନି ପ୍ରୀତି ।
ଶୁଣିମା ଏଥି ଉତ୍ତାରୁ । ମହାଦେବୀଙ୍କ ଆଜ୍ଞାରୁ । ୨୬ ।

ମାତାମହୀ ପୁରୁଁ ଆସି । ଥିଲ ଯେ ଜରତା ଦାସୀ ।
କଉତୁକୀ ନାମ ତାର । ପରିହାସ ସ୍ୱଭବର । ୨୭ ।

ବଶୀ କରଣାଦି ବିଧି । ଜାଣଇ ନାନା ଔଷଧି ।
ଜେମାପୁରକୁ ଗମନ । କହଇ ଯନ୍ତ୍ର ବିଧାନ । ୨୮ ।

ସଖୀମାନଙ୍କୁ ବସାଇ । ହେଳା କଥା ଏ ନୁହଇ ।
ଜେମା କ୍ଷୀଣ କଳେବର । ଅତି ବଢ଼ୀଆର ବର । ୨୯ ।

ସଙ୍ଗେ କେହି ବିହରିବ । ଏମନ୍ତ ତୁମ୍ଭେ କରିବ ।
ଦେବ ସୀତା ମେଥି କ୍ଷୀରେ । ନିତି ପ୍ରଭତ କାଳରେ । ୩୦ ।

ବିଦାର୍ଯ୍ୟା ଚୂର୍ଣ୍ଣ ଦିବସେ । ରବି କରେ ଥୋଇ ତୋଷେ ।
ମଧୁ ନବନୀତ ଯୁକ୍ତେ । ଅଶନକୁ ଦିଅ ରତ୍ତେ । ୩୧ ।

ମନ୍ତ୍ରୀଜା ବୋଇଲ ଶୁଣି । ଶାଣେ କ୍ଷୀଣ ହେଲେ ମଣି ।
ଶୋଭ କି ତୁଟଇ ତାର । ମନରେ କର ବିଗ୍ଭର । ୩୨ ।

---

୨୬—ଏ ବିଧିରେ—ଏହିପରି କାର୍ଯ୍ୟ ମାନଙ୍କରେ ବେନି ପ୍ରୀତି—(କୁମାର ଓ ଜେମାଙ୍କର ପ୍ରୀତି) ବଢ଼ିଲ । ଏଥି ଉତ୍ତାରୁ ଅନ୍ୟ କଥା ଶୁଣିବା ହୁଅନ୍ତୁ—ପାଠକ ମାନେ । ମହାଦେବୀ—ରାଣୀ, ଜେମାଙ୍କ ମା;

୨୭—ଜରତା ଦାସୀ—ବୁଢ଼ୀ; ପରିହାସ ସ୍ୱଭବ—ଥଟା କରିବା ପ୍ରକୃତି । ମାତାମହୀ ସଙ୍ଗେ ନାତୁଣୀର ପରିହାସ ଚଳେ ।

୨୮—ସେ କୌତୁକୀ, ବଶୀ କରଣ—(ପୁରୁଷକୁ ବଶ କରିବା ପ୍ରଭୃତି) ବିଧି (କାର୍ଯ୍ୟ) ପାଇଁ ନାନା ଔଷଧ ଜାଣେ । ଯନ୍ତ୍ର ବିଧାନ—ଜେମାଙ୍କୁ ଯନ୍ତ୍ର କରିବାର ବିଧି ସବୁ ।

୩୦—କେମନ୍ତ—କିପରି, ସୀତା—ଶାକର; କ୍ଷୀରେ—ଦୁଧରେ;

୩୧—ବିଦାର୍ଯ୍ୟା—ବିଦାରୀ ମୂଳ (ଏକ ପ୍ରକାର ଶୁଖିଲ ମୂଳ) "ବିଦାର୍ଯ୍ୟା ଦ୍ୟାସ୍ତୁ ମୂଳେପି" ଇତ୍ୟମରଃ; ରବି କରେ—ଖରରେ; ମଧୁ—ମହୁ; ନବନୀତ—ଲହୁଣୀ; ଅଶନ—ଖାଇବାକୁ;

୩୨—ଶାଣେ—ମଣି ଶାହାଣ ଦିଆ ହୋଇ ସରୁ ହେଲେ ।

ଗଜ ବଳବନ୍ତ ହୋଇ । ଅଙ୍କୁଶ କି ନ ମାନଇ ।
ଶଶୀ କ୍ଷୀଣ ଯେ ହୁଅଇ । କଳା ତା ବୃଦ୍ଧି କରଇ ।୩୩।
ପ୍ରଥମା ବୋଇଲ ତେବେ । ଏମନ୍ତ କର ଗୋ ଏବେ ।
ଖଡ଼୍‌ଗ ସାଧନ ବସର । କର୍କଶ ବଲ୍ଲଭ କର । ୩୪ ।
ତିଳ ତୈଳ ଦାଡ଼ିମ୍ବର । ରଷ ଯୁତ ତହିଁ କର ।
କର୍ପାସ ତୁଳାରେ ଦେବ । ଉରଜ କଠିନ ହେବ । ୩୫ ।

ଦ୍ୱିତୀୟା ବୋଇଲ ଶୁଣ । ଯଉଁ ଉରଜ କଠିନ ।
କମଠ ପୃଷ୍ଠ ସ୍ୱଭବ । ମେରୁ ଗର୍ବ କରେ ଖର୍ବ । ୩୬ ।
କାହିଁକି ଏହା କରିବା । ନାୟକ କର ପୀଡ଼ିବା ।
ପ୍ରଥମା ବୋଇଲ ଶୁଣି । ଏମନ୍ତ କର ଗୋ ପୁଣି । ୩୭ ।
ଗନ୍ଧ ଉପଳ ବିଡ଼ଙ୍ଗ । କଟୁ ତୈଳ କରି ସଙ୍ଗ ।
ଲେପନ କେଶେ କରିବ । ଅତ୍ୟନ୍ତ କୁଟିଳ ହେବ । ୩୮ ।
ସୈନ୍ଧବ ପିପ୍‌ପଳୀ ନୀଳୀ । ଚୂରି ବାସେ ଛାଣି ଦଳି ।
ଲେପନ କରିବ କେଶେ । ଅତ୍ୟନ୍ତ ପ୍ରଲମ୍ବ ଆଶେ । ୩୯ ।

ଦ୍ୱିତୀୟା ବୋଇଲ ଭଲ । କୁଟିଳ ପ୍ରଲମ୍ବ ବାଳ ।
ନଦୀ ଲହରୀ ଭ୍ରମରେ । ବିବନ୍ଧ କାଳେ ଧିକ୍‌କାରେ । ୪୦।

---

୩୩—କଳା—ଚନ୍ଦ୍ରର ଷୋଳ ଭାଗରୁ ଭାଗେ; ଏହି ଦୁଇ ଉପମାରେ ଅତି ଦୋଆର ବର ଏ ଅଟାକୁ ମଧ୍ୟ କାଟି ଦେଇ ।

୩୪—ପ୍ରଥମା—କୌତୁକୀ; ବଶର-ବଶରୁ ହେତୁରୁ; କର୍କଶ—ଟାଣୁଆ; ବଲ୍ଲଭ-ବର;

୩୫—ତିଳ ତୈଳ (ରଶି ତେଲ) ଡାଳିମ୍ବ ରସରେ ମିଶାଇ ତହିଁରେ କପା ତୁଳା ଓଦା କରି ସ୍ତନ ଉପରେ ଦେଲେ ସ୍ତନ କଠିନ ହେବ ।

୩୬—ଦ୍ୱିତୀୟା- ମନ୍ତ୍ରୀ ଝିଅ କାମକଳା, କମଠ ପୃଷ୍ଠ—କଇଁଚ ପିଠି;

୩୭—ନାୟକ—ବର;

୩୮-ଗନ୍ଧ-ଚନ୍ଦନ; ଉପଳ—ପଦ୍ମକୂଜ; କଟୁ ତୈଳ-ସୋରିଷ ତେଲ; ଗନ୍ଧ ଉପଳ—ଗନ୍ଧ ପଲାଶୀ (ହଳଦୀ) କୁଟିଳ—କୁଞ୍ଚୁ କୁଞ୍ଚିଆ;

୩୯—ସୈନ୍ଧବ—ସୈନ୍ଧବ ଲୁଣ; ନୀଳୀ - ନେଳୀ (ଧୋବା ମାନେ ଯେଉଁ ନେଳୀ ବ୍ୟବହାର କରନ୍ତି) ବାସେ—କନାରେ; ପ୍ରଲମ୍ବ-ଲମ୍ବା; ଆଶେ—ହେବା ପାଇଁ;

୪୦—ବିବନ୍ଧ କାଳେ—ଫିଟାଇ ଦେଇବେଳେ;

ବନ୍ଧନେ ଜଗତ ଜନ । ମନ କରଇ ବନ୍ଧନ ।
କି ହୋଇବ ଅଧିକରେ । ବିଗ୍ଭର କର ମନରେ । ୪୧ ।

ପ୍ରଥମା କଲା ଉତ୍ତର । ମୁଖବାସକୁ ବିଗ୍ଭର ।
ଜାତିଫଳ ନାଗେଶ୍ୱର । ଗୁଡ଼ତ୍ୱକ ଘନସାର । ୪୨ ।

ଅଳାଇଚ ନଖୀ ଭଲି । ପାନେ ଦିଅ ବିଡ଼ି କରି ।
ଦ୍ୱିତୀୟା ବୋଲେ କି କାର୍ଯ୍ୟ । ଯହିଁ ଇପନ ଅମ୍ଳୁକ ।୩୪।

ଶ୍ରୀକୃଷ୍ଣ ପଦ ତୁଳସୀ । ପଲ୍ଲବ ପରାଯ ବାସି ।
ଆଘ୍ରାଣେ ପରମାନନ୍ଦ । ଲଭିବ ପୁଂସ ମିଳିନ୍ଦ । ୪୪ ।

ପୁଣି ଯେ ପ୍ରଥମା ଭାଷେ । ଶ୍ରମ ସ୍ୱେଦ ଘନ୍ଧ ନାଶେ ।
କର ଏହି ଉପଗ୍ଭର । ଚନ୍ଦନ ନାଗ କେଶର । ୪୫ ।

ଅଭୟା ହରିଦ୍ରା ସଙ୍ଗେ । ଲେପନ କର ଗୋ ଅଙ୍ଗେ ।
ଦ୍ୱିତୀୟା ବୋଲେ କି କହ । ଯହିଁ ତନୁ ମହ ମହ । ୪୬ ।

ପଦ୍ମପ୍ରାୟ ବାସୁଥାଇ । ତହିଁ ଦୁର୍ବାସନା କାହିଁ ।
କସ୍ତୁରୀଗନ୍ଧା ବନିତା । ଏଣୁ ସେ ଗନ୍ଧର୍ବସତ୍ୱା । ୪୭ ।

ଯା ଅଙ୍ଗ ଗଉର ଝଳି । ନ ପାଇ ଅଛି ବିଜୁଳି ।
ଏଣୁ ଲକ୍ଷଣ ବିଗ୍ଭରି । କହି ଗଇରିକ ଗୋରୀ । ୪୮ ।

---

୪୧–ବନ୍ଧନେ–ବନ୍ଧା ହେଲବେଳେ;

୪୨–ଘନସାର କର୍ପୂର; ଗୁଡ଼ତ୍ୱକ–ଦ୍ରାଲଚିନି;

୪୩–ନଖୀ–ଏକ ପ୍ରକାର ବାସ ମସଲା; ବିଡ଼ି କରି-ଖିଲ କରି (ଫିକା କରି ନୁହଁ);

୪୪–ମିଳିନ୍ଦ–ଭ୍ରମର;

୪୫–ନାଗକେଶର ନାଗେଶ୍ୱର ;

୪୬–ଅଭୟା–ହରିଡ଼ା ; ହରିଦ୍ରା–ହଳଦୀ;

୪୭–କସ୍ତୂରୀଗନ୍ଧା–ଯାହା ଦେହର ବାସନା କସ୍ତୁରୀ ପରି; ଅଷ୍ଟନାୟିକାରୁ ଗୋଟିଏ ପ୍ରକାର ନାୟିକାକୁ ଗନ୍ଧର୍ବସତ୍ୱା ନାୟିକା କହନ୍ତି । ଯଥା–

ହରିଣ ଚପଳ ଦୃଷ୍ଟିର୍ନୃତ୍ୟ ଗୀତାନୁରକ୍ତା,
ମଧୁର ବହୁଳ ବୃଷ୍ଟି ର୍ଗନ୍ଧମାଲ୍ୟାନୁରକ୍ତା ।
ଶିଶିର ସୁରଭିଗାତ୍ରୀ କ୍ରୀଡ଼ିତା ପ୍ରେମ ପାତ୍ରୀ
ଭବତି ରୁଚିର ମୂର୍ତ୍ତି ର୍ସୈବ ଗନ୍ଧର୍ବସତ୍ୱା–ଇତି ପଞ୍ଚସାୟକଃ ।

୪୮–ଗୈରିକ–ସୁବର୍ଣ୍ଣ ;

କଥାରେ ନ ପାରି ଜିଣି । ପ୍ରଥମା ଏମନ୍ତ ଭଣି ।
ନବୀନ ଯୁବତୀ ଏହି । ରତି ଭବ ଜାଣି ନାହିଁ । ୪୯ ।
କାମ ଶାସ୍ତ୍ର ପୋଥି ହସ୍ତେ । ଦିଅ ବୁଝୁଥାଉ ନିତ୍ୟେ ।
ବନ୍ଧ ଚିତ୍ର ଭିତ୍ତି ଯହିଁ । ବସିବା ଶୋଇବା ତହିଁ । ୫୦ ।
ପ୍ରତିକ୍ଷଣେ କରୁଥାଉ । କୁସୁମ ସମୟ ନେଉ ।
ଶୁଣି ଅପର ହସିଲା । ସଧୀରେ ବାଣୀ ଭଷିଲା । ୫୧ ।
ଶିଖୀ ଚିତ୍ର ହଂସ ଶ୍ୱେତ । କେ କରିଛି ଯେନ ଚିତ୍ତ ।
ଯାହା ପଢାଇଲା ସାରୀ । ସ୍ମର ଶାସ୍ତ୍ର ଅର୍ଥ କରି । ୫୨ ।
ତା ହାତେ ପୋଥି ଦେବାକୁ । ଶୁଣିଲଇଁ ଅଭଗ୍ୟକୁ ।
ଶୁଣି ସେ ହୋଇ ମଉନ । ଚଳିଲା ରାଣୀ ସଦନ । ୫୩ ।
ଶ୍ୟାମ କମଳ ଶ୍ୟାମଳ । କପଟ କମଳ କାଳ ।
ଉପଇନ୍ଦ୍ର ବୀରବର । ଚିନ୍ତେ ଚିତ୍ତେ ନିରନ୍ତର । ୫୪ ।

---

୫୦—ବନ୍ଧ ଚିତ୍ର ଭିତ୍ତି—[ ୪ର୍ଥ ଛାନ୍ଦ ୩ ପଦ ଟୀକା ଦେଖ । ]

୫୨—ଶିଖୀ ( ମୟୂରକୁ) କିଏ ଚିତ୍ର ( ନାନା ରଙ୍ଗ ଯୁକ୍ତ ) କରିଛି ? ହଂସକୁ କିଏ ଶ୍ୱେତ ( ଧଳା ) କରିଛି ? ସେହି ଜେମାକୁ ରତି ଭବ ଶିଖାଇଛି ।

ଯେନ ଶୁକ୍ଳା କୃତାହଂସାଃ ଶୁକାଶ୍ଚ ହରିତୀକୃତାଃ
ମୟୂରାଶ୍ଚିତ୍ରିତା ଯେନସ ତେ ବୃତ୍ତିଂ ବିଧାସ୍ୟତି— ଇତି ବଚନଂ ।

ଯାହା—( ଯେଉଁ ଜେମା ) ଶିଖାଇଥିବା ସାରୀ ମଧ୍ୟ ସ୍ମରଶାସ୍ତ୍ର ( ରତିଶାସ୍ତ୍ର ) ଅର୍ଥ କରୁଛି ।

୫୩—ସେ ( କୌତୁକୀ ); ମୌନ—ତୁନୀ ହୋଇ; ସଦନ—ଘର;

୫୪—ଶ୍ୟାମ କମଳ—( ନୀଳ ପଦ୍ମ, ଇନ୍ଦିବର ) ପରି ଶ୍ୟାମ ( ସୁନ୍ଦର ); କପଟ କମଳ ( ମାୟାମୃଗ ) ର କାଳ ( ହନ୍ତା ) ।

—୦—

# ବିଂଶ ଛାନ୍ଦ

## ( ଲାବଣ୍ୟବତୀ ବିବାହ )

ରାଗ–କଳଶା

ଏଥୁ ଅନନ୍ତରେଁ ଶୁଣ ସୁବୁଦ୍ଧି କଳାପ ।
ଭୃତ୍ୟେ ନିର୍ମାଣିଲେ ଛାୟା-ମଣ୍ଡପ ମଣ୍ଡପ ହେ ।୧।
ଛାୟାମଣ୍ଡପ ବେଢ଼ିଲା ପରି ପରିବାରୀ ।
ମଣ୍ଡପ ଯେମନ୍ତ ତହିଁ ପ୍ରଧାନ ସୁନ୍ଦରୀ ଯେ ।୨।
ସେ ତମାଳ ଶାଖା କେଶୀ ଏ ଚାମର କେଶୀ ।
ସେ ପୁଷ୍ପ ଗୁଚ୍ଛରେ ଏ ମୁକ୍ତା ଗୁଚ୍ଛେ ବସି ଯେ ।୩।
ସେ ନାରିକେଳ ଉରଜ ଏ କଳଶ ସ୍ତନୀ ।
ସେ ଦନ୍ତ କମନୀୟା ଏ ହୀରକ ରଦନୀ ଯେ ।୪।
ସେ ପଲ୍ଲବ ଅଧରୀ ଏ ବିଦ୍ରୁମ ଅଧରୀ ।
ସେ ପତନୀ ବାସେ ଶୋଭେ ଏହା ବାସ ଜରି ହେ ।୫।
ସେ କସ୍ତୁରୀ ଚିତ୍ରକେ ଏ ମିହ୍ନା ଚିତ୍ରେ ଶୋହି ।
ସେ ବ୍ୟଞ୍ଜନେ ରଞ୍ଜନ ଦର୍ପଣ ମୁଖୀ ଏହି ଯେ ।୬।

---

୧– ସୁବୁଦ୍ଧି କଳାପ–ପଣ୍ଡିତ ସମୂହ, ପଣ୍ଡିତ ଭୂଷଣ "କଳାପୋ ଭୂଷଣେ ବର୍ହେ, ତୂଣୀରେ ସଂହତାବପି । କାଞ୍ଚ୍ୟାଂ ସମୂହେ ଚ" ... "ତୂଣେକାଞ୍ଚି ସଂମୂହଯୋଃ" ଛାୟା ମଣ୍ଡପ–ଛାମୁଣ୍ଡିଆ; ମଣ୍ଡପ–ଜନାଶ୍ରୟ, ଲୋକେ ରହିବା ସ୍ଥାନ ;

୨– ମଣ୍ଡପ ଚାରିପଟେ ଛାମୁଣ୍ଡିଆ ଘେରି, ସୁନ୍ଦରୀ ସ୍ତ୍ରୀ ଚାରିପଟେ ପରିବାରୀ ( ଦାସୀ ମାନଙ୍କ ) ପରି ଦିଶୁଛି ।

୩–୬–ମଣ୍ଡପ ହେଲା ସୁନ୍ଦରୀ ( ବଡ଼ ଘରର ସ୍ତ୍ରୀ ) ଛାମୁଣ୍ଡିଆ ହେଲା ପରିବାରୀ–ଏ ଉପମା ଚାଲିଛି, ସବୁଠାରେ ସେ ( ପରିବାରୀ ଛାମୁଣ୍ଡିଆ ) –ଏ ( ସୁନ୍ଦରୀ ବା ମଣ୍ଡପ ); ତମାଳ ( ସତ୍ୟାସ୍ପା ) ଶାଖା ( ଡାଳ ) ଛାମୁଣ୍ଡିଆର କେଶପରି ; ଏ ତ ମାଳକେଶୀ ( ଫୁଲମାଳା କେଶରେ ଯାହାର ) । ଛାମୁଣ୍ଡିଆରେ ଫୁଲଗୁଚ୍ଛ ( ପେନ୍ଥା ଓ ମାଳ ) ମଣ୍ଡପରେ ମୁକ୍ତାମାଳ ଦିଆ ହୋଇଛି । ଛାମୁଣ୍ଡିଆରେ ନାରି-

ଏମନ୍ତ ଦେଖି ସିଂହଳପତି ତୋଷଭର ।
କଥନୀୟ ନୁହଇ ଚ ଭିଆଣ ସମ୍ଭାର ଯେ । ୭ ।
କେତେ ଦିନେ ପରବେଶ ଶ୍ରୀହରି ବାସର ।
ଉତ୍ସବେ ଅତି ଉତ୍ସୁକ ହେଲେ ନରେଶ୍ୱର ଯେ ।୮।
ପ୍ରତିଦ୍ୱାରେ ରମ୍ଭାତରୁ ଦିବ୍ୟ ତୋରଣାମାନ ।
ରମ୍ଭାପରି ବରନାରୀ ମଙ୍ଗଳ ଗାୟନ ଯେ । ୯ ।
ପ୍ରଦୋଷ ନାଶରେ କଲେ ଗନ୍ଧକ୍ଷଣ ବିଧି ।
ଭୂଦେବ ନନ୍ଦିନୀ ସାତ ପାଟ କସ ପିନ୍ଧି ହେ ।୧୦।

---

କେଳ ( ନଡ଼ିଆ ) ଓହଳା ହୋଇଛି । ସେହି ନଡ଼ିଆ ତାର ଉରଜ ( ସ୍ତନ )ପରି ; ମଣ୍ଡପରେ କଳଶ ( ପୂର୍ଣ୍ଣକୁମ୍ଭ )ବସିଛି । ସେଥିରେ ହାତୀଦାନ୍ତରେ କାମ ହୋଇଛି ; ଏଥିରେ ହୀରାରେ କାମ ହୋଇଛି । ସେଥିରେ ପଲ୍ଲବ ( କଅଁଳ ପତ୍ର ) ଏଥିରେ ବିଦ୍ରୁମ ( ପୋହଳା ) ଅଧର ପରି ହୋଇଛି । ସେଥିରେ ପଟନୀବାସ (ସାଧାରଣ ପାଟ ଲୁଗା ) ଏଥିରେ ସୁନା ରୁପାର ଜରିରେ କାମ କରା ଲୁଗା । ସେଥିରେ କସ୍ତୂରୀ ଚିତ୍ର ଏଥିରେ ମୀନା ( ମୀନାଫୁଲାରେ ଚିତ୍ର ହୋଇଥାଏ ଯେଉଁ ଅଳଙ୍କାର ସେଥିରେ ) ଶୋଭା ପାଉଛି । କସ୍ତୂରୀ ଚିତ୍ରଠାରୁ ମୀନାଫୁଲା ଚିତ୍ରର ଆଧିକ୍ୟ ବୁଝିବାକୁ ହେବ । ସେ ସେବ୍ୟ ଓ ଜନ ରଞ୍ଜକ ହୋଇଛି ( ଜଳାଶୟ ଥିବାରୁ ଲୋକେ ସେଥିରେ ବସିବାକୁ ଅନୁରକ୍ତ ହେଉଛନ୍ତି ) ଏ ଦର୍ପଣ ମୁହାଁ ( ଏହି ଦ୍ୱାରରେ ଦର୍ପଣ ଅଛି ) । କିମ୍ବା ସେ ବ୍ୟଞ୍ଜନ ରଞ୍ଜନ ହୋଇଛି ( ସେଥିରେ ଆଳଟ ଚାମର ପ୍ରଭୃତିର ବ୍ୟବସ୍ଥା ଅଛି–ଏପରି ଅର୍ଥ ହୋଇପାରେ ); ସେବ୍ୟା, ଜନ ରଞ୍ଜନ ସ୍ତ୍ରୀଠାରୁ ଦର୍ପଣ ମୁହାଁ ଅଧିକ ସୁନ୍ଦରୀ ଏହା ମଧ୍ୟ ଆଶୟ ।

୭– ଭିଆଣ ସମ୍ଭାର–ପୂଜା ନିମନ୍ତ୍ରଣ ଚର୍ଚ୍ଚା ବିଧି ସବୁ ।

୮– ଶ୍ରୀହରି ବାସର–ଏକାଦଶୀ ;

୯– ରମ୍ଭାତରୁ–କଦଳୀ ଗଛ; ତୋଣା–ତୋରଣା " ତୋରଣୋଽସ୍ତ୍ରୀ ବହିର୍ଦ୍ୱାରଃ"– ଇତ୍ୟମରଃ । ବରନାରୀ–ସୁନ୍ଦରୀ ସ୍ତ୍ରୀ ;

୧୦–ପ୍ରଦୋଷ ନାଶରେ–ସନ୍ଧ୍ୟାପରେ; ଗନ୍ଧକ୍ଷଣ ବିଧି–ବିବାହ ପୂର୍ବଦିନର ଅଧିବାସ ବନ୍ଦାପନା ବିଧି; ଭୂଦେବ ନନ୍ଦିନୀ–( ବ୍ରାହ୍ମଣ କନ୍ୟା ) ସାତଜଣ ପାଟ ପିନ୍ଧି ବନ୍ଦାପନା କଲେ ।

ନାପତୀ ନୂତନ ସୂର୍ପ ଗେପି ନାଗିକେଳ ।
ନବଚେଳ ପ୍ରଦୀପ ବଦରୀ ଦୂର୍ବାଦଳ ଯେ । ୧୧ ।
ଘେନି ବାହାରିଲେ ଉଚେ ହୁଳ ହୁଳି ଦେଇ ।
ଗୀତ ଇଛା ସୁଖେ ବୀଣା କି ଅବା ବାଜଇ ଯେ ।୧୨।
ବଜାଇ ବିବିଧ ବାଦ୍ୟ ଦେବୀ ଗନ୍ଧଷିଲେ ।
ସପତ ଗୃହ ବୃଳିଣ ସଲିଳ ତୋଳିଲେ ଯେ । ୧୩।
ବର ନଚରକୁ ଯାଇ କଲେ ଗନ୍ଧଷଣ ।
ସେହି ସଙ୍ଗେ ବରଦାସୀ ବଜାଇ ଘୋଷଣ ଯେ ।୧୪।
ଆସି କନ୍ୟା ମନ୍ଦିରେ ହୋଇଲେ ପରବେଶ ।
ଗନ୍ଧଷିଲେ ଦେଇ ଭୂଷା ଗନ୍ଧ ପୁଷ୍ପ ବାସ ଯେ । ୧୫ ।
ବାହୁଡ଼ି ଯାଇ ସେ ପୁରେ କଥା ପରସ୍ପରେ ।
ଏମନ୍ତ ସୁନ୍ଦରୀ ଥିଲ ଜନମି ସଂସାରେ ଯେ । ୧୬ ।
ଚନ୍ଦ୍ରମୁଖେ ନୟନ ଯୁଗଳ ଦେଲେ ରହି ।
ଶିଶୁ କୁରଙ୍ଗ ଯେମନ୍ତେ ପରତେ ହୁଅଇ ଯେ । ୧୭ ।

---

୧୧—ନାପିତୀ -ଭଣ୍ଡାରୁଣୀ; ନୂତନ ସୂର୍ପ- ନୂଆ କୁଲ. ଗେପ—ଶର; ନାରିକେଳ--ନଡ଼ିଆ; ନବଚେଳ-ନୂଆଲୁଗା; ପ୍ରଦୀପ—ସାତଦୀପ; ବଦରୀ—ବରକୋଳି ପତ୍ର; ଦୂର୍ବାଦଳ—ଦୂବ ;

୧୨—ସେମାନଙ୍କ ଗୀତ ଶୁଣିଲେ ମନେହୁଏ ନିଜ ଇଚ୍ଛା ଅନୁସାରେ ବୀଣା ବାଜି ଯାଉଛି କି ?

୧୩—ଗନ୍ଧଷିଲେ—ବନ୍ଦେଇଲେ; ସାତଘରୁ ପାଣି ଆଣିବାର ବୋଧହୁଏ ମାଇପି କଥାରେ ବିଧିଅଛି ।

୧୪---ବର ନଚର--ଏଠାରେ ବରର ବସାଘର; ପାଞ୍ଚକୁ ପାଞ୍ଚ, ଛଇଳକୁ ଛବିଳ କଲା ପରି ନଅରକୁ ନଚର ମଧ୍ୟ କେହି କେହି କହିଥାନ୍ତି । ବରଦାସୀ -ବରପକ୍ଷର ଦାସୀମାନେ । ବଜାଇ ଘୋଷଣ—ହୁଳହୁଳି ପକାଇ;

୧୫—ଭୂଷା—ଅଳଙ୍କାର; ଗନ୍ଧ—ଚନ୍ଦନ; ପୁଷ୍ପ—ଫୁଲ; ବାସ—ଲୁଗା; ଏପରି କନ୍ୟା ଘରୁ ନାରୀମାନେ ଯାଇ ବରଘର ଗନ୍ଧଷିବା ଏବଂ ବରଘରୁ ନାରୀମାନେ ଆସି କନ୍ୟାକୁ ଅଳଙ୍କାରଦି ଦେଇ ଗନ୍ଧଷିବା ରଜାଙ୍କ ଘର ବିଧି ବୋଲି ମନେ ହେଉଛି ।

୧୭-ମୁହଁ ଚନ୍ଦ୍ରରେ ଆଖି କୁରଙ୍ଗ ବା ଚନ୍ଦ୍ରର ମୃଗାଙ୍କ ପରି—ଏହି ଅଭିପ୍ରାୟ ।

ଢୋକା ଭୃଙ୍ଗ ଗୁଞ୍ଜି ଅନାଇଲେ ସେ ବଦନ ।
ବିକାଶ ସାରସ ପର ଦିଶେ ଶୋଭବନ ହେ ।୧୮।
ଦୁହିଁଙ୍କି ଏକାବେଳକେ ଗୁହିଁଲେ ଯେସନ ।
ମୋହନ ପାଶରେ ପଡ଼ି ଚଞ୍ଚଳ ଖଞ୍ଜନ ଯେ । ୧୯।
ଲାବଣ୍ୟ ସରରେ ମୀନ ଖେଳିଲାପରି ।
ପ୍ରମାଣ ଲାବଣ୍ୟବତୀ ତ୍ରିଭୁବନ ଶିରୀ ଗୋ ।୨୦।
ଦାସୀ କଥା ହେବାକୁ କୁମାର ସାବଧାନ ।
ତାକୁ ମୁଁ ପାଉଛି ବୋଲି ଉଲସାଇ ମନ । ୨୧ ।
କନ୍ୟାପୁରେ ଦ୍ୱିଜ ନାରୀ କଥା ପରସ୍ପରେ ।
ନ ଥିଲା ତ ଫୁଲଶର କନ୍ଦର୍ପ ହସ୍ତରେ । ୨୨ ।
କାହାକୁ ପ୍ରହାରିଛି କି ତେବେ ଥାନ୍ତା ଚାପ ।
ନୋହିଲେ ଦହିଚ କି କରିଛି ହର କୋପ ଗୋ ।୨୩।
ଜଣେ ବୋଇଲା ସେ ଅଛି ନ ପାରିଲୁ ଦେଖି ।
ଧନୁଶର ନାମଟି ହୋଇଛି ଭୂରୁ ଆଖି ଗୋ । ୨୪।
ଉମା କାର୍ଯ୍ୟେ ପାଇ ଯାଇଥିଲା ଅପଯଶ ।
ଏଣୁ ରମା ନାଶରେ କି ଅଛି ପଉରୁଷ ଗୋ ।୨୫।

---

୧୮–ସାରସ–ପଦ୍ମ; ପଦ୍ମ ଉପରେ ଭୃଙ୍ଗ ଏ ପାଖ ସେପାଖ ଉଡ଼ି ବୁଲୁଥିବାର ଉପମା ।
୧୯–ଦୁହିଁଙ୍କି–ମୁଁହ; ନେତ୍ର ଦୁହିଁଙ୍କି; ମୋହନ ପାଶ–ପୁରୁଷ ମୁଗ୍‌ଧକାରୀ ଜାଲ.
୨୦–ପ୍ରମାଣ–ନିଷ୍ଚୟ;
୨୧–କଥା ହେବାକୁ–କଥାବାର୍ତ୍ତା ହେବା ବେଳେ ସାବଧାନ (ଏକ ମନ ହୋଇ) ଶୁଣିଲା ।
୨୨–ସେ କୁମାର ସାକ୍ଷାତ କନ୍ଦର୍ପ କିନ୍ତୁ ତାହା ହାତରେ ଫୁଲଶର ନଥିଲା
୨୩–କାହାକୁ ଯେବେ ଆଗରୁ ପ୍ରହାରିଛି (ମାରି ଦେଇଛି) ବୋଲି ଶର ସରି ଯାଇ ଥିବାରୁ ଆଉ ତା ହାତେ ନାହିଁ । ତେବେ ଚାପ (ଧନୁ)ଟା ଥାନ୍ତା, ହରକୋପ ଧନୁଟାକୁ ପୋଡ଼ି ଦେବାରୁ ସେ ନାହିଁ ।
୨୪–ଆଉ ଜଣେ କହିଲା ଧନୁଶର ଏମାନଙ୍କର ଭୂରୁ । ଆଖି ଏ ନାମ ହୋଇ ଯାଇଛି ।
୨୫–ଉମା କାର୍ଯ୍ୟରେ ଯାଇ (ପାର୍ବତୀଙ୍କ ଠାରେ ହରଙ୍କୁ ମନାଇବ ବୋଲି ଯାଇ) ହର କୋପରେ ଦଗ୍‌ଧ ହୋଇ ଅପଯଶ ପାଇଥିଲା । ଏଣୁ ସ୍ତ୍ରୀ ମାରି ପୌରୁଷ ନାହିଁ ବୋଲି ଆଉ ମାରୁ ନାହିଁ । ଶିବ ପୁରାଣରେ ଅଛି ସିଦ୍ଧ ଯୋଗୀ ହରଙ୍କୁ ଉମାଙ୍କ-ଠାରେ ଭୁଲାଇ ପୁଅ ଜନ୍ମ କରାଇଲେ, ସେହି ପୁଅ ତାରକା ସୁରକୁ ମାରିବ ବୋଲି ଦେବତାମାନେ କନ୍ଦର୍ପକୁ ମହାଦେବଙ୍କ ଯୋଗ ଭଙ୍ଗ କରିବାକୁ ପଠାଇ ଥିଲେ ।

ନୃପସଚା ଚତୁରୀ ଉଭରିଲ୍ଲ ଯୁକତେ ।
ମଲ୍ଲଈଟି ଯେତେ ନବବୟସୀ ଜଗତେ ଗୋ ।୨୬।
ଏମନ୍ତ କଥା ଶ୍ରବଣେ ସୁନ୍ଦରୀ ଉନିନ୍ଦ୍ର ।
ସେ ମୋ ସଭୁ ଉବି ବଢ଼େ ଆନନ୍ଦ ସମୁଦ୍ର ଯେ ।୨୭।
ଏମନ୍ତ ରଜନୀ ଶେଷ ସମୟରେ ତହିଁ ।
କୋକିଳ ସ୍ନାନ ସେ ବର କନ୍ୟାଙ୍କୁ କରାଇ ଯେ ।୨୮।
ଦଧିଗୁଡ଼ ଭକ୍ତ ଭୁକ୍ତ ଅନୁରକ୍ତ ବଶେ ।
କନ୍ୟା ଲବଣ ଚଉଁରୀ ପୂଜିଲ୍ଲ ହରଷେ ଯେ ।୨୯।

---

କନ୍ଦର୍ପ ଶର ମାଇଲ୍ଲ । ତହୁଁ ମହାଦେବ ରାଗରେ ଗ୍ଚହିଁ ଦେଲେ ଏବଂ ତାଙ୍କ ମଝି ଆଖିରୁ ସେହି ରାଗରେ ନିଆଁ ବାହାରି କନ୍ଦର୍ପଙ୍କୁ ଜାଳି ପାଉଁଶ କରିଦେଲ୍ଲ । ସେକ୍ ନଲୁ ଓ ଶେଖ୍ ସୁଲତାନ ମହମ୍ମଦଙ୍କ ପ୍ରକାଶିତ ଲବଣ୍ୟବତୀ ପୁସ୍ତକରେ ୨୫ ଓ ୨୬ ପଦ ମଧ୍ୟରେ ତଳେ ଲେଖା ଯାଇଥିବା ଦୁଇଟି ପଦ ଦେଖାଯାଏ । କିନ୍ତୁ ଆମ୍ଭ ପାଖେ ଥିବା ଅନ୍ୟ କୌଣସି ପୁସ୍ତକ ବା ପୋଥିରେ ଏହା ମିଳୁ ନାହିଁ । ଏ ପଦ ଦୁଇଟି ମଧ୍ୟ ପୂର୍ଣ୍ଣ ରୂପେ ଏଠାରେ ଖାପ ଖାଇଲ୍ଲ ପରି ହୋଇଛି କି ନାହିଁ ସନ୍ଦେହ। ପଦ ଦୁଇଟି ଏହି—

ଭଜିବାର ନୋହେ କିଛି ଯେନ ଏହା ସତ
ସାକ୍ଷାତେ ଦେଖୁଛ ତାହା ରମା ଜର ଗତ ଗୋ ।।
ପୁଂସ ଧଇର୍ଯ୍ୟ ସମନା କରିବାରେ ହତ
ଘଟନା କରିଛି ଧାତା ହୁଏ ଏ ନିଶ୍ଚିତ ଯେ ।।

୨୬-ଏଠାରେ ଆୟଶ୍ଚ ସ୍ପଷ୍ଟ ହେଉ ନାହିଁ । କାରଣ ନୃପ ସୁତା (ଢେମା) ଏପରି ଉତ୍ତର କରିବା ସଙ୍ଗତ ନୁହେ । ହେଲେହେ ପର ପଦରେ 'ସୁନ୍ଦରୀ' ଥିବାରୁ ଏଠାରେ ? 'ନୃପସୁତା' ପଦ ସେହି ଅର୍ଥରେ ରହି ନ ପାରେ । ହୁଏତ ପଦଟିର ପାଠ ନୃପ ସୁତା ନୁହେ 'ମନ୍ତ୍ରୀସୁତା' ।

୨୭—ଉନ୍ନିଦ୍ର—ଅନିଦ୍ରାଃ

୨୮—କୋକିଳ ସ୍ନାନ- ବାଡୁଅ ସ୍ନାନ;

୨୯—ଦଧି ଗୁଡ଼ ଭକ୍ତ—ଦହି ଗୁଡ଼ ଭାତ; ଭୁକ୍ତ ଅନୁରକ୍ତ ବଶେ—ଖାଇସାରି; ଲୁଣ ସୋରିଷ ଆଞ୍ଜୁଳାରେ ନେଇ ବିବାହର ବାଟ ବରଣ ପରେ କନ୍ୟା ବର ଉପରକୁ ଫିଙ୍ଗେ । ତାହାକୁ ଲବଣ ଚଉଁରୀ ବା ଲୁଣ ଚଉଁରୀ କହନ୍ତି । "ଭକ୍ତ ମନ୍ଧୋନ୍ନ ମୋଦନଂ" —ଇତ୍ୟମରଃ ।

ଚଉଁରୀ ନୋହେ କରୁଛି ଗଉରୀକି ସେବା ।
ସୁପୁରୁଷ ଈଶ୍ୱର ସଙ୍ଗମ ମୋତେ ଦେବା ଗୋ ।୩୦।
ଦଣ୍ଡେ ଏ ବିଳମ୍ବ ନୋହୁ ବେଗେ ହୋଉ ଇଚ୍ଛା ।
ବୈଦ୍ୟ ଯଥା ମନାସିଲ ବ୍ୟାଧିବନ୍ତ ବାଞ୍ଛା ଗୋ ।୩୧।
ଏ ସମୟେ ପରବେଶ ନୃପତି ନନ୍ଦନ ।
ବିବିଧ ବାଦ୍ୟ ନାଦରେ ଦୁଆରେ ସଘନ ଯେ ।୩୨।
ସିଂହଳେଶ ଜ୍ୟୋତିଷ କହିଲ ଏହି କାଳ ।
ପ୍ରବେଶ ହେଲଟି ବିଭା ଅନୁକୂଳ ବେଳ ହେ ।୩୩।
ମୀନକେତୁ ନାମ ଭୃମିରକୁ ପଠିଆଇ ।
ଅଣାଇଲେ ସରଣୀ ବରଣ କରି ତହିଁ ଯେ ।୩୪।
ଜ୍ୟେଷ୍ଠ ଶୁକଳ ଦ୍ୱାଦଶୀ ସୋମବାର ହୋଏ ।
ସଙ୍କ୍ରାନ୍ତି କଳାକୁ ଭୋଗ ଦିବସ କୋଡ଼ିଏ ଯେ ।୩୫।
ସ୍ୱାତୀ ତାର ତୁଳଚନ୍ଦ୍ର ଶୁଭନାମେ ଯୋଗ ।
ସେ ଦିନ ବେଳର ଷଡ଼ଘଡ଼ି ହୋଏ ଭୋଗ ଯେ ।୩୬।
ରବି ବୁଧ ଶୁକ୍ର ମିଥୁନରେ ହୋଏ ସ୍ଥିତି ।
କକଡ଼ା ଲଗ୍ନରେ ମଗ୍ନ ଉଚ୍ଚେ ବୃହସ୍ପତି ଯେ ।୩୭।

---

୩୦–ଗୌରୀ– ପାର୍ବତୀ; –ଦେବୋଦେବୀ ହୁଅନ୍ତୁ;

୩୧–ବୈଦ୍ୟ ବ୍ୟାଧିବନ୍ତ (ରୋଗୀ)ର ଇଚ୍ଛା କଥା କହିଲା ପରି ହୋଇଛି ଏ ଯେଉଁ କାର୍ଯ୍ୟ ସେଥିରେ ଦଣ୍ଡେ ମାତ୍ର ବିଳମ୍ବ ନ ହେଉ ।

୩୨–ସଘନ–ମୁଖର, ଶବ୍ଦ ଗହଳ;

୩୩–ସିଂହଳେଶ–ସିଂହଳ ରାଜାଙ୍କ;

୩୪–ମୀନ କେତୁ ନାମକ ଜଣେ ଅବିବାହିତ ଲୋକକୁ ପଠାଇ ସରଣୀ ବରଣ–(ବାଟ ବରଣ) କରାଇଲେ । ବେଦିରେ ବସିବା ପୂର୍ବରୁ ପାଲିଙ୍କି ଉପରେ ଥାଇ କନ୍ୟା ପିତା ବରକୁ ବରଣ (ବେଦିକୁ ନିମନ୍ତ୍ରଣ) କରିବା ନାମ ବାଟ ବରଣ । ରାଜାଙ୍କ ଘରେ କନ୍ୟା ପିତା ବୋଧହୁଏ ନିଜେ ବାଟ ବରଣ କରନ୍ତି ନାହିଁ ।

୩୫–୩୯–ଏସବୁ ଫଳିତ ଜ୍ୟୋତିଷ ମତେ ବିବାହର ଶୁଭ କାଳ ବୁଝାଇ କୁହାଯାଇଛି । [୩ୟ ଛାନ୍ଦ ୪୧ରୁ ୪୬ ପଦ ଦେଖ ।] ସଙ୍କ୍ରାନ୍ତି କଳାକୁ–ସଙ୍କ୍ରାନ୍ତି ମାସରୁ; ଏଠାରେ ମାସକ ତିରିଶ କଳା ବା ବର୍ଷକ ବାରକଳା ବା ଅଂଶ ବୋଲି ଧରା ଯାଇଛି । ଜ୍ୟେଷ୍ଠ

ଚନ୍ଦ୍ର କେନ୍ଦ୍ରବର୍ତ୍ତୀ ତୁଙ୍ଗେ ଶନିଶ୍ଚର ମୀନେ
ମଙ୍ଗଳ ମଙ୍ଗଳ ତାର ତୃତୀୟରେ କନ୍ୟେ ଯେ ।୩୮।

ସର୍ଗଭାନୁ ମକରେ କରେ ବିଳାସକୁ ତୋଷେ ।
ଏହିକାଳେ ବର ବିଭାମଣ୍ଡପରେ ବସେ ଯେ ।୩୯।

ସର ଶଙ୍ଖ ଶଙ୍ଖ ବାଜେ ଅସଂଖ୍ୟ ମାଧୁରୀ ।
ଘଣ୍ଟ ପଟହ କଂସାଳ ତାଳ ତୂରି ଭେରୀ ଯେ ।୪୦।

କର୍ଣ୍ଣାଳ କାହାଳ ବିଜିଘୋଷ ବେଣୁ ଡ଼ମ୍ଫା ।
ମୁରଜ ଡ଼ିଣ୍ଡିମ ଦୁନ୍ଦୁଭିରେ ମହୀ କମ୍ପା ।୪୧।

ବୀଣା ରବା ତାଳୀ ତାଳ ମୃଦଙ୍ଗ ମର୍ଦ୍ଦଳ ।
ସର ମଣ୍ଡଳ ଅମୃତୀ ବାଏ ଗୁଣିକୁଳ ।୪୨।

ଗଣକ ଗଣ ମଙ୍ଗଳାଷ୍ଟକ ପଢ଼ୁଛନ୍ତି ।
ମଙ୍ଗଳଗୀତ ଗାବନ୍ତି ଗଣିକା ଯୁବତୀ ଯେ ।୪୩।

---

ସଂକ୍ରାନ୍ତି କଳା (ସୌର ମାନ ମାସର) ନାମ ବୃଷ କୋଡ଼ିଏ ଦିନ—ଏହି ଅର୍ଥ । ସ୍ୱର୍ଭାନୁ —ରାହୁ;

୪୦—୪୨—ବାଦ୍ୟ ମାନଙ୍କର ନାମ;—ଶଙ୍ଖ ଶଙ୍ଖ—ସେହି ସଂଖ୍ୟାରେ—ଅସଂଖ୍ୟ [ ୧୮ ଶ ଛାନ୍ଦ ୧୦ ପଦ ଟୀକା ଦେଖ । ] ଏଥିରେ କଂସାଳ, କର୍ଣ୍ଣାଳ, ବିଜି ଘୋଷ, ମୁରଜ; ଦୁନ୍ଦୁଭି, ସର ମଣ୍ଡଳ ପ୍ରଭୃତି କିପରି ବାଜା ତାହା ଜାଣି ହେଉନାହିଁ । ଘଣ୍ଟ—ଘଣ୍ଟା, ପଟହ—ଢୋଲ; ତୂରୀ -ଭେରୀ; କାହାଳ—କାହାଳୀ; ବେଣୁ—ବଂଶୀ; ଡ଼ମ୍ଫା—ଗଛର କାଠ ନଳ ତିଆର କରି ସେଥିରେ ଚମଡ଼ା ଛିଆଁଇ ଏହି ଯନ୍ତ୍ର ପ୍ରସ୍ତୁତ କରାଯାଉଥିଲା । ଗଞ୍ଜାମରେ ଏହା ଚଳୁଥିଲା । ବଳଦେବ ରଥ, କବିସୂର୍ଯ୍ୟ ଏହି ବାଦ୍ୟ ସଙ୍ଗେ ବୋଲା ହେବା ଭଳି କେତେକ ଡ଼ମ୍ଫା ଗୀତ ଲେଖିଥିଲେ । ପଣ୍ଡିତ କୁଞ୍ଜମଣି ଦାସଙ୍କ ସମ୍ପାଦିତ କବିସୂର୍ଯ୍ୟ ଗ୍ରନ୍ଥାବଳୀର ମୁଖବନ୍ଧ ଦେଖ । ମର୍ଦ୍ଦଳ —ମାଦଳ; ଅମୃତୀ—ତେଲଙ୍ଗୀ ବାଜା;

୪୩—ଗଣକ ଗଣ—ଜ୍ୟୋତିଷମାନେ; ଗଣିକା—ବେଶ୍ୟା; ମଙ୍ଗଳାଷ୍ଟକ—ଏଠାରେ ମଙ୍ଗଳ କାମନାର ଶ୍ଳୋକ । ଆଠଟି ଶ୍ଳୋକରେ ସଂସ୍କୃତରେ ଅନେକ ସ୍ତୋତ୍ର ? କବିତା ସବୁ ଲେଖାଅଛି । ତାକୁ ଅଷ୍ଟକ କହନ୍ତି । ସେହିପରି ପଞ୍ଚକ ଶତକ ପ୍ରଭୃତି ଶବ୍ଦ ମଧ୍ୟ ବ୍ୟବହାର ହୁଏ । ଏଠାରେ କିନ୍ତୁ ଖାଲି ଶ୍ଳୋକ ଅର୍ଥରେ ଅଷ୍ଟକ ପଦ ବ୍ୟବହାର ହୋଇଅଛି ।

ବନ୍ଦୀବୃନ୍ଦ ବନ୍ଦନା କରନ୍ତି ଅତି ଛନ୍ଦେ ।
ବେନି କୁଳ ପୁରୋହିତ ବସି କର୍ମ ରଚେ ଯେ ।୪୪।
ଏ କାଳେ ମୁଖ ଡ଼ିଣ୍ଡିମ ଶୁଭେ ଅନ୍ତଃପୁରେ ।
କୁମାର ବିଭାରେ ମାର କି ମୋ ମାରଣରେ ଯେ ।୪୫।
ଧନୁର୍ଗୁଣ ଟଙ୍କାରି ସରୋଷେ ଆସୁ ଅଛି ।
ବାଳା ସାହା ହେବାର କି ଜାଣିନାହିଁ କିଛି ଯେ ।୪୬।
ଏ ସମୟେ ପରିଚାରୀ ବାରିଜଗନ୍ଧାକୁ ।
ଲବଣ ଚଉରୀ ଅର୍ଥେ ଆଣିଲେ ସେଠାକୁ ଯେ ।୪୭।
ଅନ୍ତର ପାଟ ଅନ୍ତରେ ତରଳାକ୍ଷୀ ରହି ।
ତରଳ ନୟନ ଅନ୍ତେ ବଲ୍ଲଭକୁ ଚାହିଁ ଯେ । ୪୮ ।
ଲବଣ ତଣ୍ଡୁଳ ସହ ପୁରୁଷକୁ ମାରି ।
ବିଦ୍ୟୁପ୍ରାୟ ବାହୁଡ଼ିଲା ଚଞ୍ଚଳ ଚତୁରୀ ଯେ । ୪୯ ।
ଉଚ୍ଚାଟ ମନ୍ତ୍ର ଧୂଳି କି ପକାଇ ସେ ଯୁବା ।
ଚିତ୍ତ ଧରି ପଣନ୍ତରେ ବାନ୍ଧି ନେଲା କିବା ଯେ ।୫୦।
କୃଶକଟୀକି ପାଛୋଟି ଯାଅ ବୋଲି ମନ ।
ପଠିଆଇ ଦେଲା କିବା ରସିକ ରତନ ଯେ ।୫୧।

---

୪୪—ବନ୍ଦୀବୃନ୍ଦ-ଭାଟମାନେ; ବେନି କୁଳ—ବର କନ୍ୟା ଦୁଇ ପକ୍ଷର;

୪୫—ମୁଖ ଡ଼ିଣ୍ଡିମ—ହୁଳ ହୁଳି;

୪୬—ସରୋଷେ—ରାଗରେ;

୪୭—ବାରିଜ—ପଦ୍ମ;

୪୮—ଅନ୍ତର ପାଟ—ଲୁଣ ଚଉରୀ ବେଳେ ବର କନ୍ୟାଙ୍କ ମଧ୍ୟରେ ଯେଉଁ ପାଟ ଲୁଗା ଟଣା ହୋଇଥାଏ । ଏହି ଲୁଗା ଡ଼ିଆଇଁ କନ୍ୟା ବର ଉପରକୁ ଆଞ୍ଜୁଳାରେ ଲୁଣ ସୋରିଷ ଫିଙ୍ଗିଦିଏ । ତରଳ—ଚଞ୍ଚଳ; ତରଳ ନୟନ ଅନ୍ତେ—ଚଞ୍ଚଳ କଟାକ୍ଷରେ ।

୪୯—ଲବଣ ତଣ୍ଡୁଳ-ଏଠାରେ ସୋରିଷ ପରିବର୍ତ୍ତେ ତଣ୍ଡୁଳ (ଚାଉଳ) ଲେଖି ଅଛନ୍ତି । ବୋଧହୁଏ କୌଣସି କୌଣସି ଠାରେ ଲୁଣ ଚାଉଳ ପକାଇବାର ବିଧି ଥିବ ।

୫୦—ଉଚ୍ଚାଟ—[୧୦ ଛାନ୍ଦ ୨୭ ପଦ ଟୀକା ଦେଖ] କୁହୁକୀ ମାନେ ମନ୍ତ୍ର ଧୂଳି ପକାଇ ଜନ୍ତୁ ଓ ମନୁଷ୍ୟ ମାନଙ୍କୁ ଭୁଲାଇ ନେଇ ଯିବାର ପ୍ରବାଦ ଅଛି । ପଣନ୍ତ—ଲୁଗା କାନି;

ବହୁତ ବିନୟ ହୋଇ କହୁଛି ସେ ତାକୁ ।
ବିଳମ୍ବ ନକରି ଘେନି ଆସ ବନିତାକୁ ଯେ । ୫୨ ।
ବରକନ୍ଧ ଯଜ୍ଞୋପବୀତକୁ ଏହି କାଳେ ।
କନ୍ୟା ପାଶେ ନିବେଦଣ ଦ୍ୱିଜମାନେ କଲେ ଯେ ।୫୩।
ଚତୁରୀ ସେ ବିପ୍ରରିଙ୍କ ଆସିଛନ୍ତି ନେଇ ।
ଆପଣା ବ୍ୟାଜରେ ଯଜ୍ଞୋପବୀତକୁ ଦେଇ ଯେ ।୫୪।
ସେହିକ୍ଷଣି ରଙ୍ଗେ ଯେ କୁରଙ୍ଗେକ୍ଷଣୀ ବିଜେ ।
ବେଢ଼ିଛନ୍ତି ଚଉପାଶେ ସଜନୀ ସମାଜେ ଯେ ।୫୫।
ସୁବେଶିତ ବେଶବିଧି ନୋହିଲଇଁ କହି ।
ଅଳଙ୍କାର ଅଳଙ୍କାର ଯେଣୁ ଚନ୍ଦ୍ରମୁହୀ ଯେ । ୫୬ ।
ଧୀରେ ବିଭମଣ୍ଡପେ ପ୍ରବେଶ ଆସି ହେଲ ।
ବାମ ଦକ୍ଷିଣ ବିପ୍ରରି ନ ବସଇ ବାଳା ଯେ ।୫୭।
ବାମଦେବ ବାମ ବାମ ଆଗୁଁ ଅଛି ହୋଇ ।
ସତ ନ ବଳଇ କେହି ବାମ ହେବି ମୁହିଁ ଯେ ।୫୮।
ଏ ବିପ୍ରର କଲ ଭବି ପୁରୋହିତ ସୁତ ।
ବିଧାତା ବିଧାନ ଶ୍ଳୋକ ପଢ଼ିଲ ତ୍ୱରିତ ସେ ।୫୯।

---

୫୨—ତାକୁ—ମନକୁ

୫୩—କନ୍ଧ—କାନ୍ଧ; ଯଜ୍ଞୋପବୀତ—ପଇତା; ଅଳତା ସିନ୍ଦୂର ବେଳେ ଶାଶୁ, ବରକୁ ନୂଆ ପଇତା ଦେଇ ବରର ଯେଉଁ ପଇତାଟି କାଢ଼ି ନେଇ ଥାନ୍ତି ତାହା ଲୁଣ ଚଉରୀ ପରେ କନ୍ୟା କାନ୍ଧରେ ପକାଇ ଦିଆଯାଏ ।

୫୬—ଅଳଙ୍କାରର ଅଳଙ୍କାର (ଭୂଷଣ) ସ୍ୱରୂପ—ଅର୍ଥାତ୍ ଅଳଙ୍କାର ତା ଦେହରେ ଲଗିଲେ ସୁନ୍ଦର ହେବ ସେ ଅଳଙ୍କାର ପିନ୍ଧିଲେ ନୁହେ ।

୫୭—ବାମ—୧. ବାଁ ପଟ, ୨, ଅମଙ୍ଗଳ; ଦକ୍ଷିଣ—୧. ଡ଼ାହାଣ ପଟ, ୨. ମଙ୍ଗଳ; ଅତଏବ କେଉଁ ପଟେ ବସିବ ଠିକ୍ କରି ପାରିଲା ନାହିଁ ।

୫୮—ବାମଦେବ ବାମ—ମହାଦେବ ଶତ୍ରୁ, କନ୍ଦର୍ପ; ବାମ—ପ୍ରତିକୂଳ ହୋଇଛନ୍ତି; ମୁଁ କିପରି ଏହାଙ୍କର ବାମ ହେବି (ବାଁ ପାଖେ ବସିବି)

୫୯—ପୁରୋହିତ ସୁତ ଏହା ଜାଣି ପାରି ବିଧାତା ବିଧାନ (ବିବାହ ବିଧିରେ ବରର କେଉଁ ପଟେ କନ୍ୟା ବସିବାର ଲେଖା ଅଛି ସେହି) ଶ୍ଳୋକ ପଢ଼ି ଦେଲ । ସବୁ ଯଜ୍ଞ ଓ କର୍ମ ବିଧି ବିଧାତାର ବିଧାନ ବୋଲି ହିନ୍ଦୁର ବିଶ୍ୱାସ ।

ଶ୍ରବଣେ ବସିଲ ବର ସମୀପେ ବନିତା ।
ପୁରୁଷ ଘେନିଲ ଏ ତ ପରମ ପଣ୍ଡିତା ଯେ ।୬୦।
ବେଦୋକ୍ତ ମନ୍ତ୍ର ବିଧିରେ ଆରମ୍ଭିଣ କର୍ମ ।
କ୍ରମରେ ଉଦିତ କଲେ କାନ୍ତ କାନ୍ତା ନାମ ଯେ ।୬୧।
ବଶିଷ୍ଠ ଅରୁନ୍ଧତୀ ଶ୍ରୀରମ ସୀତା ପରି ।
ଶିବ ପାର୍ବତୀ ଏ ଲକ୍ଷ ସମାନକୁ କରି ଯେ ।୬୨।
ଦ୍ୱିଜେ ବିଜ୍ଞେ ନାରିକେଳ ବାଦୀ ଯେଣୁ ସ୍ତନେ ।
ବିଗ୍ରରିଣ ନିବେଶିଲେ ତାହାକୁ ଦହନେ ଯେ ।୬୩।
ମଧୁଶଯ୍ୟା କାଳରେ ଯେ ତେଜ୍ୟା କରିବାକୁ ।
ଲଜାହୋମ ନ କଲେଟି ଦହିଲେ ଲଜ୍ୟାକୁ ଯେ ।୬୪।
କାନ୍ତ କାନ୍ତା କରପଦ୍ମ କୋକନଦ ଶିରୀ ।
ଗ୍ରେଠୀ କରିଥିଲେ ବୋଲି କୁଶବନ୍ଧ କରି ଯେ ।୬୫।

---

୬୦–ଶ୍ରବଣେ–ଢେମା ଶୁଣିକରି–ଘେନିଲ–ବୁଝିଗଲ;

୬୧–ଉଦିତ କଲେ-କହିଲେ; କ୍ରମରେ–ପୁରଣ ଇତିହାସରୁ "ଯଥା ରମସ୍ୟ ସୀତା," 'ଯଥା ବଶିଷ୍ଠସ୍ୟ ଅରୁନ୍ଧତୀ" ଇତ୍ୟାଦି ଯାହା ବିବାହ କର୍ମରେ ବୋଲଯାଏ । ପର ପଦରେ ତାହା କୁହାଯାଇଛି । କାନ୍ତ କାନ୍ତା–ପତି ପତ୍ନୀ;

୬୩–ବିଜ୍ଞେ–ଜାଣିବାର ଥିବାରୁ; ବିବାହ ହୋମ ଶେଷରେ ଗୋଟିଏ ନଡ଼ିଆ ହୋମାଗ୍ନିରେ ପୋଡ଼ା ହୋଇ ରଖାଯାଏ । ମଧୁ ଶଯ୍ୟାରେ ସେହି ନଡ଼ିଆ ଭଙ୍ଗି ବର କନ୍ୟାକୁ ଖାଇବାକୁ ଦିଏ । ବ୍ରାହ୍ମଣ ମାନଙ୍କ ଘରେ ଦୁର୍ବାକ୍ଷତ ଘର ଦିନ ହୋମରେ ଏ କାର୍ଯ୍ୟ ହୁଏ,

ଦହନେ–ହୋମାଗ୍ନିରେ ପୋଡ଼ିବାକୁ;

୬୪-ଲଜା ହୋମ–ନିଆଁରେ କନ୍ୟା ଲିଆ ପକାଇ ଯେଉଁ ହୋମ କରେ;

୬୫–ହାତଗଣ୍ଠି ପଡ଼ିବାର ବର୍ଣ୍ଣନା ଏ; ବରର ହାତ ପଦ୍ମ ଶୋଭକୁ ଓ କନ୍ୟାର ହାତ କୋକନଦ (ରକ୍ତ ପଦ୍ମ) ଶୋଭକୁ ଗ୍ରେରି କରିଥିବାରୁ ତାକୁ କୁଶ ରୂପ ଦଉଡ଼ିରେ ବାନ୍ଧି ପକାଇଲେ କି । ଏହା ଅବିକଳ ନୈଷଧରୁ ଅନୁବାଦ କହିଲେ ଚଳେ । ଏହିପରି ଅନେକ ସ୍ଥଳରେ ନୈଷଧ ଓ ଅଳଙ୍କାର ଶାସ୍ତ୍ରରୁ ଉଦାହରଣ ମାନଙ୍କରୁ ଉପେନ୍ଦ୍ରଭଞ୍ଜ ଗ୍ରହଣ କରି ଅଛନ୍ତି । ଏ ଗୋଟିଏ ଉଦାହରଣ ମାତ୍ର । ଅତି ସ୍ପଷ୍ଟ ଥିବାରୁ ତଳେ ନୈଷଧରେ ନଳ ଦମୟନ୍ତୀଙ୍କ ହାତଗଣ୍ଠି ଶ୍ଳୋକଟି ଦିଆଗଲ:—

ପଗଭବ ଅନ୍ତେ ଦ୍ୱିଜ ସୁତା ଫେଡ଼ି ଦେଲ ।
ମନୋ ଭବ-ପଗଭବ ଯାହା ହୋଇ ଥିଲ ଯେ ।୬୬।
ଛୁଆଁଇଲେ କୁମାରକୁ କୁମାରୀ ଚରଣ ।
ମନ୍ମଥ ଭୟରୁ ନିଷ୍ଟେ ପଶିଲ ଶରଣ ଯେ । ୬୭ ।
କମ୍ବୁରେ ଅମ୍ବୁ ଟୋକିଣ ଦେଲ କନ୍ୟା ତାତ ।
କଣ୍ଠକୁ ସମାନ ନୋହି କି ଅବା ଗେଦିତ ଯେ ।୬୮।
ବିଭବିଧ୍ର ଶେଷ ଯହୁଁ ହେଲ ଏ ବିଧିରେ ।
ବର କନ୍ୟା ଘେନିଗଲେ ଅବଗେଧ ପୁରେ ଯେ ।୬୯।
ଆଜ ଯୁତ ହେବେ ବେନି ଏ ବ୍ୟାଜରେ ତହିଁ ।
ଯୁତ ଖେଳାଇଲେ ସ୍ୱର୍ଣ୍ଣ ବଗଟକ ଦେଇ ଯେ ।୭୦।

---

ବରସ୍ୟ ପାଣିଃ ପର ଘାତ କୌତୁକୀ ,
ବଧୁକରଃ ପୁଷ୍କର କାନ୍ତି ତସ୍କରଃ ।
ସୁଗର୍ଜ୍ଜିତୌ ତତ୍ର ବିଦର୍ଭ ମଣ୍ଡଳେ,
ତତୋ ନିବଦ୍ଧୌ କିମୁକର୍କଶୈଃ କୁଶୈଃ
x. c. f. ୧୬ଶ ସର୍ଗ ୧୪ ଶ୍ଳୋକ ।
ଅନୁବାଦ:— ପରଘାତେ କଉତୁକୀ ଦୋଷୀ ବର କର,
ବଧୂ—କର ଅରବିନ୍ଦ—ଲବଣ୍ୟ—ତସ୍କର ।
ତେଣୁକି ବିଦର୍ଭ--ରାଜ୍ୟେ ସୁରାଜା—ଶାସନେ
ବନ୍ଧାହେଲେ ବେନିକର କଶେ କୁଶ ଗୁଣେ ।

୬୬—ଜଣେ ବିବାହିତା କନ୍ୟା ହାତଗଣ୍ଠି ଫିଟାଏ । ବୋଧହୁଏ ରଜାଙ୍କ ଘରେ ସେ କାର୍ଯ୍ୟ ବ୍ରାହ୍ମଣ କନ୍ୟା କରନ୍ତି । ପଗଭବ ଅନ୍ତେ—ଦଣ୍ଡ ପ୍ରାରେ ଲ ଉତ୍ତାରୁ; ଫେଡ଼ି ଦେଲ—ଯେହେତୁ ମନୋଭବ (କାମ) ପଗଭବ (ଦଣ୍ଡ) ଦେଇଥିଲ ।

୬୭—ବର କନ୍ୟାର ପାଦ ଛୁଇଁବା ବିବାହର ଏକ ବିଧି ;

୬୮—କନ୍ୟାଦାନ ବେଳେ ଶଙ୍ଖରେ କ୍ୱାଇଁ ହାତକୁ ପାଣି ଦିଅନ୍ତି । ସେ ପାଣି ଦେବା ଶଙ୍ଖ ଛେମା କଣ୍ଠରେ ସମାନ ନହୋଇ କାନ୍ଦିବା ସଙ୍ଗେ ଉତ୍ପ୍ରେକ୍ଷା ।

୬୯—-ବର କନ୍ୟା—ବର କନ୍ୟାକୁ; ଅବଗେଧପୁରେ—ଉଆସକୁ, ଖଞ୍ଜା ଶାଳକୁ; ( ଜୁଆ ଖେଳ ପାଇଁ)

୭୦—ଯୁତ ହେବେ— ଯୋଡ଼ାହେବେ । ଯୁତ—ଯୁଆ; ସାତକଡ଼ା କଉଡ଼ି କନ୍ୟା ଧରେ ବର ତାକୁ ଫିଟାଇ ପୁଣି କନ୍ୟା ହାତକୁ ଦିଏ । ଏହିପରି ଥରକୁ ଥର ସାତଥର

ଅତଃ ପୁରସ୍ତ୍ରୀଙ୍କୁ କଲା ବ୍ୟାକୁଳ ମଦନ ।
ଜଗତ ମୋହନ ରୂପ କରି ଦରଶନ ଯେ । ୭୧ ।
ଜ୍ଞାତି ଭଗ୍ନୀ ଲେଖା ଜେମା ସାନ-ଭଗ୍ନୀ ଯେତେ ।
ଦାସୀ କରି ଦେବେ କି ବିଚାର କଲେ ଚିତ୍ତେ ଯେ ।୭୨।
ସେବା ବେଳେ କରପଦ୍ମ ଲାଗିଲେ ଉରଜେ ।
ପରମ ଗତିକି ଆମ୍ଭେ ପାଇବା ସହଜେ ଯେ ।୭୩।
ଜରତୀ ଭାଳିଲେ ଚିତ୍ତେ ଗଲାଣି ବୟସ ।
ନ ହେଲେ ଲୁଚି ପଳାଇ ଯାଆନ୍ତୁ ଅବଶ୍ୟ ଯେ ।୭୪।
ତରୁଣୀଏ ମନାସନ୍ତି ଭୋଗ ଦେବୁ ଦେବେ ।
ହେ ପ୍ରଭୁ ଆମ୍ଭଙ୍କୁ ଜେମା ସଙ୍ଗତରେ ଦେବେ ଯେ ।୭୫।
ଭୋଗ ନୋହିଲେ ତ ହୋଉଥିବ ଦରଶନ ।
ଚନ୍ଦ୍ରମା ଉଲ୍ଲାସେ ଯଥା କୁମୁଦିନୀ ବନ ଯେ ।୭୬।
ଏମନ୍ତ ଭୋଜନ ସ୍ଥାନେ ହେଲେ କନ୍ୟାବର ।
ଜରତୀ ଦ୍ୱିଜବନିତା କହିଲା ସେଠାର ଯେ ।୭୭।

---

ହୁଏ । ତାକୁ ଯୂଆ ଖେଳ କହନ୍ତି । ସ୍ୱର୍ଣ୍ଣ ବରାଟକ–ସୁନାରେ ତିଆରି ହୋଇଥିବା କଉଡ଼ି ।

୭୧–୭୬–ବରଙ୍କୁ ଦେଖି ଉଆସର ନାରୀମାନେ କିଏ କଣ ବିଚାରିଲେ ସେହି କଥା କୁହାଯାଉଛି । ଜ୍ଞାତି ଲେଖା ଜେମାଠାରୁ ସାନ ଅବିବାହିତା ଭଉଣିମାନେ ଦାସୀ ହୋଇ ଯିବାକୁ ମଧ୍ୟ ବ୍ୟାକୁଳ ହୋଇ ପଡ଼ିଲେ । ସେବା–(ଦାସୀର ସେବା) ଜରତୀ–ବୁଢ଼ୀ; ସଙ୍ଗତରେ ଯଉତୁକ କରି ଦେବେ । ରଜାଙ୍କ ଘରେ ଏହି ପରି ଯୌତୁକରେ ସଖୀ ପରିବାରୀ ଦିଆଯାଏ । ଭୋଗ ନ ହେଲେ (ଚନ୍ଦ୍ରଭାନୁ ସଙ୍ଗେ ରତି ସୁଖ ଭୋଗ ନହେଲ ମଧ୍ୟ–କାରଣ ଜେମା ପରି ସୁନ୍ଦରୀ ଥିବାରୁ) । ଚନ୍ଦ୍ରଙ୍କୁ ଦୂରୁ ଦେଖି ମଧ୍ୟ କଇଁମାନେ ଖୁସି ହୁଅନ୍ତି ।

୭୭–ଯୂଆ ଖେଳପରେ ବରକନ୍ୟା ଏକାଠି ବସି ପଞ୍ଚଗ୍ରାସୀ କରନ୍ତି ( ଖାଆନ୍ତି )–ବ୍ରାହ୍ମଣ କ୍ଷତ୍ରିୟାଦି ପଇତା ପକା ଜାତି ମାନେ ଖାଇ ବସିଲା ବେଳେ ଆଗ ଦେବତାଙ୍କୁ ନୈବେଦ୍ୟ ଦେଇ ଚକ୍ରୁ ବା ଗଣ୍ଡୂଷରେ ଟିକିଏ ପାଣିପିଇ ତା ପରେ ପ୍ରାଣ, ଆପାନ; ବ୍ୟାନ; ଉଦାନ, ସମାନ ଏହି ପଞ୍ଚପ୍ରାଣକୁ ସ୍ୱାହା ବୋଲି ଦେବ ନୈବେଦ୍ୟ ଦେଇ-ପରି ପାଞ୍ଚଥର ଖାଆନ୍ତି । ତାହାକୁ ପଞ୍ଚଗ୍ରାସୀ କହନ୍ତି । ବିବାହର ଏହି ବର କନ୍ୟା ଭୋଜନରେ କେବଳ ବିଧି ରକ୍ଷା କରିବା ପାଇଁ ବର 'ପଞ୍ଚଗ୍ରାସୀ' ମାତ୍ର କରେ ।

ପଞ୍ଚବାଣ ତ୍ରାସନ୍ତୁ ତରିଲ, ପଞ୍ଚଗ୍ରାସି ।
ଜର ଏବେ ହରଷରେ ଜାୟା ପତି ବସି ଯେ ।୭୮।
ସେ ବିଧି ଶେଷେ ବିଜୟ ବାହାରେ କୁମାର ।
ବନ୍ଦାଇଲା ରନ୍ ଦେଲେ ମନ୍ତ୍ରୀ ସୁତ କର ଯେ ।୭୯।
ତେତିକି ବେଳନ୍ତୁ ସେ ଜେମାର ସହଚରୀ ।
ଆରମ୍ଭିଲେ ବେଶ ବିଧି ବିଗ୍ଭରି ବିଗ୍ଭରି ଯେ । ୮୦।
କେତେ ସଖୀ ମଣ୍ଡିଗଲେ ମଧୁଶଯ୍ୟା ପୁର ।
ଏହି କାଳ ଉତ୍ସବକୁ ଧ୍ୟାୟି ଶ୍ରୀ ରାମର ଯେ । ୮୧।
କହେ କବି ଭଞ୍ଜ ବୀରବର ଦିବ୍ୟ ରସ ।
ଆହେ ରାମ ଅବିଘ୍ନେ ଏ ଗୀତ କର ଶେଷ ଯେ ।୮୨।
ସୀତା ସହିତେ ମୋ ଚିତ୍ତୁଁ ନୋହିବ ଅନ୍ତର
ଏହି ଅଭିଷ୍ଟକୁ କରିଅଛି ନିରନ୍ତର ଯେ । ୮୩ ।

---

ଆଉ ଖାଏ ନାହିଁ । ସେଥିପାଇଁ ଏହାର ନାମ 'ପଞ୍ଚଗ୍ରାସୀ' । ବ୍ରତୋପନୟନ ବିଧିରେ ମଧ୍ୟ ଏହିପରି ଏକ 'ପଞ୍ଚଗ୍ରାସୀ' ଅଛି । 'ଯୂଆଖେଳ,' ବିବାହର ଏହି 'ପଞ୍ଚଗ୍ରାସୀ' ବେଳେ ପରିହାସୀ ଲୋକ ଥଟା ମଧ୍ୟ କରି ଥାନ୍ତି ।

୭୮–ଜାୟା–ଯାହାଠାରୁ ସନ୍ତାନ ଜନ୍ମ ହୁଏ ଅର୍ଥାତ୍ ଭାର୍ଯ୍ୟା;

୭୯–ବିଜୟ ବାହାର–ବାହାରକୁ ଆସିଲେ; ଯୂଆଖେଳ ପଞ୍ଚଗ୍ରାସୀ ବେଳେ ବରକନ୍ୟାଙ୍କୁ ଆତ୍ମୀୟା ମାନେ ଟଙ୍କା ସୁନା ଅଳଙ୍କାର ପ୍ରଭୃତି ଦିଅନ୍ତି । ତାକୁ 'ବନ୍ଦାଇବା' କହନ୍ତି । ଏଠାରେ ଚନ୍ଦ୍ରଭାନୁଙ୍କୁ ଲୋକେ ଯେଉଁ ରନ୍ ବନ୍ଦାଇ ଥିଲେ ତାହା ସେ ନିଜ ସାଙ୍ଗ ମନ୍ତ୍ରୀ ପୁଅ ହାତକୁ ଦେଲେ ।

୮୦–ବେଶ ବିଧି–ଜେମାକୁ ବେଶ କରିବା;

୮୩–ଅଭିଷ୍ଟ–ମନବାଞ୍ଛା,

## ଏକତ୍ରିଂଶ ଛାନ୍ଦ

### ( ନବ ଦମ୍ପତିର ଭାବନା ଓ କେଳିପୁର ମଣ୍ଡନ )

ରାଗ—ଧନାଶ୍ରୀ ।

ଶୁଣ ସୁଜନେ କୁମାର ମାର ବଶେ ଦିବସ ନାଶକୁ ଭାବି ।
ଚତ୍ୱରେ ଯାଇ ସତ୍ୱରେ ଗ୍ରହେଁ ଛାଇ ଅସ୍ତ ହୋଇବାକୁ ରବି ।
ସେ ବୀର । ମନେ ସ୍ତୁତି କରଇ ଅପାର ସେ ।
କଉଁ ପ୍ରକାରେ ନୁହଇ ସ୍ଥିର ସେ । ତନୁ ପୁଲକି ଉଠଇ ତାର ଯେ । ୧।
ବୋଲଇ ହୋ ମିତ୍ର ପଦ କର ସାଥି ମୋ ଠାରେ ସୁଦୟା ବହି ।
ଘେନ ତୁମ୍ଭେ ମୁଁ ଦୀନମଣି ସ୍ୱଭାବେ ପୁଣି ତ ପଦ୍ମିନୀ ସ୍ନେହୀ ।
ହେ ଦେବ । ସବୁ କାଳେ ମିତ୍ରପଣ ଥିବ ।
ମୋତେ ଦିବସ୍ପତି ପଦ ଦେବ । ଯେତେବେଳେ ବନ୍ଧୁ ଭେଟ ହେବ ସେ ।୨।
ପୁଣି ବିଗ୍ରହଇ ମୋର ମିତ୍ର ହୋଇ କେ ଆସନ୍ତା ଶୀତ ଘେନି
ଭାନୁ ଦିନ ସଙ୍ଗେ କ୍ଷୀଣକୁ ଭଜନ୍ତା ହୁଅନ୍ତା ଦୀର୍ଘ ରଜନୀ ।
ସେ ଏତେ । କହି ଦିଅନ୍ତା ଚନ୍ଦ୍ର ମରୁତେ ।
ପଶି ଗବାକ୍ଷେ ବାଳା ପଣନ୍ତେ ସେ । ଆଜ ଯୁବାଙ୍କ ତୋଷ ରତାନ୍ତେ ସେ ।୩।

---

୧—ସତ୍ୱରେ—(ଶୀଘ୍ରେ) ଚତ୍ୱରେ (ଅଗଣାରେ) ଯାଇ ସୂର୍ଯ୍ୟ ଅସ୍ତ ହେବା ପାଇଁ ଛାଇକୁ ଗ୍ରହୁଁଛି । ବ୍ରାହ୍ମଣ ଘର ପରି ଉପେନ୍ଦ୍ରଭଞ୍ଜ ଏଠାରେ ବିବାହ ତିଥିର କାଳ ଦିନରେ ପକାଇ ଠିକ୍ ସେହି ଦିନରେ ବିବାହ କରାଇଛନ୍ତି ବୋଲି ମନେ ହେଉଛି । କିନ୍ତୁ ଏହା କ୍ଷତ୍ରିୟ ବିଧି ନୁହେ । କ୍ଷତ୍ରିୟର ଗର୍ଭ ବିବାହ । ଅଥବା ଏହି ଛାନ୍ଦରେ ବିବାହ ପର ଚତୁର୍ଥି ମଧୁଶଯ୍ୟା ଦିନକୁ ଲକ୍ଷ ଥାଇ ପାରେ । ମାତ୍ର ସେପରି ବୁଝିବାର କୌଣସି କାରଣ ପୂର୍ବ ଛାନ୍ଦରେ ନାହିଁ ।

୨—ସୂର୍ଯ୍ୟର ଏକ ନାମ ମିତ୍ର । ତୁମେ ଦିନମଣି (ସୂର୍ଯ୍ୟ) ମୁଁ ଦୀନମଣି (ପ୍ରଧାନ ଦୁଃଖୀ) । ତୁମେ ପଦ୍ମିନୀ ( ପଦ୍ମଲତା ) ସ୍ନେହୀ । ମୁଁ ପଦ୍ମିନୀ ସ୍ତ୍ରୀ (ଜେମାରେ) ସ୍ନେହୀ ଏଣୁ ମିତ୍ର ପଣ । ତୁମ୍ଭେ ଦିବସ୍ପତି (ଦିବସର ପତି) ହୋଇଛ । ମୋତେ ଦିବସ୍ପତି (ଇନ୍ଦ୍ର) ପଦ ଦେବ । ବନ୍ଧୁ—ପ୍ରିୟା.

୩—ଗ୍ରହ—ଦୂତ; ଶୀତ—ଶୀତକାଳ; ଶୀତ କାଳରେ ଦିନ ସଙ୍ଗେ ସଙ୍ଗେ ଭାନୁ (ଖରା) ଦୁର୍ବଳ ହୁଏ; ରଜନୀ (ରାତି) ଦୀର୍ଘ (ଲମ୍ବା) ହୁଏ । ଏତେ (ଏହି କଥା)—ସେହି ଗ୍ରହ

ଧାତା ଦେଇରେ ସୁର ସଭ ମଧ୍ୟରେ ହରିଲ ବାରରମଣୀ ।
ଯଥା ଦୁଷ୍ଟ ଲୋକ ବୃଦ୍ଧ ହେଲେ କହେ ବାଳକେ ତିଆରି ବାଣୀ ।
ସେ ତଥା । ଦିନେ ନିଷେଧିଲ ରତି କଥା ସେ ।
ପାଶୋରଇ କି ମଦନ ବ୍ୟଥା ସେ । ମାର ବିଧି ବୋଲାଇବା ବୃଥା ସେ ।୪।
ନବ ତରୁଣୀ କାମ ସିନ୍ଧୁ-ତରଣୀ ତରଣୀକି ଗ୍ରହିଁ ଥିବେ ।
ଫୁଲକୋଦଣ୍ଡ ଦଣ୍ଡ ତ ନ ତୁଟିଲ କେତେ ଦଣ୍ଡ ପୁଣି ଥିବେ ।
ଏ ଭାନୁ ମୀ କେତେ ବେଦନା ସହିବ ତନୁ ।
ନତୁଟିବ ସନ୍ତାପ କୃଶାନୁ । ପ୍ରେମ ରସ ସେଚନ ବିହୀନୁ ସେ ।୫।
ଯେତେ ସସାରୀ ଅଭିସାରୀ ତାହାଙ୍କ ନିଶ୍ୱାସ ବତାସ ହୋଇ ।
ଜଳଧି ହୁତାଶେ ଉଡ଼ାଇ ତପନ ପକାଇ ଦିଅନ୍ତା ନେଇ ।
ସେ ତେବେ । ମନ ସନ୍ତୋଷ ହୁଅନ୍ତା ସବେ ।
ନିଶି ହୋଇ ଥାନ୍ତା ଗର୍ଭି ଦିବେ । ନୁହନ୍ତା ଯେ ତନୁ ଭିନ୍ନ ଲବେ ସେ ।୬।

---

କହି ଦିଅନ୍ତା-ଚନ୍ଦ୍ରକୁ ଓ ମରୁତକୁ (ପବନକୁ); ପକ୍ଷି-ପକ୍ଷିବାକୁ; ଗବାକ୍ଷେ-ପଞ୍ଜରରେ; ପଣନ୍ତେ-ଲୁଗା କାନିରେ; ରତାନ୍ତେ-(ରତି ଶେଷରେ) ପବନ ଓ ଚନ୍ଦ୍ର କିରଣ ଦରକାର ।

୪-ପୁରାଣରେ ଅଛି ଥରେ ବ୍ରହ୍ମାଙ୍କ ସନ୍ତୋଷ ପାଇଁ ଦେବତା ମାନେ ଦିନରେ ସଭ କରି ଉର୍ବଶୀଙ୍କୁ ନାଟ କରାଇଲେ । ବ୍ରହ୍ମା ଭୁଲି ଯାଇ ସେହିଠାରେ ଯାହା କଲେ ସେଥିରେ ଉର୍ବଶୀଙ୍କ ଠାରୁ ବଶିଷ୍ଠ ଜନ୍ମ ହୋଇଥିଲେ । ବାରରମଣୀ-ବେଶ୍ୟା, ଏଠାରେ ଉର୍ବଶୀ; ଏବେ ସେ ଧାତା (ବ୍ରହ୍ମା) ଲୋକଙ୍କୁ ତିଆରିବା ପାଇଁ ଦିନେ (ଦିବସ କାଳରେ) ରତି କଥାକୁ ନିଷେଧ କରିଛି । ଏ କଥା ଏକା ଦୁଷ୍ଟଲୋକ ବୁଢା ହେଲେ ପିଲଙ୍କୁ ତିଆରିବା ପାଇଁ ଭଲ ଭଲ କଥା କହିଲ ପରି; ତିଆରିବା-ଆକଟ କରିବା;

୫-କାମ ସିନ୍ଧୁ (କାମ ସମୁଦ୍ରର) ତରଣୀ (ନୌକା) ପରି ସେ ନବ ତରୁଣୀ (ଛେମା) ତରଣୀକି (ସୂର୍ଯ୍ୟ)କୁ; ଫୁଲ କୋଦଣ୍ଡ (କାମ) ପୁଣି କେତେ ଦଣ୍ଡ (କାଳ) ଏ ଭାନୁ (ସୂର୍ଯ୍ୟ) ଥିବେ । କାମ ସନ୍ତାପ ରୂପ କୃଶାନୁ (ଅଗ୍ନି); ପ୍ରେମ ରୂପ ରସ (ଜଳ) ସିଞ୍ଚିବା ବିନା ନ ତୁଟିବ ।

୬-ସସାରୀ-ବିବାହିତା; ଅଭିସାରୀ-ପୁରୁଷ ଅପେକ୍ଷାରେ ଯାଉଥିବା ନାରୀ;-[୨୪ ଛାନ୍ଦ ୧୪ ପଦ ଟୀକା ଦେଖ]-ସେମାନଙ୍କର ନିଶ୍ୱାସ (ଦୁଃଖର ଦୀର୍ଘ ନିଶ୍ୱାସ କିମ୍ବା

ଆରତ ନିନାଦ କଲେ କୋକ ନଦ ମଧ୍ୟେ ଏ ସମୟେ ରବି ।
ଆକାଶ ସର କୋକ ନଦ ପରାୟ ଧରି କୋକନଦ ଛବି ।
ସେ ଖରେ । ଶୋଭ ହେଲେ ଚରମ ଭୂଧରେ ।
କାମ ଜଗତ ଜୟ କାମରେ । ଜବା ଦେଲ କିବା ଚଣ୍ଡି କିରେ ସେ ।୭।

ସ୍ତିରୀ ପୁରୁଷ ଅନୁରାଗୁଁ ଅଧିକ କେ ହେବ ମନରେ ଭଳି ।
ଦ୍ୟୁମଣି ବିଶ୍ୱକାରେ କି ଜବ ଗୁଣିକ ଅସ୍ତ ପୁଂସ ରାଗ ତୁଳି ।
ସେ ଢାଳି । ଦେଲ ତେଣୁ ରଙ୍ଗ ଦିଗ ଆଳି[୧] ।
ପୁଣି ବାଳୀ ଅନୁରାଗ ତୁଳି । ସେତ ମଞ୍ଜିଷା ଉପରୁ ଝଳି ସେ ।୮।

---

ପାଠାନ୍ତର—୧, ରଙ୍ଗ ଦୀପାବଳୀ ।

---

ଅଭିଶାପ) ବତାସ (ଝଡ଼ ପବନ) ହୋଇ ହୁତାଶେ (ଫୁଙ୍କିଲ ପରି)—ଏଠାରେ ଅର୍ଘ୍ୟ ଅର୍ଥ ନୁହେ—ତପନକୁ ଉଡ଼ାଇ ଜଳଧି (ସମୁଦ୍ର)ରେ ନେଇ ପକାଇ ଦିଅନ୍ତା—ଏଠାରେ ନିଶ୍ୱାସ (ଅଭିଶାପ) ବତାସ ଓ ହୁତାଶ ଏହି ତିନୋଟି ସୁନ୍ଦର ଖାଣ୍ଟି ଓଡ଼ିଆ ପଦକୁ ଲକ୍ଷ କରିବାକୁ ହେବ ।

୭—କୋକ (ଚକ୍ରବାକ) ନଦ (ନଦୀ) ମଧ୍ୟରେ ଆର୍ତ୍ତସ୍ୱର କଲେ । ସନ୍ଧ୍ୟା ହେବାରୁ ବିଚ୍ଛେଦ ଭଜିଲେ । ଆକାଶରୂପ ସର (ପୋଖରୀ) ତାର କୋକ ନଦ (ରକ୍ତ ପଦ୍ମ) ପରି । ରବି କୋକନଦ ଛବି (ରକ୍ତିମା); ଚରମ ଭୂଧର—ଅସ୍ତଗିରି । ଜବା (ମନ୍ଦାର ଫୁଲ); ଚଣ୍ଡୀ—କୋପନା ଦେବୀ ଚଣ୍ଡ ସ୍ତ୍ୱତ୍ୟ କୋପନଃ"—ଇତିବିଶ୍ୱ ।

୮—ସ୍ତ୍ରୀ ପୁରୁଷଙ୍କର ଅନୁରାଗ ଭିତରୁ କିଏ ଅଧିକ ହେବ ଠିକ୍ କରିବା ପାଇଁ ନଗ (ଅସ୍ତଗିରି) ରୂପ—ବଣିକ (ବଣିଆ) ଦ୍ୟୁମଣି (ସୂର୍ଯ୍ୟ) ରୂପ ବିଶକା (ବିଶା)—ବିଶାରେ ଗୋଟିଏ ପଲଥାଏ (ଏହା ତକଡ଼ି ପରି ନୁହେ)—ଆଗ ପୁଂସର ଅନୁରାଗକୁ ରଙ୍ଗ ସୂର୍ଯ୍ୟ ରୂପରେ ତୁଳି ତାକୁ ଢାଳି ଦେଲ । ତେଣୁ ଦିଗଆଳି (ଦିଗମାନେ) ରଙ୍ଗ ହୋଇଗଲେ । ତା ଉପରେ ବାଳୀ (ସ୍ତ୍ରୀ)ର ଅନୁରାଗକୁ ତୁଳିଲ । ସେ ମଞ୍ଜିଷା (ମଞ୍ଜୁଆଟି)ରୁ ଆଉରି ବେଶି ଲଲ । ସୂର୍ଯ୍ୟ ପ୍ରଥମେ ଅଳ୍ପ ରଙ୍ଗ ହୋଇଥିଲ । ପରେ ଗାଢ଼ ରଙ୍ଗ ହୋଇ ବୁଡ଼ିଲ । —ପୁରୁଷର ଅନୁରାଗରୁ ସ୍ତ୍ରୀର ଅନୁରାଗ ମଧ୍ୟ ବେଶି ବୋଲି କୁହା ହେଲ । ଅଳଙ୍କାର ଶାସ୍ତ୍ରରେ ଅଛି ପୁରୁଷ ଅନୁରାଗ ଠାରୁ ସ୍ତ୍ରୀର ଅନୁରାଗ ଅଧିକ ବୋଲି କୁହାଯାଏ । "ଆଦୌ ବାଚ୍ୟଃ ସ୍ତ୍ରୀୟୋଃ ରାଗଃ"—ଇତି

ବାରୁଣୀ ତରୁଣୀ ସଙ୍ଗେ ଫଗୁଖେଳି ସିନ୍ଧୁ ମଜ୍ଜନକୁ ଗଲା ।
ସେହି ରାଗ ରଙ୍ଗ ଯୁଗତେ ଜଗତ ହୃଦରେ ପ୍ରକାଶ କଲା ।
ତା ଗୁହିଁ ।. ନୃପ ନନ୍ଦନ ଆନନ୍ଦ ହୋଇ ।
ଗଣ୍ଡଦେଶ ଲୋମ ଉଲ୍ଲସାଇ । ଏହି ଭାବନାମାନ କରଇ ସେ । ୯ ।
ସଖୀବେଢ଼ୀ ଚନ୍ଦ୍ରମୁଖୀକି ମୋହର ବେଶ କରୁଥିବେ ପରା ।
ରସିବାକୁ ରସେ ଆସିବାକୁ ପାଶେ କରିବେନି ଚିତ୍ତତ୍ୱରା ।
ମୁଁ ଧନ୍ୟ । ଆଜ ଛୁଇଁବି ତା ଅପଘନ ।
ପୁଣି କହିବି ଚାଟୁବଚନ । ବିଶେଷତ ଦେବି ଆଲିଙ୍ଗନ ସେ । ୧୦ ।
ତୁଚ୍ଛ ଜୀବ ରହିବାକୁ କେତେ ଦାନ କରିବ ପ୍ରାଣ ସଖୀ ।
ଚୁମ୍ବ ଆଲିଙ୍ଗନ ଓଷ୍ଠପାନଦାନ ବାସ ନ ପାରିବ ରଖି ।
ତା ଦେଖି । ମୁଁ ଯେ ହୋଇବି ପରମସୁଖୀ ।
ସେ ଯେ ଉରେ ଉର ଦେବ ପୋଛି । ମନ ମନକୁ ହୋଇବ ସାକ୍ଷୀ ସେ ।୧୧।
ବାଳା ବିଗ୍ରରଇ ପ୍ରାଣ ପତିଙ୍କି କି କରି ଦେବିଟି ରତି ।
ଦେଖିବେ ପରା ମୋ ସ୍ତନ ଜଘନକୁ କି ହୋଉଛି ଆଜ ଗତି ।
ସେ ଭାବି । ଦେବୀ ମାନଙ୍କୁ ଉପନ ଦେବି ।
ଜୀବ ଥିବାଯାକ ଥିବି ସେବି । ଦୀପ ସେ କାଳେ ଯିବଟି ଲିଭି ସେ ।୧୨।
ବଳିଆଇ ବାସ ରଖି ନ ପାରିବି ସଖୀବେ ଅବଳା ମୁହିଁ ।
ଉଦ୍ଧତ କଥାଏ ନବୀନ ସଙ୍ଗମେ କରିବାର ନାହିଁ ନାହିଁ ।
ହେ ବିଧି । କାନ୍ତେ ନ ଦେବ ବିବାସ ବୁଦ୍ଧି ।
ସବୁ ରଚନା ତୁମ୍ଭର ସିଦ୍ଧି । ରସ ତନମନ ରସନିଧି ସେ । ୧୩

୯—ବାରୁଣୀ—(ପଶ୍ଚିମ ଦିଗ) ତରୁଣୀ (ସ୍ତ୍ରୀ) ସଙ୍ଗେ ସୂର୍ଯ୍ୟ ଫଗୁ ଖେଳି ସିନ୍ଧୁ (ସମୁଦ୍ର)ରେ ମଜ୍ଜନ କଲେ (ବୁଡ଼ିଗଲେ), ତେଣୁ ଫଗୁ ରଙ୍ଗ ଭଳି ସନ୍ଧ୍ୟା ଘୁରି ଅଡ଼େ ହୋଇଗଲା ।

୧୦—ଚାଟୁ—ଅନୁନୟ; ଅପଘନ-ଶରୀର; ଆଲିଙ୍ଗନ—କୋଳ;

୧୧—ତୁଚ୍ଛ ଜୀବ—ମୋ ପରି ଅକିଞ୍ଚନର ପ୍ରାଣ; ବାସ—ପିନ୍ଧିବା ଲୁଗା; ଉର—ଛାତି; ମନ ମନକୁ—ନିଜେ ନିଜେ;

୧୨—ଜଘନ ଜଙ୍ଘ; ଉପନ—[୧୩ ଛାନ୍ଦ ୫୦ ପଦ ଟୀକା ଦେଖ]

୧୩—ବଳିଆଇଁ ( ତାଙ୍କୁ ) ଠେଲି କରି; କୌଣସି କଥା ନାହିଁ କରିବା ଉଦ୍ଧତ କଥା (ଅମାନିଆ କଥା) ହେବ । ବିବାସ ବୁଦ୍ଧି ଲୁଗା ଅଲଗା କରିଦେବା ମତି; ରସ ତନ ମନ ରସ ନିଧି—ସେ ରସନିଧି (ଚନ୍ଦ୍ରଭାନୁ) କେଳିରେ ତତ୍ପର;

ଯାମିନୀ ଘେନି ଅନ୍ତର ହେବା ଦୋଷ ଚନ୍ଦ୍ର ଛଡ଼ାଇବା ପାଇଁ ।
ତାରା କୁମୁଦିନୀ ପାଶକୁ ପ୍ରଦୋଷ–ଦୂତୀ ଆଗ ପଠିଆଇ ।
ସେ କାଳେ । ତାର ବଚନ ମନ୍ତ୍ର ବଳେ ।
କେହୁ ହସିଲା ଝଲକ ଛଳେ । କେହୁ ହସିଲା ଦରମୁକୁଳେ ସେ । ୧୪ ।
ସେ ସମୟେ ଗ୍ଭରି ପାଞ୍ଚ ସହଚରୀ ବିଗ୍ଭରି ମଣ୍ଡନ୍ତି ପୁର ।
ରସିକ–ବିଧୁ ବଧୂ ମଧୁଶଯ୍ୟାକୁ ଯେ ହୋଇବ ମନୋହର ।
ସେ ଗୃହ । କର୍ମେ ବିଶ୍ୱକର୍ମା ମୟ ଗୁରୁ ।
ଧନ୍ୟପୁଣ୍ୟ ଜନପତି ପୁରୁଁ । ଦେଖି ନେତ୍ର ବଶକରେ ଦୂରୁଁ ସେ ।୧୫ ।
ବାସ ବାସବ ଦେଖିଲେ ଗଉତମ ଉତ୍ତମ କଲେ ଭାଷିବେ ।
ଲଙ୍କା ଲୋକମାନେ ମାନେ ହନୁମାନେ ମାନସରେ ପ୍ରଶଂସିବେ ।
ସେ ହର । ଚିତ୍ତ ନ ଗଲା ଏ ମନୋହର ।
ଭ୍ରମେ ଶ୍ମଶାନେ ନ କରି ଘର । ରତି ବଶ ନୋହିବ କେ ନର ସେ ।୧୬ ।

---

୧୪–ଗତ ସକାଳେ ଚନ୍ଦ୍ର ନାୟକ ତାରା କୁମୁଦିନୀ ଏହି ଦୁଇ ନାୟିକାଙ୍କୁ ଛାଡ଼ି ଯାମିନୀ (ରାତ୍ରି) କୁ ଘେନି କୁଆଡ଼େ ଗ୍ଭଲି ଯାଇଥିଲା । ଏବେ ସେହି ଚନ୍ଦ୍ର ପୁଣି ଆସି ତାରା କୁମୁଦିନୀଙ୍କ ପାଖକୁ ପ୍ରଦୋଷ (ସନ୍ଧ୍ୟା)କୁ ଯେପରିକି ଦୂତୀ କରି ଖୋସାମତ କରିବାକୁ ପଠାଇଲା । ସେହି ସନ୍ଧ୍ୟା ଦୂତୀର ମନ୍ତ୍ର ବଳରେ (କଥା କୌଶଳରେ) କେହି (ତାରା) ଦପ୍ ଦପ୍ ହେବାରେ ଏବଂ କେହି (କୁମୁଦିନୀ) ଦର ମୁକୁଳିତ (ପୁଣି ଫୁଟିଲା ପରି) ହୋଇ ହସିଲେ ।

୧୫–ରସିକ ବିଧୁ–(ଚନ୍ଦ୍ରଭାନୁ)ঃ ବଧୂ–ବୋହୂ, ଏଠାରେ ଲାବଣ୍ୟବତୀ; ଏ ଦୁହିଁଙ୍କର ମଧୁଶଯ୍ୟା, ରତି ଉତ୍ସବର ଶଯ୍ୟା–"ମଧୁରତି ମହୋତ୍ସବେ"–ଇତି ଧନ୍ୱନ୍ତରିঃ–;ଗୃହ–କର୍ମେ–ସୁନ୍ଦର କର୍ମ ଦାମ ଥିବା କାମରେ; ବିଶ୍ୱକର୍ମା (ସୁରଶିଳ୍ପୀ) ଓ ମୟ (ଅସୁର ଶିଳ୍ପୀ) [୮ମ ଛାନ୍ଦ ୧୧ପଦ ଟୀକା ଦେଖ । ] ଙ୍କର ଗୁରୁ ଯେ ପୁଣ୍ୟ–ଜନପତି–(କୁବେର) ତାଙ୍କ ପୁରରୁ ଧନ୍ୟ (ଅଧିକ ସୁନ୍ଦର) ହୋଇଛି ।

୧୬–ସେ ବାସ (ମଧୁଶଯ୍ୟା) ଘରକୁ ଦେଖି ଇନ୍ଦ୍ର ଗୌତମଙ୍କୁ ପ୍ରଶଂସା କରିବେ । କାହିଁକି ନା ଗୌତମ ଇନ୍ଦ୍ରଙ୍କର ସହସ୍ରେ ଆଖି କରି ଦେବାରୁ ତାଙ୍କର ଦେଖିବାର ସୁବିଧା ହେଉଛି । [୮ମ ଛାନ୍ଦ ୭୧ପଦ ଟୀକା ଦେଖ] ଲଙ୍କା ଲୋକମାନେ ମାନେ (ଆମ ମାନ ବା ଇଜ୍ଜତ୍ ରଖିଲା ବୋଲି) ଆଗରୁ ଲଙ୍କା ପୋଡ଼ି ଦେଇଥିଲା ବୋଲି ହନୁମାନଙ୍କୁ ପ୍ରଶଂସା କରିବେ । ଲଙ୍କା ପୋଡ଼ା ନ ହୋଇ ଏବେ ଥିଲେ ଏହା ସଙ୍ଗେ ସମାନ ନ ହୋଇ ତାର କି ଦୁର୍ଦ୍ଦଶା ହୋଇଥାନ୍ତା ।

ସୁଧାଂଶୁ ପରି ମୋତିସୁଧା ବସୁଧା ବିଶୁଦ୍ଧ ରଜତ ବାଡ଼ ।
ପ୍ରତି କୋଠିରେ କଳା ଚଉଷଠୀରେ ପ୍ରତିମାମାନ ନିବାଡ଼ ।
ସେ ଝଳି । ବନ୍ଧଦୃଢ଼ ହୋଇବାକୁ ଭଳି ।
ମୀନା ଲତାରେ କରିଛି ଝଳି । ପ୍ରତେ ବନେ କି କରନ୍ତି କେଳି । ୧୭ ।
ଶ୍ରମ ଘର୍ମ କ୍ଷୀଣେ ଦକ୍ଷିଣେ ଗବାକ୍ଷ ଆଗମ ପାଶେ ରଞ୍ଜନ ।
ସ୍ତମ୍ଭ ଆରମ୍ଭ ରମ୍ଭୋରୁ ଉଭା ଶୋଭ କରେ ଗ୍ରଳିତ ବ୍ୟଞ୍ଜନ ।
ସେ ଗ୍ରଜ । ମହା ରମଣୀୟ ମଣିଜାଳ ।
ହୋଇଛନ୍ତି ଅତି ଜ୍ୟୋତିଶୀଳ । ପରେ ମନୋହର ହେମଢ଼ାଳ ଯେଁ ।୧୮।

---

ହର (ମହାଦେବ)ଙ୍କ ଚିଉରୁ ସେ ମନୋହର (ଏ ପୁର) ଶୋଭ ନ ଯିବାରୁ ସେ ଘର ନ କରି ଶ୍ମଶାନରେ ଭ୍ରମେ ।

୧୭–ସୁଧାଂଶୁ (ଚନ୍ଦ୍ର) ପରି ମୋତି ସୁଧା (ମୋତି ପୋଡ଼ା ଚୂନ)ରେ ବସୁଧା (ତଳ, ଚଟାଣ) ଓ କାନ୍ଥର ଦେହ ପଲସ୍ତର ହୋଇଛି । ବିଶୁଦ୍ଧ ରଜତ (ଖାଣ୍ଟି ରୁପା)ରେ ବାଡ଼ ଦିଆ ହୋଇ ଚଉଷଠୀ ବନ୍ଧକୁ ଗୋଟି ଗୋଟି କରି ଚିତ୍ର କରିବା ପାଇଁ କାନ୍ଥରେ କୋଠି (ଘର) କଟା ହୋଇଛି । ପ୍ରତି ଘରେ ଗୋଟିଏ ଗୋଟିଏ ବନ୍ଧର ଚିତ୍ର ହୋଇଛି । ପ୍ରତିମାମାନ ନିବାଡ଼–ବନ୍ଧ ଛବି ସବୁ ସ୍ପଷ୍ଟ, କିମ୍ବା ଚିତ୍ରପଟ ସବୁ କଣ୍ଠାରେ ଦୃଢ ହୋଇ ମଗ ଯାଉଛି; ସେ ଚିତ୍ର ଚକ୍ ଚକ୍ ଦିଶୁଥିବାରୁ କାଳେ ଯେ ତେଜରେ ଆଖି ଝଲସି ଯାଇ ଦେଖିବାର ଭୁଲ ହେବ, ସେଥିପାଇଁ ମୀନାଲତା ଅତି ସୂକ୍ଷ୍ମରେ ଚିତ୍ର କରାଯାଇଥିବା ଲତା ଭିତରେ ରହିଲା ପରି ସେ ବନ୍ଧ ଚିତ୍ର ସବୁ ହୋଇଛି । ଦେଖିଲେ ବୋଧ ହେଉଛି ଯେପରିକି ବଣ ଭିତରେ କେଳି କରୁଛନ୍ତି ।

୧୮–ଶ୍ରମଘର୍ମ–ରତି ଶ୍ରମ ଝାଳ; କ୍ଷୀଣେ–ମାରିବାପାଇଁ. ଦକ୍ଷିଣେ–ଦକ୍ଷିଣ ଦିଗକୁ; ଗବାକ୍ଷ –ଝରକା; ତା ପାଶେ–ପାଖକୁ; ଆଗମ–ଫୁଲ ବଗିଚା; ରଞ୍ଜନ–ଶୋଭିତ; ସ୍ତମ୍ଭ ଆରମ୍ଭରେ–ଖୁଣ୍ଟ ଠିଆ ହେଲା ପରି; କରେ–( ହାତରେ ) ଗ୍ରଳିତ–ଚଳୁଥିବା; ବ୍ୟଞ୍ଜନ ( ବିଞ୍ଚଣା ) ଧରିଲା ପରି ୮ କଳ ପିତୁଳା । ରମ୍ଭୋରୁ ( ନାରୀ )ମାନେ ଛିଡ଼ାହେଲା ପରି ଶୋଭ ( ସୁନ୍ଦର ) ଦିଶୁଛନ୍ତି । ଗ୍ରଜ ( ଛାତ ତଳ ) ଜ୍ୟୋତି ଶୀଳ ସୁନ୍ଦର ମଣି ମାନେ ଦେଖା ଯାଉଛନ୍ତି । ତା ଉପରକୁ ହେମଢାଳ (ସୁନାଢଳା ହୋଇଛି ) ଅର୍ଥାତ ଢଳା ସୁନାରେ ଛାତ ହୋଇ ତା ତଳେ ମଣିସବୁ ଖଞ୍ଜା ଯାଇଛି ।

ଯହିଁ କାଚଢାଳ ଚତ୍ୱର ଲୋକନେ ସତ୍ୱର ସଲିଳ ଭ୍ରମ ।
ବଇଡୂର୍ଯ୍ୟ ଉଜ ପଙ୍କଜ ସ୍ଫଟିକ କୁମୁଦ-ସ୍ଫୁଟରେ ରମ୍ୟ ।
ସେ ଘେନ । ତହିଁ ହଂସ କରେ ବ୍ୟର୍ଥ ସ୍ନାନ ।
ମଧୁପାଳି ମିଳି କରେ ସ୍ୱନ । ବଣା ନ କରିବ କାହା ମନ ସେ । ୧୯ ।
ଯହିଁ ନୀଳମଣି ସୋପାନର ମଣି ଗଁଠି ସୁଖ ମଣି କେକୀ ।
ମଧୁର ନାଦ ଆଳାପରେ ନାଚନ୍ତି କଳାପ-କଳାପ ଟେକି ।
ସେ ପୁରୀ । ମହୀ ମଣ୍ଡନାର ସହଚରୀ ।
କଲେ ମଣ୍ଡନ କେମନ୍ତ କରି । କିଛି କହିବା ତହିଁ ମାଧୁରୀ ସେ । ୨୦ ।
ନନ୍ଦତନୟ ବିନୟ ଭାନୁଜାକୁ ଭାନୁଜା ତଟରେ ଯହିଁ ।
କନକ ଜିତାଙ୍ଗୀ ଜନକ ସୁତାକୁ ରାମଚନ୍ଦ୍ର ଯାଚୁଥାଇ ।
ସେ ସ୍ୱଚ୍ଛ । ଶିବ ଗୋଡ଼ାଇ ମୋହିନୀ ପଛ ।
ଇନ୍ଦ୍ର ସୂର୍ଯ୍ୟ ଧର୍ଯ୍ୟ କରେ ତୁଚ୍ଛ । ମାୟା ନାରୀ ରୂପରେ ଶ୍ରୀବତ୍ସ ସେ ।୨୧।

---

୧୯—କାଚ ଢାଳ ଚତ୍ୱର-କାଚ ଢଳା ହୋଇ ଯେଉଁ ଅଗଣା ବା ଅଗଣାରେ ଚଉତରା ତିଆର ହୋଇଥିଲା ! ତାକୁ ଲୋକନେ (ଦେଖିଲେ) ସଲିଳ (ଜଳ) ଭ୍ରମ ହେଉଥିଲା । ସେଥିରେ ପୁଣି ବୈଦୂର୍ଯ୍ୟ (ନୀଳମଣି)ରେ ଉଜ(ସୁନ୍ଦର)ହୋଇ ତିଆରି ହୋଇଥିଲା । ପଙ୍କଜ(ଇନ୍ଦୀବର)ସ୍ଫଟିକରେ(ଶୁକ୍ଳ ସ୍ୱଚ୍ଛ ପଥରରେ) ତିଆର ହୋଇଥିଲା । କୁମୁଦ(କଇଁ) ସେ ସବୁ ସ୍ଫୁଟ (ପ୍ରସ୍ଫୁଟିତ) ହେଲା ପରି ରମ୍ୟ (ସୁନ୍ଦର) ହୋଇଥିଲେ । ସେଥିରେ ହଂସ ବ୍ୟର୍ଥରେ ଆସି ସ୍ନାନ କରୁଥିଲେ ଏବଂ ମଧୁପାଳି (ଭ୍ରମର ମାନେ) ବୃଥାରେ ଗୁଣୁ ଗୁଣୁ ସ୍ୱନ କରୁଥିଲେ । ବଣା ନ କରିବ (ଭ୍ରାନ୍ତ ନ କରିବ) । ମଧୁପାଳି—ଭ୍ରମର ବା ମଧୁପର ଆଳି (ସମୂହ) "ଦ୍ୱିରେଫଃ ପୁଷ୍ପଲିଡ୍ ଭୃଙ୍ଗ ମଧୁଲିଡ୍ ମଧୁପାଳିନଃ"—ଇତ୍ୟମରଃ । 'ବୀଥ୍ୟାଳି ରାବଳୀ ପଂକ୍ତିଃ ଶ୍ରେଣୀ ରେଖାସ୍ତୁ ରାଜୟଃ"-ଇତ୍ୟପି ଅମରଃ ।

୨୦—ଯେଉଁ ମଧୁଶଯ୍ୟା ପୁରେ ନୀଳମଣିରେ ତିଆର ହୋଇଥିଲା ଯେ ସୋପାନ ତାର ମଣିଗତି ( ମଣିତ୍ୱ, ନୀଳ ଉଜ୍ଜ୍ୱଳତାରେ ) ଘନ (ମେଘାଗମ) ସୁଖ ମଣି (ବିଚାରି) କେକୀ (ମୟୂର) କଳାପ (ପିଛ) ର କଳାପ (ସମୂହ) ଟେକି ମଧୁର ଶବ୍ଦକରି ନାଚନ୍ତି, ସେହି ପୁରିକି ମହୀମଣ୍ଡନା(ଲକ୍ଷ୍ମୀ)ର ସହଚରୀମାନେ ଯେପରି ମଣ୍ଡିଲେ ।

୨୧—ଏ ସବୁ ପୌରାଣିକ ଚିତ୍ରମାନ ସେ ଘରେ ଅଙ୍କା ଯାଇଛି । ଭାନୁଜା—ବୃଷଭାନୁଜା (ରାଧିକା)କୁ ନନ୍ଦତନୟ—ନନ୍ଦସୂନୁ (କୃଷ୍ଣ) ଭାନୁଜା ତଟରେ (ଯମୁନା କୂଳରେ) ଯହିଁ ବିନୟ ହେଉଛନ୍ତି । କନକ ଜିତାଙ୍ଗୀ (ସୁନାଠାରୁ ବଳି ଦେହକାନ୍ତି ଯାହାର ସେ)

କିନ୍ନରୀ ସଙ୍ଗରେ କୁବେର ବିହରି ବାନରୀ ସଙ୍ଗରେ ବାତ ।
ଶୋଭାଧନ୍ୟା ମେନା ମୀନାକ୍ଷୀକି ଗ୍ରହି ବିଶ୍ୱାମିତ୍ର ତପହତ ।
ଏ ବିଧି । ଚିତ୍ରମାନ ହୋଇ ଅଛି ସିଦ୍ଧି ।
ଆଣି ଛିଟ ଯବନିକା ବାନ୍ଧି ା କଲେ ପ୍ରାଙ୍ଗଣ ଶୋଭକୁ ବୃଦ୍ଧି ସେ । ୨୨ ।

ଚିତ୍ତ ମୋହିତ ଲୋହିତ ପୀତ ସିତ ବାସେ ତେଲଙ୍ଗୀ ମଣ୍ଡଣୀ ।
ଉତ୍ତମ କରି ଗ୍ରମର ଖଦି ଫୁଲ ମାଳିକା ଖଞ୍ଜିଲେ ପୁଣି ।
ସେ ଗୁଣି । ଯାହା ପାଶକୁ ଯେ ଶୋଭ ଜାଣି
ଗ୍ରନ୍ଦ ଦର୍ପଣ ଖଞ୍ଜିଲେ ଆଣି । ଯଥା ଅର୍ଦ୍ଧେନ୍ଦୁ ତାରକା ଶ୍ରେଣୀ ସେ ।୨୩।

---

ଜନକ ସୁତା ( ସୀତା )ଙ୍କୁ ରାମଚନ୍ଦ୍ର ଗ୍ରଟୁ କହି ( ଅନୁନୟ କରୁଛନ୍ତି ) । ମୋହିନୀ ପଛରେ ଶିବ ଗୋଡ଼ାଇଛନ୍ତି । ଅସୁର ମାନଙ୍କୁ ବିଷ୍ଣୁ ଯେଉଁ ମୋହିନୀରୂପ ଧରି ଭୁଲାଇ ସମୁଦ୍ର ମନ୍ଥନରୁ ବାହାରିଥିବା ଅମୃତ ସବୁ କେବଳ ଦେବତାଙ୍କୁ ଖୁଆଇ ଦେଇଥିଲେ ସେହି ରୂପକୁ ଶିବ ଦିନେ ଦେଖିବାକୁ ମନ କଲାରୁ ବିଷ୍ଣୁ ମୋହିନୀ ରୂପ ଧଇଲେ । ଶିବ ତାହାଦେଖି ସମ୍ଭାଳି ନ ପାରି ମୋହିନୀଙ୍କ ପଛେ ଗୋଡ଼ାଇ-ଥିଲେ । ଲୁକ୍ଷାଛ (ଭଲ୍ଲୁକରାଜ)- "ଲୁକ୍ଷାଚ୍ଛ ଭଲ୍ଲ ଭଲ୍ଲୁକ"—ଇତ୍ୟମରଃ । ମୋହିନୀ ଗୋଟିଏ କୂଅରେ ପଡ଼ି ବାହାରିଲା ବେଳକୁ ଦେବତାଙ୍କ ମାୟାରେ ସୁନ୍ଦରୀ ବାନରୀ ରୂପ ହୋଇଗଲା । ତାକୁ ଦେଖି ଇନ୍ଦ୍ର ଓ ସୂର୍ଯ୍ୟ ମୁଗ୍ଧ ହେଲେ । ଇନ୍ଦ୍ରଙ୍କ ଆତ୍ରୁ ବାଳୀ ଓ ସୂର୍ଯ୍ୟଙ୍କ ଆତ୍ରୁ ସୁଗ୍ରୀବ ଜନ୍ମ ହୋଇଥିଲେ ।

୨୨—କିନ୍ନରୀ ମାନଙ୍କ ସଙ୍ଗେ କୁବେର ବିହାର କରନ୍ତି । ବାନରୀ (ଅଞ୍ଜନା ନାମକ ମର୍କଟୀ) ସଙ୍ଗେ ବାତ ( ପବନ ) ବିହାର କରିବାରୁ ହନୁମାନ ଜନ୍ମ ହୋଇଥିଲା । ଶୋଭା-ଧନ୍ୟା ( ଅତି ସୁନ୍ଦରୀ ) ମୀନାକ୍ଷୀ ମେନା ( ମେନକା ) ବିଶ୍ୱାମିତ୍ର ଋଷିଙ୍କର ତପସ୍ୟା ଭାଙ୍ଗିବାପାଇଁ ଇନ୍ଦ୍ରଙ୍କ ଦ୍ୱାରା ପଠିଆ ହୋଇଥିଲା । ସେଥିରୁ ଶକୁନ୍ତଳାଙ୍କର ଜନ୍ମ । ଏସବୁ ଚିତ୍ରମାନ ସିଦ୍ଧ ହୋଇ ( ଠିକଣା ହୋଇ ) ଲେଖା ହୋଇଅଛି । ଛିଟ ଯବନିକା ( ଛିଟ ଲୁଗାର ପରଦା ସବୁ ) ପ୍ରାଙ୍ଗଣ ( ଅଗଣା ) ରେ ବାଡ଼ କରି ବାନ୍ଧିଲେ ।

୨୩—ତେଲିଙ୍ଗୀ ମଣ୍ଡଣୀ—ଏକ ପ୍ରକାର ସଜାଇବା; ଆନ୍ଧ୍ର ଦେଶରେ ଏପରି ସଜାହୁଏ । ଖଦି [ ୩ୟ ଛାନ୍ଦ ୨୬ ପଦ ଟୀକା ଦେଖ ] । ଲୋହିତ-ଲାଲ; ଫୁଲମାଳିକା ଫୁଲମାଳ, ଗ୍ରନ୍ଦ ବା ଗ୍ରନ୍ଦିଦର୍ପଣ—ଏ ଏକ ପ୍ରକାର ଅର୍ଦ୍ଧଚନ୍ଦ୍ର ପରି ଦର୍ପଣର ଗ୍ରରିପାଖେ ତାରାପରି ମଣିସବୁ ଖଞ୍ଜା ହୋଇଥାଏ ।

ହରିବାରଣ ଖୁର ତଳେ ସେ ହୀର ହୀରବାରଣକୁ ଥୋଇ ।
ଯତନ ରତନ ପଲ୍ୟଙ୍କ ଅଙ୍କରେ କୋମଳ ଶେଯ ଶେଯାଇ ।
ସେ ଆଳି । ବିଶେଷିତ ଶଙ୍କା ଏହା ଭଳି ।
ନାଗେଶ୍ୱର କେଶରେ ମୁଚୁଳୀ । ଦେଇ ସିଞ୍ଚିଲେ କର୍ପୂର ଧୂଳି ସୋ୨୪।
ମୁକୁତା ଝାଲର ମଣ୍ଡିତ ମୁକୁର ବିତାନ ବାନ୍ଧୁ କେ ଛଳି ।
ବାଳୀ ଭଳିଲେ ଅଳି ପରି ପୁରୁଷ ଥାଇଟି ମନରେ ଭଳି ।
ସେ କହି । ସାକ୍ଷ୍ୟ ପଲ୍ୟଙ୍କ ଖୁରରେ ଶୋହି ।
ଶିଖୀ ଚନ୍ଦ୍ରକ ବିଞ୍ଚଣା ନାହିଁ । ତାହା ପକାଇ ଥିବା ଗୋ ତହିଁ ସୋ୨୫।

---

ପାଠାନ୍ତର—୧, ଆଳି ।

---

୨୪—ହରିବାରଣ ଖୁର–ସିଂହ ହାତୀକୁ ମାଡ଼ି ବସିବା ଭଳି ହାତୀଦାନ୍ତରେ ହୋଇଥିଲା ଯେଉଁ ଖଟଖୁର; ହୀରବାରଣ–ଖଟତଳେ ପାଣି ଭରତି ହୋଇ ଥୁଆ ହୋଇଥିବା ବଇଠି । ଏ ବଇଠି ଦେଲେ ପିମ୍ପୁଡ଼ି ଖଟକୁ ଚଢ଼ି ପାରେ ନାହିଁ । ହୀର–ହୀରମଣିରେ ତିଆର; ହୀର–ପିମ୍ପୁଡ଼ି; " ହୀର ପିପିଲିକା ଲକ୍ଷ୍ମ୍ୟୋଃ–ଇତିବିଶ୍ୱଃ । ନାଗେଶ୍ୱର କେଶର ପଣି ତିଆର ହୋଇଥିବା ମୁଚୁଳି ( ମାଣ୍ଡି ) ସେଥିରେ ସାପ ପ୍ରଭୃତି ଆସିବାର ଶଙ୍କା ନ ଥାଏ । ନାଗେଶ୍ୱର ଫୁଲ ବାସନା ପାଖକୁ ସାପ ଆସେ ନାହିଁ ବୋଲି କଥା ଅଛି ।

୨୫—ଝାଲର–ଚନ୍ଦୁଆ ଚାରିପଟେ ଓହଳି ଥିବା ଜାଲି କାମ; ସେଥିରେ ମୁକୁତା କାମ ଥିଲା । ମୁକୁର ବିତାନ–ଦର୍ପଣ ଚାନ୍ଦୁଆ; ଚାନ୍ଦୁଆ ଉପରେ ଟଣା ହୋଇଥିଲେ ଚିତ୍ ହୋଇ ଶୋଇଥିବା ଲୋକ ନିଜର ପ୍ରତିବିମ୍ବ ସ୍ପଷ୍ଟ ଦେଖି ପାରିବ । ତାକୁ ବାନ୍ଧିଲା ବେଳେ କୌଣସି ବାଳୀ ( ଯୁବତୀ ) ଛଳି ( ଥଟାକରି ) ଭଳିଲା ( ବିଚାରି କହିଲା ); ଅଳି ( ଭ୍ରମର ) ପରି ଅର୍ଥାତ୍ ତାର କୌଣସି ଗୋଟିଏ ସ୍ତ୍ରୀ ଠାରେ ନିଷ୍ଠା ନାହିଁ । ଏଣୁ ଯେ କୌଣସି ସ୍ତ୍ରୀ ଠାରେ ସବୁବେଳେ ସନ୍ଦେହ–ଏହିଭଳି । ] ଅତଏବ କି ଭଳି ଥାଇଟି–( କଣ ଭବିବଟି ) । ଅଭିପ୍ରାୟ ଏହି ଯେ ରତି କାଳରେ ଉପର ଦର୍ପଣରେ ବିପରୀତ ପ୍ରତିବିମ୍ବ ଦେଖି ହୁଏତ ମନେ କରିପାରେ ଯେମା ପୂର୍ବରୁ ଏ ସବୁ କଥା ଜାଣି ପୋଖତ ହୋଇଥିଲା । କାରଣ ବିପରୀତ ରତି ନବୀନାର କର୍ମ ନୁହେ । ସେଥିକି ଆଉ କିଏ କହିଲା ପଲଙ୍କ ଖୁରରେ ସାକ୍ଷୀ ଅଛି ( ସିଂହ ହାତୀକି ମାଡ଼ି ବସିଛି )–ସେହିପରି ଏ ସବୁ ଶିଖିବା ଶିଖାଇବା କାମ ନୁହେ ମନକୁ ହୁଏ । ଆଉ କିଏ କହିଲା ଶିଖୀ ଚନ୍ଦ୍ରକ ବିଞ୍ଚଣା ( ମୟୂର ଚନ୍ଦ୍ରିକା ବିଞ୍ଚଣା ) ଏଠାରେ

ସେବତୀ ଦଳ ବିଞ୍ଚି ସିଞ୍ଚି ଅତରେ ଶେଯାଛଲେ ଫୁଲିନବାସେ ।
ଏହି ବିଧାନରେ ଅବନି ଶଯ୍ୟାକୁ ବିରଚନ କଲେ ପାଶେ ।
ସେ ନାରୀ । ବାରିପୂର୍ଣ୍ଣ କରି ଜାଟଝରୀ ।
ନାନା ଜାତି କୁସୁମକୁ ଭରି । ଥୋଇଗଲେ ସନ୍ନିକଟ କରି ସେ । ୨୬ ।
କୁନ୍ଦନ ପାତ୍ରରେ ଚନ୍ଦନ କର୍ପୂର ଅତର ପନୀର ଚୂଆ ।
ଲବଙ୍ଗ ଖଦିର ପୂଗ ଚୂର୍ଣ୍ଣ ପୂର୍ଣ୍ଣ ଭଙ୍ଗା ପାନ ପାଶେ ଥୁଆ ।
ସେ ଦୀପ । ଜରୀ ପଞ୍ଜରୀ ମଧ୍ୟରେ ଗୋପ୍ୟ ।
ରଖିଗଲେ ସେ ଭିତ୍ତି ସମୀପ । ବାଛା ହରଷକୁ ଅନୁରୂପ ସେ । ୨୭ ।
ଗୃହ କପୋତ ପଢ଼ା ଶୁକ ସଙ୍ଘାତ ସାରୀ ପଞ୍ଜରୀ କି ନେଲେ ।
ରଜନୀ ଥିବା ଯିବାର ଜାଣିବାକୁ ପୁରପାଶେ ଲମ୍ବାଇଲେ ।
ସେ ପୁଣି । ସୀତାପତି ରଘୁବଂଶ ମଣି ।
ଦିବ୍ୟ କାର୍ମୁକ ସାୟକ ପାଣି । ଉପଇନ୍ଦ୍ର ବୀରବର ଭଣି ସେ । ୨୮ ।

---

ପକାଇ ଦେଇଥାଅ । ଏଥିରୁ ବୁଝା ପଡ଼ିବ ମୟୂର ଚନ୍ଦ୍ରିକାକୁ ଯିଏ ଚିତ୍ର କରିଛି ସେହି ଏ ସବୁ କଥା ଜେମାକୁ ଶିଖାଇଛି । [୨୯ ଛାନ୍ଦ ୫୨ ପଦ ଟୀକା ଦେଖ ।]

୨୬– ଅବନୀଶଯ୍ୟା–ତଳକୁ ; ପାଶ–ଖଟ ପାଖରେ । ଝରୀ–ଢ଼ାଳ, ଗଡ଼ୁ ; ପାଣିରେ ମଲ୍ଲୀ ପ୍ରଭୃତି ଫୁଲ ପକାଇବାର ରୀତି ଅଛି ।

୨୭–କୁନ୍ଦନ ପାତ୍ର–କୁନ୍ଦାପାତ୍ର; ( ହାତୀଦାନ୍ତ କୁନ୍ଦା ହୋଇ ତିଆର ହୋଇଥିବା ଗିନା ) । ଅତର–ପୁଷ୍ପସାର ତୈଳ; ପନୀର–ପୁଷ୍ପସାର ଜଳ, ବା ବାସ ପାଣି–ଆଜି କାଲିର ଏସେନ୍‌ସ, ଖଦିର–ଖଇର ; ପୂଗ–ଗୁଆ; ଚୂର୍ଣ୍ଣ ଚୂନ; ଭଙ୍ଗାପାନ–ପାନ ଖିଇ ; ଜରୀ ପଞ୍ଜରୀ–ଜରୀ ଘୋଡ଼ଣୀ ଥିବା ପଞ୍ଜୁରୀ; ଯେଥିରୁ ଦୀପର ଆଲୁଅ ଦେଖାଯିବ କିନ୍ତୁ ଶିଖା ଦେଖାଯିବ ନାହିଁ । ଜେମାର ସଲଜ ହାସ ସେହିପରି ଦୀପ୍ତ ନ ଦିଶି ମନୋହର ।

୨୮ –ସଂଘାତ-ସମୂହ; ପୁର–ମଧୁଶଯ୍ୟାର ଘର; କପୋତ ଶୁଆ, ସାରୀ ପ୍ରଭୃତିଙ୍କ ଶବ୍ଦରୁ ରାତି ଥିବା ଯିବା ( ପାଇବା ) ଜଣା ପଡ଼ିବ ବୋଲି । ଶାୟକ (କାର୍ମୁକ, ଶର ) ପାଣି ( ହାତ )

✳ ● ✳

# ଦ୍ୱାବିଂଶ ଛାନ୍ଦ

## ( ସଖୀମାନଙ୍କର ଲାବଣ୍ୟବତୀର ବେଶ କରଣ ଓ କାନ୍ତ ନିକଟକୁ ପ୍ରେଷଣ )

ରାଗ–ମାଳବ ।

ରସିକ ଚାତକ ପୋତ ଜନ ରସ ଦାୟୀ ।
ଏ ଛାନ୍ଦକୁ ଶୁଣିମା ସୁଜନେ ମନ ଦେଇ ଯେ । ୧ ।

କାନ୍ତ କାନ୍ତା ପ୍ରମୋଦ ସଜନୀ ରୂପେ ଆସି ।
ଜଗତକୁ ଆଛାଦି ରଜନୀ ପରକାଶି ଯେ । ୨ ।

ପିକ ନାଦେ କହିଲ କନ୍ଦର୍ପ ଅନୁକୂଳ ।
କଲ ତରୁଣ ଦମ୍ପତି ବେଗ ହୁଅ ମେଳ । ୩ ।

ଏ ସମୟେ ଉଦୟ ହୋଇଲେ ସୁଧାକର ।
କିରଣରେ ପ୍ରତିଦିଶ ଦିଶିଲା ସୁନ୍ଦର ଯେ । ୪ ।

ତ୍ରିଯାମା ଆଲିଙ୍ଗନରୁ ଏହି ଅନୁମାନ ।
କଳା ଦେହେ ଯେମନ୍ତ ଚନ୍ଦନ ବିଲେପନ ଯେ । ୫ ।

କାଚ ଭିତି ସ୍ଫଟିକ ସୋପାନ ବିମ୍ବଧରେ ।
କ୍ଷୀରାର୍ଣ୍ଣବ ମିଶିଲାକି ଗଙ୍ଗା ସୁତା ନୀରେ ଯେ । ୬ ।

---

ପାଠାନ୍ତର–୧, ସୁଖ ଘନ ।

---

୧–ରସିକ ମାନେ ହେଲେ ଚାତକ ପୋତ (ଚାତକ ପିଲା) ଜନ (ସମୂହ); ପୋତ ଶବ୍ଦ 'ପିଲା' ଅର୍ଥକ ହେଲେ ମଧ୍ୟ 'ବିଚରା' ଅର୍ଥରେ ପ୍ରଯୋଗ ହୁଏ । ଏଠାରେ ବିଚରା ଚାତକ ମାନେ (ବର୍ଷା ଅଭାବରୁ କାତର ଚାତକ ପରି); ରସ–ଘନ ରସ (ବର୍ଷା ପାଣି);

୨–କାନ୍ତ କାନ୍ତା (ବର ମାଇପଙ୍କ)ର ପ୍ରମୋଦ (ସୁଖ) ରଜନୀ ରୂପ ଧରି;

୩–ପିକନାଦ–ସନ୍ଧ୍ୟା କାଳେ ବସାକୁ ଯିବା ବେଳର କୋକିଳ ରବ;

୪–ଦିଶ–ଦିଗ;

୫–ତ୍ରିଯାମା (ରାତି)କୁ ଚନ୍ଦ୍ର କିରଣରେ ଆଲିଙ୍ଗନ କରିବାରୁ (ଘୋଟି ଯିବାରୁ);

୬–୯–ସେହି କଳାରାତ୍ରି ଓ ଜହ୍ନର ଉପମା ଗୁଡ଼ିକ । କାଚ ଭିତି (କଳା କାଚ କାନ୍ଥ) ସ୍ଫଟିକ (ଧଳା ସ୍ୱଚ୍ଛ ପଥର) ବିମ୍ବ ଧଇଲା ପରି । କ୍ଷୀରାର୍ଣ୍ଣବ (ଦୁଧ ସମୁଦ୍ର); ଗଙ୍ଗା

ରବି ତାପ ଶାନ୍ତି ଅର୍ଥେ କିବା ପରମେଷ୍ଠୀ ।
ଘନ ସାର ଚୂର୍ଣ୍ଣରେ ପୂରିତ କଲ ସୃଷ୍ଟି ଯେ । ୭ ।
ଖଣ୍ଡ ପରଶୁ ଭୂଷଣ ଖଣ୍ଡପର୍ଶୁଧର ।
ସୁଧାରେ ଧବଳି ଦେଲା କି ବସୁଧା ପୁର ଯେ । ୮ ।
ପ୍ରଦୋଷ ସଙ୍ଗ ଯେ କ୍ଷଣଦାର ହୋଇଥିଲା
ଏଣୁ କି ତ୍ରିପଥା ଗଙ୍ଗା ଜଳେ ସ୍ନାନ କଲା ଯେ । ୯ ।
ହୀରକ ରଥପଦ କି ବିଶ୍ୱଜୟ ପାଇଁ ।
ଚନ୍ଦ୍ରବ୍ୟାଜେ ମନସିଜ ଫିଙ୍ଗିଛି ବୁଲାଇ ଯେ । ୧୦ ।
ପୂର୍ବରୁ ତ ପାରାବାରୁ ଦେଇଅଛି ପାଣି ।
ଅନାଇଁ ବିଯୋଗୀ ଜନେ ମଲେଁ ଗଲେଣି ଯେ । ୧୧ ।

---

ସୁତା ନୀରେ (ଯମୁନାର କଳା ଜଳରେ); ପରମେଷ୍ଠୀ–ବ୍ରହ୍ମା; ଘନସାର ଚୂର୍ଣ୍ଣ–କର୍ପୂର ଗୁଣ୍ଡ ବୋଲି ହେଲେ ଶୀତଳ ଲାଗେ । ଖଣ୍ଡ ପରଶୁ ଭୂଷଣ–(ମହାଦେବ) ଖଣ୍ଡ ପର୍ଶୁଧର (ଚୂନଗ ଘର) ହୋଇ ସୁଧାରେ (ଚୂନରେ) ଧବଳି (ଧଉଳି) । ବସୁଧାପୁର–ପୃଥିବୀ ରୂପ ଘର; ପ୍ରଦୋଷ–୧. ସନ୍ଧ୍ୟା, ୨. ବିଶେଷ ଦୋଷ; କ୍ଷଣଦା–ରାତ୍ରି; ତ୍ରିପଥା ଗଙ୍ଗା–(ମନ୍ଦାକିନୀ, ଭାଗୀରଥି, ଭୋଗବତୀ) ଏହି ତିନି ରୂପରେ ଯଥାକ୍ରମେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ବହୁଥିବା ଗଙ୍ଗା; ଦୋଷ ସମ୍ପର୍କ ଥିବାରୁ ଗଙ୍ଗା ସ୍ନାନ କରୁଛି କି ? ତେଣୁ ସନ୍ଧ୍ୟା ପରେ ଏହି ଜ୍ୟୋସ୍ନା ଦେଖାଗଲା–ଏହି ଅଭିପ୍ରାୟ ।

୧୦–୧୧–ରଥପଦ–ଚକ୍ର; ଚନ୍ଦ୍ର ବ୍ୟାଜେ–ଚନ୍ଦ୍ର ବାହାନାରେ; ଶତ୍ରୁକୁ ମାରିବା ପାଇଁ ଚକ୍ର ବୁଲାଇ ଫିଙ୍ଗି ଦିଆଯାଏ । ମନସିଜ (କନ୍ଦର୍ପ) ବିଯୋଗୀ ମାନଙ୍କୁ ମାରିବା ପାଇଁ ଫିଙ୍ଗିଛି କି ? ଲୁହାର ଅସ୍ତ୍ର ଶସ୍ତ୍ର ସବୁ ପଜାଇଲା ବେଳେ ପାଣି ଦେଲେ ଦାଢ଼ୁଆ ହୁଏ । ଯେଉଁମାନେ ଏହା ଜାଣନ୍ତି ସେମାନେ ଲୁହାକୁ ତତାଇ କୌଶଳରେ ଭିନ୍ନ ଭିନ୍ନ ପାଣିରେ ବୁଡ଼ାନ୍ତି । ଏଠାରେ ଚନ୍ଦ୍ରକୁ କନ୍ଦର୍ପ ସମୁଦ୍ରରେ ପାଣି ଦେଇ ବାହାର କଲା ପରି ହୋଇଛି । ସମୁଦ୍ର କୂଳରେ ଚନ୍ଦ୍ର ଉଦୟ ହେଲାବେଳେ ସମୁଦ୍ରରୁ ବାହାରିଲା ପରି ଦିଶେ । କିମ୍ବା ସମୁଦ୍ରରୁ ଚନ୍ଦ୍ର ବାହାରି ଥିବା ପୁରାଣ କଥାକୁ ଏଠାରେ ଲକ୍ଷ୍ୟ ଅଛି । ପୁଣି ଚନ୍ଦ୍ର ଦେହରେ କଳଙ୍କ ତହିଁରେ ଲାଗିଥିବା ସମୁଦ୍ର ପାଣି ବୋଲି ଆଶୟ ମଧ୍ୟ ଥାଇ ପାରେ ।

ଦେଖ୍ ପ୍ରାଚୀ- ନିଷାଦ ପଦ୍ମିନୀ ବ୍ୟଭିଗ୍ରର ।
ଛଡ଼ାଇ ନେଇଛି ଏକ ତାଟଙ୍କ କି ତାର ଯେ । ୧୨ ।
ମୋତିନିର୍ମ୍ମିତ ମର୍କତ ନାୟକ ବିରଚ୍ଚି ।
କଳଙ୍କ ବୋଲେ ଯେ ଏହା ନ ପାରଇ ହେଜି ଯେ ।୧୩।
ଗଗନ କାନନେ ଅଙ୍କୁରଇ ଅଛି ଧାତା ।
ରଜତ ଆଳବାଳରେ କି ତମାଳ ଲତା ଯେ । ୧୪ ।
ପୁଣି ନିର୍ମଳ ତାରକା ଘେନି ସେ ଗଗନ ।
ପ୍ରଫୁଲ୍ଲିତ ମଲ୍ଲୀ ବାଟୀ ପରଯ ରଞ୍ଜନ ଯେ । ୧୫ ।
ଯାମିନୀ–ନବ କାମିନୀ ମୁଖ କଳାକର ।
ଗ୍ରଞ୍ଜ ଲୋଚନରେ ହୋଇଅଛି ମନୋହର ଯେ । ୧୬ ।
ଲୋଭେ ପାରଦ ଗର୍ଭରୁ ଉଚ୍ଛୁଳି ଧଇର ।
ନଭେ ବିଞ୍ଚି ହୋଇ କି ତାରକା ବୋଲଇଲ ଯେ ।୧୭।

---

୧୨–୧୩–ପ୍ରାଚୀ (ପୂର୍ବ ଦିଗ) ରୂପ ନିଷାଦ (ବ୍ୟାଧ) ପଦ୍ମିନୀ (ପଦ୍ମଲତା–ଏଠାରେ ପଦ୍ମଫୁଲ)ର ବ୍ୟଭିଗ୍ରର (ଭ୍ରମରକୁ କୋଳରେ ଘେନି ରତିରେ ମୁଦି ହେବା ରୂପ ଦୋଷରୁଣୀ ପଣ) ଦେଖ୍ ତା କାନରୁ ତାଟଙ୍କ (କାପ) ଛିଣ୍ଡାଇ ନେଇ ଧରିଛି କି ? ସେହି ତାଟଙ୍କ ମୋତିରେ ତିଆରି ହୋଇ ତା ମଝିରେ ମର୍କତ (ଶାଗୁଆ ମଣିରେ) ନାୟକ ପିହା ହୋଇଛି । [ଅଳଙ୍କାର କାମ ମଝିରେ ପିହା ହୋଇ ଥିବା ପାନ ପତ୍ରୀ ପ୍ରଭୃତି କିମ୍ବା ହାର ମଝିରେ ଥିବା ପଦକ ପ୍ରଭୃତିକୁ ନାୟକ କହନ୍ତି । ଚନ୍ଦ୍ରର କଳଙ୍କ ପରି ଯାହା ଦିଶୁଛି ତାହା ଏହି ମର୍କତ ନାୟକ ।

୧୪–ଆକାଶ କାନନ (ବଗିଚା) ହେଲା; ସେଥିରେ ବିଧାତା (ବ୍ରହ୍ମା) ରଜତ (ରୂପା)ରେ ତିଆର ହୋଇଥିବା ଆଳବାଳ (ମଦା) ଭିତରେ ତମାଳ (ସଚ୍ୟାମା ଗଛ)କରିଛି ? ରୂପା ମଦା ଚନ୍ଦ୍ର ପରି; ତମାଳ ସେଥିରେ ଥିବା କଳଙ୍କ ତମାଳ ପରି;

୧୫–ମଲ୍ଲୀ ବାଟୀ–ମଲ୍ଲୀ ବାଡ଼ି,–ମଲ୍ଲୀଫୁଲ ବଗିଚା

୧୬–ଯାମିନୀ (ରାତି) ରୂପ ନବ କାମିନୀର ମୁହଁ; କଳାକର (ଚନ୍ଦ୍ର) ହେଲା । ସେହି ମୁହଁ କାମିନୀର ଗ୍ରଞ୍ଜ ଲୋଚନ (୧. ସୁନ୍ଦର ଆଖି, ୨. ମୃଗ) ରେ ସୁନ୍ଦର ହୋଇଛି ।
କୁରଙ୍ଗଃ ଗ୍ରଞ୍ଜ ଲୋଚନଃ–ଇତି ତ୍ରିକାଣ୍ଡ ଶେଷଃ ।

୧୭–କଥା ଅଛି ସ୍ତ୍ରୀ ମୁହଁ ଦେଖିଲେ ପାରଦ ଖଣିରୁ ଉଚ୍ଛୁଳି ବାହାରେ

ନିଷେ ଅପୂର୍ବ[୨] ପୁଷ୍କର ଆକାଶ ମଣ୍ଡଳ ।
କି ଜଳପୁଷନ୍ତୀ ମାନ ପଡ଼ି ଢଳ ଢଳ ଯେ । ୧୮ ।
ବିଶଦ କେଶରେ ପୁଣି ବିଭ୍ରାଜ ମାନସେ ।
ମତ୍ତ ମଧୁବ୍ରତ ତହିଁ ଚୁମ୍ବେ ଲୋଭ ବଶେ ଯେ । ୧୯ ।
ନିଶାରେ ପ୍ରକଟ ବୋଲି ପ୍ରଚାର ହୋଇଛି ।
ରତି କାଳ ବୋଲି କି ହୃଦରେ ଦେଖାଉଛି ଯେ । ୨୦ ।
ତାର କୁଚ ଛଳେ ଯୁବାଜୟ ଯଶ ବିଞ୍ଚି ।
ଜାଣିଛି ମାର ଚନ୍ଦ୍ରର ସୁମିତ୍ରତା ଅଛି ଯେ । ୨୧ ।
ଉଦ୍ଦୀପନ କାରକ ଚନ୍ଦନୀ ନିଶି ଦେଖି ।
କଲେ ବେଶ ଜେମାକୁ ଚତୁରୀ ପ୍ରାଣ ସଖୀ ଯେ । ୨୨।
କେଶ ବାନ୍ଧୁ ପଚାରିଲେ ରମଣୀ ମଣିକି ।
ସଜାଡ଼ିବା ଜୁଡ଼ା କିବା ବାନ୍ଧିବା ବେଣୀକି ଯେ ।୨୩।
ନାସିକାରେ ମୋତି ଦେଇ ଚେତାଇଲା ତାକୁ ।
ଏ ନାଟ ଆରମ୍ଭ କରେ କିଙ୍କିଣୀ ବାଦ୍ୟକୁ ଯେ । ୨୪ ।

---

ପାଠାନ୍ତର—୨, ଜାଣିଲୁ ।

---

୧୮–୨୦–ଆକାଶ ମଣ୍ଡଳ ଯେ ସେ ପୁଷ୍କର (ନୀଳପଦ୍ମ); ଅପୂର୍ବ (ଅଦ୍ଭୁତ)–ଯେଣୁ ତାହା ଉପରୁ ତଳକୁ ମୁହଁ କରି ଫୁଟିଛି । ଜଳ ପୁଷନ୍ତୀ–(ପାଣି ବିନ୍ଦୁ) ସେହି ପଦ୍ମରେ ପଡ଼ି ଢଳ ଢଳ ହୋଇ ତାରପରି ଦେଖା ଯାଉଛି । ଚନ୍ଦ୍ର ରୂପ ବିଶଦ (ଉଜ୍ଜ୍ୱଳ) କେଶର (ବିଜକୋଷ, କିଞ୍ଜଳ୍କ)ରେ ବିଭ୍ରାଜ ମାନ (ପ୍ରକାଶିତ) ହୋଇଛି । ଚନ୍ଦ୍ରର କଳଙ୍କ ସ୍ଥେ ସେ ମତ୍ତ (ମଧୁଲୋଭୀ) ମଧୁବ୍ରତ (ଭ୍ରମର) ପରି ହୋଇଛି । ରତିରେ ପ୍ରକଟିତ (ପ୍ରସ୍ଫୁଟିତ) ହେବାରୁ ବେଶି ପ୍ରକାଶ (ସୁନ୍ଦର) ହୋଇଛି । ରତି ଏକ କଳା ବା ଶିଳ୍ପ ତାହା ରତିରେ ପ୍ରକାଶ ପାଏ ବୋଲି ଏହି କେଶର ହୃଦୟରେ କଳା (କାଳିମା) କଳଙ୍କ ରୂପରେ ଦେଖାଉଛି ।

୨୧–ଯଶ, ଶୁକ୍ଳ ଓ ଉଜ୍ଜ୍ୱଳ ବୋଲି ବର୍ଣ୍ଣିତ ହୁଏ । କାମ (କନ୍ଦର୍ପ) ରତିରେ ଜୟଯୁକ୍ତ ହୁଏ ।

୨୨–ଉଦ୍ଦିପନ-କାମୋଦ୍ରେକ;

୨୩–କେଶ ବାନ୍ଧୁ–ମୁଣ୍ଡ ବାନ୍ଧିବା ବେଳେ ବେଣୀ କରିବାରେ ବିପରିତ ରତି ପ୍ରତି ସୂଚନା ରହିଲା । ନଚେତ୍ ବେଣୀ ସୁନ୍ଦର ହେଲେ ମଧ୍ୟ ପିଠି ତଳେ ରହି ଅସୁବିଧା ହୁଏ ।

୨୪–ପୂର୍ବ ପଦର ଅର୍ଥ ପ୍ରତି ଲକ୍ଷ୍ୟ ଅଛି । ନାକ ମୋତି ଝୁଲିବ ଏବଂ ଅଣ୍ଟାରେ ଥିବା କିଙ୍କିଣୀ ବାଜିବ ।

ଭଙ୍ଗ୍ରି କଲେ ସଙ୍ଗିନୀ ମଣ୍ଡିବା ବେଳେ ହାର ।
ଅଛି କି ନାହିଁ ଗୋ ଏଥି ସ୍ନେହ ପୂର୍ବ ପର ଗୋ ।୨୫।
କସ୍ତୂରୀ ଗୋଳ୍ଲି ସଜନୀ ଆରମ୍ଭିଲେ ଛଳ ।
ଭରଜ-ଚକ୍ରକୁ ପର ନ ସହିବ କାଳ ଯେ । ୨୬ ।
ଅଞ୍ଜନ ରଞ୍ଜୁ ନୟନେ ବୋଇଲେ କେ କେତେ ।
ଏ ଶର ବିଶାଇବାକୁ ଯୁବା ଧର୍ଯ୍ୟ କେତେ ଯେ । ୨୭ ।
ଅତୁଲ୍ୟ କଟକ ମଣ୍ଡି ବୋଇନ୍ତି ବିଗ୍ରର ।
ଭେଟ୍ଟି କର ଗ୍ରହଣ ଯେ କରିବ କୁମାର ଗୋ । ୨୮ ।
ସୁବେଶ ସମ୍ପୂର୍ଣ୍ଣ ହେବା ଯାଏ ଠାବେ ଠାବେ ।
କେତେ କହିବା କହିଲେ ଯେତେ ହାସ ଲବେ ଯେ ।୨୯।
ଦର୍ପଣ ଦେଖାଇ ସଖୀଗଣେ ପ୍ରଶଂସଇ ।
ଏ ବେଶକୁ ସୁନ୍ଦରୀ ଉତ୍ତମ କାନ୍ତ ପାଇ ଯେ । ୩୦ ।
ମଣ୍ଡିଲ ପରଯେ କାମ କନକ ପରଭ ।
ବାସ ପିନ୍ଧାଇବାକୁ ତାହାକୁ କଲେ ଲଭ ଯେ । ୩୧ ।
ନିବିଡ଼େ ନୀବୀ ନିବାଡ୍ଡୁ ଭିଡ଼ି ରଦନକୁ ।
ଆଳୀ ପୁଛେ ଏଡ଼େ କୋପ ପର ମଦନକୁ ଗୋ ।୩୨।

---

୨୫—ହାର୍-ମୁକ୍ତା ମାଳା; ରତି ବେଳେ ଏହା କାଢି ଦେବାକୁ ହୁଏ । ନଚେତ୍ ଏହା ଛିଡ଼ିଯାଏ ।

୨୬—ଏ ଚିତ୍ର ବେଶି ସମୟ ରହିବ ନାହିଁ ।

୨୭—ବିଷାଇବା—ବିଷାକ୍ତ କରି ବିନ୍ଧିବା; ଯୁବାର ଧର୍ଯ୍ୟ ଧ୍ୱଂସ ହେବ-ଏହି ଭାବ ।

୨୮—ଅତୁଲ୍ୟ-ମଣିବନ୍ଧର ଖଡୁ; କଟକ—କଙ୍କଣ; କର ଗ୍ରହଣ କରିବ—ଏହି ହାତଧରି ନେବ ।

୩୦—ଉତ୍ତମ କାନ୍ତ ପାଇ-( ବଡ଼ କମନୀୟତା ସୌନ୍ଦର୍ଯ୍ୟକୁ ପାଇଛି, ଭଲ ସ୍ୱାମୀ ପାଇଛି);

୩୧—କନକ ପରଭ-ସୁନାରେ ହୋଇଥିବା ଦେବାସନ, ପିଠିଆଡ଼େ ଆଉଜିବାକୁ ଥାଇ ନାନା କାରୁକାର୍ଯ୍ୟରେ ଦେବତାଙ୍କର ଚଳନ୍ତି ପ୍ରତିମା ପାଇଁ ଯେଉଁ ବସିବାର ଆସନ ହୋଇଥାଏ ତାହାକୁ ପ୍ରଭ କହନ୍ତି ।

୩୨—ନିବିଡ଼େ-ନିବାଡ଼ କରି, ଟାଣ କରି; ନୀବୀ—କଛା ବା ଅଣ୍ଟା ଖୋଷଣି; ଭିଡ଼ି ରଦନକୁ ଦାନ୍ତ ଭିଡ଼ି; ଆଳୀ—ସଖୀ;

ଯେଦ୍ଦେ ଦୃଢ ଚୀର କଲେ ପାରଇ କି ରଖି ।
        ବୃଦ୍ଧି ସରିତକୁ ବାଲିବନ୍ଧ ନିକି ସଖୀ ଗୋ । ୩୩ ।
ତେତେବେଳେ ତିଆରି କହୁଛି କଉଁ ସହୀ
        ଦେହଳି ବଳି ଚଳିବା ସମୟରେ ତହିଁ ଗୋ । ୩୪ ।
ନାଥ ହାତ ଧରି ଗୃହୁଆଇ ନେବେ ତୋତେ
        ମଥା ଟେକି କଥା ନ କହିବୁ କଦାଚିତେ ଗୋ । ୩୫ ।
କୋଳେ ଧଇଁ ଶେଯେ ଖୁସି ବସୁଥିବୁ ବାଳା
        ସୀତ୍କାର କରିବୁ ଖେଳାଇ କୋଣେ ଡୋଳା ଗୋ । ୩୬ ।
କେ ବୋଲଇ ଅବଳା କୋମଳା ବୋଲି ତୁହି ।
        ନୋହିବୁ କାତର କାନ୍ତ ବଳବନ୍ତ ଗୃହିଁ ଗୋ । ୩୭ ।
ପ୍ରଚଣ୍ଡ କିରଣେ ରବି ତୋଷଇ ନଳିନ ।
        ଅଳି କେଳିରେ ନୁହଇ ଶିରୀଶ ମଳିନ ଯେ । ୩୮ ।
ଏକାଳେ କେଳି ମନ୍ଦିରେ ବିଜୟ ନାଗର ।
        ଦେଖିଲ ସେ ଶୋଭ ମହାଉଦ୍ଦୀପନ କର ଯେ । ୩୯ ।
ବିଗ୍ଭରଇ ଏକ୍ଷଣି ଆଣିବ ସୁଲକ୍ଷଣୀ
        ନାହିଁ ତାର ଗ୍ଭଟୁକୁ ଗ୍ଭତୁରୀ ହୋଇ ବାଣୀ ଯେ । ୪୦ ।
ବୋଇନ୍ତି ଅବା ମୁଁ ପିଣ୍ଡ ତୁ ମୋର ଜୀବନ ।
        ପିଣ୍ଡକୁ ପ୍ରାଣ ଛାଡ଼େ ଘେନିବ ବିଗୁଣ ଯେ । ୪୧ ।
ନୟନ ପ୍ରତିମା ବୋଲି ଭଣିଲେ ହସିବ ।
        ଯାହାକୁ ଗୃହିଁ ସେ ଦିଶେ ତହିଁ ପ୍ରତିବିମ୍ବ ଯେ । ୪୨ ।

---

୩୩–ବୃଦ୍ଧି ସରିତ–ବର୍ଦ୍ଧିତ ନଈ;

୩୪–ତିଆରି–ଉପଦେଶ ଛଳରେ ଶିଖାଇ କରି; ଦେହଳୀ–ଏରୁଣ୍ଡି ବନ୍ଧ;

୩୮–ଶିରୀଷ ଫୁଲ ଅତି କୋମଳ ।

୪୧–ବିଗୁଣ ଘେନିବ–ଅବିଗୁଣ ପାଇବ, କାହିଁକି ନା ମଲବେଳ ହେଲେ ତ ପିଣ୍ଡକୁ ପ୍ରାଣ ଛାଡ଼େ ।

୪୨–ମୁଁ ଯାହାକୁ ଗ୍ଭହୁଁଛି ସେ ସେଠାରେ ପ୍ରତିବିମ୍ବ ପକାଇ ରଖିଥିଲ ପରି ମୋତେ ଲାଗୁଛି । ଅତଏବ ସେ ମୋର ନୟନ ପ୍ରତିମା ହେଲ କିପରି ? ଏହା ବୁଝି ସେ ହସିବ ।

ରଙ୍ଗ ଚରଣେ ଶରଣଜନ ମୁଁ ତୋହର ।

ବୋଇଲେ ସେ ସ୍ନେହାଧୀନା ହୋଇବ କାତର ଯେ । ୪୩ ।

ତାକୁ କାତର କରଇ କଉଁ ବଡ଼ପଣ ।

ଏହି ପରି ସିନା ଯେତେ ବିନୟ ଭିଆଣ ଯେ । ୪୪ ।

ଏରୂପେ ଭବ ଭବନା କରୁ ନୃପସୁତ

ସଖୀଏ ଭଷିଲ ମିଳି ସୁନ୍ଦରୀ ପୂରତ ଯେ । ୪୫ ।

ଉଠ ମଠ ନ କର ମଦନ ମଦାଳସୀ

ନାଥ ପଥ ଗୁହିଁଥିବେ ପଲ୍ୟଙ୍କରେ ବସି ଯେ । ୪୬ ।

ବିଳମ୍ବର କାରଣ କି ପ୍ରଳମ୍ବ କୁନ୍ତଳା ।

ପାହି ଯିବ ରଜନୀ ନ ସନ୍ଥୁ ଗତିଲୀଳା ଯେ । ୪୭ ।

ଦରହାସି ହେବୁ ଦର କ୍ଷୁଧାତୁର ପରି

ଏହା ଶୁଣି ବଦନ ନୁଆଇଁ କୃଶୋଦରୀ ଯେ । ୪୮ ।

ଛଳିଲ ଆଳୀଏ ରମ୍ଭା ସଦୃଶୀ ସଙ୍ଗାତ ।

କାମନା ସଫଳେ ମୁଖ ପୋତିବା ଉଚିତ ଯେ । ୪୯ ।

କେ ବୋଇଲ ଦଇବ ନେଇ ତା ସନ୍ନିଧାନେ ।

ଯାହା ଲପନକୁ ଦେଖି ନାହିଁ ଏ ସ୍ୱପନେ ଯେ । ୫୦ ।

କି କରିବି କି ବୋଲିବି ବିଳମ୍ବ ଏଥିକି

ଏ ବିଗ୍ରହ ଛିନାଇ ବାହାର ହେବା ଟିକି ଯେ । ୫୧ ।

---

୪୩–ପୁରୁଷ ସ୍ତ୍ରୀର ଚରଣ ସେବା କରିବା ହିନ୍ଦୁ ସ୍ତ୍ରୀକୁ ସୁଖ ଲଗିବ ନାହିଁ । କିମ୍ବା ରଙ୍ଗୀବ (ପଦ୍ମ) ପରି ଯେଉଁ ଚରଣ ସେଥିରେ ମୁଁ ଶରଣ ବୋଲି କହିଲେ ସେ ମୋତେ ଭ୍ରମର ପରି ବିଟ ପୁରୁଷ ବୋଲି ଶଙ୍କା କରିବ–ଏଭବ ମଧ୍ୟ ଥାଇପାରେ ।

୪୭–ପ୍ରଳମ୍ବ କୁନ୍ତଳା–ଅତି ଲମ୍ବବାଳ ଯାହାର;

୪୮–ଦର କ୍ଷୁଧାତୁର–ଦର ଭୋକିଲ, ଖାଇ କରି ମଧ୍ୟ ଯାହାର ପେଟ ପୂରି ନ ଥାଏ ।

୪୯–ମୁଣ୍ଡ ପୋତି ଦେବାରୁ ଆଳୀ ଏ ( ଜଣେ ସଖୀ ) କହିଲ ହେ ସଙ୍ଗାତ, ଏ ରମ୍ଭା ସଦୃଶୀ (ପରି) । କାମନା ଫଳବନ୍ତ ହେବାରୁ ଏହାର ମୁଣ୍ଡ ପୋତି ଦେବା ଠିକ୍ ହୋଇଛି । ରମ୍ଭା ( କଦଳୀ ଗଛ ) ସଫଳ (ଫଳବନ୍ତ) ହେଲେ ମୁଣ୍ଡ ପୋତିଦିଏ । ଏହି ଶ୍ଲେଷାର୍ଥ ।

୫୧–ଛିନାଇ–ଛିଣ୍ଡାଇ, ସାରି, ନିଷ୍ପତ୍ତି କରି;

କେ ଭଷଇ ନ ଆସଇ ଏ କଥା ମନକୁ ।
ଯାହା ବୋଲେ ଛାଡ଼ି ଦେବ ପିନ୍ଧା ବସନକୁ ଯେ । ୪୨ ।

ତାହା ପାଶେ ଯିବାକୁ କରୁଛି କିପାଁ ଲଭ
ନ ଜାଣେ କି ସେ ନାଶ ହୋଇବ ବୋଲି ଆଜ ଯେ । ୪୩ ।

ରହିଥିଲେ ଲହି ହୋଉଥିବେ ଏହି ବାଣୀ
ଗମନ ମନ୍ଥର ଏହା ଶୁଣି ଗୁଣମଣି ଯେ ।। ୪୪ ।

କେଳିପୁର ଦିଶୁଁ ଅତି ମନ୍ଦ ଭଲ ଘୁଲି
ହସିଲ ହସିଲ ହୋଇ ସଜନୀଏ ବୋଲି ଯେ । ୪୫ ।

ଆମ୍ଭ ସଙ୍ଗେ ଥିଲକୁ କି ହୋଉ ରହ ରହ
ତୁ ଛାଡ଼ିଲୁ ବୋଲି ଆମ୍ଭେ ଛାଡ଼ିବୁ କି ସ୍ନେହ ଗୋ । ୪୬ ।

ତୋତେ କାନ୍ତକୁ ସମର୍ପି ଦେଜାଯାଏ ଥିବୁଁ
ରହ ସ୍ଥାନ ନିକଟରୁ ସହଜେ ରହିବୁଁ ଗୋ । ୪୭ ।

ଜଣେ ବୋଇଲ ରେ ଏମାନଙ୍କ କଥା ସ୍ମରି
ଭବ ଦାନେ କୃପଣ ନୋହିବୁ କୃଶୋଦରି ଗୋ । ୪୮ ।

ଶିଖାଇ ଦେବାର ବୁଦ୍ଧି କେତେବେଳ ଥାଇ
ହଂସ ଶ୍ୱେତ ଶିଖୀ ଚିତ୍ର କେ କରିଛି ସହୀ ଗୋ । ୪୯ ।

ଜଥା କଥାକେ ଏଣିକି ଭିଆଇବ ଛନ୍ଦ
ଯେତେ ମନ ଘେନିଲେ ପାଇବା ନିଜ ଛନ୍ଦ ଗୋ । ୬୦ ।

---

୫୩—ସେ ନାଶଯିବ—ଇଚ୍ଛା ନାଶ ହେବ ।

୫୪—ଜଣେ କହିଲା-ବେଖେରୁଇ, ଟେଁଥିଲେ ଏହିପରି କଥା ଭହି ହେଉଥିବେ ।
ଏହା ଶୁଣି ଜେମା ଗମନକୁ ଅଉରି ମଠ କରି ଦେଲ । ମନ୍ଥର-ମଠ ଜଡେ;

୫୬—ଅମ୍ଭେ ଥିବାକୁ-ଆମ୍ଭ ସଙ୍ଗରେ ଥିବାରୁ; ରହ ରହ—ମଠ ମଠ;

୫୭—ରହ ସ୍ଥାନ—ଗୁପ୍ତ ସ୍ଥାନ, କେଳିପୁର; ସହଜେ—ମନକୁ;

୫୯—[ ୨୯ ଛାନ୍ଦ ୫୨ ପଦ ଟୀକା ଦେଖ । ]

୬୦—ଛନ୍ଦ—କପଟ;

ଏତେ ବୋଲି ଗଲ ବୋଲେ କେ ରସନଧିକି ।
ଶୁଭିଲ ନୂପୁର ନାଦ କାନ୍ତ ସନ୍ନିଧିକି ଯେ । ୬୧ ।
ପ୍ରଥମେ ପାର୍ଞ୍ଚିଲ କାମ ଜୟତୁର ବାଜି ।
ମୋହ ଉପରକୁ କି ଆସୁଛି ଦଣ୍ଡ ସାଜି ଯେ । ୬୨ ।
ଘର୍ଣ୍ଣି ନାଦେ ମୃଗପ୍ରାୟ ଟେକିଲ ଶ୍ରୁତିକି ।
ଜାଣିଲ ଆସଇ ରସବତୀ ମୋ କତିକି ଯେ । ୬୩ ।
ଦ୍ୱାର ପାଶେ ଆସି କାନ୍ତ ଦେଖିଲ ସ୍ୱନେତ୍ରା ।
ରତି କି ଆସଇ କରି ନାରୀ ରଥଯାତ୍ରା ଯେ । ୬୪ ।
ଲୀଳା କରୁଅଛି କିବା ହେମ ପୁଷ୍ପ ଲତା ।
ଏ ଉତପାତୁଁ ପଡ଼ିବ ଗ୍ରେଲେ ଚଞ୍ଚଳତା ଯେ । ୬୫ ।
କାଞ୍ଚି ଅସ୍ଥିର କୁନ୍ତଳ ଆକର୍ଷଣ ହେବ ।
ମାଳବରେ ଛିନ୍ନ ଭିନ୍ନ ଦଶା ପଡ଼ିଯିବ ଯେ । ୬୬ ।
ଅଙ୍ଗ ଦେଶରେ ହୋଇବ ଅଶେଷ ସଙ୍ଗର ।
ପୁଣି କାମପ୍ରଭ ଖେଳାଇଲ ପରକାର ଯେ । ୬୭ ।

---

୬୨—ବାଜି—ବଜାଇ ମୋହ ଉପରକୁ—ମୋ ହତକୁ, ମୋତେ ହତ କରିବାକୁ; ଦଣ୍ଡ—ସେନା, ବଳ;

୬୪—ରତି—ରତିଦେବୀ;

୬୫—ଗ୍ରେଳେ—(୧. କାଞ୍ଚଲରେ ୨.ଗ୍ରେଳ ଦେଶରେ-କାରଣ ନାରୀର ବିଜୟ ରଥଯାତ୍ରା ଏ) ଏ ଏକ ଉତ୍ପାତ—ଆକସ୍ମିକ ବିପଦ ଜନକ ଘଟଣା ;

୬୬—କାଞ୍ଚି—୧: ମେଖଳା; ଏକ ସରିଆ ଅଣ୍ଟାସୁତା, ୨. ଦେଶନାମ, "ଏକ ଯଷ୍ଟିର୍ଭବେତ୍ କାଞ୍ଚି ମେଖଳାତ୍ୱଷ୍ଟ ଯଷ୍ଟକା ରସନା ଷୋଡ଼ଶାଜ୍ଞେୟା କଳାପୋବିଂଶତି ସ୍ତଥା"—ଇତି ବଚନଂ । ଅସ୍ଥିର—୧. ନାଚିବା; ୨. ଅସ୍ତବ୍ୟସ୍ତ; କୁନ୍ତଳ—୧. ବାଳ, ୨. କୁନ୍ତଳ ଦେଶ; ଆକର୍ଷଣ—୧. ଭିଡ଼ାଓଟର, ୨. ଆକ୍ରମଣ । ମାଳବରେ—୧. ମାଳ କ୍ଷେତ୍ରରେ, ୨. ମାଳବ ଦେଶରେ; ଛିନ୍ନଭିନ୍ନଦଶା—୧. ଛିଣ୍ଡିଯିବା, ୨. ନାରଖାର ହୋଇଯିବା ;

୬୭—ଅଙ୍ଗ—୧. ଅବୟବ, ୨. ଦେଶନାମ; ଅଶେଷ ସଙ୍ଗର—୧-ଅନେକ ପ୍ରକାର ସଙ୍ଗସୁଖ, ୨.ଅନେକଯୁଦ୍ଧ; ପୁଣି ଏ କାମ ଖେଳାଉ ଥିବା ହେମ ପ୍ରଭ ( ସୁବର୍ଣ୍ଣ ପ୍ରତିମା ) ପରି ହୋଇଛି ।

ଘେରି କରିଅଛି ବାଳା ସର୍ବ ଶୋଭଶିରୀ ।
ଏଣୁ ଆଣୁଛନ୍ତି କି ମଦନ ପାଶେ ଧରି ଯେ । ୬୮ ।
ଦନ୍ତ ନଖ ବାହୁପାଶେ ଦଣ୍ଡକୁ ପାଇବ ।
ବିଶେଷତଃ ପ୍ରେମଧନ ଦେଇ ମୁକୁଳିବ ଯେ । ୬୯ ।
ହୋଇଲା ମନ୍ଦିରନେତ୍ରା ମନ୍ଦିର ସମୀପ ।
ଗଲତ ମୋ ବଡ଼ ପଣ ବିଗ୍ରହି କନ୍ଦର୍ପ ଯେ । ୭୦ ।
ବେନି ହୃଦୟ ଲକ୍ଷକୁ କଲା ସେ ପ୍ରକାର ।
ଗେମାଞ୍ଚ ବ୍ୟାଜେ କି ପୂର୍ଣ୍ଣ ଅପଘନେ ଶର ଯେ ।୭୧।
ରୁଧିର ଛଳେ କି ସ୍ୱେଦଜଳ ପରକାଶ ।
ନୋହିଲେ କି ସ୍ତମ୍ଭ ବଶେ ସେ ବେନି ଅବଶ ଯେ ।୭୨।
ଏଠାରୁ ଏ ମନୋରମ ଛାନ୍ଦ ହେଲା ଶେଷ ।
ସୀତା ମଧୁଶଯ୍ୟା ଅର୍ଥେ ଯେ ରାମ ଉଲ୍ଲାସ ଯେ ।୭୩।
ତାଙ୍କ ଚରଣ ପଙ୍କଜେ ମନ ଅବିରତ ।
ଉପଇନ୍ଦ୍ର ଭଞ୍ଜ ବୀରବର କହେ ଗୀତ ଯେ । ୭୪ ।

---

୬୮—ଘେରଣୀ ବୋଲି ଧରି ମଦନରାଜା ପାଖକୁ ବିଗ୍ରହ କରିବାକୁ ଆଣୁଛନ୍ତି । ଶ୍ରୀ ର ଏଠାରେ ଶ୍ଳେଷାର୍ଥ ସମ୍ପତ୍ତି ।

୬୯—ଓଷ୍ଠରେ ଦନ୍ତ, ସ୍ତନରେ ନଖ, ଆଲିଙ୍ଗନରେ ବାହୁ ପାଶ ବା ବାହୁବନ୍ଧନ; ପ୍ରେମ ରୂପକ ଧନ ଜୋରିମାନା ଦେବ । ମୁକୁଳିବ—ଖଲାସ ହେବ ;

୭୦—ମଦିର—ମତ୍ତ ଖଞ୍ଜନ ; ମନ୍ଦିର—କେଳିପୁର ;

୭୧—ଲକ୍ଷ—ଲକ୍ଷ୍ୟ ବସ୍ତୁ, ଯେଉଁଠାକୁ ଲକ୍ଷ ମରଯାଏ; ଗେମାଞ୍ଚ—ଗେମ ଟାଙ୍କୁରିବା; ବ୍ୟାଜେ —ରୂପରେ, ଛଳରେ; ଅପଘନ—ଶରୀର;

୭୨—ବହୁତ ରକ୍ତ ବୋହିଲେ ବୀର ଅବଶ ( ଢ଼ାଙ୍ଗପରି ) ହୋଇଯାଏ; ଏଠାରେ କାମଜ ସ୍ତମ୍ଭ ହେଲା ।

* *

# ଏଗୁଣତ୍ରିଂଶ ଛାନ୍ଦ

## ( କେଳିପୁର ରହସ୍ୟ ବର୍ଣ୍ଣନା )

ରାଗ—ପଞ୍ଚମ ବରାଡ଼ି ।

କର୍ଣ୍ଣ ମନ ମହୋତ୍ସବ ରସ ସାବଧାନ ।
ହୋଇ ଶୁଣ ସୁରସିକ ତରୁଣ ସୁଜନ ହେ ।
ଚକ୍ର ବାଡ଼ ପରି ବାଳା ଦେହଲୀଜି ତହିଁ ।
ଅମ୍ବୁଜ ଅରୁଣ ପଦ ନ ପାରେ ବଳାଇ ଯେ । ୧ ।

ନଦୀ ଯାଇ ଯଥା ସିନ୍ଧୁ ସଙ୍ଗମରେ ଲଭି ।
ସେତୁ ଲଙ୍ଘି ନ ପାରିବା ଲକ୍ଷଣା ବଲ୍ଲଭୀ ଯେ ।
ଏ କିସ ଗୋ ଋଷି ସାଜନୀଏ ଦେଇ ପେଲି ।
ବଲ୍ଲଭକୁ ଶୁଣାଇ ଏମନ୍ତ ବାଣୀ ବୋଲି ଯେ । ୨ ।

ଅମରେ ଭୋଗ କରନ୍ତି ର଼ ଶଶୀ–ଶେଷ ।
ଇତାରୁ କଳିକା ଛାଡ଼ି ତୋଳି ସୁମନସ ଯେ ।
ଦାରୁ ଭେଦନ ଭ୍ରମର ପଦ୍ମଫୁଲେ ଶୋଇ
ପୁନଃ ପୁନଃ ରସ ଭୋଗ ଉପଯୋଗ ପାଇ ଯେ । ୩।

ତୁମ୍ଭେ ତ ରସିକ ସିଂହ ହରିଣୀ ସୁକେଶୀ ।
ବଳବନ୍ତର କି ଯଶ ଅବଳା ଧରସି ଯେ ।
କେ ଛଳିଛ ହେଲକୁ କେମାର ପ୍ରାଣସଖୀ ।
ତାହା ଦୁଃଖେ ଦୁଃଖୀ ଆମ୍ଭେ ତାହା ସୁଖେ ସୁଖୀ ଯେ ।୪।

---

୧–[୨୭ ଛାନ୍ଦ ୨୯ ପଦ ଟୀକା ଦେଖ ।]

୨–ଲକ୍ଷଣା–ଉପମା;

୩–ପୁରାଣରେ ଅଛି ଦେବତା ମାନେ ଗୋଟିଏ ଗୋଟିଏ କଳା କରି ଚନ୍ଦ୍ରର ଅମୃତ ଖାଇ ଯାଆନ୍ତି । ଏହିପରି ପନ୍ଦର କଳା ଖାଇ ଆଉ ଗୋଟିଏ କଳା ଛାଡ଼ି ଯାଆନ୍ତି । ସେଥିରୁ ବଢ଼ି ପୁଣି ନୂଆ ଚନ୍ଦ୍ର ହୁଏ । ଯେପରି ଫୁଲ ପାଇବେ ବୋଲି କଳିକା (କଳି) ଛାଡ଼ି ସୁମନସ (ଫୁଟିଥିବା ଫୁଲ) ତୋଳନ୍ତି । ଦାରୁ ଭେଦନ(କାଠ କାଟି ଦେବାର ଅଭ୍ୟାସ ଯାହାର ସେ ଭ୍ରମର) କୋମଳ ପଦ୍ମ ଫୁଲରେ ଶୋଇ, ରସ–(ମଧୁ) ପିଇବାରେ ପଦ୍ମକୁ ନଷ୍ଟ କରି ଦିଏ ନାହିଁ ।

ଏଠାରେ ଏ ଅଟା ଗୁଡ଼ିକ ବଡ଼ ସରସ ଓ ସୁନ୍ଦର । ଏଥିରେ କାବ୍ୟର ଧ୍ୱନାର୍ଥ ବଡ଼ ସ୍ୱାଭାବିକ ।

୪–ତୁମେ ସିଂହ, କେମା ହରିଣୀ ପରି–ମାଈ ହରିଣ ମାରିବା ଏବେ ମଧ୍ୟ ଶୀକାରି ମାନଙ୍କ ପକ୍ଷରେ ନିନ୍ଦନୀୟ

ଆମ୍ଭେ ଜଣାଇବାର ଅଧିକ କଥା ସିନା ।
ଯେ ଯାହାର ତାକୁ କି ନ ଲଗେ ତା ବେଦନା ଯେ ।
ଏତେ କହି କପାଟ ଓଟାରି ଆଣି କିଳି ।
ପୁର ପରିସରରୁ ଅନ୍ତର ହେଲେ ଆଳୀ ଯେ । ୫ ।
ମୋହିନୀ ପୀୟୂଷ କୁମ୍ଭ ବସନେ ଘୋଡ଼ାଇ ।
ଇନ୍ଦ୍ର ଆଗେ ଭଗ୍ନ ହେଲ ପ୍ରାୟ ଶୋଭା ପାଇ ଯେ ।
କାନ୍ତ ଦେଖି ଏକାନ୍ତ କରକୁ ଧରି କରେ ।
ମନ୍ଦ ପବନରେ ଯଥା ପଦ୍ମଲତା ଥରେ ଯେ । ୬ ।
ମାଳୀ ଚମ୍ପକ ମାଳିକା ତୋଳି ନେଲ ପରି ।
ସେନେହ ବଶରେ ତାକୁ ସେ କୋଳରେ ଧରି ଯେ ।
ଲଜ୍ଜ ବଶେ ସେ ଯେ ଶେଯେ ଖସି ବସେ ଯହିଁ ।
ବଲ୍ଲଭ ଗୃହେ ଆରମ୍ଭେ ଅଧୋମୁଖ ହୋଇ ଯେ । ୭ ।
ହେଠ କଲେ ବଦନ ଚନ୍ଦ୍ରକୁ କୃଶକଟି ।
ଆଉ କେହି ଯିବ ମୋର କାମ-ତମ ତୁଟି ଗୋ ।
ତା ଶରକୁ ନ କଲେ ନୟନ ପ୍ରତିଶର ।
ନିରନ୍ତର ହୋଉଥିବି ସିନା ଜରଜର ଗୋ । ୮ ।
ବାରଣ ଗତି ଚରଣ ଶରଣ ଜନରେ ।
ଉଚିତ ପ୍ରଭୁ କପଟ ରଖିବା ମନରେ ଯେ ।
ତୋ ବାହାରେ ନାହିଁ ଆହା କରିବାକୁ ସାହା ।
ଯାହା ଇଚ୍ଛା ତାହା କର ଜଣାଇମି କାହା ଗୋ । ୯ ।

---

୫—ପୁର ପରିସରରୁ—କେଳି ପୁର ପାଖ ବା ଅଗଣାରୁ;

୬—ମୋହିନୀ—[୩୧ଛାନ୍ଦ ୨୧ପଦ ଟୀକା ଦେଖ ।] ଏଠାରେ 'ଶିବ' ନ କହି 'ଇନ୍ଦ୍ର' କୁହା ଯାଇଛି । କାରଣ ଶିବ ଅସମ୍ଭାଳ ହୋଇ ଘୋଡ଼ାଇ ଥିଲେ' ଏକାନ୍ତ ଦେଖି ଆଉ ସମସ୍ତେ ଦୁଆରକୁ ବାହାରୁ ବନ୍ଦ କରି ବାହାରି ଯିବାର ଦେଖି । ମନ୍ଦ—ଧୀର;

୭—ତୋଳି ନେଲ ପରି—ତଳୁ ଗୋଟେଇ ଦୁଇ ହାତରେ ଧରି ଘେନିଗଲ ପରି । ଅଧୋ-ମଖେ—ପ୍ରଥମ ଦର୍ଶନର ସଙ୍କୋଚରେ କିମ୍ବା ସ୍ତ୍ରୀ ଉଚ୍ଚରେ ଛୋଟ ଥିବାରୁ ମୁହିଁ ତଳକୁ କରି, ତାକୁ ଗୃହିଁ ।

୮—ହେଠ—[୨୪ଶ ଛାନ୍ଦ ୬ ପଦ ଟୀକା ଦେଖ ।] କେହି—କିପରି; କାମତମ (ଅନ୍ଧାର) କୁ ବଦନ ଚନ୍ଦ୍ର । ଶରକୁ ପ୍ରତିଶର କାଟେ ।

୯—ଚରଣ ଶରଣ ଜନ—(ଭୃତ୍ୟ) ଠାରେ ପ୍ରଭୁର କପଟ (ଛନ୍ଦ ମନ ନ ଫିଟାଇବା) କାହା—କାହାକୁ;

ଏ ବିନୟ ବାଣୀକି ଦ୍ୱିତୀୟା ତିଥି ତାର ।
କିଛି ଉଦେ କରଇଲା ହାସ ସୁଧାକର ଯେ ।
ଗୁରୁ ଚକୋର ଈକ୍ଷଣ ବିଳାସ ଉଲ୍ଲାସ ।
କ୍ଷଣକ ଭିତରେ କରିଗଲା ପରକାଶ ଯେ । ୧୦ ।

ମୃଦୁ ଅଙ୍ଗୀ ଅଙ୍ଗୀକାର ଏ ଭଙ୍ଗୀରୁ ଜାଣି ।
ନେଇ ଚିବୁକେ ପୁରୁଷ ନିବେଶିଲା ପାଣି ଯେ ।
ଭେଳ ହୋଇ କୋଳ କରି ଶ୍ରୀମୁଖ ଟେକିଲା ।
ଯୋଗଭଙ୍ଗୀ ଭଙ୍ଗୀ ସ୍ଥାନ ଥୟ ନ ରଖିଲା ଯେ ।୧୧।

ଭ୍ରମରେ ଏହି ବଦନ ଭ୍ରମରେ ସାରସ ।
ଚୁମ୍ବନ୍ତି ଭବି ଚୁମ୍ବନ ଦେଇ ସେ ହରଷ ଯେ ।
ଅଙ୍ଗହାର କରି ହାର କରି ଆଲିଙ୍ଗନ ।
ଧିକ କଲା ଘନସାର ଚନ୍ଦନ ଲେପନ ଯେ । ୧୨ ।

ପାନ ତାର ଅଧର ପାନରେ ମତ୍ତ ଭବେ ।
ରସନାରେ ରସ ଆସ୍ୱାଦନ କରି ଭବେ ଯେ ।
ଏ ଥାଉଁ ଅମୃତ ପିଇ କି ଲଭନ୍ତି ଦେବେ ।
ମଧୁ ପଦେ ମଧୁମତ୍ତ ପିଶୁନ ଦାନବେ ଯେ । ୧୩ ।

---

୧୦—ଏ ବିନୟ ବଚନରେ ଯେଉଁ ହାସ ବାହାର କଲା ସେ ତା ମୁଖ ଚନ୍ଦ୍ର ପ୍ରତି ଦ୍ୱିତୀୟା ତିଥି ପରି ହେଲା । ଈକ୍ଷଣ ବିଳାସ—କଟାକ୍ଷ;

୧୧—ଯୋଗ ଭଙ୍ଗୀ-ଯୋଗ ଭଙ୍ଗ କାରିଣୀ; ଭଙ୍ଗୀସ୍ଥାନ—ଏଠାରେ ମୁଖ;

୧୨—ଭ୍ରମରେ—(ଭ୍ରମରମାନେ) ଏହି ବଦନ ଭ୍ରମରେ (ଏହି ମୁହଁ ବୋଲି ବିଚାରି) ସାରସ (ପଦ୍ମକୁ) ଚୁମ୍ବନ୍ତି । ହାର କରି—ହରଣ କରି, କାଢି ରଖି ଦେଇ [୩୨ ଛାନ୍ଦ ୨୫ ପଦ ଦେଖ । ]

୧୩—ପାନ ତାର—ପାନ ଖାଇବା ଲୈତ୍ରରୁ ଉଜ୍ଜ୍ୱଳ ଜଳ; ମଦ ମତ୍ତ—ମଦୁଆ; ମଧୁ ପଦରେ ମଦ ଥାଇ ମତ୍ତ ହୋଇ ଦାନବ (ଅସୁର)ମାନେ ଏଭଳି ଅମୃତ ଥାଉଁ ଥାଉଁ ସମୁଦ୍ର ମନ୍ଥନରୁ ଅମୃତ ଖାଇବେ ବୋଲି ଦେବତା ମାନଙ୍କ ସାଙ୍ଗରେ କଳି କରି ଥିଲେ ସେମାନେ ପିଶୁନ (ନିର୍ବୋଧ); ମଧୁର ମଦ୍ୟ ଅର୍ଥ ମଧ୍ୟ ହୁଏ ।

ଲଭିଲା ଏ ମେରୁ ଉରଜକୁ ଧରି କରେ ।
ବାଞ୍ଛା କରି ଆଜ କଉଁ ସ୍ୱର୍ଗ ପ୍ରାପତରେ ଯେ ।
କରଜ ଚଳାଇ ତନୁ ଶୋଭକୁ ଗୃହିଲା ।
ଭଳେ ଏତେକାଳେ ନୀପଫୁଲେ ନିସ୍ତାରିଲା ଯେ ।୧୪।
ଗତିବଶେ ଦେଖି ତା ଚଞ୍ଚଳ ଛଟକକୁ ।
ମନେ ମନେ ନିନ୍ଦାକଲା ବିଦ୍ୟୁ ଝଟକକୁ ଯେ ।
ବେଢ଼ୁ ବେଳ ମନ୍ଦନେ ଆତୁର ସେ ଚତୁର ।
ନିବିଡ଼ ନୀବୀବନ୍ଧରେ ପକାଇଲା କର ଯେ । ୧୫ ।
ନିଷେଧିଲା କରଭେରୁ କରି କରେ କର ।
କରୀ ଧରି ହୋଏ ନିକି ମୃଣାଳ ସୂତ୍ରର ଯେ ।
ପୁଂସ କକ୍ଷମୂଳେ ଚିପି ଦେଇ ନଖ ମୁନ ।
କୁଚାଗ୍ରେ ସମଗ୍ରେ କଲା ରସନା ଗ୍ଳନ ଯେ । ୧୬ ।
ଦଶନେ ଦଂଶନ କରି ଗଣ୍ଡ ମଣ୍ଡଳକୁ ।
ଗ୍ଳିଦେଲେ ଚନ୍ଦ୍ର ଥିଲା ଶରୀର ସ୍ଥଳକୁ ଯେ ।
ସାହାର ଭଳି ରସିକା ହୋଇଲା ଅଜ୍ଞାନ ।
ବିଶେଷତଃ ମାଦକଃ ପାନରେ ଯଥା ଜନ ଯେ ।୧୭।

---

୧୪—ସ୍ୱର୍ଗରେ ମେରୁ ପର୍ବତ ଥାଏ । କରଜ—ନଖ; ନୀପଫୁଲ—କଦମ୍ବଫୁଲ—ରୋମଟାଙ୍କୁରି-ଯିବାରୁ ।

୧୫—ଗତିବଶେ—ଦେହର ସ୍ପନ୍ଦନ ହେତୁରୁ ;

୧୬—କରୀ—ହାତୀ; ମୃଣାଳସୂତ୍ର କଇଁନାଡ଼ସୂତା ;

୧୭—ଚନ୍ଦ୍ର—ଏଠାରେ ଅନଙ୍ଗ; କାମ ଶାସ୍ତ୍ରରେ ସର୍ବଜାତି ସ୍ତ୍ରୀର ସାଧାରଣ ଚନ୍ଦ୍ରକଳା, ତଳ ଲିଖିତ ମତରେ ନିରୂପଣ କରି କୁହା ଯାଇଛି । ଯଥା—

"ଅଙ୍ଗୁଷ୍ଠେ, ପଦ ଗୁଲ୍‌ଫ ଜାନୁ ଜଘନେ ଯୋନୌ ଚନାଭୌକୁଚେ ।
କକ୍ଷେ କଣ୍ଠେ କପୋଳ ଦନ୍ତ ବସନେ ନେତ୍ରାଳିକେ ମୂର୍ଦ୍ଧନି ।
ଶୁକ୍ଳା ଶୁକ୍ଳ ବିଭଗତୋ ମୃଗ ଦୃଶା ମଙ୍ଗେ ଅନଙ୍ଗ ସ୍ଥିତି ।
ଊର୍ଦ୍ଧ୍ୱାଧୋ ଗମନେନ ବାମ ପଦଗା ପକ୍ଷଦ୍ୱୟେ ଲକ୍ଷୟେତ୍ ।

ସ୍ମର ଦୀପିକାରେ ମଧ୍ୟ କାମ ଗ୍ଳନ ତଳ ଲିଖିତ ରୂପେ ଦେଖାଯାଏ ।

ଚନ୍ଦ୍ରା କାରେଣ ଚରତି ପୂର୍ବପକ୍ଷେ ବିପରୀତକେ ସ୍ତ୍ରୀ ସ୍ଥାନାତ୍ ସ୍ତ୍ରବଚେନଙ୍ଗୋ ଗୋମୂତ୍ର ସଦୃଶଃ କ୍ରମାତ୍ ପାଦଗୁଲ୍‌ଫୋରୁ ଦେଶେଚ ସ୍ତନେ କୁକ୍ଷୌ ସ୍ଥଳେ ଶ୍ରୁତୌ ନଖକ୍ଷତଂ

ଖୋଷିଦେଲ ଲଲଟ ପଟରେ ନେତ୍ର ଦୁଇ ।
ବିବସନ କଲ କାନ୍ତ ଏ ସମୟ ଗ୍ରହି ଯେ ।
ତନୁ ତନୁ ଭିନ୍ନ ହେବ କରି ଏ ବିଗ୍ରହ ।
ଆପଣା ପିନ୍ଧିଲ ବସନହିଁ କଲ ଦୂର ଯେ । ୧୮ ।
ସେ ଶୋଭାରେ ଲୋଭ ହୋଇ ମନେ କଲ ପୁଣ ।
ସୁବର୍ଣ୍ଣ ଚର୍ମକୁ ନିଷେ ଏ କାଚ ରସାଣ ଯେ ।
ବନ୍ଧଯୋଗେ ଧରି ଉରେ ଉର ଲଗାଇଲ ।
ଜିହ୍ୱାଗ୍ରହି କର୍ଣ୍ଣ ଧୀର କରି ଫୁଙ୍କି ଦେଲ ଯେ ।୧୯।
ଉରଜ ମଧୁଂ୍ୟ କରଜ ଆଣିଲ ଚଳାଇ ।
ନାଭିରେ ଦେଲେ କନିଷ୍ଠାଙ୍ଗୁଳିକି ବୁଲାଇ ଯେ ।
ନିତମ୍ବେ ହାମୋଳି ଠୁଙ୍କୁ ଚେତନା ବସିଲ ।
ଭିଡ଼ି ମହାମତ୍ତେ ରମା ସୁରତେ ରସିଲ ଯେ ।୨୦।
ରତିପତି ଛନ୍ଦେ ରତି ପତି ବିରଚିତ ।
କଙ୍କଣ ନୂପୁର ନାଦେ ପୁର ଉଚ୍ଛୁଳିତ ଯେ ।
ପରସ୍ପରେ ହୋଇଲେ ଅଧର ପିଆପିଇ ।
ଏଣୁ ତେଣୁ ଯହିଁରେ ଚୁମ୍ବନ ଦିଆ ଦେଇ ଯେ ।୨ ।
ହାର ଜିଣି ମୁରୁଡ଼ି ପଡ଼ିଛି ବାସ ତେନି ।
ସେହି ଯାଉଛନ୍ତି ସଙ୍ଗେ ସଙ୍ଗେ ଲଜ୍ଜା ଘେନି ଯେ ।
କେଳତି ଜନନୀ ଜଗ ଭୀରୁ ଗୁରୁବାଦ ।
ସାକ୍ଷୀ କରି ରଖିଛନ୍ତି ପ୍ରଦୀପ ପ୍ରସିଦ୍ଧ ଯେ । ୨୨ ।

---

ପ୍ରଦାତବ୍ୟଂ ଭଗେ ନାଭୌଚ ମର୍ଦତଂ ହୃଦୟେ ତାଡ଼ନଂ ହସ୍ତୌ ଦନ୍ତେନାଧର ପିଡ଼ନଂ ଗଣ୍ଡେ ନେତ୍ରେ ଲଲଟେଚ ଚୁମ୍ବନୈଃ କାମୁକୈ ଗିହ ।" ଇତି କାମୁକ ସଂଘାତେ ର୍ଦାତବ୍ୟଂ କାମ ଗ୍ରଜନଂ "

୧୯—ଏ କାଚ—( ଏ ରତି କାଚ ); ରସାଣ ( ବନକ ପରି );

୨୦—ହାମୋଳି ଠୁଙ୍କୁ—ହାତ ମଝିକି ଫମ୍ପାକରି ଘପୁଡ଼ାଇ ଦେବାରୁ; ଚେତନା ବସିଲ— ଚେତନା ପଶିଲ ( ହେଲ ) । ମହାମତ୍ତେ—ଅତି ଉତ୍ସାହରେ ;

୨୧—ଛନ୍ଦେ—( ଦୁଃଖ ନିମନ୍ତେ ) ଯେପରି କି ଏହି ରତିକୁ ପତି ( ଚନ୍ଦ୍ରଭାନୁ ) ବିରଚିତ ( ରଚନା ) କଲ ।

୨୨—ହାର ଜିଣା ମୁରୁଡ଼ି—ବାଜିରେ ପଣ ସ୍ୱରୂପ; କେଳତି-( ରତି ) ଜନନୀ ( ଜନନ,

ରଜସୁତ ରଜା ହେଲି ବୋଲି ହୋଏ ତୋଷି ।
ସୁତନୁ ବିଶାଳ ଜାନୁ ସିଂହାସନେ ବସି ଯେ ।
କେ ନଖରେ କ୍ଷତ କରେ କେ ପୀଡ଼ଇ ଦନ୍ତେ
କଲେ ଉତ୍ତାନ-ପାର୍ଶ୍ୱ-ଶୟନ ବନ୍ଧ ଯେତେ ଯେ ।୨୩।
ରମଣୀ ଭଷି ବଚନେ ପୁରୁଷ ହୁଙ୍କୃତ ।
ବାଳା ନଖକ୍ଷତକୁ ପୁରୁଷ ମୁଷ୍ଟିଘାତ ଯେ ।
କି କରନ୍ତି କି ବୋଲନ୍ତି ନ ପାରନ୍ତି ଜାଣି ।
ପିଉ ରୋଗ ହୋଇଲେ ଅଧିକ ଯଥା ପ୍ରାଣୀ ଯେ ।୨୪।
ସନ୍ନିପାତୀ ପ୍ରାୟ କ୍ଷଣେ କ୍ଷଣେ ଚନ୍ଦ୍ର ନାଡ଼ୀ
ବାତକୀ ପରାୟ ବେପଥୁରେ ଛନ୍ତି ଜଡ଼ି ଯେ ।
ଇଚ୍ଛା ହୋଏ ମନ୍ଦ ଶୀତ ଗନ୍ଧବହ ବହୁ ।
ଏ ବଡ଼ କାମନା ଏକା ରଜନୀ ନ ପାହୁ ଯେ ।୨୫।
ଏମନ୍ତ ଯେ ଦର୍ପଣ ଗୁନ୍ଦୁଆ ପୁରେ ଥିଲା ।
ନାଗରୀ ଗୃହିଁଲ ଯୋଗେ ଉଇଟ ଦିଶିଲା ଯେ ।
ଲଜେ ବୁଡ଼ି ନେତ୍ର ମହାବ୍ୟାକୁଳ ତା ମତି ।
ସଚେହେଁ ଆରମ୍ଭ କଲେ ବିପରୀତ ରତି ଯେ ।୨୬।
ପୁଣି ଚକ୍ଷୁ ଫେଡ଼ିଦେଇ ଆରତ ହୋଇଲା ।
ଖସିବା ବେଳକୁ କାନ୍ତ ମୋ ଆନ ବୋଇଲା ଯେ ।

---

ଜନୁ ) ଜଗଦ୍ଭୀରୁ-( କନ୍ଦର୍ପ ); " ଜଗଦ୍ଭୀରୁର୍ମଧୁସଖୋ"-ତ୍ରିକାଣ୍ଡ ଶେଷଃ । ଯୁଦ୍ଧ-ବାଦ-ଉରି ବିବାଦ; ରତି ଜାତ କରିବା ବିଷୟରେ କନ୍ଦର୍ପ ସଙ୍ଗେ ବିବାଦର ସାକ୍ଷୀ ସ୍ୱରୂପ ଦୀପକୁ ରଖିଥିଲେ । ଲିଭଇ ନ ଥିଲେ ।

୨୩-ଉତ୍ତାନ- ଚିତ୍ ହୋଇ ଶୋଇବା; ପାର୍ଶ୍ୱଶୟନ କଡ଼ମାଡ଼ି ଶୋଇବା ;

୨୫-ଚନ୍ଦ୍ରନାଡ଼ୀ-(ଜଳ ବା କଫନାଡ଼ୀ) ସନ୍ନିପାତରେ ଖଣେ ଜଗେ କ୍ଷଣେଲଗେ ନାହିଁ । ସେହିପରି ଚନ୍ଦ୍ରନାଡ଼ୀ (ଅନଙ୍ଗନାଡ଼ୀ) ଯକ୍ଷଣ ଉଦ୍ଦୀପନ ଓ କ୍ଷଣକେ ମୋକ୍ଷ ( ନାଶ, ଲୋପ ) ହୁଏ । ବାତ ପ୍ରବଳ ହୋଇ ଜର ହେଲେ ବେପଥୁ ( କମ୍ପ ) ହୁଏ । ମନ୍ଦ -ଶୀତ-ଗନ୍ଧବହ-ଧୀର, ଶୀତଳ ସୁବାସିତ ପବନ-ପବନର ମାନ୍ଦ୍ୟ, ଶୈତ୍ୟ ଗନ୍ଧ ବର୍ଣ୍ଣନା କରିବା ପାଇଁ ଅଳଙ୍କାର ଶାସ୍ତ୍ରେ ବିଧି ଅଛି ।

୨୬-ଦର୍ପଣ ଗୁନ୍ଦୁଆ-[ ୩୧ଛାନ୍ଦ ୨୫ ପଦ ଟୀକା ଦେଖ । ]

୨୭- ମୋ ଆନ-ମୋ ଗଣ; ନାସିକାମଣି-[ ୩୨ ଛାନ୍ଦ ୨୪ ପଦ ଟୀକା ଦେଖ । ]

ରହିଲ ଅଣଆୟରେ ସେ ସେହି ଠାଣିରେ ।
ନୃତ୍ୟ ଅଧିକାର ଦେଲ ନାସିକା ମଣିରେ ଯେ ।୨୭।
ସେ ରତି ମଧୁକୁ ଏ ଯେ ବରଷା ପ୍ରାୟେକ ।
କିଙ୍କିଣୀ କେକୀ ନାଦରେ ମୂକ ବଳା-ପିକ ଯେ ।
ଯୋଷା ମୁଖେ ସ୍ୱେଦବିନ୍ଦୁ ଗ୍ରହି ପୁଂସ ଲେଖ ।
ଇନ୍ଦୁ ଅମୃତବିନ୍ଦୁ ବହିଲ ପ୍ରାୟ ଶୋଭ ଯେ । ୨୮ ।
କୁଚଗିରି ମାଡ଼ି ପଡ଼ିବାକୁ କରି ଭୟ ।
ବିସ୍ତାରିତ କରିଛି ଛଇଳ କର ଦ୍ୱୟ ଯେ ।
ଗାଢ ରତେ ଯଥା ଭୀତି ଥିଲ ଯୁବତୀର
ଭଙ୍ଗି ଯାଇ ଥାଇ ନିକି ସରୁକଟି ମୋର ଯେ ।୨୯।
ଏମନ୍ତ ସମୟେ ଗ୍ରହି ବାଛା ଅବଶକୁ ।
ପୁଣି ପୁରୁଷ ଆରମ୍ଭେ ପ୍ରକୃତ ରସକୁ ଯେ ।
ବିଘ୍ନରିଲ ମୋତେ ଏଥି ଯଶ ନାହିଁ ଆଜ ।
ଧନୁଶର ପକାଇ ପଳାଇ ମନସିଜ ଯେ । ୩୦ ।
ବଲଭ ନେତ୍ର ବଞ୍ଚାଇ ଯୁବତୀ ରତନ ।
ତରତରେ ବେଢ ଦେଇ ପିନ୍ଧିଲ ବସନ ।
ପୁରୁଷ ଚେଳେ ଆଦର କରି ତତପରେ ।
ପ୍ରିୟାକୁ ଘେନି ଶୟନ ପଲ୍ୟଙ୍କ ଉପରେ ଯେ । ୩୧ ।

---

୨୮—ସେ ରତି—ପୂର୍ବ ପ୍ରକାର ରତି ବନ୍ଧ; ଏ—ବିପରୀତ ରତିବନ୍ଧ ବା ପୁରୁଷାୟିତ । କେକୀ ( ମୟୂର ) ନାଦ ପରି ଅଣ୍ଟାର କିଙ୍କିଣୀ ବାଜି ଉଠିଲ ଏବଂ ଗୋଡ଼ର ବଳା ମୂକ ( ଶବ୍ଦହୀନ ) ହେଲ ।
ପୁରୁଷାୟିତରେ କିଙ୍କିଣୀ ବାଜେ ଓ ନୂପୁର ବାଜେ ନାହିଁ । ତଦୁକ୍ତଂ—
" ପ୍ରବୃତ୍ତଃ କିଙ୍କିଣୀ ନାଦୋ ନିବୃତ୍ତୋ ନୂପୁର ଧ୍ୱନିଃ
ମୃଢ କାନ୍ତେ ରତି ଶ୍ରାନ୍ତେ କାମିନୀ ପୁରୁଷାୟିତେ "
୩୦—ପ୍ରକୃତ ରସ—"ପ୍ରାକୃତିକ ବନ୍ଧ", ସାଧାରଣ ବନ୍ଧ;
୩୧—ନେତ୍ର ବଞ୍ଚାଇ—ନ ଦେଖିବା ଭଳି କରି । ବେଢ ଦେଇ-ବେଢେଇ ହୋଇ; ଏହା କଛା ନ ମାରି ଏକ ପ୍ରକାର ପିନ୍ଧା । ଅନ୍ୟ ପିନ୍ଧାର ନାମ "କାଣିଆ କଛା ଲେଉଟି ବେଢା" ତୃତୀୟ ପ୍ରକାର ପୁହାରଣ ଇତ୍ୟାଦି । ଅତି ଶୀଘ୍ର ପିନ୍ଧିବା ଦରକାର ହେଲେ ବେଢ଼େଇ ହୁଅନ୍ତି । ଚେଳେ—ଲୁଗାଚେ;

ଶ୍ରମଘର୍ମ ଯୋଗେ କରି ନଖକ୍ଷତ ଜ୍ୱାଳା ।
ଶ୍ରମ ହେଲ ଏ ଘେନି ନ ଲଭେ ନିଦ୍ରା ବାଳା ଯୈ ।
ଗୃଟୁ କହେ ପ୍ରିୟ କଥା ଶୁଣିମାକୁ ପ୍ରିୟ
ଏ ସକାଶୁଁ ନିଦ୍ରା ତାଙ୍କୁ ନ ଭଲ ଆଶ୍ରୟ ଯେ ।୩୨।
ନିଲିଂଜ କାମଂ ମଗଧ ଗଜ ପ୍ରାୟ ହୋଇ ।
ପୁଣି ଧାଡ଼ି ଦେଇ ଚିତ୍ତ ଉଛନ୍ନ କରଇ ଯେ ।
ଏଣୁ ପ୍ରକାଶିଲେ ରତି ପୁଣି ସେ ଦମ୍ପତି ।
ସେ ଗତିଂ ଯାକ ଲଭିଲେ ଅଶେଷ ସମ୍ପତ୍ତି ଯେ ।୩୩।
ରମାକୁ କୋଳେ ବସାଇ ଫେଡ଼ି ବାତାୟନ ।
ରତାନ୍ତେ କରୁଛନ୍ତି ବ୍ୟଞ୍ଜନ ସ୍ୱଜନ ଯେ
କାହାରି କରରେ ସ୍ୱେଦ କେ ନ ଦେଲେ ରଖି ।
ବେନି ତନୁ ଜଡ଼ିତ ଶୟନେ ମହା ସୁଖୀ ଯେ ।୩୪।
ଏ ସମୟେ ନିଶି ନାଶ କଲେ ମନ୍ଦ ଘୋଷ ।
ଦର ଶବଦେ ଲଭିଲେ ବିଟପୀ ବିରସ ଯେ ।
ନିଶ୍ୱାସ ବାରି ଗଣିକା ବିଟ ପାଶୁଁ ଗଲେ ।
ଦୀପ ମଳିନ ଅନାଇଁ ବଧୂଏ ଉଠିଲେ ଯେ ।୩୫।
ବାସକ ଶଯ୍ୟା ନାରୀଶ ନିଶ୍ୱାସ ପକାଇ ।
ଆକାଶକୁ ଗୃହି ତାର ମଳିନ ଅନାଇଁ ଯେ ।

---

୩୨—କ୍ଷତରେ ଝାଳ ଲଗି ପୋଡ଼ିବାରୁ ଶ୍ରମି ହେଲା ।

୩୩—ମଗଧଗଜ—(ଜରାସନ୍ଧ) ବାର ବାର ଶ୍ରୀକୃଷ୍ଣଙ୍କ ସଙ୍ଗେ ଯୁଦ୍ଧ କରୁଥାଏ । [ମହାଭାରତ ଓ ଭାଗବତ ଦେଖ ।] ଧାଡ଼ି ଦେଇ-ଚଢ଼ଉ କରି ଆକ୍ରମଣ କରି;

୩୪—ବାତାୟନ—ଜଳା କବାଟି, ପଞ୍ଜର; ରତାନ୍ତେ-ରତି ଶେଷରେ; ବ୍ୟଞ୍ଜନ—ବିଞ୍ଚଣା;

୩୫—ମନ୍ଦ—ଡାକ, କୁଆ; ଦରଶବଦ-ଶଙ୍ଖ ଧ୍ୱନି; ବିଟପୀ—ବ୍ୟଭିଚାରିଣୀ ସ୍ତ୍ରୀ; ଜାର—ବିଟ-ପୁରୁଷ; ନିଶ୍ୱାସ ବାରି—ଦିନ ରତିର ଭିନ୍ନ ଭିନ୍ନ ପ୍ରହରରେ ନିଶ୍ୱାସ କେତେବେଳେ ନାକର ଡାହାଣ ପୁଡ଼ାରେ କେତେବେଳେ ବାଁ ପୁଡ଼ାରେ ଚାଲେ । ତାହା ଯେଉଁମାନେ ଜାଣନ୍ତି ସେମାନେ ଘୋର ଅନ୍ଧାର ଘରେ ରହି ମଧ୍ୟ ସକାଳ ହେବା କହି ପାରିବେ । ସକାଳ ହେଲେ ଦୀପ ମଳିନ ହୁଏ । ବଧୂ—କୁଳବଧୂ (ଗୃହସ୍ଥ ଘରର ଭାର୍ଯ୍ୟା) ।

୩୬- ବାସକ ଶଯ୍ୟା- ଏକ ପ୍ରକାର ନାୟିକା ତାର ଲକ୍ଷଣ ଯଥା:—

ହାର ଶିଥିଳ ତାମ୍ବୁଳ ତିକ୍ତ ଜାଣି ଗମା ।
ମନେ ମନେ ବିଗ୍ଭରିଲ ବିନାଶ ତ୍ରିଯାମା ଯେ ।୩୬ ।
କେମନ୍ତେ ଚାହିଁବି ଯାଇଁ ସଜନୀଙ୍କ ମୁଖ ।
ସୁଖରୁ ତ ଅଧିକ ହୋଇବ ଲଜ ଦୁଃଖ ଯେ ।
ତାହାଙ୍କ ନ ଲଠୁଁ ଯିବି ବିଗ୍ଭରି ଉଠିଲ ଯେ ।
ଇଷି ନକ୍ଷି ଅଙ୍ଗ ମୋଡ଼ି ହୋଇ ବାହାରିଲ ଯେ ।୩୭।
ବାଳା ପଛେ ପଛେ ଧବ ଶୋଭ ଦେଖିବାକୁ ।
ଆସିବା ବେଳକୁ ସେହି ଦ୍ୱାର ନିକଟକୁ ଯେ ।
ଜାଣି ସିହାଣୀ ରହିଲ ପଛ ହେଲେ ବୋଲି ।
କେ କାହାକୁ ନ ଯାନ୍ତି ସେନେହ ବଳେ ବଳି ଯେ ।୩୮।
ଉଭରେ ଉଭରେ ପୁଂସ କଲ ଆଲିଙ୍ଗନ ।
ବୋଇଲ ପାଶୁଁ ଯିବାକୁ ନ ବଳଇ ମନ ଗୋ ।

---

"କୁରୁତେ ମଣ୍ଡନଂ ଯା ତୁ ସଜ୍ଜିତେ ବାସ ବେଶ୍ମନି ସା ତୁ ବାସକ ଶଯ୍ୟାସ୍ୟାତ୍ ବିଦିତ ପ୍ରିୟ ସଙ୍ଗମା" । –ଇତି ସାହିତ୍ୟ ଦର୍ପଣ । ସକାଳ ହେଲେ ବେଢ଼ର ହାର ଶୀତଳ ଲଗେ; ତାମ୍ବୁଳ-(ପାନ) ତିକ୍ତ (ପିତା) ଲଗେ ବୋଲି ବର୍ଣ୍ଣନା କରନ୍ତି । ତ୍ରିଯାମା–ରାତି; କବି ଚିନ୍ତାମଣିରେ ତଳ ଲିଖିତ ପ୍ରକାରେ ପ୍ରଭାତ ବର୍ଣ୍ଣନା ବିଷୟରେ ଉପଦେଶମାନ ଦେଖାଯାଏ । ଯଥା–

ପ୍ରଭାତେ ଦୀପ ପାଣ୍ଡୁତ୍ୱ ଚନ୍ଦ୍ରାଦିନାଂ ଚ ତଦ୍‌ବିଧଂ
ପ୍ରାଚ୍ୟାଂ କୁଙ୍କୁମ ବର୍ଣ୍ଣତ୍ୱଂ କୁକ୍‌କୁଟାଦେ ଧ୍ୱନିସ୍ତଥା
ପବନସ୍ୟ ଗତିଃ ସୂକ୍ଷ୍ମା ନିଦ୍ରା ଭଙ୍ଗତ୍ୱ ମେ ବଚ
ତାମ୍ବୁଳ ସୈ୍ୟବ ତିକ୍ତତ୍ୱଂ ହାରଣା ମତି ଶୀତତା
ଉତ୍ତୁଙ୍ଗା ଶଙ୍ଖ ଶବ୍‌ଦା ବା ଜନ ସଞ୍ଚର ତାଦୟଃ
ସୂର୍ଯ୍ୟୋଦୟେ ବର୍ଣ୍ଣିତବ୍ୟଂ ଗୁହାଚ ବିଗତଂ ତମଃ
ପ୍ରକାଶ ତୋରଣ ସୌବିନ୍ଦିକ୍ ପ୍ରଭଞ୍ଜନ କର୍ମଚ
ମିଥୁନଂ ଚକ୍ରବାକସ୍ୟ ପଦ୍ମିନୀନାଂ ବିକାଶତା
ସୂର୍ଯ୍ୟ କାନ୍ତସ୍ୟ ଦୀପ୍ତତ୍ୱଂ ପେଚକାନାଂ ଗୁହାସ୍ଥିତିଃ
ତାର ଚନ୍ଦ୍ର ପ୍ରଦୀପାନା ମୌଷଧି ନାମ କାନ୍ତୟଃ
କୁମୁଦାନା କୁଟ୍ମଳ ତ୍ୱଂ କୁଳଟା ଗତିହୀନତା–ଇତ୍ୟାଦି ।

ଛାଡ଼ି ଗଲେ ଜୀବ ଯିବ ଛାଡ଼ି ଏ ପରତେ ।
ଶୁଭିଲ ସଖୀ ମାନଙ୍କ ଚହଳ ଏମନ୍ତେ ଯେ । ୩୯ ।
ତରୁଣୀ ଚଞ୍ଚଳ ଯଥା ଯୂଥ ବଣା ଏଣୀ ।
ମୁଖେ ଚୁମ୍ବ ଦେଇ ପୁଂସ ହୋଇଲ ମେଳଣି ଯେ
ମିତ୍ରଙ୍କ ସଙ୍ଗତେ ଯାଇ ହେଲ ପରବେଶ ।
ହାସ୍ୟ ନ କଲେ କରେ ଦେଖାଇ ଆଦରଶ ଯେ ।୪୦।
ତଦୁତ୍ତାରୁ କେଳିପୁରୁଁ ବାହାର ସୁନ୍ଦରୀ ।
ମନ୍ଦେ ମନ୍ଦେ ଆସେ ଭିତ୍ତି ଅବଲମ୍ବ କରି ଯେ ।
ଅଳସ ଗୁତୁରୀ ପ୍ରିୟସଖୀ ପ୍ରତିଭକ୍ଷ ।
ଆର ଛାନ୍ଦେ ଶୁଣିମ ଏ ଛାନ୍ଦ ହେଲ ଶେଷ ଯେ ।୪୧।
ଜାନକୀ କୁଚ କୁଙ୍କୁମ ଅଙ୍କିତ ହୃଦୟ ।
ମୁନିଜନ ଚିତ୍ତେ କାମ ବିକାର ଉଦୟ ଯେ ।
କାରକ ତାରକ ମନ୍ତ୍ର ଯାହା ନାମ ଶୁଣି ।
ଉପଇନ୍ଦ୍ର ବୀରବର ସେହି ରାମ ଗୁଣି ଯେ । ୪୨ ।

---

୩୯–ଏ ପରତେ–ଏହି ପରି ଲଗୁଛି । ଏମନ୍ତେ ଏହି ସମୟରେ; "ଏଥନ୍ତେ" ଏପରି ପାଠ ହେବା ସମ୍ଭବ ।

୪୦–ଯୂଥବଣା–ଗଣବଣା, ଗୋଠ ଫିଟା; ଏଣୀ–ମୃଗୁଣୀ, ମୃଗୀ–ସେହିପରି ଚଙ୍ଗ୍ ଚଙ୍ଗ୍ । କରେ–ହାତରେ; ଆଦରଶ–ଆଦର୍ଶ (ଦର୍ପଣ);

୪୧–ଭିତ୍ତି–କାନ୍ଥ; ଅବଲମ୍ବନ କରି–ଧରି ଧରି; ଅଳସ ଗୁତୁରୀ–ସେ ଯେଉଁ ମନ୍ଦ ମନ୍ଦ ଭବରେ ଆସୁଥିଲ ସେହି ବିଷୟରେ;

୪୨–ଜାନକୀ–(ସୀତା)ଙ୍କ କୁଚରୁ କୁଙ୍କୁମ (ବନ ହଳଦୀ)ରେ ଅଙ୍କିତ (ଚିତ୍ରିତ) ହୃଦୟ (ଛାତି) ଯାହାର; ମୁନି ମାନଙ୍କ ହୃଦୟରେ ଯାହାକୁ ଦେଖିଲେ ଏ (କନ୍ଦର୍ପ) ବୋଲି ବିକାର (ଭବ) ଉଦୟ ହୁଏ । ତାରକ (ତ୍ରାଣ କର୍ତ୍ତା) ଯାହା ନାମ ତାରକ ମନ୍ତ୍ରରେ ଶୁଣାଯାଏ । [୧୬ଶ ଛାନ୍ଦ ୪୨ପଦ ଦେଖ ।]

✳ ✳ ✳

# ଚତୁର୍ବିଂଶ ଛାନ୍ଦ

## ( କେଳପୁର ବାହୁଡ଼ା ଏବଂ ସଖୀମାନଙ୍କର ପରିହାସ କରଣ )

ରାଗ–କଲ୍ୟାଣ ଆହାରୀ ।

କେଳି ସଦନ୍ ବାହୁଡ଼ି ପଥ ହୁଡ଼ି ଆସିବା ବେଳେ ସୁକେଶୀ ଯେ ।
କୋକିଳ ଭାଷୀକି ଭାଷିଲ ଏମନ୍ତ କେଉଁ ପରିହାସୀ ହସି ଯେ ।
ସୁନ୍ଦରି । କହ କହ ମହୀ ଶୋଭିରେ ।
କରୁଛି ବିଗ୍ରହ କେଉଁ ସୁକୃତରୁ ଭ୍ରମର କେତକୀ ଲଭି ରେ । ୧ ।
କ୍ଷିତିପତି ରଣ ପରାଜୟ ତୂର ପରାୟ ନୂପୁର ବାଜେ ରେ ।
ଖସି ପଡ଼ିବାରୁ ନିତମ୍ବ ଉପରୁ ଭଲ ଏ ବସନ ଗଜେ ରେ ।
ସୁନ୍ଦରି । ଖେଦ ପାଇ ଯୁଦ୍ଧ ବଶେ ରେ ।
ଖସି ଯାଉଛି କି ଯୋଦ୍ଧା ମସ୍ତକରୁ ଉଷ୍ଣୀଷ ଏମନ୍ତ ଦିଶେ ରେ । ୨ ।
ଗୁରୁ ଚଞ୍ଚଳ ଇକ୍ଷଣ କ୍ଷଣେ କ୍ଷଣେ ଭଜୁଅଛି ସୁଲକ୍ଷଣା ରେ ।
ଗଜରିପୁ ଆଗେ ପଡ଼ିଥିଲ ଏଣୀ ହୋଇଛି କି ଗଣବଣା ରେ ।

---

ଏ ଛାନ୍ଦର ୩୪ ପଦ ଗୋଟିଏ ଚଉତିଶା । କ ଠାରୁ କ୍ଷ ପର୍ଯ୍ୟନ୍ତ ୩୪ ଅକ୍ଷର ମାନେ ଗୋଟିଏ ଗୋଟିଏ ପ୍ରତି ପଦର ପାଦ ମାନଙ୍କ ମୂଳରେ ଅଛନ୍ତି ।

୧– ପଥହୁଡ଼ି– ବାଛ ଧରିବାରୁ;

ଥଟାରେ ଚନ୍ଦ୍ରଭାନୁକୁ ଭ୍ରମର କେମାକୁ କେତକୀ ବୋଲି ଇଙ୍ଗିତ କରୁଅଛି । ତୋ ବରଟା କଢା-ଏହି ଅଭିପ୍ରାୟ ।

୨–କ୍ଷିତିପତି–( ରଜା ) ଯୁଦ୍ଧ ହାରି କରି ଆସିଲ ବେଳେ ଯେପରି ତେଜ ନ ଥାଇ ତୂର ( ତୂରୀ ) ବାଜୁଥାଏ । ନୂପୁର–ପାଝୁଲ ( ଟିକି ଟିକି ଘୁଙ୍ଗୁର ପେଛା ପେଛା ହୋଇ ଲଗି ବଳା ଗଣ୍ଠି ତଳକୁ ଟିକିଏ ଝୁଲି ରହିବା ପାଦର ଅଳଙ୍କାର ); ନିତମ୍ବ –ପିଚ୍ଛ; ଲୁଗା ହୁଗୁଳା ହୋଇ ଯାଇଥିବା ପ୍ରତି ଲକ୍ଷ । ଯୋଦ୍ଧା ( ବୀର ) ମୁଣ୍ଡରୁ ଉଷ୍ଣୀଷ ( ପଗଡ଼ି ) ଖସି ଆସିଲ ପରି ।

୩– ଇକ୍ଷଣ–(ଆଖି ) କେତେବେଳେ ଗୁରୁ (ଗମ୍ଭୀର) କେତେବେଳେ ଚଞ୍ଚଳ ହେଉଛି । ଗଜରିପୁ–ସିଂହ; ମାର (କନ୍ଦର୍ପ) ଗତ କଥା ଘେନି (ମହାଦେବଙ୍କୁ ବିନ୍ଧିଥିବା କଥା)

ସୁନ୍ଦରି । ଗତ କଥା ଘେନି ମାର ରେ ।
ଗୁଣି ପୁଣି ପରଭବ ଭୀତି ଚିତ୍ତେ ତରତରେ ବିନ୍ଧେ ଶର ରେ । ୩ ।
ଘେନୁଛି କୋକନଦ ମଦମର୍ଦ୍ଦନେ କରିଛି ରଙ୍ଗ ଆସ୍ପଦ ରେ ।
ଘନେ ଦର୍ଶିବ ମଦକଳ ମଦିର ବ୍ୟକ୍ତ କି ମଦନ ମଦରେ ।
ସୁନ୍ଦରି । ଘେନା ଘେନି ତୋର ଭଙ୍ଗରେ ।
ଘୋର ବିଭବରୀ ବିନିଦ୍ରିତ କଲି ପଦ୍ମ ମୁଦ୍ରିତ ନ କଲ ହେ । ୪ ।
ନିଟିଳେ ମୃଗମଦ ଲୁହି ବହିଛି ଜାତ ହୋଇ ସ୍ୱେଦ ପତ୍ତି ରେ ।
ନିଶ୍ଚେ ଅଳକା ଅହିବର ତରଳ ଗରଳ କରିଛି ବାନ୍ତିରେ ।
ସୁନ୍ଦରି । ନୋହିଲେ ହେବ ଏମନ୍ତ ରେ ।
ନିଶିଶ କଳଙ୍କ ନାଶ କରୁଥିଲା ପ୍ରକାଶ ବିଧିରେ ଭୀତ ରେ । ୫ ।
ଚଟୁଳ ନୀରବିନ୍ଦୁ ଧାଡ଼ିହୋଇ ଯେ ରହିଛି ଅଳକା ତଳ ରେ ।
ଚନ୍ଦ୍ର ଅର୍ଦ୍ଧକୁ ଗ୍ରାସ କରି ରହୁ କି ଛାଡ଼ିଣ ଗଲା ଚପଳ ରେ ।
ସୁନ୍ଦରି । ଗ୍ରେଖଦନ୍ତ ଯୋଗେ ତାହେରେ ରେ ।
ଚିନ୍ତନ କରୁଛି ସ୍ତୋଟକ ନିକର ଦଂଶେ ମନୋହରତର ରେ । ୬ ।

---

ମନେ ପକାଉ କିମ୍ବା କାଲି ରାତିରେ ନିଜେ ପରଭବ ପାଇଥିବା କଥା ମନେ ପକାଇ ସେହି କଥାକୁ ଗୁଣି ଗୁଣି ଭୟରେ ବେଗେ ବେଗେ ଶର ବିନ୍ଧିଲା ପରି ଦିଶୁଛି ।

୪—କୋକନଦ (ରକ୍ତପଦ୍ମ)ର ମଦ (ଗର୍ବ)କୁ ନାଶ କରିବ ବୋଲି ତୋ ଆଖିରଙ୍ଗ (ନାଲି)ର ଆସ୍ପଦ (ସ୍ଥାନ) ହୋଇଛି ।—ଆଖି ଲାଲ ହୋଇଛି । ମଦନ (କାମ) ମଦରେ (ଗର୍ବରେ) ତୋର ମଦକଳ ମଦିର (ମତ୍ତ ଖଞ୍ଜନ) ଭଳି ଆଖିକି ଦର୍ଶିଲା ପରି ବୋଧ ହେଉଛି । ଘେନା ଘେନି—ପ୍ରୀତି; ଭଙ୍ଗ—ଆଖି; ବିଭବରୀ—(ରାତି) ଯାକ ଚେଇଁ କରି ପଦ୍ମ ଯା ମୁଦି ନ ହେଲା—ତୋ ପଲକ ପଡ଼ିନାହିଁ ।

୫—ନିଟିଳେ (ନିଟଳରେ, କପାଳରେ) ମୃଗମଦ (କସ୍ତୁରୀ) ଅଳକାରୁ ସ୍ୱେଦ (ଝାଳ)ରେ ବୋହି ଆସି ଲାଗିଛି । ଅଳକା ଅହି (ସାପ) ପରି, କସ୍ତୁରୀ ତାର ଗରଳ (ବିଷ) ପରି । ନିଶିଶ (ଚନ୍ଦ୍ର) କଳଙ୍କ ଛଡ଼ାଉ ଥିଲା ପ୍ରକାଶ ବିଧିରେ (ଜଣା ପଡ଼ିଯିବ) ବୋଲି ଭୀତରେ (ଭୟରେ) ଆଉ କରି ପାରୁ ନାହିଁ ।

୬—ଚଟୁଳ—ଗୋଲ; ନୀରବିନ୍ଦୁ—ଝାଳ; ଚନ୍ଦ୍ର ଅର୍ଦ୍ଧ—(ଅର୍ଦ୍ଧ ଚନ୍ଦ୍ର)କୁ ସେ ଚପଳରେ (ତରତର ହୋଇ) ଗ୍ରେଖ (ସୁନ୍ଦର, ଭଲ,—ଏଠାରେ ଦାନ୍ତ ଆଁ) ତାହେ (ଘାହୁର); ଚିନ୍ତନ—ତର୍କଣା; ସ୍ତୋଟକ—ଫୋଟକା; ବିକ୍ଷେ—ଦାନ୍ତରେ ଥିବା ବିଷ ହେତୁ; ମନୋହରତର—ଟୁମେଇ କରି ସୁନ୍ଦର ଦିଶୁଛି ।

ଛିଡ଼ି ପଡ଼ିଲା ସ୍ୱଚ୍ଛ୍ୟୋତି ମୋତିମାଳି ବାଳି ନ ଜାଣିଲୁ ତାହିଁରେ ।
ଛଇଳପତି ତାହା ରୀତି ସୁରତି ଶିକ୍ଷା ଯେତେବେଳେ ଦେଇ ରେ ।
ସୁନ୍ଦରି । ଛଟକାକ୍ଷି ଗୁଣଶାଳୀ ରେ ।
ଛଦ୍ମ ନ ଜାଣିବ ବାସ ପ୍ରକାରରେ କରିଥିବ ନିଉଛାଳି ରେ । ୭ ।
ଜାହ୍ନବୀ ଲଭିଲା କି ମାନ ଶମ୍ଭୁରେ କସ୍ତୂରୀ କାଳିନ୍ଦୀ ସ୍ରହିଁ ରେ ।
ଜଣା ଯିବାକୁ ନଖପଦ ବିଶଦମୟୂଖ ନାୟକ ବିହି ରେ ।
ସୁନ୍ଦରି । ଜବାଧରି ଚନ୍ଦ୍ର ମୁହିଁ ରେ ।
ଜଳଜ ପାଣିରେ ପୂଜା କରିଥିବ କାମବ୍ୟାଧି ହତ ପାଇଁ ରେ । ୮ ।
ଝଲକ ଅଙ୍କୁଶ ପ୍ରାପ୍ତ ଲଭିଛି କି ଯଉବନ କରୀ କୁମ୍ଭ ରେ ।
ଝଷ ନିବାସ ସୁତରେ ମର୍ଦ୍ଦି ହେଲା ମହାମହୀଧର ଦମ୍ଭ ରେ ।
ସୁନ୍ଦରି । ଝଳିଛି ଚିତ୍ତେ ଏ ଚିତ୍ର ରେ ।
ଝଟକ ହାସିନୀ ଘର୍ମେ ଲିଭିଗଲା ଶ୍ରମେ[୧] ଲେଖିଥିଲା ଚିତ୍ର ରେ । ୯ ।

---

ପାଠାନ୍ତର—୧, ମର୍ମେ ।

---

୭—ଛଇଳ (ଚତୁର) ପତି ତାହା ରୀତି ସୁରତି (ପୁରୁଷାୟିତ)—ସେତିକି ବେଳେ ମାଳା ଛିଡ଼ି ଯାଇଛି । ଛଦ୍ମ (କପଟ) ନ ଜାଣି ବାସ (ଲୁଗା) କି କି ପ୍ରକାରରେ ନିଉଛାଳି କରିଥିବ (ପୁରୁଷକୁ ବନ୍ଦନା କରିଥିବ)—ତୋର ଲୁଗା କପଟ ଜାଣିନାହିଁ । ସେତେବେଳେ କଣ କରିଥିବ— ଏହି ଅର୍ଥ ।

୮—ନାୟକ (ବର) କାମବ୍ୟାଧି ହତ ହେବା ପାଇଁ ଜଳଜ ପାଣିରେ (ପଦ୍ମ ରୂପ ହାତରେ) ଶମ୍ଭୁ ସଦୃଶ ତୋ କୁଚକୁ ପୂଜା କରିଥିବ—ଏ କଥା ଜଣାଇବାକୁ (ଜଣାଇ ଦେବାକୁ) ସେହି ଶମ୍ଭୁ ଉପରେ ବିଶଦମୟୂଖ (ଚନ୍ଦ୍ର ସ୍ୱରୂପ) ନଖ ପଦ (ନଖ ଚିହ୍ନ) ବିହିଛି ! ଜାହ୍ନବୀ (ଗଙ୍ଗା) କସ୍ତୂରୀ ରୂପ କାଳିନ୍ଦୀ (ଯମୁନା) ଶମ୍ଭୁଠାରେ ମାନ କଲା କି ? ଅର୍ଥାତ୍ ସେଥିପାଇଁ ଜାହ୍ନବୀ ରୂପ ହାର ସେ ଛିଡ଼ି ପଡ଼ିଛି ।

୯—ଝଲକ—କର୍ଣ୍ଣୀଶର, ଗାଳି; ଝଳକ ଅଙ୍କୁଶ—ଗୋଟିଏ ଗାଳି ଥିବା ଅଙ୍କୁଶ; ହାତ ସଙ୍ଗେ ଉପମାରେ ସମାନ ହେବା ପାଇଁ ବୋଧହୁଏ ଏପରି କୁହା ଯାଇଛି; ଅଙ୍କୁଶ—ନଖକ୍ଷତ; କରୀକୁମ୍ଭ—ଗଜମୁଣ୍ଡ ପରି ସ୍ତନ; ଝଷ (ମାଛ)ର ନିବାସ (ଘର) ତାର ସୁତ (୧. ପଦ୍ମ, ୨.ବଜ୍ର) ମହାମହୀଧର—ମେରୁ ପରି(ଏଠାରେ) ସ୍ତନ, ପଦ୍ମ ପରି ହାତ କିମ୍ବା ବଜ୍ର ପରି ନଖକ୍ଷତ; ଆମେମାନେ ଶ୍ରମେ (ପରିଶ୍ରମ କରି) ଯେଉଁ ଚିତ୍ର ସବୁ ସ୍ତନରେ ଲେଖିଥିଲୁ ସେ ସବୁ ଘର୍ମ(ଝାଳ)ରେ ଲିଭିଗଲା । "ଅବ୍ଧେ ଭିଦୁରମମ୍ଭୁଲଂ" —ଇତି ଚକାଣ୍ଡ ଶେଷଃ ।

ନୀଳ କୁନ୍ତଳ ଫିଟି ଲେଟେ ଚରମେ ବିରହାଗ୍ନି ପ୍ରେମ ନୀରୁ ରେ ।
ନିଷ୍ଠା କଲୁ ଶାନ୍ତି କି ସେ ଧୂପପନ୍ତି ଉର୍ଦ୍ଧେ ଅଧୋଗତି ତାର ରେ ।
ସୁନ୍ଦରି । ନୟନ କରଇ ବଶ ରେ ।
ନବ ବିକଚ ନଳିନ ମଧୁପ୍ରିଇ ଉଡ଼ିଲେ କି ଅଳିବଂଶ ରେ । ୧୦ ।
ଟେକ କରୁଣା ହେବାପାଇଁ ଅରୁଣାଧରି ଘୂରୁଣାରେ କିବା ରେ ।
ଟିକାଏ ଗଜ ଗତିରେ କି ପଡ଼ିକି କଲୁ ଏ ଗ୍ରମରେ ସେବା ରେ ।
ସୁନ୍ଦରି । ଟାହି ନୁହଇ ଏ ଗିର ରେ ।
ଟହକ ହାସି କୁଟିଳ ଲେକେ ନିକି ବନ୍ଧନ ମୁକ୍ତ ବେଗର ରେ । ୧୧ ।
ଠିକେ ପତନ ହୋଏ ବାଳା ରତନ ଯତନ ଫୁଲ ମାଳିକା ରେ ।
ଠାଠିକ ଦିଶେ ଅମ୍ବୁଦରୁ କି ଖସେ ଅବନୀକି ବକାଳିକା ରେ ।
ସୁନ୍ଦରି । ଠଣ ସେ ପଗ ଏ ପୁଣରେ ।
ଠୁଳେ ଗଙ୍ଗାରୁ ଜଳ ଆଣି ଘନ କି ପତନ କରଇ ଧଗ ରେ । ୧୨ ।
ଡ଼ମ୍ବରୁ ମଧ୍ୟା ମହୋହାଙ୍କୁଳ ଟାମ୍ବୁଳ ବୋଳ ତୋ ନିର୍ମଳ ଗଣ୍ଡରେ ।
ଡ଼ାଳିମ୍ବ କୁସୁମ ବିମ୍ବ ମନୋରମ କି ଅବା ମୁକୁର ଖଣ୍ଡରେ ।

---

୧୦—କୁନ୍ତଳ—ବାଳ; ଚରମେ—ପିଠିରେ; ନିଷ୍ଠା କଲୁ—ତୁ ନିଶ୍ଚୟ କଲୁ; ନବ ବିକଚ—ନୂତନ ପ୍ରସ୍ଫୁଟିତ; ଅଳିବଂଶ—ଅଳି ସମୂହ; ବିରହ ରୂପ ଅଗ୍ନିକୁ ଶାନ୍ତ କରି ପ୍ରେମ ନୀର ବୋହି ପଡୁଛି କି ? ପୁଣି ବିରହାଗ୍ନିକୁ ଶାନ୍ତ କରି ଦେବାରୁ ଧୂଆଁ ଉପରୁ ତଳକୁ ଆସୁଛି କି ? କି ମୁଖ ପଦ୍ମରୁ ଭ୍ରମର ଗୁଡ଼ାକ ଉଡ଼ି ଆସୁଛନ୍ତି କି ?

୧୧—ହେ ଅରୁଣା ଧରି ତୋର କରୁଣାର (ବିନିୟର) ଟେକ ହେବା ପାଇଁ ତୁ ଘୂରୁଣା ହୋଇ (ଗେଲବସର ହୋଇ) ଟିକାଏ (କଛିକ୍ଷଣ) ହେଲ ଗଜ ଯେଉଁ ଗତି ସେଥିରେ ପଡ଼ିକି ଏ ଗ୍ରମର ସେବା କଲୁ କି ?-ବାଳ ଫିଟାଇବା ଦ୍ୱାରା । ଏ କଥା ଟାହି (ଥଟ୍ଟା) ନୁହେ । ହେ ଟହକ ହାସୀ (ସୁନ୍ଦର ହାସୀ) କୁଟିଳ ଲେକ ଏବି ଯେ ତାକୁ ବନ୍ଧନ ମୁକ୍ତ କରିଦେବା ବେଗର (ଠିକ୍ ବିଗ୍ରର) କି ?

୧୨—ଠିକେ (ନିଶ୍ଚୟ) ଫୁଲ ମାଳା ମୁଣ୍ଡରୁ ଖସି ପଡ଼ୁନ୍ତି । ଠାଠିକ (ସୁନ୍ଦର) ଅମ୍ବୁଦରୁ (ମେଘରୁ) ବକାଳିକା (ବକ ଶ୍ରେଣୀ) ଉଡ଼ି ତଳକୁ ଆସୁଛନ୍ତି କି ? [୧୨ ଛାନ୍ଦ ୪ମପଦ ଦେଖ [ଠଣ (ସୁନ୍ଦର); ଠୁଳ (ଏକାଠି କରି) ଗଙ୍ଗାରୁ ପାଣି ନେଇ ମେଘ ତାକୁ ପୃଥିବୀରେ ପକାଉଛି କି ?

୧୩—ଡ଼ମ୍ବରୁ ମଧ୍ୟା—ଡମ୍ବରୁ ମଝିପରି ଅଣ୍ଟା ଯାହାର; ଡ଼ମ୍ବରୁ ବାଦ୍ୟର ମଝି ଧରିବା ଯାଗା ଖୁବ ସରୁ । ତୋ (ଗାଲରେ ପାନ ବୋଳ ପାନପିକ )—ଚୁମ୍ବନ ହେତୁରୁ;

ସୁନ୍ଦରି ! ତୋତେ ବଶ କଲେ ପୁଣି ରେ ।
ତାହା ଉତ୍ତୀର୍ଣ୍ଣ ରସାଣ ହେମ ପାତ୍ରେ ଘଟିତ କି ମାଣିକ୍ୟ ମଣି ରେ । ୧୩ ।
ତଳି ଗୁହଁ ଟଙ୍ଗ ଅଧରୁ ଝରୁଛି ଦନ୍ତ କ୍ଷତ ବଶେ ରକ୍ତ ରେ ।
ତାଙ୍କେ ହୃଦୟ ସୁଖେ ମୁନଖେ କରେ କି ନିଶି ଅନୁରାଗ ବ୍ୟକ୍ତ ରେ ।
ସୁନ୍ଦରି ! ତମାଛି ନୋହେ ଏ ସତ ରେ ।
ଢଳଢଳ ଚୂତ ପଲ୍ଲବେ ଯେମନ୍ତ ମତ୍ତପିକ ଚଞ୍ଚୁଘାତ ରେ । ୧୪ ।
ଅମୂଲ୍ୟ କୁନ୍ଦ ସୁନ୍ଦର କାଶ ମନ୍ଦହାସ ଲେଶହେଁ ତ² ନାହିଁରେ ।
ଆନନ୍ଦ ଚନ୍ଦ୍ରମା କେବଣ କାରଣେ କିରଣ ହେଲା କୁନ୍ଦାଇ ରେ ।
ସୁନ୍ଦରି ! ଅତ୍ୟନ୍ତ ରସିକ ସେହି ରେ ।
ଅମୃତ ଭବି ଓଷ୍ଠମଧୁ ସହିତେ ପିଇଗଲା ପରା ତାହିଁ ରେ । ୧୫ ।
ତନୁରେ ଠାବେ ଠାବେ ଲାଗି ଚନ୍ଦନ ଏହି ପ୍ରତୀତି କରାଇ ରେ ।
ତୋତେ ସେ ଏ ଶୋଭା ଦେଇଗଲା ସ୍ତନ କୁଙ୍କୁମ ପାଲଟ ନେଇ ରେ ।
ସୁନ୍ଦରି ! ତଥା ତୋ ଅଙ୍ଗ ଶୋଭନ ରେ ।
ତରୁଣ କୁଞ୍ଜର କର ମର୍ଦ୍ଦନରେ ଯେମନ୍ତ ପଦ୍ମିନୀ ବନ ରେ । ୧୬ ।

---

ପାଠାନ୍ତର— ¹, ଲେଶ ମାତ୍ର ।

---

ଦର୍ପଣ ଖଣ୍ଡଙ୍କରେ ଡାଳିମ୍ବ ଫୁଲ କିମ୍ବା ବିମ୍ବପରି ଦିଶୁଛି ; ତାହା ( ପୋଡ଼ିବାରୁ ) ଉତ୍ତୀର୍ଣ୍ଣ ( ବାହାର ) ହୋଇ ପୁଣି ରସାଣ ଦିଆ ହୋଇଥିବା ( ମଠା ହୋଇ ଚକ୍ ଚକ୍ ହେଉଥିବା ) ହେମ ( ସ୍ୱର୍ଣ୍ଣ ) ପାତ୍ରରେ ମାଣିକ୍ୟ ( ଲାଲ ମଣି, ପଦ୍ମରାଗ ) ଥୁଆ ହେଲା ପରି ଦିଶୁଛି ।

୧୪—ତଳି—ଆଖି ନୁଆଁଇ; ତାଙ୍କେ—ଅନାୟସରେ, ସୁହାଗରେ; କରେ—କରୁଛି; ନିଶା- କାଙ୍କର ଅନୁରାଗ ( ପ୍ରୀତି )ର ରଙ୍ଗ । ତମାଛି—ପରିହାସ ବଚନ, ଅସତ୍ୟ ମନ ଗଢ଼ା ବଚନ; ଢଳ ଢଳ—ସ୍ୱଚ୍ଛ ଚୂତ ପଲ୍ଲବ—କଅଁଳ ଆମ୍ବପତ୍ର, ପିକ କହିବାରେ ବର କଳା ବୋଲି ଅର୍ଥ ଅଛି ।

୧୫—ଲେଶହିଁ ତ—ଟିକିଏ ସୁଦ୍ଧା ( ମୁହଁ ସିଠା ପଡ଼ି ଯାଇଛି ); କୁନ୍ଦାଇ—( କୁନ୍ଦରେ ବସି ଛଡ଼ାଇ ) ହେଲା । 'କୁନ୍ଦ' ବଢ଼େଇର ଯନ୍ତ୍ର ବିଶେଷ; ସେଥିରେ କାଠ ହାତୀଦାନ୍ତ ପ୍ରଭୃତିର ଉପରୁ ପ୍ରସ୍ତରକୁ ପ୍ରସ୍ତ କୋରି ବାହାର କରି ଦିଆଯାଏ । ତାହିଁ—ସେହିକିରଣ, (କୁ)

୧୬—ନିଜ ଦେହରୁ ଚନ୍ଦନ ଲଗାଇ ଦେଇ କୁଙ୍କୁମ ( ବନ ହଳଦୀ ରଙ୍ଗ ) କୁ ପାଲଟାଇ ନିଜ ଦେହକୁ ନେଇ । ତରୁଣ କୁଞ୍ଜର କର—୧. ମତ୍ତହାତୀ ଥୋଡ଼ ପାହାଡ଼, ୨. ତରୁଣ ଶ୍ରେଷ୍ଠର ହାତ; ପଦ୍ମିନୀ—୧. ପଦ୍ମଲତା, ୨. ପଦ୍ମିନୀ ସ୍ତ୍ରୀ ଜେମା; ମର୍ଦ୍ଦନ—୧. ଅସ୍ତବ୍ୟସ୍ତ କରିବା, ୨; ମଳିବା, ।

ଘୂନ୍ତ ଜାନୁରେ ଦୀପ୍ୟମାନ ଅନେକ ପ୍ରଖର ନଖର ଶିର ରେ ।
ଥୟ ଏ ଭଙ୍ଗିତ ସଙ୍ଗିତ ଜାଣେ ସେ କଳା ପସାରିଲା ପର ରେ ।
ସୁନ୍ଦରି । ଥରୁଅଛୁ କିପାଁ ଶରୀରେ ।
ଥିବେ କହିଥା କରିଛୁ କି ବଲ୍ଲଭ ଚିଉରଚନକୁ ଶ୍ରେରୀ ରେ । ୧୭ ।
ଦେଖେଁ ଦିଶୁଛି କଙ୍କଣ ଚିହ୍ନମାନ ରଞ୍ଜନ ଖଞ୍ଜନ ଦୃଷ୍ଟି ରେ ।
ଦିବ୍ୟ ଦାହ ହେମ ପିତୁଳାକୁ କାମ ସୂଚିକମ କଲା ବଷି ରେ ।
ସୁନ୍ଦରି । ଦେଖି ମୁଁ ହେଲିନି ତୋଷି ରେ ।
ବଲ୍ଲଭ ହୃଦ କଷଟିରେ ଥିବ ସେ ପ୍ରାତିବାନ୍ନ ମାନ କଷି ରେ । ୧୮ ।
ଧରି ମଧ୍ୟ ଧୀରେ ଅଶକତ ଭରେ ଆସିବାରୁ ମୁଁ ଯେ ହେଜି ରେ ।
ଧୂର୍ଜ୍ଜଟି ଡମ୍ବରୁ ସରି ସରୁକଟି ଆହା ସେ ଗଲକି ଭଜି ରେ ।
ସୁନ୍ଦରି । ଧର ଧର ଯେହୁ ଟେକି ରେ ।
ଧବ ଭର ନିକି ସହି ନ ପାରିଲା ଘେନୁଛି ଅଛି ଏଥି କି ରେ । ୧୯ ।
ନିବିଡ଼ ନୀବୀ ତ ମହା ଅସ୍ତବ୍ୟସ୍ତ ଖୋଷିଲେ ଖସି ପଡ଼ଲା ରେ ।
ନାଗର ଶ୍ରୀକର ଦର ଏତେଦୂର କରି ପ୍ରାଣେ ନରଖଲ ରେ ।

---

୧୭–ଜାନୁ–ଜଙ୍ଘ; ପ୍ରଖର–ଟାଣୁଆ, ଚିହ୍ନ ବସିଯିବା ଭଳି; ନଖର–ନଖ; ଥୟେ–ଏକଥା ଠିକ୍; ହେ ସଙ୍ଗୀ ( ସଖୀ ) ଏ ଭଙ୍ଗୀ ସେ ଜାଣେ ତ; ତେଣୁ ପ୍ରସାରିଲା କଲ (୧. ଓସାରି ଦେଲା–ଏବଂ ୨, ସେ ସଙ୍ଗୀତ ଜାଣେ ) ତେଣୁ କଳା–(୧. ବିଦ୍ୟା ୨. କାଳିମା–ନଖଦାଗ ବସିଯିବା) ପ୍ରସାରିଲା ( ବିସ୍ତାରକଲା ) ଶରୀରେ (ଦେହରେ);
୧୮–ରଞ୍ଜନ–ସୁନ୍ଦର; ବର ହାତରେ କଙ୍କଣ ଥିଲା । ତୁ ଦିବ୍ୟ ( ଅତି ସୁନ୍ଦର )ଦାହହେମ ( ପୋଡ଼ାସୁନା ) ପିତୁଳା ତୁଲା ( ସମାନ ) ହେବାରୁ ସୂଚିକମ ( ସରୁ ସୁନା କାମ ) ତୋର ହୃଦ ରୂପ ଦୁର୍ଲ୍ଲଭ ( ଅତି ବହୁମୂଲ୍ୟ ) କଷଟି ପଥରରେ ପ୍ରୀତି ରୂପ ସୁନାର ବାନ ( ଟେକ ) ମାନ (ପ୍ରକାର) [ ଅର୍ଥାତ୍ କି ପ୍ରକାରର 'ବାନ'. ଏହା ଜାଣିବା ପାଇଁ ] କଷିଥିବା–ସୁନାର ବାନମାନ ( ଟେକ ପରିମାଣ ); ତୁଳନାରେ ଜାଣିବା ପାଇଁ ବଣିଆମାନେ ସୁନାକୁ କଷଟି ପଥରରେ ଘସି ଦେଖନ୍ତି ।
୧୯ -ମଧ୍ୟ–ଅଣ୍ଟା; ଅଶକତଭରେ–ହାଲିଆ ହେଲାପରି; ଧୂର୍ଜ୍ଜଟି–ଶିବ; ଧରଧର–ପର୍ବତ (ସ୍ତନରୂପ) ଧବଭର–ବରର ଓଜନ; ଅଛି ଏଥି କି ରେ–ଏଥିରେ କି କାରଣ ଅଛି ।
୨ –ନିବିଡ ନୀବୀ–ନିବାଡ଼ ଅଣ୍ଟାଭିଡା ଲୁଗା ଓ ଖୋଷଣୀ; ଏତେଦୂର–ଏତେସରି; ଥୟ କରି ନ ରଖଇ–ଏକଥା ଠିକ୍ ବୋଲି ମୁଁ ବିଗ୍ଭରି ପାରୁନାହିଁ । ସେ ( ନୀବୀ )

ସୁନ୍ଦରି । ନ ରହେ ଏହା ଶୁଣି କି ରେ ।
ନ କଲ ମୋତେ ବନ୍ଧନ ଅବକାଶ ନୋହିବ ଆଉ ଏଣିକି ରେ । ୨୦ ।
ପୁଣି ତ ପଣତ ମହୀରେ ଲୋଟିଛି ଘଲେ ଅସମ୍ଭାଳ ଦେଖ ରେ ।
ପାଦେ ପଡ଼ି ଶାଢ଼ୀ କହେ ପତିସଙ୍ଗ ବେଳେ ପାରିବୁ କି ରଖି ରେ ।
ସୁନ୍ଦରି । ପଗ୍ଚୁଛି ଏତେ ମୁହିଁ ରେ ।
ଗାଇ ନାହାନ୍ତି ସ୍ଥାନ ଯହିଁ ଏମାନେ ଲଜ୍ଜା ରଖିଥିବ କାହିଁ ରେ । ୨୧ ।
ଫୁଲାର ବିନ୍ଦ ମୁଖେ ନାହିଁ ପ୍ରସନ୍ନ କାନ୍ତେ ପରଜୟ ଇଚ୍ଛି ରେ ।
ଫୁଲ୍ଲଣା ହୁଅ ଫୁଲ ଧନୁ ଜିଣିଲୁ ଏଥେ ପୁଣି ଯଶ ଅଛି ରେ ।
ସୁନ୍ଦରି । ଫେଡ଼ି କହୁଅଛି ଜାଣିରେ ।
ସ୍ଫୁଟେ ରଟୁଥିଲ ବଙ୍କା ଫୁଲଧନୁ ପଳା ପଳା ପୁଣି ପୁଣି ରେ । ୨୨ ।
ବିଧୁ ବିଧୁନ୍ତୁଦ ମୁଖୁ ଏହିକ୍ଷଣି ବାହାରିଲ ପରି ମୁଖ ରେ ।
ବିଧିରେ ଚିକୁର ଶୋଭି ମିଛ ହେଲେ ମୁକୁର ଅଣାଇ ଦେଖ ରେ ।
ସୁନ୍ଦରି । ବିସ୍ମୟରେ ଏଥି କି ଗୋଳ ରେ
ବୋଲନ୍ତି ତୋତେ ସୁକୁମାରୀ ଏ ଦୁଃଖ ସୁହାଇଲ ଭବ ଭୋଳରେ । ୨୩ ।
ଭିତ୍ତି ଧରି କର ଗମନ ମଣୁଛୁ ପଦଣ୍ଡକ ଶତ କ୍ରୋଶ ରେ ।
ଭର ଦେଇ ଅପଘରେ ଅବସର ପାଇଲୁ ଏବେ ତୁ ବସନ୍ତେ ଏ

---

ମୋତେ ବନ୍ଧନ ନ କଲ ଏ କଥା ଶୁଣି ( ଭଳି ) ଏଣିକି ଆଉ ବନ୍ଧନର ଅବକାଶ ନୋହିବ ବୋଲି ବିଗ୍ରନ୍ଥି ନ ରହେ ( ଖସିପଡେ ) ।

୨୧–ପଣତ–କାନି; ଶାଢ଼ୀ କହେ ମୋତେ ରଖି ପାରିବୁ କି ?

୨୨–ଫୁଲାରବିନ୍ଦ–ଫୁଟିଲ ପଦ୍ମ; କାନ୍ତକୁ ଜୟ (ଜିଣିବା) ଇଚ୍ଛି (ଇଚ୍ଛା କରି) ପର ରେ; ଫୁଲ୍ଲଣା–ଗର୍ବରେ ଖୁସୀ; ଫୁଲଧନୁ–କନ୍ଦର୍ପ ଯଶ ଅଛି କି ? ସ୍ଫୁଟେ (ଫୁଟେ–ପ୍ରକାଶ କରି); ହେ ଫୁଲ ଧନୁ ତୁ ପଳା–(ପଳାଇ ଯା) ବୋଲି ବଙ୍କା (ଗୋଡ଼ର ଅଳଙ୍କାର ଶବ୍ଦରେ ଯେପରି କି କହୁଥିଲ ।

୨୩–ତୋ ମୁହଁ ଏହି କ୍ଷଣି ବିଧୁ ନ୍ତୁଦ (ରାହୁ) ମୁହଁରୁ ବିଧୁ (ଚନ୍ଦ୍ର) ବାହାରିଲ ପରି ଦିଶୁଛି, (ମୁହଁ ଫଙ୍କା ପଡ଼ି ଯାଇଥିବାରୁ) ମୁକୁର–ଦର୍ପଣ; ବିଧିରେ ଠିକଣା କରି (ଦେଖ); ଏଥି କି–ଏ ବିଷୟରେ; ଗୋଳ–ବୁଝା ନ ପଡ଼ିବା ଜିନିଷ; ଭବଭୋଳ–ପ୍ରୀତି ବିହ୍ୱଳତା;

୨୪–ଭିତ୍ତି–ବାଡ଼, କାନ୍ଥ; ଶତ–ଶହେ; ମଣୁଛୁ–ବିଗ୍ରୁଛୁ; ଅପଘରେ (ତକିଆରେ) ଭର (ଭରା) ଦେଇ ଅବସର (ସମୟ); ଭବ (ପ୍ରେମ) ନୋହେ ସତେ କି ଅରି (ଶତ୍ରୁ) [କିମ୍ବା] ଭବ (ତୁ କଣ ବିଗ୍ରୁଛୁ) ସେ କୋକନଦ ତୋର ଅରି (ଶତ୍ରୁ) କାହିଁକିନା ତୁ

ସୁନ୍ଦରି । ଭବ କି ସେ ତୋର ଅରି ରେ ।
ଭଙ୍ଗୁ ଦରବିକଶିତ କୋକନଦ ମଦ ଜୃମ୍ଭାକୁ ଆଦରି ରେ । ୨୪ ।
ମହା ଅଳସ ଭରେ କୁଚ କଳଶ ଲୋଡ଼େ ମେରୁ ଦର୍ପ ହରି ରେ ।
ମର୍ଦ୍ଦନ ତାଡ଼ନ କରଜ–ପୀଡ଼ନ କେତେ ବେଗରେ ପାଶୋରି ରେ ।
ସୁନ୍ଦରି । ମୁହିଁ ଶିଖାଉଛି ତୋତେ ରେ ।
ମନ୍ଦ କରିବା ପରେ ନୋହେ ଉଚିତ କରିଥିବୁ ଦିବ୍ୟ ଚିତ୍ତରେ । ୨୫ ।
ଯଶ ଅଯଶ ବିଗ୍ରହି ଅନୁଗ୍ରହ ବିଗ୍ରହ ନିଗ୍ରହ କର ରେ ।
ଯୁବତୀ ରତିରଣ ଛବି ନିତମ୍ବ ଉରଜ ମିଶିଲ ଉର ରେ
ସୁନ୍ଦରି । ଯୁକ୍ତ ଏ ପାଇବେ ଶାଢୀ ରେ ।
ଯୋଗ ବେଗେ ଆଗେ କର ବହି କଲ ତାକୁ ଦିଅ ମଣି ଚୂଡ଼ିରେ । ୨୬ ।
ରଙ୍ଗ ବେଶ ହୋଇ ଆତଙ୍କ ନୟନ ବୁଜି ହେଲ ଅତି ସୁଖେ ରେ ।
ରମଣୀ ଚତୁରୀ ଶିରୋମଣି ଆଣି କାଜି ଦେବା ତାର ମୁଖେ ରେ ।

---

ଜୃମ୍ଭାକୁ ଆଦରିଲ ବେଳେ (ହାଇ ମାରିଲା ବେଳେ) ଦର ବିକଶିତ (ଦର ଫୁଟିଲ) କୋକନଦ ମଦ (ଗର୍ବକୁ) ଭଙ୍ଗୁଛୁ, ଅର୍ଥାତ୍ ବହୁତ ହାଇ ମାରୁଛୁ ।

୨୫–ଅଳସ ଭରେ–ମୋଡ଼ି ହେଲାବେଳେ; କରଜ ପୀଡ଼ନ–ନଖକ୍ଷତ, ସେ–କୁଚ; ପରେ–(ଶତ୍ରୁକୁ ମଧ୍ୟ) ମନ୍ଦ କରିବା (ମନ୍ଦ ବିଗ୍ରହିବା) ଉଚିତ ନୁହେ, ଅର୍ଥାତ୍ ମର୍ଦ୍ଦନ ତାଡ଼ନ ପ୍ରଭୃତି ମନେ ରଖି ଯେ ଏପରି କଲା ତା ଉପରକୁ ବିମନା ହେବା ଠିକ୍ ନୁହେ–ଏହି ଅର୍ଥ ।

୨୬–ବିଗ୍ରହେ–(ଯୁଦ୍ଧରେ) ଯେଉଁମାନେ ଲଗି ଥାନ୍ତି ତାଙ୍କର ଯଶ ଅଯଶ (ଭଲ ମନ୍ଦ) କାମ ବିଗ୍ରହି ଅନୁଗ୍ରହ ନିଗ୍ରହ (ଦଣ୍ଡ ଅନୁଗ୍ରହ) କରଯାଏ । ହେ ଯୁବତୀ ରତି କିରଣ (ଯୁଦ୍ଧ) ଛବି ନିତମ୍ବ ଉରଜ ଡ଼ରି କରି ମିଶିଥିଲେ (ଯୋଗ ହୋଇଥିଲେ) ସେମାନେ ଏ ଶାଢୀ ପାଇବା ଯୁକ୍ତ (ଠିକ୍) ହୋଇଛି । (ପିଗ୍ରରେ ଓ ସ୍ତନରେ ଶାଢ଼ୀ ଥିବା ପ୍ରତି ଲକ୍ଷ୍ୟ) ଯୋଗକୁ ବେଗେ (ହଠାତ୍) ଆଗ କରି କର (ହାତ) ସେ ସ୍ୱାମୀକୁ ବନ୍ଦି କଲ (ପ୍ରଥମେ ସ୍ୱାମୀ ହାତ ଧରି ନେବାକୁ ଲକ୍ଷ) ତାକୁ ମଣି ଚୂଡ଼ି ଦିଅ–ଚୂଡ଼ି ଖସି ପଡ଼ୁଛି ପିନ୍ଧ–ଏହି ଭାବ ।

୨୭–ରଙ୍ଗ (୧ ଯୁଦ୍ଧ, ୨: ଚଳିମା) ବଶେ (ହେତୁରୁ)–[ଅନିଦ୍ରାରୁ] ଆତଙ୍ଗ (ଆତଙ୍କିତ, ଭୀତ) [ଆଖି ଘୋଡ଼ାଇ ହୋଇ ପଡ଼ୁଛି] ଅତଏବ ହେ ରମଣୀ ଚତୁରୀ ଶିରୋମଣି ଆଜି ତା (ସେହି) ନୟନ ମୁଖେ କଜଳ ଦେବା [କଜଳ ପୋଛି ହୋଇ ଯାଇଛି]

ସୁନ୍ଦରି । ରତେ କେଶ ଅସମ୍ଭାଳ ରେ ।
ରମ୍ୟ ଚରମେ ପଡ଼ାଇ ଲୁଚି ଥିଲ ବାନ୍ଧିବା ତାହାକୁ ଭଳ ରେ । ୨୭ ।
ଲବଣ୍ୟ ବିମ୍ବ ବିଦ୍ରୁମ ଅଧର ତୋ ଘାତକ ହୋଇଛି ଅତି ରେ ।
ଲଦରେ ଏବେ ତାମ୍ବୁଳ ଅଉଷଧି ଦେଇଣ କର ତୃପତି ରେ ।
ସୁନ୍ଦରି । ଲକ୍ଷ ପ୍ରାୟ ଆଦ୍ୟ ପ୍ରାନ୍ତରେ ।
ଲକ୍ଷିତ ଅଙ୍ଗ ଯେ ରହି ଥିଲ ଯାକୁ ଚନ୍ଦନେ କର ଲେପିତ ରେ । ୨୮ ।
ବିଗ୍ରରେ ପବନ ଘନସାର ଅର୍ଗ୍ନି ସମେ ଦେଉଥିଲେ ପୀଡ଼ା ରେ ।
ବ୍ୟାଜ କି ଆଜ ସେ ସୁଖଦ ହେଉକୁ ସିନା କରୁ ଅଛି ଲେଡ଼ା ରେ ।
ସୁନ୍ଦରି । ବିବେକ ଏସ ଶୋଭ ନିଧି ରେ ।
ବିଧୁ ଅସ୍ତବ୍ୟସ୍ତ କରିଥିବ ସଂଧି ସବୁ ଶତ୍ରୁ ହେଲ ସାଧି ରେ । ୨୯ ।
ଶୟନ କର ନୟନଙ୍କୁ ଜିଣିଲୁଁ ଗର୍ବି କଲୁ ଶିବ ଗର୍ବି ରେ ।
ଶ୍ରୀ ଅଙ୍ଗକୁ ତେବେ କିଛି ଶାନ୍ତି ହେବ ଅଶେଷ ସୁରସ ପାର୍ବି ରେ ।

---

ରତେ (ରତି ଯୁଦ୍ଧରେ) କେଶ ଅସମ୍ଭାଳ ହୋଇ ଚରମେ (ପିଠି ଆଡ଼େ) ଲୁଚିଛି ତାକୁ ବାନ୍ଧ୍ୟ ।

୨୮—ଲବଣ୍ୟ—ସୁନ୍ଦର; ବିମ୍ବ ବିଦ୍ରୁମ- ( କଇଁଚି କାକୁଡ଼ି ପରି ) ଅଧରରେ ଅତିଘାତ ( ଦନ୍ତଘାତ ) କି ହୋଇଛି ( କିପରି ଅସ୍ତବ୍ୟସ୍ତ ହୋଇଛି ) ଏବେ ଲଲ ଦେ- ଆଦରରେ ତାକୁ ତାମ୍ବୁଳ ( ପାନ ) ରୂପ ଔଷଧି ଦେଇ; ରତି ଯୁଦ୍ଧର ଆଦ୍ୟ ପ୍ରାନ୍ତରେ ( ମୂଳରୁ ଶେଷଯାଏ ) ଲକ୍ଷ ( ଲକ୍ଷ ଜଉ ପରି ଜଡ଼ି ) ପ୍ରାୟ ହୋଇ ଅଙ୍ଗ ରହିଥିଲ ତାକୁ ଏବେ ଚନ୍ଦନ ଭୂଷିତ କର । [ ବେଗେ ଗାଧୁଆ ପାଧୁଆ କରି ପାନ ଖାଅ, ଚନ୍ଦନ ଲଗାଅ ଇତ୍ୟାଦି ଭବ । ]

୨୯—ବିଗ୍ରର କର ବିରହ ବେଳେ ପବନ ଓ ଘନସାର ( କର୍ପୂର ) ଅର୍ଗ୍ନି ( ନିଆଁ )ପରି ପୀଡ଼ା ଦେଉଥିଲେ, ଆଜି ସେମାନେ ସୁଖ ଲଗିବାରୁ ତାକୁ ଯେ ଲେଡ଼ା (ଦରକାର) କରୁଛୁ, ହେ ଶୋଭନିଧି ଏଥିରେ ବ୍ୟାଜ ( ଅପସନ୍ଦ ) କଣ ଅଛି ? ଏ ବିବେକ ( ବୁଝାମଣା ) କଥା ଏ । ବିଧୁ ( ଚନ୍ଦ୍ର ) ମଧ୍ୟ ବିରହରେ ଅସ୍ତବ୍ୟସ୍ତ କରିଥିବ । ଆଜି ସାଧୁ ( ଥଣ୍ଡା ) ହୋଇଛି । ଏହିପରି ସବୁ ଶତ୍ରୁ ସାଧୁ ( ସାଧିତ ହେଲ ) କିମ୍ବା ଚନ୍ଦ୍ର ଗ୍ରହଣରେ କାଳି ବର ବିଧୁକୁ ଅସ୍ତବ୍ୟସ୍ତ କରିଥିବ ଏପରି ଅର୍ଥ ଥାଇ ପାରେ ।

୩୦—ଶୋଇପଡ଼ । ଆଖିରୁ ଜାଣିଲି ରତିଯାକ ଅନିଦ୍ରା ହୋଇଛୁ । ହେ ଅଶେଷ ସୁରସ

ସୁନ୍ଦରି । ଶଦ୍ଧା ଏକା ଅଛି ଚହିଁରେ ।
ଶଶି ହାସୀ ସେ ବିଧି ସ୍ୱପ୍ନେ ଦେଖୁବୁ ପାସୋରିବା କଥା ନୋହି ରେ । ୩୦।
ଷଡ଼ାନନ ତାତ ଆଦି ଦେବତାଙ୍କୁ ଏ ପୁରୁଷ ସଙ୍ଗ ଆଶେ ରେ ।
ଷୋଡ଼ଶୀ ଯେତେ ଦ୍ରବ୍ୟ ଥିଲୁ ମନାସି ଦେବୁଟି ଏହି ଦିବସେ ରେ ।
ସୁନ୍ଦରି । ଷଣ କୁସୁମ ସୁକାନ୍ତିରେ ।
ଷଡ଼ର୍ଦ୍ଧ ପୁରେ ପ୍ରମଦା ମାତ୍ରେ ନାହିଁ ତୋ ସମାନ ଭଗ୍ୟବତୀ ରେ । ୩୧ ।
ସାରସ ଗତି ସଖୀ ଭଷ ବଶରେ ମଜ୍ଜିଲା ହୀରା–ସରିତେ ଯେ ।
ସନ୍ତେ ଉରଜ କଲା ଚନ୍ଦ୍ରଶେଖର ମୁଖ ନିବେଶି ତୁରିତେ ସେ ।
ସୁନ୍ଦରି । ସଧୀରେ ସଖୀରେ ଯାଇ ସେ ।
ସମୀର ବହିଲା ସ୍ଥାନରେ ବସିଲା ଆଶ୍ୱାସନା କଲେ ସହୀ ଯେ । ୩୨ ।
ହାଟକ ଝଟକ ଗୋରୀର ଦେଲେ ସେ ଛଟକେ ନୀତି ବଢ଼ାଇ ଯେ ।
ହସ୍ତୀ ଦଶନ ପଲ୍ୟଙ୍କ ଅଙ୍କରେ ସେ ନିଶଙ୍କେ ଦେଲେ ଶୁଆଇ ଯେ ।
ସୁନ୍ଦରି । ହେଲା ପୂର୍ଣ୍ଣ ମନୋରଥ ଯେ ।
ହେତା ନ କଲା ପୁଂସଲୀଳା ଭବନା ଲବ ମାତ୍ର ହୃଦ ପଥ ଯେ ।୩୩ ।
କ୍ଷିତି ମଣ୍ଡଳ ମଣ୍ଡନ କ୍ଷୀଣୋଦରୀ ଭବନା ବଶରେ ପୁଂସ ଯେ
କ୍ଷଣଦା କ୍ଷଣ ପ୍ରାୟ ଗଲା ବିଗ୍ରରେ କାହିଁ ଥିଲା ଏ ଦିବସ ହେ ।

---

ପାତ୍ରୀ ସୁରସରେ ଏକାଶଦ୍ଧା ଅଛି । ହେ ଶଶି ହାସୀ ଶୋଇଲେ ସ୍ୱପ୍ନରେ ସେହି କଥା ଦେଖୁବୁ ।

୩୧–ଷଡ଼ାନନ ତାତ୍‌(କାର୍ତ୍ତିକେୟଙ୍କ ପିତା, ମହାଦେବ) ଏ ପୁରୁଷ ସଙ୍ଗ ଆଶରେ ( ଏ ପୁରୁଷକୁ ପାଇବା ପାଇଁ) ଷୋଡ଼ଶ ବୟସୀ (ଷୋଳ ବର୍ଷ) ଏ ଦିବସ (ଆଜି) ଷଣ କୁସୁମ (କାଶ ଦର୍ଭ, ଛଣପଟ, ଫୁଲ) ଷଡ଼ର୍ଦ୍ଧ ପୁର (ତିନି ପୁର) ପ୍ରମଦା (ସ୍ତ୍ରୀ, ନାରୀ)

୩୨–ସାରସ ଗତି–ହଂସଗତି; ସଖୀଭଷ– ( ସଖୀର ପୂର୍ବେ କୁହାଯାଇଥିବା ପରିହାସ ) ବଶରେ (ହେତୁରେ) ହୀରା ସରିତ (ହ୍ରୀ–ଲଜ୍ଜା ରୂପ ନଦୀ ) ଜଳରେ ମୁଣ୍ଡ ପୋତି ଦେବାରୁ ମୁଖଚନ୍ଦ୍ର ସ୍ତନ ଶମ୍ଭୁ ମୁଣ୍ଡରେ ଲଗି ସ୍ତନକୁ ଚନ୍ଦ୍ରଶେଖର ( ଚନ୍ଦ୍ର-ଶେଖର–ମୁଣ୍ଡରେ ଯାହାର–ମହାଦେବ ) କଲା । ଆଶ୍ୱାସନା କଲେ–ଆଉଁସିଲେ;

୩୩–ହସ୍ତୀଦଶନ - ହାତୀଦାନ୍ତ; ପଲ୍ୟଙ୍କ ଅଙ୍କରେ–ଖଟ ଉପରେ; ପୁରୁଷର ଲୀଳାକୁ ବରବର ହୃଦୟରେ ଭବୁଥାଏ ।

ସୁଜନେ । କ୍ଷିପ୍ରେ ଚିନ୍ତି ରାମଚନ୍ଦ୍ର ଯେ ।
କ୍ଷମେ ଉପଇନ୍ଦ୍ର ଭଞ୍ଜ ବୀର କହେ ଅଘ କରୀନ୍ଦ୍ର ପାରିନ୍ଦ୍ର ହେ । ୩୪ ।

---

୩୪–କ୍ଷିତିମଣ୍ଡଳ–(ମହୀମଣ୍ଡଳ)ର ମଣ୍ଡନା (ଭୂଷଣ ସ୍ୱରୂପା), କ୍ଷଣଦା ( ରାତ୍ରି )କ୍ଷଣ ପ୍ରାୟେ ( ମୂହୂର୍ତ୍ତକ ପରି ) ଗଲା ଏବଂ ଏ ଦିବସ (ଦିନ) କାହିଁଥିଲା (କୁଠିଥିଲା–-ବିରକ୍ତିରେ କୁହାଯାଏ ) ବୋଲି ବିଗ୍ଭରିଲା । କ୍ଷମେ–ଦୋଷ କ୍ଷମା ନିମନ୍ତେ; ଅଘ (ପାପ) ରୂପକ କରିନ୍ଦ୍ର (ଗଜେନ୍ଦ୍ର)କୁ ପାରିନ୍ଦ୍ର (ସିଂହ) ପରି ।

✳  ✳

# ପଞ୍ଚତ୍ରିଂଶ ଛାନ୍ଦ

## ( ଦେବତାଙ୍କର ଅଭିଶାପ ପ୍ରଦାନ ଓ ବରର କନ୍ୟାସହ ସ୍ୱଦେଶ ପ୍ରବେଶ )

ରାଗ—କଳଶା

ଏଥୁ ଅନନ୍ତରେ ଜନେ ଶୁଣ ଦିବ୍ୟ ରସ ।
ପୁରେ ସପତ ମଙ୍ଗଳା ହେଲା ତହିଁ ଶେଷ ଯେ । ୧ ।
ପଡ଼ିଲା ପରମ କଷ୍ଟ ଅଷ୍ଟ ମଙ୍ଗଳାରେ ।
ସେ ଦିନ ନୋହିଲା ଭେଟ ପୁରୁଷ ବାଳାରେ ଯେ । ୨ ।
ବସି ବିଚାର କରଇ ରସିକ ରତନ ।
ଉତ୍ସବେ କାହିଁକି ହେଲା ଏଡ଼େ ହୀନ ଦିନ ଯେ । ୩ ।
ମୋତେ ହରିତାଳୀ ଗୋରୀ ହରିତାଳି ହରି ।
ପରି କରି ଦେବ ଦୁଃଖ ଏ ଘୋର ଶର୍ବରୀ ଯେ । ୪ ।
କୁହୁ ନୋହି ଜଗତରେ ମୋଠାରେ ହୋଇଲା ।
ବଦନ ଇନ୍ଦୁ ଦର୍ଶନ ଏଣୁ ବିରୋଧିଲା ଯେ । ୫ ।
ଏକାଳେ ଜ୍ୟୋତିଷିକଙ୍କ ପାଶେ[୧] ପରବେଶ ।
ବୋଇଲା ମନ୍ତ୍ରୀସୁତକୁ ମନ୍ତ୍ରୀ କରିବେଶ ଯେ । ୬ ।

---

ପାଠାନ୍ତର— ୧ ଜ୍ୟୋତିଷ ଶୃଙ୍ଖଳାଳ

---

୨—ବିଭାଘରର ଆଠ ମଙ୍ଗଳା ଦିନ (ଅଷ୍ଟମ ଦିନ) ବର କନ୍ୟାଙ୍କର ଦେଖା ନିଷେଧ—ଏ ଓଡ଼ିଶାରେ ସର୍ବତ୍ର ଅଛି ।

୪—ହରିତାଳି-(ଗଣେଷ ଚତୁର୍ଥୀର) ହରି (ଚନ୍ଦ୍ର) ପରି; ହରି ତାଳିକା ରାତ୍ରିରେ ଚନ୍ଦ୍ରକୁ ଦେଖିବା ନିଷେଧ । ଶର୍ବରୀ-ରାତ୍ରି;

୫—ଏ ରାତି ମୋରିଠାରେ କୁହୁ (ଅମାବାସ୍ୟା ରାତ୍ରି) ପରି ହେଲା-ଆଉ କାହାରିଠାରେ ହେଲା ନାହିଁ—ଏହି ଭାବ ।

୬—କର୍ଣ୍ଣାଟ ମନ୍ତ୍ରୀ ପୁଅର ସିଂହଳ ମନ୍ତ୍ରୀଝିଅ ସାଙ୍ଗେ ବିବାହ ହେବ । ଜ୍ୟୋତିଷିକଙ୍କ-ଜ୍ୟୋତିଷ ପୁଅ ।

ସୁତା ବିଭା କରି ଦେବ ନେଉଅଛି ବରି
ଚିଉଚିନ୍ତା ଆନ ଏ ସନ୍ଦେଶ ଶୁଣିକରି ଯେ । ୭ ।
ରତ୍ନଧ୍ୱଜ ବିଭା ପୁଣି ପୁରୋହିତ ସୁତା ।
ମୋତେ ଆଗୁଁ ଏ ଦେଶେ କରିଛି ଯୋଗ ଧାତା ଯେ । ୮ ।
ରତ୍ନାକର ସାଧୁର ଆତ୍ମଜ ଅତି ସ୍ନେହୀ ।
ତାହାର ଭଗିନୀକି ମାଗ ପୁରନ୍ଦର ପାଇଁ ଯେ । ୯ ।
ଶୁଣି ତୋଷ ହୋଇ ଧରପତି ପ୍ରିୟ ସୁତ ।
ସେ କାର୍ଯ୍ୟ ନିର୍ବାହ କରି ପାଶୁଁ ପେଷି ଦୂତ ଯେ : ୧୦ ।
ତିନି ମିତ ବିଭାବିଧି ଶୁଭେ ହେଲା ସିଦ୍ଧି
ଶୁଣି ଅତି ହରଷ ହୋଇଲା ରସ ନିଧି ଯେ । ୧୧ ।
କାମକଳା ମେଘମାଳା ହାରବଳୀ ନାମ ।
ସପତି ହେବାରୁ ସେ ହୋଇଲେ ପୂର୍ଣ୍ଣକାମ ଯେ । ୧୨ ।
ଆଉମାନେ ଦାସୀ ମୁଖୁଁ ପାଇଲେ ବାରତା ।
ଦେବେ ଯଉତୁକେ ବୀରେ ଏଣୁ ଦୂର ଚିନ୍ତା ଯେ । ୧୩ ।
ଏମନ୍ତ କେତେ ଦିବସ ଶେଷ କଲେ ତହିଁ ।
ସିଂହଳ ଭୂପାଳେ ପୁରୋହିତ ସୁତ କହି ଯେ । ୧୪ ।
ବୋଇଲା ଯେ କର୍ଣ୍ଣାଟ ସେ ସିଂହଳ ପ୍ରଦେଶ ।
ଏମନ୍ତ ଅବଧାନରେ କର ନରଈଶ ଯେ । ୧୫ ।
ଶଶି ଶେଖର ରାଜାର ଏକମାତ୍ର ପୁତ୍ର ।
ଅଛି ପ୍ରତିମାକୁ ପଠାଇ ରଖି ନେତ୍ର ଯେ । ୧୬ ।

---

୭–ଆନ–ଭିନ୍ନ ହେଲା, ଛାଡ଼ିଗଲା; ସନ୍ଦେଶ–ଖବର;
୮–କାର୍ଣ୍ଣାଟ ପୁରୋହିତ ପୁଅ ମଧ୍ୟ ସିଂହଳ ପୁରୋହିତ ଝିଅକୁ ବିଭାହେଲା ।
୧୦–ଧରପତି ସୁତ–ରାଜାପୁଅ ( ଚନ୍ଦ୍ରଭାନୁ )
୧୧–ରସନିଧି–ଲାବଣ୍ୟବତୀ
୧୨–ସପତି–ବିବାହିତା; ସଖୀମାନଙ୍କ ପରିଚୟ ପାଇଁ ୩ୟ ଛାନ୍ଦ ୨୦।୨୧ ପଦଦେଖ ।
୧୩–ଆଉମାନେ–ପରିବାରୀମାନେ, ବୀରେ–ଚନ୍ଦ୍ରଭାନୁକୁ:
୧୪–ସିଂହଳ ରାଜାକୁ କହିଲା, ଯେ କର୍ଣ୍ଣାଟ ସେ ସିଂହଳ । ଅତଏବ ମନରେ ଦୁଃଖ ନ କରି ଝିଅ ପଠାଇ ଦେବାକୁ ଅନୁରୋଧ ।
୧୬–ଶଶିଶେଖର–କର୍ଣ୍ଣାଟ ରାଜା; ପ୍ରତିମା–ଆଖି ପିତୁଳା;

ଅବଧାନ କଲେ ଏବେ ହୋଇବୁଁ ମେଳଣି ।
ଦଣ୍ଡଧର ହରଷ ହୋଇଲେ ଚିତ୍ତେ ଶୁଣି ଯେ । ୧୭ ।
ଯଉତୁକ ସମ୍ଭାର ଘେନାଇ ସଚିବକୁ
ପ୍ରେଷିତ କଲେ ତୁରିତ କୁମାର ପାଶକୁ ଯେ । ୧୮ ।
ଗୃହିଁ ସେ ସମ୍ଭାର ଯୁବରାଜ ହୋଇ ତୋଷ
ଦେଇଛି ଧନଦ କୋଷ ପରି ରତ୍ନ କୋଷ ଯେ । ୧୯ ।
କରୀହୟ ହରିହୟ ଯାନ ସମାନରେ ।
ଲକ୍ଷ ସଂଖ୍ୟକ ଦେଇଛି ସହଜ ଚିତ୍ତରେ ଯେ । ୨୦ ।
କାମଧେନୁ ପରି ଧେନୁ ସବତ୍ସା କରିଣ ।
କୋଟି ପରିମିତ ଘେନିଛନ୍ତି ବ୍ରଜଗଣ ଯେ । ୨୧ ।
କଥା କୁହା ପିକ ଶୁକ ସାରିକା ଅନେକ
ଅଶେଷ ମଞ୍ଜୁଷା ଚର୍ମ ଆଚ୍ଛେଣୀ ସାୟକ ଯେ । ୨୨ ।
ବସନ ପେଡ଼ାମାନଙ୍କ ସଂଖ୍ୟା ହେବ କାହିଁ
ହାଦୋଳା ସ୍ୟନ୍ଦନ ଯହିଁ ଗଣନାହିଁ ନାହିଁ ଯେ । ୨୩ ।
ଏ ବିଧିରେ ପଦାର୍ଥ ସମର୍ପି ଜଣାଇଲା
ସଭୂଷଣ କରି ଦାସୀ ସହସ୍ରେକ ଦେଲା ଯେ । ୨୪ ।

---

୧୭–ଦଣ୍ଡଧର–ରାଜା ( ସିଂହଳ ରାଜା );

୧୮–କୁମାର–ଯୁବରାଜ କର୍ଣ୍ଣାଟକର);

୧୯–ଧନଦ କୁବେର; କୋଷ ଭଣ୍ଡାର;

୨୦–ହରିହୟ–ଯେ ଇନ୍ଦ୍ର ତାଙ୍କର ଯାନ ଯେ ଐରାବତ ତା ସମାନ କରୀ ( ହାତୀ );
ହରି ଯେ ଇନ୍ଦ୍ର ତାଙ୍କର ହୟ ବାହନ ( ଉଚ୍ଚୈଃଶ୍ରବା ) ସମାନ ହୟ, ଘୋଡ଼ା ।
ଯାନ-ସଜ୍ଜାର ସରଞ୍ଜାମ;

୨୧–କାମ ଧେନୁ [ ୧୯ ଛାନ୍ଦ ୧୦ ପଦ ଟୀକା ଦେଖ । ] ସବତ୍ସା–ବାଛୁରୀ ସହିତ;
ବ୍ରଜ-ଗଉଡ଼;

୨୨–କଥା କୁହା–ପଢ଼ିଥିବା, କଥା କହି ଶିଖିଥିବା 'ପିକ', ଶୁଆ, ସାରି ପରି କଥା କହି
ଶିଖିବା ଦେଖାଯାଏ ନାହିଁ । ମଞ୍ଜୁଷା–ପେଡ଼ି; ଚର୍ମ ଆଚ୍ଛେଣୀ–ଗଣ୍ଡାଚମ ଢାଲ;

୨୩–ପେଡ଼ା-ବଡ଼ ପେଡ଼ି; ହାଦୋଳା–ସ୍ତ୍ରୀମାନେ ବସିବା ପାଇଁ ଲୁଗା ଘେର ଯୁଆଣି;
ସ୍ୟନ୍ଦନ–ରଥ;

ଯାଉଛନ୍ତି ଏ ବାହାରେ ପ୍ରିୟ ସଖୀଗଣ ।
ଯାହାକୁ ଲବଣ୍ୟଲକ୍ଷ୍ମୀ କଲୁଁ ସମର୍ପଣ ହେ । ୨୫ ।
ତାହକୁ ପଦାର୍ଥ ଦେଇ ନାହିଁ ତୋଷିବାକୁ ।
ଶିବର ଆଉକି ଇଛା ଲଭିଲେ ଶିବାକୁ ଯେ । ୨୬ ।
ଯାହା ଆଜ୍ଞାରେ ହୋଉଛି ଦେଖ ଇନ୍ଦ୍ରପଦ ।
ଶ୍ମଶାନେ ଭ୍ରମି ସେ ଇଛା ନ କଲେ ସମ୍ପଦ ଯେ । ୨୭ ।
ଏ ବିଧିରେ ଘେନା ଘେନି ଅନେକ ରତନ ।
ସଜ କରିଦେଲେ ସେ ବହୁତ ପୋତ ମାନ ଯେ । ୨୮ ।
ମାତା କୋଳ କରି ପ୍ରିୟ ସୁତାକୁ ତିଆରି ।
ତଦୁତ୍ତାରେ ରନ୍ଧ୍ର ହାନ୍ଦୋଳାରେ ବିଜେ କରି ଯେ । ୨୯ ।
ବୋହିତରେ ବିଜେ କଲେ ଯୁବରାଜ ସଙ୍ଗେ ।
ଅଛନ୍ତି ପରିଚାରିକା–ସଖୀ ସଙ୍ଗେ ରଙ୍ଗେ ଯେ । ୩୦ ।
କ୍ଷେମା ଭ୍ରାତ ମନ୍ତ୍ରୀଆଦି ଘେନି ବାହାରିଲେ ।
ସେ ଦିନ ସକଳ ହୋଇ ସିନ୍ଧୁ ପାରି ହେଲେ ଯେ । ୩୧ ।
ନାରଦ ମୁଖୁଁ ଶୁଣିଲେ ଅମର ନିକର ।
ଅତୁଲ୍ୟ ଶୋଭା ନାରୀଏ ଥିଲା ମର୍ତ୍ତ୍ୟପୁର ଯେ । ୩୨ ।
କାଞ୍ଚି ପତି ସୁତ ଚନ୍ଦ୍ରଭାନୁ ହେଲା ବିଭା ।
ଦେଖିବ ପଶ୍ଚିଗିଲେ କହ ସେ ସୁନ୍ଦରୀ ଶୋଭା ଯେ ।୩୩।

---

୨୫–ଏ ବାହାରେ–ଏହାଛଡ଼ା; ଲବଣ୍ୟଲକ୍ଷ୍ମୀ–ଲବଣ୍ୟର ଶୋଭା, ଲବଣ୍ୟବତୀ;

୨୬–୨୭–ଶିବାକୁ–ପାର୍ବତୀଙ୍କୁ; ଯାହା ଆଜ୍ଞାରେ (ଶିବଙ୍କ ଆଦେଶରେ) ଆଜ୍ଞା ବା ବରରେ –ଇନ୍ଦ୍ରପଦ ସମ୍ଭବ ହୁଏ ସେ ଶିବ ପାର୍ବତୀଙ୍କୁ ପାଇବାରୁ ଶ୍ମଶାନ ( ମଶାଣୀ )ରେ ବୁଲି ସୁଖୀ ।

୨୮–ଘେନା ଘେନି–ଦାମ୍ପତ୍ୟ ପ୍ରଣୟର ଏହି ବିଧି ।

୨୯–ତିଆରି–ବୁଝାଇ ଶଶୁର ଘର ଚଳଣି ବିଷୟରେ ଉପଦେଶ ଦେଇ; ବିଜେକରି– କ୍ଷେମା ବିଜେ କଲେ ;

୩୧– ସାନଭାଇ ଓ ମନ୍ତ୍ରୀ ସଙ୍ଗରେ ଗଲେ । ଭଉଣୀକୁ ପହିଲିଥର ଶାଶୁ ଘରେ ଛାଡ଼ିବାକୁ ସାନ ଭାଇ ଯିବାର ପ୍ରଥା ଅଛି । ସକଳ–ସଙ୍ଗରେ ଥିବା ଲୋକ ଓ ସରଞ୍ଜାମ ସହିତ ।

୩୨–ଅମର–ଦେବତା; ନାରଦ ଋଷି ଦେବତାଙ୍କ ଭିତରେ ସର୍ବଦା ବାର୍ତ୍ତା କୁହା ;

ଋଷି କହେ କି କହିବି କିଛି ମାତ୍ର ଶୁଣ ।
ନୀଳ ଧବଳ ଚଞ୍ଚଳ ବୃଷଳ ତା ଗୁଣ ଯେ । ୩୪ ।
ଅତି ରଙ୍ଗ ଗହଳ ପକ୍ଷ୍ମଳ ପୂର ନେତ୍ର ।
ଗୁଣେ ଗୁଣେ ଲକ୍ଷି ହେଲେ ଏମାନେ ପବିତ୍ର ଯେ । ୩୫।
ଇନ୍ଦୀବର ପୁଣ୍ଡରିକ ଖଞ୍ଜରୀଟ ମୀନ ।
ମଦିର ଅନ୍ୟ ନେତ୍ରକୁ ହୁଅନ୍ତି ସମାନ ହେ । ୩୬ ।
ସିହାଣୀ ଘୃହାଣୀ ଶର ବିନ୍ଧିବା ଛଟକେ ।
ଘୃହିଁ ନ ଘୃହିଁବ କି ସେ ବିଜୁଳି ଝଟକେ ଯେ । ୩୭ ।
ଢ଼ୋଳା ଚଞ୍ଚଳ ରସିକା ନାସିକା କୁ ଘୃହିଁ ।
ଅନ୍ତ ପଳାଇତ ଶ୍ରୁତି ଘୃହିଁ ଲେଉଟଇ ଯେ । ୩୮ ।
ଏତେ ମାତ୍ର ନେତ୍ର ପ୍ରଶଂସାକୁ ଶୁଣି ସ୍ୱରେ ।
ଲବଣ୍ୟବତୀ କି ବୋଲି କଥା ପରସ୍ପରେ ଯେ । ୩୯ ।
ସେହି ବୋଲି ବାହାରିବା ବେଳେ ମୁନିବର ।
ଶର ପରେ ମାର ତହିଁ ପ୍ରହାରିଲା ଶର ଯେ । ୪୦ ।

---

୩୪–୩୫–୩୬–ଅତି ରଙ୍ଗ–( ସୁନ୍ଦର ) ଗହଳ ପକ୍ଷ୍ମଳ ( ବହଳିଆ ଲୁମଥିବା ପତା ବିଶିଷ୍ଟ ) ପୂର ( ପୂର୍ଣ୍ଣ–ବେଶି ପଶି ଯାଇ ନାହିଁ କି ବାହାରି ପଡ଼ିନାହିଁ–କୋରଡ଼ିଆ ନୁହେ କି ଡେଗା ନୁହେ ) ଏହିପରି ଯେ ଆଖି ସେ ନୀଳ ( ଢ଼ୋଳା ) ଧବଳ ( ଧଳା–ଢ଼ୋଳା ଘୃରିପାଖ ) ଘୃହାଣୀରେ ଚଞ୍ଚଳ ଓ ଆକାରରେ ବିଶାଳ ତାର ଗୁଣ । ' ରଙ୍ଗ ' ଶବ୍ଦର ଆଖିକୁଣ ଲାଲ–ଏ ଅର୍ଥ ମଧ୍ୟ ହୋଇପାରେ । ଗୁଣେ ଗୁଣେ –ଆଖିର ଗୋଟିଏ ଗୋଟିଏ ଗୁଣ । ଏମାନେ ପର ପଦରେ କୁହା ଯାଉଥିବା ଇନ୍ଦି-ବର ଆଦି । ଯେଉଁମାନେକି ଅନ୍ୟ ମଦିର ନେତ୍ରକୁ (ଅନ୍ୟ ସ୍ତ୍ରୀ ମାନଙ୍କର ମଦିର– ମୁଗ୍ଧକାରୀ ଆଖିକୁ ) ସମାନ ନ ହୁଅନ୍ତି । ଇନ୍ଦୀବର–ସ୍ୱଳ୍ପବୁଧି କଇଁ ( ପରି ଢ଼ୋଳା) ପୁଣ୍ଡରିକ–ଶ୍ୱେତ ପଦ୍ମ; ଖଞ୍ଜରୀଟ–କଜଳ ପାତି ଚଢ଼େଇ ;

୩୮–ଢ଼ୋଳା ଚଞ୍ଚଳ ( କଟାକ୍ଷ ) ସାପ ହେଲା, ନାସିକା ଗରୁଡ଼ ହେଲା–ଗରୁଡ଼ ଥଣ୍ଟ ପରି ନାକ; ଭୟରେ ସାପ ଅନ୍ତେ–( ଆଖି କୁଣରେ ) ପଳାଉ ଥିଲା । ନାକକୁ ଦେଖି ଫାଶ ବସିଛି ବୋଲି ବିଘୃରି ଫେରିଲା । ଅର୍ଥାତ କଟାକ୍ଷ ଚଞ୍ଚଳ ଓ ଆଖି ଆକର୍ଣ୍ଣ ବିସ୍ତୃତ । [ ଦମୟନ୍ତୀଙ୍କ ଆଖି ବର୍ଣ୍ଣନାରେ ନୈଷଧୀ ଏହିପରି ଲେଖିଛନ୍ତି । ] କିମ୍ବା ଢ଼ୋଳା ଭ୍ରମର, ନାକ୍ ଚମ୍ପା, କାନ ଆଉ ଏକ ଚମ୍ପା । ଭ୍ରମର ଚମ୍ପା ଗନ୍ଧକୁ ଡ଼ରେ ।

୪୦–ସେହି–( ଲବଣ୍ୟବତୀ ସେ )

ନିଃଶ୍ୱାସ ପକାଇ କର ସିଞ୍ଚାଡ଼ି ବିସ୍ମୟ ।
ନରେ ନିକି ଭୋଗ ହେଲ ଏଡ଼େ ଶୋଭାମୟ ଯେ । ୪୧ ।

ଆମ୍ଭ ଆଶା ବିଫଳକୁ ନେଇ ତ ଦଇବ ।
ଅବଶ୍ୟ ତାହା ତାହାର ବିଛେଦ ହୋଇବ ଯେ । ୪୨ ।

ସ୍ୱର ରମଣୀଙ୍କ ମହାଶଙ୍କା ହେଲ ଦୂର ।
ଭବିଲେ ବିଛେଦ ଶାପ ନୁହଇ ବେଭର ଯେ । ୪୩ ।

ନଳ ଦମୟନ୍ତୀ ପ୍ରାୟ କିଛିଦିନ ଭିନ୍ନ ।
ହୋଇ ପୁଣି ଲଭନ୍ତୁ ବିପୁଳ ଭୋଗ ମାନ ଯେ । ୪୪ ।

ନିଶ୍ୱାସ ଭଭବା ଚଣ୍ଡୀ ସିନ୍ଧୁ ଦେଶେ ଯାଇ ।
ଜପକାରେ ରହିଇ ଗଜାରେ ପୂଜା ପାଇ ଯେ । ୪୫ ।

ଏଥୁ ଅନନ୍ତରେ ତହିଁ ନୃପତି କୁମାର ।
କେତେ ଦିନେ ପରବେଶ ଆପଣା ନଗର ଯେ । ୪୬ ।

କର୍ଣ୍ଣାଟ ଜନକ ଶୁଣି ଅତି ତୋଷ ହେଲେ ।
ସଚିବଙ୍କୁ ହକଗଇ ପୁର ମଣ୍ଡାଇଲେ ହେ । ୪୭ ।

ମହୋତ୍ସବେ ଅନ୍ତପୁରେ ନେଲେ କନ୍ୟା ବର ।
ଏହି ବିଧି ମନ୍ତ୍ରୀ ପୁରୋହିତ ସାଧୁତର ଯେ । ୪୮ ।

ନନ୍ଦିନୀ ନିଷେଧେ ପୁର ସ୍ୱୟଂ ସୁକୁମାରୀ ।
ସ୍ନାନ ରନ୍ ଭୂଷଣ ବସନେ ବୋଧ କରି ଯେ । ୪୯ ।

---

୪୧—ଶୋଭାମୟ ଶୋଭାମୟୀ ( ଲାବଣ୍ୟବତୀ );

୪୨—ତାହା ତାହାର—ଲାବଣ୍ୟବତୀ ଚନ୍ଦ୍ରଭାନୁର ;

୪୩—ଶଙ୍କା ଦୂର ହେଲ—(କାରଣ ଲାବଣ୍ୟବତୀ ଆଉ କୌଣସି ଦେବତାଙ୍କୁ ବିବାହ କରି ତାଙ୍କର ସପତ୍ନୀ—ସଉତୁଣୀ—ହେବନାହିଁ ) । ତଥାପି ସେମାନେ ଭବିଲେ ବିଛେଦ ହେବା ଅଭିଶାପ ଠିକ୍ ନୁହେ ।

୪୪—ନଳ ଦମୟନ୍ତୀ କିଛି ଦିନ ଅଲଗା ହେବା ପରେ ପୁଣି ସେମାନଙ୍କର ମିଳନ ହୋଇଥିଲ । [ ନୈଷଧ କାବ୍ୟ ଓ ମହାଭାରତ ନଳ ଉପାଖ୍ୟାନ ଦେଖ ]

୪୫—ନିଶ୍ୱାସ ଭଭବା ଚଣ୍ଡୀ—ଦେବୀ ନିଶ୍ୱାସରୁ ଚଣ୍ଡୀ ବାହାରି ସେ ଯାଇ ସିନ୍ଧୁ ଦେଶେ [ ସମ୍ଭବତଃ ସମୁଦ୍ରକୂଳ କର୍ଣ୍ଣାଟ ଦେଶରେ ] ରହିଲ ।

୪୮—ଏ ବିଧିରେ—ଏହି ପ୍ରକାରେ ମନ୍ତ୍ରୀ, ପୁରୋହିତ ଓ ସାଧୁତ ବରକନ୍ୟା ମାନଙ୍କୁ ମଧ୍ୟ ନେଲେ ।

୪୯—ନଣନ୍ଦ ଦ୍ୱାରକିଛି ଶାଢୀ ନେବାର ବିଧି ଅଛି । ସେ ଶାଢ଼ୀକୁ ନଣନ୍ଦ ପୋଟଳୀ କହନ୍ତି ।

ଶାଶୁଙ୍କୁ ଓଳଗି ବାସ ନିଭଛାଳି ଭଲ ।
ପୁରସିନ୍ଧୁ ହୁଳହୁଳି ନାଦେ ଭଛୁଳିଲ ଯେ । ୫୦ ।

ନାରୀଏ ପ୍ରଶଂସା କଲେ ଏ ସଂସାର-ସାର ।
ଜଗଜ୍ଜୟ ଜଙ୍ଗମ ମୂର୍ତ୍ତି କି ମଦନର ଯେ । ୫୧ ।

କୁନ୍ତଳ କାଳନ୍ଦୀ ଜଳ ଜଳଦ କଜ୍ଜ୍ୱଳ ।
କି ଏ ତମ ତାମସ ତମାଳ ଖତମାଳ ଯେ । ୫୨ ।

କି ଘ୍ରମର ଭ୍ରମର ଅମରବର ମଣି ।
ଶୁଚି ସୁରୁଚି କସ୍ତୂରୀ ଶିଖିପୁଚ୍ଛ ଜିଣି ଯେ । ୫୩ ।

ଚକୋର ପାଳିକା କିବା ଆଳିକା ଅଳକ ।
ଲଲାଟ ପଟ ଅର୍ଦ୍ଧେନ୍ଦୁ ଅନଙ୍ଗ ଫଳକ ଯେ । ୫୪ ।

କର୍ଣ୍ଣ ଚୂତ ଫଳ ଫାଳ ନବାଙ୍କ[୨] ପାଟଳୀ ।
କିବା ବିଷ୍ଟର ଠ କାର ପାଶ ଖଟ ଦୋଳୀ ଯେ । ୫୫ ।

ଗଣ୍ଡ ଖଣ୍ଡ ଚନ୍ଦ୍ର ଆଦରଶ ପାଳୀ ଦିଶି ।
ଘ୍ରୁଲ୍ଲ ଭୂଲ୍ଲ କମାଣ ପରଶୁ ଶିଶୁ ଶଶୀ ଯେ । ୫୬ ।

---

ପାଠାନ୍ତର—୨, କଂଶୁକ ।

---

୫୦-ଓଳଗି—ଓଳିକି ହୋଇ; ବାସ ନିଛଛାଳି କଲ—ଲୁଗା ଦେଇ ପୂଜା କଲ । ସିନ୍ଧୁ ( ସମୁଦ୍ର ) ପରି ;

୫୧—ଜଙ୍ଗମ ମୂର୍ତ୍ତି—ଚାଲୁଥିବା ପ୍ରତିମା ;

୫୨—କାଳନ୍ଦୀ ଜଳ-ଯମୁନା ଜଳ; କି ଏ—କିମ୍ବା ( ଏହି ବାଳ ); ତମ ( ଅନ୍ଧକାର ) ତାମସ ( କାଳିମା ); ଖତମାଳ—ମେଘ; ଅମରବରମଣି—ଇନ୍ଦ୍ରନୀଳମଣି;

୫୩—ଶୁଚି ( ଉଜ୍ଜ୍ୱଳ ) ସୁରୁଚି ( ସୁନ୍ଦର ) କସ୍ତୂରୀ କି ?

୫୪—ଚକୋର କାଳେ ମୁଖଚନ୍ଦ୍ରରୁ ସୁଧା ପିଇଯିବ ସେଥିପାଇଁ ପାଳିକା ( ଖଣ୍ଡାଦାଢ ); କିମ୍ବା ଚକୋର ମାଳିକା ପାଠ ହେଲେ ଚକୋର ସମୂହ; ଆଳିକା—ସମୂହ; ପଟ—ପଟା; ଫଳକ—ଫରି, ଢାଲ ;

୫୫—କାନ ଆମ୍ବଫାଳ, ନବାଙ୍କ ( '୯' ଅଙ୍କ ) ଓ ପାଟଳୀ ଫୁଲ; ବିଷ୍ଟର ( କୁଶବଟୁ ) ଠ କାର ( ଠ ବର୍ଣ୍ଣ ) ପାଶ ( ଫାଶ ) ଖଟ ଦୋଳୀ ବୋଲି ବର୍ଣ୍ଣନା କରଯାଏ ।

୫୬—ଆଦରଶ ପାଳୀ—ଦର୍ପଣ ଧାର; କମାଣ—ଧନୁ; ପରଶୁ—ଫାରସା; ଶିଶୁ ଶଶୀ—ଦ୍ୱିତୀୟା ଚନ୍ଦ୍ର;

ନାସିକା କୀର ତୂଣୀର ତିଳଫୁଲ ତୁଳ ।
　　　　ଚିବୁକ ଚତୁର୍ଥୀ ଚନ୍ଦ୍ର ନାଗରଙ୍ଗ ଫଳ ଯେ । ୫୭ ।
ନେତ୍ର କୁରଙ୍ଗ ତୁରଙ୍ଗ ନୀଳ ଇନ୍ଦୀବର ।
　　　　ମୀନ ଖଞ୍ଜନ ନଳିନ ମାର୍ଗଣ ମନ୍ଦିର ଗୋ । ୫୮ ।
କଳା ଡୋଳା ଖେଳା ଇନ୍ଦୀବର ଲୀଳା ନିନ୍ଦି ।
　　　　ଅନ୍ତ କୁନ୍ତ ଶାଣିତ ତରୁଣ ମର୍ମ ଭେଦୀ ଯେ । ୫୯ ।
ଘୂର୍ଣ୍ଣ ଝଲକ ପଲକ ପତନ ଚାତୁରୀ ।
　　　　ସଂଯତରେ ଦର୍ପକର ଦର୍ପକ କତୁରୀ ଗୋ । ୬୦ ।
ଅଧର ବାଳ ଅରୁଣ ପ୍ରବାଳୁଁ ପ୍ରବଳ ।
　　　　କି ବିମ୍ବ ଡାଳିମ୍ବ ପୁଷ୍ପ ମାଣିକ୍ୟ ହିଙ୍ଗୁଳ ଯେ । ୬୧ ।
ବନ୍ଧୁକ ସନ୍ଧ୍ୟା ମିହିର ମନ୍ଦାର ସିନ୍ଦୂର ।
　　　　ପୁଣି ଅନୁରାଗ ଜନୁ ଛଳ ପରକାର ଗୋ । ୬୨ ।
ହାସ କାଶ ପୀୟୂଷ କର୍ପୂର ଚନ୍ଦ୍ରକର ।
　　　　କି ଏ କୁମୁଦ ଡିଣ୍ଡିର ଦର ହାର କ୍ଷୀର ଗୋ । ୬୩ ।
ଦଶନ କୁନ୍ଦକୋରକ କରକ ହୀରକ
　　　　ମୋତି ପନ୍ତି ସୁଧାବିନ୍ଦୁ ତଣ୍ଡୁଳ ମାଳକ ଗୋ । ୬୪ ।
ମୁଖବାସ ଝଳି ଆହ୍ଲାଦ ମନୋହର
　　　　ଏକ ତନୁ କମଳ ଦର୍ପଣ ନିଶାକର ଗୋ । ୬୫ ।

---

୫୭—ନାଗରଙ୍ଗ—ନାରଙ୍ଗ;

୫୮—ମାର୍ଗଣ ମନ୍ଦିର (କନ୍ଦର୍ପର) ଶର ମାନଙ୍କର ସ୍ଥାନ;

୫୯—ଅନ୍ତ—(ଆଖିକୁଣ) ତରୁଣ ମର୍ମକୁ (ହୃଦୟକୁ) ଭେଦ କରୁଥିବା କୁନ୍ତ ( ବର୍ଛା ) ପରି ଲାଗୁ ହୋଇଛି ।

୬୦—ଝଲକ—ପକ୍ଷ୍ମଳ, ବେଶି ବାଳଥିବା; ଦର୍ପକର—କନ୍ଦର୍ପ;

୬୧—ପ୍ରବାଳ—କଅଁଳ ପତ୍ର, ପୋହଳାରୁ ଅଧିକ ଲାଲ

୬୨—ବନ୍ଧୁକ—ବନ୍ଧୂଲି ଫୁଲ; ସନ୍ଧ୍ୟା ମିହିର—ଅସ୍ତସୂର୍ଯ୍ୟ;

୬୩—ଚନ୍ଦ୍ରକର—ଚନ୍ଦ୍ରକିରଣ; ଡିଣ୍ଡିର—ଫେଣ; କ୍ଷୀର—ଦୁଧ, ହାର—ମୁକ୍ତାମାଳା; ଦର—ଶଙ୍ଖ;

୬୪—କୋରକ—କଢୀ; କରକ—କୁଆ ପଥର; ତଣ୍ଡୁଳ ମାଳକ—ଚାଉଳମାଳୀ;

୬୫-୬୬—ତାହାର ମୁହଁର ବାସ ( ବାସନା ) କମଳ (ପଦ୍ମ) ପରି; ଝଳି ( ଜ୍ୟୋତି) ଦର୍ପଣ ପରି; ଆହ୍ଲାଦ ନିଶାକର (ଚନ୍ଦ୍ର) ପରି; ମଙ୍ଗଳ କୁମ୍ଭ—ପୂର୍ଣ୍ଣକୁମ୍ଭ; ଗ୍ରୀବା—

କମ୍ବୁ କପୋତ ମଙ୍ଗଳକୁମ୍ଭ ଗ୍ରୀବା ଗଳ
ଚରମ ପ୍ରଭ୍ର ନିର୍ଜଳ ନଦୀ ରମ୍ଭାଦଳ ଗୋ । ୬୬ ।
ଭୁଜ ଚମ୍ପା ମାଳ ବୀଚି ମୃଣାଳ ବଲ୍ଲରୀ
କର କୋକନଦ କେନ୍ଦୁ ପଲ୍ଲବକୁ ସରି ଗୋ । ୬୭ ।
ଗନ୍ଧଫଳୀ ଅଙ୍ଗୁଳି କରଳ ଜାତି କଳୀ
ବାଣୀ ବେଣୁ ବୀଣା ପିକ ଶୁକ ଥିବ ଦଳି ଯେ । ୬୮ ।
ଉରଜ କନ୍ଦୁକ ଚକ୍ରବାକ ସମ୍ପୁଟକ
କି ସ୍ୱୟଂଭୂ ଶମ୍ଭୁ ତମ୍ବୁ ଅମ୍ବୁଜ–କୋରକ ଯେ । ୬୯ ।
ସାତକୁମ୍ଭ କୁମ୍ଭ କୁମ୍ଭୀ କୁମ୍ଭ ରମ୍ଭା କୋଷ
ମୁଦ୍ରିତ ଛତ୍ର ବହିତ୍ର ସ୍ୟନ୍ଦନ–କଳଶ ଗୋ । ୭୦ ।
କାମ ନୃପର ଟୋପର ଉଲଟ ନିଶାଣ
କି ମଲ୍ଲ ସାଧନ ଚକା ପ୍ରସ୍ତର ଘଟଣ ଗୋ । ୭୧ ।
କି ନାରିକେଳ ଶ୍ରୀଫଳ ତାଳ ମାତୁଲଙ୍ଗ ।
ପୀୟୂଷ କୋଷ କି ମେରୁ ସରି ଗୁରୁ ତୁଙ୍ଗ ଯେ । ୭୨ ।

---

ବେକ; ଗଳ–ଗଳା; ଚରମ–ପିଠି; ନିର୍ଜଳ ନଦୀ–ଧାର ଶୁଖି ଯାଇଥିବା ନଦୀ ପରି, କିମ୍ବା ରମ୍ଭାଦଳ କଦଳୀ ପତ୍ର ମଞ୍ଜପରି;

୬୭–ବୀଚି–ଲହରୀ; ବଲ୍ଲରୀ–ଲତା;

୬୮–ଗନ୍ଧଫଳୀ–ଚମ୍ପା କଢ଼ି; ବେଣୁ–ବଂଶୀ; ଜାତିକଢ଼ୀ–ଯାଇଫୁଲ କଢ଼ି;

୬୯–କନ୍ଦୁକ–ପେଣ୍ଡୁ; ସମ୍ପୁଟକ–ଫରୁଆ; ତମ୍ବୁ–ଲୁଗାଘର; ଅମ୍ବୁଜ କୋରକ–ପଦ୍ମକଢ଼ୀ;

୭୦–ସାତକୁମ୍ଭ କୁମ୍ଭ–ସୁନା କଳଶ; କୁମ୍ଭୀ–ହାତୀ, ରମ୍ଭାକୋଷ–କଦଳୀ ଭଣ୍ଡା; ମୁଦ୍ରିତ ଛତ୍ର–ମୁଦାଛତି ( ଦିଅଙ୍କ ପାଖେ ଯେଉଁ ବଡ଼ ଛତାଥାଏ ତାହା ମୁଦା ହେଲେ ବଗଲର ବନ୍ଦ ହୁଏ ନାହିଁ । ପୁରୀ କାଳର ଗଜଛତ୍ର ସେହିପରି ଥିଲା । ବହିତ୍ର–ପାଲ ଟାଣି ଗଲୁଥିବା ଜାହାଜ; ସ୍ୟନ୍ଦନ କଳଶ–ରଥ ଉପର କଳଶ;

୭୧–କାମ ନୃପର (ରଜାର) ଟୋପର (ଟୋପି ପରି ତିଆର ହୋଇଥିବା ଫୁଲଗଭା) ଉଲଟ ନିଶାଣ-ମୁହଁ ମାଡ଼ି ଥୁଆ ହୋଇଥିବା ନାଗରା କିମ୍ବା ମାଲ ସାଧିବା ପାଇଁ ତିଆର ହୋଇଥିବା ଗୋଲ କୋଠାଘର ।

୭୨–ଶ୍ରୀଫଳ–ବେଲ, ମାତୁଳଙ୍ଗ–ଟଭ, ପୀୟୂଷ କୋଷ–ଅମୃତ ଭଣ୍ଡା; ତୁଙ୍ଗ–ଉଚ; ଗୁରୁ–ବଡ଼;

ଉଦର ଲବଣ୍ୟସର–ସାରସ ପତର ।
ତ୍ରିବଳୀ ସୋପାନ କିବା ତ୍ରିବେଣୀ ରୁଚିର ଗୋ ୭୩ ।
ରୋମଲତା ଧୂମଲତା ଶଇବାଳ ଲତା
ନୀଳ ପିପିଲିକା ଅଳି ଆଳିକା ଶୋଭିତା ଯେ । ୭୪ ।
ନୀଳମଣି ମାଳା ଭେଳ ମରକତ ଦଣ୍ଡ
ପଟ୍ଟୀଶ ହେରି ଥୋଇଛି କି ଫୁଲ କୋଦଣ୍ଡ ଗୋ ।୭୫।
ମଧ୍ୟ ସିଂହ ଡ଼ମରୁ ଠ ବର୍ଣ୍ଣ ଅଣୁପବି ।
ଗୁରିଅଙ୍କ କୁଶମୁଦ୍ରା ବିସର୍ଗର ଛବି ଗୋ । ୭୬ ।
ନାଭି ଟୋପ କୂପଗୁଣ କୋଟି ଜଳଭ୍ରମ ।
ନିତମ୍ବ ସୁଧାଂଶୁ ନିମି ରଥାଙ୍ଗକୁ ସମ ଗୋ । ୭୭ ।
ରତି ଯଜ୍ଞ ଆଜ୍ୟ ସ୍ଥାଳୀ କିବା ପାନପତ୍ର
ସୁସଞ୍ଚ ସ୍ଫୀତ ଲକ୍ଷଣ ଯନ୍ତ୍ର ତୁମ୍ବି ମାତ୍ର ଯେ । ୭୮ ।
ମଣ୍ଡପ କଚ୍ଛପ ଯଜ୍ଞବେଦୀ ଭଦ୍ରାସନ
ହେମପାତ୍ରୀ କାମ ପୁର ଚତ୍ୱର ଜଘନ ଯେ । ୭୯ ।
ଗୁରୁ ଉରୁ ରମ୍ଭାତରୁ ଅର୍ଗଳି ପୁଳିନ ।
କରଭ ଉଡୁପ ଜାନୁ ଗୁଳୁଫ ବନ୍ଧନ ଗୋ । ୮୦ ।

---

୭୩–ଉଦର ଲବଣ୍ୟସର (ପୋଖରୀ) ସାରସ ପତ୍ର (ପଦ୍ମପତ୍ର); ସୋପାନ–ପାହାଚ; ତ୍ରିବେଣୀ–ଗଙ୍ଗା, ଯମୁନା, ସରସ୍ୱତୀ;

୭୪–ନୀଳ ପିପିଲିକା–ଜହ୍ନା;

୭୫–ପଟ୍ଟୀଶ–ପାଇକ ଖେଳର ଏକ ଲମ୍ବାପଟା;

୭୬–ଓଡ଼ିଆ 'ଠ' ବର୍ଣ୍ଣର ମଝିସରୁ ତେଣୁ ସେ 'ମଧ୍ୟ' ଅଣୁ ପବି । ପବି–ଇନ୍ଦ୍ରଙ୍କ ବଜ୍ର–ସେ ଅସ୍ତ୍ର ମଝି ବୋଧହୁଏ ସରୁ; କୁଶମୁଦ୍ରା–କୁଶବଟୁ;

୭୭–ଜଳଭ୍ରମ–ଭଉଁରୀ; ଟୋପ–ଖାତ; ରଥାଙ୍ଗ–ଚକ୍ର;

୭୮–ଆଜ୍ୟ (ଆହୁତି ଦ୍ରବ୍ୟ ରଖିବାର ) ସ୍ଥାଳୀ (ଥାଳୀ); ସୁସଞ୍ଚ–ଅତି ସୁନ୍ଦର; ସ୍ଫୀତ–ପିଣ୍ଡ; ଯନ୍ତ୍ର ତୁମ୍ବୀ–ବୀଣା, ତାନପୁରା ପ୍ରଭୃତିର ତୁମ୍ବୀ;

୭୯–ମଣ୍ଡପ–ଜଳାଶୟ; ଭଦ୍ରାସନ–ସିଂହାସନ;

୮୦–ଅର୍ଗଳି–ଖମ୍ବ; ପୁଳିନ–ନଈକୂଳ; ଉଡୁପ–ଭେଳା; କରଭ–ମଣିବନ୍ଧଠାରୁ କନିଷ୍ଠାଙ୍ଗୁଳି ଶେଷ ପର୍ଯ୍ୟନ୍ତ ପାପୁଲିର ବାହାର ପଟକୁ 'କରଭ' କହନ୍ତି–ସେହି ଆକୃତିର ଊରୁ ହେଲେ ସୁନ୍ଦର; " ମଣିବନ୍ଧାତ୍ ଆକନିଷ୍ଠ କରସ୍ୟ କରଭୋବହିଃ" ଗୁଳ୍‌ଫ–ଗୋଇଠି ଓ ଗୋଡ଼ଗଣ୍ଠି; ବନ୍ଧନ–ବାନ୍ଧଣ କାଠପରି ।

ଅଙ୍ଗୁଳି ଅଶୋକ କଳୀ ନଖ ଭନୁ ମଣି ।
ପଦ ସ୍ଥଳପଦ୍ମ ତଳ ମନ୍ଦାରକୁ ଜିଣି ଗୋ। ୮୧ ।
ଗଉରୀ ଗଉରକାନ୍ତି ଦେଉଅଛି ଦଳି ।
ଶମ୍ପା ଚମ୍ପା ସମ୍ପାକ କୁସମ ହେମଝଳି ଗୋ । ୮୨ ।
ଗଉରୀ ହରିଦ୍ରା ହରିତାଳି ଷଣ୍ଢଫୁଲ ।
କେତକୀ କଞ୍ଜ କେଶର କେଉଁ ହେବ ତୁଲ ଗୋ । ୮୩ ।
କୋମଳେ ତୁଳା ଲବଣ୍ୟ ଶିରୀଷ ଧିକ୍‌କାରୀ ।
କରୀଶିରେ ପଦ ଦେଇ କରିଗତି କରି ଗୋ । ୮୪ ।
ବାସେ ଉତ୍ପଳ କସ୍ତୂରୀ ଧନ୍ୟ ମନୋରମା ।
କାହା ଆଖି ଦେଖି ନାହିଁ ଏମନ୍ତ ସୁଷମା ଯେ । ୮୫ ।
ଏ ବିଧି ପ୍ରଶଂସି ପୁରେ ରଖି ଶୋଭନିଧି ।
ଦମ୍ପତି କରନ୍ତି କେଳି ତହିଁ ନାନା ବିଧି ଯେ । ୮୬ ।
ସିଂହଳ ଦ୍ୱୀପ–ନୃପଜ ମନ୍ତ୍ରୀକି ମେଳଣି ।
କେତେଦିନ ଅନ୍ତେ ତହିଁ କଲେ ନୃପମଣି ଯେ । ୮୭ ।
ଗଉତମ ନାରୀର ଉରମ ଗତିଦାୟୀ ।
ଉପଇନ୍ଦ୍ର ବୀରବର ସେ ଆଗମ ଧ୍ୟାୟି ଯେ । ୮୮ ।

---

୮୧–ଭନୁମଣି–ସୂର୍ଯ୍ୟକାନ୍ତମଣି; ତଳ–ପାଦତଳ ;
୮୨–ସମ୍ପାକ କୁସୁମ୍‌–ସୁନାରୀ ଫୁଲ ;
୮୩–ଗୌରୀ–ଗୋରୋଚନା; ଷଣ୍ଢଫୁଲ–ଛଣପଟ ଫୁଲ; କଞ୍ଜ–ପଦ୍ମ; କେଶର–ନାଗେଶ୍ୱର;
୮୪–କୋମଳେ–ଅଙ୍ଗ କୋମଳତାରେ, କରୀ ଶିରେ ପଦ ଦେବାରୁ ହାତୀଠାରୁ ଅତି ଉତ୍କୃଷ୍ଟ ବୁଝାଉଛି ।
୮୬–ଦମ୍ପତି–ଲବଣ୍ୟବତୀ, ଚନ୍ଦ୍ରଭନୁ ;
୮୭–ନୃପମଣି–(କର୍ଣ୍ଣାଟ ରଜା)ସିଂହଳ ରଜାଙ୍କ ନୃପଜ–ରଜପୁତ୍ର ଓ ମନ୍ତ୍ରୀଙ୍କ ବିବାହରେ ।
୮୮–ଗୌତମନାରୀ–ଅହଲ୍ୟା ।

✳ ● ✳

# ଷଟ୍‌ତ୍ରିଂଶ ଛାନ୍ଦ

## ( ଦମୟନ୍ତୀଙ୍କ କୌତୁକ ବର୍ଣ୍ଣନା )

ରାଗ–ରାଜବିଜେ । ତାଳ ରୂପକ ।

ପ୍ରବେଶ ସୁରଭି ଘନରସମୟ ଜଡ଼ବର ସୁରଞ୍ଜନ ।
ସୁଖଦାତା ଘନସାର ପ୍ରକାଶରେ ହରିତାପ ପ୍ରଭଞ୍ଜନ ହେ ସାଧୁ । ୧ ।

---

୧– ଏହି ବସନ୍ତ ବର୍ଣ୍ଣନା କେବଳ ବସନ୍ତକୁ ନ ହୋଇ ଭିନ୍ନ ଭିନ୍ନ ଋତୁ ବୁଝାଇଲା ପରି ମଧ୍ୟ ଅର୍ଥ ହୋଇପାରେ ।

ବସନ୍ତପକ୍ଷ–ସୁରଭି ( ସୁବାସିତ ) ଘନରସମୟ ( କାମ ଉଦ୍ଦୀପକ ) ଜଡ଼ବର (ବୃକ୍ଷ ) ସୁରଞ୍ଜନ ( ନୂଆପତ୍ର ଫୁଲରେ ସୁନ୍ଦରକାରୀ ); ଘନସାର ( କର୍ପୂର ) ସୁଖଦାତା ହେଲା । ହରି ( ସୂର୍ଯ୍ୟ ) ତାପ ( କ୍ଳେଶ, ଏଠାରେ ଶୀତର କ୍ଳେଶକୁ ) ପ୍ରଭଞ୍ଜନ ( ଭଙ୍ଗ ) ପ୍ରକାଶ ପାଇଲା ।

ଗ୍ରୀଷ୍ମ–ସୁରଭି (ଜାଇଫଳ ) ଘନ ( ବିସ୍ତୃତ ) ହେବାର– ( ଜାଇଫଳକୁ ଗ୍ରୀଷ୍ମ ସମୟରେ ସମସ୍ତେ ପାଣିରେ ଘୋରି ଥଣ୍ଡା ସୁବାସ ଜଳ ତିଆରି କରନ୍ତି )–ସମୟ ହେଲା । ଜଡ଼ବର(ପର୍ବତ)ମାନେ ନିଆଁ ଲାଗି ସୁନ୍ଦର ହେଲେ । ଘନସାର (କର୍ପୂର) ସୁଖ ଲାଗିଲା । ହରିତାପ ( ସୂର୍ଯ୍ୟତାପ ) ପ୍ରଭଞ୍ଜନ ( ଝାଞ୍ଜି ) ପ୍ରକାଶ ହେଲା ।

ବର୍ଷା–ସୁରଭି ଦେବତା ମାନଙ୍କ ରାତ୍ରୟର କାରଣ- (ଏହି କାଳରେ ହରି ଶୟନ ହୁଏ ; ଦେବତାମାନେ ତ୍ରିଭୁ କାମ୍ କରନ୍ତି ନାହିଁ । ) ଘନରସ ( ଜଳ ); ଜଡ଼ବର (ଗଛ) ସୁରଞ୍ଜନ ( ବର୍ଷାରେ ସୁନ୍ଦର ହେଲେ । ଘନସାର ( ଜଳ ) [ ଶସ୍ୟକୁ ] ସୁଖ-ଦେଲା । ତାପ ( ଖରା)କୁ ହରଣ କରି ପ୍ରଭଞ୍ଜନ (ଝଡ଼ି ପବନ) ପ୍ରକାଶ ପାଇଲା ।

ଶରତ–ସୁରଭି ( ସୁନ୍ଦର, ପରିଷ୍କାର ) ଘନରସ (ପାଣି); ଜଡ଼ବର–ବୃକ୍ଷମାନେ, ପର୍ବତମାନେ ସୁରଞ୍ଜନ ( ସୁନ୍ଦର ) ହେଲେ ମେଘ ଛାଡ଼ି ଯିବାରୁ ଓ ପରିଷ୍କାର ଆକାଶ ହେବାରୁ; ଘନସାର (ମେଘ ଘୁଞ୍ଚି ଯିବାରୁ) ହେତୁରୁ ଆପ ପ୍ରଭଞ୍ଜନ (ପାଣି ପବନ) ହରି ( ହରଣ କରି )ତ୍ [ଅବ୍ୟୟ] ପ୍ରକାଶ ହେବାରୁ ସୁଖଦାତା ହେଲା ।

ଶୀତ–ସୁରଭିଘନ–ସୁରଭିଘ୍ନ ( ପଦ୍ମନାଶ )ର ସମୟ ( କାଳ ) ପ୍ରବେଶ ହେଲା; ଜଡ଼-ବର ( ଭରିଜାଡ଼, ଶୀତ ) ରେ ସୁରଞ୍ଜନ ( ସୁଖକର ); ହରିତରେ ( ଦିଗମାନ-

କମଳ ତୋଷଦାନକର ହୋଇଲା ଦିନକୁ ଦୁର୍ବହ କରି ।
ସୁବାସ ସୁମନାରେ ସ୍ନେହ ଅଧିକ ସକଳଜନ ଆଦରି । ୨ ।
କଳକଣ୍ଠ ରବ ଦିଗନ୍ତେ ଶୁଭଇ ଅନଙ୍ଗ ପ୍ରବଳ ଯହିଁ ।
ହେଲା ଶୋଭ ବନବିହାର ଯହିଁରେ ଆନେ ମନ ନ ରସଇ । ୩ ।
ପୁଷ୍କରେ ସାରଙ୍ଗ ଲୀଳା ପ୍ରକାଶିଲେ ନାୟିକା ବିଚ୍ଛେଦୀ ଛନ୍ନ ।
ଆଶାରେ ଦୃଷ୍ଟି ପକାଇ ସେ ଭିତ୍ତିରେ ଲେଖି ବସେ କଣ୍ଠ ଦିନ । ୪ ।

---

ଙ୍କରେ ) ଅପ ପ୍ରଭଞ୍ଜନ ( ଖରପ ପବନ—ଶୀତ ପବନ ) ପ୍ରକାଶ କରି ଘନସାର ( କର୍ପୂର ) ପ୍ରଭୃତିର ସୁଖଦାତା ( ସୁଖ ଛେଦନ କର୍ତ୍ତା ) ହେଲା ।

୨— ବସନ୍ତ ପକ୍ଷ—କମଳ ( ପଦ୍ମ ); ଦୀନ—ବିଚ୍ଛେଦୀ; ସୁବାସ ସୁମନା--ବାସନାଫୁଲ; ଗ୍ରୀଷ୍ମ ପକ୍ଷ-- କମଳ ( ପାଣି ) ତୋଷ ( ଶୋଷ ନିବାରଣ ); ଦିନ ଦୁର୍ବହ ( ବଡ଼ ହେବାରୁ ) ସୁବାସ--ପତଳା ଲୁଗା; ସୁମନା--ଫୁଲ;

ବର୍ଷାପକ୍ଷ-କ ( ଜଳ ) ମଳ ( ମଇଳା ) ଏ ଦୁହିଁଙ୍କର ତୋଷଦାନକର ହେଲା (ପ୍ରାଣି; ମଇଳା ଦୁହେଁ ମିଶି ଯିବାରୁ ପାଣି ଗୋଳିଆ ହେଲା ।) ଦୀନ--(ଦୁଃଖୀ )ର ଦୁର୍ବହ କଷ୍ଟକର ହେଲା ଯିବା ଆସିବାରେ କ୍ଳେଶ ପାଇଁ । ସୁମନା—ମାଳତୀ;

ଶରତ କାଳ—କମଳ (ଜଳ)ର ତୋଷ (ନିର୍ମଳତା)କୁ ଦେଲା; ଦୀନ—(ଗରିବ ଲୋକ)ର ଦୁର୍ବହ (ଧନ ନ ଥିବାରୁ) ବୋହି ପାରିବା ବା କରି ପାରିବାରେ ଅସମ୍ଭବ କରି ଅଧିକ ସକଳଜନ ( ଧନୀ ଲୋକମାନେ) ସୁବାସ ସୁମନା ( ଉତ୍ତମ ବସ୍ତ୍ରାଳଙ୍କାରରେ ମଣ୍ଡିତ ହୋଇଥିବା ) ସୁମନା ( ଦେବୀ ମାଟିଂଗୋଷାଣିରେ ) ସ୍ନେହ ଆଦରିଲେ ।

ଶୀତକାଳ—କମଳ (ପଦ୍ମ)ର ତୋଷକୁ ଦାନ (ଛେଦନ) କଲା । ଦିନ (କାଳ)କୁ ବେଶି ଶୀତ ହେବାରୁ ଅସହ୍ୟ କଲା । ସୁବାସ (ଭଲ)--[ଶୀତଲୁଗା] ସୁମନା ( ଶୀତେ ସୁଶୋଷ ସର୍ବାଙ୍ଗୀ ଶ୍ୟାମା ସ୍ତ୍ରୀ)ରେ ଲୋକେ ସ୍ନେହ କଲେ ।

୩—'କଳକଣ୍ଠ' କହିଲେ ଯାହାର କଣ୍ଠ ମଧୁର । ସବୁ ଋତୁରେ ସେପରି ଜୀବ ଅଛନ୍ତି । ବସନ୍ତରେ 'କୋକିଳ' ବର୍ଷାରେ 'ଡ଼ାହୁକ' ବା 'ମୟୂର' ଗ୍ରୀଷ୍ମ କାଳରେ 'ପାଗ' ଶରତ ଓ ଶୀତ କାଳରେ 'ହଂସ' ଶବ୍ଦ ଶୁଣିବାରୁ ମଦନ ଯେ କନ୍ଦର୍ପ ସେ ପ୍ରବଳ ହେଲା । ସୁଭବନ ବିହାର ହେଲାରୁ ଆଉ କାହିଁରେ ମନ ହେଲା ନାହିଁ । ବସନ୍ତ କାଳରେ ଫୁଲ ହେତୁରୁ, ଗ୍ରୀଷ୍ମରେ ଫଳ ହେତୁରୁ, ଶରତ କାଳରେ ଉଜ୍ଜ୍ୱଳତା ହେତୁରୁ, ଗ୍ରୀଷ୍ମରେ ଫଳ ହେତୁରୁ, ଶରତ କାଳରେ ଉଜ୍ଜ୍ୱଳତା ହେତୁରୁ, ବନ ବିହାର ଶୁଭ ହେଲା । ବର୍ଷା ଓ ଶୀତ କାଳରେ ଉତ୍ତମ କୋଠା ଭିତରେ ବିହାର (କେଳି);

୪—ବସନ୍ତରେ-ପୁଷ୍କରେ (ପଦ୍ମରେ) ସାରଙ୍ଗ (ଭ୍ରମର)ମାନେ ଖେଳିଲେ; ବିଚ୍ଛେଦୀ

ନଗରେ ବରହୀ ଦୀପ୍ତିମାନ ହେଲେ ସଂଯୋଗ ଲୀଳା ପ୍ରକାଶ ।
ଜନ ନୟନକୁ କଦାଚିତ ଆଉ ଜୀମୂତ ନୋହିଲା ଦୃଶ୍ୟ ।୫ ।

---

ନାୟିକା (ବିରହିଣୀ ସ୍ତ୍ରୀ) ଆଶା କରି ଛନ୍ନ (ଦୁଃଖ)ରେ କାଳରେ କଣ୍ଠଦିନ (ବର ଆସିବା ପାଇଁ କଣ୍ଠକରି କହିଯାଇ ଥିବା ଦିନକୁ ) ଲେଖି ବସିଲା ।

ଗ୍ରୀଷ୍ମରେ-ପୁଷ୍କରେ (ପାଣିରେ) ସାରଙ୍ଗ ଲୀଳା-କର୍ପୂର ଚନ୍ଦନ ଲୀଳା;

ବର୍ଷାରେ-ପୁଷ୍କରେ ( ଆକାଶରେ ) ସାରଙ୍ଗ (ଚାତକ) ମାନେ ଆସାରେ ( ବର୍ଷା ଅସରରେ); ବିଚ୍ଛେଦୀ ( ବିରହିଣୀମାନେ ) ଭୀତିରେ ( ଭୟରେ ) ଏ ବର୍ଷାରେ କିପରି ଆସିବେ ବୋଲି ଡ଼ରିକରି;

ଶରତ କାଳରେ-ପୁଷ୍କରେ ( ପାଣିରେ ) ସାରଙ୍ଗ ( ହଂସମାନେ ) ଆଶାରେ ( ଦିଗ-ମାନଙ୍କରେ)-ମେଘଛାଡ଼ି ଦିଗ ପରିଷ୍କାର ହୋଇ ଯିବାରୁ ଭୀତିରେ-(କାମଭୀତିରେ);

ଶୀତ କାଳରେ-ପୁଷ୍କରେ ( ପାଣିରେ ) ସାରଙ୍ଗ ( ଚାତକୀ, ହରିଣ ) ମାନେ ତୃଷାର୍ତ୍ତ ହୋଇ ଦୂରରେ ପାଣି ଖୋଜି ପିଇବାକୁ ଗଲେ । ବିଚ୍ଛେଦୀ ( ବିରହିଣୀମାନେ )ଶୀତ ହେତୁରୁ ବର କୋଳକୁ ମନେ ପକାଇ ବ୍ୟସ୍ତ ହେଲେ । ଆସାରେ ( ବରମାନଙ୍କ ଆସି ବାରେ ମନ ଦେଇ ) ଆଜି ଯାଏ କାହିଁକି ନ ଆସିଲେ ବୋଲି ଭୀତି (ଆଶଙ୍କା)ରେ ।

୫- ବସନ୍ତରେ-ନଗରେ ( ପର୍ବତରେ ) ବରହୀ ( ଗଛମାନେ ) ଫୁଲରେ ଦୀପ୍ତିମାନ ହେଲେ; ସଂଯୋଗଲୀଳା-କେଳି; ଜୀମୂତ-ଭୂମି-ମେଘ-ଏଠାରେ କୁହୁଡ଼ି;

ଗ୍ରୀଷ୍ମ-ନଗରେ ( ପର୍ବତରେ ) ବରହୀ ( ଦାବାଗ୍ନି ନିଆଁ) ପ୍ରକାଶିତ ହୋଇ ସଂଯୋଗ ଲୀଳା ( ଏକ ପର୍ବତରୁ ଅନ୍ୟ ପର୍ବତକୁ ମାଡ଼ିଯିବା ଲୀଳା ) ପ୍ରକାଶ କରିବାରୁ ଜୀମୂତ (ପର୍ବତ) ଦେଖାଗଲା ନାହିଁ । ଗୃହିଁ ହେଲା ନାହିଁ । କେବଳ ନିଆଁ ଦେଖାଗଲା ।

ବର୍ଷା-ନଗରେ ( ପର୍ବତରେ ବା ବୃକ୍ଷମାନଙ୍କରେ ) ବରହୀ ( ମୟୂର ) ମାନେ ଶୋଭା ପାଇଲେ । ସଂଯୋଗ ଲୀଳା-ସମ୍ଭୋଗ ଇଛା; ଜୀମୂତ ( ପର୍ବତ ) ମେଘ ଘୋଟି-ବାରୁ ଦେଖା ଗଲା ନାହିଁ ।

ଶରତ-ନଗରେ ( ଗଛରେ ) ବରହୀ ( ପକ୍ଷୀମାନେ ) ଦୀପ୍ତିମାନ ( ସୁନ୍ଦର ହୋଇ ) ସଂଯୋଗ ଲୀଳା ପ୍ରକାଶ କଲେ । ବସନ୍ତ କାଳପରି ଶରତ କାଳ ମଧ୍ୟ ଅନେକ ପକ୍ଷୀଙ୍କର ଡ଼ିମ୍ବଦେବା ସମୟ । ଜୀମୂତ-( ମେଘ ) ଆଉ ଦୃଶ୍ୟ ହେଲା ନାହିଁ-ଅର୍ଥାତ୍ ଛାଡ଼ିଗଲା ।

ଶୀତ-ନଗରେ ( ଜନାବାସରେ-ଗାଁ, ସହର ମାନଙ୍କରେ ) ବରହୀ ( ନିଆଁ ) ଜଳିଲା--ଲୋକେ ନିଆଁ ପୁଆଁଇବା ପାଇଁ ମନ ବଳାଇଲେ ; ସଂଯୋଗ ଲୀଳା-ଜକାଜକି ହେବା, ଜୀମୂତ (ବଉଦ); ଆକାଶ ପରିଷ୍କାର ହୋଇଗଲା ।

ଏମନ୍ତ କାଳ ମାନଙ୍କେ ନୃପ ସୁତ ନୃପ ନନ୍ଦିନୀର ସଙ୍ଗେ ।
ଚନ୍ଦନୀ ମଣ୍ଡାରି ଜଗତୀ ଅଙ୍କରେ ବିହାର କରଇ ରଙ୍ଗେ । ୬ ।
ଏକଲବ ନବ ପଲ୍ଲବ ଅଧରୀ ପାଶରୁ ନୁହଇ ଭିନ୍ନ ।
ଅଙ୍ଗ ସୁବାସ ଶୀତଳ ନିନ୍ଦା କରୁ ଥାଇ କର୍ପୂର ଚନ୍ଦନ । ୭ ।
ଅଧର ପାନେ ଅମୃତ ଅଛି ଜାଣେ ସକଳ ମଧୁର ଘେନି ।
ଘବଇ ସ୍ୱୟମ୍ଭୁ ଶମ୍ଭୁ କମ୍ବୁ କଣ୍ଠି ଉରଜ ଅଭୟ ଦାନୀ । ୮ ।
ସକଳ ଚାତୁରୀ ଉପରେ ଚାତୁରୀ କହଇ ଚତୁରୀ ବାଣୀ ।
ଆଣିମାଦି ସୁଖୁ ବଡ଼ କରି ଗଣ ଚୁମ୍ବନ ଦେବାର ଆଣି । ୯ ।
ଲେଖଇ ନୀବୀ ମୋକ୍ଷକୁ ମୋକ୍ଷ କରି ନିରତେ ମନରେ ତାର ।
ଯିବେ ଦମ୍ପତିରୁ ବଡ଼ ସମ୍ପତ୍ତି କି ଭୋଗ କରେ ପୁରନ୍ଦର । ୧୦ ।
ନୀରଦ କୁନ୍ତଳ ପରାୟ ଭ୍ରମର ଗତି ପରାୟ ଦ୍ୱିରଦ ।
ନୟନ ପରାୟ କୁରଙ୍ଗ କାହିଁଛି କରି ତରଙ୍ଗ ବିନୋଦ । ୧୧ ।
ଜଘନ ପରାୟ ସିଂହାସନ, ସ୍ତନ ପ୍ରାୟ ପୂର୍ଣ୍ଣ କୁମ୍ଭ କାହିଁ ।
ଚକ୍ରବର୍ତ୍ତୀ ଏ ସମାନେ ସୁଖ ଅଭିଷେକ କାଳେ ପାଇ ନାହିଁ । ୧୨ ।
ଏମନ୍ତ ସ୍ନେହୀ ଜାନୁ ବିନା ଆସନ ଉର ବିନୁ ଆନ ଶଯ୍ୟା ।
ନ ଦେଇ ହରିଲ ଦିବା ରଜନୀକି ବଶ କରି ଦୃଷ୍ଟ ରଜା । ୧୩ ।
ଚଞ୍ଚଳେକ୍ଷଣୀ ଯେ ଅଞ୍ଚଳେ ବାନ୍ଧିଲ ତା ମନ ପ୍ରକାଶି ପ୍ରେମ ।
ଥାଉ ଶୟନେ ନୟନେ ନ ଦେଖଇ ଅୟନେ ଆଉ ଚରମ । ୧୪ ।

---

୬—ଚନ୍ଦ୍ରଭାନୁ, ଲାବଣ୍ୟବତୀର ସଙ୍ଗେ । ଚନ୍ଦନୀ (ଚନ୍ଦ୍ର କିରଣରେ) ଜଗତୀ (ପକା ଛାତ ଉପରେ) ମଣ୍ଡୁରି ଟାଣି ଅଙ୍କରେ (ଭିତରେ)

୭—ଏକ ଲବ—ମୁହୂର୍ତ୍ତ ମାତ୍ର;

୯—ଆଣିମାଦି—[୧୧ଛାନ୍ଦ ୧୨ ପଦ ଟୀକା ଦେଖ]

୧୦—ମୋକ୍ଷ—[ ୧୬ ଛାନ୍ଦ ୨୪ ପଦ ଟୀକା ଦେଖ ] ଦମ୍ପତି—ଏଠାରେ ଦାମ୍ପତ୍ୟ, ପତି ପତ୍ନୀର କେଳି;

୧୧—୧୨—ସ୍ତ୍ରୀ ଏକ ଅଭିଷେକ ସଙ୍ଗେ ଉପମା । ବାଳ—ଚାମର; ଗତି ଦ୍ୱିରଦ (ହାତୀ); ନୟନର ତରଙ୍ଗ (ଚଞ୍ଚଳତା) କୁରଙ୍ଗ ହରିଣ; ଜଘ—ସିଂହାସନ; ସ୍ତନ—ପୂର୍ଣ୍ଣ କୁମ୍ଭ;

୧୩—ଦୃଷ୍ଟ ରଜା—ଯୁବତୀ;

୧୪—ଅୟନେ ଆଉ (ଶୋଇଲା ବେଳେ, ବାଟରେ ଗଲାବେଳେ ମଧ୍ୟ) ଚରମ (ପିଠି);

ସୋପାନ ଆରୋହଣେ କର ପଇଠ ଯାଚି ଗର୍ଜି ଦେଇ ପାନ ।
ରତାନ୍ତେ ବ୍ୟଜନେ ବିଞ୍ଚି ଛଡ଼ାଇଲେ କରେ ଚନ୍ଦନ ଲେପନ । ୧୫ ।
ପ୍ରାତରୁ ଉଠି ସ୍ମରଣ କରନ୍ତି ଦୁହେଁ ଦୁହିଁଙ୍କର ନାମ ।
ମୁଖ ନିରେଖିଲ ଉରାରୁ ଦେଖନ୍ତି ଦେବପଟ ଏଡ଼େ ପ୍ରେମ । ୧୬ ।
ବାଛନ୍ତି[୧] ନେତ୍ରକୁ ପଲକ ଥିବାକୁ ପୁଲକ ହେବାକୁ ଅଙ୍ଗେ ।
ରଖିଦେବେ ନାହିଁ ହାର[୨] ବସନକୁ ଆଲିଙ୍ଗନ ଅନୁରାଗେ । ୧୭ ।
ଶୟନ କାଳେ ବେନି ହୃଦ ମଧ୍ୟରେ ନଗଲେ ମୃଣାଳ ସୂତା ।
କୁସୁମ କାଳେ ଏକ ପୁରେ ଥିଲେ ହେଁ ତନୁ ଅନ୍ତରକୁ ଚିନ୍ତା । ୧୮ ।
ନିନ୍ଦନ୍ତି ଧାତାକୁ ବଡ଼ ଦାରୁଣ ସେ ଏ କଥା କାହିଁ ବିଚାରି ।
ତାର ଚନ୍ଦ୍ର ପର ଭେଗ ତ କରଇ କୁମୁଦ ଚନ୍ଦ୍ରମା ପରି । ୧୯ ।
ନିଶାପତି ଦୀପ ଜ୍ୟୋତି ଯହିଁ ଦୂତୀ ହୋଇ ଛଡ଼ାଇ ସଙ୍କୋଚ ।
ପଞ୍ଚ ନାରଚ ପାଞ୍ଚ ତାଙ୍କ ନ ପାଇ ଦୁହେଁ ଦୁହିଁଙ୍କ କବଚ । ୨୦ ।

---

ପାଠାନ୍ତର—୧, ବାରନ୍ତ ୨, ଢାର

---

୧୫—କର ପଇଠ ଯାଚିବା—ଧରି ଉଠିବା ପାଇଁ ଆଗରୁ ହାତ ବଢାଇ ଦେବା । ରତାନ୍ତେ —ରତି ଶେଷରେ; ବିଞ୍ଚି ବିଞ୍ଚି ଦେହର ଚନ୍ଦନ ଶୁଖି ଯିବାରୁ ହାତରେ ପରସ୍ପର ଦେହରୁ ଛଡ଼ାଇ ଦେଲେ ।

୧୬—ଦେବପଟ—ଦେବତାଙ୍କର ଚିତ୍ର ଥିବା ପଟି ।

୧୭—ବାଛନ୍ତି—ଦୋଷ ଦିଅନ୍ତି; ଆଖିରେ ପଲକ ଥିବା ଓ ଦେହରେ ରୋମ ଟାଙ୍କୁରିବା—ଏ ଦୁଇ ଜିନିଷ ଯେଉଁତେବେଳେ ମିଳନରେ ବାଧାଦିଏ ବୋଲି ବାଛନ୍ତି; ସେତେବେଳେ ହାର, ଲୁଗା କଥା କାହିଁକି କହିବା ।

୧୮—ମୃଣାଳ ସୂତ୍ର—ଏଠାରେ ବୁଡ଼ିଆଣି ସୂତା; କୁସୁମ କାଳେ—ପୁଷ୍ପବତୀ ହେବା ସମୟରେ;

୧୯—ଧାତା ଏ ଦଣ୍ଡ ଦେବା କଥା ବିଚାରି ଚନ୍ଦ୍ର ଯେପରି ଦୂରରେ ଥିବା ତାର ଓ କୁମୁଦକୁ ଭୋଗ କରେ ସେହିପରି ଭୋଗରେ ଦେ ସମୟ ତକ କଟାଇ ଦିଏ ।

୨୦—ଦୀପ ଓ ଚନ୍ଦ୍ର ଦୂତୀ ପରି କେଳି ସମୟରେ ଉପସ୍ଥିତ ଥାଇ ସଙ୍କୋଚ (ଲଜ୍ଜା)କୁ ଛାଡ଼ନ୍ତି କେତେବେଳେ ଚନ୍ଦ୍ର କିରଣରେ କେତେବେଳେ ବା ଦୀପ ଜାଳି କରି । ପଞ୍ଚ ନାରଚ (କନ୍ଦର୍ପ) ପାଞ୍ଚ (ତାଙ୍କୁ ମାରିବ ବୋଲି ବିଚାରି) ପାରିଲା ନାହିଁ । କାହିଁକିନା ଦୁହେଁ ଦୁହିଁଙ୍କର କବଚ (ସାଞ୍ଜୁ) ପରି ଥିଲେ ।

 କ୍ଷୀର ନୀର ପରି ଅଭେଦ ପୀରତି ବେନି ତନୁ ଏକ ପ୍ରାଣ ।
ଦର୍ପଣ ପରି ହୃଦରେ ପ୍ରତିବିମ୍ବେ ମନେ କଲା କଥା ପୁଣ ।୨୧।
ନାଗବଲ୍ଲୀଦଳ ଦୁଇଭାଗ କରି ଭୁଞ୍ଜନ୍ତି ରଞ୍ଜନ୍ତି ଚିତ୍ତ ।
ବଚନ ପ୍ରତି ପଦରେ ରସ ଗର୍ଭ ହୋଇ ଥାଇ ଯେ ଇଙ୍ଗିତ ।୨୨।
ମଧୁ ମାଧବରେ ଜଳ ଯନ୍ତ୍ର ପୁରେ ନଳଦ ବାଢ଼ ରଚନ ।
ଅଚର ଚନ୍ଦନ କୁଆରେ ପିଚିକା କରନ୍ତି ଜଳେ ସେଚନ ।୨୩।
କୁସୁମ ଶେଯେ ଚନ୍ଦ୍ରକରେ ଶୟନ ଏଣୁ ନିଦ୍ରା ନ ଆସଇ ।
ଯେଣୁ ମନ ଶଙ୍କା ବିବସନ ପାଇଁ ବେନି ଜନଙ୍କର ଥାଇ ।୨୪।
ବରଷାରେ ବିଦ୍ୟୁ ଝଟଝଟ କେଳୀନାଟକୁ ଗ୍ରହାନ୍ତି ସୁଖେ ।
ଅତି ତମସ ଦିବସ ନିଶାମଣି ଋତୁକୁ ପ୍ରଶଂସି ମୁଖେ ।୨୫।
ରଖି ନ ପାରନ୍ତି ବିଧି ନିଷେଧକୁ ଭେକ ଡାହୁକ ଶବଦ ।
ଶୁଣନ୍ତି ମଣନ୍ତି କାହୁଁ ଭିଆଇଲା ଅନଙ୍ଗ ତୈଲଙ୍ଗୀ ବାଦ୍ୟ ।୨୬।
ଶରଦ ଋତୁରେ ଚତ୍ୱରେ ଭ୍ରମନ୍ତି କର ଧରାଧରି ହୋଇ ।
ମାଳତୀ ମଧୁପ ପ୍ରୀତିକି ଲଭନ୍ତି ଏହି ନାମ ଛଳି ଦେଇ ।୨୭।

---

୨୧–କ୍ଷୀର ନୀର–ଦୁଧ, ପାଣି, ଏଙ୍କର ମନୋଭାବ ଅନ୍ୟ ଠାରେ ଦର୍ପଣରେ ପ୍ରତିବିମ୍ବ ହେଲା ପରି ଜଣା ପଡ଼େ ।

୨୨–ନାଗବଲ୍ଲୀଦଳ–ପାନ ଦୁଇଫାଳ କରି ଦୁହେଁ; ଇଙ୍ଗିତ–ସୂଚନା, ଥଟା;

୨୩–ମଧୁମାଧବ–ଚୈତ୍ର ବୈଶାଖ ଆଦି ମାସ; ଜଳ ଯନ୍ତ୍ର ପୁର–ପୂର୍ବେ ଶୋଇଥିବା ଥାନର ଚାରି ପାଖରେ ପାଣି ଭର୍ତ୍ତି କରଯାଇ ଏକ ପ୍ରକାର ଗ୍ରୀଷ୍ମକାଳର ଶେଯ ପାଇଁ ଘର କର ଯାଉଥିଲା । ନଳଦବାଡ଼–ଘାସ (ବେଣାମୂଳ) ପରଦା

୨୫–ଅତି ଅନ୍ଧାର ଦିନ ହେବାରୁ ନିଶା ମଣି (ରାତି ବୋଲି ବିଚାରି) ବର୍ଷା ଋତୁକୁ ପ୍ରଶଂସା କରନ୍ତି ।

୨୬–ଦିନରେ ରତି କରିବା ବିଧି ନିଷେଧ; ତୈଲଙ୍ଗୀବାଦ୍ୟ–ତେଲଙ୍ଗୀବାଜା; ୧୧ଶ ଛାନ୍ଦ ୧୩ ପଦରେ ଅମୃତି ଘସା ଧନୁ ଟଣା ଦେଖ ]

୨୭–ସେହି ନାମେ–ତୁ ମାଳତୀ ମୁଁ ମଧୁପ ଏହିପରି କହି; ମାଳତୀ ଫୁଲର ତେଣ୍ଟସବୁ ସେଥିରେ ଭ୍ରମର ବସିଲେ ତାହା ଓଲଟି ପଡ଼ି ଉପରକୁ ରହିଯାଏ । ଭ୍ରମର ତଳେ ଉପର ମୁହାଁ ହୋଇ ବସି ମଧୁ ପିଏ । ଏ ଥଟାରେ ବିପରୀତ ରତିର ଇଙ୍ଗିତ ରହିଲା ।

ନିଜ ଅନୁରାଗ ଅଧିକେ ଦେଖାଇ ସେକାଳେ ରମାରତନ
ସବୁଠାରେ ଜୀବଧବ ପାଇଁ ପ୍ରିୟା ତେଜଇ ସିନା ଜୀବନ ।୨୮।
ବିରହି ତରୁଣ ବୋଲଇ ଦାରୁଣ ଜୀଅଁଇ ସିନାରେ ସଖୀ ।
କାମ ବିନା ରତି ଚନ୍ଦ୍ର ବିନୁ ରତି ନ ପାରିଲେ ଜୀବ ରଖି ।୨୯।
ହିମ ଶିଶିରେ ଅଗୁରୁ ଧୂମ ପୂରେ କରି ହସନ୍ତୀ କୁଞ୍ଚିତ ।
ନିଶାରେ ନୀଶାରେ ଆଦର ତେଜନ୍ତି ତନୁ ଉଷ୍ମରୁ ସତ ।୩୦।
ଭବନ୍ତି ବେନି ଯେ ଧନ୍ୟ ଦମ୍ପତିକି ବିପତ୍ତି ନାହିଁ ଏକାଳେ ।
ବହୁତ ବାତ ବାରଣୀ[ग]ର ସମ୍ପତ୍ତି ଉରୁ ତରଣୀ[ঘ]ର ବଳେ ।୩୧।
ଭବୁଥିବେ ଦିନ ବିରହୀ ଆମ୍ଭକୁ କଳ ସଙ୍ଗେ ଗତି ନାହିଁ ।
ବିଛା ମକର ବିଷମ ଘାତ ସହି ଜୀଇବା କେମନ୍ତ ହୋଇ ।୩୨।
ଏ ବିଧିଭବ ଉକ୍ତି ନାନା ବିବିଧ ବିଳାସ ପ୍ରକାଶ ଯେତେ ।
ପଛେ ତ ପାଞ୍ଚଛାନ୍ଦେ ବ୍ୟକ୍ତ ହୋଇବ ଶୁଣିବ ପୁଣି ପଣ୍ଡିତେ ।୩୩।
କହିବା ଦିନକ ରସ ରହସ୍ୟକୁ ଶୁଣ ଦେଇ କରି ମନ ।
ପଶା ଖେଳିବାକୁ ବାଛୀ ବୋଲିବାକୁ ଛଳିଲ ପୁଂସରତନ ।୩୪।
କର ଚରଣ ପାଳି ଛକ ଚିତ୍ରକ ସ୍ତନସାରେ ଶୋଭପାଉ ।
ବିଦ୍ୟୁବିଜିତ କାନ୍ତିଦାନ ଯହିଁରେ କି ଖେଳ ଖେଳିବା ଆଉ ।୩୫।

---

ପାଠାନ୍ତର—ଗ, ବାରୁଣ ଘ, ତରୁଣୀ ।

---

୨୯—ଚନ୍ଦ୍ର ନ ଥିଲେ ମଧ୍ୟ ରତି ଥାଏ; କାମ ପୋଡ଼ିଯିବା ଉତ୍ତାରୁ ମଧ୍ୟ ରତି ବଞ୍ଚିଥିଲୁ, କେବଳ ଦାରୁଣ (ନିଷ୍ଠୁର) ସ୍ତ୍ରୀ ମାନେ ସିନା ଜୀଇଁ ପାରନ୍ତି--ବୋଲି ଥଟା କଲ ।

୩୦—ଅଗୁରୁ—ଏକ ପ୍ରକାର ସୁବାସ ଦ୍ରବ୍ୟ; ହସନ୍ତୀ—ନିଆଁ ଉହ୍ନେଇ;—ନୀଶାରେ ଶେଯରେ

୩୧—ଏ କାଳେ—ଏହି ଶୀତ କାଳରେ; କାହିଁକି ବିପତ୍ତି ନାହିଁ, ବାହୁ ଦୁହିଁଙ୍କର ଛନ୍ଦା ଛନ୍ଦି ବାହୁ (ହାତ) ବାତ ବାରଣୀ (ଶୀତ ପବନ ବାରଣ) ହୋଇ ସମ୍ପତ୍ତି— ଉଷ୍ମ ପଦ (ଉଷ୍ମତାର ସ୍ଥାନ); ଉରୁ—(ଜଙ୍ଘ) ତରଣୀ (ସୂର୍ଯ୍ୟ) ହେଲ ।

୩୨—ଦୀନ (ଦୁଃଖୀ) ବିରହୀ (ବଚ୍ଛେଦ.) ଦୁହେଁ ବିଛା ମକର (୧. କଙ୍କଡ଼ା ବିଛା ଓ କିମ୍ବାର ୨. ବିଛା—ମାର୍ଗଶୀର, ମକର—ମାଘ ମାସର ଶୀତ)

୩୩—୪୦ ଠାରୁ ୪୪ ଛାନ୍ଦ ପର୍ଯ୍ୟନ୍ତ ପାଞ୍ଚ ଛାନ୍ଦରେ ।

୩୪—୩୬—ଲବଣ୍ୟବତୀ ପଶା ଖେଳିବାକୁ ବରକୁ କହିଲ । ତହୁଁ ବର ଭଙ୍ଗିତରେ ରତି କ୍ରିୟାକୁ ପଶା ଖେଳ ସଙ୍ଗେ ସମାନ କରି ବର୍ଣ୍ଣନା କରୁଛନ୍ତି । ଚିତ୍ରକ—ସ୍ତନ ପ୍ରଭୃତିରେ କସ୍ତୁରୀ ଓ ଚନ୍ଦନ ଚିତ୍ର ।

ବେନି ଜନରୁ ଜଣେହେଁ ନ ହାରିବା ହାରିବ କୁସୁମ ଶର ।
ମନେ ବିଗ୍ରହ ତ ଏଡ଼େ ସୁଖ ଛାଡ଼ି ଆନ ନିକି କରିବାର । ୩୬ ।
ଶୁଣି ରସିକା ରମଣୀ ଯେ ବୋଲଇ ଏ ଭଙ୍ଗି କି କେ ପାରିବ ।
କାହିଁ କଥା ନେଇ କାହିଁ ଲଗାଇବ ତହିଁ କି ଉତ୍ତର ଥିବ । ୩୭ ।
ଏ ସମୟରେ ବୀରମାତା ବଧୂକୁ ଦେଖିବା ପାଇଁ ନିଆଇ ।
ପ୍ରିୟା ପ୍ରତିମଟ ଛପେଡ଼ିରେ ଥିଲା ତା ଫେଡ଼ି ପୁରୁଷ ଦେଖଇ । ୩୮ ।
ଏହି ସମୟରେ ଚରମେ ଭରମ ବରନା ପ୍ରବେଶ ହେଲା ।
ପୁଣି କେ ସଦୃଶା ଦେଲାଣି ସପନ୍ନୀ ହେବା ଶଙ୍କାକୁ ଘେନିଲା । ୩୯ ।
ଯଶବେ କୋପନା ଚନ୍ଦ୍ରମା ଇପନା ନ ମଣିଲା ନିଜ ସ୍ନେହ ।
ଜଳେ ପ୍ରତିବିମ୍ବ ନିରେକ୍ଷି କେଶରୀ ଯେମନ୍ତ କଲାକ କୋହ । ୪୦ ।
ମାନ ଆରମ୍ଭ ରମ୍ଭୋରୁ କଲା ଥାଉଁ ମଦନ ପର ବିପକ୍ଷ ।
କହେ ଉପେନ୍ଦ୍ର ଭଞ୍ଜ ବୀରବର ରାମଚନ୍ଦ୍ର ରକ୍ଷାକକ୍ଷ । ୪୧ ।

---

୩୯–ଏହି ସମୟରେ ଚରମେ–ଏ ସମୟ ଶଷକୁ ପିଠିରେ ଭରମ (ସୂଚନା) ଆଉ କିଏ ସଦୃଶ (ଚିତ୍ରପଟ) ଦେଲାଣି (ପଠାଇଲାଣି)

୪୦–କୋହ–କ୍ରୋଧ; ନିଜ ପ୍ରତି ସ୍ନେହରେ ମୋରି ଚିତ୍ରପଟ ଚାହିଁ ଦେଖୁଛନ୍ତି ବୋଲି ନ ଜାଣି । ପଞ୍ଚ ତନ୍ତ୍ରରେ ଅଛି ଏକ ସିଂହ କୂଅ ଭିତରକୁ ଚାହିଁ କୂଅ ଭିତରେ ନିଜ ପ୍ରତିବିମ୍ବକୁ ଆଉ ଗୋଟିଏ ସିଂହ ବୋଲି ବିଗ୍ରହି କ୍ରୋଧରେ ସେ କୂଅ ଭିତରକୁ ଡେଇଁ ପଡ଼ିଥିଲା ।

୪୧–କନ୍ଦର୍ପ ପର ଶତ୍ରୁ ଥାଉଁ ଲାବଣ୍ୟବତୀ ମାନ (ରୁଷିବା) ଆରମ୍ଭ କଲା ।

*  *

# ସପ୍ତତ୍ରିଂଶ ଛାନ୍ଦ

## ( ମାନ ଦର୍ଶନେ ଚନ୍ଦ୍ରଭାନୁର ଗୂଢ଼ୋକ୍ତି )

ରାଗ–କାଫି ।

ଅତି କାତରେ ନିଜ କାନ୍ତରେ ଶଙ୍କା ଚିତ୍ତରେ ଲଭି ।
କୋପ ଅଙ୍କୁର ମହୀ ମୁକୁର କଲା ଚିକୁର ଶୋଭୀ ।
ରତ ଆବେଶୀ ରତନ ବେଶୀ ଗଣ୍ଡେ ନିବେଶି କର ।
ନୟନ ନୀରରୁହରୁ ନୀର ତେଜିଲା ନିରନ୍ତର । ୧ ।
ଶ୍ୱାସ ପ୍ରଖରେ ବହେ ଦୁଃଖରେ ଧରା ନଖରେ ଚିରେ ।
ଓଷ୍ଠ କମ୍ପନ ହାସ ସ୍ୱପନ ମ୍ଳାନ ଲପନ ଧରେ ।
ଦେଖି ନାଗର ବସି ଆଗର ଅନୁରାଗର ବଶେ ।
ଅତି ଆରତି ହୋଇ ପୀରତି ଯୁକ୍ତ ଭାରତୀ ଭାଷେ । ୨ ।
ତୋର ସୂଚିତ ଅନଭୁଚିତ ମାନ ସଞ୍ଚିତ ଯେଣୁ ।
ସେ ସର୍ବ ଭୂତ ମୋହି ଅଦ୍ଭୁତ ମାନ ସମ୍ଭୂତ ଏଣୁ ।
ଝରେ କମଳ କୋଳେ କମଳଧର ନିର୍ମଳ ପ୍ରୀତି ।
ଧୈର୍ଯ୍ୟ ଭଞ୍ଜନ ମୋତି ରଞ୍ଜନ ଝରେ ଖଞ୍ଜନ ବାନ୍ତି । ୩ ।

---

୧–ନିଜ କାନ୍ତଠାରେ ଶଙ୍କା (ପୂର୍ବ ଛାନ୍ଦ ୪୧ ପଦରେ କୁହା ଯାଇଥିବା ଭୟ); କୋପ ଅଙ୍କୁର (ଜାତ ହେବାରୁ) ମହୀ ମୁକୁର କଲା (ତଳକୁ ଗ୍ରୀବା ରହିଲା )–ମୁଣ୍ଡ ପୋତିଲା; ରତ ଆବେଶୀ–କାମିନୀ; ନୀରରୁହ–ପଦ୍ମ; ନୀର–ଲୋତକ; ନିରନ୍ତର–ବରାବର;

୨–ଦୁଃଖରେ ମୁଣ୍ଡ ପୋତି ବସିଲେ ନଖରେ ମାଟି ଉପରେ ଗାର କାଟନ୍ତି । ହାସ ସ୍ୱପନ ପରି–କମା ନାହିଁ; ନାଗର–ବର (ଚନ୍ଦ୍ରଭାନୁ; ଆରତି–(ବ୍ୟସ୍ତ) ଭାରତୀ–କଥା;

୩–ତୋର ସୂଚିତରେ ଅନଭୁଚିତ (ଅନାଗତ) କଥାମାନ ସଞ୍ଚିତ ହେବାରୁ ଅଦ୍ଭୁତ ମାନ (ରୋଷ) ସମ୍ଭୂତ (ଜାତ) ହୋଇଛି । ତେଣୁ କମଳ କୋଳରୁ (ପଦ୍ମ ଭିତରୁ) –ଆଖିରୁ–ତୋର ପ୍ରୀତି ପରି ନିର୍ମଳ କମଳ (ଜଳ) ଝରେ । ରଞ୍ଜନ (ସୁନ୍ଦର) ଖଞ୍ଜନ (ଆଖି) ଧୈର୍ଯ୍ୟ ଭଞ୍ଜନ (ଭାଙ୍ଗିଦେବା) ଭଳି ମୋତି (ଲୋତକ ବିନ୍ଦୁ) ବାନ୍ତି କରେ ।

ବସନ୍ତେ କଳକଣ୍ଠ ବିକଳ ଏକି ସକଳ ମତେ ।
ଶାଣୁ ବିଗଜମାନ ନାରାଚ ମଦନ ଗଜ ହିତେ
କେ ତୋ ସମାନ କାହାକୁ ମାନ ଘେନ ତୋ ମାନସର ।
ତୋ ବିନା ଗତି ନାହିଁ ଜଗତୀ ମଧ୍ୟେ ସୁଗତି ମୋର । ୪ ।
ମୋ ନିବେଦନା ଘେନ, ବେଦନା ଚନ୍ଦ୍ର ବଦନା ହର ।
ଦରବିକାଶ କୁସୁମ କାଶ ହାସ ପ୍ରକାଶ କର ।
ରେ ବୀଣାଭଷି ବାଣୀ ନ ଭଷି ବସିଲେ ଭସିଗଲି ।
କୋଳରେ ହାର କରୁ ବାହାର ଏବେ କାହାର ହେଲି । ୫ ।
ରସ ଉଦୟା ମୃଦୁହୃଦୟା ପରି ତୋ ଦୟାବାରି ।
କରୁ ନିରଶ ରବି ଗରସ ମୋତେ ପରଷ କରି ।
ମୁଁ ଯେ ସ୍ତବକସ୍ତନା ସେବକ ପାଦଯାବକ ପରି ।
ଏବେ ଖଣ୍ଡନା ସୁଖ, ଦଣ୍ଡନା ମହୀ ମଣ୍ଡନା ଗୋରୀ । ୬ ।
ସବୁ ଭରସା ତୁ ମୋର ରସାଳସା ସାରସାନନୀ ।
ନୋହେ ଏ ମତ୍ତକାଶିନୀ ମତ ମୁଁ ତୋ କେମନ୍ତ ଅନା ।
ଗ୍ରରି ଦ୍ୱିଗୁଣ ମଙ୍ଗଳା ଗୁଣ ଆଜକି ଗୁଣବତି ।
ଦରିଦ୍ର ଧନ ତୁ ମୋର ଧନ କର ନିଧନ ଭୀତି । ୭ ।

---

୪-ସକଳ ମତେ (ସବୁ ପ୍ରକାରରେ) ବସନ୍ତରେ କଳକଣ୍ଠ (କୋକିଳ) ବିକଳ (କଠୋର ସ୍ୱର) ହେଲ- ଏ କଣ ? ବିଗଜମାନ (ସବୁବେଳେ ଥିବା) ମଦନ ଗଜ (କନ୍ଦର୍ପ) ହିତରେ ନାରାଚ (ଶର) ମାନଙ୍କୁ କାହିଁକି ଶାଣୁ (ଦାଢ଼ୁଆ କରୁଛୁ) ଘେନ ତୋ ମାନସର (ତୋ ମନରେ ବିଚାର କର) ହେ ସୁଗତି ମୋର ଗତି (ଉପାୟ) ନାହିଁ ।

୫-ଦରବିକାଶ-ଅଧା ଫୁଟିଲ; କୁସୁମ-ଫୁଲ; କାଶ-ଦର୍ଶ; କୋଳରେ-କୋଳ କଲା ମାତ୍ରେ;

୬-ହେ ରସ ଉଦୟା, ହେ ମୃଦୁ ହୃଦୟା, ତୋ ଦୟାକୁ ବାରି (ଜଳ) କରି; ନିରଶ (ତୋ ଠାରେ ନିରଶ ହେବା) ରବି ଗ୍ରାସ-ଟାଣୁଆ ଖର ପରି ପରସ (ପୀଡ଼ା) ଦେଉଛି । ସ୍ତବକ-(ଫୁଲ ପେଣ୍ଡା) ପରି ସ୍ତନ ଯାହାର । ପାଦ ଯାବକ-ପାଦର ଅଳତା (ଜଉ) । ଗୋ ମହୀ ମଣ୍ଡନା ଗୋରୀ ସୁଖ ଖଣ୍ଡନା ମୋତେ ଦଣ୍ଡନା ।

୭-ସାରସାନନା-ପଦ୍ମମୁଖୀ; ମତ୍ତ କାଶିନୀ-ଅତି ସୁନ୍ଦରୀ; ମତ-ଠିକ୍; ଗ୍ରରି ଦ୍ୱିଗୁଣ ମଙ୍ଗଳା-ଆଠ ମଙ୍ଗଳା; [୩୧୫ଶ ଛାନ୍ଦ ୨ୟ ପଦ ଟୀକା ଦେଖ । ]; ଭୀତି ନିଧନ-କର-ଭୟ ଛାଡ଼ ।

ଭଜୁଛି ବିନାଶକୁ ନବୀନା ମୁଁହି ତ[୧] ବିନା ଦୋଷେ ।
ଦଣ୍ଡି ଯାହାକୁ ମଣ୍ଡି ତାହାକୁ ମୃଦୁ ଦେହାକୁ ଭଷେ ।
ଧରୁଛି ପଦ ନାଶ ବିପଦ ଇନ୍ଦ୍ର ସମ୍ପଦ ଦତ୍ତ ।
ରଚି ରମଣି ରସିକା ମଣି ନାଶିକା ମଣି ନୃତ୍ୟ । ୮ ।

ଲେଖି ମକରୀ ସୁବେଣୀ କରି ଦିଅଇ କରି ଗତି ।
ଅଛି ରସନା ଆନେ ରସନା ହୁଅ ପ୍ରସନ୍ନ ମତି ।
ନୃପ ବନ୍ଦନା ଜଗତ ବନ୍ଦନା ଭିଡ଼ି ଚନ୍ଦନାଙ୍କିତେ ।
ନୋହେ ଭୂଷଣ ରସ[୨] ଦୂଷଣ ଦେଇ କଷଣ କେତେ । ୯ ।

ସୁରସଲତା ପାଦେ ଅଳତା ମଞ୍ଜୁଳଇତା କୃତେ ।
ଆରେ ହେମାଙ୍ଗୀ ସୁନ୍ଦରମାର୍ଗି ଥିଲି ଯେ ମାଗି ତୋତେ ।
ମୋର ବର୍ତ୍ତନ ସୁଧା ଯତନ ମହୀ ପତନ କଲୁ ।
ହେଠ ଅଧରୁ କହିଁ କ୍ରୋଧରୁ ଚିତ୍ତେ ନ ଧରୁ ଭୀରୁ । ୧୦ ।
ନକର ଦଣ୍ଡ ବିଳମ୍ବ ଦଣ୍ଡ ହେଲେ ଅଦଣ୍ଡ ମୁହିଁ ।
ବାହୁ ପାଶରେ ବାନ୍ଧି ପାଶରେ ରଖ ତୋଷରେ ତୁହି ।
କୁଚ ମନ୍ଦର ଠେଁସି ହୃଦର ଦିଅ ମୋ ଦର ନାହିଁ ।
ନଖ କରତ ତହିଁ କରତ ତନୁ ନିରତ ସହି । ୧୧ ।

---

ପାଠାନ୍ତର—୧, ମୁହିଁ ତୋ ୨, ଦ୍ୱେଷ ।

---

୮—ମୁହିଁ ତୋ—ମୁଁ ତୋର ଦାସ; ଯାହାକୁ ଦଣ୍ଡି ତାକୁ ମଣ୍ଡି—ଯାହାକୁ ଦଣ୍ଡନ୍ତି ତାକୁ ମଣ୍ଡନ୍ତି (ପୁରସ୍କାର ଦିଅନ୍ତି); ହେ ରମଣୀ ନାସିକା ମଣି ନୃତ୍ୟ ରଚି—ହଁ କରି ବାରେ ନାସିକା ମଣିକୁ ଚଳାଇ ଅଥବା ବିପରିତ ରତିରେ ।

୯—ମକରୀ—ଗାଲରେ କସ୍ତୁରୀ ରେ ମକରୀ ଚିତ୍ର କରନ୍ତି । ଦିଅଇ—ମୁଁ ଦିଏ; ରସନା—ଷୋଳ ସରିଆ ଅଣ୍ଟା ସୂତା; ସେତ ଅଛି । ଅତଏବ ତୁ ଆନେ (ରଗ ପ୍ରଭୃତି)ରେ ମନ ଦେ ନା । ଚନ୍ଦନାଙ୍କିତେ—ସ୍ତନର ଚନ୍ଦନ ଚିତ୍ରରେ । ଭିଡ଼ି—ଗାଢ ଆଲିଙ୍ଗନ କରି; ରସ ଦୂଷଣ—ରସ ନଷ୍ଟ କରିବା; ଆମୋଦ ନଷ୍ଟ କରିବା;

୧୦—ହେ ସୁରସ ଲତା ! ତୋ ପାଦରେ ଲତା ପରି ଅଳତା କରିବା ପାଇଁ ମାଗିଥିଲି; ସେ କାମ (ଅଳତା ଦେବା)କୁ ବର୍ତ୍ତନ (ମେହନତନା) ତୋର ଯତନ (ସୁନ୍ଦର) ସୁଧା ହାସ; ତେବେ ସେ କଥାକୁ କାହିଁକି ମହୀ ପତନ କଲୁ (ତଳେ ପକାଇ ଦେଇଛୁ) । ହେଠ ଅଧର ହୋଇ (ମୁହଁ ପୋତି) କାହିଁକି ସେ କଥା ମନେ ଧରୁ ନାହୁଁ ।

୧୧—ଦଣ୍ଡେ ବିଳମ୍ବ ନକରି ଦଣ୍ଡ ରୂପ (ଶାସ୍ତି) ଦିଅ; ମୁଁ ଅଦଣ୍ଡ—ଅଦଣ୍ଡ୍ୟ (ଯେହେତୁ ମୁଁ ସ୍ୱାମୀ); କୁଚ ରୂପ ମନ୍ଦର (ପର୍ବତ); ଦର—ଭୟ; ହୃହିଁ (ହୃଦୟରେ) ନଖ ରୂପକ କରତ (କରତି ଦିଅ) ସହି—ସହେ;

ଦୁଃଖ ସିହାଣି ବଙ୍କ ଗ୍ରହାଣୀ–ଖଡ଼୍‌ଗେ ହାଣି ପକା ।
ଭବେ ନିଭନ ନୋହେ ମୁଁ ଭିନ ନୁହ ମଭନ ଏକା ।
ପରେ ପ୍ରାଭବ ଦିଅଇ ଭବ ମଧ୍ୟରେ ଭବ ମୋହି ।
ହେବ କୀରତୀ ନିନ୍ଦିତ ରତି ରମ୍ୟ ସୁରତି ସହି ।  । ୧୨ ।
ସେବେ ଅଳପ ଦିନୁ କଳପ ତୁ ଯେ କଳପ ତରୁ ।
ପୂର୍ଣ୍ଣ ନ କର ବାଞ୍ଛା ନିକର ମୋର କି କରମରୁ ।
ରବି କିରଣେ ଥିଲେ ବାରଣେ ଆହା କରଣେ ଭବେ ।
ନାହିଁ ଜଗତେ କେହି ଯୁଗତେ ତୋ ବିନୁ ଗତେ ଏବେ ।  । ୧୩ ।
ରେ ପ୍ରେମକଳା କୁଟିଳ କଳା ତୋ କେଶ କଳାପର ।
ଯହୁଁ ରହିଲେ ନିନ୍ଦା ନୋହିଲେ ସେ ଯେ ମୋହିଲେ ସୁର ।
ମନ୍ଦ ଉଦର ହାସେ ସୁନ୍ଦର ତୋହ ଆଦର ବଶ ।
ମୁଁ କି ଅସାର ଏଥୁଁ ସଂସାର–ସୁନ୍ଦରୀ ସାର ଘୋଷେ ।  । ୧୪ ।

---

୧୨–ବଙ୍କ ଗ୍ରହାଣୀ (କଟାକ୍ଷ) ରୂପ ଖଡ଼୍‌ଗ (ଖଣ୍ଡା)ରେ ମୋ ଦୁଃଖ ହାଣିପକା । ମୁଁ ଭବେ ନିଭନ ନୁହେ (ମୁଁ ରଜ ବିଷୟରେ ପୂର୍ଣ୍ଣ); ତୁ ମୌନ (ତୁନି) ହୁଅନା; କାରଣ ଏହା ବଡ଼ ନିଭନ (ନିନ୍ଦା) । ହେ ନିନ୍ଦିତ–ରତି–ରମ୍ୟ ମୂର୍ତ୍ତି ପରେ (ଶତ୍ରୁରେ) ପ୍ରାଭବ–(ପରାଭବ) ଦିଆଇ କଣ କୀର୍ତ୍ତି ହେବ ?

୧୩–ହେ କଳ୍ପତରୁ ଅଳ୍ପଦିନୁଁ (ପିଲଦିନୁଁ) ମୁଁ ତୋତେ ସେବେ (ସେବାକରେ)–ଏ କଥା କଳପ–କଳ୍ପ (ବିଗ୍ରର କର): ମୋର କେଉଁ କର୍ମରୁ ତୁ ବାଞ୍ଛା ନିକର ପୂର୍ଣ୍ଣ କରୁ ନାହୁଁ । ମୁଁ ଭବେ ରବି କିରଣେ ଥିଲେ (ଖରାରେ ଠିଆ ହୋଇ ଥିଲେ) ବାରଣେ (ସେଥିରୁ ମନା କରି) ଆହା କରଣେ ହେ ସୁଗତେ ଜଗତରେ ତୋ ବିନା କେହି ଯୁଗତେ (ଉପଯୁକ୍ତ) ନାହିଁ ।

୧୪–ହେ ପ୍ରେମ କଳା (କେଳି ନିପୁଣା) କୁଟିଳ ଓ କଳା ଦୁହେଁ ତୋ କେଶ କଳାପ (ବାଳ ସମୂହ)ରେ ରହିବାରୁ ନିନ୍ଦ୍ୟ ହେଲେ ନାହିଁ । କୃଷ୍ଣ ରୂପରେ ସୁର (ଦେବତା) ଙ୍କୁ ମୋହିଲେ–କୃଷ୍ଣକଳା ଓ କୁଟିଳ (ନଟ୍ଟ କୁଟିଆ) ବୋଲି ପ୍ରସିଦ୍ଧ । ମନ୍ଦ ତୋ ହାସ ଓ ଉଦରରେ ରହିବାରୁ–ଅର୍ଥାତ୍ ତୁ ମନ୍ଦ ହାସୀ ଓ କୃଶୋଦରୀ ହେବାରୁ–ସେମାନେ ସୁନ୍ଦର ହେଲେ । ହେ ସଂସାର–ସୁନ୍ଦରୀ ସାର, କଳା, କୁଟିଳ, ମନ୍ଦ ଏମାନଙ୍କ ଠାରୁ ମୁଁ କି ଅସାର (ହୀନ) ହେଲି । ଏହି କଥା ଘୋଷେ (ଘୋଷି ହେଉଛି) ।

ଗମା ରତନେ ପ୍ରେମ ରତନେ ହୋଇ ଯତନେ ବିକି ।
ଦୁଃଖ ମାଗଇି କାହିଁ ନୋହିଲି ତ୍ୟାଜ୍ୟା ହୋଇଲି ନିକି ।
କୃପା କୃପଣ ଏ ପ୍ରଭୁପଣ ଶୋଭ ଦର୍ପଣ ମୁଖୀ ।
ପକାଇ ନ ଦେ ସନ୍ତାପ ନଦେ ପିକ ନିନଦେ ସଖୀ । ।୧୫।
ଭଣ୍ଟ ବର୍ତ୍ତୁଳା ଡ଼ୋଳା ପିତୁଳା ମୋର କି ତୁଳା ତୋତେ ।
ଏହି ଭବନ ମୁଁ ପିଣ୍ଡ ବନ-ଜାକ୍ଷୀ ଜୀବନ ସତେ ।
ହେବି ମୁଁ ବଳା ପ୍ରାୟ ଅବଳା ସ୍ନେହ ପ୍ରବଳା ଘେନ ।
ଛନ୍ଦି ଚରଣେ ତ୍ୟକ୍ତ କରଣେ ନାହିଁ ଶରଣେ ଆନ । ।୧୬।
ଜଳଦ ରସେ ଚାତକ ରସେ ସେ ନ ବରଷେ ଯେବେ ।
ଯାଇ ଆଶାରେ ନଦୀ କାସାରେ ମହାତୃଷାରେ କେବେ ।
ନ ପାଇ ମଧୁ ଭୁଲନ୍ତି ମଧୁକର କି ମଧୁରକୁ ।
ଡ଼ରେ ମୁଁ ବିଧୁ କମୁଦ ବିଧୁହାସି ତୋ ବିଧୁରକୁ ।୧୭।
ଚନ୍ଦ୍ର ଯାମିନୀ ଦେଖ ଦାମିନୀ କାନ୍ତି କାମିନୀ ବନ୍ଧୁ ।
ନୋହୁ ପୂର୍ଣ୍ଣା କିମ୍ପା ଅରୁଣା ଧରି କରୁଣା ସିନ୍ଧୁ ।

---

୧୫—ଗମା ଚତନେ ଠାରେ ପ୍ରେମ ରତ୍ନ ମୂଲ୍ୟରେ ଯତ୍ନରେ (ମନ ଖୁସୀରେ) ବିକି ହୋଇ ଏବେ କାହିଁ ନୋହିଲି (ମୋର ନୋହିଲି କି ତୋର ନୋହିଲି); ତ୍ୟାଜ୍ୟା—ତୋ ଦ୍ୱାର ଛଡ଼ା ହେଲି; ହେ ଦର୍ପଣ ମୁହାଁ ଏପରି କୃପାକୁ ପଣ ଥାଇ ପ୍ରଭୁପଣ ଶୋଭ (ସୁନ୍ଦର) କି ? ଏବେ ସନ୍ତାପ ନଦେ (ଦୁଃଖ ନଦୀରେ) ପକାଇ ଦେନା, ହେ ପିକ ନିନଦେ (କୋଇଲି ଭାଷୀ) ।

୧୬—ବର୍ତ୍ତୁଳ—ଗୋଲ; ତୁ ମୋ ଡ଼ୋଳାରେ ପିତୁଳା ପରି । ତୋତେ କି ତୁଳା ( କିଏ ସମାନ) ? ଏହି ଭବନ-ଏ ଭବନା; ମୁଁ ପିଣ୍ଡ (ଶରୀର) ବନଜାକ୍ଷୀ ଜୀବନ (ପ୍ରାଣ); ହେ ସ୍ନେହ ପ୍ରବଳା ଅବଳା ମୁଁ ତୋର ଚରଣରେ ବଳା ପରି ଛନ୍ଦି ହେବି । ତ୍ୟକ୍ତ କରଣେ—ଛାଡ଼ି ଦେଲେ ଶରଣେ (ଶରଣ ନେବାକୁ) ଆନ ନାହିଁ ।

୧୭—ଜଳଦ ରସେ—(ମେଘ ପାଣିରେ) କେବେ ଯାଇ—କେବେ ଯାଏ କି ?; କାସାରେ-ପୋଖରିକୁ; ଚାତକ ମେଘରୁ ପଡ଼ିବା ପାଣି ଛଡ଼ା ଅନ୍ୟ ପାଣି ପିଏ ନାହିଁ ବୋଲି ପ୍ରବାଦ । ମଧୁକର (ଭ୍ରମର) ମଧୁରକୁ (ଗୁଡ଼ରେ) ଭୁଲନ୍ତି କି ? ହେ ବିଧୁ ହାସି, ମୁ ବିଧୁ (ଚନ୍ଦ୍ର) ତୁ କୁମୁଦ (କଇଁ) ତୋ ବିଧୁରକୁ (ବିଚ୍ଛେଦକୁ) ଡ଼ରେ— କିମ୍ବା ହେ ବିଧୁ କୁମୁଦ ବିଧୁ ହାସି—ଚନ୍ଦ୍ର କଇଁ କର୍ପୂର ପରି ହାସ ଯାହାର ।

୧୮—ହେ କାନ୍ତି ଦାମିନୀ ବନ୍ଧୁ (ହେ ବିଦ୍ୟୁତ୍ ପ୍ରଭ, ହେ ବନ୍ଧୁ) ହେ କାମିନୀ ହେ ଅରୁଣା ଧରୀ, ହେ କରୁଣା ସିନ୍ଧୁ ଚନ୍ଦ୍ର ଯାମିନୀ (ଚାନ୍ଦନୀ ରାତି)କୁ ଦେଖ । କେଳି ଆଗମ (କେଳି

କେଳି ଆଗମ କି ଅଭିଗମ ଅନାରେ ଗମଦୃଶା ।
ଆଜ ଶୋକର ବଶେ ନ କର ଚକ୍ର ବାକର ଦଶା । ।୧୮।

ତୋ ଏ ଚରିତ ନିଷେ ସରିତ ସ୍ନେହ ବାରିତ ହୋଇ ।
ଗୁରୁଜଘନେ ଦୁଃଖ ସଘନେ ଶକ୍ୟ ଲଘନେ ନାହିଁ ।
ମାନ ରଜନୀ ଅସ୍ତ ସଜନୀ ମୋ ସୁଖଜନୀ ଭଲେ ।
କେ ମୋ ରକ୍ଷଣେ ନାହିଁ ଇକ୍ଷଣେ ଲୋତକ କ୍ଷଣେ ଥିଲେ ।୧୯।
ବିଗ୍ରହେ ଧୀରେ ରସନିଧିରେ ଅଛି ବିଧିରେ ଦୋଷ ।
କରେ ବାଳିକା ଗୁଚ୍ଛାମାଳିକା ଚିତ୍ର ଆଳିକା ନାଶ ।
କାମପ୍ରବନ୍ଧେ ସୁରିତ ବନ୍ଧେ ରଚେ ଶବଳେକ୍ଷଣି ।
ଦୀପପ୍ରକରେ ଚନ୍ଦ୍ରମାକରେ ବିବାସକରେ ପୁଣି ।୨୦।

---

ଉଦ୍ୟାନ, ବଗିଚ୍ଚ, କୁଞ୍ଜବନ)କି ଅଭିଗମ (ସୁନ୍ଦର) ହୋଇଛି ଅନା । ହେ ଗମଦୃଶା (ମୃଗଦୃଶା) ଆଜି ଶୋକର ବଶେ (ଦୁଃଖରେ); ଚକ୍ରବାକର ଦଶା- ଚକ୍ରବାକ ଗତି ହେଲେ ଅଲଗା ହେବାରୁ ରାତିରେ ତାଙ୍କର ମିଥୁନ ହୁଏ ନାହିଁ ।

୧୯—ଏ ତୋ ଚରିତ (ରଷିବା) ସ୍ନେହବାରିତ (୧.ସ୍ନେହର ବାରଣ- କେଳିପ୍ରତିବନ୍ଧକ,୨. ସ୍ନେହ ରୂପକ ଜଳଯୁକ୍ତ ହୋଇ) ନିଷେସରିତ (ନଦୀ) ହେଲା; ହେ ଗୁରୁଜଘନେ, ମୋର ଦୁଃଖ ସେ ନଦୀକୁ ସଘନେ ହଠାତ୍ ଲଘନେ (ଡେଇଁଯିବାକୁ)ଶକ୍ୟ(ସାମର୍ଥ୍ୟ) ନାହିଁ । ଏବେ ହେ ସଜନୀ ହେ ମୋ ସୁଖଜନୀ (ସୁଖଜାତକର୍ତ୍ରୀ) ରଜନୀ ଅସ୍ତ (ଗତିଶେଷ) ହେଲା । ଭଲେ ମାନ (ଠିକ୍‌କରି, ବିଗ୍ରହ କର); ତୋ ଇକ୍ଷଣେ (ଆଖିରେ) କ୍ଷଣେ (ମୁହୂର୍ତ୍ତେ) ଲୋତକ (ଲୁହ) ଥିଲେ ମୋ ରକ୍ଷଣେ (ରକ୍ଷାରେ) ଆଉ କିଏଅଛି ।

୨୦—ହେ (ସନ୍ଧି) ଧୀରେ ବିଗ୍ରହକର; ବିଧିରେ (ପ୍ରକୃତରେ) ମୋର ଦୋଷ ଅଛି । ଜଣ କର-ବାଳିକା (ପରିବାରି)ମାନଙ୍କର ଗୁଚ୍ଛାମାଳିକା (ଫୁଲମାଳା) ଚିତ୍ର ଆଳିକା (ସ୍ତନ ଓ ଗଣ୍ଡସ୍ଥଳର କସ୍ତୁରୀ ଚନ୍ଦନ ଚିତ୍ରମାନ)ନାଶ(ନଷ୍ଟ)କରେ; କାମ ପ୍ରବନ୍ଧରେ (କାମରେ ବ୍ୟାକୁଳହୋଇ ହେ ଶବଳେକ୍ଷଣି (ନାନାବର୍ଣ୍ଣନେତ୍ରୀ—ଧଳା, କଳା, ଲାଲ ତିନିବର୍ଣ୍ଣ ଆଖିରେ ଥାଏ) ମୁଁ ବନ୍ଧେ (ତୋ ମନ ନ ଥାଇ ମଧ୍ୟ) ସୁରିତି ରଚେ । ଦୀପପ୍ରକରେ (ଦୀପମାନେ ଥାଇ) ଚନ୍ଦ୍ରମାକରେ (ଚନ୍ଦ୍ରକିରଣରେ) ମଧ୍ୟ ବିବାସକରେ (ବିବାସକରି କେଳିକରେ) ।

କରେଁ କରଜକ୍ଷତ ଉରଜ ଗରୁ ନୀରଜ କଢ଼େ ।
ମୁଁ ନ ଛାଡ଼ଇ ଓଷପୀଡ଼ଇ ଭୁଜେ ଭିଡ଼ଇ ଗାଢ଼େ ।
ତୋର ନିସତ ନ ଘେନେ ସତ ଦୋଷୀ ମୁଁ ସତତର ।
ମୋ କଷ୍ଟ ଗରିଷ୍ଠରେ ନାଗରୀ କ୍ଷମାସାଗରୀ ହର । ୨୧ ।
ଲବ ଅନ୍ତର ବଶେ କାତର ହୋଇ ମାତର ଗୋରୀ ।
ନୋହେ କପଟ ଦେଖି ଲମ୍ପଟ ତୋ ରୂପପଟ ଧରି ।
ସପନ୍ନାଦର ଘେନି କି ଦରକର୍ଣ୍ଣି ସାଦର ଶେଷେ ।
କିସ ଏଥରେ ଭବତଥରେ ହୃଦ-ପଥରେ ଦିଶେ । । ୨୨ ।
ଏହି ବଚନାମୃତ ରଚନା କଲା ଶୋଚନା ଦୂର ।
ବଳେ ଗ୍ରହିଲା ମନ ମୋହିଲା ନେତ୍ରୁଁ ବହିଲା ନୀର ।
ବଳେ ବାହାର ହେଲା ତାହାର ହାସ ନୀହାରଭନୁ ।
ଛାଡ଼ ହୁଡ଼ିଲା କଥା ପୋଡ଼ିଲା ବୋଲି ଜଡ଼ିଲା ତନୁ । ୨୩ ।
ଫୁଲସାୟକ ବଶନାୟକ-ପ୍ରେମଦାୟକ ବାଳା ।
ନୋହେ କହି ତ ଅଶେଷ ହିତ ଯେତେ ବିହିତ ଲୀଳା ।
ସେ ବିଚକ୍ଷଣ କଲେ ଯେ କ୍ଷଣ ପରୟ କ୍ଷଣଦାକୁ ।
ବାସ ହରିଲେ ସେ ବିହରିଲେ ବେଗେ ତରିଲେ ଦର୍କୁଁ । ୨୪ ।

---

୨୧-କରଜ-ନଖ; ଉରଜ-(କୁଚ) ରୂପ ଗରୁ ନୀରଜ କଢେ (ସୁନ୍ଦର ପଦ୍ମ କଢୀରେ) ନିସତ-ଦୁର୍ବଳତା, ହାଲିଆମଣ; ସତତର-ସବୁବେଳେ; ଏବେ ମୋ କଷ୍ଟ ଗରିଷ୍ଠ (ଅତ୍ୟନ୍ତ) ହେଲା । ରେ ନାଗରି କ୍ଷମାସାଗରି ତାହା ହର (ନାଶକର) ।

୨୨-ହେ ଗୋରି ଏ କପଟ ନୁହେ । ତୁ ଲବ ଅନ୍ତର ବଶେ (କ୍ଷଣେ ଅଲଗା ହେବାରୁ) କାତରହୋଇ (ମାତ୍ରକ-ସେହିକ୍ଷଣି)ତୋ ରୂପପଟ ଧରି ଲମ୍ପଟ (ଲୋଭୀ) ହୋଇ ଦେଖୁଁ ଦେଖୁଁ ହେ ଦରକର୍ଣ୍ଣି (ଶଙ୍ଖ କର୍ଣ୍ଣି) ତୁ ସପନ୍ନାଦ୍‌ର (ସଉତୁଣିଭୟ) ଘେନି ଶେଷେ (ଶେଷରେ) ଆଦର ଯୁକ୍ତ ହେଲୁ-ଗଗକଲୁ । ଏଥରେ-ଏଥିରେ; କିସ ଦିଶେ (କଣଅଛି) ଏହାଥରେ ହୃଦପଥରେ (ମନ ମଧ୍ୟରେ )ଭବ ତ !

୨୩-ହାସ ରୂପ ନୀହାରଭନୁ (ଉଜ୍ଜ୍ୱଳ ଶୁକ୍ଳ ବରଫକାନ୍ତି) କିମ୍ବା ଶୀତ କାଳର ସୂର୍ଯ୍ୟପରି ।

୨୪-କ୍ଷଣଦା (ରାତ୍ରି)କୁ କ୍ଷଣ (ମୁହୂର୍ତ୍ତ) ପରି କଲେ । ଦର୍କୁଁ (କାମ ଭୟରୁ);

ତପସ୍ୟାଭଙ୍ଗୀ କୋପିତ ଭଙ୍ଗୀ ଖ୍ୟାତ ତ୍ରିଭଙ୍ଗୀଛନ୍ଦ ।
ବୁଧମୋହନ ଖଳଗହନ ନାଶେ ଦହନ ଛାନ୍ଦ ।
ହେ ରାମ ଘନଶ୍ୟାମ ସଘନ ଦୁରିତ ଘନ ହର ।
ଭଜି ଉପେନ୍ଦ୍ର ତାପ-ଦ୍ୱିପେନ୍ଦ୍ର ହରି ନୃପେନ୍ଦ୍ର ହର । ୨୫ ।

---

୨୫—ତପସ୍ୟାଭଙ୍ଗୀ—(ଯେ ତପସ୍ୟାଭଙ୍ଗକାରିଣୀ ଲବଣ୍ୟବତୀ) ତାର କୋପିତ ଭଙ୍ଗୀ (କୋପଭଙ୍ଗୀ) ତ୍ରିଭଙ୍ଗୀଛନ୍ଦରେ (ଯେଉଁ ଛନ୍ଦରେ ତିନିଭଙ୍ଗ ବା ଯତି ଅଛି ଏବଂ ଏହି ଛାନ୍ଦରେ ମଧ୍ୟ ତିନି ଯତି ପାଖେ ଯୋଡ଼ିଏ ଯୋଡ଼ିଏ ଅକ୍ଷର ଯମକ ହୋଇଛି) ଖ୍ୟାତ ହୋଇଛି (ବର୍ଣ୍ଣନା କରାହୋଇଛି) ।

ବୁଧ ମୋହନ (ପଣ୍ଡିତ ମୁଗ୍ଧକର) ହୋଇଛି । ଖଳ (ଦୁର୍ଜ୍ଜନ ରୂପ) ଗହନ (ବନ) ନାଶରେ ଦହନ (ନିଆଁ) ପରି ହୋଇଛି ।

ସଘନ ଦୁରିତଘ୍ନ-ନିବିଡ଼ ପାପହନ୍ତା ହରି (ପାପଦଳଣକାରୀ)। ନୃପେନ୍ଦ୍ରଦର୍ପ (ରାଜାମାନଙ୍କରଗର୍ବ) ଯେ ସେ ଦ୍ୱିପେନ୍ଦ୍ର (ହାତୀ) ହେଲ; ତାର ହରି (ସିଂହ) ଅଟ ହେ ଘନଶ୍ୟାମ ରାମ, ତୁମେ ଉପେନ୍ଦ୍ରର ତାପକୁ ଭଞ୍ଜ (ନାଶକର);

*  *

# ଅଷ୍ଟବିଂଶ ଛାନ୍ଦ

## ( କେଳି ପ୍ରଶଂସା )

ରାଗ—ବଗଡ଼ି

ସୁରିତି ଶେଷେ ପୀରତି- ନିଧିକି ଆଗରେ ପତି
ବସାଇ ବସି ପଲ୍ୟଙ୍କ ପରେ ।
ଆବେଶ ହୋଇ ସୁବେଶ କରି ସାରି ସେ ଜୀବେଶ
କରକୁ ନିବେଶ ଚିବୁକରେ ସେ ।
ମନୋହର । ଏକେ ବସନ୍ତ ଚନ୍ଦ୍ରିକା ନିଶି ।
ସନ୍ଦର୍ଭ ସୁଦର୍ଭ ହାସୀ ଶୋଭ ଗୁଣକୁ ପ୍ରଶଂସି
ରସଗର୍ଭ ବଚନକୁ ଭଷି ସେ । ୧ ।
କନ୍ଦରୀସ୍ତନୀ ସୁନ୍ଦରୀ ପୁରନ୍ଦରୀ କୃଶୋଦରୀ
ଦରିଦ୍ର ମୁଁ ତୁ ନିଧି ପ୍ରତିମା
ଦର୍ପକଦର୍ପ ବର୍ଦ୍ଧିନୀ ଧନୀ ଦର୍ପଣ ବଦନି
ଅଶେଷ ଅନଙ୍ଗରଙ୍ଗ ସୀମା ରେ ।
ଜୀବେଶ୍ୱରି । ତୋତେ ଉପମା ହୋଇଣ ତୁହି ।
ସାରଭାଗ ତୋ ଶ୍ରୀମୁଖ ସେ ସିଠା ଶୀତମୟୂଖ
ତୋଷେ ଦେବଙ୍କୁ ଅମୃତ ଦେଇ ରେ । ୨ ।

---

୧—ଆବେଶ ହୋଇ—(ଭାବବଶରୁ); ଜୀବେଶ—ବର; ଚିବୁକରେ-ଓଠତଳେ; ସନ୍ଦର୍ଭ—ଅତି ରମଣୀୟ ରସଗର୍ଭ—ସରସ;

୨—କନ୍ଦରୀ—ପର୍ବତ; ସୁନ୍ଦରୀ ପୁରନ୍ଦରୀ—ସୁନ୍ଦରୀ ଶ୍ରେଷ୍ଠା; ନିଧିପ୍ରତିମା—(ବହୁମୂଲ୍ୟ ରତ୍ନ ସ୍ୱରୂପା) ଅନଙ୍ଗରଙ୍ଗ—(କେଳିଭଙ୍ଗୀ)ର ସୀମା (ସର୍ବଶେଷ); ଚନ୍ଦ୍ର ଚିପୁଡ଼ା ହୋଇ—ସାରଭାଗ ତୋ ମୁହଁ ହୋଇଛି । ତା ସିଠାରେ ଏବେ ଆକାଶରେ ଦେଖାଯାଉଥିବା ଚନ୍ଦ୍ର ହୋଇଛି । ଯେ କି ଦେବତାଙ୍କୁ ଅମୃତ ଦେଇ ସନ୍ତୋଷ କରୁଛି ।

ରମ୍ଭା କଳ୍ପନା ପାଞ୍ଚିଲ ରମା ଉମା ନିର୍ମାଣିଲ
ହସ୍ତ ବଳିବାକୁ ଆଗବିହି ।
ହେମ ପିତୁଳା ନିର୍ମାଣି ରସରେ ରସାଣି ପୁଣି
ଭବ ହାବ ଯୋଗେ ଜୀବ ଦେଇ ରେ
ଜୀବେଶ୍ୱରି ! ଶୋଭ ଗ୍ରହିଁ ହୋଇଲ କାତର ।
ବାନ୍ଧୁ ବାନ୍ଧୁ ସୁକୁନ୍ତଳ ହେଲ ଚିକ୍‌କଣ କୁଟିଳ
ସ୍ୱେଦ କମ୍ପ ବହିଥିବ କର ରେ । ୩ ।
ଗଣେଶ ତୋ ଶୋଭ ଗ୍ରହିଁ ଗଣେ କରେ ମାଳା ବହି
କଉଁ ଅଙ୍ଗେ କି ଉପମା ଦେବି ।
ଅଶେଷ ମୁଖ ବହିଲ ଶେଷ କହି ନ ପାରିଲ
ଦେଖି ରସିକା ନାସିକା ଛବି ରେ
ଜୀବେଶ୍ୱରି ! ଗୁଣ ଶୋଭ ଅକଥନ ତୋର ।
ଗୁରୁସ୍ତନୀ ରମ୍ଭାଉରୁ ଏହି ଶବଦ ଶ୍ରୁତିରୁ
ରମ୍ଭା କଲେ ସ୍ୱର୍ଗେ ଅଳଙ୍କାର ରେ । ୪ ।

---

୩—ଏ ସବୁ ବର୍ଣ୍ଣନା ନୈଷଧ ଦମୟନ୍ତୀ ବର୍ଣ୍ଣନାରୁ ପ୍ରାୟ ଅବିକଳ ନିଆଯାଇଛି । ବିହି ରମ୍ଭା (ଲାବଣ୍ୟବତୀ) କୁ କରିବା କଥା ବିଚାରି ରମା ଉମା ପ୍ରଭୃତି ସୁର-ସୁନ୍ଦରୀମାନଙ୍କୁ ଆଗ ହାତ ବଳା କରି ତିଆରିଲେ । ତାପରେ ରମ୍ଭାକୁ କରିବାକୁ ସୁନାପିତୁଳା ତିଆରି ରସ (ଶୃଙ୍ଗାର) ରେ ରସାଣି ଦେଇ (ଚିକ୍‌କଣ) କରିଦେଇ ଭବ ହାବ ପ୍ରଭୃତି ଦ୍ୱାରା ଜୀବନ୍ୟାସ କଲ । [୭ମ ଛାନ୍ଦ ୭୫ପଦ ଟୀକା ଦେଖ] ହାତବଳା [୧ମ ଛାନ୍ଦ ୪୯ପଦ ଟୀକାଦେଖ] ବିହି ଏହା କରିସାରି ନିଜେ ଶୋଭକୁ ଗ୍ରହିଁ ଏତେ କାତର ହେଲ ଯେ ତାର ସୁକୁନ୍ତଳ (ସୁନ୍ଦର ବାଳ)କୁ ବାନ୍ଧିଲ ବେଳକୁ ନିଜେ ବିଧାତାର ସାତ୍ତ୍ୱିକ ବିକାରରୁ ଯେଉଁ ସ୍ୱେଦ ଓ କମ୍ପ [୧୯ଛାନ୍ଦ ୨୦ପଦ ଟୀକା ଦେଖ] ହେଲ । ସେହି ହେତୁରୁ ସେହି ସ୍ୱେଦଲାଗି ବାଳ ଚିକ୍‌ଣ ଓ ସେହି କମ୍ପ ଯୋଗୁ ବାଳ କୁଟିଳ (କୁଞ୍ଚୁକୁଞ୍ଚିଆ) ହେଲ ।

୪—ଗଣେଶ ହାତରେ ମାଳା ଧରି ଉପମା ଗଣୁଛନ୍ତି । ନାକ ଦେଖି ଶେଷ (ବାସୁକୀ) ଅଶେଷ ମୁଖ ଥିଲେ ମଧ୍ୟ କହି (ବର୍ଣ୍ଣନା) କରି ପାରିଲ ନାହିଁ । ଅକଥିତ-କହି ହେବ ନାହିଁ; ଗୁରୁସ୍ତନୀର ଉରୁ ରମ୍ଭା ପରି ଏହି କଥା ଶୁଣି ରମ୍ଭା ବେଶ୍ୟାକୁ ସ୍ୱର୍ଗରେ ଅଳଙ୍କାର ପରି ଆଦର କଲେ ।

ଧନ୍ୟ ତୋ ନୟନ ରଙ୍ଗ    ନୀଳ ଧବଳ ସୁରଙ୍ଗ
ତିନି ବର୍ଣ୍ଣେ ତ୍ରିଭୁବନ ତୋଷେ ।
ଶୁଣି ଶ୍ରୀପତି ଶଙ୍କର    ସବିତା କମଳ କର
ନିଉଛାଳି କରିବାର ଆଶେ ରେ ।
ଜୀବେଶ୍ୱରି । ସେ ଉତ୍ତାରୁ କରିବେ ସେ ସ୍ତୁତି ।
ସ୍ମର ଶରରେ ତୁ ଈଶ    ଆମ୍ଭେ ତ ସ୍ମରସ ବଶ
ପାରିଲେ ବିନାଶ କର ଯତି ରେ    । ୫ ।
ତୋ ପଗ ଗ୍ଲଳିବା ଇଚ୍ଛି    ଇନ୍ଦ୍ର ଗଜେନ୍ଦ୍ର ଚର୍ଚ୍ଚିଛି
ମୁନି ଶାପ ତାପ ଲେପ ମନୁ
ତପ କରି କେତେ କାହିଁ    କେଉଁ ଦେବତା ମନାଇ
ମୁଁହିଁ ତୋତେ ଲଭିଛି ସ୍ୱତନୁ ରେ ।
ଜୀବନ୍ନେଶ୍ୱରି । ନରେନ୍ଦ୍ର ତୁ ନରେନ୍ଦ୍ର କୁମାରୀ ।
ଅନଙ୍ଗ ଭୁଜଙ୍ଗ ଗର    ବିଷର ସନ୍ତାପ ମୋର
ସ୍ୱରଣେ ହରୁଛୁ ଯେଣୁ କରି ଯେ    । ୬ ।
ଅନବରତରେ ହାସ–    ସଦନ ରଦନ ବାସ
ରସ ରହସ୍ୟ ସ୍ୱରୂପ ପ୍ରିୟେ ।

---

୫-ନୀଳ, ଧବଳ, ସୁରଙ୍ଗ (ଲାଲ) ତୋ ଆଖିରେ ତ୍ରିଭୁବନ (ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ); ସ୍ୱର୍ଗ-ଧଳା, ମର୍ତ୍ତ୍ୟ–ଲାଲ, ଓ ପାତାଳ-କଳା, ବର୍ଣ୍ଣନା କରାଯାଏ । ଏହା ଶୁଣି ଶ୍ରୀପତୀ (ବିଷ୍ଣୁ) ଶଙ୍କର (ମହାଦେବ) ସବିତା (ସୂର୍ଯ୍ୟ) ଏମାନେ କମଳ (୧. ପଦ୍ମ ୨. ଭେଷଜ ବା ବିଷ, ୩. ତାମ୍ର) କର (୧. ହାତ, ୨, ଭକ୍ଷକ, ୩ କିରଣ) ହେଲେ । ତା ଉତ୍ତାରୁ ସ୍ତୁତି କଲେ । ତୁ ସ୍ମର ଶରରେ ଉସ୍ଥ (ସ୍ମରସ) ଆମେ ବି ସ୍ମରସ (ଭକ୍ତି ବଶ) ଆମ୍ଭେମାନେ ବିନାଶ (ବିନା ଆଶା ଯାହାର–ଅର୍ଥାତ୍ ଆଶା ବା କାମନା ହୀନ) କରି ପାଇଲେ ଯତିଙ୍କୁ ଖୋଜୁ । ତୁ ଖୋଜି କରି ଯତିଙ୍କୁ ପାଇଲେ ବିନାଶ କରୁ (ମାରୁ)

୬–ଗଜେନ୍ଦ୍ର–ଐରାବତ; ମୁନି ଶାପ–ଗୌତମ ଶାପ ବି ଭୁଲି ଗଲଣି [୮ମ ଛାନ୍ଦ ୭୧ପଦ ଟୀକା ଦେଖ] "ନରେନ୍ଦ୍ର–ବିଷ ବୈଦ୍ୟ, ସାପ ବିଷ "ଝାଡ଼ିବା କେଳା" ନରେନ୍ଦ୍ର ପୁଂସି ଭୂପାଳେ ବିଷ ବୈଦ୍ୟେଽପିଚ ଦ୍ୱୟୋ"–ଇତି କୁମୁଦା କର; ଗର-(ବିଷ) ପରି ବିରହ ତାପ !

୭–ରଦନ ବାସ–(ଅଧର, ଓଠ) ସର୍ବଦା ହାସ ସଦନ (ହାସର ସ୍ଥାନ); ଅନବରତ– ସର୍ବଦା; ରସ ରହସ୍ୟ–କେଳି ସୁଖ; ସେ ହାସ କିପରି ? ନଭ ଗଙ୍ଗା (ସ୍ୱର୍ଗ ଗଙ୍ଗା)

ନଭ ଗଙ୍ଗା ଜଳ ଅଣି  ସ୍ବରଙ୍ଗ ପ୍ରାତ ତରଣୀ
ନିରବେ ଡାକି ହୋଇଲ ପ୍ରାୟେ ରେ ।
ଜୀବେଶ୍ୱରି । ସ୍ନହିଁ ମୁଁ ମଜ୍ଜନ ହୋଇ ତହିଁ ।
ବିଶେଷେ କାମ କଳୁଷ  ସହଜେ କରିଛୁ ନାଶ
ସୁଗତି ଜନ ସୁଗତି ଦାୟୀ ରେ । ୭ ।

ହେତୁ ଥାଇ ମନେ ମନ  ତୁ ମୋ ଅମୂଲ୍ୟ ରତନ
ବୋଲନ୍ତି ଯେ ରତ୍ନ ମୂଲ୍ୟ ହୋଇ ।
ନାଶ କଲୁ ଏ ସଂଶୟ  ରମଣୀୟ ରତ୍ନ-ମୟ
ଅର୍ଥେ ରମଣୀରତ୍ନ ବୋଲଇ ରେ ।
ଜୀବେଶ୍ୱରି । ପଦ୍ମରାଗ ଓଷ୍ଠ ପାଦ ପାଣି ।
ହାସ ଦନ୍ତ ହୀରା ମୋତି  ଭ୍ରୂ ଡୋଳା ରୋମପନ୍ତି ।
ଚିକୁର ଅଳକା ନୀଳମଣି ରେ । ୮ ।

ଭଲ ବିବେକ ବିଜ୍ଞାଣି  କଠିନ ଗୁଣକୁ ଛାଣି
ଘଟସ୍ତନ କଲ ତୋ ଘଟନା ।
ହୃଦରେ ପଦକ ମୋର  ବାନ୍ଧିବି ହେବାକୁ ତୋର
ଅବୟବ ଯାକ କଲ ସୁନା ରେ ।
ଜୀବେଶ୍ୱରି । ଏଣୁ ଦିବ୍ୟ ଗୁଣେ ତୁ ରଞ୍ଜନ ।
ସମ୍ପଦା କରି ତୋତେ ପାଇ  କିଛି ମୋର ଚିନ୍ତା ନାହିଁ
ଏ ଘେନି ବୋଲଇଁ ସିନା ଧନ୍ୟ ରେ । ୯ ।

---

ତାର ଶୁକ୍ଳ ଜଳରେ ପ୍ରାତ ତରଣୀ (ବାଳସୂର୍ଯ୍ୟ)ଡାକି(ଆପଣା ଉପରେ ଥକାଡ଼ି) ହେଲପରି । ସେହି ଗଙ୍ଗା ଜଳରେ ସ୍ନହିଁଲକ୍ଷଣି ମୁଁ ବୁଡ଼ି ଯାଉଛି । ମୋର କାମ ରୂପ କଳୁଷ(ପାପ) ଧ୍ୱଂସ ହେଉଛି । ତେଣୁ ହେ ସୁଗତି (ଗଜଗମନା) ତୁ ମୋର ସୁଗତି (୧·ଉତ୍ତମ ସୁଖ, ୨· ସ୍ୱର୍ଗ)ଦାୟୀ(ଦାନକାରୀ);

୮– ହେତୁଥାଇ–(ମୁଁ ଭାବେ) ତୁ ମୋର ଅମୂଲ୍ୟ ରତ୍ନ; ଅମୂଲ୍ୟ ବୋଇଲେ ବହୁମୂଲ୍ୟ କି ମୂଲ୍ୟନାହିଁ–ଏ ସଂଶୟ ଭାଜିଲା । କାହିଁକିନା, ଏବେ ରମଣୀୟ ରତ୍ନମୟ କଥାର ରମଣୀରତ୍ନ ହୋଇଛି । କିପରି ? ନା, ଓଠ, ପାଦ, ପାଣି (ହାତ) ଏ ପଦ୍ମରାଗ (ଲାଲମଣି), ହାସ–ହୀରା, ଦନ୍ତ–ମୋତି; ଭ୍ରୂ, ଡୋଳା, ପେଟର ରୋମ ବାଳ, ଅଳକା–ଏସବୁ ନୀଳମଣି ।

୯– କଠିନ ଗୁଣରେ ତୋ ସ୍ତନକୁ କଲା । ମୋ ହୃଦର ପଦକ ହେବା ପାଇଁ ତୋ ଦେହକୁ ସୁନା କଲି । ସମ୍ପଦା–ଫସଲ, ଭାଗ୍ୟ, ସମ୍ପତ୍ତି; ଧନ୍ୟ–ଏଠାରେ ଧନବାନ୍ ।

ଛଇଳ ଭ୍ରମର ବୋଲି ବୋଲିବାକୁ ମୋତେ ବାଛି
ଛଳ ମୋ ନୋହିବ ଜଣାଉଛି ।
ଶ୍ରୀମୁଖ ଚମ୍ପକ ନେତ୍ର ବେନି ପଦ୍ମ ବିକସିତ
ଅଧର ବନ୍ଧୂଲୀ ଚୁମ୍ବୁ ଅଛିରେ ରେ ।
ଜୀବେଶ୍ୱରି ! କାନ୍ତି କେତକୀ ଉପଳ ବାସ ।
ଉରଜ ନୀରଜ କୋଷ ସୁଫୁଲ୍ଲ ମଲ୍ଲୀକା ହାସ
ନୋହିଲ ମୋ କଉଁଫୁଲେ ଆଶ ରେ । ୧୦ ।
ପ୍ରିୟେ ତୋର ସଙ୍ଗ ନୋହୁ ଚମ୍ପମାଳା ପଲ୍ଲବାହୁ
ଭବ ଲୋଡ଼େ ଗଳେ ବାନ୍ଧିବାକୁ ।
ଚନ୍ଦ୍ର ଚନ୍ଦନ ଲେପନ କରୁଥାଇଁ ସଂହନନ[୧]
କିଣେ ପୀତାମ୍ବର ପିନ୍ଧିବାକୁ ରେ
ଜୀବେଶ୍ୱରି ! ଲଗାଇ ପଦପଲ୍ଲବେ ଶିର ।
ପ୍ରିୟା ତୋ ପ୍ରତିପ୍ରତିମା ଦେଖିଲଦିନୁ ତ୍ରିଯାମା
ଦିନେ ଏହି ବ୍ୟବସାୟ ମୋର ରେ । ୧୧ ।
ଯାବତ ଶୋଭ ସଂଗ୍ରହ ପାତ୍ର ବିଗ୍ରହେ ବିଗ୍ରହ
ଲଗିଲ ଯଉଁ ସ୍ୱପନ ଭ୍ରମ ।

---

ପାଠାନ୍ତର— ୧ ଅପଘନ

---

୧୦—ମୋତେ ଛଇଳ (ନାଗର, ଏଠାରେ ଫୁଲୁଁ ଫୁଲେ ଚଞ୍ଚଳ) ଭ୍ରମର ବୋଲି କହି ଥଟା କଲେ ମୋର କିଛି ଦୁଃଖ ନାହିଁ । କାହିଁକିନା ତୋ ଦେହରେ କେତେ ଫୁଲ ବା ମୁଁ ଚୁମ୍ବୁନାହିଁ । କାନ୍ତି କେତକୀ କହିବା ଏଠାରେ ସଙ୍ଗତ ହୋଇନାହିଁ । କାରଣ କେତକୀରେ ଭ୍ରମର ବସେ ନାହିଁ। "ଭ୍ରମର କାମୁକେ ଭୁଙ୍ଗେ"—ଇତି ବିଶ୍ୱଃ ।

୧୧—ତୋର ଚିତ୍ରପଟ ଦେଖିଲ ଦିନୁ ତୋ ବାହୁ ବୋଲି ଚମ୍ପାମାଳା ଘେନେ । ତୋ ହୃଦରେ ଲଗିଥାଏ ବୋଲି ଚନ୍ଦ୍ର (କର୍ପୂର) ଚନ୍ଦନ ବୋଳିହୁଏ। ତୋ ସଂହନନ (ଶରୀର) ବର୍ଣ୍ଣ ବୋଲି ପୀତାମ୍ବର (ହଳଦିଆ ଲୁଗା) ପିନ୍ଧେ । ତୋ ପାଦ ବୋଲି କଅଁଳ ପତ୍ରକୁ ମୁଣ୍ଡରେ ଥୁଏ । ତ୍ରିଯାମା-(ରାତ୍ରି);

୧୨—ଯାବତ—(ଯେଉଁ ଦିନରୁ) ହେ ଶୋଭ ସଂଗ୍ରହ ପାତ୍ରୀ (ଶୋଭସମୂହର ସ୍ଥାନ); ବିଗ୍ରହ(ଶରୀର) ମହାମହ ଉପକାର (ଅତ୍ୟନ୍ତ ମହ—ତେଜୀୟାନ ଉପକାର); ମଣି—ଶ୍ରେଷ୍ଠ;ଚତୁରୀବାଣୀ—ବୁଦ୍ଧିମତି କଥା;

ମିଶ୍ରେ ସେ ସ୍ୱପ୍ନ ଦେବୀର        ମହା ମହା ଉପକାର
ଶୁଝି ନୋହିବ  ସହସ୍ରଜନ୍ମେ ରେ ।
ଜୀବେଶ୍ୱରି । କସ୍ତୁରୀ ସୁଗନ୍ଧା ସୁକୋମଳା ।
ଚତୁରୀ ଶ୍ରେଣୀରେ ମଣି        ବୋଲି ତୋ ଶ୍ରୁତଗୀବାଣୀ
ପ୍ରେମ ପିତ୍ରିକାରେ ଜଣାଇଲ ରେ    । ୧୨ ।
ଯେନ ରେ ହରିଣ ଦୃଶି        ମାନସ ହଂସେ ନ ରସି
ହଂସର ମାନସ ସବୁ ଫନ୍ଦା ।
ଭାନୁ–ଜଳଦ ଜଳଦ        ଶ୍ରୁତକ ଚନ୍ଦ୍ର କୁମୁଦ
ପ୍ରୀତି ଇଷ୍ୟାକ କଲୁ ନିନ୍ଦା ରେ ।
ଜୀବେଶ୍ୱରୀ । ଅଛି ପୁଣି ବିଚ୍ଛେଦ ତାଙ୍କର ।
ଦେହକୁ ନ ଛାଡ଼େ ଛାଇ        ଛାଇ ଦେହ ନ ଛାଡ଼ଇ
ଧନ୍ୟ ତୋର ଅନୁରାଗ ସାର ରେ    । ୧୩ ।
ଫୁଲ  ଭ୍ରମର ବାଞ୍ଛଇ        ଭ୍ରମର ଫୁଲ ଇଛଇ
ମଧୁ ଦେଇ ଫୁଲ ତୋଷ କରେ ।
ଅନୁସରଣି  ଭ୍ରମର        ତୋର ମୋର ଏ ପ୍ରକାର
ସ୍ନେହ ନ ତୁଟିବ ଜୀଇବାରେ ରେ ।
ଜୀବେଶ୍ୱରି । ନିଷ୍ଠା କରି ଜାଣେ ମୁଁ ଏ କଥା ।
ମାଜିଲ  ମୁକୁର ପରି        ନିର୍ମଳ ତୋ ହୃଦ ଗୋରୀ
ପ୍ରତିବିମ୍ବେ ମୋର ହୃଦ ବ୍ୟଥା ରେ    । ୧୪ ।
ଦାନିଶ୍ରେଷ୍ଠ ଭଗବତୀ        ଦର୍ଶନେ ଦେବ ସମ୍ପତ୍ତି
ଲୋଚନ ଯୁଗକୁ ଯାଚି ଦେଉ ।

---

୧୩–ତୁ ମାନସ, ମୁଁ ହଂସ । ମାନସ–ମାନସରୋବର । ହଂସ ମାନସ ସରୋବରକୁ ଯାଏ । ମାନସ ହଂସ ପାଖକୁ ଆସେନାହିଁ । ସେହିପରି ମୁଁ ତୋଠାରେ ବନ୍ଧା । ସେହିପରି ସୂର୍ଯ୍ୟ–ପଦ୍ମ, ଜଳଦ–ଶ୍ରୁତକ, ଚନ୍ଦ୍ର କୁମୁଦ, ଏସବୁ ଉପମା ମୋ ତୋ ଭିତରେ ଘଟିବ ନାହିଁ । ପୁଣି ସେମାନଙ୍କ ବିଚ୍ଛେଦ ଅଛି । ତୋ ମୋ ପ୍ରେମ ଦେହ ଓ ତାର ଛାଇ ପରି ।

୧୪–ପ୍ରତିବିମ୍ବେ–ତହିଁରେ ପ୍ରତିବିମ୍ବିତ ହୁଏ । ମନବ୍ୟଥା–ଆଧି, ମନଦୁଃଖ; ("ପୁଂସାଧି ମାନସି ବ୍ୟଥା")–ଇତ୍ୟମରଃ ।

୧୫–ତୁ ଦାନୀ (ଦାତା) ଶ୍ରେଷ୍ଠ; ହେ ଭଗବତୀ ଦର୍ଶନରେ ଆଖିକୁ ଯାଚି କରି ଦେବ

ସମ୍ପୂର୍ଣ୍ଣ ପ୍ରେମ ରତନ ସମ୍ପୁଟକ ପ୍ରାଣଧନ
ଭବ ବେଳେ କରେ ଦେଇଯାଉ ରେ ।
ଜୀବେଶ୍ୱରି । ପଗ୍ଭରୁଛି କହିବୁଟି ସତ ।
ଶିରୀଷ କୁସୁମ ଦେହି କାହିଁପାଇଁ କରୁ ନାହିଁ
ମାଗିଲା ବେଳକୁ ବିପରୀତ ରେ । ୧୫ ।
ମଧ୍ୟ ତୃଣାଙ୍କୁର ଠାରୁ ସରୁ ଭଜିବାକୁ ଡରୁ
କିବା ଭୀରୁ ଏ ନୁହଇ କିଛି ।
ବହେ କୁଚ ମେରୁ ଭର କେଶରୀ ପ୍ରଶଂସା ତାର
କୁଳିଶ ହୋଇ ପ୍ରଶଂସା ଅଛି ରେ ।
ଜୀବେଶ୍ୱରି । ହେଜି ପାରି ନାହୁଁ ଭବଘେଳେ ।
ମୁକୁର ବିତାନେ ରତି ଉଲଟ ଦେଖୁ ଯୁବତୀ
ବେଳେ ରଚିଛୁ ମୋ ପୁଣ୍ୟ ଫଳେ ରେ । ୧୬ ।
କହିବାକୁ ଅଗୋଚର ସେ ଶୋଭା ପୁଣି ତୋହର
ଉଲଗ୍ନ ସୁଲଗ୍ନ ହୋଇଥିଲା ।
ଉଚେ ଉସନା ଉଦିତ ମୋ ସୁଖ ରାଶିରେ ମିତ
ନାସାମଣି ଯାହା ଝଲକିଲା ରେ ।
ଜୀବେଶ୍ୱରି । ଇନ୍ଦ୍ରପଦ ପଦତଳେ ଦେଲା ।

---

ସମ୍ପ୍ରତି ଦେଉ । ଭବରେ ବିହ୍ୱଳ ହୋଇ ପ୍ରେମରୂପ ରତ୍ନରେ ପୂର୍ଣ୍ଣକରି ସମ୍ପୁଟକ (ଫରୁଆ) ଦେଉ । ଏଡେ଼ ଦାନୀ ହୋଇ ସୁଦ୍ଧା ମାଗିଲା ବେଳକୁ ବିପରୀତ ହୋଇ (କୃପଣ ବା ବିରକ୍ତ) ହୋଇ କାହିଁକି ନାହିଁ କରୁ । ବିପରୀତ ରତି ମାଗିବା ବେଳକୁ ଏପରି ଶ୍ଳେଷ ମଧ୍ୟ ଅଛି; ବିପରୀତ-[୧୭ଛାନ୍ଦ ୩୬ ପଦଟୀକା ଦେଖ] ।

୧୬—ତୃଣାଙ୍କୁର-ଘାସଗଜା; ଅର୍ଥାତ୍ ଅଣ୍ଟା ଅତି ସରୁ ବୋଲି ଭଜି ଯିବାକୁ ଡ଼ରୁ କି ? କିବା ତୁ ଭୀରୁ ବୋଲି ଡ଼ରୁ—ସେଥିପାଇଁ ବିପରୀତ କୁ ନାହିଁ କରୁ । କିନ୍ତୁ ଏସବୁ କଥାକୁ ଛାଡ଼େ । ଯେଉଁ ଅଣ୍ଟା କୁଚ ରୂପ ମେରୁକୁ ବହିଛି, ଯାହାର ସିଂହନାମ, ବଜ୍ରସଙ୍ଗେ ଯାହାର ଉପମା ତାକୁ ବୁଝିପାରି ନାହୁଁ । ପୁଣି ବିଭଘର ମଧୁଶଯ୍ୟାର ଦର୍ପଣ ଗୃହଆରେ ବିପରୀତରେ ଦେଖୁକରି ସେ କାର୍ଯ୍ୟ ତୁ ମୋ ଭାଗ୍ୟକୁ ବଳେ (ନିଜେ ଇଚ୍ଛା ନ କରି ମଧ୍ୟ) କରିଛୁ । [୩୩ଛାନ୍ଦ ୨୬ପଦ ଟୀକାଦେଖ]

୧୭—ସୁଲଗ୍ନା--(୧. ଭଲଲଗ୍ନ, ୨ ଲଗାଲଗି ଦେହ) ଏଠାରେ ଜ୍ୟୋତିଷର ଭାଗ୍ୟ ଗଣନା ସଙ୍ଗେ ଶ୍ଳେଷ ଅର୍ଥ ଗ୍ଭଲିଛି । ମୋ ସୁଖରାଶିରେ (ସୁଖ ସମୂହରେ) ହେ ମିତ କିମ୍ବା ମୋ ସୁଖ ରୂପକ ରାଶିର ମିତ୍ର ସ୍ଥାନରେ ରହି ଉଚ୍ଚରେ ରାଶି ଚକ୍ରର ଉଚ୍ଚ ସ୍ଥାନରେ ଉସନା (ଶୁକ୍ର) ସ୍ୱରୂପ ନାସାମଣି ଝଲକିଲା । କାମ ଚକ୍ରବର୍ତ୍ତୀ ପଣରେ ମୁଁ ଯୁବା

କାମଚକ୍ରବର୍ତ୍ତୀ ପଣେ ଅଧିକାରୀ ଯୁବାଗଣେ
ତାକୁ ଇଷିତରେ ଜଣାଇଲେ ରେ । ୧୭ ।
ସବୁ ବଡ଼ପଣ ପ୍ରାଣ- ବନ୍ଧୁ ଘେନି ମୋର ଜାଣ
ଦହୁଥିଲେ ଯଉଁ ଚନ୍ଦ୍ର ବାତ ।
ସେ ତୋହର ସଙ୍ଗ ମାତ୍ରେ ସୁଖଦ ହେଲେ ରତାନ୍ତେ
ବହୁତ ରୂପେ ହରିଲେ ଶ୍ରାନ୍ତ ରେ ।
ଜାନକୀଶ୍ୱରି ! ତୋ ବଡ଼ିମା ଅଖିଳରେ ସାର ।
ଝଲକ ଭଲ୍ଲ ପ୍ରକାର ଯଉଁ ଭୃଙ୍ଗ ପିକ ସ୍ୱର
ସେହି ଏବେ ଶୁଭିଲା ମଧୁର ରେ । ୧୮ ।
ଏ ରୂପେ ଗୂଢ଼ୁ ପ୍ରକାଶି ବଇଭ ବଇଭୀ ତୋଷି
ଅନୁଗ୍ରହ ଚୁମ୍ବ ଆଲିଙ୍ଗନ ।
ଇଭି ହେଲେ ହରଷିତ ନିୟମ କଲେ ଏମନ୍ତ
ରସବତୀ ନ କରିବୁ ମାନ ରେ ।
ଜାନକୀଶ୍ୱରୀ ! ପରବାସ ନ କରିବି କେବେ ।
କଲେ ଏମନ୍ତ ସମ୍ମତ ଶଙ୍କା ହୋଇଗଲା ହତ
ମାତିଲେ ବିଳାସ ମହୋତ୍ସବେ ରେ । ୧୯ ।
ମିଥିଳା ନବସଙ୍ଗମ କାଳେ ଯେ କଲେ ନିୟମ
ଏକ ପତି ଏକ ପତ୍ନୀ ବ୍ରତ ।
ଜଗତେ ସେହୁ ଦମ୍ପତି ସାଧୁଙ୍କ ସୁଖ ସମ୍ପତ୍ତି
ମଧୁର ଆକୃତି ଅଲୌକିକ ସେ ।
ତାଙ୍କ ପାଦ ! ମହା ବିପଦକୁ ନାଶ କରେ ।
ଚିନ୍ତି ଚିତ୍ତେ ଉପେନ୍ଦ୍ର- ଭଞ୍ଜ ପରମ ଆନନ୍ଦ
କହେ ରସିକ ଜନଙ୍କ ହିତ ରେ । ୨୦ ।

---

ଗଣରେ ଅଧିକାରୀ ହେଲି ସେହି କଥାକୁ ଇଷିତରେ (୧. ଅନ୍ତରେ—ଅଭିପ୍ରାୟରେ, ୨ . ରତି କାଳର ଇଷି ଶବ୍ଦରେ) ଜଣାଇଲେ ।

୧୮—ବାତ-ପବନ (ବିରହ ବେଳେ); ଶ୍ରାନ୍ତ —ଶ୍ରାନ୍ତି, ଶ୍ରମ, କ୍ଲାନ୍ତି; ଅଖିଳରେ—ସଂସାରରେ ଝଲକ ଭଲ୍ଲ-ଗାଲିଥିବା ବର୍ଛା ଯାହା ଦେହରେ ପଶିଗଲେ ଓଟାରିଲେ ବାହାରେ ନାହିଁ ; କର୍ଣ୍ଣୀ ଭଲ୍ଲ ।

୧୯—ଏମନ୍ତ ସମ୍ମତ କଲେ—ଦୁହେଁ ଦୁହିଁଙ୍କ ପାଖେ ଏହିପରି ଅଙ୍ଗୀକାର କଲେ;

୨୦—ମିଥିଳା ନବ ସଙ୍ଗମ କାଳେ—ମିଥିଳାରେ ବିଭା ହେଲା ବେଳେ; ସେହି ଦମ୍ପତି—ରାମ ସୀତା; ଅଲୌକିକ -ଅଲୌକିକ, ଅସାଧାରଣ ।

* ❁ *

# ଊନଚତ୍ୱାରିଂଶ ଛାନ୍ଦ

## ( ରଣ୍ଡୀଦ୍ୱାରା ବଚ୍ଛେଦ ବର୍ଣ୍ଣନ )

ରାଗ–ମୁଖାରୀ । ଆଷାଢ଼ଶୁକ୍ଳ ବାଣୀରେ ।

ଏଥୁଅନ୍ତରେ ସାଧୁଜନେ ଶୁଣ । ଦୁଷ୍ଟ ପୁଲୋମ କାଳକେୟ ଗଣ ।
ମେଳ ହୋଇ ସେ ସଂସପ୍ତକ ସଙ୍ଗ । ନାଶ କରନ୍ତି ଋଷିବୃନ୍ଦ ଯାଗ ।
ରକ୍ଷା ଚନ୍ଦ୍ରଭାନୁ । ଏହି ଯେ ଶବଦ ଶୁଭିଲା ଦିନୁ । ୧ ।
ସର୍ବଜ୍ଞ ସହଜେ ମୁନି କହାପ । ଯୋଗବଳେ ଜାଣି ଦେବଙ୍କ ଶାପ ।
ନିଃଶ୍ୱାସିକା ଚଣ୍ଡୀ ସିନ୍ଧୁ ଦେଶରେ । ଥିଲ ମିଳିଲେ ଗଜେ ତା ପାଶରେ ।
ମନାଇ ତାହାକୁ । ପେଷିଲେ ଚନ୍ଦ୍ରଭାନୁ ହରିବାକୁ । ୨ ।
ମଧୁର ମାଧବେ ମନ ଉଲ୍ଲାସେ । ମାନସ ବଳାଇ ବନ ବିଳାସେ
ରସୋଦୟ ବନେ କାବେରୀ କୂଳେ । କୁମାର କୁମାରୀ କ୍ରୀଡ଼ନ୍ତି ମେଳେ ।
ଦେଖଇ ସେ ଶୋଭା । ସୁମନା ମନ କରୁଅଛି ଲୋଭ । ୩ ।
କଳକଣ୍ଠ କାଳକଣ୍ଠ ବିହରି । ଭ୍ରମରେ ନୋଉଛି ମହା ମାଧୁରୀ ।
ବହୁଛି ସାରସଗନ୍ଧ ସମୀର । ସ୍ୱାଦୁର ସଘନ ଅମୃତାକର ।
ଯୋଗି ମନ ମୋହି । କାମ ଶରଳିରେ ଛନ୍ନ କରଇ । ୪ ।

---

୧–ପୁଲୋମ କାଳକେୟ, ସଂସପ୍ତକ୍–ଏମାନେ ଭିନ୍ନ ଭିନ୍ନ ଅସୁରଗଣ ।

୨–ନିଶ୍ୱାସିକା ଚଣ୍ଡୀ–ଦେବତା ମାନଙ୍କ ନିଶ୍ୱାସରୁ ଯେଉଁ ଚଣ୍ଡୀ ବାହାରି ଥିଲେ; ଦେବଙ୍କ ଶାପ–. ୩୫ ଛାନ୍ଦ ୪୨–୪୪ ପଦଟୀକା ଦେଖ । ସିନ୍ଧୁ ନାମକ ଦେଶ । ହରିବାକୁ–ଘେନିଯାଇ ନେବାକୁ; ଚନ୍ଦ୍ରଭାନୁ ଗଲେ ଅସୁର ମାନଙ୍କୁ ନାଶ କରିବ–ଏହି ଅଭିପ୍ରାୟ ।

୩–ମାଧବ–ଚୈତ୍ରମାସ; କାବେରୀ କୂଳରେ ରସୋଦୟ ନାମକ ବନରେ; ସୁମନା ମନ–ଲାବଣ୍ୟବତୀର ମନ; କୁମାର କୁମାରୀ–କର୍ଣ୍ଣାଟର ଯୁବରାଜ ଯୁବରାଣୀ; ଏଠାରେ ଅବିବାହିତ ଅର୍ଥ ନୁହେ ।

୪–ବଣରେ କଳକଣ୍ଠ ( କୋକିଳ ) ନଦୀରେ କାଳକଣ୍ଠ (ଡାହୁକ); ଭ୍ରମରେ ( ବଣ ଭ୍ରମର ମାନଙ୍କରେ, ନଦୀ ଜଳ ଭଉଁରୀରେ ); ବଣରେ ସାର (ଶ୍ରେଷ୍ଠ) ସୁଗନ୍ଧ (ସୁବାସ) ସମୀର; ନଦୀରୁ ସାରସ ( ପଦ୍ମ ) ଗନ୍ଧ ସମୀର; ବଣ ସ୍ୱାଦୁରେ ସଘନ

କାନ୍ତ କାନ୍ତା ତହିଁ ବିହାର କରେ । କୁଞ୍ଜ କୁଟୀରେ ଅମ୍ବୁଜ କୁଟୀରେ ।
ଅନୁସରୀ ଅନୁସରି ଉଚିତ । ଚୁଆ ଚନ୍ଦନେ ପିଚିକା ରଚିତ ।
ସୁମନ ମଣ୍ଡନ । ବିନା ଅଳଙ୍କାରେ ଯହିଁ ସୁମନ । ୫ ।
କ୍ଷଣେ ଭ୍ରମ ନୋହି ପ୍ରିୟ କିଶୋରୀ । ବଡ଼ଭୀ ବିଳାସ ଦେଲେ ପାଶୋରି ।
ପ୍ରବାଳ ନାବରେ ଭବରେ ବସି । ପରିବାଦିନୀ ବାଦନ ପ୍ରକାଶି ।
ବୋଲଇ କୁମାରି । କେଳି ପ୍ରବୀଣା ତୁ ବୀଣା ମୋହର । ୬ ।
ଅଶେଷ ରାଗ କରିବାକୁ ଜାତ । କେ ସରି ଅଛି ରଞ୍ଜିବାକୁ ଚିତ୍ତ ।
ଏଣୁ କରି ସାର ଗୁଣା ମଞ୍ଜୁଳା । ସ୍ୱର୍ଣକଷ ତୁମ୍ବୀ ବହିଛୁ ବାଳା
ହେଉଛି ମୋ ମନ । ଶୁଣିବି ଥରେ କଲେ ଗୀତ ଗାନ । ୭ ।
ଚତୁରୀ ସ୍ନେହ ଘନୁରୀ ବଢ଼ାଇ । ଦଣ୍ଡେ ଛାଡ଼ି ଦେଇ ଶୁକ ପଢାଇ ।
ବନ ପ୍ରିୟ ଲଭି ମୁନି ବିଭୂତି । ସପତ ସ୍ୱର ବିଶୋରି ଦିଅନ୍ତି ।
ତା ରସିକ ଜାଣି । ସ୍ନେହ ଭରେ ଭରେ ଇଙ୍ଗାଇ ଆଣି । ୮ ।

---

(ଅତ୍ୟନ୍ତ ପ୍ରିତିକର) ଅମୃତାକାର (ପିପଳି ପ୍ରଭୃତି ବୃକ୍ଷର ଆକର-ସ୍ଥାନ) ହୋଇଛି । ନଦୀ ପକ୍ଷରେ ଅମୃତ (ଜଳ)ର ଆକର ହୋଇଛି । ବଣ ଯୋଗୀ ( ସଂଯୋଗୀ ଦମ୍ପତି ) ମାନଙ୍କ ମନ ମୁଗ୍ଧ କରୁଛି । ନଦୀ ଯୋଗୀମାନଙ୍କର ସ୍ନାନ କରିବା ଭଳି ପରିସ୍କାର ହୋଇଛି । ବଣ କାମ ଶରଳି ( ଅଶୋକ ପ୍ରଭୃତି କାମର ଶର ); ନଦୀ ପକ୍ଷ—ଭୀମ (ଯଥେଷ୍ଟ) ଶରଳୀ ( ଜଳଚର ପକ୍ଷୀ )

୫—କାନ୍ତ କାନ୍ତା—ଚନ୍ଦ୍ରଭାନୁ ଲାବଣ୍ୟବତୀ; କୁଞ୍ଜ କୁଟୀର—କୁଞ୍ଜବଣ; ଅମ୍ବୁଜ କୁଟୀର—ଦୀପଦଣ୍ଡି; ଅନୁସରୀ—କାଳୋଚିତ; ଚରିତ—କ୍ରୀଡ଼ା; ଅନୁସରି—ଆଚରଣ କରି; ବିନା ଅଳଙ୍କାରରେ ସୁମନ ମଣ୍ଡନ—ପୁଷ୍ପଭୂଷଣ; ସୁମନ—ସୁନ୍ଦର;

୬—ବଡ଼ଭୀ—କୋଠାଘର; ପ୍ରବାଳ (ପୋହଳା)ରେ ତିଆରି ହୋଇଥିବା ନୌକା, ଭବରେ —ପ୍ରେମରେ; ପରିବାଦିନୀ—ବୀଣା;

୭—କେ ସରି—କିଏସେ ସମାନ, ଏଣୁ କରି ତୁ ବୀଣା ପରି; ସାର ଗୁଣା-(ଶ୍ରେଷ୍ଠ ଗୁଣ ତୋ ଠାରେ ଅଛି ; ସ୍ୱର୍ଣ କଷ-(ସୁନା ଛିଆଣି) ବୀଣା ତୁମ୍ବୀ ସ୍ୱରୂପ ତୋ ପିଣ୍ଡ;

୮—ଆପଣା ଶୁଆକୁ ପଢାଇବାରେ ନିଜର ବୀଣା ବାଣୀ ପ୍ରକାଶ କଲ । ସେଥିରେ ବନ-ପ୍ରିୟ (କୋକିଳ) ଲଜ୍ଜାରେ ମୁନି ବିଭୁତି (ମୌନ) ଲଭିଲ—ତୁନି ହୋଇଗଲ । ସପତ ସ୍ୱର ମଧ୍ୟରୁ କୋକିଳର ପଞ୍ଚମ ସ୍ୱର । ସପତ ସ୍ୱର—[୧୨ ଛାନ୍ଦ ୨୩ ପଦ ଟୀକା ଦେଖ ] ।

କୋଳେ ବସାଇବା ବେଳେ ନାଗର । ଛଦସ୍ତ ତରଳ କରଇ ଦୂର ।
ଜାଣି ହସିଲ ହୋଇଲ ନାଗରୀ । ମଧୁରେ ଭଷଇ ଚିବୁକ ଧରି ।
ମାତୁଥାଇ ଡ଼ର । ଚିତ୍ର ଗ୍ରହି ହେଲ ଦିନୁ କାତର । ୯ ।
ଗୁରୁତର ପ୍ରୀତି ଦେଖିଲ ଦେବୀ । ଅଙ୍ଗନାର ଅଙ୍ଗେ ଅନାଇ ଭବି ।
ଫୁଲରୁ ଫୁଲ ରତନୁ ରତନ । ଫଳୁଁ ଫଳ ଜାତ ଅତି ଯତନ ।
ପ୍ରକାଶରେ ହାସ । ଯହିଁ ମନ ସେହି ପଘ ସେ ଦୃଶ । ୧୦ ।
ଘ୍ରରି ସୁମନ ସୁକାନ୍ତି ଏ ବହି । ସ୍ତିରୀ ମାନଙ୍କରେ ଅମୂଲ୍ୟ ଏହି ।
ତିନି ପକ୍ଷୀରେ ତ ଗାତ୍ର ଘଟିତ । ତନୁ ଏ ନିନ୍ଦୁଥିବ ବେନି ପତ୍ର ।
ଆଉ କଳେବର । ବିଧାନ ହୋଇଛି ପଞ୍ଚ ଫଳର । ୧୧ ।
ଚିତ୍ତେ ଚିନ୍ତା ନିଶ୍ୱାସିକା ଯୋଗିନୀ । ଲବେ ଅନ୍ତର ତ ନୁହନ୍ତି ବେନି ।
କି କରି ହରିବି କୁମାର ବର । ଶାପ କି ବ୍ୟର୍ଥ ହେବ ଦେବଙ୍କର ।
ବିଗ୍ରରି ମରଳୀ । ହୋଇ କରୁଥାଇ ସେ ବନେ କେଳି । ୧୨ ।
ଏମନ୍ତେ ତହିଁ କୁସୁମ ସମୟେ । ବାଳା କୁସୁମ ସମୟ ଉଦୟେ ।
ଘ୍ରରି ମିତ୍ରଙ୍କୁ କୁମାର ଡ଼କାଇ । ଘ୍ରରି ସଜନୀଙ୍କି ନୃପଜା ନେଇ ।
ଭିନ୍ନ ଭିନ୍ନ ହୋଇ । ଦିନରେ କେଳି ବିରଚିଲେ ସେହି[୧] । ୧୩ ।

---

ପାଠାନ୍ତର—୧ ଛନ୍ଧି, ।

---

୯—ତରଳ—ରନ୍ନହାର; ମାତୁଥାଇ ଡ଼ର—ଲଜ ମାତୁଥାଏ—ମାନ କଲ 'ଦିନ ଠାରୁ ୮୩୬ ଛାନ୍ଦ ୩୯ ପଦ ଦେଖ)

୧୦—ଦେବୀ—(ନିଶ୍ୱାସିକା ଚଣ୍ଡୀ); ଅଙ୍ଗେ- ଏଠାରେ ମୂର୍ତ୍ତିକୁ; ହାସଟା ବଧୂଲି ଫୁଲରୁ ମଲ୍ଲୀକା କିମ୍ବା ମାଣିକ୍ୟରୁ ହୀର ଅଥବା ବିମ୍ବରୁ ନବଳି ଫଳପରି —ନବଳି ଫଳର ହାସ ସାମ୍ୟ ଅଳଙ୍କାର ଶାସ୍ତ୍ରରେ ଅଛି । ଯହିଁ ମନ (ପୂର୍ବୋକ୍ତ ଫୁଲ, ରନ୍, ଫଳ ଯେଉଁ କଥା ବିଗ୍ରରିବ)

୧୧—ଘ୍ରରିସୁମନ—ସୁନାରୀ ଚମ୍ପା ଷଣ, କେତକୀ; ତିନି ପକ୍ଷୀ—ଚକୋର—ସ୍ତନ,ଶୁକ—ନାଶା, ଖଞ୍ଜନ—ଆଖି; ବେନିପତ୍ର—ପଦ୍ମପତ୍ର ଉଦର, କଦଳୀ ପତ୍ର ପିଠି; ଆଉ କଳେବର (ସ୍ତନରେ) ପଞ୍ଚଫଳ (ଜମ୍ବୀର, ଟଭ, ତାଳ, ନଡ଼ିଆ, ବେଲ)

୧୨—ଶ୍ୱାସ ଯୋଗିନୀ—ଦେବତାଙ୍କ ନିଶ୍ୱାସରୁ ବାହାରି ଥିବା ଦେବୀ; ମରଳୀ—ମାଇହଂସ ।

୧୩—କୁସୁମ ସମୟେ—ବସନ୍ତ କାଳରେ; କୁସୁମ ସମୟ—ପୁଷ୍ପବତୀ ହେବା ସମୟ; କେଳି—କ୍ରୀଡ଼ାକୌତୁକ;

ଏକାଳେ ବହି ପ୍ରଚଣ୍ଡ ପବନ । ରଜେ ବୁଜି ହୋଇଗଲା ନୟନ ।
ମିତ୍ରସହ କୁମାରଙ୍କୁ ହରିଲା । ଏଳାବୃତ ଖଣ୍ଡ ବନେ ରଖିଲା ।
ନିବର୍ତ୍ତିଲା ବାତ । ସୁନ୍ଦରୀ ଜାଣିଲା ଅନ୍ତର କାନ୍ତ । ୧୪ ।

ମନେ କଲା ସେ ଅମର ପୁରୁଷ । ମେଳ କରିଥିଲା ମୋ ଭାଗ୍ୟବଶ ।
ଅପସରୀ ରସରଙ୍ଗ ଚିରୋଇ । ମୋହ ପାଶୁଁ କି ଅପସରି ଯାଇ ।
ମୁଁ ଅଭାଗ୍ୟବନ୍ତ । ଖଣ୍ଡ ତପଫଳ କଲା ଏମନ୍ତ । ୧୫ ।

ପ୍ରାଣୁ ଅଧିକ ଯାକୁ ଥାଇ କରି[୨] ତାକୁ ନିକି ଏଡ଼େ ନିରାଶ କରି ।
ଦାସୀ କରି ହେଲେ ରଖିଲ ନାହିଁ । ଭ୍ରମର ପ୍ରୀତି କେତେ କାଳ ଥାଇ ।
କି ସ୍ନେହକୁ କଲ । ଛାଡ଼ିଲ ପଗ କରି ଛଡ଼ାଫୁଲ । ୧୬ ।

ଏଡ଼େ କପଟକୁ ନୋହଇଁ ଭଳି । ଅନ୍ତର ହେବାକୁ କି ଦୋଷ କଲି ।
ତନୁ ପୁଲକ ନ ସହିଲ ଜନେ । ଏ ହଟ କରିଛି କି ଘେନି ମନେ ।
ମୁଁ ଆରମ୍ଭି ମାନ । ଘେନିବି ନାହିଁଟି ତୁଣ୍ଡ[୩] ବଚନ । ୧୭ ।

---

ପାଠାନ୍ତର— ୨, । ଯାହାକୁ କରିଥାଇ ପ୍ରାଣ ପରି । ୩, ମୃତ୍ୟୁ ।

---

୧୪—ରଜେ—ଧୂଳିରେ, ଏଳାବୃତଖଣ୍ଡ-ହିମାଳୟର ଉତ୍ତରକୁ ଏକ ଦେଶ—ମହାଭାରତ ପୁରାଣ ଆଦିରେ ବର୍ଣ୍ଣିତ । ପୃଥିବୀ ୯ଟି ଖଣ୍ଡ ବା ବର୍ଷରେ ବିଭକ୍ତ, ଯଥା—କୁରୁ, ହରିଣ୍ମୟ, ରମ୍ୟକ, ଇଳାବୃତ, ହରି, କେତୁମାଳା, ଭଦ୍ରାଶ୍ୱ, କିନ୍ନର, ଭାରତ; ଅନ୍ତର—ଅଲଗା ହୋଇ ଯାଇଛନ୍ତି, ଉଭେଇ ଯାଇଛନ୍ତି ।

୧୫—ଅମର ପୁରୁଷ— (ଦେବତା ) [ କପଟରେ ମଞ୍ଜକୁ ଆସିଥିଲ ପରି ] ଭାଗ୍ୟ ମୋର ବଶ (ଅଧୀନ) ହୋଇ ଅପସରୀ (ସ୍ୱର୍ଗର ଅପ୍ସରା ), ଚିରୋଇ—ମନେ ପକାଇ; ଖଣ୍ଡ ତପଫଳ—ତପସ୍ୟା ଖଣ୍ଡିତ ହେଲେ ଭଙ୍ଗ ଗଲେ ତାହାର ଫଳରେ କେତେକାଳ ସ୍ୱର୍ଗ ଭୋଗ କରି ପୁଣି ମଞ୍ଜକୁ ଆସନ୍ତି ବୋଲି ବିଶ୍ୱାସ ।

୧୬—ଭ୍ରମର ପ୍ରୀତି ଗୋଟେ ଫୁଲରେ ଚିର ନୁହେଁ । ଛଡ଼ାଫୁଲ—ଭ୍ରମର ଛାଡ଼ିବା ଫୁଲ ବା ଘେନି ସାରି, କାଢ଼ିବା ବାସି ଫୁଲ ।

୧୭—ଭଳି—ପାତ୍ର, ଭାଜନ; ଅନ୍ତର ହେବାକୁ—ତୁମେ ଅନ୍ତର ହେବା ଭଳି;ତନୁ ପୁଲକ- (ରୋମାଞ୍ଚ ଭଳି ମୋର କଷ୍ଟ)—ଏଠାରେ ସାମାନ୍ୟ କାମ ବାଧାର ମଧ୍ୟ ଶ୍ଳେଷ ଅଛି । ଆରମ୍ଭି—ଆରମ୍ଭ ଲେ (ଏଥର)

ଏମନ୍ତ ଲକ୍ଷି ଲୁଚିଥିବେ ବୋଲି । ଖୋଜିଲେ ସେ କେଳି କାନନ ବୁଲି ।
କାହିଁ ନ ପାଇଲେ ତରୁଣ ଈଶ । ବେଳୁ ବେଳ ଉଡ଼ିଗଲା ସାହସ ।
ସେ ଜ୍ୟୋତିଷ ବାଣୀ । ସଂକୁନ୍ୟେ* ଜାଣିଲ ବିଚ୍ଛେଦ ବୋଲି । ୧୮ ।
କର୍ଣ୍ଣାଟ ଜନକ ଜନକ ତାର । ଶୁଣି ଏ ଗୋଳ ହୋଇଲେ କାତର
ଇଷ୍ଟ ଦେବୀଙ୍କ ଉଗ୍ର କରାଇଲେ । ବିବୁଧ ଶାପୁଁ ବିଚ୍ଛେଦ ଜାଣିଲେ ।
ପୁରୋହିତ ସୁତା,–ବଦନୁ ଜାଣିଲ ନବ ବନିତା । ୧୯ ।
ସେହିଠାରୁ ସେ ଶୋଭ କୁବଳୟ । ଏକା ରଖିଲ କରକୁ ବଳୟ ।
ନୀରନିଳୟ ନେତ୍ର କୁବଳୟ । କରି କୁମାରଠାରେ କଲ ଲୟ ।
ତା ଗୁଣ କଳାପ । ମୃଣାଳନାଳ ମାଳେ କରେ ଜପ । ୨୦ ।
ତେଣେ ମାୟାଦୂର କୁମାର ଗୃହିଁ । ଶୋଭ ମନ୍ଦିର ମଦିରାକ୍ଷୀ ନାହିଁ ।
ନିଜ ଆଗମ ଅଭିଗମ ପରି । ସେ ସ୍ଥାନ ବନ ହୋଇଛି ମାଧୁରୀ ।
ବୋଇଲେ ରେ ଧନ । କାହିଁ ଲୁଚିଅଛୁ ଦେଖା ବଦନ । ୨୧ ।
କାହିଁକି ଦାଉରେ ଏଡ଼େ କପଟ । କପଟ ଭିତରେ ଯାଉଛି ଘଟ ।

---

ପାଠାନ୍ତର—*, ଶକୁନେ ।

---

୧୮–ସବୁ ସଖୀଯାକ ଖୋଜିଲେ । ସାହସ-ଭରସା; ସଂକୁନ୍ୟେ-ଝଡ଼ିଟକାଢିବା ପ୍ରଭୃତି ସକୁନ ବା ସୂଚକ ଚିହ୍ନ ଦ୍ୱାରା ।

୧୯–କର୍ଣ୍ଣଟ ଜନକ–କର୍ଣ୍ଣାଟ ରାଜାଙ୍କର ପିତାପରି-ରାଜା; ବିବୁଧ–(ଦେବତା) ଶାପରୁ ବିଚ୍ଛେଦ ଏବଂ ଏହା ପୁରୋହିତ ଝିଅଠାରୁ ନବବନିତା (ବୋହୁ, ଯୁବରାଣୀ) ଜାଣିଲ ବୋଲି ଜାଣିଲେ । ଦେବୀଙ୍କି ଉଗ୍ର କରାଇବା ଅର୍ଥାତ୍ ବିଭେ କରାଇବା ଏବେ ମଧ୍ୟ ଗ୍ରାମ ମାନଙ୍କରେ ଚଳେ ।

୨୦–ଶୋଭର କୁବଳୟ (ଝୋଟା) ପରିଶିଷ୍ଟ ଛାନ୍ଦ ୨ୟପଦ ଟୀକା ଦେଖ। ବଳୟ (ଅହ୍ୟ ଚିହ୍ନ କାଚ) ଛଡ଼ା ଆଉ ସବୁ ଅଳଙ୍କାର କାଢି ପକାଇଲା । ନେତ୍ର କୁବଳୟ–ପଦ୍ମ ପରି ଆଖି । ନୀରନିଳୟ–ପାଣି ବା ଲୁହର ସର୍ବଦା ସ୍ଥାନ କରି (କଲଣି) ତା ଗୁଣ କଳାପ (କୁମାରର ଗୁଣମାନ); ମୃଣାଳ ନାଳ ମାଳେ–ପଦ୍ମନାଳକୁ ଗଣି ଜପାମାଳା ପରି କରି ରହିଁରେ । ବିରହ ତାପରେ ମୃଣାଳ ମଧ୍ୟ ଦରକାର ହୁଏ ବୋଲି ଅଳଙ୍କାର ଶାସ୍ତ୍ରର ମତ ।

୨୧–ଶୋଭ ମନ୍ଦିର (ଶୋଭର ଘର ପରି); ମଦିରାକ୍ଷୀ–ଖଞ୍ଜନ ନେତ୍ରୀ; ନିଜ ଆଗମ ଅଭିଗମ–ନିଜର ସୁନ୍ଦର ଉପବନ ବା ରତ୍ନସୋଦୟବନ;

୨୨–ଚେତନା ବୁଡ଼ିଗଲେ ଦୁଃଖ ଭେଦ ହୁଏ କି ନାହିଁ ସନ୍ଦେହ ହେଉଛି । କାହିଁକିନା

ଘଟ ଆଉ କେତେଦିନ ରହିବ । ଜୀବ ଯେବେ ଭିନ୍ନ କଲ ଦଇବ ।
ବୁଡିଲେ ଚେତନା । ଭୋଗ ନ କରନ୍ତିଟିକି ବେଦନା । ୨୨ ।
ଭୋଗ କରୁଥାଇଁ ଯୋଗରେ ମୁହିଁ । ଯୋଗରେ ଶିବ ଯୋଗରେ ମନାଇଁ ।
ଯାହା ହେଲା ତୋର ମୋର ବିଚ୍ଛେଦ । ନୋହିଲା କାହିଁପାଇଁ ଶିରଛେଦ ।
ଯୁବାଙ୍କୁ ଯୁବତୀ,–ବିଚ୍ଛେଦରୁ ନାହିଁ ବଡ଼ ବିପତ୍ତି । ୨୩ ।
ଦାସ ବୋଲିବାକୁ ପାଇଲେ ଲାଜ । ଦାସ ହୁଅନ୍ତି କିପାଁ କଲୁ ତ୍ୟାଜ ।
ନାହିଁ ତୋର ମୋ ତିଳକ*ଅନ୍ତର । ତରୁଣୀ–ତିଳକ ତିଳକ ମୋର ।
ଘେନ ରେ ବନିତା । ମୁଁ ତୋର ପୟର ଅଳକ୍ତାଇତା । ୨୪ ।
ମଞ୍ଜିଷ୍ଠାରଙ୍ଗ କି ଝୀନ ବସନ । ଧୋଇ ଦେଲେ ଛାଡ଼ିଯାଏ ବସନ ।
ସେହି ପରକାରେ ପଙ୍କଜ ମୁହିଁ । ଛାଡ଼ିଲେ ତୁ ତ ମୁଁ ଛାଡ଼ିବି ନାହିଁ ।
ମୋ ସବୁ ଭରସା । ରସା ମଧ୍ୟରେ ଏକା ରସାଳସା । ୨୫ ।
ପୁଣି ଭ୍ରମେ ଭ୍ରମେ ବିପିନ ଘଳେ । ଯହିଁ ପାଦପରେ ପଲ୍ଲବଚଳେ ।
ଝିଙ୍କାରୀ ଝଙ୍କାର ଶୁଣଇ ଯହିଁ । ମନେ କରେ ବାଳାମଣି ଆସଇ ।
ଲୁଚିଥିଲ କାହିଁ । ମୋହର ମାନସ ବୁଝିବା ପାଇଁ । ୨୬ ।
ଯହିଁ ଲତାପରେ ଭକ୍ଷନ୍ତି ପିକେ । ପ୍ରତେ ପଗଣ ବନ୍ଧୁ ପଗ ଡ୍ୱାକେ ।
ନିକଟକୁ ଯାଇ ରମଣୀମଣି । ଲତା କୋଳ କରି ଧରଇ ପୁଣି ।
ପୁନଃ ପୁନଃ ଚୁମ୍ବେ । ହାସ ଓଷ୍ଠ ଛବି ପୁଷ୍ପ ପଲ୍ଲବେ । ୨୭ ।

---

ପାଠାନ୍ତର— * ମୋର ଛାଳ

ମୋର ଜୀବ ଭିନ୍ନ ହୋଇ ମଧ୍ୟ ଘଟରେ (ଶରୀର ମାତ୍ରରେ)ଦୁଃଖ ଭୋଗ ହେଉଛି ।

୨୩–ଯୋଗରେ–୧.ସଂଯୋଗରେ, ୨.ଦଇବକୁ, ୩.ତପସ୍ୟାରେ;

୨୪-ତ୍ୟାଜ–ତ୍ୟାଗ;ତିଳକ–୧.ଟିକକ କ୍ଷଣକ ୨.ଶ୍ରେଷ୍ଠ,୩.ମୁଣ୍ଡରଚିତା; ଅଳକ୍ତାଇତା–ଅଳତାଚିତ୍ର;

୨୫–ମଞ୍ଜିଷ୍ଠାରଙ୍ଗ–ଏ ଦେଶରେ ଆଛୁ ଓ ମଞ୍ଜିଷ୍ଠାରୁ ଅତି ସଢା ଲାଲରଙ୍ଗ ତିଆରି ହେଉଥିଲା; ଝୀନବସନ-ପତଳାଲୁଗା; ହେ ପଙ୍କଜ ମୁହିଁ, ରସା–ପୃଥିବୀ; ରସାଳସା–ରସବତୀ, ଲାବଣ୍ୟବତୀ;

୨୬–ଭ୍ରମେ–୧. ଭ୍ରମରେ, ୨.ବୁଲେ; ଚଳେ–ହଲେ(ହାତପରି); ଝିଙ୍କାରୀ ଝଙ୍କାର ଗୋଡ଼ପା ଝୁଣ୍ଟିଆ ଶବ୍ଦ ପରି, ବୁଝିବାପାଇଁ-ବିଢ଼ିବା ପାଇଁ;

୨୭-ରମଣୀମଣି–ଯୁବତୀବତୀ ବୋଲି ବିଶ୍ୱରି ହାସ ପୁଷ୍ପରେ ଓଷ୍ଠ ପଲ୍ଲବରେ;[ରଘୁ–

ଛାଡ଼ି ଦେଇଣ ଉଡ଼ିଗଲେ ପିକ । ପ୍ରିୟାକୁ ସୁମରି କରଇ ଶୋକ ।
ଫୁଲକାଇ ଦେଉଥାଇ ଶରୀର । ତାହାରି ଭାବେ ହୋଇ ଜରଜର ।
　　ଫୁଲମାଳା କରି । ତମାଳେ ମଣ୍ଡଇ କେଶ ବିସ୍ତରି । ୨୮ ।
ନାରିକେଳ ଫଳ ନାରୀ-ଉରଜ । ସମାନୁ ଚଢେ଼ ଦେଖାଇ କରଜ ।
ଆଲିଙ୍ଗନେ ତୁହି ବିଲଗ କରୁ । ଏବେ ଧନ ଭିନ୍ନ ତୋହ ଯୋଗରୁ ।
　　କରଗତ ହେଲେ । ଏଥର ସେ ଦଣ୍ଡ ପାଇବୁ ଭଲେ । ୨୯ ।
କହଇ ବୃକ୍ଷଙ୍କୁ ଅଛ ପାବନୀ । ଜାମ୍ବବ ଡ଼ାଳିମ୍ବ କୁନ୍ଦକୁ ଘେନି ।
ପୁଣି କଞ୍ଚଣ ପନସ ଚନ୍ଦନ । ଏହି ହୋଇଛନ୍ତି ମହାରଞ୍ଜନ ।
　　ଦିଅ ମୋ ବନିତା । ସ୍ୱାଗମଙ୍କୁ ଦେଇ ହଜିଲ ସୀତା । ୩୦ ।
ଯେଣୁ ସାଧୁ ନାମ ସ୍ମରଣ କଲ । ଶୂନ୍ୟେ ବଲ୍ଲକୀ ଶବଦ ଶୁଭିଲ ।
ଯୁବରାଜନ ମନରେ ନ ଭଜ । ବାଳା ଲଭିବ କାରୁଣ୍ୟ ସମାଜ ।
　　ଅମର-ଶାପରେ । ହେବ ବିଚ୍ଛେଦ ମାତ୍ର ସମ୍ବତ୍ସରେ । ୩୧ ।
ନାରଦ ମୁଖୁଁ ଗଲ ଦିଶି ଦିଶି । ହେତୁ ପ୍ରସରିଲ ସେଠାରେ ବସି ।
ଜାଣିଲ ନୁହଇ ନିଜ ଭୁବନ । କାବେରୀ ତଟ ଧନୋଦୟ ବନ ।
　　ଦିଶେ ମେରୁଗିରି । ମହୀ-ମହିଳା ଭଜ ସ୍ତନ ପରି । ୩୨ ।

---

ବଂଶରେ କାଳିଦାସ "ସ୍ତବକ ନମ୍ର ଅଶୋକ ବଲ୍ଲରୀ"ରେ ରାମଚନ୍ଦ୍ରଙ୍କ ସୀତାଭ୍ରମ ଏହିପରି ବର୍ଣ୍ଣନା କରିଛନ୍ତି ।)

୨୮-ଶରୀର-ନିଜ ଶରୀର; ଫୁଲମାଳ ଗୁନ୍ଥି ତମାଳରେ ଦିଏ ।

୨୯-ନଡ଼ିଆକୁ ନଖ ଦେଖାଇ ଚଢେ଼(ଚଢେ଼, ଧମକାଏ); ଆଲିଙ୍ଗନ ବେଳେ ତୁ ମଝିରେ ରହି ବିଲଗ(ଅଲଗା) କରିବାରୁ ଏବେ ସେ ସତରେ ଅଲଗା ହୋଇଗଲା ।

୩୦-ହେ ବୃକ୍ଷ ତୁମ୍ଭେମାନେ ସୁଗ୍ରୀବଙ୍କ ସେନାଙ୍କ ପରି ପାବନୀ (୧,ହରିଦ୍ରାଗଛ, ୨.ହନୁମାନ) ଜାମ୍ବବ (୧.ଜାମୁଗଛ, ୨.ଜାମ୍ବବାନ ଋକ୍ଷ ସେନାପତିଙ୍କ ନାମ); ଡ଼ାଳିମ୍ବ, କୁନ୍ଦ, ପଣସ, କଞ୍ଚନ, ଚନ୍ଦନ(୧.ବୃକ୍ଷମାନଙ୍କର ନାମ, ୨.ସୁଗ୍ରୀବ ସେନାର ସେନାପତିଙ୍କ ନାମ)ଘେନି ଅଛ । ଏହି(ଏହିମାନେ)ମହାରଞ୍ଜନ(୧.ଅତିସୁନ୍ଦର, ୨.ତେଜରେ ଆରଞ୍ଜନ, ସୁନ୍ଦର)

୩୧-ସାଧୁନାମ-ଉପରର ନାମସବୁ; ଶୂନ୍ୟ ଆକାଶରେ ବଲ୍ଲକୀ (ବୀଣା); କାରୁଣ୍ୟ (ଶୋକ);ସମ୍ବତ୍ସରେ-ଏକ ବର୍ଷରେ ।

୩୨-ନାରଦ ଶୂନ୍ୟରେ ବୀଣାରେ କହୁଥିଲେ; ଦିଶି ଦିଶି-ଗ୍ରହିଅଢ଼େ;ହେତୁ ପ୍ରସରିଲ-

ଅର୍ଦ୍ଧ ଘଗରେ ଚନ୍ଦ୍ର ସୂର୍ଯ୍ୟ ଗତି । ଉନ୍ନ ଶୃଙ୍ଗମାନ ଦଳୁ ଅଛନ୍ତି ।
ମନେକଲ ଏ ଏଳାବୃତ ଖଣ୍ଡ । କନକ ଧୂଳି ମଣିଶିଳ ଗୁଣ୍ଡ ।
ଭୂମି ତା ଦେଖାଇ । ଗୃହିମିତ୍ର ସଙ୍ଗେ ବ୍ୟାକୁଳ ହେଇ । ୩୩ ।
ଦେଖିଲେ ତାକୁ ଗନ୍ଧର୍ବ କିନ୍ନରେ । ଏମନ୍ତ ଆଶଙ୍କା କଲେ ମନରେ ।
ଦେଖିବେ ଯେବେ ଏ ହଂସ ମାଧୁରୀ । ଭ୍ରଷ୍ଟା ହୋଇବେ ଆମ୍ଭ ମନୋହାରୀ ।
ଡ଼ାକି ତାକୁ ନେଲେ । ଅଗମ୍ୟ ମଣି ଗହ୍ୱରେ ଥୋଇଲେ । ୩୪ ।
ସ୍ତ୍ରିର ପୁରୁଷ ଅନୁରାଗ ତୁଳା । ହେବ ପାତ୍ର ବିଧି ବିଚ୍ଛେଦ କଲା ।
ବେଦ[୭]? ଜଡ଼ ହେଲେ ରସିକପଣ । ବଡ଼ ହୋଇଅଛି ସୁଜନେ ଜାଣ ।
ଏ ବିଚିତ୍ର ଛାନ୍ଦ । କହିଲ ରାମଚନ୍ଦ୍ର ଭୂପଚନ୍ଦ୍ର । ୩୫ ।

---

ପାଠାନ୍ତର—୭, ହେତୁ ।

---

ଜ୍ଞାନ ପଞ୍ଜିକ;ଭୁବନ–ଗଙ୍ଗା, ମେରୁ ପର୍ବତ ଏପାଖେ ଇଳାବୃତ ବର୍ଷ ବୋଲି ଏଠାରେ କୁହାଯାଇଛି । ମହୀମଣ୍ଡିକା–(ପୃଥିବୀରୂପ ସ୍ତ୍ରୀର)

୩୩–ମେରୁର ଅଧକଠାରୁ ଉପରକୁ ଚନ୍ଦ୍ର ସୂର୍ଯ୍ୟ ଯାଆନ୍ତି ବୋଲି ପୌରାଣିକ ପ୍ରବାଦ । ଏଳାବୃତଖଣ୍ଡର ଧୂଳି ସୁନା ଓ ମଣିଶୀଳର ଗୁଣ୍ଡ ।

୩୪–ଗନ୍ଧର୍ବ କିନ୍ନରମାନେ ଏଳାବୃତ ବର୍ଷ(ଖଣ୍ଡ)ରେ ଥାନ୍ତି । ମନୋହାରୀ–ପତ୍ନୀ; ଅଗମ୍ୟ–ମଣି ଗହ୍ୱର–କେହି ନ ଦେଖିବା ଭଳି ମଣିଖଞ୍ଜଗୁହା ।

୩୫–ବିଧି–(ବିଧାତା) ବେଦ ଜଡ଼ ହେଲେ ମଧ୍ୟ ରସିକ ପଣରେ ବଡ଼ ହୋଇଛି । ସେ ଅନୁରାଗରେ ଆପଣା ଆପଣା ଭିତରେ ତୁଳା ହେବା ପାତ୍ର(କେହି କାହାକୁ ଭଣା ନ ହେବା ଭଳି ସ୍ତ୍ରୀ ) ପୁରୁଷକୁ ବିଚ୍ଛେଦ କଲା ।

***

# ଚତ୍ୱାରିଂଶ ଛାନ୍ଦ
## ଗ୍ରୀଷ୍ମାନୁ ଚନ୍ତା
### ( ବିରହେ ଗ୍ରୀଷ୍ମଋତୁ ବର୍ଣ୍ଣନା )
#### ରାଗ–ବଙ୍ଗଳାଶ୍ରୀ

ଗ୍ରୀଷମ ସମୟ ପ୍ରବେଶ ହୋଇଲା ନବୀନା ଦୂତୀ ପ୍ରକାର ।
ପତି ସଙ୍ଗତେ ଶୁଆଇ ଚନ୍ଦ୍ର କରେ ଲାଜ କରାଇଲା ଦୂର ।
ବିରହି ଚିତା ପରାୟ ଦିଶେ ଦିଶେ[୧] ପ୍ରକଟ[୨] ବନ ଅନଳ ।
ରଜନିକର ପବନେ ଉଡ଼ି ଦେବଦୀପକୁ କଲେ ଆକୁଳ । ୧ ।
ସରିତ ହୋଇଲେ ଜରତୀ ପରାୟେ ଘନରସ ବିହୀନରେ ।
ରସିକ ରସାଧବ ପ୍ରାୟେ ସରସୀ ମହିଷୀ ଆଲିଙ୍ଗନରେ ।
ମୃଗେ ପ୍ରକଟ ରସନା କରଇ ବିପରୀତ–ରତାପ୍ରାୟେ ହୋଇ ।
ପତ୍ରାବଳୀ ହୀନେ ରତାନ୍ତ ନାୟିକା ସମାନ ତରୁଏ ବହି । ୨ ।
ଜନେ ଚନ୍ଦ୍ରମାରେ ରଜିତ ହୋଇଲେ ଗ୍ରନ୍ଦନୀ ଗତି ଯେମନ୍ତ ।
ତୃଷ୍ଣା ରାଶିରେ ଯୁକ୍ତ ହେଲେ ଶାର୍ଦ୍ଦୂଳୀ ମୃଗ ମହିମସ ବତ ।

ପାଠାନ୍ତର—୧, ଜଳନ୍ତ । ୨, ମିଶିଲା ।

୧– ଗ୍ରୀଷ୍ମ ସମୟ ଦୂତୀ ପରି ନବୀନାକୁ ( ମୁଗ୍ଧା ନାୟିକାକୁ ) ଲଜ୍ଜା ଦୂର କରାଇଲା । ପ୍ରକାର–ପରି; " ପ୍ରକାରୌ ଭେଦ ସାଦୃଶ୍ୟୌ "–ଇତ୍ୟମରଃ । ଚିତା–ଶ୍ମଶାନାଗ୍ନି; ଦିଶେ ଦିଶେ–ଚାରିଆଡ଼େ; ଦେବଦୀପ–ଆଖି ; ରଜନିକର–ଧୂଳି ପଟଳ; "ଦେବ ଦୀପଂ ତୁ ଲୋଚନଂ"–ଇତି ତ୍ରିକାଣ୍ଡ ଶେଷଃ । ଏ ପଦ ଏବଂ ଏହିପରି ପଦ ମାନଙ୍କରେ ଉପମା ଶ୍ଳେଷ ଅଛି ।

୨– ସରିତ–( ନଦୀ ) ଜରତୀ–( ବୁଢ଼ୀ ) ପରି; ଘନରସ ( ୧. ଜଳ ୨. ଗାଢ଼ ଶୃଙ୍ଗାର ); ରସାଧବ–ରଜା; ସରସୀ–ପୋଖରୀ; ମହିଷୀ–୧. ରାଣୀ, ୨. ମଇଁଷି; ଖରାଦିନେ ମଇଁଷିମାନେ ପୋଖରୀରେ ପଡ଼ନ୍ତି । ରସନା–୧. ଜିଭ (ତୃଷା ହେତୁରୁ) ୨. ଅଣ୍ଟାସୂତା ( ଉପରକୁ ରହିବାରୁ ); ପତ୍ରାବଳୀ–୧. ସ୍ତନ ଓ ଗଣ୍ଡସ୍ଥଳର ଚିତ୍ର ୨. ଗଛର ପତ୍ରମାନେ ;

୩– ଚନ୍ଦ୍ରମାରେ–୧. ଚନ୍ଦ୍ର ( କର୍ପୂର )ରେ–ମାରେ ( କାମରେ ) କିମ୍ବା ଚନ୍ଦ୍ରମା

କରେ ତାପିତ କରେ ରବି ମଣ୍ଡଳ ପ୍ରତାପୀ ରଜା ଯେସନ ।
ଭୁଜଙ୍ଗ ପକ୍ଷ ଛାଇରେ ରହି ଶିଖୀ କୁଳଟା ନାରୀ ସମାନ । ୩ ।
କାମ ଚଳାଇଲା ସରଣୀ ଝାମୀରେ ନାଗରୀ ଦୋଷୀ ବିଦେଶୀ ।
ନବୋଢ଼ା ଗାଢ଼–ସୁରତ କାଳ ପ୍ରାୟ ଭୃଙ୍ଗ ମଲ୍ଲୀ ମର୍ଦ୍ଦି ଘଷି ।
ଧୀବର–ରମା କଳେବର ପିରୟ ଗନ୍ଧେ ସିନ୍ଧୁବାର ଫୁଲ ।
ଝିଙ୍କାରୀ ଝଙ୍କାର ଝୁଣ୍ଟିଆ ଶବଦେ ବିପିନ ନର୍ତ୍ତକୀ ତୁଲ୍ୟ । ୪ ।
ଏତେ ପ୍ରଭଞ୍ଜନ ରଞ୍ଜନ ହୋଇଲା ବ୍ୟଜନ ଭିତରେ ପଶି ।
ବିନାଶିଲା ଘନୁସନ୍ତାପକୁ ଶଶୀ ଦିବସ ତାପକୁ ନାଶି ।
ଶ୍ଳେଷ୍ମା ଆଶ୍ରିତ ଗାୟକ ସ୍ୱର ପ୍ରାୟ ଶୁଭିଲା କୋକିଳନାଦ ।
ଏ ଋତୁ ରହି ଚନ୍ଦ୍ରଭାନୁ ବିରହରେ ଲଭି ବଲ୍ଲଭୀ ବିଚ୍ଛେଦ । ୫ ।

---

( କର୍ପୂର ) ରେ, ୨. ଚନ୍ଦ୍ରରେ ; ତୁଳା ରାଶିରେ–୧. ତୁଳା ସମୂହରେ ( ଶିମୁଳୀ ଗଛ ଫଳ ଗ୍ରୀଷ୍ମ କାଳରେ ବକଡ଼ା ଫାଟି ତୁଳା ବାହାରି ପଡ଼େ ), ୨. ତୁଳା ରାଶିରେ; ମୃଗ ମଳିମସ-ଚନ୍ଦ୍ର; ଚନ୍ଦ୍ର ପ୍ରତି ମାସରେ ସବୁ ରାଶିରେ ରହନ୍ତି; ଏଠାରେ ତୁଳା ରାଶିରେ ଗ୍ରୀଷ୍ମ କାଳରେ ଚନ୍ଦ୍ର ରହିବାର ଅର୍ଥ ଏହି ହୋଇ ପାରେ ଯେ– ୧. ଚୈତ୍ର ଓ ବୈଶାଖ ପୂର୍ଣ୍ଣିମାରେ, ୨. ଖଞ୍ଜଣା ନିମନ୍ତେ; "ବହିର୍ହସ୍ତାଂଶବଃ କରାଃ"–ଇତ୍ୟମରଃ । ଭୁଜଙ୍ଗ-୧. ସାପ ୨. ବିଟ ପୁରୁଷ; ପକ୍ଷ ଛାଇରେ– ୧. ପକ୍ଷତଳେ ୨. ତା ସପକ୍ଷ ହୋଇ ସେହିଁ ଆଚରଣରେ; ଖଗରେ ଧକେଇ କରି ମୟୂର ଛାଇରେ ସାପ ପଡ଼ିଯାଏ–ଏହି ଭାବ । ସେ ମଧ୍ୟ ତାକୁ ଖାଇବାକୁ ମନ ପଶ୍ୟ କରି ପାରେ ନାହିଁ ।

୪–ସରଣୀ ( ବାଟ ) ସେ ଝାମି ( ଝାମୁଡାତ ନିଆଁ ) ପରି ହେଲା; ଝାମୁ ଯାତ୍ରାରେ ନିଆଁ ଉପରେ ଚାଲି ଲୋକେ ହଟ ଚମଟ ଦେଖାନ୍ତି । ନାଗରୀ–ରସିକା ନାରୀ; ଏଠାରେ କେବଳ 'ନାଗରୀ' ସହରର ସ୍ତ୍ରୀ ଏପରି ଅର୍ଥ ନୁହେ । କାମ–ଯଥେଷ୍ଟ ଭାବରେ କନ୍ଦର୍ପ ଅର୍ଥ ଏଠାରେ ସଙ୍ଗତ ହେବ ନାହିଁ । ନବୋଢା–ନୂତନ ବିବାହିତା, ନୂଆ ହୋଇ ଆସିଥିବା; ମଲ୍ଲୀ–୧ ଭୃଙ୍ଗ ପକ୍ଷରେ ମଲ୍ଲୀ ଫୁଲ; ୨ ନବୋଢା ପକ୍ଷରେ କଷ୍ଟରେ କରିବା ଶବ୍ଦ; "ମଲ୍ଲୀ ଫୁଲ, ପୁଷ୍ପେ ନିଷ୍ଠୁରେଚ ମଲ୍ଲୀ ନିଷ୍ଠୁର ଭାଷଣେ"–ଇତି ଶବ୍ଦାର୍ଣ୍ଣବେ; ଧୀବର ରମା–କେଉଟୁଣୀ; ଗନ୍ଧେ-ଗନ୍ଧାଏ– (ଗଞ୍ଜାମରେ କହନ୍ତି 'ଗନ୍ଧୁଛି' 'ଗନ୍ଧିଲା' ଇତ୍ୟାଦି । ଅନ୍ୟ ଅଞ୍ଚଳରେ ତାହା ସ୍ୱାର୍ଥ ପ୍ରୟୋଜକ ହୋଇ 'ଗନ୍ଧାଉଚି' ଇତ୍ୟାଦି ହୁଏ । ) ସିନ୍ଧୁବାର ଆର୍ଲିଷି ଜାତି (ଫୁଲ)

୫-ଏତେ–ଅତି ଅଳ୍ପ ହେଲେ ମଧ୍ୟ; ରଞ୍ଜନ-ପ୍ରୀତିକର; ବ୍ୟଜନ–ବିଞ୍ଚଣା; ଶ୍ଳେଷ୍ମ–

ପରେ ପରେ ଆଣି ପରଚେ କରଇ ବିଧାତା ଘଟନା[୩] ଦେଖ ।
ପୀରତି ହୋଇ କଥାଏ ଉପୁଜଇ ପରମ ରମ୍ୟଟି ସୁଖ ।
ପ୍ରାଣରୁ ଅଧିକ ଯଉଁ ଘେନା ଘେନି ତାହା ଯାହା କରେ ଭିନ୍ନ ।
ପବି ପତନ କିପାଁ ଶିରେ ନ କରେ ଜାଣିଲି ଧାତା [୪] ପିଶୁନ । ୬ ।
ମନ ଜାଣିବାକୁ ପ୍ରିୟାସମ ଜଣେ ଖୋଜିଲେ ନ ଥିବ କାହିଁ ।
ମୋ ମନ ଘେନୁଛି ପ୍ରୀତି ଘେନିମାକୁ ତାହାରି ସମାନ ସେହି ।
ତାହା ପ୍ରତିବିମ୍ବ ସୁନ୍ଦର ପଣକୁ ତାକୁ ପ୍ରତିତୁଲ ଅଛି ।
ଏମନ୍ତ ପଦାର୍ଥ ପାଇ ହରଇଲେ ପଶୁ କି ପାରିବ ମୂର୍ଛି । ୭ ।
ଜାଣି ନ ଥିଲକୁ ଏ ରସ ଏମନ୍ତ ସୁରକୁ ଦହିଲେ ହର ।
ଜାଣିଲ ଦିନରୁ ଯୁବତୀ କି କଲେ ଅର୍ଦ୍ଧ ଅଙ୍ଗେ ଅଙ୍ଗୀକାର ।
ଆଜନ୍ମ ବ୍ରହ୍ମଚାରୀ ପଣେ କେ ବଡ଼ ଅଛି ରଷ୍ୟଶୃଙ୍ଗଠାରୁ ।
ନିଜ ଦୀକ୍ଷା ଛାଡ଼ି ଶିକ୍ଷା କଲେ ରସ ରୂପାଜୀବା କରି ଗୁରୁ । ୮ ।
ସୁଧା ସ୍ୱାଦୁ ପାଇ ଶିରଛେଦ ରହୁ ନ ଛାଡ଼ିଲ କଦାଚିତ ।
ପ୍ରୀତି ଏମନ୍ତ ଚନ୍ଦ୍ରମଣି ପାଷାଣ ଚନ୍ଦ୍ରରୁହିଁ ଦ୍ରବୀଭୂତ ।
ପ୍ରୀତି ଅନ୍ତର ଯେମନ୍ତ ହୋଇ ହେଲେ କାଷ୍ଠ ଫାଟି ଯାନ୍ତା ସତେ ।
କାହିଁ ଘଟନା ହୋଇଛି ଘଟ ମୋର ଗୋଚର ନୋହିଛି ମୋତେ । ୯ ।

---

ପାଠାନ୍ତର ୩, ବିଧାନ ୪, ଅଛେ ।

---

ଆଣ୍ଠିତ—କପରେ ତୋଟି ବସି ଯାଇଥିବା, କୋକିଳର ସ୍ୱର ଗ୍ରୀଷ୍ମ କାଳରେ ଫଟା ଶୁଭେ ।

୬ରୁ୯—ପ୍ରୀତିର ବର୍ଣ୍ଣନା ଅତି ସୁନ୍ଦର; ପରେ ପରେ—କେହି କାହାର ଆପଣାର ନୁହେ; ପରଚେ—ଚିହ୍ନା; ଘେନା ଘେନି—ସ୍ନେହ, ପ୍ରଣୟ; ପବି—ବଜ୍ର; ପିଶୁନ—ନିଷ୍ଠୁର କିମ୍ବା କୁଚକ୍ରୀ; ହର ପାର୍ବତୀ ଅର୍ଦ୍ଧନାରୀଶ୍ୱର ବୋଲି ପ୍ରସିଦ୍ଧ । ରଷ୍ୟଶୃଙ୍ଗ — [ ୧୫ ଛାନ୍ଦ ୨୦ ପଦ ଟୀକା ଦେଖ । ] ନିଜଦୀକ୍ଷା—ବ୍ରହ୍ମଚର୍ଯ୍ୟ; ରସ—ଶୃଙ୍ଗାର; ରୂପାଜୀବା—ବେଶ୍ୟା ( ଜରତା ନାମ୍ନୀ ); ଶିରଛେଦ ରହୁ ପାଇ [ ୧୯ ଛାନ୍ଦ ୧୧ ପଦ ଟୀକା ଦେଖ ] ସ୍ୱାଦୁ—ରସ; 'ରସୋଗନ୍ଧେ ରସଃ ସ୍ୱାଦେ ତିକ୍ତାଦୌ ବିଷରାଗୟୋଃ ଶୃଙ୍ଗାରାଦୌରସେ ବୀର୍ଯ୍ୟେ ଦେହ ଧାତ୍ୱମ୍ବୁ ପାରଦେ''—ଇତି ଧରଣୀ । ଚନ୍ଦ୍ରକାନ୍ତ ମଣି ପଥର ହେଲେ ମଧ୍ୟ [ ୬ଷ୍ଠ ଛାନ୍ଦ ୪୧ ପଦ ଟୀକା ଦେଖ ] ବିରହରେ କାଠ ବି ଫାଟିଯାନ୍ତା । କାହିଁ—କାଠ ପଥରଠାରୁ କଠିନ ଏପରି କି ଦ୍ରବ୍ୟରେ; ଘଟ—ଶରୀର, ଦେହ;

ଏହା ସୁମରିବା ଠାରୁ ମରିବାର ଭଲ ଘେନୁ ଅଛି ମନେ ।
ଆଜଯାଏ ଆଜନମ ସୁଖୀ ଦୁଃଖ ଦେଖି ନ ଥିଲି ସପନେ ।
ନୀରଜ କଡୀ ଉରଜରେ କରଜ କ୍ଷତ କଲେ ବୋଲେ ଇଶି ।
ବିଶମ ବିଶିଖ ବିଶିଖକୁ ଲକ୍ଷ ସେ ହୋଇଲି ଏବେ ଆସି । ୧୦ ।
ମୋ ଭବ ଭବନା କରି ଝରିପଡ଼ି ନୀର ନିରନ୍ତରେ* ବହିଂ ।
ମୃଗ ଖଞ୍ଜନ ଗଞ୍ଜନ ଆଖିରେ ତା ଅଞ୍ଜନ ରଖିବ ନାହିଁ ।
ନୁଛି ହୋଇ ଯାଇ ନିଉଛାଉ ଥାଇ ଯହିଁ ବଦନକୁ ଇନ୍ଦୁ ।
କରୀବର କର୭ ପତନ କମଳ ମଳିନ ବହିବ ବନ୍ଧୁ । ୧୧ ।
ହୃଦ ବିନୁ ନିଦ କୁମୁଦହାସୀକି ପଲ୍ୟଙ୍କେ ଆସଇ ନାହିଁ ।
ଚଞ୍ଚଳେ ଅଞ୍ଚଳେ ମହୀରେ ମହିଳା ପଲ୍ଲବେ ଶୋଇବ କେହି ।
ଘଡ଼ି ଘଡ଼ିକରେ ନାଡ଼ୀ ଛାଡ଼ି ଯାଇ ହୋଉଥିବ ପରା ମୋହ ।
ବିରହେ ତପତ ହୋଉଥିବ ନବସପତବୟସୀ ଦେହ । ୧୨ ।
କିଶୋରୀ ତିଳକ ପାଶୋରି ଦେବନି ତିଳକ ରଚନା ଚିତ୍ତୁଁ ।
ତିଳକ୭ ଯୁଗ ପରସ ନ ସରିବ ଯୁଗଳ ନୋହିବା ହେତୁଁ ।
ରତି ଶ୍ରଦ୍ଧା ସୁଦୃଶାକୁ କି ଦଶା ଦେଇ ଦାରୁଣ ଦଇବ ।
ଚିତ୍ତେ ଯନ୍ତେ ନ ଥିଲି ମୋର ସହୀ ଅନ୍ତର ସହି ହୋଇବ । ୧୩ ।
ଦିନକ ଦିନକ କନକ ଅଙ୍ଗୀର ଅନେକ ଭବକୁ ଧ୍ୟାୟି ।
ଜୀବ ଥିବାଯାକ ଜୀବିକା କରି ମୁଁ ବୁଲୁଥିବି ଯୋଗୀ ହୋଇ ।

---

ପାଠାନ୍ତର—*, ନିରନ୍ତରେ । ୭, ନନ୍ଦାର ନକର । ୭, ଲବକ ।

---

୧୦–ଇଷି–ଇଷ୍ ବୋଲି କଷ୍ଟ ସୂଚକ ଶବ୍ଦ । ବିଷମ ବିଶିଖ (କାମ)ର ବିଶିଖ (ଶର) ।

୧୧–ନୀର–ଲୁହ; ଅଞ୍ଜନ–କଜଳ; ଲୁଛି–ଲଜ୍ଜିତ ହୋଇ, ସଙ୍କୋଚରେ; ନିଉଛାଉ ଥାଏ –ବନ୍ଦନା ବା ଅର୍ଚ୍ଚନା କରୁଥାଏ; କରୀବର କର ପତନ–ହାତୀ ଥୋଡ଼ ପାହଡ଼ରେ, ଉପଡ଼ା ହୋଇ ପଡ଼ିଥିବା; ହାତୀ ପଦ୍ମ ବନରେ ପଶିଲେ ଥୋଡ଼ ପାହାଡ଼ରେ ପଦ୍ମଲତା ଉପାଡ଼ି ଅସ୍ତ ବ୍ୟସ୍ତ କରି ପିଙ୍ଗିଦିଏ ।

୧୨–ଚଞ୍ଚଳେ-ବିରହ ଚଞ୍ଚଳତାରେ ସବୁବେଳେ ଚମକି ଚମକି; ଅଞ୍ଚଳେ–କାନି ପକାଇ; ପଦ୍ମ ପଲ୍ଲବରେ ଶୋଇବା ବିରହରେ ବିଧି ବୋଲି ଅଳଙ୍କାର ଶାସ୍ତ୍ର କହନ୍ତି; ନବସପତବୟସୀ–ଷୋଳ ବୟସୀ;

୧୩–ତିଳକ–୧. ଶ୍ରେଷ୍ଠ, ୨. ଚିତା (ସ୍ତନ ପ୍ରଭୃତିରେ ଚିତ୍ର), ୩, ଟିକକ, ଲବ ମାତ୍ରକ; ସହୀ ଅନ୍ତର–ପତ୍ନୀ ବିଚ୍ଛେଦ;

ଗୁରୁଶୀଳା ନାମ ଉଚାରୁ ଉଚାରୁ ମାରୁ ଏକା ମୋତେ ମାର ।
ରସିକ ସଂସାର ମଧ୍ୟରେ ପ୍ରଶଂସା ସାର ହୋଇ ରହୁ ମୋର । ୧୪ ।
ରସଲତା ପାଦେ ଅଳତା ରଞ୍ଜିବା ପାଇଁ ବଢାଇଲେ କର ।
ବନ୍ଧୁଲୀ-ଅଧରୀ ଧରି ତା ବୋଲଇ କୁସୁମେ କବରୀ କର ।
ବେଣୀଟି ବୋଲି କହିବାକୁ ଜାଣି ତା ନୋହିବ କାହିଁକି କହି ।
ଅସନମତ ସନମତ ସେ ମତ୍ତକାଶିନୀ ଭଙ୍ଗୀରେ ଥାଇ । ୧୫ ।
ଧରପାନ ବୋଲି ଯାଚିଲ ବେଳକୁ ମାଗିଲେ ଅ-ପୂର୍ବ କରି ।
'ଏହି କଥା ନିକି ଜୀବିକା ହେଲ କି ରସିକା ବର ଉଚାରି' ।
ଅବଳା ବଳା ଫିଟି ଗଲେ ଖଞ୍ଜି ମୁଁ ରଞ୍ଜିବା ବିଗ୍ରହୁଁ ମନ ।
ଆନନ କମାଇ ଆନ କଥା ନାହିଁ ବୋଲି ଯେ ପକାଇ ଆନ । ୧୬ ।
ମଦାଳସୀ ଓଷ୍ଠ ଗୋଳ କରୁଥାଇ ଚୁମ୍ବନ ଲାଳସୀ ହୋଇ ।
ପିକବାଣୀ ପାନପିକ ପକାଇବା ବ୍ୟାଜରେ ଲଜେ ବଞ୍ଚାଇ ।
ଧନକୁ ସମ ମନକୁ ଆଣିବାକୁ ନୋହିବେ" ସର୍ବଜ୍ଞ ମାନେ ।
କସ୍ତୁରୀ ବୋଳୁଁ ମୁଁ ଚତୁରୀ ସ୍ତନକୁ ଚେଲେ ଆଚ୍ଛାଦିଲ ଦିନେ । ୧୭ ।
ଘେନି ରସାଳ ରସାଳସୀ ଲେଖିଲ ଚିତ୍ର କରିଦିଅ କିନା ।
ବୋଇଲି ଆନ ନ ଜାଣଇ ନାରୀ ମୁଁ ନାରିକେଳ ଚିତ୍ର ବିନା ।

---

ପାଠାନ୍ତର—", ପଦ୍ମଶ୍ର । ", ଧନକୁ ସମ ମନକୁ ଜାଣିବାକୁ ନ ଥିବେ ।

---

୧୪—ଗୁରୁଶୀଳା—ଉତ୍ତମ ସ୍ୱଭାବ ଯାହାର, ଲାବଣ୍ୟବତୀର;

୧୫—ରସଲତା ପରି ଯେ ଲାବଣ୍ୟବତୀ ତାର; ଫୁଲ ପରି ଲାଲ ଅଧର (ଓଠ) ଯାହାର
ଜବରୀ-ଜୁଡ଼ାକୁ ଗଭ; ଗୋଡ଼ରେ ଅଳତା ଦେବାକୁ ନାହିଁ କରି ମୁଣ୍ଡରେ ଫୁଲ
ଦେବାକୁ କହେ । ବେଣୀଟି—ବେଣୀ କରିବ କି ? ଜାଣି—ବିପରୀତ ରତିର
ଇଙ୍ଗିତ ଜାଣି— [୩୨ ଛାନ୍ଦ ୨୩ ପଦ ଟୀକା ଦେଖ] ତା ନୋହିବ କାହିଁକି ?
—ତା ହେବ ନାହିଁ କାହିଁକି ? ଏହି ଅସମ୍ମତିରେ ସମ୍ମତି ( ସ୍ୱୀକାର ) ଥାଏ ।
ମତ୍ତକାଶିନୀ—ସୁନ୍ଦରୀ ଯୁବତୀ;

୧୬—ଅପୂର୍ବ କରି (ଅ-ଧର ପାନ) ରଞ୍ଜିବା—ତୋଷ କରିବା; ଆନ—ଗଣ;

୧୭—ଚୁମ୍ବନ ଲାଳସୀ—ମୋତେ ଚୁମ୍ବନ ଦେବା ପାଇଁ; ବ୍ୟାଜେ—ଛଳନା କରି; ବଞ୍ଚାଇ—
ବାଆଁରେଇ ଦିଏ; ସମ—ଠିକଣା କରି; ନୋହିବେ—ନ ପାରିବେ; ବୋଳୁଁ—ବୋଳିଲ
ବେଳକୁ; ଚେଲେ—ଲୁଗାରେ;

ଜାଣିଛି, ବୋଲି ଆଣିଛି କି ଭଙ୍ଗୀକି ଅଳପ ହସିଲ ହୋଇ ।
ଯେଣେ ଅନାଇଲେ ତେଣେ ତ ଦିଶିଲ ଜଣେ ସିନା ଚନ୍ଦ୍ରମୁହିଁ । ୧୮ ।
ମନେ ନାହିଁଥିଲ ସୁମନ ରଜ କି କବରୀ ଧୂପିତ ଧୂମ ।
ଲଗି କୋମଳାଙ୍ଗୀ ଜଳଜ ନୟନୁ ଜଳ ଯେ ହେଲ ଜନମ ।
ବିରଯ ହୋଇ ସାରସ ଫୁଲ ନେଇ ଲଗାଇ ଦେବାକୁ ଶିରେ ।
ପୋଛିଲ ନେତ୍ର ପୁଚ୍ଛିଲ ମନମଥ ଅଛି ନିକି ଜୀବନରେ । ୧୯ ।
କିସ ବିଗ୍ରିଗଲ ପୁଣ ପଗରିଲ ଜଳେ ଜାତ ମାନ ବୋଲି ।
ତେତିକି ବେଳକୁ ଭ୍ରୂବଲ୍ଲୀ କର୍ମିଲ ନାସିକା ଉଠିଲ ଫୁଲି ।
ବୋଇଲି ସୁଚନୁ ଆଞ୍ଚିବାରୁ ଧନୁ ପାଞ୍ଚିଲି ଏ କଥା ମୁହିଁ ।
ପାଣି ଦେଉଥିଲୁ ଶାଣିଲ ବାଣକୁ ବାନ୍ଧବି ବିନ୍ଧିବୁ କାହିଁ । ୨୦ ।
ମୁଁ ନିକି ସହ ମୁନିଙ୍କି ବିନ୍ଧି କହ କି ଯଶ ଅଛି ତହିଁରେ ।
ଅଛି କାରଣ ସ୍ମର ଅନୁସରଣ କରିଛି ପ୍ରହାର ହରେ ।

---

୧୮—ରସାଳ—ପାଚିଲ ଆମ୍ବ (ଇତ ପଡ଼ିଆ) ନାରିକେଳ—ନଡ଼ିଆ (ବଡ଼ ଟାଣୁଆ) କିମ୍ବା ନାରୀର କେଳ (କ୍ରୀଡ଼ା)—ଏପରି ଶ୍ଳେଷ ଅଛି । ଜାଣିଛି—ହିଁ ମୁଁ ଜାଣିଛି; କି ଆଣିଛି- କି ପ୍ରକାରକୁ ଯେ କଲ;

୧୯—ସୁମନ ରଜ—(ଫୁଲ ରେଣୁ) କିମ୍ବା କବରୀ (ଜୁଡ଼ା)ରେ ଥିବା ଧୂପ (ଝୁଣା ପ୍ରଭୃତିର) ଧୂମ(ଗନ୍ଧ)ଆଖିରେ ଲଗି; ମୁଁ ବିରସ ହୋଇ ସାରଘ(ପଦ୍ମ)ଫୁଲ ନେଇ ମୋ ମୁଣ୍ଡରେ ଲଗାଇ ଦେବାରୁ ସେ ଆଖି ପୋଛି ଦେଇ; ମୁଣ୍ଡରେ ପଦ୍ମ ଲଗାଇବାରଂଅର୍ଥ ତୋ ଗୋଡ଼ତଳେ ପୁତୁଛି ମାନ କରି କାନ୍ଦନା; ସେ ସେତିକିରୁ ଅପମାନ ମଣି (ବୋଧ) କରି କହିଲ । ହଉ, ଦେଖିବା ମୋତେ ମାନରେ କାନ୍ଦି ପକାଇବା ଭଳି ମନେ କଲ; [ମାନରେ ପୁରୁଷ ପନ୍ନୀ "ନତ୍ୟୁପାୟ" ଗୋଡ଼ ତଳେ ପଡ଼ିବା ଏବଂ ନୀଚ ସ୍ତ୍ରୀ ମାନେ ମାନରେ କାନ୍ଦି ପକାଇବା ଅଳଙ୍କାର ଶାସ୍ତ୍ରରେ ଅଛି । ଉଚ୍ଚ କୁଳିନ ସ୍ତ୍ରୀ ମାନେ ମାନରେ କାନ୍ଦନ୍ତି ନାହିଁ । ମୌନ ରହି ନିଜର ଅପମାନ ବ୍ୟକ୍ତ କରନ୍ତି ବୋଲି ମଧ୍ୟ ଅଳଙ୍କାର ଶାସ୍ତ୍ରରେ ଅଛି । ମାନରେ କାନ୍ଦିବାର ଆଶଙ୍କା ଲବଣ୍ୟବତୀକୁ ବାଧିଲ ।] ମନମଥ ଅଛି ନିକି ଜୀବନରେ—କନ୍ଦର୍ପ ତ ଜୀଇଁଛି ମୁଁ ଆଉ ମାନ କୁଆଡୁ କରିବି ।

୨୦—ଜଳେ ଜାତ ମାନ- ଲୁହରେ କଣ ମାଇପେ ମାନ କରନ୍ତି (ମୋ ପରି କୁଳିନ ସ୍ତ୍ରୀମାନେ କିପରି କରିବେ । ) ଭ୍ରୂବଲ୍ଲୀ ଭ୍ରୂଲତା;—ଏସବୁ କୋପର ଚିହ୍ନ । ଆଞ୍ଚିବା— ଟଙ୍କାରିବା- ଭ୍ରୂଲତାକୁ ଲକ୍ଷ ।

ଚତୁରଦଶ ଭୁବନ ମୋହିନୀ କି ଚତୁର ପଣ ବିହିଲ ।
ତହିଁକି କିଛି ନ କହିଣ ସ୍ତନକୁ ଗ୍ରହିଲ ହୋଇ ରହିଲ । ୨୧ ।
ଏହି କାଳେ ଦିନେ ଗ୍ରନ୍ଦନୀ ଉପରେ[୧୦] ଗ୍ରନ୍ଦ ଭୂରୁ ଥିଲ ଶୋଇ ।
ହୋଉଥାଇ ମନ ବାଞ୍ଛା ବିବସନ ଦର୍ଶନ କରିବା ପାଇଁ ।
ଚିତ୍ତକୁ ଆଣୁଛି ଛିଦ୍ରକୁ ରଚିଲ କୃଷ୍ଣ ସପତମୀ ନିଶି ।
ବାଞ୍ଛା ମୋ ବନ୍ଧ ସଂଯୋଗେ ଥାଉ ଥାଉ ଆକାଶେ ପ୍ରକାଶେ ଶଶୀ । ୨୨ ।
ଏଣେ କରୁଥାଇ ଏଣୀ ଈକ୍ଷଣୀର ମନ ମିଶିବାକୁ ଗାତ୍ରେ ।
ତେଣେ ନେଉଥାଇ କରଙ୍କରଦନୀ କର ଡାଙ୍କିବାକୁ ନେତ୍ରେ ।
ହେଲ ଯେ ବୋଲି ଯେ ଲଜ୍ଜେ ନେଉଥାଇ ମୋ ଉର ନିକଟେ ମୁଖ ।
ମୁହିଁ ବୋଲୁଥାଇ ନ ପାଇ ପାଉଛି ନୟନ ପରମ ସୁଖ । ୨୩ ।
ଭବ ଉପରେ ଯେ ଭବ ଉପୁଜିଲ ରତାନ୍ତେ ପ୍ରାତେ[୧୧] ଆହୁରି ।
ଲଜ୍ଜା କାତରେ ତରତରେ ତରୁଣୀ ପିନ୍ଧିଲ ବାସ ମୋହରି ।
ମୁଁ ଯେ ଭାଷିଲି ଦିଶି ଦିଶି ସୁଭଗ୍ୟ ଏଣିକି ଆସୁଛି ସିନା ।
ମୋହ ପରି ହୋଇବାକୁ ହୋଇଲନି ପରଗଣେଶ୍ୱରୀ କାମନା[୧୨] । ୨୪ ।
ଶ୍ରବଣେ ତରକି କର କି ଭବରେ କୋରକୀକୃତ ସେ କଲ ।
ପଣତେ ପଣତେ ପିନ୍ଧି ବୋଧୁ ମୋତେ ବାସ ପାଲଟାଇ ନେଲ ।
ସେ ଉତ୍ତ ଶୋଭାରେ ଲୋଭା ହେଲ ଆଖି ଆନ କି ଦେଖିବ ଆଉ ।
ଗୁଣି ହୋଉଅଛି ପୁଣି ହେବ କି ସେ ଉତ୍ସବ ଜୀବନ ଥାଉଁ । ୨୫ ।

---

ପାଠାନ୍ତର—୧୦, ଗ୍ରନ୍ଦରେ, ୧୧, ଶ୍ରାନ୍ତେ, ୧୨, ଗ୍ରବନା, ।

---

୨୧—ମୁଁ ନିକି ସହ-(ମୁଁ କଣ ଏଥିକି ସମର୍ଥ) ? ମୁନି ମାନଙ୍କୁ ବିନ୍ଧି ପାରନ୍ତୁ, କିନ୍ତୁ ତାଙ୍କ ପରି ନିର୍ଦ୍ଦୋଷୀ ମୁନିଙ୍କି ବିନ୍ଧି କି ଯଶ ଅଛି କହ । ତେବେ କାରଣ ଅଛି—ଫଳ ଅଛି । ସ୍ମର (କନ୍ଦର୍ପ) ସେ ତୋ ପାଖରେ ଗୋଡ଼ାଇଛି ତା ଶତ୍ରୁ ହର (ମହାଦେବ)ଙ୍କୁ ବିନ୍ଧ । ଏହା କହିବାରୁ ସେ ସ୍ତନକୁ ଗ୍ରହିଲ-ମୁଣ୍ଡ ପୋତି ଦେଲ ।

୨୨—କୋଠା ଗ୍ରନ୍ଦନୀ ଉପରେ ଗ୍ରନ୍ଦ ପରି ବଙ୍କା ଭୂରୁ ଯାହାର ସେ ଶୋଇଥିଲ । କୃଷ୍ଣ ସପ୍ତମୀରେ ସାତଘଡ଼ି ଅନ୍ଧାର ହୋଇଥିଲ । ବନ୍ଧ—ରତିବନ୍ଧ;

୨୩—ଗାତ୍ରେ—ମୋ ଦେହରେ; ନେତ୍ରେ—ମୋ ଆଖିରେ; ନ ପାଇ—ମୋ ଦେହକୁ ନ ଲଗିଲେ ମଧ୍ୟ;

୨୪—ବାସ ମୋହରି—ମୋ ଲୁଗା;

୨୫—ଶ୍ରବଣେ—ମୋ କଥା ଶୁଣି, କୋରକୀକୃତ-କଢ଼ୀପରି—ହାତ ଯୋଡ଼ିଦେଲ ।

କେତକୀ ଗୋରୀ ଚରମ ମନୋରମ ଏତିକି ଦେଖିଛି ମୁହିଁ ।
ହେମ ରମ୍ଭାପତ୍ର କାମପ୍ରଭ ମାତ୍ର କି ଉପମା ଦେବା[୧୩] ତହିଁ ।
ଉରପର ଚୀର ଦୂର କରି କରୁଁ ତନୁପୀତନେ ଯତନ ।
ମୋର ପ୍ରବେଶରେ ଲଜ୍ଜା ଆବେଶରେ ପଛ କରି ଉଭା ଧନ । ୨୬।
ନିୟମ ଲଙ୍ଘିଲୁ ଅମର ମୋହିନୀ ବୋଲି ମୁଁ ବୋଲିବା ବେଳେ ।
ହୃଦ କଷଟିରେ କାନ୍ତି କନକକୁ କଷିଲ କୁଙ୍କୁମ ଛଳେ ।
ପ୍ରେମମଞ୍ଜରୀ ପଢ଼ା ସାରୀ ପଞ୍ଜୁରୀ ସେ ଦିନୁ ଆଦ୍ୟନ୍ତ ଦ୍ୱାରେ ।
ମୋ ଯିବା କହିବା ପାଇଁ ଲମ୍ବାଇ ଯେ ସୁବେଶ ହୁଅଇ ପୁରେ ।.୨୭ ।
ଅଳକା ରେଖୁଥିଲ ବସି ଫଳକାନନୀ ଯେ କର୍ତ୍ତରୀ ଘେନି ।
କରିବି ନିବିଡ଼ ନୀବୀ ମୋକ୍ଷ ଭାବି ପଛୁଁ ଗଲି ହୋଇ ତୁନି ।
ବିମ୍ବଓଷ୍ଠି ବିମ୍ବ ଦେଖି ଆଦରଶେ ହରଷେ ଧରି ମୋ କର ।
ଘ୍ରେର ଗଲଟି ଧର ବୋଲି ସେ ଧରମଣ୍ଡନା ଭଷିଲ ଗିର । ୨୮ ।
କିଞ୍ଚିତ ଦୋଷକୁ ଉଚିତ ଦଣ୍ଡ ଏ ବାନ୍ଧବି ବାନ୍ଧ ତୋ ଭୁଜେ ।
ବୋଲିବାକୁ ମୋର ସଙ୍ଗୀତ ପଠିନୀ ଭଲ ଇଙ୍ଗିତ କଲ ଯେ ।

---

ପାଠାନ୍ତର—୧୩, ଦେବା ।

---

ପଣତେ ପଣତେ—ତା କାନିକୁ ଛାଡ଼ି ମୋ କାନି ପିନ୍ଧୁ ପିନ୍ଧୁ—ଅର୍ଥାତ୍ କେହି ଉଲଗ୍ନ ନ ହୋଇ ;

୨୬—ଚରମ—ପିଠି ; ଏତିକି—ସେହି ଦିନକ ମାତ୍ର; ଉର ପର ଚୀର—କୁଚ ଉପର ଲୁଗା, ତନୁପୀତନେ—ଦେହରେ କୁଙ୍କୁମ ଲଗାଇବାରେ; "କାଶ୍ମୀର ଜନ୍ମାଗ୍ନି ଶିଖ ବର- ବାହ୍ଲୀକ ପୀତନ "—ଅମର । ପୀତନ—କୁଙ୍କୁମ;

୨୭—ନିୟମ ଲଙ୍ଘିଲୁ—ପଛ କରି ଠିଆହେଲୁ; ମୋ ହୃଦ କଷଟି ପଥରରେ ତାର କାନ୍ତି ରୂପ କନକ ( ସୁନା )କୁ କଷିଲ ( କୋଳକୁ ବାହାରି ଆସିଲ । ) ସେହି ଦିନଠାରୁ ସେ ପ୍ରେମମଞ୍ଜରୀ ମୁଁ ଆସିବା କଥା କହିବା ପାଇଁ ସାରୀ ପଞ୍ଜୁରୀ କୁ ଦୁଆରେ ଲମ୍ବାଇ ଘରେ ବେଶ ହୁଏ ।

୨୮—ଫଳକାନନୀ—ଫଳକ ( ଦୀପ୍ତି ) ଆନନେ ( ମୁହଁରେ ) ଯାହାର; ଆଗରେ ଦର୍ପଣ ରଖି କତୁରୀରେ ଅଳକା ଖୁଣ୍ଟି ସମାନ କରୁଥିଲ, ମୁଁ ପଛରୁ ଯିବାରୁ ଦର୍ପଣରେ ଦେଖି ମୋ ହାତ ଧରି ପକାଇ ଘ୍ରେର ଧର ପଡ଼ିଲ ବୋଲି କହିଲ ।

୨୯—ସଙ୍ଗୀତ ପଠିନୀ—ସଙ୍ଗୀତ ଭଷିନୀ, ସଙ୍ଗୀତ ପରି ପଢ଼ିବା ବା କଥା ଯାହାର; ସେ

ନସ୍ତଇ ଭୁଜୁ କୋଦଣ୍ଡ ତେବେ ଦଣ୍ଡ ସିନା ସେ ନୋହେ ତା ଭବ ।
ଉନ୍ନତି ଛାଡ଼ି ବିନତି ହେଲେ ଆଉ ଥରେ ମାଗିଲେ କେ ଦେବ । ୨୯ ।

କେମନ୍ତ ପୀରତି ସୁରତି ଶ୍ରାନ୍ତକୁ ପ୍ରାନ୍ତ କରୁଥାଇ ମୋର ।
କୁନ୍ଦନ କୁମ୍ଭକୁଚେ ଲେପି ଚନ୍ଦନ ଠେସି ଦିଏ ହୃଦୟର ।
କି କଲି ବୋଲି ଲଜ୍ଜିଲ ନ ଲଗିଲ ହେଜୁଥାଇ ସେ ନବୀନା ।
ଏ ହୃଦ ବେଦନା କଲେ ନିବେଦନା କେ ଘେନିମ ତାହା ବିନା । ୩୦ ।

ଏ ରୂପେ ଭବିନୀ ଭବକୁ ଭବନା କରୁଁ କରୁଁ ଭଜେ ମହୀ ।
ସଖୀ ଆଶ୍ୱାସନା ରଚିଲେ ମୁଖରେ ନୀର ସିଞ୍ଚି ସିଞ୍ଚି ଦେଇ ।
ସମସ୍ତେ ନେତ୍ରେ ଲୋତକ ପୁରେଇଲେ ଚେତି ଏ ବାଣୀ ପ୍ରକଟ ।
ଲବଣ୍ୟବତୀ ବତିଶାର୍ଦ୍ଧ ବୟସୀ କେଉଁ ଦିନ ହେବ ଭେଟ । ୩୧ ।

ଏ ରତୁ ଘେନି ମକରକେତୁ ତାପେ ଆରତ ନୃପ କୁମାରୀ ।
ବସି କାନ୍ତ ଗୁଣ ଗୁଣି ପୁଣ ପୁଣ ମନରେ ବିଚ୍ଚର କରି ।
କ୍ଷିତି ଭିତରେ ଯୁବତୀକି ତେମନ୍ତ ପତି ମିଳିବାରେ ପୁଣ୍ୟ ।
ପ୍ରଭୁତ୍ୱ ଥିଲେ ଭୃତ୍ୟ ଠାରୁ ଅଧିକ ବିନୟୀ ରସିକ ଧନ୍ୟ । ୩୨ ।

ଦିନେ ବନେ ଭ୍ରମୁ ତପନ ତାପରେ ବିରସ ମୋର ଲପନ ।
ଦେଖି ସଖୀକି ପୁଚ୍ଛିଲେ ଆଜି ମୋର ଅମ୍ଳାନ ଗଭ ତ ମ୍ଳାନ ।
ରଖି ନ ପାରି ଧଇର୍ଯ୍ୟ ନିଜ ଶିର ଛାଇ ମୋ ପାଦକୁ କଲେ ।
ଆଉ ଦିନେ କଲେ ଏ ରୂପେ ଅବଶ୍ୟ ରୁଷି ମୁଁ ବସିବି ବୋଲେ । ୩୩ ।

---

କହିଲ ଭୁଜରେ ବାନ୍ଧିଲେ ହେଲେ ସେ ଏକା ଦଣ୍ଡ–ଭବ ବା ପ୍ରେମ ନୁହେ । ଉନ୍ନତି ଛାଡ଼ି–( ଏଠେଇଁ ବୀରତ୍ୱ ବା ଗଜତ୍ୱ ଛାଡ଼ି ) ଏଠାରେ ବିନିତ ହେଲେ ( ଗୋଡ଼ ତଳେ ) ପଡ଼ିଲେ ବି ।

୩୦–ସୁରତି ଶ୍ରାନ୍ତ–ରତି ଶ୍ରମ; ପ୍ରାନ୍ତ କରୁଥାଇ–ଅପନୋଦନ କରେ; କୁନ୍ଦନ କୁମ୍ଭ–କୁନ୍ଦ ଯନ୍ତ୍ରରେ ବସି ତିଆରି ହୋଇଥିବା ମାଠିଆ ପରି; ଲଜ୍ଜି ନ ଲଜ୍ଜି କି କଲି ବୋଲି ମନେ ପକାଇ ଚମକି ପଡ଼େ ।

୩୧–ବତିଶାର୍ଦ୍ଧ ବୟସୀ–ଷୋଳ ବର୍ଷୀ;

୩୨–ଏହିଠାରୁ ଲବଣ୍ୟବତୀର ଅନୁଶୋଚନା; ମକର କେତୁ–କନ୍ଦର୍ପ; କ୍ଷିତି ଭିତରେ–ମହୀ ମଣ୍ଡଳରେ; ପ୍ରଭୁତ୍ୱ ଥିଲେ– ରାଜପଣ ଥିଲେ ମଧ୍ୟ;

୩୩–ମୋ ମୁହଁ ଖରରେ ମୌଳି ଥିବାର ଦେଖି ପଚ୍ଚରିଲେ ଅମ୍ଳାନ ଗଭ–ଯେଉଁ ମୁଣ୍ଡର ଫୁଲ ମଳିନ ହୁଏ ନାହିଁ ; ତାଙ୍କ ମୁଣ୍ଡଛାଇ ମୋ ପାଦକୁ ପକାଇଲେ; ତାର ଅର୍ଥ

ସେ ଦିନୁ ଉନୁ ଥିବାରେ  ଯେ ସଦନୁ ବାହାର ନ କଲେ ମତେ ।
କୋଟିକ ରତନ ଦେବାରୁ ଅଧିକ ଗୋଟିକ ବଚନ ସତେ ।
ଦିନେ ପଶ୍ଚରିଲେ ଭିନ୍ନେ ଭଙ୍ଗୀ କରି ଯୁବତୀ ପୁରୁଷ ପ୍ରାଣ ।
ତାହା ବିନୁ  ଗାତ୍ର ଯାହା ରହେ ଚିତ୍ର ଏ କଥା ନୋହେ କି ପୁଣ । ୩୪ ।
ଦୁର୍ଗା ପଦ୍ମନାଭ କରନ୍ତୁ ଏ ଶୁଭ ବଲ୍ଲଭ ମନେ ଏ ପ୍ରୀତି ।
ନ ପଡୁ ପୋଡୁ ଏ ବିଚ୍ଛେଦ ବିପତ୍ତି ବୋଲି ସେ ଭଜିଲ କ୍ଷିତି ।
ଲଳନା ପଲ୍ଲବ ରଚନା କରିଣ ମୁଖେ ଦେଲେ ଶୀତବାରି ।
ତେଣୁ ଶୁଭ ସ୍ୱପ୍ନ ହେତୁକୁ କହିଲେ ଝସକେତୁ ତାପହାରି[୧୮] । ୩୫ ।
ଏ ରସେ ମନ ନ ଘେନଇ ଯାହାର ସେହି ନର ପଶୁ ଘେନ ।
ଯହିଁ ରସରେ ବ୍ରହ୍ମା ବଶ ହୋଇଛନ୍ତି କାହିଁଛି ତାହା ସମାନ ।
ଜାନକୀ ରମ ବିଶେଷ  କରି ଜାଣେ ରବି ତାଙ୍କ ଶ୍ରୀପୟର ।
କହେ ଉପେନ୍ଦ୍ର  ଭଞ୍ଜ ବୀରବର ଛାନ୍ଦ ରସ-ରତ୍ନାକର । ୩୬ ।

---

ପାଠାନ୍ତର—୧୮, ଅପହାରି ।

---

ମୁଁ ଗୋଡ଼ତଳେ ପଡୁଛି-ତୁ ଆଉ ଖରରେ ବୁଲୁନା । ବର ଗୋଡ଼ ତଳେ  ପଡ଼ିବା ଶିଷ୍ଟାଚାର ନୁହେ ବୋଲି ଲବଣ୍ୟବତୀଙ୍କୁ ଏହା ସୁଖ ଲାଗିଲା ନାହିଁ । ବୋଲେ—ମୁଁ ନହିଲି;

୩୪—ଭାନୁ ଥିବାରେ--ଖରା ଥାଉଁ ଥାଉଁ; ଯୁବତୀ ବିନୁ ପୁରୁଷ  ଗାତ୍ର  ( ଶରୀର ); ଚିତ୍ର—ଅଦ୍ଭୁତ ;

୩୫—ବଲ୍ଲଭ—( ସ୍ୱାମୀ ) ମନରେ ଏ ପ୍ରୀତି କଥା ନ ପଡୁ । ଭଜିଲ କ୍ଷିତି—ମୂର୍ଚ୍ଛା ହେଲ; ପଲ୍ଲବ ରଚନା କଲେ—ପତ୍ରରେ  ବିଞ୍ଚିଲେ ;  ଲଳନା—ସଖୀମାନେ;  ଶୀତବାରୀ—ଜାକର ପାଣି;  ଶୁଭ ସ୍ୱପ୍ନ ହେବ ବୋଲି ଝସକେତୁ ତାପହାରି ( କନ୍ଦର୍ପର ନାଶକାରୀ ଶିବ ) ନାମକୁ କହିଲେ—ଅର୍ଥାତ୍ ଶିବ ଶିବ  ବୋଲି କହିଲେ ।

୩୬—ବ୍ରହ୍ମା ବଶ ହୋଇଛନ୍ତି—[ ୩୧ ଛାନ୍ଦ ୪ର୍ଥ ପଦ ଟୀକା ଦେଖ । ] ଜାନକୀ—ସୀତା; ରସ ରତ୍ନାକର—କାବ୍ୟ ରସର ସାଗର ;

—:*:—

# ଏକ ଚତ୍ୱାରିଂଶ ଛାନ୍ଦ

## ବର୍ଷାନୁଚନ୍ତା–( ବିରହେ ବର୍ଷାଋତୁ ବର୍ଣ୍ଣନା )

ରାଗ ବଙ୍ଗଳାଶ୍ରୀ–ଆଷାଢ ଶୁକ୍ଳବାଣୀରେ ।

¹ପ୍ରବେଶ ହୋଇଲା ବରଷା କାଳ । ପ୍ରମାଦ ମାନଙ୍କ ଜନମ ସ୍ଥଳ ।
ଜଳଦ କଜ୍ଜ୍ୱଳ କାନ୍ତି ଶାର୍ଦ୍ଦୂଳ । ଆସିଣ ବିରହିଣୀ ଶିଖର ଚୂଳ ।
ଗର୍ଜ୍ଜିଲା ସତତ । ପ୍ରକାଶି ଝଟି ବକାବଳୀ ଦନ୍ତ । ୧ ।
କୁରଙ୍ଗ ତୁରଙ୍ଗ ଥିବା ସକାଶେ । ଚନ୍ଦ୍ର ସୂର୍ଯ୍ୟ ଲୁଚି ରହେ ଆକାଶେ ।
ମୁନିଯେ ମୃଗଚର୍ମ ଥିଲା ଦର୍କୁଁ । ହିମାଳୟ ତଳୁଁ ଗଲେ ଶୃଙ୍ଗକୁ ।
ଋକ୍ଷ ପତି ଛୀନ । ଆଗ କରି ସେ ଗିଳି ଦେଲା ଦିନ । ୨ ।
ଡାହୁକମାନେ ଡାକ ଦେଲେ ତହିଁ । ସିଂହ ଆସୁଅଛି ସନ୍ଦେହ ନାହିଁ ।
ଶୁଣି ବିଯୋଗିନୀ ଲଭି ଦରକୁ । ଛିନ୍ନାଇ ହାର ଅନାଇଁ ଉରକୁ³ ।
ସେ ମିଥ୍ୟା ନ କଲେ । କାଳିକାକୁ ଯେଣୁ ଅନାଇଁ ଦେଲେ । ୩ ।

---

ପଠାନ୍ତର—୧, ସୁଖେ ୨, ଛିଣ୍ଡାଇ ହାର ସୋଡାଇଲେ ବୃକ୍ଷ ।

---

୧–ପ୍ରମାଦ–କଷ୍ଟ–ଡାହୁକ ଡାକ, କଦମ୍ବ ଫୁଲ, ମୟୂର ନାଚ, ଶାମୁକ ମକ ମକ ପ୍ରଭୃତି; ନୂଆ ମେଘର ଶାର୍ଦ୍ଦୂଳ (ବାଘ) ସଙ୍ଗେ ଉପମା ଗ୍ରଲିଛି । ଧାଡ଼ି ଧାଡ଼ି ହୋଇ ଉଡୁଥିବା ବଗ ମାନେ ବାଘର ଦାନ୍ତ ପରି;

୨–ବାଘକୁ କୁରଙ୍ଗ (ହରିଣ) ତୁରଙ୍ଗ (ଘୋଡ଼ା) ମାନେ ଡ଼ରନ୍ତି । ଚନ୍ଦ୍ରଠାରେ କୁରଙ୍ଗ, ସୂର୍ଯ୍ୟର ରଥରେ ସାତ ତୁରଙ୍ଗ ଅଛି । ତେଣୁ ସେମାନେ ମେଘରେ ଲୁଚିଲେ । ଋକ୍ଷ–୧. ଭଲ୍ଲୁ, ୨. ତାରା, ଦିନ–୧. ଦିବସ, ୨. ଦୀନ, ଅର୍ଥାତ୍ ଦୁର୍ବଳ ଜନ୍ତୁ ।

୩–ଦର–ଭୟ; ସ୍ତନରେ କରୀ କୁମ୍ଭର ଆକୃତି ଓ ହାରରେ ମୁକ୍ତା ଦେଖି କାଳେ ହାତୀ ମୁଣ୍ଡ ବୋଲି ବିଚାରି ସିଂହ ମାଡ଼ି ବସିବ ବୋଲି ବିଯୋଗିନୀ ବିରହିଣୀ–ମାନେ ଭୟ କଲେ । ବିରହିଣୀ ନ ହେଲେ ବର୍ଷା କାଳକୁ ଡ଼ରିବେ ବା କାହିଁକି ? କାଳିକା–୧. କଳା ମେଘ, ୨. ଦର୍ଗା, ସିଂହ ବାହିନୀ;

ବିଧାତା ବିଧାନୀ ଚିତା ବିଜୁଳୀ । କାଷ୍ଠାବଳୀ ଯୋଗେ ଉଠିଲ ଜଳି ।
ଝଞ୍ଜାନିଳ ଲଗି ପ୍ରଭା ପ୍ରକାଶି । ସଜୀବରେ ଦହି ଦେଲ ବିଦେଶୀ ।
ତହୁଁ ଅଗ୍ନି କଣ । ଉଡ଼ି ବୋଲଇଲେ ଜ୍ୟୋତିରିଙ୍ଗଣ । ୪ ।
କରକା ଲେଷ୍ଟ ପତନ ବହୁତ । ଯୁବାଙ୍କୁ ଲଗିଲ ଅନଙ୍ଗ ଭୂତ ।
ଇନ୍ଦ୍ର କୋଦଣ୍ଡ ଦଣ୍ଡ ନଭେ ଗଜି । ମାନିନୀ ମାନ ଦମ୍ଭ କୁମ୍ଭ ଭଜି ।
ସେ ବିନା[ମ] ପ୍ରହାରେ । ଏହା ଦେଖିଲ ନ ଥିଲ ସଂସାରେ । ୫ ।
ନଦୀ ନାଗ କଲେ ବେଗ ଗମନ । ଲହରୀ ରସନା ସକାର ସ୍ୱନ ।
ଫେନ କଞ୍ଚୁକ ଭ୍ରମ ଚକ୍ରେ ଶୋହି । ସାଗର ବିଳେ ରହିବାକୁ ଯାଇଂ।
ତା ଗ୍ରହିଁ ଚପଳେ । ପଳାଇ ଗଲେ ମେରୁକୁ ମଗଳେ । ୬ ।
ପର ଅପର ତାହା ଠାରେ ନାହିଁ । ଦେଖ ବେନି କୂଳ ଗ୍ରାସ କରଇ ।
ପଥିକ ନିକର ଗ୍ରହିଁ ଶଙ୍କିଲେ । ଉଡୁପ ଭୂଷଣ ନାମେ ଡ଼ାକିଲେ ।

---

ପାଠାନ୍ତର—[ମ], ଘନ

---

୪—ଏ ବର୍ଷନାଳ ଯେ ସେ ବିଦେଶୀଙ୍କର ଚିତାଗ୍ନି ହେଲ । ବିଧାତା ଏଥିରେ ବିଧାନୀ (ଯୋଗାଡ଼ିବା ବାଲା) । ବିଜୁଳୀ ଯେ ସେ ଚିତା (ଲଗଆଣି); କାଷ୍ଠାବଳୀ-(୧. ଦିଗ ସମୂହ, ୨. କାଠ ମାନେ); 'ଦିଶସ୍ତୁ କକୁଭ କାଷ୍ଠା'—ଇତ୍ୟମରଃ । ଜ୍ୟୋତିରିଙ୍ଗଣ (ଜୁଳୁଜୁଳା ପୋକ) ମାନେ ସେହିଥିରୁ ଉଡ଼ି ଯାଉଥିବା ଅଗ୍ନିକଣ (ନିଆଁଗୁଣ୍ଡ) ହେଲେ ।

୫—କରକା (କୁଆ ପଥର) ଲେଷ୍ଟ (ଟେକା) ପରି ପଡ଼ିଲ; ଅନଙ୍ଗ ଭୂତ ଲଗିଲ—କାମ ଭବରେ ତାଙ୍କର ଠିକଣା ରହିଲ ନାହିଁ । ଇନ୍ଦ୍ର କୋଦଣ୍ଡ (ଇନ୍ଦ୍ରଧନୁ) ଦଣ୍ଡ (ଠେଙ୍ଗା) ପରି ପଡ଼ିଲ । ସେଥିରେ ମାନିନୀ (ବରକୁ ଅଭିମାନ କରି ରହିଥିବା ନାରୀ)ର ମାନ ଦମ୍ଭ କୁମ୍ଭ (ମାଠିଆ) ପରି ହେଲ । ସେ ଭଜିଗଲ । ପାହାର ନ ପଡ଼ି ଏପରି ଭଜିବା ଦେଖା ନ ଥିଲ । ଅର୍ଥାତ୍ ମାନିନୀ ମାନେ ଇନ୍ଦ୍ର ଧନୁ ଦେଖି ଆଉ ମାନ ରଖି ପାରିଲେ ନାହିଁ ।

୬—ନଦୀ ଯେ ସେ ନାଗ (ନାଗ ସାପ) ପରି । ଦୁହିଁଙ୍କର ବେଗ ଗମନ; ଦୁହିଁଙ୍କର ସକାର (ଶୁଶୁ) ସ୍ୱନ (ଶବ୍ଦ); ନଦୀର ଲହରୀ ସାପର ରସନା (ଜିଭ) ପରି; ଫେଣ କଞ୍ଚୁକ (ସାପ କାତି) ପରି; ଭ୍ରମ (ପାଣି ଭଉଁରୀ) ଚକ୍ର (କଠୋଉ ଚିହ୍ନ) ପରି; ସାଗର ବିଳ (ଗାତ) ପରି; ମଗଳ ମାନେ ସାପକୁ ତଥା ନଇର ଗୋଳିଆ ପାଣିକି ଡ଼ରି ମେରୁକୁ (ମେରୁ ଚାଖ ମାନ ସରେବରକୁ) ପଳାଇଲେ ।

୭—ତାହା ଠାରେ—ସେ ନଦୀ ଠାରେ; ବେନି କୂଳ—୧. ଦୁଇ ତୀର, ୨, ଶତ୍ରୁ ମିତ୍ର, ବା ପର

ଆତୁରି ଦର୍ଦ୍ଦୁର । ନିରତେ ଆରମ୍ଭି ଆରତ ସ୍ୱର । ୭ ।
ଟେଁକି ଶିଖଣ୍ଡ କେକୀ ଷଣ୍ଡ ମତ । ନାରୀ ମଣ୍ଡଳୀ ମଧ୍ୟେ କଲ ନୃତ୍ୟ ।
ଦେଖି ସୁମନା–ଗଣିକା ନିକର । ଦର ବିକାଶ–ହାସେ ମନୋହର ।
ଗ୍ରହି ସେ ମତକୁ । ବାକ୍ୟ ନଷ୍ଟରିଲ ପରଭୃତକୁ । ୮ ।
ଏ ଋତୁ ଗ୍ରହି କୁମାର ବିରହୀ । ମିତ୍ର ବଦନକୁ ଅନାଇଁ କହି ।
ବିଜୁଳୀ ଛାମୁକୀ ଘନାଳି ନଳ । ସ୍ତନିତ ଢୁ ଶବ୍ଦ କୁଳିଶ ଗୁଳି ।
ମହୀଧର ଲକ୍ଷ । ପଥର ଫୁଟି ଯାଉଅଛି ଦେଖ । ୯ ।
ଜାଣିଲ ମୋ ହୃଦ ଅତି କଠିନ । ଫାଟି ନ ଯିବାରୁ ପ୍ରିୟା ବିହୀନ ।
ନ ଫୁଟିବ ବୋଲି କୁସୁମ ବାଣ । କାମ କରିଛି ଏ ଅସ୍ତ୍ର ଭିଆଣ ।
ରକ୍ଷା ହେବି କେହି । ଆଉ ତ ମୋତେ ବୁଦ୍ଧି ଦିଶୁ ନାହିଁ । ୧୦ ।

---

ଆପଣା ଦୁଇ କୂଳ; ଉଡୁପ ଭୂଷଣ–୧. ମହାଦେବ, ୨. ନାଉରୀ; ଦର୍ଦ୍ଦୁର–ବେଙ୍ଗ;

୮– ଶିଖଣ୍ଡ–ଚିଛ; କେକୀ–ମୟୂର; ଷଣ୍ଡ ମତ–ନପୁଂସକ ପରି(ମୟୂର ରତି କରେ ନାହିଁ –୨୪ ଛାନ୍ଦ ୧୯ ପଦ ଟୀକା ଦେଖ ।) ନାରୀ ଏଠାରେ ମୟୂରୀ; ସୁମନା–(ମାଳତୀ ଫୁଲ) ଗଣିକା (ବେଶ୍ୟା) ମାନଙ୍କ ପରି ଯେପରିକି ଉପହାସରେ ମୁରୁକି ହସା ଦେଲେ । ଏହା ଦେଖି ପରଭୃତ (କୋକିଳ) ସେ ଅବାକ ହେଲା । ବର୍ଷାରେ କୋକିଳ ସ୍ୱର ଫିଟେ ନାହିଁ ।

୯–୧୦ ଏ କନ୍ଦର୍ପର ବନ୍ଧୁକ ଲକ୍ଷ; ଏଥିରେ ବିଜୁଳୀ ହେଲା ଛାମୁକୀ (ଶୁଖିଲା ନଡ଼ିଆ କତା କିମ୍ବା ଚିର କୁଟା ପ୍ରଭୃତିରେ ଦଉଡ଼ି ବଳି ସେଥିରେ ନିଆଁ ରଖିଥାନ୍ତି । ତାକୁ ଛାମୁକୀ କହନ୍ତି) । ଶୀକାରି ଓ ଗୁଳିଆ ବା ଗୋଲନ୍ଦାଜ, ସେମାନେ ପୂର୍ବେ ଏହି ଛାମୁକୀ ନିଆଁ ବନ୍ଧୁକର ମୁହଁ ରସରେ ଲଗାଇ ଲଛୁଥିଲେ । ଉପେନ୍ଦ୍ରଭଞ୍ଜଙ୍କ ସମୟକୁ ଏହି ବନ୍ଧୁକ ଥିଲା । ଏବ କାଳର ଟୋପି ଦାର, ତୋଡ଼ାଦାର ବନ୍ଧୁକରେ ଛାମୁକୀ ଦରକାର ନାହିଁ । ଏହି ଛାମୁକୀ ଏବେ ବାଣ ଲଗାଇବାରେ ଦରକାର ହୁଏ । )

ଘନାଳି–(ମେଘ ମାନେ) ନଳି (ବନ୍ଧୁକ); ସ୍ତନିତ (ବଜ୍ରଶବ୍ଦ, ଘଡ଼ଘଡ଼ି) ବନ୍ଧୁକର 'ଢୁ' ଶବ୍ଦ । କୁଳିଶ (ବଜ୍ର) ଗୁଳି ପରି; ମହୀଧର (ପର୍ବତ) ଲକ୍ଷ । ଏ ବାଣରେ ପଥର ବି ଫୁଟି ଯାଉଛି । କିନ୍ତୁ ମୋ ହୃଦ ପଥରରୁ ମଧ୍ୟ କଠିନ, ପ୍ରିୟା ନ ଥିଲେ ହେଁ ଏ ସବୁରେ ଫାଟି ଯାଉ ନାହିଁ । ନ ଫୁଟିବ "ବୋଲି ଜାଣି କାମ (କନ୍ଦର୍ପ) ବିରହୀ ମାନଙ୍କ ପାଇଁ ଏ ଅସ୍ତ୍ର (ନଳି, ଗୁଳି) ଭିଆଣ କରିଛି । କେହି–କିପରି;

ସଖୀ ବୋଇଲେ କି ବିଗ୍ରହ ଆଉ । ବାଞ୍ଛାମଣି ନାମ ସୁମନ୍ତ୍ର ଥାଉଁ ।
ସ୍ୱଭାବେ ମନ ଏକ ଲୟ ଯହିଁ । ବିଶେଷେ ମନ୍ତ୍ରିଲ ଦୀକ୍ଷାକୁ ପାଇ ।
ବିଗ୍ରହଇ ମନେ । ମୁଁ କି କି ମୂର୍ଚ୍ଛି ପାରିବି ଜୀବନେ । ୧୧ ।
ଯେ ପ୍ରାଣ ପରି କରିଥାଇ ମୋତେ । ସେ ପୁଣି ମୂର୍ଚ୍ଛି ପାରିବ କେମନ୍ତେ ।
ଦିନ ଦିନ କର ପୀରତି ରୀତି । ଚିତୁଆଣକୁ ସେ ବରଷା ଦୂତୀ ।
ହୋଇ ହେଲ ସିଦ୍ଧା । କେହି ବର୍ଣ୍ଣିବ ସ୍ନେହ ପରାଧୀନା । ୧୨ ।
ଦିନେ ଜାନୁରେ କରଭର ଦେଇ । ସ୍ତନ୍ତନୁ ଇନ୍ଦ୍ରଧନୁ ଥିଲ ଚାହିଁ ।
ଗୋକୁଳ ଈଶ ରସ ମନେ ଭାବି । ପଛୁଁ କୋଳ କରି ଧରନ୍ତେ ନୀବୀ ।
ଭିଡ଼ି ଉପୁଜାଇ । ଭିଡି ଅନ୍ତରେ ଥିବେ ବୋଲି ସହୀ । ୧୩ ।
ଦିନେ କାମିନୀ ଯାମିନୀ ନ ପାଉଁ । କୁସୁମ ବିକାଶେ ଅନ୍ତରେ ହେଉଁ ।
ହୃଦ ବିଲଗନ୍ତୁ ଗର୍ଜିଲ ନିବ । ଡ଼ାକିଲି ବନ୍ଧୁ ବୋଲି ଲଭି ଖେଦ ।
ସେ ଶୁଣିଲ ନାହିଁ । ବିଜୁଳି ଝଟକ ଦେଲ ଦେଖାଇ । ୧୪ ।
ଏଡ଼େ ବଞ୍ଚନା କାହିଁକି ଦାସରେ । ବୋଲି ଯାନ୍ତେ ପ୍ରାଣ ବନ୍ଧୁ ପାଶରେ ।
ତ୍ରପାରେ ପ୍ରକାଶ କରି ହାସକୁ । ଅଚ୍ଛାଦି ଲବଣ୍ୟ ଅଙ୍ଗେ ବାସକୁ ।
ମୁହାଁକି ଅନାଇଁ । କିଛି ନ କହି ସେ ପଙ୍କଜ ମୁହାଁ । ୧୫ ।
ଫିଙ୍ଗିଲ ଫୁଲ ଝଲକ କମ୍ପାଇ । ପଶିଲି ଏ ଶରେ ପ୍ରସିଲି ମୁଁହି ।

---

ପାଠାନ୍ତର—୪, ପଦ୍ମ ।

---

୧୧—ବାଞ୍ଛାର ନାମି ହେଲ ମନ୍ତ୍ର । ଦୀକ୍ଷା ପାଇ (ସେ ମନ୍ତ୍ର ଘେନି) ସେଥିରେ ଏକ ଲୟ ।
ଏପରି ମୁନି ହୋଇ ମୁଁ ମୂର୍ଚ୍ଛି ପାରିବି କି ବୋଲି ବିଗ୍ରହେ— ଏହି ଉପମା ଶ୍ଳେଷ ।
ଅନ୍ୟଥା ମୁଁ ମୂର୍ଚ୍ଛି ପାରିବି ନି କି ?

୧୨—ଦୂତୀ ହୋଇ ହେଲ—ଦୂତୀ ସ୍ୱରୂପ ହେଲ; ଚିତୁଆଣକୁ—ମନେ ପକାଇ ଦେବାକୁ,
ସ୍ନେହ ପରାଧୀନା—ପ୍ରୀତିରେ ଯେ ସ୍ୱାଧୀନ ବା ନିଜର ଅଧୀନ ନୁହେଁ ।

୧୩—ଗୋକୁଳ ଈଶ ରସ—ବୃଷଭ ଯେ ପ୍ରକାରରେ ରତି କରେ [ରତି ଶାସ୍ତ୍ର ଦେଖ] ଭିଡ଼ି
ଅନ୍ତରେ—ଜାଣ ସେ ପାଖେ ବୋଲି ଡରିଗଲ ଦେଲ । ସହୀ—ସଖୀମାନେ;

୧୪—ଯାମିନୀ—ରାତି; କୁସୁମ ବିକାଶେ—ରଜସ୍ୱଳା ହୋଇ; ସେ କଥା କହିଲ ନାହି ସତ,
କିନ୍ତୁ ବିଜୁଳି ମାରି ଦେବାରୁ ମୁଁ ତାକୁ ଦେଖିଲି ।

୧୫—ବଞ୍ଚନା—କପଟ (ରତି ନ ପାଉଁ କାହିଁକି ଉଠିଗଲୁ ବୋଲି) ତ୍ରପା—ଲଜ୍ଜ;

୧୬—ମୁଣ୍ଡରୁ ଫୁଲଟା ଏ କାଢ଼ି ତଳେ ଫିଙ୍ଗିଦେଲ । ପୁଷ୍ପବତୀ ହୋଇଛି ବୋଲି ସୂଚନା ଏ ।

'ଭୃଙ୍ଗ ଚୁମ୍ବଇ ପୁଷ୍ପବତୀ ଲତା' । ବୋଲିବାକୁ 'ବୋଲି ଅଛି ବିଧାତା'
　କି ବିରସ ମୋତେ । ବିଚ୍ଛେଦ ସହି ନୋହୁଥିଲ ଏତେ । ୧୬ ।
ଦିନେ ଦୁର୍ଦ୍ଦିନେ ପାହିବାରୁ ଗତି । ଜଣା ନ ଯିବାରୁ ଆରମ୍ଭ ରତି ।
ସେ କାଳେ ପଢ଼ିଲ ପଞ୍ଜରୀ କୀର । କାନୁ ଛନ୍ଦି ଦେଇ ମଧ୍ୟରେ ମୋର ।
　ତୁନି କରି କହେ । ବିଧି ନିଷେଧ ନ ମାନିବ କିହେ । ୧୭ ।
ମୁହିଁ କହିଲି ଲବଣ୍ୟ ନିଧିକି । ଏ ନିଦ୍ଦ ବଡ଼ ବିଧି ଅବିଧିକି ।
ଏତେକେ ଧନ ଜାଣିଲ ମୋ ମନ । ରତାନ୍ତ ଯାଏ ଦେଲ ଆଲିଙ୍ଗନ ।
　ଉପୁଜାଇ ଗତି । ପ୍ରତି ଅଙ୍ଗ ଶୋଭ ଦିଶିବା ଭୀତି । ୧୮ ।
ଦିନେ ଅତି ପ୍ରାତୁଁ ପଙ୍କ ବିମୋଷୀ । ଗଲ ଗୋପ୍ୟ ପୁରେ ମୋ ପାଶୁ ଉଠି ।
ଉରଜେ କରଜ ଚିହ୍ନ ଦେଖଇ । ମୁହିଁ ଗବାକ୍ଷେ ଗୁହିଁବାକୁ ଯାଇ ।
　ସେହି ଦିଗେ କେଳୀ । ସନାଦେ[୪] ଡ଼ାକିଲ ପୁଚ୍ଛକୁ ଟେକି । ୧୯ ।
ତାକୁ ଅନାଉଁ ଯେ ଦେଖିଲ ମୋତେ । ଅପରାଧ କ୍ଷମା କର ବୋଇଲେ ।
ମୁଖ ନ ଟେକିଲ ତ୍ରପା ତ୍ରାସରେ । ହାସ ପ୍ରକାଶିଲ କୃପା ବଶରେ ।
　ତା ସେହି ଗ୍ଭତୁରୀ । ନୟନେ ମୋର ରହିଅଛି ପୁରି । ୨୦ ।

---

ପାଠାନ୍ତର—୪, ସ୍ୱନାମେ ।

---

ଶରେ ଲସିଲି- ସରିଲି, ଏ ଅର୍ଥରେ ଏହି ଶବ୍ଦ ଚଳେ । ବୋଲିବାକୁ—ମୁଁ ଏହା କହିବାରୁ; ସେ କହିଲ, ସେ କଥା ବିଧାତା କହିଛି । ଏ କଥା ମନା କରିଛି—ଏହି ଭବ । ଶାସ୍ତ୍ର ବଚନ ବିଧାତାର ଆଦେଶ ବୋଲି ହିନ୍ଦୁର ବିଶ୍ୱାସ—ଏହା 'ଆପ୍ତ ବାକ୍ୟ'

୧୭—ବିଧି ନିଷେଧ—

" ଶୁଷ୍କ ମାଂସ ସ୍ତ୍ରିୟୋ ବୃଦ୍ଧା—ବାଳାର୍କ ସ୍ତରୁଣଂ ଦଧି
ପ୍ରଭତେ ମୈଥୁନଂ ନିଦ୍ରା ସଦ୍ୟ ପ୍ରାଣ ହରାଣିଚ—ଇତି ସ୍ମୃତୌ ।

୧୮—ବିଧ ଅବିଧିକି—ବିଧାତା ନିଜର ଅନୁଚିତ କାର୍ଯ୍ୟ ( ଅପକର୍ମ ) କୁ [ ୩୧ ଛାନ୍ଦ ୪ର୍ଥ ପଦ ଟୀକା ଦେଖ ] । ଉପୁଜାଇ ଗତି—ଏ ପରି ପ୍ରକାର କରି—ଯହିଁରେ ଅଙ୍ଗ ମାନଙ୍କର ଶୋଭ ମୋତେ ନ ଦିଶିବ ।

୧୯—କରଜ—ନଖ; ଗୁହିଁବାକୁ—ଗୁହିଁବା ବେଳକୁ;

୨୦—ତ୍ରପା ତ୍ରାସରେ—ଲଜ୍ଜ ଭୟରେ ;

ଦିନେ ଝାଳି ଦେଇ ଦୀପାବଳୀକି । ବଳେ ବିବଯନ କରୁ ବାଳୀକି ।
ଚମକିଲ ହୋଇ ଇଚ୍ଛା ଥାକୁଳେ । ପ୍ରଦୀପ ହତ ହେଲ ଝଞ୍ଜାନିଳେ ।
ଇଭି କି ସନ୍ତୋଷ । ରସାଇସା ହେଲ ରସରେ ବଶ । ୨୧ ।
ଦିନେ ଯେ ପାଶକୁ ଅଣାଇ ପଶା । ଖେଳିବା କି ବୋଲି ବୋଇଲ ଯୋଷା ।
ମୁହିଁ ବୋଇଲି ବସ ହୋଡ଼କର । ଶୁଣି ସୁନ୍ଦରୀ ଦେଖାଇଲ ହାର ।
ମୁଁ ବୋଇଲି ଧନ । ନ ଜାଣୁଛି ଯହିଁ ଥାଇ ମୋ ମନ । ୨୨ ।
ତହିଁକି କଲ କି ଭଙ୍ଗୀ ରଚନା । ହେଲେ ହେବ ପଣେ ହାରିଲେ ସିନା ।
ଖେଳ ଆରମ୍ଭ ଅତି ଅନୁରାଗେ । ଜଳଜଣ୍ଡ ଜଣୀ ହାରିଲ ଯୋଗେ ।
ପଣ ମାଗୁଁ ସଖୀ । ବୋଇଲ ଆସେ ସଖୀ ଠାରୁ ଶିଖି । ୨୩ ।
ଏବେ ଇନ୍ଦ୍ରଧନୁ ଉଇଁ ଯେ ଥିବ । ବିଦ୍ୟୁ ଝଟକିବ ଅନ୍ଧାର ହେବ ।
ପ୍ରକଟ କେକୀନାଟ ଝଞ୍ଜାବାତ । ହେବେନି ଜନେ ପଶାଖେଳେ ରତ ।
ଚିନ୍ତି ଏ ସବକୁ^୬ । ବିଦାରି ହୋଉଥିବ ତାର^୭ ବୁକୁ । ୨୪ ।
ଛିଡ଼ି ନ ଥିବ ମୋ ଗୁଞ୍ଜିଲ ହାର । ଛିବି ନ ଥିବ ସ୍ତନୁ ନଖ ଗାର ।
ଫିଟାଇବ ନାହିଁ ମୋ ବନ୍ଧା ବେଣୀ । ଚେତାଉଥିବେ ପ୍ରୀତି ପ୍ରତିକ୍ଷଣି ।
ପ୍ରମାଦେ ପ୍ରମାଦ । ପକାଉଥିବ ପ୍ରକାଶେ ଜଳଦ । ୨୫ ।
ଦରଶନେ ମାତ୍ର ରସବତୀ କି । ଚିତ୍ରୁଆଉ ଥିବ ଏହି ପ୍ରୀତିକି ।
ପୟୋଧର ଗିରି ଗ୍ରାସିବା ଗ୍ରହିଁ । ପୟୋଧର ବେନି କରେ ଘୋଡ଼ାଇ ।
ସିହାଣୀ ବୋଲିଛି । କବିଙ୍କ ଉପମା ନୋହଇ କିଛି । ୨୬ ।

---

ପାଠାନ୍ତର—୬, ମନକୁ, ୭, ପସ୍ତ ।

---

୨୧–କୁଳ ନାରୀର ଏ ଇଚ୍ଛା ପରମ୍ପର ପ୍ରସିଦ୍ଧ ।

୨୨–ଯୋଷା–ନାରୀ; ହୁଡ଼ କର–ଜିଦି ପକାଅ ହାରିଲେ, କଣ ଛାଡ଼ିଯିବ । ମୋ ମନ–ବିପରୀତ ରତି ପ୍ରତି ସଙ୍କେତ ।

୨୩–ପଣମାଗୁଁ– ହୁଡ଼ରେ ହାରିବା ଜିନିଷ ମାଗିବାରୁ; ସଖୀ–( ଲବଣ୍ୟବତୀ ) ;

୨୫- ସେମାନେ ମୋ ପ୍ରୀତି ଚେତାଉ ଥିବା ବା ମନେ ପକାଇ ଦେବା ଏକ ପ୍ରମାଦ, ଜଳଦ ପ୍ରକାଶ–ମେଘ ଘୋଟାଇବା ତା ଉପରେ ପୁଣି ପ୍ରମାଦ ।

୨୬–ଦରଶନେ ମାତ୍ର–( ମେଘକୁ ); ଏହି ପ୍ରୀତି ( ଯାହା ମୋ ମନେ ପଡୁଛି ); ପୟୋଧର– ( ୧. ମେଘ, ୨. କୁଚ ); ସିହାଣୀ ( ଲବଣ୍ୟବତୀ ) ଠିକ୍ କହିଛି । କବି କୁଚକୁ ଗିରି ସଙ୍ଗେ ଉପମା ଦେବା ବଡ ଅନ୍ୟାୟ ହୋଇଛି । ତାହା ନ

ନୂଆ କାଚ ଚୂଡ଼ୀ ଲଗାଇ ଥିଲି । ସଞ୍ଜା ନ ବସିଲା[୮] ଗାତେ ଭିଡ଼ିଲି ।
ପାନ କଳ ପୂରିଥିଲି ଯେ ତୁଣ୍ଡେ । ବୋଳ ନ ଲଗିଲା ଚୁମ୍ବିଲା ଗଣ୍ଡେ ।
ସେ ଏମନ୍ତ ଚିହ୍ନ[୯] । ଗୃହୁଁ ଗୃହୁଁ ତାର ବୁଡ଼ିଲି ହେତୁ । ୨୭ ।
ସଖୀଏ ପଦ୍ମ ତଳରେ ଶୁଆଇ । ଚେତନା-ବଶରେ ଏମନ୍ତ[୧୦] ଧ୍ୟାୟି ।
ଆହା ସେ[୧୧]କୋମଳା ସ୍ନେହ ଅଧୀନା । ଜାତି ଦଳେ ଶଯ୍ୟା କରି ରଚନା ।
ରତେ ଥାଇ ମନ । ପ୍ରବେଶ ହେଲେ ମୁଁ ତା ସନ୍ନିଧାନ । ୨୮ ।
ପ୍ରାଣ୍ଛୋଟି ନିଅଇ[୧୨] ଆସନ ତେଜି । କର ଧରନ୍ତେ ମୁଁ ଉଛନ୍ନ ଭଜି ।
କୋଳରେ ପଶି ଧରୁଥାଇ[୧୩]ନୀବୀ । ବ୍ୟାଜେ ବୋଲଇ ଆଜ ନ ପାରିବି ।
ଏ ରସ ଭଷନ୍ତେ । ଫୁଲ୍ଲ ଭବଯାକ ପଡ଼ିଲା ଚିତ୍ତେ । ୨୯ ।
ଦିନେ ମୋ ପ୍ରୀତି ଗୀତ ଯୋଡ଼ି ବାଳା । ବସି କେତକୀ ପତ୍ରେ ଲେଖୁଥିଲା ।
ଏତକ ପଢ଼ିଲି ପଛରୁ ଯାଇ । ପ୍ରିୟ ପାଇଛି ମୁଁ ଗଙ୍ଗାରେ ଦାହି ।
ତା କି କରି ଜାଣି । ଚଉଁରୀ କରି ଚିରିଲା ସେ କ୍ଷଣି[୧୪] । ୩୦ ।
ବୋଇଲି ରେ ସଖୀ[୧୫] ଶିଖଣ୍ଡ କେଶି । ଶିଖିବାକୁ ଥିଲା ମୋ ମନ ରସି ।
ମଥା କମ୍ପାଇ ନ ଜାଣିଲା ପରି । କଉଁ କଥା କି ସେ ବୋଲି ପଗ୍ଚରି ।

---

ପାଠାନ୍ତର—୮, ବସିଲ । ୯, ଚେତୁଁ । ୧୦, ଏତେକ । ୧୧, ସ୍ୱାଙ୍ଗରେ ।
୧୨, ଜାନୁର ନୁଅଇ । ୧୩, ବସାଇ ଧରଇ । ୧୪, ଉର୍ମଣୀ । ୧୫, ଶିଖି ।

---

ହେଲେ ବିରହିଣୀ ମାନଙ୍କର ବହୁତ କଷ୍ଟ କମି ଯାଥାନ୍ତା । ଏଠାରେ ଅଳଙ୍କାର ନିବଦ୍ଧ ଏହି କାବ୍ୟ କହାଛ କୃତିମତା କବି ସ୍ପଷ୍ଟ ପ୍ରକାଶ କରି ଦେଇଛନ୍ତି ।

୨୭—କାଚ ଚୁଡ଼ୀ—ମାଇପେ ହାତରେ ପିନ୍ଧିବା କାଚ; ସେ କାଳେ ବୋଧହୁଏ ଏହା ବଡ଼ ଦୁର୍ମୂଲ୍ୟ ଥିଲା । ସଞ୍ଜା—ଚିହ୍ନ; ଏପରି ଛନ୍ଦେ ମୋତେ ଜାକିଲା ଯେ ମୋ ଦେହରେ ଚିହ୍ନ ବସିଲା ନାହିଁ । ଅଥଚ ଯାକିବା ବୁଗୁଚ୍ଛା ନୁହେ । ତାହା ତୁଣ୍ଡରେ ପାନ ଥିଲେ ମଧ୍ୟ ମୋ ଗାଲରେ ପାନ ବୋଳ ଲଗିଲ ନାହିଁ । [ ଏ ସବୁ ସ୍ୱାମୀ ପ୍ରତି କୁଳ-ବଧୂର ପ୍ରସିଦ୍ଧ ଶିକ୍ଷାଗ୍ଚର । ] ହେତୁ—ଜ୍ଞାନ;

୨୮—ପଦ୍ମତଳ—ପଦ୍ମପତ୍ର ଶେଜ, ଜାତି ଦଳେ—ଜାଇଫୁଲ ପାଖୁଡ଼ାରେ । ଏହା ବର୍ଷା କାଳର ଫୁଲ । ରତେ—ରତିରେ; ସନ୍ନିଧାନ—ପାଖରେ;

୨୯—ଉଛନ୍ନ ଭଜି—ଲଜରେ ଘର୍ଡ଼ି ଯାଇ; ପଶ—ଯାକି ଯୁକି ହୋଇ ବସି; ( ନିଜର )ନୀବୀ ଫୁଲ୍ଲ—ପୂର୍ଣ୍ଣ ଭବରେ; କିମ୍ବା ପ୍ରଫୁଲ୍ଲ ଭବ; କିମ୍ବା 'ଫୁଲ ମାନଙ୍କ ଯୋଗୁଁ ହୋଇ ଥିବା ଭବ ।

୩୦—ଦାହି—ଝାସି (ଏଠାରେ) ତା—ମୁଁ ପଢ଼ିବା; ଚଉଁରୀ କରି—ଟିକି ଟିକି କରି;

କହିଛି ଧନ[୧୬]କୁ । ନୁଛିଯାଇ ଟେତା ଉଦାର ପଣକୁ । ୩୧ ।
ଦିନେ ଯେ ଗୁନ୍ଥି ସୁମନା ମାଳାକୁ । ଗ୍ରୀବରେ ଦେଇ ବୋଇଲି ବାଳାକୁ ।
ଆଜ ଠାରୁ ତୋର ମୋର ମାଳତୀ । ହୋଇ ନ କଲୁ ସେ ବଦନ ପୋତି ।
କେଶୁଁ କୁରୁଣ୍ଟକ । ଦେଖାଇ ବୋଇଲୁ ଏ ନାମେ ଡ଼ାକ । ୩୨ ।
ସୁନ୍ଦରୀ ଯେଡ଼େ ଗୁଣବତୀ ତେଡ଼େ । ଜୀବନ ପ୍ରଭୁ ମୋ ବିନୟୀ କେଡ଼େ ।
ଥାଉ ଆଉ ତା ଘେନା ଘେନି ଭବ । ମନୁ ଜୀବ ଯିବାଯାଏ ନ ଯିବ ।
ଦଇବ କି କଲୁ । ଜାହିଁ ବିଚ୍ଛେଦ ଦଣ୍ଡ ରଖି[୧୭]ଥିଲୁ । ୩୩ ।
ଫୁଟିଲେଣି ଏବେ ଜାତି କେତକ । ମାଳତୀ ଗ୍ରହିଁ ଚିତୋଇ ଏତକ ।
ଶୋକ-ଜଳଧିରେ ବୁଡ଼ି ରହିବ । ଲେତକ କଲ୍ଲୋଳେ ଭସାଇ ଦେବ ।
ଧଇର୍ଯମାନଙ୍କୁ । କି ଦଶା ପଡ଼ିଲୁ ପ୍ରାଣ ଧନକୁ । ୩୪ ।
ଏକାଳ ଗ୍ରହିଁ [୧୮] ନେତ୍ରୁ ମୁଞ୍ଚି ନୀର । କୁମାରୀ କୁମାର ଭବେ ଜର୍ଜର ।
ଚିତେ ଚିନ୍ତୋଇଲୁ ଏତିକି ସ୍ନେହ । କ୍ଷଣ କ୍ଷଣକରେ ହୋଇଲୁ ମୋହ ।
ଚେତା ଦଣ୍ଡେ ଦଣ୍ଡେ । ଏହି ବାଣୀମାନ ଉଚ୍ଚାରେ ତୁଣ୍ଡେ । ୩୫ ।
ପାଶୋରିଲେ ମୋତେ କୃପା ଜଳଧି । ରଖିଲେ କି ପୁଷ୍ପ [୧୯] ଭ୍ରମର ସିଦ୍ଧି ।
ମୋହିଲ ଅବା କେଉଁ ମନୋହାରୀ । ନ ଜାଣନ୍ତି ବା ପଥ ତଥ୍ୟ କରି ।
ନ ଯାଇ ଜୀବନ । ପ୍ରିୟ ବିନା ହେଲୁ ବଜ୍ରୁଁ କଠିନ । ୩୬ ।

---

ପାଠାନ୍ତର--୧୬, ପ୍ରାଣ । ୧୭, ବିପଦ ଦଶା ଥୋଇ, । ୧୮, ସେହ ।
୧୯, ପୁଂସ୍ତ ।

---

୩୧—ଶିଖଣ୍ଡ--ମୟୂର ପିଛ; ନୁଛି ଯାଇ—ଆହା ମରିଯାଏ;

୩୨—ସୁମନା—ମାଳତୀ; ହୋଇ—ହିଁ; ଭ୍ରମର ମାଳତୀରେ ବସିଲେ ପ୍ରେମ ଲଇଁଯାଏ, ଭ୍ରମର ତଳକୁ ଓ ମାଳତୀ ଉପରକୁ ହୋଇଯାଏ । କୁରୁଣ୍ଟକ—(ଦାସ କେରେଣ୍ଡା ଫୁଲ) ସେପରି ହୁଏ ନାହିଁ । ଏହି ଇଙ୍ଗିତ । କିମ୍ବା ମୁଁ ତୁମେ ଦିହେଁ ମାଳତୀ ହେଲେ ସମାନ ହୋଇଯିବା ଅର୍ଥାତ୍ ମୁଁ ତୁମକୁ ମାଳତୀ ବୋଲି ଡ଼ାକିବି । ତୁମେ ମୋତେ ମାଳତୀ ବୋଲି ଡ଼ାକିବ ? ତାହା ହେବ ନାହିଁ । କୁରୁଣ୍ଟକ (ଦାସୀ) ବୋଲି ଡ଼ାକ । କୁରୁଣ୍ଟକ ଫୁଲକୁ 'ଦାସୀ' ବୋଲି କହନ୍ତି ।

୩୪—ଶୋକ ସମୁଦ୍ର, ଲୁହ କଲ୍ଲୋଳ (ଲହରୀ) ଧଇର୍ଯ୍ୟକୁ ଭସାଇ ଦେବ ।

୩୫—ଏଠାରୁ ଲବଣ୍ୟବତୀ କିପରି ଥିଲା ସେ କଥା--

୩୬--ଅନ୍ୟ ନାରୀ ମୋହରେ ପଡ଼ିଲେ, ଅବା ବାଟ ଠିକ୍ ଜାଣି ନାହାନ୍ତି ।

ଚନ୍ଦନ ପ୍ରାଟିଏ ଥିବ କପାଳେ । ତନୁ ପୂରିଥିବ କମଳନାଳେ ।
ଏ ବିଧୀ ବିରହ ବଶରୁ ଯୁବା । ମାର ହର ଭ୍ରମ କରିଛି ଅବା ।
ବିଳମ୍ବ ଏଥିକି । ଏମନ୍ତ ବୋଲି ଭଜିଲା କ୍ଷିତିକି । ୩୭ ।
ନଳ-ଦମୟନ୍ତୀ ଜାଣେ ଏକଥା । ସମର୍ଥ ଗ୍ଳମ ହରିବାକୁ ବ୍ୟଥା ।
ଚିତ୍ତରେ ତାଙ୍କୁ ନିରନ୍ତରେ ଧ୍ୟାୟି । ଉପଇନ୍ଦ୍ର ବୀରବର କହଇ ।
ଏ ବିଚିତ୍ର ଛାନ୍ଦ । ହୃଦ-କୁମୁଦ-ଉଲ୍ଲାସକୁ ଚ୍ରନ୍ଦ । ୩୮ ।

---

୩୭-ବିରହ ତାପରେ କପାଳରେ ଚନ୍ଦନ ଓ ଦେହରେ ମୃଣାଳ ଥିବ । ସେଥିପାଇଁ ମୁଣ୍ଡରେ ଚନ୍ଦ୍ର ଓ ଦେହରେ ସାପ ବୋଲି ବିଗ୍ଭରି କନ୍ଦର୍ପ ତାଙ୍କ ଠାରେ ମହାଦେବ ବୋଲି ଭ୍ରମ କରି ଶର ବିନ୍ଧୁଥିବ । ସେଥିପାଇଁ ଅବା ତାକୁ ନ ହଟାଇ ଆସି ପାରୁ ନାହାନ୍ତି ।

୩୮-ନଳ ଦମୟନ୍ତୀଙ୍କର କଳି ପୁରୁଷ ଯୋଗୁଁ ବିଚ୍ଛେଦ ହୋଇଥିବା କଥା ମହାଭାରତ ନଳ ଚରିତରେ ଅଛି । ଏ କଥା-ବିରହ କଥା;

—※—

## ଦ୍ୱିଚତ୍ୱାରିଂଶ ଛାନ୍ଦ

### ଶରଦ୍ ବ୍ୟାକୁଳ ( ବିରହେ ଶରତ୍ ଋତୁ ବର୍ଣ୍ଣନା । )

**ଗଗ ଦେଶାକ୍ଷ । ଚକ୍ରକେଳି ବାଣୀରେ ।**

ଖେଦି ନୀରଦ ଦ୍ୱିରଦ ଶରଦ । ଋତୁ କେଶରୀ ପ୍ରସରି ବିଶଦ ।
ଗହିଁ ତମସ ନାଶ ବନଦେଶ । ସ୍ଫୁଟେ ପ୍ରକାଶ କଲେ କାଶହାସ । ୧ ।
ଛାର ଭେକ ଡ଼ାକ ଶୁଣିମା କର୍ଣ୍ଣେ । ଯାଇ ଥିଲେ ମାନସେ ଏହିମାନେ ।
ଯହୁଁ ସେମାନେ ମଲେ ଗର୍ଜି ଗର୍ଜି । ମହୀ ପ୍ରବେଶ ହେଲେ ହଂସ ଗଜି । ୨ ।
କେହି ଖଦ୍ୟୋତ ସଙ୍ଗେ ଉଭ ହେବା । ଲଜେ ତାରକା ଲୁଚିଥିଲେ ଅବା ।
ତାଙ୍କ ସ୍ନେହରୁ ଅବିଦିତ ଶଶୀ । ଏବେ ନିର୍ମଳ ଆକାଶେ ପ୍ରକାଶି । ୩ ।
ବୃଷ ମତ୍ତ ହୋଇଣ ଋଷଭସ୍ୱରେ । କହୁଛନ୍ତି କି ଏମନ୍ତ ବ୍ୟାଜରେ ।
ଦେଖ ଦେଖ ଭଜିଲେଟି ଲୀନକୁ । କେଉଁ ଷଣ୍ଢ ମତ୍ତ କେତେ ଦିନକୁ । ୪ ।

---

ଚକ୍ରକେଳି ଗଗର ଘରିପାଦରେ ସ୍ୱର ସମାପ୍ତି ହୁଏ । କୌଣସି କୌଣସି ପ୍ରକାଶିତ ପୁସ୍ତକରେ 'ଗଗ ଦେଶାକ୍ଷ ଚକ୍ରକେଳି ବାଣୀ' ବୋଲି ଏ ଛାନ୍ଦରେ ଲେଖାଅଛି ଏବଂ ଦୁଇ ପାଦରେ ପାଦ ଗଣାଯାଉଛି । କିନ୍ତୁ ଚକ୍ରକେଳି ବାଣୀ କହିବାର ଅର୍ଥ କିଛି ବୁଝାଯାଉ ନାହିଁ, କି ଏଠାରେ ଦୁଇ ପାଦରେ ପଦ ଗଣିବା ବି ଠିକ୍ ନୁହେ । ଗ୍ରନ୍ଥକାର ନିଜେ ଘରି ପାଦରେ ପଦଗଣି ସମସ୍ତ କାବ୍ୟକୁ ୨୩୬୩ ପଦ ବୋଲି କହିଁ ଅଛନ୍ତି । [ ୪୮ ଛାନ୍ଦ ୬୮ ପଦ ଦେଖ ] ।

୧–ଶରଦ ଋତୁ କେଶରୀ (ସିଂହ) ପରି ବିଶଦ ( ସ୍ୱଚ୍ଛ ) ପ୍ରସରି ( ପ୍ରକାଶପାଇ ) ନୀରଦ ( ମେଘ ) ରୂପ ଦ୍ୱିରଦ (ହାତୀ)କୁ ଖେଦି (ଘଉଡ଼ି) ଦେଲା । ମେଘ ଛାଡ଼ିଗଲା ଏହି ଭାବ । ସ୍ଫୁଟେ–ପରିଷ୍କାର କରି କାଶ (ଦର୍ଭ, ଘାସ ଫୁଲ ରୂପ)ହାସ,

୨–ଶୁଣିମା–ଶୁଣିବାରୁ; ଏହିମାନେ–ହଂସମାନେ; ବର୍ଷାରେ ଏମାନେ ମାନସ ହ୍ରଦକୁ ଯାଇଥାନ୍ତି ଏବଂ ଶରତ କାଳରେ ଜଳ ନିର୍ମଳ ହେଲେ ପୁଣି ଫେରି ଆସନ୍ତି ବୋଲି ପ୍ରବାଦ ।

୩–କେହି–କିପରି; ଖଦ୍ୟୋତ ଜୁଳିଜୁଳି ପୋକ ବର୍ଷାରେ ବହୁତ ବାହାରନ୍ତି । ଉଭ-ହେବା–ସମାନ ହୋଇ ଠିଆ ହେବା । ଅବିଦିତ–ଦେଖା ଯାଉ ନ ଥିଲେ;

୪–ବୃଷ–ଷଣ୍ଢ; ଋଷଭ ସ୍ୱରେ–[ ୧୨ ଛାନ୍ଦ ୨୩ ପଦଟୀକା ଦେଖ ] ଲୀନ–ନାଶ;

ଦିଶେ ଦକ୍ଷିଣେ ଅଗସ୍ତ୍ୟ ସୁନ୍ଦର । ଲେଉଟୁଛି ଭାବି ତୋଷ ମନ୍ଦର ।
ପଦ୍ମ ଅନୁରାଗ କେମନ୍ତ ଛବି । ଥିଲେ ମେଘ ଭିତରେ ଉଦେ ରବି । ୫ ।
କଳ [୧] ବଧୂ ଗୀତ ଶୁଭେ କେଦାରେ । ଯେହ୍ନୁ ପଥିକ ହୃଦଘଳ ଦାରେ ।
ଏ ଋତୁକୁ ରହି ନୃପ ନନ୍ଦନ । ପ୍ରାଣଚନ୍ଦ୍ରୁ ଭବ କଲ ଧିଆନ । ୬ ।
ସେହି ଶରଦ ରାତି ସେ ଚନ୍ଦ୍ରମା । ସେହି ପ୍ରକାରେ ହୋଇଛି ସୁଷମା ।
ସେହି ମୁହିଁ ଜୀବନେ ଅଛି ପୁଣି । ଏତ ବିଚିତ୍ର ଦୂର ମୋ ତରୁଣୀ ୭ ।
ଏଥେ ଦେଇଛି ଭବମାନ ଯେତେ । ଏହିକ୍ଷଣି ସେ ହେଲ ପରି [୨] ପ୍ରତେ ।
ମହା ଦରିଦ୍ର କରେ ଦେଇ ନିଧି । ଏକି ଦୁର୍ଦ୍ଦଶା ହରି ନେଲା ବିଧି । ୮ ।
ଦିନେ ଚୁମ୍ବନ ଦେଇ ଚୁମ୍ବ ମାଗୁଁ । ନାହିଁ ନ କଲ ଅତି ଅନୁରାଗୁଁ ।
ଦେବ ବୋଲି ଅଧର କରୁ ଗୋଳ । ସେହି ସମୟେ ବାରିଦେଲ ଲାଜ । ୯ ।
ମୁଁ ଯେ ବୋଇଲି ବାରେ ଦେଉ କିନା । ଲାଜ କାହାକୁ ମୁଁ ତୋ ଦାସ ସିନା ।
ଧୀର ଗୀର ପ୍ରକାଶ କଲ ତହିଁ । ଚୁମ୍ବ ଦେବାର ମୋତେ ଆସୁନାହିଁ । ୧୦ ।

---

ପାଠାନ୍ତର—୧, କୂଳ । ୨, କଲ ପ୍ରାପ୍ତ ।

---

ଷଣ୍ଢ ( ନପୁଂସକ ) ପରି କେକୀ (ମୟୂର) କେତେ ଦିନକୁ ( ଦିନାକେତେ ) ମତ୍ତ (ମତୁଆଳ ହୋଇ: ) ୨୪ ଛାନ୍ଦ ୧୯ ପଦ ଟୀକା ଦେଖ ]।

୫—ପୌରାଣିକ ପ୍ରବାଦ ଅଛି ମନ୍ଦର (ବିନ୍ଧ୍ୟ) ପର୍ବତ ଉଚ୍ଚରେ ବଢ଼ିବାରୁ ସୂର୍ଯ୍ୟଙ୍କ ବାଟ ମରି ଯିବାର ଶଙ୍କା ହେଲ । ସେଥିପାଇଁ ଦେବତାମାନେ ଅଗସ୍ତ୍ୟଙ୍କୁ ପଠାଇଲେ । ଅଗସ୍ତ୍ୟ ଦକ୍ଷିଣକୁ ଗଲବେଳେ ମନ୍ଦର ବାଟରେ ତାଙ୍କୁ ସୋଉପଡ଼ି ସାଷ୍ଟାଙ୍ଗ ପ୍ରଣାମ କଲ । ଅଗସ୍ତ୍ୟ କହିଲେ ମୁଁ ଫେରିବା ଯାଏ ସେହିପରି ପଡ଼ିଥା । ସେଥିପାଇଁ ବିନ୍ଧ୍ୟ ପର୍ବତ ଇଷ୍ଟ ହୋଇ ପଡ଼ିଛି । ଶରତ୍ କାଳରେ ଅଗସ୍ତ୍ୟ ନାମକ ତାରା ଦକ୍ଷିଣରେ ଦେଖାଯାଏ । ସେହି ତାରା ଅଗସ୍ତ୍ୟ ମୁନି ବୋଲି ଲୋକଙ୍କର ବିଶ୍ୱାସ । ମନ୍ଦର ତାଙ୍କୁ ଦେଖି ଅଗସ୍ତ୍ୟ ଲେଉଟୁଛନ୍ତି ଏବେ, ମୁଁ ଏଥର ଉଠିବି ବୋଲି ବିଚାରିଲ—ଏହାହିଁ ଏଠାରେ ଅଭିପ୍ରାୟ । ପଦ୍ମର ପ୍ରୀତି ବିଢ଼ିବା ପାଇଁ ଯେପରିକି ସୂର୍ଯ୍ୟ ମେଘ ଭିତରେ ଲୁଚିଥିଲେ ଏବେ ବାହାରିଲେ ।

୬—କଳ—ମଧୁର, ସୁଶ୍ରାବ୍ୟ; ବଧୂ—ସ୍ତ୍ରୀ ଲୋକ; କେଦାରେ—କିଆରିରେ; ଧାନ ରୋଇବା ବାଛିବା, ଶିଶା ଗୋଟାଇବା ଓ ଛିଣ୍ଡାଇବା ବେଳେ ଏଦେ ମଧୀ ମାଉପେ ଲଗନ୍ତି । ଦାରେ—ବିଦୀର୍ଣ୍ଣ କରେ, ବ୍ୟାକୁଳ କରେ;

୮—ଏଥେ—ଏହି ଶରତ୍ କାଳରେ;

ଆଜଯାଏ ଏ ଚତୁରୀ, ବଚନ । ମନ ନେତ୍ରେ କରିଅଛି ସଦନ ।
ସେହି ଦିନ ପ୍ରଥମେ କଥା ଶୁଣା । ଦିନେ ଶାରୀ ପଢାଉ ସୁଲକ୍ଷଣା । ୧୧ ।
ବାଣୀ ଲୁଚି ମୁଁ ଶୁଣୁଥିଲି ସଚ୍ଛେ । ଶାରୀ ପଢ଼ି ଯେ ଦେଲା କାନ୍ତ ପଛେ ।
ସଲଜ୍ଜିତ ଜିତେନ୍ଦ୍ରିୟ ମୋହିନୀ । ଦେଇ ଗ୍ରଣ୍ଠ ଚିବୁକରେ ତର୍ଜନୀ । ୧୨ ।
ନାସା ପୁଟାକୁ ଫୁଲାଇଲା କରି । ଅଧୋମୁଖେ ରହିଲା କୃଶୋଦରୀ ।
ନବସପତ ବୟସୀ କି ମୁହିଁ । ମୋହ ସପତ ପକାଇଲି ତହିଁ । ୧୩ ।
ମଥା ଟେକି କଥା କହି ବୋଲନ୍ତେ । କିସ କହିବି କହିଦଅ ମୋତେ ।
ବୋଲିବାର ସଙ୍ଗତେ ଅଣିମାଦି । ସୁଖ ଦେବାକୁ ଥିଲା ଯେ ସଂପାଦି । ୧୪ ।
ଲବେ ଛାଡ଼ି ନ ପାରଇ ପାଶକୁ । ଲଙ୍ଘି ନ ପାରଇ ମୋର ବୋଲକୁ ।
ଦିନେ କର୍ଣ୍ଣେ କହିଲି ତୁନିକରି । ଚନ୍ଦ୍ର କରେ ରଚି ଦେବୁ ସୁନ୍ଦରୀ ୧୫ ।
ସେହିକ୍ଷଣି ସେ କଲା ପ୍ରତିଜ୍ଞାଷ । ବୋଲ କେବେ ନ କରିବ ବିଦେଶ ।
ମୁଁ ବୋଇଲି କାମ ଅଛି ଜୀବନେ । ତୋତେ ଛାଡ଼ି ମୁଁ ପାରିବି କେସନେ ।୧୬।
ଯେବେ ତୋ ମନରେ ଶଙ୍କା ବାନ୍ଧିବି । ଯଉଁ ନିୟମ ବୋଲିବୁ କରିବି ।
ବାଣୀ ପ୍ରମାଣ ନିୟମ କାହିଁକି । ନେତ୍ର ଢାଳି ଯେ ବୋଇଲା ତହିଁକି । ୧୭ ।

---

ପାଠାନ୍ତର—୭, ତୁଳକୁ ।

---

୧୧—ଚତୁରୀ, ନେତ୍ରେ ତା ବଚନ ମନେ; ସେହି ଦିନ ପ୍ରଥମେ କଥାଶୁଣା–ବୋହୂମାନଙ୍କର ସ୍ୱଷ୍ଟ କଥା କହିବା ଏ ଦେଶରେ ପରମ୍ପରାରେ ରୀତି ବିରୁଦ୍ଧ । ତାହା ଏଠାରେ ସ୍ପଷ୍ଟ ହୋଉଛି ।

୧୨–ଜିତେନ୍ଦ୍ରିୟ ମୋହିନୀ–ଇନ୍ଦ୍ରିୟ ଜିଣିଥାନ୍ତି ଯେଉଁ ଯୋଗୀମାନେ ତାଙ୍କୁ ଯେ ମୁଗ୍ଧ କରିପାରେ; ଚିବୁକ–ଓଠତଳ; ତର୍ଜନୀ–ବିକ୍ଷି ଆଙ୍ଗୁଠି; ଆକସ୍ମିକ ଲଜ୍ଜାର ଚିହ୍ନ ଏ ।

୧୩ ଅଧୋମୁଖେ–ଲଜ୍ଜରେ ମୁହଁ ତଳକୁ କରନ୍ତି । ନବସପିତ ଷୋଳ; ସପତ–ଶପଥ, ରଣ;

୧୪–ଅଣିମାଦ– ୧୧ ଛାନ୍ଦ ୧୨ ପଦଟୀକା ଦେଖ । ]

୧୫–ତୁଳକୁ–ସଙ୍ଗକୁ; ବୋଲ–କଥା, ଆଦେଶ ବା ଅନୁରୋଧ; ଚନ୍ଦ୍ରକରେ–ଚନ୍ଦ୍ର କିରଣରେ, ଜହ୍ନ ଗତିରେ;

୧୬–କାମ ଅଛି ଜୀବନେ–୪୦ ଛାନ୍ଦ ୧୯ ପଦ ଟୀକା ଦେଖ । ]

୧୭- ବାଣୀ ପ୍ରମାଣ (ତୁମ କଥା ଯଥେଷ୍ଟ–ସେହି ସତ୍ୟ); ନିୟମ କାହିଁକି କରିବ । ଏ ଭାବ ଏଠାରେ ବଡ଼ ହୃଦୟ ସ୍ପର୍ଶୀ ଓ ଉଦାର । ଏହି ଠାରେ ଏ କଥା ଶେଷ କରି

ଝେଡ଼େ ସିହାଣୀ ଲେଡ଼ିଲ ବଞ୍ଚାଇ । ଗଭେ ଚନ୍ଦ୍ରକରେ ଶେଯ ପଡ଼ାଇ ।
ତହିଁ ମିଳୁ ମୁଁ ହରଷେ ଅନାଇଁ । ପାନ ପିକ ଦେଲ ଆଗେ ପକାଇ । ୧୮ ।
ବାସେ ପୋଛି ପୁଣି ଭଲ ସିନ୍ଦୁର । ମୋର ହୃଦ କରଇଲ କାତର ।
ଏତେ ବୁଦ୍ଧି ସ୍ଫୁରିଲ ଯୋଗେ ତହିଁ । ମୁଁ ଯେ ବୋଇଲି ମୋତେ କହ ଗ୍ରହିଁ ।୧୯
ଏ ବଚନେ ବଚନ ହାସ ତାର[୩] । କରଇଲା ଚନ୍ଦ୍ରମୁଖୁଁ ବାହାର ।
ରକ୍ଷା ପାଇଲି ବୋଲି କୋଳ କରି । ମୁଁ ଯେ ସେଜ ପରକୁ ଘେନିଗଲି । ୨୦ ।
ନାହିଁ ନାହିଁ ଖଞ୍ଜୁଥିଲ ମୋ ଧନ । ଗତି ବିହି ମୁଁ କ୍ରଳି ବିବସନ ।
ଏକେ ଶ୍ରୀଅଙ୍ଗ କେତକୀରୁ ଗୋର । ଶଶି କରେ ଦିଶିଲ କେଡ଼େ ତୋର । ୨୧ ।
ଝଶାଣିଲ ହେମକୁ ଲକ୍ଷେ ଗୁଣେ । ନିନ୍ଦା କରୁ ଯେ ଥିଲ ଝଳିପଣେ ।
ଏହି ସମୟେ ସେଜରୁ ନାଗରୀ । ଘେନି କର୍ପୂର ରଜ ନେତ୍ରେ[୪] ମାରି । ୨୨ ।
ତେଣେ ବୁଜି ହୋଇଗଲ ମୋ ଆଖି । ଭଲ କରି ମୁଁ ନ ପାରିଲି ଦେଖି ।
କର ଧରିବା ବେଳକୁ ଶୋଭଙ୍ଗୀ । ଭଙ୍ଗୀ ବଶେ ଯେ ଦେଇଥିଲ ଫିଙ୍ଗି । ୨୩ ।
ଯୋଗେ ପଡ଼ିଲ ସେ କାମ ସଦନେ । ଲବଣୀରୁ କୋମଳ କଲି ମନେ ।
ନଖ ଚଳାଇ ଦେବାରୁ ସଧୃରେ[୫] । ଗେମାଙ୍କୁର ହୋଇଥିବ ତହିଁରେ[୬] । ୨୪ ।

---

ପାଠାନ୍ତର—୩, ବଚନ ବେଳେ ହାସ ବାହାର । ୪, ମୁଖେ । ୫, ତହିଁରେ । ୬,ହେ ଇଲ ସେ ଦେହରେ ।

---

କବି ଯଦି ପୁଣି ଚନ୍ଦ୍ର କିରଣ ରତି ବର୍ଣ୍ଣନାକୁ ଯାଇ ନ ଥାନ୍ତେ ତେବେ କବିତାର ଧ୍ୱନି କବା ଅତ୍ୟନ୍ତ ମନୋହର ହୋଇଥାନ୍ତା ।

୧୮—ଲେଡ଼ିଲ ବଞ୍ଚାଇ— ବାଆଁରେଇ ବା ବୁଲେଇ ଦେବା ପାଇଁ ବିର୍ସ୍ତରିଲ । କାର୍ଯଟା କିପରି ନ ହେବ ତାର ଚେଷ୍ଟା କଲ । ଆଗେ—ଆଗ କାନିରେ (ରଜଯୁକ୍ତ ହୋଇଥିବା ବାହାନା);

୧୯—ମୋତେ ଗ୍ରହିଁ—ମୋ ମୁହଁକୁ ଗ୍ରହିଁ;

୨୧—ଗତି ବିହି—ପ୍ରକାର କରି, କୌଣସି ପ୍ରକାରେ;

୨୨—ସେଜରୁ କର୍ପୂର ଗୁଣ୍ଡ ନେଇ ମୋ ଆଖିକୁ ପକାଇ ଦେଲ ।

୨୩—ତେଣେ—ସେଥିରେ; ହାତ ଧରି ପକାଇବା ବେଳକୁ ଫିଙ୍ଗି ଦେଇଥିଲା ।

୨୪—୨୫—ପଦ ତୃତୀୟ ଛାନ୍ଦର କେତେକ ପଦ ପରି ଅତି ଜଘନ୍ୟ ଓ ବିଭତ୍ସ । ଏଥିରେ ରୁଚି ନ ଥିଲେ ହେଁ କବିତାର ଲେଶ ଗନ୍ଧ ମଧ୍ୟ ନାହିଁ ।

ଦିଶୁଥିବ କଦମ୍ବ ଫୁଲ ପରି । ଏ କିସ ଗୋ ବୋଲିବାର ଚାତୁରୀ ।
ଯିବ ସହସ୍ରେ ଜନ୍ମେ କି ପାଶୋର । ଅମୃତରୁ ପ୍ରିୟାବାଣୀ ମଧୁର । ୨୫ ।
ଆଉ ଭେଟିବି ନୋହୁଛି ପରତେ । ଭେଟ ହେବା ଉପାୟ ଅଛି ଏତେ ।
ପୁଣି ବିରହ ଅନଳେ ଦହନ । ହୋନ୍ତା ଏ ମୋହର ତନୁ ବହନ । ୨୬ ।
ଭସ୍ମ ଉଡ଼ାଇ କୃପାରେ ପବନ । ନେଇ ପକାନ୍ତା କାନ୍ତା ସନ୍ନିଧାନ ।
କିସ ବୋଲି କରନ୍ତା ବାଳା ଦୃଷ୍ଟି । ତହିଁ ପରେ ହୁଅନ୍ତା ସୁଧାବୃଷ୍ଟି । ୨୭ ।
ହୋଇ ମୂର୍ତ୍ତିମନ୍ତ ମୁଁ ସହିଁ ମୁଖ । କର ଯୋଡ଼ି କହନ୍ତି ସବୁ ଦୁଃଖ ।
ଆହା ବୋଲି ସାହା ହୋଇ ସୁମୁଖୀ । ମୋତେ କରନ୍ତା ସେହିକ୍ଷଣି ସୁଖୀ । ୨୮ ।
ମୋର ଭରସା ହୋଉଛି ଏଥକୁ । ଜୀବ ଦେଇଛି ଭସ୍ମ ମନ୍ମଥକୁ ।
ତହିଁ ସବୁ ରୂପେ ମୁଁ ଯେ ଅଧିକ । ନିତ୍ୟ ଅନୁସରିଲାର ସେବକ । ୨୯ ।
ମନ ମୋହର ଭ୍ରମୁଛି ନିରତେ । ମଶା ମଶରିରେ ପଡ଼ି ଯେମନ୍ତେ ।
ମୁହିଁ ଭ୍ରମର ସଙ୍ଗେ ହେଲି ମିତ । ସେହି ମାଳତୀ ବିରହେ ଯେମନ୍ତ । ୩୦ ।
ଏତେ ବୋଲୁଁ ବୋଲୁଁ ସ୍ୱମ୍ଭ ଭଜିଲା । ହା ହା ପ୍ରିୟେ ବୋଲି ଶ୍ୱାସ ତେଜିଲି ।
ଦହି ନ ପାରୁଛି କାମ-ଅନଳ । କରେ ତା ଭବ ଭବନା ଶୀତଳ । ୩୧ ।
ପୁଣି ପ୍ରିୟା ସ୍ୱରୂପ ଲେଖି ପଟେ । ସ୍ନେହ ବଶେ ଲଗାଇ ହୃଦ ତଟେ ।
ପଟ ପ୍ରସଙ୍ଗ ମନରେ ହୋଇଲା । ହା ହା ସେଦିନ କି ହେଲା ବୋଇଲା । ୩୨ ।
ବନ୍ଧ ପିଚୁଳା ଦେଖୁଁ ଦେଖୁଁ ବସି । ଗଣ୍ଡେ ଅନାଇଁଲ[୨] ଲେମ ଉଲସି ।
ହସି କର୍ଣ୍ଣ ପାଶେ ନେଲା ବଦନ । କି କହିବ କରିଛି ମୋର ମନ । ୩୩ ।

---

ପାଠାନ୍ତର—୨, ଅଇଲା ଯେ

---

୨୯—ବିଧାତା ପୋଡ଼ି ପାଉଁଶ ହୋଇ ଯାଇଥିବା ମନ୍ମଥକୁ ପୁଣି ବଞ୍ଚାଇଛି । କିମ୍ବା ଏଠାରେ ବିଧାତା ନ ହୋଇ ମହାଦେବ ହୋଇପାରେ ।

୩୦—ମଶା ମଶରିରେ [ମେଶାରି ଭିତରେ ମଶା ବୁଲିଲା ପରି] ଫଳରେ ମୁଁ ତୁମରି ପରି ହେଲି—ଭ୍ରମର କୌଣସି ଫୁଲ ପାଖେ ସ୍ଥିର ରହେ ନାହିଁ । ସେ ବି (ଲାବଣ୍ୟବତୀ) ଶରତ କାଳରେ ଶୀର୍ଣ୍ଣ ମାଳତୀ ପରି ହେଲା ।

୩୧—ସ୍ତମ୍ଭ—ସାତ୍ତ୍ୱିକ ବିକାର [୧୯ ଛାନ୍ଦ ୨୦ ପଦ ଟୀକା ଦେଖ ।] ଲାବଣ୍ୟବତୀର ରସ ଭବନା ଶୀତଳ କରି ଦେଉ ଥିବାରୁ କାମ ମୋତେ ପୋଡ଼ି ପାରୁ ନାହିଁ ।

୩୨—ତଟେ—ପାଖରେ;

୩୩—କର୍ଣ୍ଣ ପାଶ—ମୋ କାନ ପାଖକୁ କଣ କହିବା ପାଇଁ ମୁହ ଦେଲା—କରିଛି ମନ—ମୁଁ ମନେ ବିଚାରୁଁ ବିଚାରୁଁ;

ପ୍ରେମସିନ୍ଧୁ କାମ ଅନାୟତ୍ତରେ । ଜିହ୍ୱା ଗଳିଲା ଶ୍ରବଣ ଭିତରେ ।
ବିଧି ନିଷେଧ ଅନଳେ ଆହୁତେ । କରି ସେ ଦିନ⁸ ରଚିଲି ସୁରତି । ୩୪ ।
କୁଚ ଅଗ୍ରେ ଚଳାଇଲି ରସନା । ବେଳୁ ବେଳ ହେଲା ହତ ଚେତନା ।
ମୁଦି ଦେଉଥିଲା ବେନି ଲୋଚନ । ପୁନଃ ପୁନଃ ଭାଷି ହୁଁ ହୁଁ ବଚନ । ୩୫ ।
କଟୀ ସଙ୍ଗତେ ମଦନ ମନ୍ଦିର । ଚମକାଇବା କେଡ଼େ ସୁଖକର ।
ମଧ୍ୟ ଦେଶକୁ ଜାନୁ ଯୁଗେ⁹ ଛନ୍ଦି । ମଦ ହତ ଯାଏ ସେ କଲା ବନ୍ଦି ।୩୬।
ତୋଳା ପ୍ରତିମା¹⁰ ସେ ଦିନୁ ଘେନିଛି । ନେତ୍ରେ ଲୂଚିଲା ସେହି ଯୋଗ ଛଡ଼ି ।
ଏହା ଚିନ୍ତି ଫାଟି ଯାଉଛି ବୋଇଲା । ପୁନଃ ପୁନଃ ହୃଦେ କର ତାଡ଼ିଲା । ୩୭ ।
ଏଣେ ନୃପ କୁମାରୀ ସୁକୁମାରୀ । ବସି ଏକାନ୍ତେ କାନ୍ତକୁ ସୁମରି ।
ହା ହା ଦିନ ବଞ୍ଚିଥିବେ କେମନ୍ତେ । ଦଣ୍ଡେ ମୁରୁଛି ନ ପାରନ୍ତି ମୋତେ । ୩୮ ।
ଦିନେ ମନ ଜାଣିବାକୁ ପଚିର । ଲୁଚି ରହିଲି ଗୁପତ-ମନ୍ଦିର ।
ବଜା ନୂପୁର କିଙ୍କିଣୀ ବାହାର । କରିଥିଲି ଆଗୁଁ କରି ବିଗ୍ଭର । ୩୯ ।
ଆସି ଭାଷି ପରାଣେଶ୍ୱରୀ ବୋଲି । ଖୋଜିଲେ ଯେ ଅନେକ ପୁର ବୁଲି ।
ଲେଡ଼ି ନ ପାଇ ପ୍ରକାଶି ଏ ଭାଷା । କାହିଁ ଗଲୁ ପ୍ରିୟେ ଦେଇ କି ଦଶା । ୪୦ ।
ବୋଲିବାକୁ ନେତ୍ରୁ ନୀର ବାହାର । ଅଛି ଏ ପୁରେ କହିଦେଲା କୀର ।
ତାହା କହିବାକୁ ତାଙ୍କ ଆରତ । ଶୁଣି ଧରି ମୁଁ ନ ପାରିଲି ଚିତ୍ତ । ୪୧ ।
ପୋଛି ପଣତେ ନୟନ ଜଳକୁ । ଧାଇଁ ଯାଇ କୋଳ କଲା ନବଳକୁ ।
ବୋଇଲେ ତୁ ଆଉ କ୍ଷଣେ କପଟ । ଭସେ ଏ ରୂପ ହୋଇଲେ ଇମଟ । ୪୨ ।
କାନ୍ତ ବୋଲି ଡାକିବା ଆଜ ଲୋପ । ହୁଅଛାରେ ରସବତୀ କଳାପ ।
ମୁଁ ଯେ ବୋଇଲି ଯାଉକିନ୍ନା ଉଣା । ଚୁମ୍ବ ଦେଇ ଚିତ୍ତ କଲି ପ୍ରସନ୍ନା । ୪୩ ।
ଏହି ଭବ ଗୋଟିକ ସୁମରଣେ । କରି ଲଭନ୍ତି ଏ କ୍ଷଣି ମରଣ ।
ପ୍ରିୟ ନିନ୍ଦା ଯେ ନ ପାରଇ ସହି । ଜୀବ ରଖିଛି ସେ କଥାକୁ ମୁହିଁ । ୪୪ ।

---

ପାଠାନ୍ତର—୮, ଫଳକ ବିବେଧ । ୯, ଉରୁକୁ ଜାନୁ ଛନ୍ଦେ । ୧୦, ପିତୁଳା ।

---

୩୪—ପ୍ରେମ ସିନ୍ଧୁ—ଲାବଣ୍ୟବତୀ,
୩୬—ମଦ ହତ ଯାଏ—କାମନା ନିବୃତ୍ତି ପର୍ଯ୍ୟନ୍ତ;
୩୮—ଏ ପଦ ଠାରୁ ଲାବଣ୍ୟବତୀର କଥା;
୪୨—ଇମଟ—ଲୋକୀ ;
୪୩—କଳାପ—ଶ୍ରେଷ୍ଠ; ମୁଁ ଯେ ବୋଇଲି—ମୁଁ ବିଗ୍ଭରିଲି—ଯାଙ୍କର ଏ କୋହ ଉଣା ହୋଇ ଯାଉ ଏହା ବିଗ୍ଭରି ଚୁମ୍ବ ଦେଲି;

ଭଙ୍ଗ ଅଧରୁ ଅମୃତ ପାଇଛି । ତାହା ବ୍ୟର୍ଥ କରିବି ମୃତ୍ୟୁ ଇଚ୍ଛି ।
ଏହା ବୋଲି ସେ ପ୍ରଳୟକୁ ପାଇ । ଶୀତ ଉପଗ୍ରରେ ସଖୀ ଚେତାଇ । ୪୫ ।
ଚେଟି ସୁନ୍ଦରୀ ବୋଲୁଛି ଏମନ୍ତ । ମହା ସୁନ୍ଦର ବର ମୋର କାନ୍ତ ।
ମୋତେ ମାଇଲେ ମାରିବୁ ମଦନ । ମୁଁ କି ବୋଲିବି ତୁ ତାଙ୍କ ସମାନ । ୪୬ ।
ଏହା ବୋଲୁଁ କଥାଏ ମନେ ପଡ଼ି । ତାହା ଭାବନା କରି ଗଲି ସଢ଼ି ।
ଦିନେ ଏହି ଶରଦ ରଜନୀରେ । ବସିଥିଲୁ ଯେ ଚନ୍ଦ୍ର ସଦନୀରେ । ୪୭ ।
ଘହିଁ ଶଶୀକି ମୋର ବଦନକୁ । ସମ ନ ଆଣିଲେ ତାଙ୍କ ମନକୁ ।
ବଳା ଦେଖବା ଛଳେ ଧରି ପାଦ । ନ ଛାଡ଼ିଲେ ବୋଲୁଁ ଏ କି ପ୍ରମାଦ । ୪୮ ।
ଚନ୍ଦ୍ରମୁଖୀ ଯେ ବୋଲଇ ବାନ୍ଧବି । ଛାଡ଼ିଲି ଏ ଦୋଷ ବୋଲ ଛାଡ଼ିବି ।
କହିବାର ଘେନା ଘେନି ବଚନ । ତୁଲ ସମ ନୋହେ କୋଟି ରତନ । ୪୯ ।
ଏହା ଚିନ୍ତନା କରୁଁ କରୁଁ ମନ । ନେତ୍ର ନୀରରେ ଝର ଝର ସ୍ତନ ।
ଅନୁଭବୀକି ଗୋଚର ଏ ରସ । ବୁଝାଇଲେ ମୂର୍ଖେ ହେବେ ସନ୍ତୋଷ । ୫୦ ।
ପଶୁ ସହିବାର କଷ୍ଟ ନୁହଇ । କରେ ବିଚ୍ଛେଦ ହରି କାହିଁ ପାଇଁ ।
ତାଙ୍କ ବେଳକୁ ଅନ୍ତର କୋଳରୁ । ନ କରନ୍ତି କମଳାକୁ ସ୍ନେହରୁ । ୫୧ ।
ସେହି ଦେବ ସରସିଜ ଚରଣ । ଉପଇନ୍ଦ୍ର ବୀରବର ଶରଣ ।
ଛାନ୍ଦ ନାମ୍ନ ରସିକ ରନ୍ତମାଳା । ଶୁଭେ ଏବେ ଏଠାରୁ ଶେଷ ହେଲା । ୫୨ ।

---

୪୫–ଅଧରରୁ ଅମୃତ ପିଇଛି । ମୁଁ ମରିଗଲେ ତାର ଅମୃତତ୍ୱ ବ୍ୟର୍ଥ ହେବ ଏବଂ ମୋ ପ୍ରିୟର ନିନ୍ଦା ହେବ । ଏହି ଅଭିପ୍ରାୟ ।
ପ୍ରଳୟ–ସାତ୍ତ୍ୱିକ ବିକାର [ ୧୯ ଛାନ୍ଦ ୨୦ ପଦ ଟୀକା ଦେଖ । ]
ଶୀତ ଉପଗ୍ରର–କର୍ପୂର ଚନ୍ଦନାଦି ପ୍ରତିକାର;

୪୮।୪୯–ମୁହଁ ସାଙ୍ଗେ ଚନ୍ଦ୍ରକୁ ସମାନ ନ କରିବାରୁ ଛଳରେ ମୋ ପାଦ ଧଇଲେ । ଏକି ପ୍ରମାଦ ( ବିପତ୍ତି ) ବୋଲି ମୁଁ କହିବାରୁ କହିଲେ, ମୁଁ ତୋତେ ଚନ୍ଦ୍ରମୁଖୀ ବୋଲି କହେ ଏ ଦୋଷକୁ ତୁ ଛାଡ଼ିଲି ( କ୍ଷମାଦେଲି ) ଏହା କହ ମୁଁ ପାଦ ଛାଡ଼ିବି ।

୫୧–ପଶୁ କେବଳ ବିରହ କଷ୍ଟ ସହିପାରେ କାରଣ ତାର ଜ୍ଞାନ ନାହିଁ । ହରି–ବିଷ୍ଣୁ;
କମଳା–ହରିପ୍ରିୟା, ଲକ୍ଷ୍ମୀ;

–o–

# ଦ୍ୱିଚତ୍ୱାରିଂଶ ଛାନ୍ଦ

## ହେମନ୍ତ ସନ୍ତାପ- ( ଶରଦ୍ଧେ ହେମନ୍ତଋତୁ ବର୍ଣ୍ଣନା )

ରାଗ-କୁମ୍ଭ କାମୋଦୀ

ହେମନ୍ତ ଋତୁ ପ୍ରବେଶ ହୋଇ ହେଲା ନବୀନ ବିଧାତା ।
ବେନିତନୁ ଏକ କଲା ଶୟନରେ ପୁରୁଷ ବନିତା ।
ଜଳ ଆଦର ତା ଅନଳେ ନିବେଶି ଅନିଳେ ଅସ୍ନେହ ।
ଜଳରେ କରାଇ ପୁଷ୍ପବତୀ କଲା ସେବତୀ ସନ୍ଦୋହ । ୧ ।
ପ୍ରଦୀପ ଛଳେ ଜଳାଇଲା ମନ୍ଦିରେ ହସନ୍ତୀ ମାନଙ୍କୁ ।
ନିଶି ନିଦ୍ରାବେଳେ ନତ କରାଇଲା ଉନ୍ନତ ଜନକୁ ।
ଚନ୍ଦ୍ର ଚନ୍ଦନରୁ ଆଦର ତୁଟାଇ ରଖିଲା ବସନେ ।
ସମସ୍ତ ତନୁ ଆଚ୍ଛାଦିତ କରାଇ ଯୁବତୀ ବିଧାନେ । ୨ ।
ଦିନ କ୍ଷୀଣ କଲା ରଜନୀ ବୃଦ୍ଧି କି କରାଇ ହରଷେ ।
ସଜଳ ଅଙ୍ଗ ବେପଥୁ ଜାତ କଲା ପବନ ସ୍ପରଶେ ।

---

୧-ଦୁଇ ଶରୀରକୁ ଏକ କରିବାରୁ ହେମନ୍ତ ଋତୁ ନୂଆ ବିଧାତା ପରି ହେଲା । ଅର୍ଥାତ୍ ବିଧାତାର କାର୍ଯ୍ୟ ପରି ଅନ୍ୟ ନୂଆ କାମମାନ କଲା । କିପରି ? ପାଣିର ଆଦରକୁ ନିଆଁରେ ରଖିଲା । ଅନିଳ ( ଜୀବନ. ପବନ )ରେ ଅସ୍ନେହ କରାଇଲା । ଜଳକୁ ପୁଷ୍ପବତୀ କରାଇଲା-କଇଁ ପାଣି ଶିଉଳି ପ୍ରଭୃତି ପାଣି ଫୁଲମାନେ ଫୁଟିଲେ । ସେବତୀ ସନ୍ଦୋହ ( ସମୂହ )କୁ ପୁଷ୍ପବତୀ କଲା, ସେବତୀ ଫୁଲ ଫୁଟିଲା; ପୁଷ୍ପବତୀ ପଦ ଏଠାରେ ଦେହଳୀ ପ୍ରଦୀପ ନ୍ୟାୟରେ ଜଳ ଏବଂ ସେବତୀ ଦୁଇଆଡ଼େ ଲାଗିବ । ଏବଂ ସବୁ ସେବତୀ ମାନଙ୍କୁ (ପରିଗୃହିକାମାନଙ୍କୁ) ଏକା ବେଳକେ ପୁଷ୍ପବତୀ କରିବା ନୂଆ କଥା ।

୨-ହସନ୍ତୀ-ଉହ୍ନେଇ; ଡେଙ୍ଗା ଲୋକେ ଢାଙ୍କି ଜାକି ହୋଇ ଶୋଇଲେ । ଚନ୍ଦ୍ର-କର୍ପୂର; ବସନେ-ଲୁଗାରେ; ଯୁବତୀମାନେ ଦିହରେ ଲୁଗା ଗୁଡ଼ାଇ ହୁଅନ୍ତି । ହସନ୍ତୀକୁ ଦୀପ କଲା, ଉନ୍ନତକୁ ନତ କଲା, ଚନ୍ଦ୍ର ଚନ୍ଦନରୁ ଆଦର ତୁଟାଇ ବସନେ ରଖିଲା । (ବସାଇ ଦେଲା ) ତନୁକୁ ଯୁବତୀ କଲା-ଏ ସବୁ ନୂଆ କଥା ।

୩- ବେପଥୁ-କମ୍ପ; ଦରିଦ୍ର ମାନେ ଶୀତରେ ଆଣ୍ଠୁ କୁଣ୍ଢାଇ ବସିଲେ, ଏଥିରେ ସବୁ ମଧ୍ୟ ନୂଆ କଥା-ଯାହା ସାଧାରଣତଃ କେହି କରନ୍ତି ନାହିଁ ।

ରବି କିରଣେ ଆଦର କରଇଲ ଚନ୍ଦମା ପ୍ରକାରେ ।
ଜାନୁ ଆଲିଙ୍ଗନ କରଇଲ ଏକା ଦରିଦ୍ର ଜନରେ । ୩ ।
ସକଳ ଗାତ୍ର ମସୃଣ ହରି ଦେଲ କରଟ,ନିକରେ ।
ଶୁକ ଶିଶୁଙ୍କ ପାଳନକୁ ଉଦୟ କରଇ ଲୋକରେ ।
କର ଯୋଗାଇଲ କୃଷକ ଜନରେ କରଇ ଅରଣୀ ।
କପୋତ ରତେ କୁହାଇ ଏ କାଳକୁ ଗତିଟି ତରୁଣୀ । ୪ ।
କେଦାର–ସମ୍ପତ୍ତି ସଦନରେ ସ୍ଥିତି ସତ୍ୱରେ କରଇ ।
ମନ୍ଦିର[୧] ପ୍ରତିମନ୍ଦିର ମଣରିରେ ସୁଖୀଙ୍କି ସୁଆଇ ।
ଘନ ପ୍ରତିବନ୍ଧେ ଗିରିକି ଗୋଡ଼ାଇ କୁଜ୍‌ଝଟି ପ୍ରକାଶେ ।
ଏ ଋତୁ ଗ୍ରହି କୁମାର ବିସ୍ମରଇ ବିରସ ମାନସେ । ୫ ।
କି କରିବ ଏ ହୀମନ୍ତ ଋତୁ ହୀନ ପଦ୍ମିନୀ–ନାଶନ ।
ପ୍ରିୟା ମୋ ପଦ୍ମିନୀ ପଦ୍ମ ପାଦ ପାଣି ସୁବାସ ତେସନ ।
ପଦ୍ମ ପର ଆକ୍ଷି ପଦ୍ମ ମୁଖୀ ପଦ୍ମ ପତର ଉଦରୀ ।
ତାହା ଅଭାବେ ସ୍ୱଭାବେ ମୋ କି ଗତି ଏଥକୁ ମୁଁ ଦରି । ୬ ।
ଦାରୁବ୍ରହ୍ମରୁ କେ ବଡ଼ ଘୋଡ଼ ଲାଗି ଜାଡ଼କୁ ଡ଼ରିଣ ।
ଅନଳ କୋଣକୁ ଆଶ୍ରେ କଲେ ଭାନୁ ତେଜସ୍ୱୀ ହୋଇଣ ।
ଛନ ମଧ୍ୟ ଗତେ ଶରଣ ପଶିଲ ଅନଳ ଆରତେ ।
ଗୋରୀ କୁଚ ଗିରିଦରୀ ପାଶେ ନାହିଁ ବଞ୍ଚିବି କେମନ୍ତେ । ୭ ।

---

ପାଠାନ୍ତର—୧, ମୋଦକେ,

---

୪–କରଟ–କୁଆ; ମସୃଣ–ଚିକଣ; ସମସ୍ତଙ୍କ ଠାରୁ ଚିକଣ ନେଇ କୁଆ ଦେହରେ ଦେଲ । ହୀମନ୍ତରେ କୁଆ ସୁନ୍ଦର ହୁଏ । ଶୁକ ଶିଶୁ–ଶୁଆ ପିଲ; କୃଷକ ମାନେ ଧାନ କାଟି ସାରି ଖଞ୍ଜଣା ଦେଲେ ଓ ରଣ (କରଜ) ସୁଝିଲେ । କପୋତ (କାପ୍ତାର) ଶବ୍ଦ ଏ ସମୟରେ ବୋଧ ହୁଏ ସୁନ୍ଦର ।

୫–କେଦାର ସମ୍ପତ୍ତି–ଫସଲ; ଘନ ପ୍ରତିବନ୍ଧେ–ମେଘ ବଦଳରେ; କୁଜ୍‌ଝଟି–କୁହୁଡ଼ି;

୬–ହୀନ-ଛୋଟ ଲୋକ, ବଦମାସ; ପଦ୍ମିନୀ (୧· ପଦ୍ମଲତା, ୨. ପଦ୍ମିନୀ ସ୍ତ୍ରୀ); କାକର ପଡ଼ିଲେ ପଦ୍ମଲତା ନଷ୍ଟ ହୁଏ । ପ୍ରିୟାର ଭିନ୍ନ ଭିନ୍ନ ଅଙ୍ଗ ଆଦି ପଦ୍ମ ବୋଲି କହି ଯାଉଛି ।

୭–ଦାରୁବ୍ରହ୍ମ–ପୁରୀର ଜଗନ୍ନାଥ; ଦାରୁରେ (କାଠରେ) ଏହି ଠାକୁର ବ୍ରହ୍ମ (ସ୍ରଷ୍ଟି–ତତ୍ତ୍ୱ ବା ଈଶ୍ୱର) ପ୍ରକାଶ ପାଇ ଥିବାରୁ ଏହାଙ୍କ ନାମ ଦାରୁବ୍ରହ୍ମ । ଅନ୍ୟ କୌଣସି

ବିଧି ବୋଲନ୍ତି ବିଧାତାକୁ କାହିକି ଅବିଧି କଲ ତ ।
ଅମୃତ ଭୁଞ୍ଜାଇ ପିଚୁମର୍ଦ୍ଦଛଦ ତାସ୍ବକୁ ଦେଲ ତ ।
ଏହି ସମୟେ ଯେତେ ରୂପେ ଭବକୁ ଦେଇଛି କିଶୋରୀ ।
ବ୍ରହ୍ମ ପଦବି ତ ପାଇଲେ ଚିତ୍ତରୁ ନୋହିବ[୨] ପାସୋରି । ୮ ।
ଉଷୁମ କୁସୁମ ହାସୀ ଅଙ୍ଗ ଜାତ ଶୀତକୁ ନାଶଇ ।
ପିନ୍ଧିଛି ପଟନୀ ଏ ଭ୍ରମକି ଚଙ୍ଗେ ଅଙ୍ଗରେ ମିସଇ ।
ନୀଶାରେ ନୀଶାରେ ଅନାଦର ହେଲେ ଉଠେ କି ପୀରତୀ ।
ଗୁଣ ତ ଅପାର ପଣନ୍ତ ଘୋଡ଼ାଇ ଦିଅଇ ସୁରତି । ୯ ।
ମଶରି ଉଦରେ ଅନ୍ଧାର ଆଲୋକ ଦୀପତ[୩] ଥିବାରେ ।
ଆଜନ୍ମ ସୁଖୀ ସୁଖଦାୟୀ ହୁଅଇ ସୁରତି ଦେବାରେ ।
ତାହା ମୋହର ପ୍ରଶଂସା ହୋଉଥାଇ ଯାମିନୀ ବୃଦ୍ଧି କି ।
କିଛି ଅବକାଶ ହେବ ବୋଲି ବନ୍ଧ ମାନଙ୍କ ବିଧିକି । ୧୦ ।
ଯେତେ ମୋହି ପାରି ତେତେ ବିଧି ରସ ହୁଅଇ ଜନିତ ।
ଏଣୁ ବିଗ୍ରହୁଛି କ୍ଷୀର ପରକାର ପଘଣ ଧନୀ ତ ।
ଇକ୍ଷୁ ରସ ଜାତ ଦ୍ରବ୍ୟ ପ୍ରାୟ ବେଳୁଁ ବେଳ ସେ ମଧୁର ।
ଏଡ଼ିକି ଅକର୍ମଚନ୍ତ ମୁଁ ସେ ବାଳା ହୋଇଛି ଅନ୍ତର । ୧୧ ।

---

ପାଠାନ୍ତର—୨, ନ ସିବ ମନରୁ । ୩, ଧ୍ୱାନ୍ତମତ । ୪, ରଜନୀ ।

---

ବିଗ୍ରହ କାଠରେ ନୁହେଁ । ସେ ସବୁ ମଣି (ପଥର) ବା ଧାତୁ ବିଗ୍ରହ । ଓଢଣିଷଷ୍ଠୀ ବା ମାର୍ଗଶିର ଶୁକ୍ଳ ଷଷ୍ଠୀ ଠାରୁ ଦିଅଁ ଘୋଡ଼ାବା ଓଢଣ ଲାଗି ହୁଅନ୍ତି । ସୂର୍ଯ୍ୟ ହେମନ୍ତରେ ଅଗ୍ନି କୋଣରୁ ଉଠନ୍ତି । ସମସ୍ତେ ପଞ୍ଝା ପଞ୍ଝା ହୋଇ ନିଆଁ କୁଣ୍ଡାଇ ବସନ୍ତି ।

୮—ପିଚୁମର୍ଦ୍ଦଛଦ—ନିମ ପତ୍ର; ବ୍ରହ୍ମ ପଦବୀ- ବ୍ରହ୍ମ ଲୋକ, କିମ୍ବା ବ୍ରହ୍ମାଙ୍କ ସ୍ଥାନ;

୯—ସେ ଦେହରେ ଏପରି ମିଶି କରି ଥାଏ ଯେ ଲୁଗା ନ ଥିଲେ ସୁଦ୍ଧା ଲୁଗା ପିନ୍ଧିଛି କି ଏହି ଭ୍ରମ ହୁଏ । ନୀଶାର—ଘୋଡ଼ି ହେଲ ଲୁଗା, କମ୍ବଳ ବନାତ ପ୍ରଭୃତି ।

୧୦—ଯାମିନୀ ବୃଦ୍ଧିକି—ରତି ବଢ଼ ହେବାର୍ଥୀକୁ; ଅବକାଶ ହେବ—ବେଳ ହେବ; ବନ୍ଧ—ରତିବନ୍ଧ; [୪ର୍ଥ ଛାନ୍ଦ ୩ୟ ପଦ ଟୀକା ଦେଖ ।]

୧୧—ମୋହି ପାରି—୧. ମୁଗ୍ଧ କରି ପାରି, ୨. ମୁହାଁଇ ପାରି (ଯଥା—ଦହି); କ୍ଷୀର (ଦୁଧ) କୁ ଯେତେ ମୁହାଁଇବ ତେତେ ବିଧି (ସେତିକି ପ୍ରକାର ବା ପରିମାଣ)ରସ (ଲହୁଣୀ) ବାହାରେ । ଇକ୍ଷୁ ରସରୁ (ଆଖୁ ଦୋଉଥିରୁ) ଯେପରି କ୍ରମେ ଗୁଡ଼, ଗୁଡ଼ରୁ ନବାତ,

ଦିନେଟି ଭର୍ତ୍ତୃ* ଭର ଦୂର ହୋଇଲା ଅଚେତ ବଶରେ ।
ଝଗପଗ ନିଦ୍ରା ଭଜିଗଲା ମୋର ଢାଡ଼ର ଡାସରେ ।
ମନେ କଲି ପୁଷ୍ପବନ୍ତୀ ହୋଇ ପାଶୁଁ ଗଲକି ସଜନୀ ।
କି ଦଣ୍ଡ ପଡ଼ିଲା କି କାହିଲେ କି ରୂପେ ନିମିଏ ରଜନୀ । ୧୨ ।

ଲେଡ଼ୁ ସେଜରେ କୁଚେ କର ପଡ଼ିଲା ହେଲି କି ଆବେଶ ।
ମୃତ୍ୟୁ ପାଇଥିଲା ପିଣ୍ଡରେ କି ପୁଣ ପରାଣ ପ୍ରବେଶ ।
ଅଣି କରି ଆଣି ଅଣିମାଦି ସୁଖ କୋଳରେ ପାଇଲି ।
ସେହି ପରକାରେ ନିଧୁବନ ଚେଁ ନୀବୀକି ଫେଇଲି । ୧୩ ।

ମଲିଟି ବୋଲି ଭିଡ଼ି ଧରି ମୋତେ ସେ ଅଳପ କର୍ମିଲା ।
ଆଜ ଏ କି ରଙ୍ଗ ବୋଲି ସେ ସୁରଙ୍ଗ ଅଧର ଗ୍ରସିଲା ।
ମଦନ ଆଣିକି ଭଙ୍ଗିଲି ସେ ଦିନ ସମସ୍ତ ରୂପରେ ।
ରସ ଜାଣିମାକୁ ଯୁବତୀ ନ ଥିବ ତାପରି ସଂସାରେ୬ । ୧୪ ।

ବାନ୍ଧବାକି ଥରେ ବନ୍ଧ ବିଧାନରେ କୋଳରେ ବସାଇ ।
ମୋ ମୁଖ ପାନ ତା ମୁଖେ ଦେଲି ଓଷ୍ଠ ଓଷ୍ଠରେ ମିଶାଇ ।
ମୋ ମୁଖେ ଦିଅ ତୁ ଲେଉଟାଇ ବୋଲୁଁ ନ କଲା ସମ୍ମତ ।
ବୋଇଲା ପଣତ ପ୍ରସାରି ମାଗୁଛି ନ ବୋଲ ଏମନ୍ତ । ୧୫ ।

ମୁଁ ବୋଇଲି ବନ୍ଧୁ ଅଧର ବନ୍ଧୁକୁଁ୭ ମଧୁ ମୁଁ ନ ପାଇ ।
ଏଥକୁ ବିରୋଧୀ ଲବଣ୍ୟନିଧିରେ ହୋଉଛୁ କିମ୍ପାଇଁ ।
ବୋଇଲା ଦେବତା ପ୍ରତିଷ୍ଠା ସରଘା ଉଚ୍ଛିଷ୍ଟ ରସରେ ।
କେମନ୍ତ ହୋଇ ଅଛି କି ଆଉ କଥା ବିହୀନ ଦୋଷରେ । ୧୬ ।

---

ପାଠାନ୍ତର—*, ଭର୍ତ୍ତ୍ୟ । ୬, କଅଟେ ତା ପରେ । ୭, ବନ୍ଧୁର ।

---

ନବାତରୁ ସାକର, ସାକରରୁ ମିଶିରି ପ୍ରଭୃତି ହୁଏ ସେହିପରି ଅନୁରାଗର ପୂର୍ବା ଭସରୁ କ୍ରମେ ଅନୁରାଗ, ପ୍ରୀତି, ସୁରତି ପ୍ରଭୃତି ଆସ୍ତେ ଆସ୍ତେ ବାହାରେ ବୋଲି ଅଳଙ୍କାର ଶାସ୍ତ୍ରରେ ଅଛି ।

ଇକ୍ଷୁ ବୀଜବତ୍ ତତଃ ସ୍ନେହଃ ରସବତ୍ ତତୋ ମାନଂ
ଗୁଡ଼ବତ୍ ତତଃ ପ୍ରଣୟ କୋଷ ଖଣ୍ଡବତ୍ ତତୋ ରାଗଃ
ଶର୍କରବତ୍ ତତୋଽନୁରାଗ ଶିତାବତ୍ ତତୋ ମହାନୁରାଗ
ଶୀତୋପଳା ବତ୍—ଇତ୍ୟାଦି ଉଜ୍ଜ୍ୱଳ ନୀଳମଣୌ ।

୧୩—ଆବେଶ—ରସ ଭାବାବେଶ; ନିଧୁବନ—ରତି;

୧୪—ମଦନ ଆଣିକି—କନ୍ଦର୍ପର ଆଙ୍ଗକୁ, ଦର୍ପକୁ;

୧୬—ଅଧର ରୂପ ବଧୂଲି ଫୁଲରୁ ଅର୍ଥାତ୍ ପାନସିଠା ମୋ ମୁହଁରେ ଦେଲେ ପ୍ରକୃତ ମଧୁ

ଇଙ୍ଗାରେ ଚିଣି ନ ପାରି ମୁଁ ପ୍ରିୟାର ଚୁମ୍ବିଲି ଲପନ ।
ଆଉ ସେ ବିଧିରେ କେବେ ରଚିବାର ଦେଖିବା ସ୍ୱପନ ।
ନିଦ୍ରାହିଁ ହେଲେ ନୟନେ ନ ଆସଇ ସ୍ୱପନେ ସଙ୍ଗତି ।
ହୋଇଥିଲେ ମୋର ହୋଇଥାନ୍ତାଟିକି ଏରୂପେ ସୁଗତି । ୧୭ ।
ତାମ୍ବୁଳ ଭଙ୍ଗି ବଢାଇ ଦେଇଁ ଦିନେ ସେ ଅନୁରାଗନ୍ତୁ ।
ଯାଚିଲି ତୁଚ୍ଛା କର କାମ କାତର ବକ୍ଷେ ମୋ ଅଗ୍ରନ୍ତୁ ।
ଚେତାଇ ଦେଲି କକ୍ଷ କଚେ ଟଙ୍କାଇ ମୁଁ ତୀକ୍ଷ୍ଣ କରଜ ।
ଜଳ ପାଇଲା ପରି ହୋଇ ନୁଆଇଁ ବଦନ ନୀରଜ । ୧୮ ।
ପୁରେ ଯାଇ ରହି କପାଟ ପାର୍ଶ୍ୱେ ସେ ବକ୍ରେ ଅନାଇଁ ।
ମନକୁ ମୋର ଅଧୀନ କରି ନେଲା ତକ୍ଷଣେ ମନାଇ ।
ଅର୍ଦ୍ଧ ଅଙ୍ଗ ଅଙ୍ଗୀକାର ହୋଇଛି କି ମୁଁ ଭଣୁଁ ସହାକି ।
ଶରୀର ଯାକ କାହାର ବୋଲି ପ୍ରିୟା ଛଳିଲା ଚହିଁକି । ୧୯ ।
ବିଶେଷେତ କିଣା ବୀଣା ବଚନାର ଏ ଗିରେ ହୋଇଲି ।
ପଲ୍ୟଙ୍କ ଅଙ୍କକୁ କର ଧରି ନେଇ ସୁରସ ବିହିଲି ।
ନୀବୀ ବାନ୍ଧୁ ବାନ୍ଧୁ ସ୍ୱଭବେ ଭିଡ଼ଇ ଅଧରେ ରଦନ ।
ବୋଇଲି କାହାକୁ ଏଡ଼େ କୋପ ପଳାଇଲାଣି ମଦନ । ୨୦ ।

---

ପାଠାନ୍ତର—୮, ଭ୍ରମିଲା ।

---

ପାଇବି । ସେ କହିଲା ସରଘା ଉଚ୍ଛିଷ୍ଟ ( ମହୁମାଛି ଅଇଁଠା ) ରସ (ମହୁ)ରେ ଅବଶ୍ୟ ଦେବତା ପ୍ରତିଷ୍ଠା ହୁଅନ୍ତି । କିନ୍ତୁ ତେମନ୍ତ ହୋଇ (ସେପରି) ଦୋଷରେ ବିହୀନ (ନିର୍ଦ୍ଦୋଷ) ଆଉ କଥା ( ଆଉ କୌଣସି ଉଚ୍ଛିଷ୍ଟ ) ଅଛି କି ? ଅର୍ଥାତ ଏପରି କିଛି ବିଧି ନାହିଁ ।

୧୭—ନିଦ୍ରାହିଁ ହେଲେ (ନିଦ୍ରା ତ ହେଉନାହିଁ, ଯେବେ କଦବା ହେଉଛି ତେବେ) ସ୍ୱପନେ ସଙ୍ଗତି (ସ୍ୱପ୍ନରେ ତା ସଙ୍ଗେ ମେଳ) ସୁଗତି—ଭଲଗତି;

୧୮—ପାନ ଯାଚିବାକୁ ଯାଇ ଭୁଲରେ ଏଣ୍ଟାଳି ହାତ ମୋ ଆଡ଼କୁ ବଢାଇ ଦେଲା । ମୁଁ କାଖରେ କୁତୁ କୁତୁ କରି ଚେତାଇ ଦେବାନ୍ତୁ ଲାଜରେ ମୁଣ୍ଡ ପୋତି ଦେଲା ।

୧୯—ଅର୍ଦ୍ଧ ଅଙ୍ଗ ଅଙ୍ଗୀକାର ହୋଇଛି କି—ମୋ କୋଳକୁ ଆସିବ କି ? ଅର୍ଦ୍ଧ ଅଙ୍ଗ କଥା ଶୁଣି ସେ ଛଳିଲା—ଏ ଗୋଟାକ ଯାକ ଶରୀର କାହାର କି ?

୨୦—ସ୍ୱଭବେ—ସବୁବେଳେ କଲା ପରି ସେଦିନ ସୁରସ ଶେଷରେ; ମଦନ ପଳାଇଲାଣି—କାମ ସରିଲାଣି;

ତହିଁକି ଇଛିଛି ମୁଁ ନିକି ଭଜନ ଏମନ୍ତ ଭଙ୍ଗୀକି ।
ଘେନା ଘେନିଲେ ତୁଲ ହୋଇ ନାହିଁ ତ କୋମଳ ଅଙ୍ଗୀକି ।
ବନ୍ଧ ଭେଦରେ ଲଗିଥିଲ ଅଳତା ଲଲଟେ ଘୁହିଁଲ ।
ପୋଛି ଦେଇ ସଖୀ କି ବୋଇଲେ ମୋତେ ବୋଲି ଯେ ବୋଇଲ । ୨୧।
ମୁଁ ବୋଇଲି କି ବୋଇଲେ କିପାଁ ତୁ ମୋ ଶିରର ଭୂଷଣ ।
ତୁ ଅବା ମନକୁ କି ଘେନିବୁ ମୋତେ ନୁହଇ ଦୂଷଣ ।
ଏ ବଚନେ କୃତ୍ୟ କୃତ୍ୟ ହେଲ ପଗ ହୋଇଲ ଜୀବନ ।
ଲୁଛି ହୋଇଯାଇ କି ନା ବୋଲି ଦେଲ ଅମୂଲ୍ୟ ଚୁମ୍ବନ । ୨୨ ।
କବରୀ କରି ଦିଅ ମୋତେ ପ୍ରତକ୍ଷେ ଜ ବୋଲେ ବାଳିକା ।
କୁନ୍ଦ କରବୀର କୁସୁମ ମିଶାଇ ବିରଚି ମାଳିକା ।
ସୁନ୍ଦର ମାଳା ହେଲ ବୋଲି ଦେଖାଇ ଧଇର୍ଯ୍ୟ ଖଣ୍ଡନା ।
ରମଣୀ ହୃଦୟ ମଣି ମୁଁ ତା କେଶେ କରନ୍ତେ ମଣ୍ଡନା । ୨୩ ।
ଅନୁଗ୍ରହ ପାଇଥିବା ଭୃତ୍ୟ ପରି ଓଳଗ କରଇ ।
କେମନ୍ତେ ଘେନା ଘେନି ଘେନା ସୁମନା ମନକୁ ହରଇ ।
ସ୍ନେହୁଁ ସ୍ନେହ ବଶେ ବସାଇଁ କୋଳେ ମୁଁ ଲବଣ୍ୟବତୀକି ।
ଥର କେତେ ଖସି ବସି ଅବନିରେ ବଢାଇ ପ୍ରୀତିକି । ୨୪ ।
ଆଉ ପାଇବିକି ଯୁବତୀ ବରକୁ ନୋହୁଛି ପରତେ ।
ଯୋଗୀ ହୋଇ ଯାଇ ଦେଇ ଭବ ମାନ ଜପିବି ନିରତେ ।
ବାଞ୍ଛା ତରୁ ତଳେ ବସି କାଶୀ ବାସୀ ତୋଷି ଏ କାମନା ।
ଗଙ୍ଗା ସାଗରେ ଝାସି ହେଲେ ପାଇବି ଗଜେନ୍ଦ୍ର ଗମନା । ୨୫ ।

---

୨୧—ବନ୍ଧ ଭେଦରେ—କୌଣସି ଏକ ରତି ବନ୍ଧ ବେଳେ;

୨୨—ତୁ ଅବା ଜାଣ ବିଗୁରୁ ଥିବୁ କିନ୍ତୁ ତୋ ଅଳତା ମୋ ମୁଣ୍ଡରେ ଲଗିବା ମୋତେ ଦୂଷଣ (ଦୋଷ କଥା) ନୁହେ । ଜୀବନ–ପ୍ରେୟସୀ; ଲୁଛି ହୋଇ ଯାଇ କିନା–ଅଧା ମରି ଯାଏଁ ।

୨୩—କବରୀ—ଜୁଡ଼ା; କରବୀର କନିଅର; ମୋତେ ସଫା କହେ ନାହିଁ କିନ୍ତୁ ମାଳା ଦେଖାଇବାରୁ ମୁଁ ତା ହୃଦୟ ମଣି (ଜାଣି) ପାରେ ।

୨୪-ଅନୁଗ୍ରହ ପାଇଥିବା ଗୁକର ପରି ମୋତେ ଓଳିକି ହୁଏ; ଘେନା–ଭବ;

୨୫—ଦେଲ—ମେ ଦେଇଥିବା; ବାଞ୍ଛା ତରୁ–କଳ୍ପତରୁ; ସେଥିରେ ଯାହା ବାଞ୍ଛା ଜଗଯାଏ ମିଳେ । ପ୍ରୟାଗ ଠାରେ ଆଗେ ଏହି ନାମରେ ଏକ ଗଛ ଥିଲ । କାଶୀ ବାସୀ– କାଶୀ ବିଶ୍ୱନାଥ; [୧ମ ଛାନ୍ଦ ୨୦ ପଦ ଟୀକା ଦେଖ ।]

ଯଉଁ ରୂପେ ହସେ ମୁଖୁଁ ସୁଧା ଖସେ ଦିଶେ ସେ ଦିଶୁଛି ।
ଯଉଁ ରୂପେ ଆସେ ପୁରତେ ମୋ ବଶେ ମନେ ସେ ପଡୁଛି ।
ଯଉଁ ରୂପେ ଭଷେ ବଚନ ଏକ୍ଷଣି କର୍ଣ୍ଣେ କି କହୁଛି ।
ତେବେ ଅତ୍ୟନ୍ତ ଶୀତଳ କରୁଥିଲା ଏବେ ତ ଦହୁଛି । ୨୬ ।
ଏଣୀ ନୟନାକୁ ପାଇଲେ ଏକ୍ଷଣି ଏମନ୍ତ କରିବି ।
ଦଣ୍ଡେ ହେଁ ନ ଛାଡ଼ି ଚକ୍ଷୁ ନ ପିଛାଡ଼ି କୋଳରେ ଧରିବି ।
ମୁଁହି ସଖୀ ହୋଇ ନୀତିକି ବଢାଇ ଦେବି ଯେ ତାହାର ।
ନିୟମ ପକାଇ ପଞ୍ଚଗ୍ରାସୀ ପରି କରିବି ଆହାର । ୨୭ ।
ଅରନ୍ଧ୯ କାଳରେ ରତି ସିନା ନାହିଁ କରିଛି ଦଇବ ।
ଭୁଜେ ଭୁଜ ଛନ୍ଦା ଛନ୍ଦି ହୋଇ ହୃଦ ପରେ ମୋ ଶୋଇବ ।
ବର୍ତ୍ତି ଥିବା ଯାକ ବ୍ରତୀ ହୋଇଥିବି ତାହାକୁ ପାଇଲେ ।
ରତି କେବଳ ନିଷେଧ ନ କରିବି ଏମନ୍ତ ହୋଇଲେ । ୨୮ ।
ଗତି ତ ଗତି ଦିବସ ଏହିମତି କରିବି ଏସନ ।
ଯେଣେ ଯାଉଥିବ ଛାଇ ପ୍ରାୟ ପଛେ କରିବି ଗମନ ।

---

ପାଠାନ୍ତର— ୯, ଦଇବ ।

---

୨୬—ଦିଶେ—ଦିଶରେ, ଗୁରିଆଡ଼େ; ପୁରତେ—ଆଗକୁ; ମୋ ଅଧୀନକୁ, ମୋ ପାଖକୁ; [ବିରହ ହେତୁ] ଦହୁଛି ।

୨୭—ଏଣୀ-ମୃଗ; ଚକ୍ଷୁ ନ ପିଛାଡ଼ି—ତା ଠାରୁ ଆଖି ପଛକୁ ନ ଫେରଇ; ନୀତିକି [ ୨୩ ଛାନ୍ଦ ୩୦ ପଦ ଟୀକା ଦେଖ । ] ପଞ୍ଚଗ୍ରାସୀ ପରି—ଏକତ୍ର [୩୪ ଛାନ୍ଦ ୭୮ ପଦ ଟୀକା ଦେଖ]

୨୮—ଅରନ୍ଧ—ପାକାସର୍ଶ, ହାଣ୍ଡି ନ ଛୁଇଁବା ସମୟ; ବର୍ତ୍ତି ଥିବା ଯାକ—ବଞ୍ଚିଥିବା ଯାକ; ବ୍ରତୀ—ଅସି ଧାର ବ୍ରତରେ ବ୍ରତୀ [ଏହି ବ୍ରତରେ ସ୍ତ୍ରୀ ପୁରୁଷ ଏକତ୍ର ଶୋଇ ମଧ୍ୟ କୌଣସି ପ୍ରକାର କାମ ଭାବନା କରନ୍ତି ନାହିଁ ।]

"ଯତ୍ରୈକଶୟନ ସ୍ଥାପି ପ୍ରମଦା ନୋପ ଭୁଜ୍ୟତେ
ଅସି ଧାର ବ୍ରତଂ ନାମ ବଦନ୍ତି ମୁନି ପୁଙ୍ଗବାଃ"—ଅପିଚ
'ଯୁବା ଯୁବତ୍ୟା ସାର୍ଦ୍ଧଂ ଯନ୍ ମୁଗଧ ଭତୃବଦାଚରେତ୍
ଅନ୍ତର୍ନିବୃତ୍ତ ସଙ୍ଗଃସ୍ୟାଦସି ଧାର ବ୍ରତଂ ହିତତ୍'—ଇତି ଯାଦବେ ।

ରତି କେବଳ ନିଷେଧ ନ କରିବି (ଏକା ରତି ନୁହେ ଚୁମ୍ବନ ଆଲିଙ୍ଗନାଦି ମଧ୍ୟ ନିଷେଧ କରିବି)

ଗଣ୍ଡି ଦେଇଥିବି ବସନେ ବସନ ରଜନୀ ଦିବସେ ।
ଏମନ୍ତ ଯତ୍ନ କରିଥିଲେ ଆଉ କି ଅନ୍ତର ହେବ ସେ ।୨୯ ।
ବିଗ୍ରହ୍ନି ବିଗ୍ରହ୍ନି ଭୀଷ୍ମ ଭବ ମାନ ଲଭିଲ ମୋହକୁ ।
ଶୀତ ଉପଚାରେ ସଖୀଏ ସାନ୍ତ୍ୱନା କଲେ ତା ଦେହକୁ ।
ଜ୍ଞାନ ବଶେ ଭଣେ ଏହି ରୂପେ ହେଲେ ବିଅର୍ଥ[୧୦] ମରଣ ।
ଲଜିବି[୧୧] ପ୍ରିୟା ଆହା କଲେ ସିନା ମୁଁ ଲଭନ୍ତି କାରଣ ।୩୦।
ବୁଝାଉ ଥାଇଁ ଜୀବ ତୋତେ କେତେ ମୁଁ ନ କଲୁ ବୋଲ ରେ ।
ଥାଉଁ ଥାଉଁ ଜୀବେଶ୍ୱରୀ ସୁକୁମାରୀ ସୁନ୍ଦରୀ ତୁଲରେ ।
କହୁଁ କହୁଁ ପ୍ରିୟା ବୋଲି ଗହୁଁ ଗହୁଁ ତାହାରି ମୁଖକୁ ।
ଯାଇଥିଲେ ପାଇ ଥାଆନ୍ତୁ ପରମ ନିର୍ବାଣ ସୁଖକୁ । ୩୧ ।
ତେଣେ ନୃପସୁତା ବିରହେ ଆରତା କହଇ ସଖୀଙ୍କି ।
ସତେ ପରଣ ଈଶ୍ୱରଙ୍କୁ ବାରେ ମୁଁ ପାଇବି ଦେଖିକି ।
ଅଭିନ୍ନ ବୋଲି ଡାକୁ ଥାନ୍ତି ମୋତେ ସେ ଯେନି କି ମନରେ ।
ଅକାର ହରଣ କଲତ ଦଇବ ଅଳପ ଦିନରେ । ୩୨ ।
ଏକାହୋଇ ଏ କଠୋର[୧୨] ରଜନୀରେ କେମନ୍ତ ସୋଇବେ ।
ନୃପତି ନନ୍ଦନ କଷଣ ସହ ସେ ନୁହନ୍ତି ଦଇବେ ।
ନ ପୁଣ ମୋ ଆଶା ଛାଡ଼ି ଆନେ ଆଶା କରି ସେ କୁମାର ।
ଦିନ ବଞ୍ଚିଥିବେ କିପାଇଁ[୧୩] ଆସିବେ ପୁରୁଷ ଭ୍ରମର । ୩୩ ।

ପାଠାନ୍ତର—୧୦, ଏ ରୂପେ ହନେ ତ ଅବଶ୍ୟ ମରଣ । ୧୧, ଲଭିବ । ୧୨, ଏକଠାବେ । ୧୩, କେମନ୍ତ ।

୩୦—ମୁଁ ମଲ ବେଳେ [ପ୍ରିୟା ଆହା କଲେ] କାରଣେ (ସଦ୍‌ଗତି) ।

୩୧—ହେ ଜୀବ, ତୋତେ ବୁଝାଉ ଥାଏ; ତୁଲରେ—ସାଙ୍ଗରେ; ପରମ ନିର୍ବାଣ ସୁଖ—ମୋକ୍ଷ, [ବୌଦ୍ଧ ମତରେ ଶରୀର ବନ୍ଧନରୁ ମୁକ୍ତିକୁ ନିର୍ବାଣ କହନ୍ତି ।]

୩୨—ଏଠାରୁ ଲାବଣ୍ୟବତୀର ଦଶା ବର୍ଣ୍ଣନା । ଅକାର ହରଣ କଲ ଅର୍ଥାତ୍ 'ଅ—ଭିନ୍ନ' କୁ 'ଭିନ୍ନ' ( ଅଲଗା ) କଲ ।

୩୩—କଠୋର ରଜନୀ—ଜାଡ଼ ରାତି; କଷଣ ସହ—କଷ୍ଟ ସହିବା ବାଲା; ଦଇବେ—ସମ୍ଭବ; ଉପେନ୍ଦ୍ର ଭଞ୍ଜ ଯୁଗରେ ବଡ଼ଘର ଲୋକେ ବିଶେଷତଃ ରାଜକୁଳ ପୁରୁଷର ଏପରି ବ୍ୟଭିଚାର ଓ କାମୁକତା ବିଭବ ଭାବରେ ବଢ଼ିଥିବା ଏପରି ଭବ ମାନଙ୍କରେ ସ୍ପଷ୍ଟ ହେଉଛି । ]

ଏମନ୍ତ ହୋଇଥିଲେ ତ ଭଲ କଥା ଥିବାର ସେ ଜାଣିବେ ।
ଦିନ ଦିନକ ପୀରତି ଘେନି ମୋର ଚେତକ ତେଜିବେ ।
ମୋହ ପ୍ରସଙ୍ଗ ବିହୀନ ଦିନେ ବଲ୍ଲଭୀ ଆଗରେ କହିବେ ।
ଆଉ ନିଜେ ଜାଣିବେ ଥିବ ବନ୍ଧୁ ବୋଲି ଆକୁଳ ହୋଇବେ । ୩୪ ।
ସଖୀ ଚେତାଇ କହିଲେ ରେ ସଜନୀ ତୁହିଁ ତ ଗୁଣିକ ।
ଜଉବିଦ ମାଳା ଘେନି କି ଯେ ପୁଣି ବହଇ ମାଣିକ୍ୟ ।
ଦିନକ ପଥ ମାସକେ ନ ସରିବ ଦୁର୍ବଳ ବଂଶରେ ।
ତୋହ ଆଶାରେ ଆସି ସେ ହୋଇବେଣି ନିକଟ ଦେଶରେ । ୩୫ ।
ସ୍ୱପନ ଦେଖିଲି ଜନକ ନନ୍ଦିନୀ ସ୍ୱରୂପେ କାମିନୀ ।
କହିଲେ ନିକଟେ କାନ୍ତକୁ ଲଭିବ ଗଜେନ୍ଦ୍ର ଗମନୀ ।
କହେ ଉପଇନ୍ଦ୍ର ବୀରବର ଅଶା ଏଣୁ ତା ଉଦିତ ।
ରସିକ ଭ୍ରମର ତୋଷଦ ମାଳତୀ ଏ ଛାନ୍ଦ ବିଦିତ । ୩୬ ।

---

୩୪—ଏମନ୍ତ ହୋଇଥିଲେ—ସେ ଯଦି କାଳ ବଞ୍ଚିଯିବା ପାଇଁ ଅନ୍ୟ ସ୍ତ୍ରୀ ଆଦରି ଥିବେ; ପ୍ରସଙ୍ଗ—ବିଷୟ; [ ଏ ଭାବ ଉପେନ୍ଦ୍ରଭଞ୍ଜଙ୍କ ପରି କେଳି ରସିକ କବି ପକ୍ଷରେ ପୁରୁଷର ସ୍ୱାର୍ଥରୁ ଜାତ—ସ୍ୱାଭାବିକ ନୁହେ । ହିନ୍ଦୁ ନାରୀ ପକ୍ଷରେ ଏହା ପରମ୍ପରା ବଳରେ ସ୍ୱାଭାବିକ ପରି ହେଲେ ହେଁ ଏ କବିଙ୍କର କଳ୍ପନା ଏପରି ହେବା ଯୁକ୍ତି ଯୁକ୍ତ ଲାଗୁନାହିଁ । ଉଟିକାର ଯଥାର୍ଥ କହିଛନ୍ତି,

" ନ ମାନିନୀ ସଂସହତେ ଽନ୍ୟସଙ୍ଗମଃ " ଅର୍ଥାତ୍ ମାନିନୀ ପୁରୁଷର ଅନ୍ୟସଙ୍ଗେ ସଙ୍ଗମ ସହିପାରେ ନାହିଁ । ଏପରି ଚିନ୍ତା ଓ ଭାବ କାବ୍ୟରେ ଯଥାର୍ଥ ରସିକତା ।

୩୫—ମାଣିକ୍ୟ ପିନ୍ଧିଥିବା ଲୋକ ଜଉରେ ତିଆରି ହୋଇଥିବା ବିଦମାଳ ପିନ୍ଧେ କି ? ଦୁର୍ବଳ ହୋଇ ଆସିପାରୁ ନ ଥିବେ । ତେବେ ଆଖ ପାଖରେ ହୋଇ ଯିବେଣି ।

୩୬—ସଖୀ ପୁଣି ଏପରି କହିଲା କି ସ୍ୱପ୍ନରେ ଜନକ ନନ୍ଦିନୀ ( ସୀତା ) ଙ୍କ ପରି ଜଣେ କହିଲେ ଗଜେନ୍ଦ୍ର ଗମନୀ [ ଲାବଣ୍ୟବତୀ ] ନିକଟେ କାନ୍ତକୁ ପାଇବ । ଏ ଛାନ୍ଦ ରସିକ ରୂପକ ଭ୍ରମର ପାଇଁ ମାଳତୀ ଫୁଲ ପରି [ ବିପରୀତ ରତି ସୁଖଦାୟୀ—ଏହିଭାବ । ]

## ଚତୁସ୍ତ୍ରିଂଶ ଛାନ୍ଦ

### ( ବିରହେ ଶିଶିର ଏବଂ ବସନ୍ତ ଋତୁ ବର୍ଣ୍ଣନା । ) ପ୍ରବାସ ଭଙ୍ଗ

ରାଗ—ଚିତ୍ର ଦେଶାକ୍ଷ

ହୋ, ଶିଶିର କାଳ କାଳ ପ୍ରାୟେ ପ୍ରବେଶ ନାଶ କଲା ପଦ୍ମିନୀକି ।
ଦୀନବନ୍ଧୁ ପର ପତି ଥାଇଁ ବ୍ୟାଜେ[୧] ନଗର ପାଶେ ରହିଁକି ।
ଶିବାଧ୍ୱନି ଢେଙ୍ଗୁରକ । ବିଯୋଗୀ ଶୁଣି ଉତ୍ସୁକ । ୧ ।
ହୋ, ତୁଷାର ଜଳରେ ପ୍ରଳୟ ରଚିଲା ବିଯୋଗୀ[୨] ନ ପାଇ ସ୍ଥଳ ।
ମକର ମୁଖରୁ ଆଉ କି ବର୍ଣ୍ଣିବା ଛବି ସେ ହେଲେ ବିକଳ ।
ରଜନୀ ପାଶରେ ଜନ । ବନ୍ଧନ ପରା ଶୟନ । ୨ ।
ହୋ, ଏମନ୍ତ ଋତୁକୁ ଗ୍ରହି ନୃପସୁତ ନୟନେ ଲୋତକ ଭରି ।
ଘେନି ମାଘକୁ ବାଘ କରି ମନରେ କହୁଅଛି ପୁରଃସରି ।
ମୋତେ ତୁ କଲେ ଆହାର । ପୂରିବ ଉଦର ତୋର । ୩ ।

---

ପାଠାନ୍ତର—୧, ବାଜେ । ୨, ବିଦେଶୀ ।

---

୧— କାଳ ପ୍ରାୟେ—ମୃତ୍ୟୁ ପରି; ପଦ୍ମିନୀ— ୧. ପଦ୍ମଲତା, ୨. ପଦ୍ମିନୀ ନାୟିକା; ଦୀନବନ୍ଧୁ—ସୂର୍ଯ୍ୟ ( ପଦ୍ମିନୀର ପତି ) ନଗର—ଲୋକାଳୟ ( ଗାଁ ଓ ସହର ବୁଝିକି ବୁଝାଉଛି । (ବିଶେଷରେ ଏଠାରେ ଗ୍ରାମ ।) ଶିବା ଧ୍ୱନି-(ବିଲୁଆ ଡ଼ାକ ) ଢେଙ୍ଗୁରକ-( ଅହିଅ ନାଗରା) ବାଜିଲା ପରି ହେଲା । ବିଯୋଗୀ—ବିରହୀ ପୁରୁଷ, ଉତ୍ସୁକ ୧. ଉଛନ୍ନ, ୨: ଉତ୍+ଶୁକ ବା ଶୋକ ( ଶୋକାକୁଳ ) ପଦ୍ମିନୀ ମରି ଯିବାରୁ ( ଅର୍ଥାତ୍ ମାଇପେ ମଲେ ଶବ ଶ୍ମଶାନକୁ ଗଲାବେଳେ ଆଗରେ ଢେଙ୍ଗୁରା ବାଜିବାର ରୀତିଅଛି । )

୨— ବିଯୋଗୀ ( ବିରହୀ ) ତୁଷାର ପ୍ରଳୟରେ ବୁଡ଼ି ସ୍ଥଳ ପାଇଲେ ନାହିଁ । ( ଭୟଙ୍କର କାମ ବ୍ୟଥା ହେଲା ) ମକର-୧, ମାଘମାସ, ୨. କୁମ୍ଭୀର; ରଜନୀ ( ରାତି ) ରୂପ ପାଶ ( ଫାଶ, ଜାଲ )

୩— ମାଘ ମାସକୁ ବାଘ ବୋଲି ବିଗ୍ରହି ଏଣିକି ବାଘକୁ କହିଲା ପରି କହୁଛି । (ତଳଲିଖିତ ପଦ ମାନଙ୍କରେ କାଳିଦାସଙ୍କ ମେଘଦୂତ କବିତାର ଛାୟା ପଡ଼ିଥିଲା ପରି ବୋଧହୁଏ ।)

ହୋ, ବାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ ସମସ୍ତ ପ୍ରକାର ମୁହିଁ ।
ମୋ ଆୟୁଷ ପାଇ ଜୀଉଁଥାଉ ପଛେ ଶରଦ ଅମ୍ବୁଜ ମୁହିଁ ।
ଏ ରୂପେ ଯଉଁ ବାଳାକୁ । ଦେଖିବ ଚେଳିବ ତାକୁ । ୪ ।
ହୋ, ଶ୍ରାବଣ ଗିରି ଶୋଭା ବହିଥିବ ଯାହାର ଉନ୍ନତ ସ୍ତନ ।
ଲୋତକ ଜଳରେ ଜର ଜର ହୋଇ ଥିବ, ପତ୍ରାବଳି ପୁନଃ ।
ଗମା କାମ କୋପଭରୁ । ବିଗତ ପରଏ ତରୁ । ୫ ।
ହୋ, ଅର୍ଦ୍ଧ ଶଶୀ ଅର୍ଦ୍ଧ ନବଜଳଧର ଖଣ୍ଡେ ଗଲାପ୍ରାୟେ ପଶି ।
ବର୍ତ୍ତି ଯାହାର ଅଳକା ବଳିଥିବ ଝଳି ଅଳିକ କୁ ଗ୍ରାସି ।
ତାଟଙ୍କ କଟକ ଦୁଇ । ଯେ ମାତ୍ରକ ଥିବ ବହି । ୬ ।
ହୋ, ସଖୀ ଅବା ବଳେ ଲେଖି ଦେଉଥିବେ ନୟନେ କଜ୍ଜଳ ଗାର ।
ମଧୁକ ପୁଷ୍ପେ ଭୃଙ୍ଗ ପରି ସେ ଜଳ ଗଣ୍ଡେ ରହିଥିବ ଯାର ।
ଦେଖି ଯେ କମଳନାଳ । ସୁମରୁ ଥିବ ଗରୁଡ଼ । ୭ ।

---

୪—ପଛେ—ମୋତେ ଖା ପଛକେ ସେ ଜୀଇ ଥାଉ; ଏ ଶରଦ ଅମ୍ବୁଜ ମୁହିଁ-୧, ମୁହିଁ ଶରତ୍ କାଳର ଅମ୍ବୁଜ(ପଦ୍ମ)ପରି ହିମରେ ନଷ୍ଟ ହୁଏଁ ୨. କିନ୍ତୁ ଶରଦ କାଳର ଅମ୍ବୁଜ (ଚନ୍ଦ୍ର) ପରି ମୁହଁ ଯାହାର;—ଏ ରୂପେ ଯେଉଁ ବାଳାକୁ ଦେଖିବୁ ତାକୁ ଖାଇବୁ ନାହିଁ ।

୫—ଶ୍ରାବଣଗିରି (ପର୍ବତ)ରେ ପାଣି ଗଡୁଥାଏ; ଏଠାରେ ଲୋତକ ଧାର ଗଡୁଥିବ । ପତ୍ରାଳି—୧. ସ୍ତନ ଉପରେ କସ୍ତୂରୀ ଚନ୍ଦନ ଚିତ୍ର ସବୁ ୨ ବିଗତ ପତ୍ରାଳି ପରାୟେ, (ତରୁ ସଙ୍ଗେ ଅନ୍ୱୟ ହେବ । ) ଏଠାରେ ପତ୍ରାଳି—ପତ୍ର ସମୂହ; କାମ କୋପରୁ (କାମ ବାଧାରୁ) ପତ୍ର ଝଡ଼ା ଦେଇଥିବା ଗଛ ପରି ଦିଶୁଥିବ ।

୬—ଖଣ୍ଡ ଚନ୍ଦ୍ର ନୂଆ ମେଘରେ ପଶି ଯାଉଥିଲା ପରି ତାର ଅଳକ—[ଏଠାରେ ଅଳକ ନାମକ ଅଳଙ୍କାର ରହିବାର ସ୍ଥାନ ଅତଏବ କପାଳ ଉପର । କାହିଁକିନା ସୁନାର ଅଳକା ବୋଲି ଏଠାରେ ଅର୍ଥ କରିବା ସଙ୍ଗତ ନୁହେ । କାରଣ ତଳୁ ଜଣା ଯାଉଛି ତାଟଙ୍କ (କାପ) ଆଉ କଟକ (ହାତ ଖଡୁ) ଛଡ଼ା ତାର ଅନ୍ୟ ଅଳଙ୍କାର ଏବେ ନ ଥିଲା ।] ବର୍ତ୍ତି ଯାଇଥିବା ବା କତୁରା ନ ହୋଇଥିବା ଅଳକା (କପାଳ ଉପର ଚୂନା ବାଳ)ରେ ଘୋଡ଼େଇ ହୋଇ ପଡ଼ିଥିବ ।

୭—ବଳେ— ତା ମନା ନ ମାନି; କାନ୍ଦିବାରୁ ସେ କଜଳ ବୋହି ଆସି ଗାଲ ଉପରେ ମହୁଲ ଫୁଲରେ ଭ୍ରମର ବସିଲା·ପରି ବିରହ ହେତୁରୁ ପଦ୍ମନାଡ଼କୁ ସାପ ବୋଲି ବିଗ୍ଭରି ଗରୁଡ଼ ସ୍ମରଣ କରୁଥିବ । ଗରୁଡ଼ ସାପକୁ ଖାଇଯାଏ ।

ହୋ, କଷଟି ପାଷାଣେ ଆଠବାନି[୩] ସୁନା ଗାର ପଗ ହୋଇ ଯେହିଁ ।
ପଙ୍କଜ ପଲ୍ଲବ ସେଯେ ସୋଇଥିବ ମୋହରି ବଲ୍ଲଭୀ ସେହି ।
ଛାଡ଼ିବୁ ତାକୁ ମାତର । ଏତେକ ପ୍ରାର୍ଥନା ମୋର । ୮ ।
ହୋ, ତୁ ଅବା ପାଞ୍ଚିବୁ ତୋ ସୃଷ୍ଟି ବୁଡ଼ିବ ଗଲ ଠାରୁ ତୋର ଜୀବ ।
ତା ଶୁଭ ଏଥିକି ବାଞ୍ଛା କରଇଁ ମୁଁ ମୋତେ ସେ ଗତି କରିବ ।
ଜଳ ଦାନ ଲେତକରେ । ଖେଦନ ଘନ ବାକ୍ୟରେ । ୯ ।
ହୋ, ଆହୁରି କଥାଏ ଯଥା ଏକ ନାମ ଅଶ୍ୱିନୀ କୁମାର ଦୁଇ ।
ସେହି ପ୍ରକାରେ ତା ମୋର ଏକ ପ୍ରାଣ କେବଳ ଯୁଗଳ ଦେହୀ ।
ଯେବେ ମୋର ପ୍ରାଣ ଯିବ । ବାଳା ଦେହେ ସମ୍ଭାଇବ । ୧୦ ।
ହୋ, ଜବାଧରୀ ଦେହ ଇତର ନୁହଇ ଯୁବା ବଇକୁଣ୍ଠ ପୁର ।
ପରମ ପଦବୀ ଖେଗ ନୋହିବ କି ଏମନ୍ତ ହୋଇଲେ ମୋର ।
ଏମନ୍ତ ଭବନା କରି । ଶିଶିର ଋତୁକୁ ହରି । ୧୧ ।

---

ପାଠାନ୍ତର—[୩], ବାରବାନ ।

---

୮–ଆଠବାନି ସୁନା–ଆଠ ଥର ପୋଡ଼ା ହୋଇ ଉଜ୍ଜ୍ୱଳ ହୋଇଥିବା ସୁନା; ସୁନାର ଗାର କଷଟି ପଥରରେ ପଡ଼ିଲା ପରି ପଦ୍ମ ପତ୍ର ଶେଯରେ ସେ ପଡ଼ିଥିବ ।

୯–ହେ ମାଘ ରୂପକ ବାଘ ତୁ ଅବା ମତେ କହିବୁ–"ତୋ ଜୀବ ଗଲା ଠାରୁ ତୋ ସୃଷ୍ଟି ବୁଡ଼ିବ । ତାକୁ ମୁଁ ଖାଇବି କି ନାହିଁ ସେ କଥାରୁ ତୋତେ କଣ ମିଳିବ ?" କିନ୍ତୁ ଏଥିକି (ଏହିଥି ପାଇଁକି) ତା ଶୁଭ ଲୋଡୁଛି ଯେ ସେ ମୁଁ ମଲା ପରେ ମୋତେ ଲୋତକରେ ପାଣି ଦେଇ ପାଟି କରି କାନ୍ଦିବାରେ ବାକ୍ୟ ବୋଲି ଗତି (ମୋକ୍ଷ) କରିବ ।

୧୦–ତା ଶୁଭ ମୁଁ ଗ୍ରହିବାକୁ ଆଉରି କଥାଏ. (ଆଉ ଏକ କାରଣ) ଅଛି । ଅଶ୍ୱିନୀ କୁମାର ପ୍ରଭି ଏକ ପ୍ରାଣ ଦୁଇ ଦେହ ମାତ୍ର । ମୋ ପ୍ରାଣ ଗଲେ ବାଳା ଦେହରେ ସମ୍ଭାଇବ (ଭର୍ତ୍ତି ହୋଇ ଯିବ । ସ୍ୱର୍ଗ ବୈଦ୍ୟ ଅଶ୍ୱିନୀ କୁମାର ଦୁଇ ଭାଇ ସର୍ବଦା ଯୁଗ୍ମ ବୋଲି ପୁରାଣରେ ଅଛି ।

୧୧–ସେ ମଲେ ବି ତ ତା ପ୍ରାଣ ମୋ ଦେହରେ ସମ୍ଭାଇବାର ସମ୍ଭାବନା ଅଛି । ତେବେ ଏକା ତାକୁ ରଖି ମୋର ମରିବା ବାଞ୍ଛା କାହିଁକି ? କାରଣ ଜବାଧରୀର (ମନ୍ଦାର ଫୁଲ ପରି ଓଠ ଯାହାର) ଦେହ ଇତର (ଅନ୍ୟ) କିଛି ନୁହେ । ସେ ଯୁବାର ବୈକୁଣ୍ଠ ପୁର । (ମୁକ୍ତି ସ୍ଥାନ) । ମୋ ପ୍ରାଣ ସେଥିରେ ସମ୍ଭାଇଲେ (ପଶିଲେ) ମୋର ପରମ ପଦବୀ (ବ୍ରହ୍ମ ଲୋକ ପ୍ରାପ୍ତି) ହେବ । ହରି–କଟାଇ ଦେଲା ।

ହୋ, ଏ ଅନ୍ତେ ମନୋହର ହୋଇ ପ୍ରବେଶ ହୋଇଲ ଋତୁ ରଜନ ।
ପଞ୍ଚମ ସ୍ୱରରେ ପରଭୃତ କରେ ମଙ୍ଗଳ ଗୀତକୁ ଗାନ ।
ଝିଙ୍କାରି ଝଙ୍କାର ସ୍ୱର । ବାଜିଲ ବିଜୟ ତୂର । ୧୨ ।
ହୋ, ନବ ପଲ୍ଲବ ଚର୍ଚ୍ଚିତ ଛଳେ ଖଦି ଘେନେ ତରୁ ପରିକର ।
କୃବେଲି କୁଳ ଭ୍ରମର ପରି ସେହୁ ନିରତେ କରି ଆଦର ।
ଉଡ଼େ କୁସୁମ ପରଗ । ପ୍ରକାଶ ଚର୍ଚ୍ଚରୀ ରଙ୍ଗ । ୧୩ ।
ହୋ' ଭୃଙ୍ଗ ଧ୍ୱନି ଛଳେ ନବ କମଳିନୀମାନେ ଦେଲେ ହୁଳ ହୁଳି ।
ନାଗ କେଶର ପାଦପ ପୁଷ୍ପ ଛଳେ ଧଇଲ କି ଛତ୍ର ତୋଳି ।
କାନନ ନଗରେ ଝଳି । ସୁନାରୀ ବ୍ରଜ[*] ପାଟଳୀ । ୧୪ ।
ହୋ, ମଲ୍ଲୀକା ନିଆଳୀ ଚମ୍ପା ଦାମାଆଳି ନବୀନ କୁସୁମ ବତୀ ।
ତଥାପି ମହିଷୀ ସଲିଳ ଅଙ୍କରେ ଶୟନେ ବଳାଇ ପ୍ରୀତି ।
ମଳୟ ପବନ ଘର । ସଧୀରେ ଆଗ ପ୍ରସର । ୧୫ ।

---

ପାଠାନ୍ତର—*, କ ବୀରତ୍ତର । *, ବଜ୍ର ।

---

୧୨—ଋତୁ ରଜନ—ବସନ୍ତ; ବସନ୍ତର ରଜା ପରି ପ୍ରବେଶ ବା ବିଜେ ହେବା ଉପମା ଆରମ୍ଭ । ପରଭୃତ (କୋକିଳ)ର ପଞ୍ଚମ ସ୍ୱର [୧୨ ଛାନ୍ଦ ୨୩ ପଦ ଟୀକା ଦେଖ ।] ମଙ୍ଗଳ ଗୀତ । ଝିଙ୍କାରି ଝଙ୍କାର ବିଜୟ ତୂର (ବିଜେ ହେଲ ବେଳ ବାହାଜି);

୧୩—ତରୁ (ଗଛ) ପରିକର (ସେବାୟତ) ପରି ନବ ପଲ୍ଲବ (ନୂଆ ପତ୍ର)ରେ ଖଦି [୩ୟ ଛାନ୍ଦ ୨୬ ପଦ ଟୀକା ଦେଖ ।] ଘେନେ । କୃବେଲି (କୁରୁବେଲି) ଚଅଁର ପକାନ୍ତି । ଚର୍ଚ୍ଚରୀ ରଙ୍ଗ—(ଦୋଳ ଫଗୁ) ପରି ଫୁଲ ପରଗ ଉଡ଼ୁଛି ।

୧୪—ନବ କମଳିନୀ—ନୂଆ ହୋଇ ବାହାରି ଥିବା ପଦ୍ମ ଗଛ ସବୁ ଭ୍ରମର ଗୁଞ୍ଜନ ରୂପ ହୁଳ ହୁଳି ଦେଲେ । ନାଗେଶ୍ୱର ଗଛ ଫୁଲରେ ଛତା ଧଇଲ । କାନନ ନଗରେ (୧. କାନନ ରୂପ ନଗରରେ, ୨. କାନନରେ ଓ ନଗ-ପର୍ବତରେ) ପାଟଳୀ ସୁନାରୀ ବ୍ରଜ (୧. ଉତ୍ତମ ନାରୀମାନେ, ୨. ସୁନରୀ ଗଛ ସମୂହ) । ପାଟଳୀ (୧. ପାଟଳୀ ଫୁଲ, ୨. ନାଚିବାରେ ପାଦ ଘୃଜନ୍ତି)

୧୫— (୧)—ସବୁ ପ୍ରକାର ମଲ୍ଲୀ ଫୁଲ (ବଣ ମଲ୍ଲୀ ପ୍ରଭୃତି ସହିତ) ଚମ୍ପା, ନିଆଳୀ—ଏ ଲତାମାନେ ନୂଆ ହୋଇ ଫୁଟିଲେ । ତଥାପି ମଇଁଷି ବଣରେ ନ ବୁଲି ପାଣିରେ ଯାଇପଡ଼ିଲେ । (୨)—ମହିଷୀ (ରାଣୀ) ନବୀନ କୁସୁମବତୀ ହେଲେ ମଧ୍ୟ ଚମ୍ପା ମଲ୍ଲୀ ମାଳ ପକାଇ ନି ଆଳିକା (ଏକୁଟିଆ ହୋଇ) ସଲୀଳ (ଲୀଳା ସହିତ) ଅଙ୍କରେ (କୋଳରେ) ଶୟନେ (ଶୋଇବାରେ) ପ୍ରୀତି ବଳାଇଲେ । ଅର୍ଥାତ୍ ନୂଆ ରାଣୀ ମାନେ ରଜାଙ୍କର

ହୋ, କାମ ସେନା କି କେତକୀ କଢ଼ ଯମ ଦାଢକୁ କରି ବିକୋଷ ।
ବିଦେଶୀ ପରେ ତର୍ଜନା ଏକା କରେ ଏଥିରେ କରିବି ନାଶ ।
ଛୁରିଅନା ହୋଇ ବାଣୀ । ପ୍ରକଟ ହୋଇଲା ପୁଣି । ୧୬ ।
ହୋ, ମିତ୍ର କାମ ମନ୍ତ୍ରୀ ଏମନ୍ତ ଶିଖାଇ ବିଦେଶୀ ଗୋତ୍ର ନ ରଖ ।
ଜ୍ଞାନ ଧନ ମାନ ଲୁଟି କରିବାକୁ ଲେଖିବା ସତକ ଲେଖ ।
ସମ୍ପାଦି ଏଣୁ କେତକୀ । ବିଯୋଗୀ ବଢ଼ ଘାତକୀ ୬ । ୧୭ ।
ହୋ, ଏ ଦେସମୟ ସମୟକୁ ଅନାଇଁ ବିକଳ ଲବଣ୍ୟବତୀ ।
ବିଗ୍ରରେ ଏ ଯୁବା ବୟସେ ଏ ମାସେ ମୋର କୋଳେ ନାହିଁ ପତି ।
କେମନ୍ତେ ବଞ୍ଚିବି ଦିନ । କି ଢଳେ ପଦ୍ମଲୋଚନ । ୧୮ ।
ହୋ, ଚନ୍ଦନ ପିଚିକା ସଜାଡ଼ି ମାରନ୍ତି ମୋ ଭର କରି ଯେ ଲକ୍ଷ ।
ତାହା ବଞ୍ଚାଇ ମୁଁ ନଗ୍ରଇଲେ ଭୂଲ୍ଲ ଜନମାନ୍ତି କେଡ଼େ ସୁଖ ।
ବୋଲନ୍ତି ଗୁପରେ ବାଣ । ସନ୍ଧି କରିବୁ କି ରଣ । ୧୯ ।
ଗୋ, ରତି ଶ୍ରମରେ ଘର୍ମ ହେଲେ ବାହାର ପୁଛନ୍ତି ବାଧିଲା କି ରେ ।

---

ପାଠାନ୍ତର—୬, ଅଢ ଘାତକୀ ।

---

ବିଛେ ହେବାକୁ ପସନ୍ଦ କଲେ ନାହିଁ । ରଜା ଗଲା ବେଳେ ଆଗରେ ଘର ଗଲା ପରି ଆଗରେ ମଳୟ ପବନ ବହିଲା ।

୧୬—କାମ, ସେନା ହେଲା । କେତକୀ କଢ଼ ଯମଦାଢ କଟାରୀକୁ ବିକୋଷ (ଖୋଳରୁ କାଢିଲା) ପରି ହେଲା । ବିଦେଶୀ (ବିରହୀ) ପର (ଶତ୍ରୁ)କୁ ତର୍ଜନା କଲା (ଚଢିଲା) । ଛୁରିଅନା (୧. ଛୁରିଅନା ଫୁଲ, ୨. ଏ ଛୁରୀକି ରହୀ) ବାଣୀ (ସେନାଙ୍କର ଶତ୍ରୁ ପ୍ରତି କଥା ଭଳିଆ) ପ୍ରକଟ (ପ୍ରକାଶ) ହେଲା ।

୧୭—କାମ ମିତ୍ର (ବସନ୍ତ) ମନ୍ତ୍ରୀକୁ ଶିଖାଉଛନ୍ତି ବିଦେଶୀ ଗୋତ୍ର (ବିଦେଶୀ ସମୂହ) ନ ରଖ । ତାଙ୍କର ଜ୍ଞାନ ରୂପ ଧନ ଲୁଟି କରିବାକୁ ଲେଖିବା ନିମନ୍ତେ ଏ କେତକୀକୁ ସତକ ଲେଖ (ଦସ୍ତାବିଜ) ବୋଲି ବିଗ୍ରର । କାହିଁକି ନା ବିଯୋଗୀ ମାନେ ବଢ଼ି ଘାତକୀ (ଆତତାୟୀ) [କାରଣ ସେମାନେ ବସନ୍ତର କୌଣସି ଶୋଭା ସୁଖ ପାନ୍ତି ନାହିଁ ।]

୧୮—ପଦ୍ମ ଲୋଚନ—ବିଷ୍ଣୁ;

୧୯—ତାହା ବଞ୍ଚାଇ—ସେଥିରୁ ରକ୍ଷା କରି, ଏଡ଼ି; ଜନମାନ୍ତି କେଡ଼େ ସୁଖ—ଆନନ୍ଦିତ ହୁଅନ୍ତି ଭୂଲ୍ଲ ଗୁପରେ କଟାକ୍ଷ ବାଣ ସନ୍ଧି (ସନ୍ଧାନ କରି, ବସାଇ );

୨୦—ଘର୍ମ ହେଲେ—ଝାଳ ବୋହିଲେ;

ଶେଷରେ ବାସର ପୋଛି ଦେଇ ଚୁନ୍ନ ଦିଅନ୍ତି କେଡ଼େ ସ୍ନେହରେ ।
ଲେପନ୍ତି ଚନ୍ଦନ ତନୁ । ସେ ଭାବ କି ଯିବ ମନୁ । ୨୦ ।
ଗୋ, ଏ ଭାବ ସୁମରି ଏବେ ନିଶ୍ୱେ ମଲି ଏହି ନାଗେଶ୍ୱର ଗୁଣ୍ଡି ।
ମୂର୍ଚ୍ଛା କରିବା ବ୍ୟାଜରେ ଅଣାଇ ମୋର ଉରଜରେ ମଣ୍ଡି ।
ଆଲିଙ୍ଗନରେ ପ୍ରମୋଦେ । ହୃଦେ ଲଗାଇଲେ ହୃଦେ । ୨୧ ।
ଗୋ, ମୁହିଁ ଓଜପ ହସିଲ ହୋଇଲକୁ ବୋଇଲେ ଦିଶିଲ ଶୋଭା ।
ନିତି ଆଗମକୁ ଯାଇ ଏହିପରି କରିବା କହନ୍ତ ପ୍ରଭା ।
ରହିଲି ମୁଁ ଲାଜ ପାଇ । ବୋଇଲେ କର ତୁ ହୋଇ । ୨୨ ।
ହୋ, ଏମନ୍ତ କହୁ ସହୀକି ସେ ମହୀଳାରତନ ମହୀକି ଢଳି ।
ଏ ରତୁ ଆଗମେ ଭଜି ନ ପାରିଲ ବଲ୍ଲଭ ବଲ୍ଲଭୀ କେଳି ।
ସୁମରି ଶ୍ରୀ ରାମଚନ୍ଦ୍ର । କହେ ଭଞ୍ଜ ଉପେନ୍ଦ୍ର । ୨୩ ।

---

ବାସର–ଆପଣା ଲୁଗାରେ ;

—:*:—

# ପଞ୍ଚ ଚତ୍ୱାରିଂଶ ଛାନ୍ଦ

## ( ଚନ୍ଦ୍ରଭାନୁର କୀର୍ତ୍ତି ଓ ଯୁଦ୍ଧ ବର୍ଣ୍ଣନା )

ରାଗ–ବିଭାସ ଗୁର୍ଜ୍ଜରୀ ।

ଏ ଅନ୍ତେ ଶୁଣ କୋବିଦେ ଚନ୍ଦ୍ରଭାନୁ କୀର୍ତ୍ତି ଉଦେ
ଏତେ ସ୍ଥାନେ ଚନ୍ଦ୍ର ପ୍ରାୟ ହେବ ।
ଜମ୍ବୁ ପ୍ଲକ୍ଷ କୁଶ କ୍ରୌଞ୍ଚ ଶାକ ଶାଳ୍ମଳୀରେ ଘଞ୍ଚ
ହୋଇ ପୁଷ୍କରକୁ ବୋଲି ଯିବ ହେ । ୧ ।
ଏଥିରେ ନୁହନ୍ତେ ଠାବ ବିଦ୍ଧେ ପଶି ତଳେ ଯିବ
ଅତଳ ବିତଳ ନିତଳକୁ
ଗଗସ୍ତି ମହାକ୍ଷ ଘେନ ସୁତଳ ପାତାଳ ସ୍ଥାନ
ନିରତେ କରିବ ଉଜ୍ଜ୍ୱଳକୁ ହେ । ୨ ।

---

୧– କୋବିଦେ–ପଣ୍ଡିତମାନେ । ସ୍ୱାୟମ୍ଭୁବ ମନୁଙ୍କର ଦୁଇ ପୁତ୍ର ଥିଲେ । ତାଙ୍କ ନାମ ପ୍ରିୟବ୍ରତ ଓ ଉତ୍ତାନପାଦ । ପ୍ରିୟବ୍ରତଙ୍କର ଅଗ୍ନିଧ୍ର, ଅଗ୍ନିବାହୁ, ବପୁଷ୍ମାନ, ଦ୍ୟୁତିମାନ, ମେଧା, ମେଧାତିଥି, ଭବ୍ୟ, ସବନ, ପୁତ୍ର ଓ ଜ୍ୟୋତିଷ୍ମାନ ଦଶପୁତ୍ର ଥିଲେ । ମେଧା, ଅଗ୍ନିବାହୁ ଓ ପୁତ୍ର–ଏହି ତିନି ପୁତ୍ର ଯୋଗପରାୟଣ ହେଲେ । ଅଗ୍ନିଧ୍ରକୁ ଜମ୍ବୁଦ୍ୱୀପ, ମେଧାତିଥିଙ୍କୁ ପ୍ଲକ୍ଷଦ୍ୱୀପ; ବପୁଷ୍ମାନଙ୍କୁ ଶାଲ୍ମଳୀ, ଜ୍ୟୋତିଷ୍ମାନଙ୍କୁ କୁଶ, ଦ୍ୟୁତିମାନଙ୍କୁ କ୍ରୌଞ୍ଚ, ଭବ୍ୟଙ୍କୁ ଶାକ ଓ ସବନଙ୍କୁ ପୁଷ୍କର ଦ୍ୱୀପ ଶାସନ କରିବାକୁ ପ୍ରଦାନ କଲେ–ଜମ୍ବୁଦ୍ୱୀପର ରାଜା ଅଗ୍ନିଧ୍ରଙ୍କ ନବପୁତ୍ର ଥିଲେ– ସେମାନଙ୍କର ନାମ ଯଥାକ୍ରମେ ନାଭି, କିଂପୁରୁଷ, ହରିବର୍ଷ, ଇଳାବୃତ, ରମ୍ୟ, ହିରଣ୍ମାନ, କୁରୁ, ଭଦ୍ରାଶ୍ୱ ଓ କେତୁମାଳ–ଏହି ନଅଜଣ ଜମ୍ବୁଦ୍ୱୀପକୁ ବିଭାଗ କରି ରାଜା ହେଲେ ଏବଂ ସେମାନଙ୍କର ନାମ ଅନୁସାରେ ରାଜ୍ୟମାନଙ୍କର ନାମ ହେଲା । ନାଭିକୁ ଦକ୍ଷିଣ ହିମବର୍ଷ–ଭାରତବର୍ଷ । କିଂପୁରୁଷଙ୍କୁ ହେମକୂଟ ବର୍ଷ, ହରିବର୍ଷଙ୍କୁ ତୃତୀୟ ନୈଷଧବର୍ଷ, ଇଳାବୃତଙ୍କୁ ମେରୁର ଚତୁର୍ଦ୍ଦିଗବର୍ତ୍ତୀ ଇଳାବୃତବର୍ଷ । ନୀଳାଚଳର

---

✳ ଏହି ଛାନ୍ଦର ପ୍ରଥମ ୨୩ ପଦର ଟୀକା ପଣ୍ଡିତ ନୀଳକଣ୍ଠଙ୍କ ମୂଳ ପାଣ୍ଡୁଲିପିରେ ନ ମିଳିବାରୁ ସାଧାରଣରେ ପ୍ରଚଳିତ ଟୀକା ଗ୍ରହଣ କରା ଯାଇଛି ।

ପାଦ ବିଧୁ ପାବଛରେ          ଦେଇ ଗମିବ ସ୍ୱଚ୍ଛରେ
ଊର୍ଦ୍ଧ୍ୱକୁ କୀର୍ତ୍ତି ପଟଳ ତାର ।
ଭୂର୍ଭୁବସ୍ୱ ମହଜନ          ତପ ସତ୍ୟାଦି ଭୁବନ
ଗ୍ରାସେ ହୋଇ ପୃଥୁ କଳେବର ହେ । ୩ ।
ଫୁଟିବ ବ୍ରହ୍ମାଣ୍ଡ ଭଣ୍ଡ          ଅତି ବୃଦ୍ଧ ହୋଇ ପିଣ୍ଡ
ଉପରକୁ ଯିବ ସେ ବାହାରି ହେ ।
ପ୍ରଳୟର ଅବକାଶ          ଯହିଁରେ ନାହିଁ ତା ଯଶ
ଚିର ହୋଇ ରହିବ ବିହରି ହେ । ୪ ।

---

ପାଠାନ୍ତର—୧, ସ୍ୱଚ୍ଛ ।

---

ଆଶ୍ରିତ ବର୍ଷ ରମ୍ୟକ୍କୁ, ତାର ଉତ୍ତରବର୍ତ୍ତୀ ଶ୍ୱେତବର୍ଷ ହିରଣ୍ମୟନଙ୍କୁ, ଶୃଙ୍ଗବାନ ପର୍ବତର ତାହା କୁରୁଙ୍କୁ; ମେରୁର ପୂର୍ବଭଗବର୍ଷ ଭଦ୍ରାଶ୍ୱଙ୍କୁ ଓ କେତୁମାଳଙ୍କୁ ଗନ୍ଧମାଦନ ବର୍ଷ ଅଗ୍ନିଧ୍ର ପ୍ରଦାନ କଲେ । ତହୁଁ ପୃଥିବୀ ଉପରି କଥିତ ସପ୍ତଦ୍ୱୀପରେ ବିଭକ୍ତ ଓ ଜମ୍ବୁଦ୍ୱୀପ ନବଖଣ୍ଡରେ ମଧ୍ୟ ବିଭକ୍ତ-ବିଷ୍ଣୁ ପୁରାଣ ୨ୟ ଅଂଶ- ପ୍ରଥମ ଅଧ୍ୟାୟ । ବାୟୁ ପୁରାଣ ମତେ—ଜମ୍ବୁଦ୍ୱୀପ ମଧ୍ୟରେ ଭାରତବର୍ଷ । ଏହାର ପରବର୍ତ୍ତୀ ହେମକୂଟ ତାର ଉତ୍ତରରେ କିଂପୁରୁଷ-ତାର ଉତ୍ତରରେ ହରିବର୍ଷ । ହରିବର୍ଷ ଓ ମେରୁର ପରବର୍ତ୍ତୀ ଇଳାବୃତ । ଇଳାବୃତ ପରେ ରମ୍ୟକ ମେରୁର ଚାରି ପାଖରେ ଚାରୋଟି ଦେଶ ଭାରତ, ଭଦ୍ରାଶ୍ୱ, କେତୁମାଳ ଓ ଉତ୍ତରକୁରୁ । ରମ୍ୟକର ପରବର୍ତ୍ତୀ ହିରଣ୍ମୟ –ଏହାର ପରେ କୁରୁବର୍ଷ । ବାୟୁ ୪୩ ଅଧ୍ୟାୟ । କୀର୍ତ୍ତି ଧଳା ହେତୁ ଚନ୍ଦ୍ର ସଙ୍ଗେ ତୁଳନା କରଗଲା । ବିଳେ—ଗର୍ତ୍ତରେ । ସପ୍ତପାତାଳ–ଅତଳ ବିତଳ ସୁତଳ ରସାତଳ ତଳାତଳ ମହାତଳ ଓ ପାତାଳ—ଉପେନ୍ଦ୍ର ଭଞ୍ଜ ରସାତଳ ତଳାତଳ ଓ ମହାତଳ ସ୍ଥାନରେ ନିତଳ ଗଭସ୍ତି ଓ ମହାକ୍ଷ ଗ୍ରହଣ କରି ଅଛନ୍ତି । ଗଭସ୍ତି—ଉପେନ୍ଦ୍ର ଗଭସ୍ତିମାନ ପରିବର୍ତ୍ତରେ ଗଭସ୍ତି ବ୍ୟବହାର କରିଅଛନ୍ତି । ନିତଳ–ପାତାଳ ବିଶେଷ ରସାତଳ ସ୍ଥାନରେ । ତଳାତଳ ସ୍ଥାନରେ ଗଭସ୍ତି ଓ ମହାତଳ ସ୍ଥାନରେ ମହାକ୍ଷ ଏଠାରେ ପ୍ରଯୁକ୍ତ । ନିରତେ—ଉଜ୍ଜ୍ୱଳ-ଏ ଯଶରୂପ ଚନ୍ଦ୍ର ଏ ସବୁକୁ ସର୍ବଦା ଉଜ୍ଜ୍ୱଳ କରିବ। ସେହି ଯଶ ସ୍ୱପାଦକୁ ବିଧୁ ରୂପ ପାବଛରେ-ଚନ୍ଦ୍ର ରୂପ ପାହାଚରେ ପାଦ ଦେଇ ଅର୍ଥାତ୍ ଯଶ ଚନ୍ଦ୍ର ଲୋକ ଦେଇ ଊର୍ଦ୍ଧ୍ୱ ଲୋକ ଭୂର୍ଭୁବାଦି ଗ୍ରାସେ ହୋଇ—ବ୍ୟାପିବାରୁ ପୃଥୁକଳେବର—ବିଶାଳ କାୟ ହୋଇ—ବ୍ରହ୍ମାଣ୍ଡ ଭେଦ କରି ମହା ଶୂନ୍ୟକୁ ଯିବ । ପ୍ରଳୟରେ ଯଶ—ପ୍ରଳୟରେ ସେ ଯଶର ଅବକାଶ—ସ୍ଥାନ ନାହିଁ, ତେଣୁ ଚିରଦିନ ବିରାଜିତ ହେବ । ଏପରି କୀର୍ତ୍ତିମନ୍ତ ଯେ ଚନ୍ଦ୍ରଭାନୁ ।

ଯେବଣ ଉତ୍ତର କୁରୁ- ବାସୀ ଅସୁ୍ପ ଭୟରୁ
ରମ୍ୟକ ଭଦ୍ରାଶ୍ୱେ ନିଦ୍ରା ନୋହି ଯେ ।
କମ୍ପୁ ଥାଇ କିଂ ପୁରୁଷ ଇଳାବୃତ ହରିବର୍ଷ
କେତୃମାଳ ଉଚ୍ଛନ୍ନ କରଇ ଯେ ॥ ୫ ।
ପାଦ ଘାତେ ଟଳେ ଯାର ହିରଣ୍ମୟ ନିରନ୍ତର
ହିମାଳୟ ତଳ ଋଷି ଗ୍ରାସି ହେ ।
ହେ ଭରତ ଖଣ୍ଡ ବୀର ଚନ୍ଦ୍ରଭାନୁ ତ୍ରାହି[୨] କର
କୋଟି ପରିମିତ ଉଛେ ଋଷି ହେ । ୬ ।
ଉପସ୍ଥିତ ଅଦଭୁତେ ସ୍ୟନ୍ଦନ ହେଲା ପୁରତେ
ଦିବ୍ୟାୟୁଧେ ହୋଇଛି ମଣ୍ଡିତ ଯେ ।
ସୂତ ହେଲା ମନ୍ତ୍ରୀ ସୁତ ପାଶେ ଆଉ ତିନି ମିତ
ଗଲା ସେ ଅରି କରି ଖଣ୍ଡିତ ଯେ । ୭ ।
ରିପୁ ବଳ ଗ୍ରହି ବପୁ ପ୍ରକାଶ କରିଣ କୋପୁଁ
ଅଟ୍ଟହାସ ପରକାଶ କଲା ସେ ।
ସ୍ଫୁଟ କୋକ ନଦ ପ୍ରାୟେ ନେତ୍ର ଯୁଗ୍ମ ଶୋଭା ପାଏ
ବାହାସ୍ଫୋଟ ପୁନଃ ପୁନଃ ଦେଲା ସେ । ୮ ।

---

ପାଠାନ୍ତର— ², ରକ୍ଷା ।

---

୫—ଉତ୍ତର କୁରୁବାସୀ—ଦେବତା ମାନେ । ଅସୁ୍ପ—ରାକ୍ଷସ । ରମ୍ୟକ, ଭଦ୍ରାଶ୍ୱ—ଖଣ୍ଡମାନଙ୍କରେ; ନିଦ୍ରା ନାହିଁ—ଲୋକ ଶାନ୍ତି ହରାଇବେ । ସେହି ଅସୁରମାନଙ୍କ ଉପଦ୍ରବରୁ କିଂ ପୁରୁଷ, ଇଳାବୃତ, ହରିବର୍ଷ, କେତୃମାଳ ଉଛନ୍ନ ହେବ ।

୬—ଯେଉଁମାନଙ୍କ ପାଦ ଘାତରେ ହରଣ୍ମୟ—ହିରଣ୍ମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଦେଶ ଭୟରେ ଥର ହରୁ ହେବ ଓ ହିମାଚଳ ତଳ ବାସୀ ଋଷି ମାନଙ୍କୁ ସେମାନେ ହତ୍ୟା କରିବାରୁ ସେହି କୋଟି ପରିମିତ—ଅସଂଖ୍ୟ ଋଷିମାନେ ଚନ୍ଦ୍ରଭାନୁଙ୍କୁ ରକ୍ଷା କର ରକ୍ଷା କର ବୋଲି ଉଚ୍ଚରେ ଆହ୍ୱାନ କଲେ ।

୭—ଚନ୍ଦ୍ରଭାନୁ ଅଦଭୁତେ—ଆଶ୍ଚର୍ଯ୍ୟ ରୂପେ । ସ୍ୟନ୍ଦନ—ରଥ । ସୂତ—ସାରଥି । ଅରି ଖଣ୍ଡିତ—ଶତ୍ରୁ ନାଶ ।

୮—୯—ରିପୁ ବଳ—ଶତ୍ରୁ ସୈନ୍ୟ । ବପୁ ପ୍ରକାଶ—ଶରୀର ତେଜ ପ୍ରକାଶ । ସ୍ଫୁଟ କୋକନଦ—ରକ୍ତ ପଦ୍ମ । ବାହାସ୍ଫୋଟ—ବାହୁଠୁଙ୍କା ଅଧରେ ତଳ ଓଠରେ । ରଦନ—ଦାନ୍ତ । ଚାପ—ଧନୁ । ରୋପ—ଶର । ବୀର କେଶ—ନିଶ । ଅଶନି ଅଭେଦ୍ୟ ପିଣ୍ଡ—

ଅଧରେ ରଦନ ତହିଁ          ଉପରେ ଗେପ ବସାଇ
ବୀର ଦେଶରେ ପକାଇ ଭର ସେ ।
ଅଶନି ଅଭେଦ ପିଣ୍ଡ—          ମାନ କଲା ଖଣ୍ଡ ଖଣ୍ଡ
ଶର ଉପରେ ପ୍ରହାରି ଶର ସେ । ୯ ।
ତହିଁ କାଣ୍ଡ ଜଳ ଧାର          ଧନୁ ଇନ୍ଦ୍ର ଧନୁ ପର
ପୁଣ ପୁଣ ଧ୍ୱନିତ ସ୍ତନିତ ହେ ।
କର କୃପାଣ ଝଟକ          କ୍ଷମା ଚହଟ ଛଟକ
ବାଟୁଳି କରକାବଳି ମତ ହେ । ୧୦ ।
ଏମନ୍ତ ବୃଷ୍ଟି ସମ୍ପାଦି          ତତ୍‌କାଳେ ଏମନ୍ତ ନଦୀ
କବନ୍ଧ ନାଟ ପ୍ରକଟ ହୋଇ ଯେ ।
କୀଲାଲ କି ଲଲ ଫଳ          ଜମ୍ବାଳେ ହେଲା ଆବିଳ
ପତାକା ଲହରି ଶୋଭା ଯହିଁ ହେ । ୧୧ ।
ସ୍ୟନ୍ଦନ ତରଣୀ ଶିର          ଉପଲ[୩] କୁମ୍ଭୀ କୁମ୍ଭୀର
ମୀନ ତୁରଙ୍ଗ ବସନ ଫେନ ହେ ।
ଚର୍ମ ଆଡ଼ଣୀ କର୍ମଠ          ଭୁଜ ଭୁଜଙ୍ଗ ପ୍ରକଟ
ପଡ଼ି ଆବର୍ତ୍ତରବ ଭେକ ସ୍ୱନ ହେ । ୧୨ ।

---

ପାଠାନ୍ତର—[୩], ଯାଇ ଛିନ୍ନ ।

---

ଯେଉଁ ଦେହ ବଜ୍ରରେ ବିଦ୍ଧ ହୁଏ ନାହିଁ ।

୧୦—ସେ ଯୁଦ୍ଧକୁ ବର୍ଷା କାଳ ସଙ୍ଗେ ତୁଳନା କରି କବି କହନ୍ତି ଯେ 'କାଣ୍ଡ—ଶରପାତ ମାନେ ଜଳ ଧାର ସଦୃଶ । ଧନୁ ହେଲା ଇନ୍ଦ୍ରଧନୁ । ବୀର ମାନଙ୍କର ଧ୍ୱନିତ—ମେଘର ସ୍ତନିତ କି ଗର୍ଜନ ହେଲା । କର କୃପାଣ ଝଟକ—ହାତରେ ଥିବା ଖଡ଼୍‌ଗର ଦୀପ୍ତି ହେଲା କ୍ଷମା ଚହଟ ଛଟକ—ବିଜୁଳିର ଆକସ୍ମିକ ସ୍ଫୁରଣ । ବୀର ମାନଙ୍କ ଦ୍ୱାରା ବାଟୁଳି ସବୁ ବର୍ଷା କାଳର କରକାବଳି—କୁଆପଥର । ମତ—ସଦୃଶ ।

୧୧ରୁ ୧୩—ତତ୍‌କାଳେ —ଯେହି କାଳରେ ବୃଷ୍ଟି ହେତୁ ନଦୀ ବହିଗଲା । କବନ୍ଧ—ଜଳର ବନ୍ଦ; ଜଳର ବନ୍ଧ ପାଖରେ ନଦୀ ଜଳରେ ନୃତ୍ୟ ଓ ରଣାଙ୍ଗନରେ କବନ୍ଧ—ମୁଣ୍ଡ ନ ଥିବା ଶରୀରମାନଙ୍କର ନାଚ ପ୍ରକାଶ ପାଇଲା । କୀଲାଲ—ଜଳ ବା ରକ୍ତ । ସେ ଲଲ ଫଳ—ନଦୀରେ ଭସିନ ଲଲ ଫଳ । ଜମ୍ବାଳ—ପଙ୍କ; ଆବିଳ—ଗୋଳିଆ ରକ୍ତ ମାଟିର ପଙ୍କ । ପତାକା ହେଲା ନଦୀର ଲହରୀ—ତରଙ୍ଗ । ସ୍ୟନ୍ଦନ—ରଥ

ପରିପନ୍ଥୀ ଦମ୍ଭ ତଟ— ବିଟପୀ ହୋଇଲେ ଭ୍ରଷ୍ଟ
ବୁଢ଼େ ଦୁଷ୍ଟକୂଳ ଗ୍ରହିବାରେ ହେ ।
ରବିରଥ ମଧ୍ୟ ପଥ ପୂର୍ଣ୍ଣ ହେଲ ଦେବ ସୂତ
ଶ୍ରମ ହେଲ ରଥ ବାହିବାରେ ହେ । ୧୩ ।
ଗ୍ରହନ କରି ଗ୍ରମର ବ୍ୟଥା ଅପସରୀ—କର
ମଳୟାଦ୍ରି ଗନ୍ଧସାର ଶେଷ ହେ ।
ଚଇତ୍ର ରଥ ନନ୍ଦନ ହୋଇଲେ ପୁଷ୍ପବିହୀନ
ଅତି ସଘନ ସୁମନା ବାସ[୪] ହେ । ୧୪ ।
କେଶ ମୁକୁତ[୫] ବିବାସ ଦଶନେ ତୃଣ ଅଯଶ[୬]
ପଳାଇତ ରିପୁ କମ୍ପ ବଶେ ହେ ।
ସ୍ତିରୀ ବେଶ ଧରି ନାରୀ ମଧ୍ୟେ କେ ନିବାସ କରି
ଲତା ବୃନ୍ଦ[୭] ବୀର ପ୍ରାୟେ ଦିଶେ ହେ । ୧୫ ।

---

ପାଠାନ୍ତର—୪, ଶମନ ବାସ । ୫, ମୁକୁଳା । ୬, ଅଜସ୍ର । ୭, ବୃକ୍ଷ ।

---

ହେଲ ନଦୀର ତରଣି—ନୌକା । ଶିର—ମୃତ ରାକ୍ଷସଙ୍କ ମୁଣ୍ଡ । ଉତ୍ପଳ—ନଦୀର ପଦ୍ମ । କୁମ୍ଭୀ—ହସ୍ତୀ । ମୀନ—ମାଛ । ତୁରଙ୍ଗ—ଘୋଡ଼ା; ବସନ—ବସ୍ତ୍ର । ଫେନ—ନଦୀର ଫେଣ । ଚର୍ମ ଅଡ଼ଣି—ଢାଲ ହେଲ । କମଠ—କଇଁଛ । ଭୁଜ—ବାହୁ । ଭୁଜଙ୍ଗ—ସର୍ପ । ପ୍ରକଟ—ପ୍ରକାଶମାନ । ପରିଅର୍ଣ୍ଣବ—ପଦାତିଙ୍କ କରୁଣ କ୍ରନ୍ଦନଧ୍ୱନି । ଭେକସ୍ୱର—ବେଙ୍ଗଙ୍କ ଶବ୍ଦ । ପରିପନ୍ଥୀ ଦମ୍ଭ—ଶତ୍ରୁଙ୍କ ବାଧା ହେଲ । ତଟବିଟପୀ—ନଦୀତୀରସ୍ଥ ବୃକ୍ଷ; ଭ୍ରଷ୍ଟ—ନଷ୍ଟ । ଦୁଷ୍ଟ—ଦୁର୍ଜ୍ଜନ ଶତ୍ରୁ ଯେ ହେଲେ କୂଳ—ନଦୀତୀର । ରବିରଥ ମଧ୍ୟପଥ—ସୂର୍ଯ୍ୟଙ୍କ ରଥର ମଧ୍ୟ ବାଟ କି ଆକାଶ । ଦେବସୂତ—ଅରୁଣ ସାରଥି । ସୂର୍ଯ୍ୟଙ୍କ ରଥ ବାହିବାରେ ଶ୍ରମି ହେଲେ-କଷ୍ଟବୋଧ କଲେ—ଅସୁରଙ୍କ ଦ୍ୱାରା ପୂର୍ଣ୍ଣ ଚନ୍ଦ୍ରଭାନୁଙ୍କ ଶବ ଦ୍ୱାରା ବ୍ୟାପ୍ତ ହେବାରୁ ।

୧୪—ଅପସରୀମାନେ ଅସୁରମାନଙ୍କ ସେବାରେ ରହି ଚଅଁର ପକାଇ ପକାଇ ତାଙ୍କ ହାତ ବ୍ୟଥା ପାଇଲ ।ମଳୟାଦ୍ରି—ମଳୟ ପର୍ବତରୁ ଗନ୍ଧସାର—ଚନ୍ଦନ ଶେଷ ହେଲ—ଚନ୍ଦନ ଗଛସବୁ ନଷ୍ଟଭ୍ରଷ୍ଟ କଲେ । ଚଇତ୍ରରଥ—କୁବେରଙ୍କ ଉଦ୍ୟାନ । ନନ୍ଦନ—ଇନ୍ଦ୍ରଙ୍କ ଉଦ୍ୟାନ । ଯାହା ଅତିସଘନ ସୁମନବାସ—ଅତି ନିବିଡ଼ ପୁଷ୍ପଲତାଦିଙ୍କର ବାସସ୍ଥାନ ତାହା ପୁଷ୍ପଶୂନ୍ୟ ହେଲ । ରାକ୍ଷସମାନଙ୍କ ସେବାରେ ପୁଷ୍ପ ଚନ୍ଦନ ସବୁ ଶେଷ ପାଇଲ ।

୧୫—କେଶ ମୁକୁତ—ବାଳ ମୁକୁଳା । ବିବାସ—ଉଲଗ୍ନ ଭୟରେ ବିହ୍ୱଳ ହୋଇଲେ । ଦଶନେ

ଅରି ନାରୀୟେ ତ୍ୱରିତ ବେଦନ ସ୍ୱନେ ପୂରିତ
ହରିତ ମାନଙ୍କୁ ତହିଁ କଲେ ହେ ।
ଅଶ୍ରୁରେ ପଙ୍କିଳ ମହୀ ହେବାରୁ ହାଳିକେ ରହି
କୃଷି କରଣେ ଉତ୍ସାହ ହେଲେ ହେ । ୧୬ ।
କଗ୍ରତୁଁ କର କଙ୍କଣ ବିକ୍ଷି ହେଲେ ରତ୍ନ ଗଣ
ବୁଣିଲର ପ୍ରାୟେ ଶସ୍ୟ ବୀଜ ହେ ।
ଚିତ୍ତରେ କରୁଣା କରି ଛାଡ଼ିଦେଲେ କେତେ ଅରି
ମହାକାରୁଣିକ ଯୁବରଜ ହେ । ୧୭ ।
ଦେଖି କୁମାର[୮] ଚରିତ ଦେବଙ୍କୁ ଦେବେ କଥିତ
ନବରସେ ନବଗ୍ରହ ଏହି ହେ ।
ଶୃଙ୍ଗାରେ ଗୁରୁ[୯] ନିଶ୍ଚୟେ ବୀର ରସେ କେତୁ ପ୍ରାୟେ
କରୁଣରେ[୧୦] କବିପଣ ବହି ହେ । ୧୮ ।

---

ପାଠାନ୍ତର—୮, ନୃପଜ । ୯, କୃପାରେ ସୁର । ୧୦, ଆଦ୍ରରସେ ।

---

—ଦାନ୍ତରେ । ଅଜସ୍ର ତୃଣ-ପୁଞ୍ଜାଏ ଘାସ—ଶରଣ ପଶିବାର ଚିହ୍ନ ସ୍ୱରୂପ—ବା ଅଜସ୍ର—ଅବିରମ ଭବରେ, ସତତ ଦୈନ୍ୟ ପ୍ରକାଶ ପୂର୍ବକ । ଲତା ବୃକ୍ଷ—ଲତା ହେଲେ ସ୍ତ୍ରୀ ତାଙ୍କ ମଧ୍ୟରେ ସ୍ତ୍ରୀ ବେଶଧାରୀ ପୁରୁଷ । ବୀରମାନେ ଲତାଶ୍ରିତ ବୃକ୍ଷ ପ୍ରାୟେ ଦିଶିଲେ । ଏଠାରେ ରକ୍ଷସମାନେ ବୃକ୍ଷ, ସେମାନେ ସ୍ତ୍ରୀଙ୍କୁ ଆଶ୍ରୟକରିବାରୁ ଲତାବେଷ୍ଟିତ ବୃକ୍ଷପ୍ରାୟ ଦିଶିଲେ । ଲତାବୃନ୍ଦ ବୀର ପ୍ରାୟେ ଦିଶି ( ପାଠାନ୍ତର ) ବୀରମାନେ ଲତାବୃନ୍ଦ ପ୍ରାୟେ ଦିଶିଲେ—ଲତା ବୃକ୍ଷ ବା ଲତାବୃନ୍ଦ ବୀରପ୍ରାୟ ଦିଶିଲେ ବା ଲତାବୃନ୍ଦ ବୀର—ଅର୍ଜୁନବୃକ୍ଷ ପ୍ରାୟେ ଦିଶିଲେ (ବୀରି ଅର୍ଜୁନ ବୃକ୍ଷ)

୧୬—ଅରିନାରୀ—ଶତ୍ରୁ ସ୍ତ୍ରୀ । ତ୍ୱରିତ—ଶୀଘ୍ର । ବେଦନସ୍ୱର—କ୍ରନ୍ଦନ ବେଳ—ବିଧବା ହେବାରୁ । ହରିତ—ଦିଗ । ଅଶ୍ରୁରେ—ଲୁହରେ । ମହୀ—ଭୂଇଁ । ହାଳିକେ—ହଳିଆ-ମାନେ । କୃଷି କାରଣେ—ଚଷ କରିବାକୁ । ଉତ୍ସାହୀ—ଆଗ୍ରହୀ । କଙ୍କଣ—ବଳା ।

୧୭—ମହାକାରୁଣିକ—ଅତି ଦୟାଳୁ ।

୧୮—ନୃପଜ—ରଜ କୁମାର ଚନ୍ଦ୍ରଭାନୁ । ନବରସେ ନବଗ୍ରହ—ବୀର କରୁଣାଦିରେ ଏ ନବ ଗ୍ରହ । ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ନବଗ୍ରହଙ୍କ ସଦୃଶ । ଶୃଙ୍ଗାର—ଆଦିରସରେ ଗୁରୁ—ବୃହସ୍ପତି; ଶ୍ରେଷ୍ଠ ଅର୍ଥାତ୍ ଶ୍ରେଷ୍ଠ ରସିକ । ବୀର ରସେ କେତୁଗ୍ରହ—ଅର୍ଥାତ୍ ବୀର ରୂପେ ଅତି ଭୀଷଣ । କରୁଣରେ କବିପଣ—ଶୁକ୍ରଗ୍ରହ । କରୁଣ ରସରେ ବଡ଼ ନିପୁଣ ଏ ରସ ବିଷୟରେ ବଡ଼ ଜ୍ଞାନୀ ।

ଅଦ୍‌ଭୁତେ ମଙ୍ଗଳ ସତ ହାସ୍ୟରେ ମନ୍ଦ ବିଦିତ
ଭୟାନକେ ତମ ପରମାଣ ହେ ।
ଗ୍ରହବର ବୀଭତ୍ସରେ ବୁଧ ଏ ରୌଦ୍ର ରସରେ
ଶାନ୍ତରେ ଚନ୍ଦ୍ରମା ପରି ଜାଣ ହେଁ । ୧୯ ।
ଏ ଶତ୍ରୁ ସିଂହ ରାଶିରେ କ୍ରୀଡ଼େ ଅନ୍ଧ ଉପକାରେ
ଭବେ ହେଉ ଏ କନ୍ୟାରେ ଯୋଗ ହେ ।
ଶାପ କାଳ ହେଲା ଲୋପ ବିନାଶ ମାନସ-ତାପ
ପୁରେ କରୁ ମହାମହ ଭୋଗ ହେ । ୨୦ ।
ଏସନ ସନ୍ତୋଷ କ୍ଷଣେ ରଥ ଉଡ଼ିଲା ଗଗନେ
ଭୂତଖଣ୍ଡ ଛାଡ଼ି ଅନ୍ତର୍ଦ୍ଧାନ ହେ ।
ପିଶାଚ ପ୍ରେତ କୁଷ୍ମାଣ୍ଡ ଜମ୍ବୁକ ଡ଼ାକିନୀ ରୁଣ୍ଡ
ଗୃଧ୍ରବୃନ୍ଦ ମଣ୍ଡିଲେ ଶ୍ମଶାନ ହେ । ୨୧ ।
ଭୂତ ମଧ୍ୟରେ ଅଧିପ ଏ ତିନିହେଁ ଚଣ୍ଡ ରୂପ
ଅଘୋର ଘଣ୍ଟ କପାଳକଣ୍ଠ ହେ ।

---

୧୯—ଅଦ୍‌ଭୁତ ରସରେ ମଙ୍ଗଳଗ୍ରହ-ଅଦ୍‌ଭୁତ ରସର ସ୍ଥାନରେ କୁଶଳ । ହାସ୍ୟ ରସରେଁ ମନ୍ଦ ଗ୍ରହ କି ଶନି ଗ୍ରହ- ଅର୍ଥାତ୍ ମନ୍ଦହାସ୍ୟ ଯୁକ୍ତ ମହାପୁରୁଷ ମାନେ ଆନ୍ତହସନ୍ତି-ଭୟାନକ ରସରେ ତମ କି ରାହୁ । ଏ ଅନ୍ୟାୟପ୍ରତି ଭୟାନକ ରୂପ ଧରନ୍ତି । ବୀଭତ୍ସ ରସରେ ଗ୍ରହବର-ସୂର୍ଯ୍ୟ । ବୀଭତ୍ସ ଘଟନାପ୍ରତି ସୂର୍ଯ୍ୟବତ୍ ପ୍ରଚଣ୍ଡ ହୁଅନ୍ତି । ରୌଦ୍ର ରସରେ ଏ ବୁଧ । ରୌଦ୍ର ରସରେ ଏ ପଣ୍ଡିତ-ଅର୍ଥାତ୍ ସମୟ ବିଶେଷରେ ରୁଦ୍ର ରୂପ ଧାରଣ କରନ୍ତି । ଶାନ୍ତ ରସରେ ଚନ୍ଦ୍ରଗ୍ରହ । ଏ ମଧ୍ୟ ବଡ଼ ଶାନ୍ତ ଓ ସୌମ୍ୟ ପ୍ରକୃତି ଧାରଣ କରନ୍ତି ।

୨୦—ଏ ଶତ୍ରୁ ରାଶିରେ-ଏ ଶତ୍ରୁ ସମୂହ ହେଲେ ମୃଗ-ଅନ୍ୟ ପଶୁ ସେମାନଙ୍କ ପ୍ରତି ଦଣ୍ଡ ବିଧାନକାରୀ ହୋଇ । କ୍ରୀଡ଼ି-ବିଳାସ କରି । କନ୍ୟା-ନିଜ ସ୍ତ୍ରୀ ଲବଣ୍ୟବତୀରେ ଯୁକ୍ତ ହେଉ ଏପରି ଆଶିର୍ବାଦ କଲେ । ମାନସତାପ-ବିରହ ଜନିତ ମନର ଦୁଃଖ । ପୁରେ-ସ୍ୱନଗରୀରେ ବା ସ୍ୱଗୃହରେ । ମହାମହ-ମହାନ୍ ଉତ୍ସବ ।

୨୧—ଅନ୍ତର୍ଦ୍ଧାନ-ସେ ସ୍ଥାନ ଛାଡ଼ି ଚାଲିଗଲା । କୁଷ୍ମାଣ୍ଡ-ଭୂତ ବିଶେଷ । ଜମ୍ବୁକ-ବିଲୁଆ । ଡ଼ାକିନୀ- ଡ଼ାହାଣୀ । ରୁଣ୍ଡ-ଏକତ୍ର । ଗୃଧ୍ରବୃନ୍ଦ-ଶାଗୁଣା ସବୁ ।

୨୨—ଅଧିପ- ରଜା, ଅଧିନାୟକ । କି କୃତ୍ୟ- କି ଆଶ୍ଚର୍ଯ୍ୟ ହତ୍ୟା ।

ଏହି ବିସ୍ମୟ ହୋଇଲେ          କି କୃତ୍ୟ କଲା ବୋଇଲେ
ଏତେ କାହେ ପ୍ରେତେ ହେବେ ତୁଷ୍ଟ ହେ । ୨୨ ।
ଭରତେ ଏ ରୂପେ ରକ୍ତ          ନଦୀ ହୋଇଥିଲା ବ୍ୟକ୍ତ
ବୋଲି ଚଣ୍ଡରୂପ ପଗ୍ଭରିଲା ଯେ ।
କଳ୍କି ମାରଣରେ ଏତେ          ଶବ ଦେଖୁଥିଲେ ନେତ୍ରେ
ଅଲେକିତ ଭେଳି ପ୍ରେତେ ଦେଲା ଯେ । ୨୩ ।
ପିଇଲେ ରୁଧିର ପଣା          ପରିରେ ପ୍ରେତ ଅଗଣା
ମଣ୍ଡାପରି ମୁଣ୍ଡ ଗ୍ଭେବାଇଲେ ହେ ।
ପାଇଲେ ସେ ଭୁଜ ପାଦୁ          ମସ ଉପହାର ସ୍ୱାଦୁ
ନଖ କଣ୍ଟକ ବାହାର କଲେ ସେ । ୨୪ ।
ଘୃତ ପରି ପିତ୍ତ ଲେହି          ନୃତ୍ୟ କଲେ ଗୀତ ଗାଇ
ହୃଦ ମେଦ ବ୍ୟଞ୍ଜନ ସ୍ୱାଦେ ସେ ।

---

୨୩—ଭରତେ—ମହାଭାରତ ଯୁଦ୍ଧରେ । ଏ ରୂପେ ରକ୍ତ ନଦୀ ବ୍ୟକ୍ତ—ପ୍ରକାଶ ପାଇଥିଲା—ଅଠର ଅକ୍ଷୌହିଣୀ ସୈନ୍ୟଙ୍କ ରକ୍ତରେ ଏକ ପ୍ରକାଣ୍ଡ ନଦୀ ବହି ଯାଇଥିଲା । କଳ୍କି ମାରଣରେ—କଳିଯୁଗ ଶେଷରେ—କଳ୍କି ରୂପ ଧରି ଭଗବାନ୍ ବିଷ୍ଣୁ ସଂସାର ସଂହାର କଲା ସମୟରେ ଏତେ ମୃତ ଶରୀର ନେତ୍ରରେ ଦେଖୁଥିଲୁ ? ବର୍ତ୍ତମାନ ଏ ବୀରଚନ୍ଦ୍ର ରାକ୍ଷସ ମାରଣରେ ଅଲେକିତ—ଅଦେଖା, ଅପୂର୍ବ ଭେଳି ପ୍ରେତଙ୍କୁ ଦେଲା । ଏହି ଭୂତ ରାଜାମାନେ—ଅର୍ଥାତ୍ ଏ ତିନିଜଣ ଅମର—ପ୍ରଳୟରେ ମଧ୍ୟ ମୃତ୍ୟୁ ଲଭନ୍ତି ନାହିଁ । କେତେ ସତ୍ୟ, ତ୍ରେତା ଦ୍ୱାପର, କଳି ସେମାନେ ଦେଖୁଛନ୍ତି—ପ୍ରତ୍ୟେକ କଳି ଶେଷରେ କଳ୍କି ଅବତୀର୍ଣ୍ଣ ହୋଇ ସଂସାର ଧ୍ୱଂସ କରନ୍ତି । ତହୁଁ ପୂର୍ବ କଳି ଶେଷରେ କଳ୍କିଙ୍କ ସଂହାର କଥା ଏଠାରେ କଥିତ ହେଲା ବା ଭରତ ଯୁଦ୍ଧରେ—ପୁରାଣ କଥିତ କଳ୍କିଙ୍କ ଘାତ ପରିଘାତରେ ଏତେ ଶବ ନେତ୍ରରେ ଆମ୍ଭେ ଦେଖୁଥିଲୁ ।

୨୪—ପ୍ରେତମାନେ ରୁଧିର ( ରକ୍ତ ) ପଣା ପରି ପିଇଲେ; ଅଗଣା ( ଅଗଣନ୍ତି ) ମଣ୍ଡା ପିଠା ପରି ମୁଣ୍ଡ ଗ୍ଭେବାଇଲେ । ହାତ ପାଦକୁ ମାଛକଣ୍ଟା ପରି ନଖ କାଢିଦେଇ ମାଛ ସ୍ୱାଦୁ ପାଇଲେ । ( ଭେଳିରେ ଦିଆ ଯାଉଥିବା ଭୋଜ୍ୟକୁ ଉପହାର କହନ୍ତି । ମାଛକୁ ଏଠାରେ ଉପହାର ପରି ସ୍ୱାଦୁ ଥିଲା ) ।

ମାଡିଲେ ଜରତ ମାନେ ପିଞ୍ଜାମାଂସ ଶର ମୂନେ
ପ୍ରବର୍ତ୍ତିଲେ ବୀର ଆଶୀର୍ବାଦେ ହେ । ୨୫ ।
ପ୍ରେତରଙ୍କ ନିଃଶଙ୍କରେ ଶବ ପକାଇ ଅଙ୍କରେ
ଚରଣ ଲମ୍ବାଇ ବସିଛନ୍ତି ଯେ ।
କରନ୍ତି କବଳ ପଳ ଦେଖାଇ ଆପଣା ବଳ
ମାଡ଼ି ପାଦେ ଶବ ଶିବାପନ୍ତି ଯେ । ୨୬ ।
ଶ୍ୱାନ ପାଞ୍ଚ ସାତ ଝୁଣ୍ଡ ଓଟାରନ୍ତି ଏକ ପିଣ୍ଡ
ଖଣ୍ଡ ଖଣ୍ଡ କରି ଘେନି ଯାଇ ହେ ।
ଲୁଗ୍ୱଇ ଗୁଳ୍ମ ତଳରେ ପୁଣି ହିଁ ସେହି ପ୍ରକାରେ
କୌଣପ ମଧ୍ୟକୁ ଆସେ ଧାଇଁ ହେ । ୨୭ ।
ଗୃଧ୍ରେ ଯେ ହୋଇ ଫୁରୁଣା ଚଞ୍ଚୁକୁ ବିସ୍ତାରି ଢ଼େଣା
ହଲଇ ମତ୍ତପିଶିତାଶନେ ଯେ ।
ଯେ ଯେତେ ପାରିଲେ ତେତେ ବହିଲେ ଭୋଜନ ଅନ୍ତେ
ପ୍ରେତେ ବହୁତ କାଳ ବଞ୍ଚନେ ହେ । ୨୮ ।

---

୨୫–ଲେହି–ଗୁଡ଼ିକରି; ହୃଦ ମେଦ–କଲିଜା ମାଂସ; ବ୍ୟଞ୍ଜନ–ଘାଣ୍ଟିଆ ତରକାରୀ ମହୁର; ଜରତ ( ବୁଢ଼ା ) [ ଯେଉଁ ପ୍ରେତ ମାନଙ୍କର ଦାନ୍ତ ନ ଥିଲ । ] ଶରମୂନରେ ପିଞ୍ଜା ( ଚକଟି ହୋଇ ଯାଇଥିବା ) ମାଂସ ଖାଇ ।

୨୬–ପ୍ରେତରଙ୍କ–ଡ଼ାହାଣୀ ବା ଏକ ପ୍ରକାର ଭୂତ । କୁଥାଅଛି ସେମାନେ ଶ୍ମଶାନରେ ପୋତା ଶବଙ୍କୁ ଗାତରୁ କାଢ଼ି କୋଳରେ ପକାଇ ଗେଲ କରନ୍ତି ଓ ଖେଳନ୍ତି । ପୁଣି କେହି ଆସିଲେ ତାକୁ ଛାଡ଼ି ଲୁଚି ପଳାଇ ଯାନ୍ତି । ଏଠାରେ ବହୁତ ଶବ ଥିବାରୁ ତାଙ୍କର ଶଙ୍କା ନ ଥିଲ । ଶିବାପନ୍ତି– ( ବିଲୁଆମାନେ ) ପାଦରେ ଶବ ମାଡ଼ିବସି ପଳ ( ମାଂସ ) ଓଟାରି କବଳ କରନ୍ତି ( ଖାନ୍ତି ) ।

୨୭–ଶ୍ୱାନ ( କୁକ୍କୁର ) ପାଞ୍ଚସାତ ମିଶି ଶବ ଓଟାରି ଖଣ୍ଡେ ଖଣ୍ଡେ ନେଇ ଗୁଳ୍ମ (ବୁଦା) ତଳେ ଲୁଗ୍ୱଇ ଦେଇ ପୁଣି ନେବା ପାଇଁ; କୌଣପ–ରାକ୍ଷସ–ଏଠାରେ ମାଂସ ଖାଉଥିବା ଭୂତ ଓ ଜନ୍ତୁ ।

୨୮–ଫୁରୁଣା–ଖୁସି; ଢ଼େଣା ବିସ୍ତାରି ଚଞ୍ଚୁ ( ଥଣ୍ଟ ) କୁ ହଲଉ; ପିଶିତ–ମାଂସ; ପ୍ରେତମାନେ ବହୁତ କାଳ ଖାଇ ବଞ୍ଚନେ ( ବଞ୍ଚିବାଚାଲି ) ବୋହିଲେ ।

କୈଳାସ ଦେଖି ଶୂନ୍ୟ ଜାଣିଲେ ପଞ୍ଚ ବଦନ
କେତେ ସୁକଲ୍ୟାଣ କଲେ ତୋଷେ ସେ ।
ଆଶିର୍ବାଦ କରିବାକୁ ମୁନି ନ ଦେଖି ବୀରକୁ
ପ୍ରବେଶ ହେଲେ କର୍ଣ୍ଣାଟଦେଶେ ସେ । ୨୯ ।
ଜରତ ବିମ୍ବ ଅଧର ଭରତ-ଜ୍ୟେଷ୍ଠ ସୋଦର
ନିରତେ କର ମୋ ଚିତ୍ତେ ସଦ୍ମ ହେ ।
କହେ ଉପଇନ୍ଦ୍ର ବୀର- ବର ମୋ ମନ ଭ୍ରମର
ତୁମର ପୟର ନିଶ୍ଚେ ପଦ୍ମ ହେ । ୩୦ ।

---

ପାଠାନ୍ତର – ୭, ଭକ୍ତ ପ୍ରଭୋ ରଘୁବଂଶ ରାଜ ଅଯୋଧ୍ୟା ରାଜନ ପରଂବ୍ରହ୍ମ ।

---

୨୯–କୈଳାସକୁ ଅରୂପ ଶୂନ୍ୟ ଦେଖି ପଞ୍ଚବଦନ ( ମହାଦେବ ) ; ମୁନିମାନେ ଚନ୍ଦ୍ରଭାନୁକୁ ନ ଦେଖି ଆଶୀର୍ବାଦ କରିବାକୁ କର୍ଣ୍ଣାଟକୁ ଆସିଲେ । କାହିଁକିନା ଚନ୍ଦ୍ରଭାନୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା ।

୩୦–ଜରତ–ପାଚିଲା; ଭରତ ଜ୍ୟେଷ୍ଠ ସୋଦର–ରାମ; ସୋଦର–ଏଠାରେ ' ଏକୋଦର ପ୍ରସୂତ' ଅର୍ଥ ନୁହେ–ଭାଇ । ସଦ୍ମ–ସ୍ଥାନ; ପୟର–ପାଦ; ଯେ ପଦ୍ମ ପାଦ ବୋଲି ଉପମାରେ କୁହାଯାଏ ତାହା ନୁହେ । ଏହା ନିଶ୍ଚୟ ପଦ୍ମ ମୋର ମନ ଭ୍ରମର ପାଇଁ ।

—*—

# ଷଟ୍ ଚତ୍ୱାରିଂଶ ଛାନ୍ଦ

## (ଚନ୍ଦ୍ରଭାନୁର ସ୍ୱଦେଶରେ ଲାବଣ୍ୟବତୀ ନିକଟରେ ପ୍ରବେଶ ।)

ରାଗ—ଆଶାବରୀ । *

ଗୁଣବନ୍ତେ ଏ ଗୀତ ମଣିକି ମାଳା କର ।
ନିର୍ଗୁଣେ ନ ଘେନିମାକୁ ନାହିଁ ମୋ ବିଗ୍ରର ହେ । ୧ ।
କୁମାର ଦେଖି ସ୍ୱଦେଶ ଗୂଢ଼[୨] ପୁରୁଷକୁ ।
ପଗ୍ଚରିଲେ ନିଜ ରାଜ୍ୟ ଶୁଭ ସନ୍ଦେଶକୁ ଯେ । ୨ ।
ସେ କହିଲେ ସର୍ବ ଶୁଭ ଏବେ ମନ୍ଦ ମାତ୍ର ।
ସିଂହଳ ନୃପତି ଜେମା ଅଟି କ୍ଷୀଣ ଗାତ୍ର ହେ । ୩ ।
ନ ରହୁଛି ନୀରଜ ନୟନୁ ଆଉ ନୀର ।
ନ ଉଠୁଛି ଅବନୀ ଶୟନୁ ନିରନ୍ତର ଯେ । ୪ ।
ନ ବଦ୍ୟ ଚାପ ଘରିଛି ନୃପତି କୁମାରୀ ।
ବିଳାପ ପ୍ରଳାପ ତାର ଭୂତାବେଶ ପରି ଯେ । ୫ ।

---

ପାଠାନ୍ତର * ରାଗ—କଳସା ।—୧, ସ୍ୱଦେଶ ଗତ ।

---

୧—ବିଗ୍ରର—ଗ୍ରର କ୍ରିୟା ଖାତର; ନ ଘେନିମାକୁ—ଗ୍ରହଣ ନ କରିବାଟାକୁ ବନ୍ଦ କରିବା ପାଇଁ [ନିଷେଧାର୍ଥ ଚତୁର୍ଥୀ]

୨—ଗୂଢ଼ ପୁରୁଷ—ଗୁପ୍ତଚର; [କେଉଁ ଠାରେ ଏହାକୁ କିପରି ରାବେ ଦେଖିଲେ, ବିଶେଷତଃ ପୂର୍ବ ୪୫ଶ ଛାନ୍ଦର ୨୧ ପଦରେ 'ରଥରେ ଅନ୍ତର୍ଦ୍ଧାନ' ହେବା ପରେ କି ପୂର୍ବରୁ ଏ ଘଟଣା, ତାହାର କୌଣସି ଉଲ୍ଲେଖ ନାହିଁ ।

୫—ନ ବଦ୍ୟ—ନ (ନୁହେ) ବଦ୍ୟ (କଥନୀୟ) କିନ୍ତୁ ନିନ୍ଦା ଅର୍ଥରେ ଅବଦ୍ୟ ଶବ୍ଦ ପ୍ରସିଦ୍ଧ ଥିବାରୁ ଏଠାରେ ନ ବଦ୍ୟ ଶବ୍ଦର ଅପ୍ରଯୁକ୍ତତା ଦୋଷ ହୋଇପାରେ । ମାତ୍ର ଏଠାରେ ନ ବଦ୍ୟ (ବୈଦ୍ୟ)—ଯାହା ବୈଦ୍ୟ ଦ୍ୱାରା ଶାନ୍ତ ହେବାର ନୁହେ—ଏହିପରି ଶ୍ଳେଷ ଥିବାର ସାଧୁ । ବିଳାପ—କାନ୍ଦିବା; ପ୍ରଳାପ—ବାଉଳ ଗ୍ରଉଳ ହେବା । ଭୂତାବେଶ—ଗୋସାଣି ଲାଗିବା ।

ପଦ୍ମିନୀରେ ଉପଗ୍ରର କରିବାକୁ ଘେନ ।
ସରସୀ ମାନେ ହେଲେଣି ପଦ୍ମିନୀ ବିହୀନ ଯେ । ୬ ।
କାଲି ଫର୍ଗିପରଣ ତେଜିବା ପରି ସେହି ।
ଦେହଳୀ ବଳି ଚଳିବା ଭଳି ବଳ ନାହିଁ ଯେ । ୭ ।
ହା ରବରେ ସଦନ ତ ଦଣ୍ଡେ ଶୂନ୍ୟ ନାହିଁ ।
ହାର-ବରେ ଭୁଜଙ୍ଗମ ଭ୍ରମ ଉପୁଜଇ ଯେ । ୮ ।
ଚତ୍ବରେ ଦେଖାଇ ପୁଛିବାକୁ ତୁମ୍ଭ ବାର୍ତ୍ତା ।
ବଳିଭୁଜେ ବଳିଦେଇ ତ୍ରିବଳି ଶୋଭିତା ଯେ । ୯ ।
ଯେତେ ବିଳମ୍ବ ତୁମ୍ଭର ପ୍ରଳମ୍ବ କୁନ୍ତଳା ।
ତେତିକି ତେତିକି କରୁଅଛି ଜୀବେ ହେଳା ଯେ । ୧୦ ।
କର୍ଡ ଭଗ୍ୟେ ଜୀଇ ଅଛି ନୁହଇ ଗୋଚର ।
ଦୂର କଲନି ସମସ୍ତ ବିହାର ଆହାର ଯେ । ୧୧ ।
ବିହାର ଏତିକି ତୁମ୍ଭ ରୂପ ଦିଶେ ଦିଶି ।
ଉଠି କୋଳ କରିବାକୁ ହୁଅଇ ଲାଳସୀ ଯେ । ୧୨ ।
ଆହାର ଏତିକି ତବ ରସ ଆସ୍ୱାଦଇ ।
ତର୍କୁଛି ଲଭିବା ଲୋଭ ଅଛି କି ଜିଆଇଁ[୨] ଯେ । ୧୩ ।

---

ପାଠାନ୍ତର—[୨], ଜଦ୍ଧନ୍ତୁ ।

---

୬—ପଦ୍ମିନୀ—ପଦ୍ମିନୀ ସ୍ତ୍ରୀ ଲାବଣ୍ୟବତୀ ଏବଂ ପଦ୍ମ ବୁଦା; ବିରହତାପର ଶାନ୍ତି ପାଇଁ ପଦ୍ମ ପତ୍ରାଦି ଦରକାର ହେବାରୁ;

୭—ଦେହଳୀ ବଳି-ଏରୁଣ୍ଡି ଡେଇଁ;

୮—ହା-ରବରେ-ଆହା ଶବ୍ଦରେ ଏବଂ ଶ୍ରେଷ୍ଠ ହାରରେ; ସଦନ—ଘର; ଭୁଜଙ୍ଗମ—ସାପ;

୯—ବଳି ଭୁଜେ-କୁଆକୁ; ବଳି—ଖାଦ୍ୟ; ମାଇପେ ବିଦେଶରୁ କେହି ଆସୁଛି କି ନାହିଁ, କେବେ ବା ଆସୁଛି ସେଠାରେ ସେ କିପରି ବା ଅଛି ଏ ସବୁ ମନାସି କୁଆକୁ ଚାଉଳ ବାଡି ଦିଅନ୍ତି । କୁଆ ଯେଉଁଠା ଚାଉଳ ଆଗେ ଖାଏ ସେଥିରେ ଯେଉଁ କଥା ମନାସ ହୋଇଥାଏ ତା ଘଟେ ବୋଲି ବିଶ୍ୱାସ । ଏ ରୀତି ଏବେ ମଧ୍ୟ ଖବ୍ ଗାଉଁଲିଙ୍କ ମଧ୍ୟରେ ଅଛି ।

୧୦—ପ୍ରଳମ୍ବ କୁନ୍ତଳା—ଲମ୍ବ ବାଳ ଯାହାର;

୧୨ ଦିଶେ ଦିଶି—ଦିଗ ମାନଙ୍କରେ ଦିଶେ;

୧୩- ସ୍ମରଣରେ ଆସ୍ୱାଦନ କରେ; ବିଗ୍ରରୁଛି, ସେହି ରସକୁ ପାଇବାର ଲୋଭ ତାକୁବଞ୍ଚାଇଛି ।

ବେନି ଅଳଙ୍କାରୁ ବେନି ହୋଇଛି ମଣ୍ଡନ ।
କରରେ ଅତୁଲ୍ୟ ପ୍ରତି ଅଙ୍ଗରେ ତପନ ଯେ । ୧୪ ।
ଜୀବେ ଅଛି ଶୁଣିମାରୁ ହରଷ ଲହରୀ ।
ବିରସ ସରିତୁଁ ତାର ବାହାରି ବିହରି ଯେ । ୧୫ ।
ସେ ରସିକ ସିନ୍ଧୁ ଜାତ ତୁରଙ୍ଗ ଭିଆଇ[୩] ।
ଆଗେହଣେ ପବନି ପଗଯେ ଉଡ଼ିଯାଇ ଯେ । ୧୬ ।
ଯାଉଁ ଯାଉଁ ବିଗ୍ଭର କରଇ ତାର[୪] ମନ ।
କରିବର ଗମନା କରିବ ପଗ ମାନ ଯେ । ୧୭ ।
କେତିକି ବେଳକୁ ସ୍ଫୁରିବଟି ମୋତେ ଏତେ ।
ବନ୍ଧୁ ମୁଁ ବିଛେଦ ହୋଇଥିଲି କି ଆୟତେ ଗୋ । ୧୮ ।
କ୍ଷିବ କରିବେ ଏ ଶିବ ଏମନ୍ତ ବେଳରେ ।
ଭେଟ ହୋଇବଟି ମୋର ବାନ୍ଧବୀ ତୁଲରେ ଯେ । ୧୯ ।

---

ପାଠାନ୍ତର—[୩], ଅଣାଇ । [୪], ମନେ ।

---

୧୪-ବେନି ଅଳଙ୍କାର—ଭିତର ଓ ବାହାରର ଅଳଙ୍କାର; ଅଳଙ୍କାର ଶାସ୍ତ୍ରରେ ହାବ ଭାବ, ହେଳାଦି ୨୮ ଟି ନାୟିକାର ଭିତରର ଅଳଙ୍କାର । ତହିଁ ମଧ୍ୟରୁ ତପନ (ବିରହ ତାପ ଜନିତ କ୍ରିୟା) ଗୋଟିଏ । କଟକ କୁଣ୍ଡଳ ପ୍ରଭୃତି ବାହାର ଅଳଙ୍କାର ମଧ୍ୟରୁ ଅତୁଲ୍ୟ ବା ହାତଗଡ଼ୁ ଗୋଟିଏ । ଆଉ ସବୁ ଅଳଙ୍କାର କାଢ଼ି ପକାଇଛି ଏବଂ ତପନ ଛଡ଼ା ହାବ ଭାବ ହେଳାଦି ସବୁ ଲୋପ ପାଇଛି । ଭିତର ୨୮ ଅଳଙ୍କାର ଯଥା—(ସାହିତ୍ୟ ଦର୍ପଣେ) ଯୌବନେ ସତ୍ତ୍ୱଜା ସ୍ତ୍ରୀଣାମଷ୍ଟା ବିଂଶତି ସଂଖ୍ୟକାଃ ଅଳଙ୍କାର ସ୍ତତ୍ର ଭାବ ହାବ ହେଳା ସ୍ତ୍ରୟୋଽଙ୍ଗଜାଃ ଶୋଭା କାନ୍ତିଶ୍ଚ ଦୀପ୍ତିଶ୍ଚ ମାଧୁର୍ଯ୍ୟଂ ଚ ପ୍ରଗଲ୍ଭତା ଔଦାର୍ଯ୍ୟଂ ଧୈର୍ଯ୍ୟ ମିତ୍ୟେତେ ସପ୍ତୈବସ୍ୟୁର ଯନ୍ତ୍ରଜା ଲୀଳା ବିଳାସୋ ବିଚ୍ଛିତ୍ତି ର୍ବିବ୍ବୋକଃ କିଲକିଞ୍ଚିତଂ ମୋଟ୍ଟାୟିତଂ କୁଟ୍ଟମିତଂ ବିଭ୍ରମୋଲଳିତଂ ମଦଃ ବିହୃତଂ ତପନଂ ମୌଗ୍ଧ୍ୟଂ ବିକ୍ଷେପଶ୍ଚ କୁତୂହଳଂ ହସିତଂ ଚକିତଂ କେଳି ରିତ୍ୟଷ୍ଟା ଦଶ ସଂଖ୍ୟକାଃ' ତେ ତପନଂ—ତପନଂ ପ୍ରିୟ ବିଚ୍ଛେଦେ ସ୍ମରାବେଗୋତ୍ଥ ଚେଷ୍ଟିତଂ ।

୧୫—ବିରସ (ଦୁଃଖ, ଖେଦ) ସରିତୁ (ନଦୀରୁ) ହର୍ଷ ରୂପ ଲହରୀ ବାହାରି ବିହରି (ଖେଳିଲା) ।

୧୬—ସିନ୍ଧୁ ଜାତି ତୁରଙ୍ଗ-ସିନ୍ଧ ଦେଶ ଜାତ ଘୋଡ଼ା ଏ ଦେଶରେ ଅତି ଉତ୍କୃଷ୍ଟ ।

୧୯—କିପରି ସମୟରେ ଯାଇ ପହଞ୍ଚିଲେ ସେ ମାନ କରି ପାରିବ ନାହିଁ ତାହା କଳ୍ପନା କରି ଯାଉଛି । ତା ଏହି ଠାରୁ ୩୫ ପଦ ଶେଷ ପର୍ଯ୍ୟନ୍ତ କଳ୍ପନା କରି ଯାଉଛି ।

ମୋ ପାଶକୁ ଦୂତ କରୁଥିବ ମଦାଳସା ।
ଭୃଙ୍ଗ ଅବା କୋକିଳ ସରସ ବାଣୀ[୫] ଭଷା ଯେ । ୨୦ ।
ଅକାଳେ[୬] ମୁଁ ପଡୁ ଯାଇ କରନ୍ତେ[୭] ଆଶ୍ଳେଷ ।
ନ ପାଇବ ସୁମୁଖୀ ମାନକୁ ଅବକାଶ ଯେ । ୨୧ ।
ଅହେ ନବଗ୍ରହେ ବନ୍ଧୁ ଦରଶନ ବେଳେ ।
ମୋର ରାଶି ଏକାଦଶେ ରହ ଏକ ମେଳେ ଯେ । ୨୨ ।
ଲେଖୁଥିବ ମୋ ପାଶକୁ ସେ ପ୍ରେମ ଚିଟାଉ ।
ନ ଜାଣୁ[୮] ତା ନିକଟକୁ ମୋର ଭଗ୍ୟ ନେଉ[୯] ଯେ । ୨୩ ।
ବେଗେ ବୋଲିବି ଅଇଲ ତୋ ଲେଡ଼ିର ଦାସ ।
ନ ପାଇବ ସୁମୁଖୀ ମାନକୁ ଅବକାଶ ଯେ । ୨୪ ।
ଦୁର୍ଗା ମାଧବ କରିବେ ଏମନ୍ତ ମଙ୍ଗଳ ।
ମୋ ସ୍ୱରୂପ ପଟ ଘେନି ହୋଇ ଭବ ଭୋଳ ହେ । ୨୫ ।
ନିଜ ଅଧର ଚୁମ୍ବନେ କରୁଥିବ ଗୋଳ ।
ଭରଜ ମୂଳେ ମୁଁ ଗୃହି ଦିଅନ୍ତେ କରଜ[୧୦] ଯେ । ୨୬ ।
ଚମକି ଗୃହିଁବା କ୍ଷଣି[୧୧] ଜନ୍ମିବ ହରଷ ।
ନ ପାଇବ ସୁମୁଖୀ ମାନକୁ ଅବକାଶ ଯେ । ୨୭ ।
ଯେତେ ଜନ୍ମେ ଯେତେ ପୁଣ୍ୟ କରିଅଛି ଠୁଳେ ।
ମିଳି ଥିବଟି ସୁନ୍ଦରୀ ମେଳ ହେବା କାଳେ ଯେ । ୨୮

ପାଠାନ୍ତର—୫, ରସ । ୬, ଅକାଳେ । ୭, ଲଭବ । ୮, ନ ଯାଉ । ୯, ସୌନ୍ଦର୍ଯ୍ୟ ଭେଟାଉ । ୧୦, ଦେବ ନଖମୂଳେ । ୧୧, ବେଳେ ।

୨୦—ସରସ କଥା କହି ଭୃଙ୍ଗ ଓ କୋକିଳକୁ ମୋ ପାଖକୁ ଦୂତ କରୁଥିବ । [ପ୍ରେମ ଖେଳରେ ଏହି ପରି ମେଘ ଓ ହଂସକୁ ଦୂତ କରି ପଠାଇବା କଥା ସଂସ୍କୃତ କାବ୍ୟରେ ଅଛି । ମେଘ ଦୂତ ଓ ହଂସଦୂତ ବୋଲି କାବ୍ୟ ଅଛି । ]

୨୧—ଆଶ୍ଳେଷ—ଆଲିଙ୍ଗନ; ଅବକାଶ—ବେଳ;

୨୨—ସବୁ ଗ୍ରହ ଜନ୍ମ ରାଶିର ଏକାଦଶରେ ରହିଲେ ଫଳିତ ଜ୍ୟୋତିଷ ମତରେ ଅତି ଐଶ୍ୱର୍ଯ୍ୟ ଫଳ ଲଭ ହୁଏ ।

୨୩—ନ ଜାଣ—ସେ ଚିଠି କଥା ମୁଁ ଜାଣିବା ଆଗରୁ;

୨୫—ସ୍ୱରୂପ ପଟ—ଚିତ୍ର ପଟ;

କେଉଁ ଦିନ ଆସିବେ ମୋ କାନ୍ତ ପରବାସୀ
ବୋଲି ଦେବା ବେଳେ ବାଳା ଖଡ଼ିକି ମନାସି ଯେ । ୨୯ ।
ଆଗେ ମିଳି ବୋଲିବି ମୋ ଛାର ଅପରାଧୀ ।
ନୁଚିଯାଇ ତୋ ପ୍ରଭୁମଣକୁ କୃପାନିଧି ରେ । ୩୦ ।
ଶୁଣି ଏ ବାଣୀ ଅଧିକେ ଦ୍ରବିବ ମାନସ ।
ନ ପାଇବ ସୁମୁଖୀ ମାନଙ୍କୁ ଆବକାଶ ଯେ । ୩୧ ।
ଲକ୍ଷ୍ମୀ ସହ ନୃସିଂହ କରନ୍ତୁ ଶୁଭ ଏବେ ।
ଯେତେବେଳେ ସହୀ ଶୁଭ ସ୍ୱପ୍ନ କହୁଥିବେ ହେ । ୩୨ ।
ଆଜ ଆସିବେ ବଲ୍ଲଭ ଶୁଣି ତୋଷ ହୋଇ ।
ବାଳା ମାଳା ହୋଡ଼ ଥୋଇଥିବ[୧୨] ସତ ପାଇଁ ଯେ । ୩୩।
ସାକ୍ଷୀ ହୋଉଥିବ ମିଳି କଣେ ସହଚରୀ ।
ତେତେବେଳେ ପ୍ରବେଶ ମୁଁ ହେଲେ ଯାଇଁ କରି ଯେ । ୩୪ ।
ସଖୀ ଡ଼ାକିଦେବ ଅନ୍ନ ନିଉଛାଇ ଆସ ।
ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୩୫ ।
ଏସନ ବିଗ୍ରର ବୀର କରଇ ମାନସ ।
ସରିଲା ସରଣୀ କାଞ୍ଚି ନଗ୍ରେ ପରବେଶ ଯେ । ୩୬ ।

---

ପାଠାନ୍ତର—୧୨, ରଖୁଥିବ ।

---

୨୯—ଖଡ଼ୀକି ମନାସି—ଖଡ଼ୀ ପକାଇ;
୩୦—ମୋ ଛାର—ମୋ ପରି ହୀନ; ନୁଛିଯାଇ—ଆହା ମରିଯାଏ;
୩୧—ଦ୍ରବିବ—ଉବରେ ତରଳି ଯିବ ।
୩୨—ସହୀ ଯେତେବେଳେ ଶୁଭସ୍ୱପ୍ନ କଥା କହୁଥିବେ । ବିପଦ୍‌ରେ ଲକ୍ଷ୍ମୀ ନୃସିଂହ ସ୍ମରଣ କରନ୍ତି ।
୩୪—ହୋଡ଼—ହୁଡ଼, ପଣ,—ଯିଦି ମାରିବାରେ ହାରିଲେ ଯାହା ଛାଡ଼ି ଯାନ୍ତି ।
୩୫—ନିଉଛାଇ—କେହି ନୂଆହୋଇ ଘରକୁ ଆସିଲେ ବା ବିଦେଶରୁ ଫେରିଲେ କେହି ଗୁରୁଜନ ସ୍ତ୍ରୀ ଲୋକ ଭାତ ମୁଠିଏ ନେଇ ମୁଣ୍ଡ ଗ୍ରରିପଟେ ବୁଲାଇ ଦେଇ ଆଶୀର୍ବାଦ କରି ତା ପରେ ଘରକୁ ଛାଡ଼ନ୍ତି । ବିବାହରେ ବରକନ୍ୟା ଆସିଲାବେଳେ ମଧ୍ୟ ଏପରି ହୁଏ । ଏହାକୁ ଅନ୍ନ 'ନିଉଛାଳିବା' କହନ୍ତି ।
୩୬—ସରଣୀ—ବାଟ ;

ଠାବେ ଠାବେ ପଡ଼ିଅଛି ଏସନ[୩୭] ଚରିତ ।
ସସପତ କାଳେୟକ କରିବାରେ ହତ ଯେ । ୩୭ ।
ବୀର ଅଦ୍ଭୁତ କୀର୍ତ୍ତି କବିତ୍ୱ ରଚିଣ ।
ସ୍ଥାନେ ସ୍ଥାନେ ପଢ଼ୁଛନ୍ତି ବୋଧକାର ଗଣ ଯେ । ୩୮ ।
ସେ କବିତ୍ୱର ଆଭୋଗେ[୩୯] ତୁଷ୍ଟ ନରେଶ୍ୱର ।
ପ୍ରବେଶରେ ଅଭିଷେକ କରିବେ କୁମାର ହେ । ୩୯ ।
ଶୁଣି ମନେ କରୁଅଛି ସେ ଯୁବ ଭୂଜାନି ।
ଆଶୀର୍ବାଦ କରି ନିକି ଗଲେ ସୁରମୁନି ଯେ । ୪୦ ।
ସ୍ଥିତାର ଛଟକ କେହି ନ ଦେଖିଲେ ନେତ୍ରେ ।
ଧନ୍ୟ ଅଶ୍ୱ ଧନ୍ୟ ସାଦୀ ବୋଇଲେ ସମସ୍ତେ ଯେ । ୪୧ ।
ସଦର ଦ୍ୱାର ଦ୍ୱାସ୍ଥରେ ନମସ୍କାର ପାଇ ।
ଉତ୍ତୁରି ସେ ଶୁଦ୍ଧାନ୍ତ ଗମନେ ତ୍ୱର ହୋଇ ଯେ । ୪୨ ।
ତହିଁ ଶିଳ୍ପ କାରିକାୟେ କଥା ପରସ୍ପର ।
କି କରିବାଟି ହୋଇଲା ଅସର ବାସର ଯେ । ୪୩ ।

---

ପାଠାନ୍ତର—୧୩, ସମର । ୧୪, ଆବେଶରେ ।

---

୩୭—କାଳେୟକ-କାଳକେୟ ; [ ୩୯ ଛାନ୍ଦ ୧ମ ପଦ ଦେଖ । ]

୩୮—ବୋଧକାର-ପଣ୍ଡିତ, ବୁଝିବା ଲୋକ;

୩୯—ଆଭୋଗେ ପରିପୂର୍ଣ୍ଣତାରେ, " ଆଭୋଗଃପରିପୂର୍ଣ୍ଣତା "—ଇତ୍ୟମରଃ ;
ନରେଶ୍ୱର-ଚନ୍ଦ୍ରଭାନୁର ବାପ;

୪୦-ଯୁବ ଭୂଜାନୀ—ଯୁବରାଜ ( ଭୂ-ପୃଥିବୀ, ଜାୟା-ପ୍ରଜା, ଧରିତ୍ରି ଯାହାର ) ସୁରମୁନି ( ଦେବର୍ଷି ) ମାନେ ଆଗଙ୍କୁ ଆସି ମୋତେ ଆଶୀର୍ବାଦ କରି ଯାଇଥିବାରୁ ଏମାନେ ଯୁଦ୍ଧ କଥା ଜାଣିଲେ ବୋଲି ଏ ବିଗ୍ରହିଲ [ ୪୫ ଛାନ୍ଦ ୨୯ପଦ ଟୀକା ଦେଖ । ]

୪୧—ସାଦୀ—ଅଶ୍ୱାରୋହୀ, ଘୋଡ଼ସବାର; ଅର୍ଥାତ୍ ଭାରି ବେଗରେ ଯାଉଥିଲା ।

୪୨—ସଦର ଦ୍ୱାର—ନଅରର ସଦର ଦରଜା; ଦ୍ୱାସ୍ଥରେ—ଦ୍ୱାରୀଠାରୁ; ଉତ୍ତୁରି—ଓହ୍ଲାଇ;
ଶୁଦ୍ଧାନ୍ତ—ଅନ୍ତପୁର ;

୪୩—ଶିଳ୍ପି କାରିକା—ସଖୀ—ଯେଉଁମାନେ ବେଶ ଭୂଷାଦି କରନ୍ତି । ଅସର ବାସର—ଦିନ ଅସରନ୍ତି ହେଲା—ଲାବଣ୍ୟବତୀର ବିରହ ଉପଶମ କରିବାରେ ।

ଅଶର ହୋଇବ କେବେ ମନସିଜ ମୂର୍ଖ ୧୫ ।
ପାଞ୍ଚ ନୋହେ ପାଞ୍ଚ ପାଞ୍ଚ କୋଟି ତା ବିଶିଖ ଯେ । ୪୪ ।
ମାଳିନୀ ବୋଲୁଛି ନିତିମାତ୍ର ଆସୁ ଥାଉ ।
ବରଷେ ହୋଇଲା ପୁଷ୍ପବାଟୀ ନ ସରଇ ଗୋ । ୪୫ ।
ଚେଟୀୟେ ବୋଇଲେ ବନ୍ଦୀ ମୋକ୍ଷ ଶୁକ ସାରୀ ।
ବାଟି ବାଟି ଉଶୀର ଖଳନି ହସ୍ତ ସରି ଗୋ । ୪୬ ।
ଶୁଖିଲା ମୃଣାଳ ନାଳେ ଚତ୍ୱର ସଘନ ।
ପାକ କଲା ଶାକ ପରି ନବଛଦ ମାନ ଗୋ । ୪୭ ।
ପୌଢା ସଜନୀ କି ତହିଁ ନ ବୋଢା ପଗ୍ମରେ ।
ଫୁଲଶର ଭେଦେ କେହି ଗିରିସ୍ତନା ଉରେ ଗୋ । ୪୮ ।
ସେ ତାହାକୁ ପ୍ରତିଭଷ କରୁଛି ତହିଁକି ।
ଗଣନାରେ ଅମ୍ବୁଜ ଯୋଡ଼ାଏ ଅଛି ଟିକି ଗୋ । ୪୯ ।

---

ପାଠାନ୍ତର—୧୫, ମୁଖ ।

---

୪୪—ଅଶର—ଶରହୀନ; ତାର ବିଶିଖ—( ଶର ) ପାଞ୍ଚଟି ନୁହେ ପାଞ୍ଚକୋଟି, ଏହା ପାଞ୍ଚ ( ଜାଣ, ବିଗ୍ରହ );

୪୫—ମୁଁ ନିତି ଆସେ । ଦେଖୁଛି ପୁଷ୍ପବାଟୀ ( ଫୁଲ ବଗିଚ୍ଚ )ରୁ ମୋ ଛଡ଼ା ଆଉ କେହି ଫୁଲ ତୋଳୁ ନାହାନ୍ତି । ଲବଣ୍ୟବତୀ ଫୁଲ ଘେନୁ ନାହିଁ—ଏହି ଅର୍ଥ ।

୪୬—ଚେଟୀୟେ—ଦାସୀମାନେ; ବନ୍ଦୀ ମୋକ୍ଷ—ବନ୍ଦୀରୁ ( ପଞ୍ଜୁରୀରୁ ) ଛଡ଼ା ହୋଇଛନ୍ତି । ଥିଲେ କାଳେ ଶବ୍ଦ କରିବେ । ଉଶୀର—ବେଣାଚେର; [ ୧୨ ଛାନ୍ଦ ୩୦ ପଦ ଓ ୨୨ ଛାନ୍ଦ ୯ ପଦ ଟୀକା ଦେଖ । ]

୪୭—ଚତ୍ୱର ସଘନ—ଅଗଣାରେ ଜମା ହୋଇଛି । ବିରହରେ ଦେହରେ ପଦ୍ମନାଳ ଶୁଖିଯାଏ ଓ ପଦ୍ମ ପତ୍ର ଶାଗପରି ସିଝି ଯାଏ ବୋଲି କଳ୍ପନା ।

୪୮ । ୪୯—ପ୍ରୌଢା—ବୟସ୍କା , ବହୁ ଦିନରୁ ବିବାହିତା; ନ ବୋଢା—ନୂତନ ବିବାହିତା; ଫୁଲର ଶର ଗିରି ( ପର୍ବତ ) ପରି ସ୍ତନ ଯାହାର ତା ଛାତିରେ କେହି ( କିପରି ) ଭେଦ କରୁଛି । ସେ ତହିଁକି କହୁଛି ଫୁଲଶର ହେଲେ କି ହେଲା ସେ ପାଞ୍ଚୋଟି ଭିତରେ ଯୋଡ଼ାଏ ଅମ୍ବୁଜ ଶ୍ୱେତପଦ୍ମ, ନୀଳପଦ୍ମ—ଅରବିନ୍ଦ ନୀଳୋତ୍ପଳ ଅଛି ଯେ ! ଅମ୍ବୁଜ ଅର୍ଥରେ ମଧ୍ୟ ବଜ୍ରହୁଏ ଏଠାରେ ଏହିଅର୍ଥ ଶ୍ଳେଷ । [ ୬୪ ଛାନ୍ଦ ୯ ପଦ ଟୀକା ଦେଖ । ]

କର୍ପୂର ଚନ୍ଦନ କେ ଘୋଳୁଛି କେ ଛଳୁଛି ।
ଝୋଟକ କରିବ ଏଥି କାର୍ଯ୍ୟ ନାହିଁ କିଛି ଗୋ । ୫୦ ।
ବ୍ୟଜନ ଧରି କେ ବିଞ୍ଚିବାକୁ ସ୍ନେହ ଭରେ ।
ଉଡ଼ି ଯାଇ ଥାଇ ନିକି ବୋଲି କେ କିବାରେ । ୫୧ ।
କେ ବୋଲେ ତାହାକୁ ମୁଁ ଯାଉଛି ସ୍ନାନ କରି ।
ମୋହ ହେଲେ ମୁଖେ ନ ସିଞ୍ଚିବ ଶୀତ ବାରି ଗୋ । ୫୨ ।
ବରଷା ପ୍ରାୟେ ମଣିଲେ ପ୍ରମାଦ ପଡ଼ିବ ।
ଅଙ୍କରେ ପକାଇ ଶ୍ରବଣକୁ ଫୁଙ୍କ ଦେବ ଗୋ । ୫୩ ।
କେବଣ ସଜନୀ ହୋଇ ସଜଳ ଲୋଚନା ।
ନବ ପଲ୍ଲବରେ ଶେଯ କରିଛି ରଚନା ଯେ । ୫୪ ।
କେ ସଖୀ ପାଶରେ ବସି କରେ ଆଶ୍ୱାସନା ।
ବୋଲେ କଥା ତ ନ କହୁ କରକରଦନା ଗୋ । ୫୫ ।
ଭଲ ନ ଦେଖିଲୁ ଦିନେ ନାଗରୀ ତିଳକ ।
ଏହିଁ କଥାହିଁ ତୋହର ନ ଗଲା କାଳକ ଗୋ । ୫୬ ।
କ୍ରୋଧ ଭର ହୋଇ କଉଁ ସଜନୀ ବୋଲୁଛି ।
କେ ତାହା ଭୁଞ୍ଜିବ ଯାହା ଆପେ ଅରଜିଛି ଗୋ । ୫୭ ।
ଆରକ କହିଲା ଏହା ବୋଇଲୁ କି କରି ।
ସମଦ୍ରବ୍ୟେ ଅନୁରାଗୀ ହୋଇଲା ସୁନ୍ଦରୀ ଗୋ । ୫୮ ।

---

ପାଠାନ୍ତର—୧୭, ଏଥୁଁ ନୁହଇ ଏ ।

---

୫୦—ଛଳୁଛି—ଥଟା ବା ବିଦ୍ରୂପରେ କହୁଛି । ଏହା ଦେହରେ ଲଗିଲେ; ଝୋଟକ—ଫୋଟକା;

୫୧—ବ୍ୟଜନ—ବିଞ୍ଚଣା;—[୨୨ ଛାନ୍ଦ ୩ୟ ପଦ ଟୀକା ଦେଖ ।]

୫୨—ଶୀତ ବାରି—ଥଣ୍ଡା ପାଣି;

୫୩—ପାଣି ଛିଞ୍ଚିବାକୁ ବରଷା ପଡ଼ି ବିଚାରିଲେ । [୨୨ଶ ଛାନ୍ଦ ୯ମ ପଦ ଟୀକା ଦେଖ]

୫୫—କରେ ଆଶ୍ୱାସନା—ଆଉଁଷି ଦେଉଛି, କରକ—ଡ଼ାଳିମ୍ବ ମଞ୍ଜି;

୫୮—ସମଦ୍ରବ୍ୟେ—ଆପଣା ଗୁଣ ପରି ଗୁଣ ଥିବା ପୁରୁଷ ଠାରେ, କିମ୍ବା ଅତି ସ୍ନେହୀ ପୁରୁଷ ଠାରେ, ଅର୍ଥାତ୍ ଏ ଆପଣା ଅର୍ଜିଲା କର୍ମ କିପରି ହେଲା । ସେ କଣ ବର ଦେଖି କରିବାରେ ଭୁଲ୍ କରିଥିଲା ଯେ ଏପରି କହୁଛୁ ।

ରସାଣ ହେମ-ଅଙ୍ଗୀକି ଥିଲ କି ଗୋଚର
ବଲ୍ଲଭ ହୃଦୟ ହେବ ପାଷାଣ ପ୍ରକାର ଗୋ । ୫୯ ।
କେ ବୋଲୁଛି ରସିକ ରତନ ରାମ ବୀର ।
ବିଦେଶୀ ହୋଇଲେ ସୀତା ଘେନି ସଙ୍ଗତର ଯେ । ୬୦ ।
ଏହି କାଳେ ସେ ପୁର ସୋପାନେ ବୀର ମିଳି ।
ମଦନ ସୁନ୍ଦର ବିଜେ କଲେ ଜଣେ ବୋଲି ଯେ । ୬୧ ।
ଏ ବାଣୀ ଶ୍ରବଣେ ବିମ୍ବ ଓଷ୍ଠୀ ଉଠିବାକୁ ।
ମନ କଲୁ ପ୍ରାଣ ନାଥ ଗମିଲ ସେଠାକୁ ଯେ । ୬୨ ।
ମଳି ମଳି ଅନାୟତ୍ତେ ହେଲେ ଏହା କଳି ।
ଲବଣୀ ପିତୁଳାକୁ ବିଷମ ଶରେ ଦେଲି ଯେ । ୬୩ ।
ଯେ କଲା ବିଚ୍ଛେଦ ବଜ୍ର ପଡୁ ତାହା ଶିରେ ।
ଏତେ ବୋଲି କୋଳ କରି ତୋଳିଲା ସତ୍ୱରେ ଯେ । ୬୪ ।
ହୃଦରେ ଲଗାଇଁ ଶୀତଳକୁ ଲଭି ବାଳା ।
ବିବେକ ପ୍ରସରି କାନ୍ତ ମୁଖକୁ ଗ୍ରହିଲା ଯେ । ୬୫ ।
ବେନି ନେତ୍ର ଚକୋର ମୁଖହିଁ ଚନ୍ଦ୍ର ଯତ ।
ଆନନ୍ଦ ଅଶ୍ରୁ ଜଳରେ କଲା ଦ୍ରବିଭୂତ ଯେ । ୬୬ ।
ଶୋଭ ରତ୍ନମୟ ଭୂମି ବେନି ସହନନ ।
ଛଦ୍ମ ନୋହେ ସଦ୍ମ କଲେ ନୟନ ଖଞ୍ଜନ ଯେ । ୬୭ ।

---

୫୯–ରସାଣ ହେମ-ମଠା ହୋଇ ଚିକଣ ହୋଇଥିବା ସୁନା ।

୬୦–ରାମଚନ୍ଦ୍ର ତ ସେରେ ସୀତାଙ୍କୁ ଘେନି ବିଦେଶୀ ହୋଇଥିଲେ ।

୬୧–ମଦନ ସୁନ୍ଦର-ଚନ୍ଦ୍ରଭାନୁ; ଏ ପଦଟିର ପ୍ରୟୋଗ ଏଠାରେ ଅତୀବ ରମଣୀୟ ।

୬୩–ଅଣ ଆୟତ୍ତ ହୋଇଥିଲେ ମଧ୍ୟ ଏହା ତ କଳି ! ବିଷମଶର–କାମବାଣ;

୬୫–ଗତ ୬୨ ପଦରେ ଜଣା ଯାଉଛି ସେ ଅଜ୍ଞାନ ହୋଇ ନ ଥିଲା ତଥାପି ତାହାର ପୂର୍ଣ୍ଣ କର୍ଣ୍ଣ। କର୍ମର ବିବେକ ବୋଧହୁଏ ନ ଥିଲା ।

୬୬–ଚନ୍ଦ୍ର ଚକୋର ଉପରେ ଅମୃତ ବର୍ଷେ ବୋଲି ପ୍ରବାଦ ଅଛି । ଏଠାରେ ଲବଣ୍ୟବତୀର ଆଖି ଚକୋର, ଚନ୍ଦ୍ରଭାନୁର ମୁଖ ଚନ୍ଦ୍ର ।

୬୭–ଦୁହିଁଙ୍କ ସହନନ (ଶରୀର) ଶୋଭ ରୂପ ରତ୍ନପୂର୍ଣ୍ଣ ଭୂମି ହେଲା । ସେଥିରେ ଦୁହିଁଙ୍କର ନୟନ ଖଞ୍ଜନ (ଆଖି ରୂପ ଖଞ୍ଜନ ଚଢେଇ) ସଦ୍ମ (ସ୍ଥାନ, ଘର) କଲେ– ଏହ ଛଦ୍ମ (ଛଳନା) ନୁହେ–ଠିକ୍ । [୨୪ ଛାନ୍ଦ ୧୨ ପଦ ଟୀକା ଦେଖ । ]

ପଦ୍ମିନୀର ଆଲିଙ୍ଗନ ଦୋହଦ ହୋଇଲା ।
ପୁଂସ ତନୁ ନୀପ ଫୁଲ ପୁଲକାଇ ଦେଲା ଯେ । ୬୮ ।
ପ୍ରତିମା ପରଯେ ବେନି ଦଣ୍ଡ ସ୍ତମ୍ଭୀଭୂତ ।
ରାମଚନ୍ଦ୍ର ଚିହ୍ନି ଉପେନ୍ଦ୍ର କହେ ଗୀତ ଯେ । ୬୯ ।

---

୬୮–ପଦ୍ମିନୀର (ଲାବଣ୍ୟବତୀର) ଆଲିଙ୍ଗନ ଦୋହଦ (ଅକାଳରେ ଫୁଲ ଫୁଟାଇବାର) ଉପାୟ ହେଲା । ତେଣୁ ପୁଂସ ତନୁ ଚନ୍ଦ୍ରଭାନୁର ଦେହ ରୂପ କଦମ୍ବଗଛ ଫୁଲ ଧଇଲା । ଅର୍ଥାତ୍ କଦମ୍ବ ଫୁଲ ପରି ତା ରୁମ ଟାଙ୍କୁରି ଗଲା ।
ଗଛକୁ ଯାହା କଲେ ଅକାଳରେ ତାର ଫୁଲ ହୁଏ ସେହି ସବୁ କ୍ରୀୟାକୁ ସେହି ସେହି ଗଛର ଦୋହଦ କହନ୍ତି । ଏହି ପରି କେତେ ଗୁଡ଼ିଏ ଦୋହଦ କ୍ରୀୟା କବି ପ୍ରସିଦ୍ଧି ଅଛି । ଯଥା–

ପାଦାଘାତାଦଶୋକଃ ସିକ୍ତକ କୁରବ କୌ ପକ୍ଷୀଣାଲିଙ୍ଗନାଭ୍ୟାଂ
ସ୍ତ୍ରୀଣାଂ ସ୍ପର୍ଶାତ୍ ପ୍ରିୟଙ୍ଗୁର୍ବିକଶି ବକୁଳ ସାଧୁ ଗଣ୍ଡୂଷ ସେକାତ୍
ମନ୍ଦାରେ ନର୍ମ ବାକ୍ୟାତ୍ ପଟୁମୃଦୁ ହସନା ଚମ୍ପକୋ ବକ୍ତ୍ର ବାତା
ଚୂତୋଗୀତାନ୍ନ ମେରୁ ବିକଶତି ଚପୁରେ ନର୍ତ୍ତନାତ୍ କର୍ଣ୍ଣିକାରଃ ।

—ଃ✳ଃ—

# ସପ୍ତ ଚତ୍ୱାରିଂଶଚ୍ଛାନ୍ଦ

ରାଗ-ଖଣ୍ଡ କାମୋଦି ।

ରମା ବସାଇ ଆଗେ ରସାଳ ଅନୁରାଗେ "
"ଗ୍ୱଟୁ କରୁଛି ପତି ଯେ ।
ବିଚ୍ଛେଦ ହେଲ ଦିନୁ କି ଦଣ୍ଡ ଫୁଲଧନୁ
ଦେଇଟି ଦିନ ରାତି ରେ ।
ପ୍ରାଣବନ୍ଧୁ । କେମନ୍ତେ ବଞ୍ଚି ଥିଲୁ ରେ ।
ସ୍ୱପନେ ଦୁଃଖ ଦେଖି ନାହୁଁ ଥାଇନୁ ସୁଖୀ
ମୋ ଲାଗି ଦୁଃଖୀ ହେଲୁ ରେ । ୧ ।
ଯେଣିକି ଗ୍ୱହେଁ ମୁହିଁ ସେ ଦିଗେ ଦିଶୁ ତୁହି
ଯେମନ୍ତ ହସ୍ତ ଥାଉ ରେ ।
ଆଉଜାଇ ଅଙ୍କରେ ବସିବି ପଲ୍ୟଙ୍କରେ
ନ ଥିଲା ମନେ ଆଉ ରେ ।
ପ୍ରାଣବନ୍ଧୁ । ସର୍ବଲାବଣ୍ୟ ସିନ୍ଧୁ ରେ ।
ମୋର କି ଭାଗ୍ୟଥିଲା ଧାତା ତୋତେ ରଖିଲା
ମଦନ ବିନ୍ଧୁ ବିନ୍ଧୁ ରେ । ୨ ।
ଯେଉଁ ନୟନ ଭଙ୍ଗୀ ଯୋଗୀନ୍ଦ୍ର ଯୋଗଭଙ୍ଗୀ
ଅଙ୍ଗୀକାର କରିଛି ରେ ।
ଭବ ସୁମରି ତହିଁ ଅଶ୍ରୁ ଥିଲୁ ପୁରେଇ
ଏ ଗୁଣ ହେବ ମୂର୍ଚ୍ଛି ରେ ।
ପ୍ରାଣବନ୍ଧୁ । ମଲି ତ ଏଡ଼େ କ୍ଷୀଣେ ରେ ।
ବଳୟ ଅଛି କରେ ତୋ ଗୁଣ ରତି ଶିରେ
ଦେଉଛି ସ୍ନେହା ପଣେ ରେ । ୩ ।

---

୩—ଯେଉଁ ନୟନ ଯୋଗୀନ୍ଦ୍ର "ଯୋଗଭଙ୍ଗୀ ( ଭଙ୍ଗକାରୀ ) ଭଙ୍ଗୀ ( ପ୍ରକାର ) କୁ ଅଙ୍ଗୀକାର କରିଛି । ଆମ ଦୁହିଁଙ୍କ ଭବ ( ପ୍ରେମ ) ସୁମରି, ମୂର୍ଚ୍ଛି ହେବ କି ?

ଅବନୀରେ ଅଞ୍ଚଳ ପାଡ଼ି ପଗ ଚଞ୍ଚଳ
ହୋଇ ଶୟନ କରୁ ରେ ।
ସେ କଥା ମାନ ଗୁଣି ଗୁଣି କହୁଛି ପୁଣି
ଧିକ ମୋ ଜୀଇବାରୁ ରେ ।
ପ୍ରାଣବନ୍ଧୁ । ଏ କଥା ଅଛି ହୁଡ଼ି ରେ ।
ତୋ ବିନୁ ଜୀଇବାର ଦୋଷକୁ କ୍ଷମାକର
କହୁଛି କର ଯୋଡ଼ି ରେ । ୪ ।

କି ଦେଖିଲ ଏ ଆଖି ଫୁଟି ନ ଯାଇ ସଖୀ
ହୃଦ ଫାଟି ନ ଯାଇ ରେ ।
ମୃତ କରି ଦଶନ ପିତୁଳା ପରସନ
ତୁ ପୁଣି ଅଛୁ ବହି ରେ ।
ପ୍ରାଣ ବନ୍ଧୁ । କାଳ କି ନ କରଇ ରେ ।
ସବୁ ସୁହାଇ ଅନା- ଯତେ ମୀନ ନୟନା
ଘେନ ବିବେକୀ ତୁହି ରେ । ୫ ।
କେଡ଼େ ପ୍ରସନ୍ନ ମୁଖ ପଦ୍ମ ଶୀତମୟୂଖ
ଦର୍ପଣ ଦର୍ପ ହାରୀ ରେ ।
ଚରଣ ପରିଗ୍ରହ ପାଇଁ ନାଗରୀବର
ହେଲୁ ତ ଏତେ ସରି ରେ ।
ପ୍ରାଣବନ୍ଧୁ । ନାହିଁ ଲେଶ ହରଷ ରେ ।

---

କ୍ଷୀଣେ-ତୁ ଏଡ଼େ କ୍ଷୀଣ ହେବାରୁ ବଳୟ ( ଅହ୍ୟ ଚିହ୍ନ କାଚ ) ଯେ ରଖିଛୁ ସେ କଥା ରତି ଶିଖେ ତୋ ଉଣା ( ତୋ ଠାରୁ ସେ ଉଣା ) ଏହା ଜଣାଇ ଦେଉଛି । [ ଶିବ ପୁରାଣରେ ଅଛି କନ୍ଦର୍ପ ପୋଡ଼ି ଗଲା ଉତାରୁ ମଧ୍ୟ ରତି ବିଧବା ଥିଲା । ] ( ତୋ ଠାରୁ ଉଣା ବୋଲି ଏ ଦୋଷ ରତି ମୁଣ୍ଡରେ ଦେଲି ) ।

୫-ମୃତ କରୀ ଦଶନ ପିତୁଳା ( ମଲା ହାତୀ ଦାନ୍ତ ପ୍ରତିମା ) ପରି ପରସନ (ଶୋଭା); ସବୁ ସୁହାଇ-ସବୁ ସହିଙ୍କୁ ସମର୍ଥ କରେ । ମୋର ଆୟତ ନ ଥିଲା । ତୁ ଏହି ବିବେକ ଘେନ-ଏହି କଥାକୁ ବୁଝ ।

୬-ପଦ୍ମ, ଶୀତମୟୂଖ (ଚନ୍ଦ୍ର) ଦର୍ପଣ ଏମାନଙ୍କ ଠାରୁ ସୁନ୍ଦର ତୋ ମୁଖ । ଚରଣ ପରିଗ୍ରହ-ପାଦ ସେବାକାରୀ ସ୍ତ୍ରୀକର ବା ଗୋଡ଼ ତଳି ଲୋକ (ମୁଁ); ଲେଶ- କିଞ୍ଚିତ୍ ହେଲେ ।

ଲଭ ଅନ୍ତର ସୁହା ନ ଯାଉଥିଲ ଆହା
ମୂର୍ଣ୍ଣ ହେଲ ବରଷ ରେ । ୬ ।
ଭିନ୍ନ ଦିନୁ ବନ୍ଧନ କଲି ନାହୁଁ ସୁମନ
ଦେବାର ଥାଉ କେଶେ ରେ ।
ନୁହି ଯାଇ ତୋ ଭବ କେବେ ସୁଝୁଁ ନୋହିବ
ସହସ୍ରେ ଅଂଶୁ ଅଂଶେ ରେ ।
ପ୍ରାଣ ବନ୍ଧୁ । ମନେ ବିଗୁରୁ ଥାଇ ରେ ।
ଇନ୍ଦ୍ର ସମ୍ପତ୍ତି ଦେଲ ଦରିଦ୍ରୁ ହୀନ କଲ
କି ଅବିବେକ ବିହି ରେ । ୭ ।
ପାଶେ ଥିଲ ଦିନରେ ମୋ ଭୋଜନ ଉରାରେ
ତୁହି ଭୋଜନ କରୁ ରେ ।
ଦୂରେ କିପାଁ ଆହାର ନ କରିଥିବୁ ଦୂର
ଜାଣିଲି ଦୁର୍ବଳରୁ ରେ ।
ପ୍ରାଣ ବନ୍ଧୁ । କହିଁ ଧର୍ମେ ବର୍ତ୍ତିଲୁ ରେ ।
ପରଣ ପ୍ରତି ଆଶା ସତେ ଛାଡ଼ିଣ ଯୋଷା
ମୋତେ ବୁଡ଼ାଇ ଥିଲୁ ରେ । ୮ ।
ଗରଳ ହୋଏ ହିତ ଭୋଗ ବଶେ ଯେମନ୍ତ
ତୋ ରକ୍ଷା ସେହି ଭବ ରେ ।
ବରଷା କାଳେ ଘନ– ଗର୍ଜନକୁ ବଞ୍ଚନ
ମୋହ ହିଁ ହୋଇ ଥିବ ରେ ।
ପ୍ରାଣବନ୍ଧୁ । ନୟନେ ଅଶ୍ରୁ ପୂରିଲେ ।
ଶରଦ ଶଶଧର ନୋହି ଥିବ ତୋହୋର
ଦରଶନ ଶର୍ବରୀ ରେ । ୯ ।

---

୭–ଭିନ୍ନ ଦିନୁ–(ମୁଁ ଗଲ ଦିନୁ) ମୁଣ୍ଡ ବାନ୍ଧି ନାହୁଁ । ଫୁଲ ଘିନିମା ତେଣିକି ଥାଉ ।

୮–ଦୁର୍ବଳରୁ–ତୋ ଦୁର୍ବଳ ତାରୁ ।

୯– ମେଘ ଗର୍ଜନ ନ ଶୁଣିବାକୁ ମୋହ (ମୂର୍ଚ୍ଛା) ଶରଦର ଚନ୍ଦ୍ର ନ ଦେଖିବାକୁ ଆଖିରେ ଲୁହ, ଏ ତୋର ରୋଗରେ ବିଷ ପରି ହିତ ହେଲ ।

ବିରହ ଅଗ୍ନି ଜାତ ହୋଇ ଛନ୍ଦୁଁ ସତତ
ଜାଣି ନ ଥିବୁ ଶୀତ ରେ ।
ଶୁଣି ବେଦନ ଘନ ପିକ ହେବା ମଉନ
ବଞ୍ଚାଇଲୁ ବସନ୍ତ ରେ ।
ପ୍ରାଣବନ୍ଧୁ । ନ ବଞ୍ଚାଇଲ ତୋତେ ଚେରେ ।
ସଞ୍ଚିଲେ ମଧୁହାରୀ ଯେବେ ମୋର ଗୁହାରି
ଘେନିଣ କୃପା ଚିତ୍ତେ ରେ । ୧୦ ।
ନ ଆସୁଥିବ ନିଦ ନିଶିରେ ଲଭି ଖେଦ
ଚିତ୍ତେ ପଡ଼ି ମୋ ସ୍ନେହ ରେ ।
କି ବୋଲୁ ଥାଇ ମୋତେ ମନେ ମନେ ତୁ ସତେ
ଆନ ଅଛିଟି କହ ରେ ।
ପ୍ରାଣ ବନ୍ଧୁ । ଯାହା ବୋଇଛନ୍ତି ଜନ ରେ
ପ୍ରିୟାର ମୁଁ କୋୟର ଚାଲ୍ୟ ବାକ୍ଟି ତୋହୋର
ମୁହିଁଟି ଏକା ଘେନ ରେ । ୧୧ ।
ବୋଲିବାକୁ ନିଷ୍ଠୁର କ୍ଷୋଭ ନାହିଁ ମୋହୋର
ମନକୁ କରି ସାକ୍ଷୀ ରେ ।
ତୋତେ ଧ୍ୟାଇଁ ଯେତେ ଆକୁଳ ହୋଇ ଚିତ୍ତେ
ଜାଣୁ ତ ଥିବୁ ଦେଖି ରେ ।
ପ୍ରାଣବନ୍ଧୁ । ଦୁଃଖ କାହେ ତୋହୋର ରେ ।
ସେବାକୁ ଆସି ନାହିଁ ଏଣୁ ଅପ୍ରାଧୀ ମୁହିଁ
ବିଗ୍ଭରି ଦଣ୍ଡ କର ରେ । ୧୨ ।

---

୧୦-ବିରହ ତାପରେ ଶୀତ ଜାଣି ନ ଥିବୁ । ତୋ କାନ୍ଦ ମଧ୍ୟ ଶୁଣି କରି କୋଇଲି ଲଜରେ ତୁନି ହୋଇ ଯାଇଥିବ । ଏଣୁ ବସନ୍ତ ବାଧି ନ ଥିବ । କୃପା ସଞ୍ଚିଲେ–ଦୟା ରଖିଲେ । ମଧୁହାରୀ–ବିଷ୍ଣୁ ।

୧୧–ଆନ–ଗଣ; ପ୍ରିୟାର ମୁଁ କୋୟର–ଦାସ ବୋଲି ଲୋକେ ଯାହା କହନ୍ତି ମୋ ସମ୍ବନ୍ଧରେ ସେ କଥା ଠିକ୍ ।

୧୨–କ୍ଷୋଭ–ଦୁଃଖ; ଦେଖି-ମୋତେ ଶୁଖି ଯାଇଥିବାର ଦେଖି–ଏପରି ଅର୍ଥ ସାଧୁ ନୁହେ; ମୋତେ ଦେଖି–ଅର୍ଥାତ୍ ମୋତେ ଦେଖିଲ ଭଲାରୁ ସବୁ ଜାଣି ଏହ ହିଁ ତାତ୍ପର୍ଯ୍ୟ । ଅପ୍ରାଧୀ–ଅପରାଧୀ, ଦୋଷୀ;

ଖାଉଁ ମୋର ଅୟଶ          କେହି ବଳନ୍ତା ଚିତ୍ତ
ଭିନ୍ନ ହେବାକୁ ସହି ରେ ।
ତେବେ ଦୂରେ ରହିଣ          ମନ ନୟନ ପ୍ରାଣ
ତୋହୋର ପାଶେ ଥାଇ ରେ ।
ପ୍ରାଣବନ୍ଧୁ । ଏବେ ସେ ଅନୁଭବ ରେ ।
ବିପତ୍ତି ବିଚ୍ଛେଦରୁ          ବଡ଼ ହୋଇ ରସ୍କୋରୁ
ଧାତା ବିହି ନ ଥିବ ରେ । ୧୩ ।
ଦେହ ଉପରେ ମନ୍          ପ୍ରଭୁ ପ୍ରମାଣ ଧନ
ମନର ପ୍ରଭୁ ପ୍ରୀତି ରେ ।
ପ୍ରୀତିର ପ୍ରଭୁ ନାରୀ          ତାକୁ ପୁଣି ପାସୋରି
କେହୁ ଧରିବ ଧୃତି ରେ ।
ପ୍ରାଣବନ୍ଧୁ । ପୁଣି ଆରତି ମୁହିଁ ରେ ।
ମନକୁ ଅନୁରୂପେ          ଯୁବତୀ ମିଳେ ତପେ
ଏଣୁ ଦୁର୍ଲ୍ଲଭ କହି ରେ । ୧୪ ।
ଯଉଁ ରୂପ ଅନାଇ          ପଶୁ ପାଷାଣ ଦୁଇ
ବଶ ତରଳ ହେବେ ରେ ।
ପୁରୁଷ ମଧ୍ୟେ ସାର          ଲୋକେ ବୋଇନ୍ତି ମାର
ଚିତ୍ର ମଣୁଛି ଏବେ ରେ ।
ପ୍ରାଣବନ୍ଧୁ । ତୋର ସମ୍ମୁଖେ ରହି ରେ ।
ପ୍ରହାର କଲା ଶର          ସେ ଏଡ଼ିକି ନିଷ୍ଠୁର
ହାତ ଚଳିଲା କେହି ରେ । ୧୫ ।
ଦେହ ମନ ଭିତର          କ୍ଷଣେ ରହୁ ମାତର
ଏମନ୍ତ ପାଞ୍ଚେ ନିତି ରେ ।
ବେଗ ଦେବାକୁ ବାତେ          ସ୍ତୁତି କରଇ କେତେ
ପାଶେ ଆସିବା ମତି ରେ ।

---

୧୪—ହେ ଧନ; ଧୃତି—ଧୈର୍ଯ୍ୟ; ଦୁର୍ଲ୍ଲଭ—ଦୁଃଖରେ ଲଭ କରଯାଏ ଯାହାକୁ—ଦୁର୍ଲ୍ଲଭ ।

୧୫—ତୋର ରୂପକୁ ଗୁହିଁ ପଶୁ ବଶ ( ଅଧୀନ )ହେବ, ପଥର ତରଳି ଯିବ । ପୁରୁଷରେ ସାର ବୋଲି ମାନନ୍ତି ଯେଉଁ କନ୍ଦର୍ପ ସେ ତୋ ଆଗରେ ଠିଆ ହୋଇ ଶର ମାରଇ । ତା ହାତ କିପରି ଚଳିଲା ।

ପ୍ରାଣ ବନ୍ଧୁ ! ତୋ ରୂପ ପଟ ଲେଖିରେ ।
ପାଞ୍ଚୁଁ ଭଠି ଅନାଇ ନାମ ତୋର ଜପଇ
ଗତି ନ ଥାଇ ସଖୀ ରେ । ୧୬ ।
ମୁଁ ହେବାର ଏମନ୍ତ କହୁଁ ଅଧିକ ମିତ
ଥାଇ ତୋ ଅବଧାନେ ରେ ।
ଏ କଥା ବଡ଼ ସିନା ମୋତେ ପୁଣି ବେଦନା
ସହୁ ତୁ ଦିନେ ଦିନେ ରେ ।
ପ୍ରାଣବନ୍ଧୁ ! ତୋତେ ତୁ ପଟାନ୍ତର ରେ ।
ମୋହୋ ଅଶେଷ ତପ ପୁଣ୍ୟ ନାରୀ ସ୍ୱରୂପ
ହୋଇଛୁ ଗମାବନ୍ଧ ରେ । ୧୭ ।
ଯେ ଜନ ନାରୀ ହତେ ରହେ ପୁଣି ଜୀବିତେ
ଦିନ ମାନଙ୍କୁ ବଞ୍ଚେ ରେ ।
ଇନ୍ଦ୍ର କରେ ଯେ ଥାଇ ସେ କୁଳିଶ ନୋହଇ
ସେହି କୁଳିଶ ନିଶ୍ଚେ ରେ ।
ପ୍ରାଣବନ୍ଧୁ ! ନାରୀ ପୁରୁଷ ଦୁଇ ରେ ।
ଘେନି ଏକ ଜୀବନ କେବଳ ତନୁ ଭିନ୍ନ
ଯୋଗେ ଏକତ୍ର ହୋଇ ରେ । ୧୮ ।
ନବରସରେ ସାର ଆଦ୍ୟେ ଲେଖି ଶୃଙ୍ଗାର
ରତି ପରମ ସୁଖ ରେ ।
ଯିବା ପାଇଁ ପାର୍ଶ୍ୱୋର ବଲ୍ଲଭୀ ନାମ ମାତ୍ର
ଦେଇଛି ଶାସ୍ତ୍ରେ ଦେଖ ରେ ।

---

୧୬–ଦେହ ମନ ଭିତରେ ରହି, ଯାଉ କିମ୍ବା ବେଗରେ ପବନ ବହି ଦେହଂ ଉଡ଼ି କରି ଯାଉ–ଏହା ପାଞ୍ଚେ । ଗତି–ଉପାୟ ;

୧୭–ହେ ମିତ; ଅବଧାନେ–ଆଜ୍ଞାରେ ;

୧୮–ନାରୀ ହତେ–ନାରୀ ମଲା ଉତ୍ତାରୁ; ସେହି କେବଳ କୁଳିଶ (ବଜ୍ର); ଦୁଇ ଘେନି (ଦୁହିଁଙ୍କି ଘେନି) ଏକ ଜୀବନ । ଯୋଗେ–ଦୁହିଁଙ୍କ ସଂଯୋଗରେ;

୧୯–ଶୃଙ୍ଗାର ଆଦିରସ; [୨୨ୟ ଛାନ୍ଦ ୧ମ ପଦ ଟୀକା ଦେଖ ।] ବଲ୍ଲଭୀ–ବଲ୍ଲ+ଲଭୀ ଲଭିବା–ପାଇବା ଦ୍ରବ୍ୟ ଭିତରେ ସବୁ ଠାରୁ ବଡ଼–ଏହି ଅର୍ଥ ଶ୍ଲେଷ । ନୈଷଧରେ

ପ୍ରାଣବନ୍ଧୁ । ସେ ନିକି ମୂର୍ଚ୍ଛିବାର ରେ ।
ଥିଲ କଉଁ ଦୁର୍ଦ୍ଦଶା                    ରଥାଙ୍ଗ ପ୍ରାୟ ନିଶା
ନେବାକୁ ତୋର ମୋର ରେ । ୧୯ ।
ଦରଶନରୁ ଦୂର                    ହେଲନି ପାଇବାର
ମୋର ଅଶେଷ ବ୍ୟଥା ରେ ।
ଭିନ୍ନ ନୋହେ ଏ ଖେଦ                    ତୋର ମୋର ବିଚ୍ଛେଦ
ହୋଇ ରହିଲ କଥା ରେ ।
ପ୍ରାଣବନ୍ଧୁ । କରିବେ ପରା ହାସ୍ୟ ରେ ।
ରସିକେ ପ୍ରିୟ ହୀନେ                    ଏ ରହିଲ ଜୀବନେ
ଏଥି ଉପାୟ କିସ ରେ । ୨୦ ।
ବଲ୍ଲଭ ମୃଦୁ ବାଣୀ                    ଶୁଣି ତରୁଣୀ ମଣି
ଧୀରେ କହେ କି ସ୍ନେହା ରେ ।
ସେ ଦୁଃଖ ପୋଡ଼ି ଯାଉ                    ଶତ୍ରୁ ହିଁ ତା ନ ପାଉ
ଚିତ୍ତ ଆଅ ନା ତାହା ହେ ।
ପ୍ରାଣବନ୍ଧୁ । ଚିଉକୁ କୁନ୍ତ ପରା ସେ ।
ଏମନ୍ତ ବୋଲି ହସି                    ବକ୍ଷେ ଗ୍ରହିଲ ରସି
ରମଣୀ ରତ୍ନ ହୀରା ସେ । ୨୧ ।
ଦୁହେଁ ଦୁହିଁକି ବେଶ                    କରିବାରେ ଲଳସ
ଏମନ୍ତେ ଦିନ ଶେଷ ଯେ ।
କାମ ବିଜୟ କାଳ                    ହେଲଟି ଯୁବା କୁଳ
ଶୁଭିଲ ଦର–ଘୋଷ ଯେ ।

---

ଏପରି ଅଛି–ଦମୟନ୍ତୀର ପଦରୁ ଲବେ ବୋଲି ପତ୍ରର ନାମ ପଦ+ଲବ='ପଲ୍ଲବ'। ମାର ଶାପେ ( ରତି ଶାପରେ ) ଦେଇଛି । ରଥାଙ୍ଗ-ଚକ୍ରବାକର ରାତିରେ ବିଚ୍ଛେଦ ହୁଏ ।

୨୦–ଦରଶନରୁ ( ତୋତେ ଦେଖିଲ ବେଳରୁ ) ବ୍ୟଥା ଦୂର ହେଲଣି । କିନ୍ତୁ ଆମ ବିଚ୍ଛେଦ ଖାଲି ଭିନ୍ନ ଅଲଗା ହେବା ଦୁଃଖ ନୁହେଁ । ପ୍ରିୟା ନ ଥାଇ ଏ କିମିତି ବଞ୍ଚିଲ ବୋଲି ରସିକମାନେ ଯେ ହାସ୍ୟ କରିବେ ।

୨୧–ନ ପାଉ–ନ ହେଉ, ଚିତ୍ତ ଆଅ ନା–ମନେ ପକାଅ ନାହିଁ ।

୨୨–ଦୁହେଁ ଦୁହିଁଙ୍କି ବେଶ କରି ବସିଲେ । ହେ ଯୁବାକୁଳ, କାମ ବିଜୟ କାଳ (ରତି)

ଶଠ ଭୃଙ୍ଗ । ଉଠିଲେ ପଦ୍ମ ଚେକି ଯେ ।

ନାଡ଼ି ଏକ ସୁହାଗ ଆରକେ ଅନୁରାଗ

ପ୍ରାୟେ କୁମୁଦ ଭଜି ଯେ । ୨୨ ।

ଅଭିସାରିକା ଦୀପ ମଣି ଫଣି-କଳାପ-

ମଣି ଚେକିଲେ ଶ୍ୱାସ ଯେ ।

ଧାଏ ପଡ଼ିଲା ଗ୍ରେର ପ୍ରାୟ ବର୍ତ୍ତିକା ବାର

ମନେ ଜନ୍ମିତ ତ୍ରାସ ଯେ । ୮

ଦ୍ୱିଜ ମାନେ । ସନ୍ଧ୍ୟା ବନ୍ଦନ-ସାଧୁ ଯେ ।

ସାରଣା କଲେ ଧନ ଧନୀ ଆଣି ଗଞ୍ଜନ

ପରାୟ ବାରବଧୂ ଯେ । ୨୩ ।

ନବରସେ ରସିକ ଗମାର୍ମଣି ଘୃଣିଙ୍କ

ଭୋଜନେ ହେଲେ ତୋଷ ଯେ ।

ତହିଁ ଉତ୍ତାରେ ହାସ- ଗର୍ଭ ବଚନ ରସ-

ବଶରେ ପରକାଶ ଯେ ।

କାନ୍ତା କାନ୍ତ । ସଉଧେ ପରବେଶ ଯେ ।

---

ପାଠାନ୍ତର—୧, ମାଣିକ୍ୟ ।

---

ହେଲଟି ବୋଲି ସନ୍ଧ୍ୟାର ଦର (ଶଙ୍ଖ) ଶବ୍ଦ ଦେଉଳରେ ବା ନଅରରେ ଶୁଭିଲା । ଶଠ-ଯେ ଗୋଟିଏ ନାୟିକାରେ ଭାବ କରି ମଧ୍ୟ ଲୁଗ୍ଭ କରି ଅନ୍ୟ ନାୟିକାଙ୍କର ସମ୍ଭୋଗ କରେ ତାକୁ ଅଳଙ୍କାରରେ ଶଠ ନାୟକ କହନ୍ତି । "ଶଠୋଽୟ ମେକତ୍ର ବଦ୍ଧ ଭାବୋ ଯଃ"—ଇତି ସାହିତ୍ୟ ଦର୍ପଣ । ଏକ ସୁହାଗ—ଏକର ସ୍ନେହ;

୨୩-ଅଭିସାରିକା [୨୦ ଛାନ୍ଦ ୧୪ ପଦ ଦେଖ ।] ଏଠାରେ ସମ୍ଭବତଃ କୁଳଜା ଅଭିସାରିକା ପ୍ରତି ଲକ୍ଷ କରା ଯାଇଛି ! ସେହି କେବଳ ନିଜକୁ ଲୁଗ୍ଭ କରି ଅଭିସାର କରେ । "ସଲୀନା ସ୍ୱେଷ୍ୱ ମୂକୀକୃତ ବିଭୂଷଣା ଅବଗୁଣ୍ଠନ ସଂବିତା କୁଳଜାଭିଷରେତ୍ ଯଦି" ଇତି ସାହିତ୍ୟ ଦର୍ପଣେ । ସେମାନେ ସାପ ମଣି ଦୀପ ପରି ଜଳିବାରୁ ତାକୁ ଅଭିସାର ସ୍ଥାନରେ ଦୀପ ବିଗ୍ଭରି ଦୁଃଖରେ ନିଶ୍ୱାସ ପକାଇଲେ । ବର୍ତ୍ତିକା-[୨୪ ଛାନ୍ଦ ୧୦ ପଦ ଟୀକା ଦେଖ ।] ସାରଣା କଲେ-ସାରିଦେଲେ; ଝାଡ଼ି ନେଲେ, । ରଜା ମାନେ ଧନୀ ଲୋକଙ୍କୁ ଧରି ଆଣି ଏହି ପରି ଧନ ଝାଡ଼ିବା ଉପେନ୍ଦ୍ର ଭଞ୍ଜଙ୍କ ସମୟକୁ ବୋଧ ହୁଏ ଏ ରୀତି ପଡ଼ି ଯାଇଥିଲା । ଏବେ ମଧ୍ୟ କେତେକ ଗଡ଼ଜାତ ଓ ଜମିଦାରୀରେ ଏହା ଦେଖାଯାଏ ।] ବାରବଧୂ-ବେଶ୍ୟା;

ଦିବ୍ୟ ପର୍ଯ୍ୟଙ୍କ ଅଙ୍କେ ପ୍ରମୋଦରେ ନିଶଙ୍କେ
ପ୍ରକାଶ କଲେ ରସ ଯେ । ୨୪ ।
ଷାଠିଏ ଗୁରିବନ୍ଧ ବିଗ୍ରରି ହେଲେ ବୋଧ
ଛଇଳୀ ରମା ପୁଂସ ଯେ ।
ନିଦ୍ରା ନାଶେ ସ୍ୱପନ ବିପତ୍ତି ଯଥା ଭିନ୍ନ
ତଥା ବିସ୍ମରି କ୍ଲେଶ ଯେ ।
ନିଶା ପ୍ରାନ୍ତ ୧°ପୂର୍ବେ ସବିତା ସ୍ଥିତ ଯେ ।
ଦିନ ଧରଣ ପାଟ– ଛତ୍ର ହୋଇଲା ରଟ
ଏ କଥା ଅଦଭୁତ ଯେ । ୨୫ ।
ଏଣୁ କି ପାଇ ଲଜ୍ଜା ଚରମା ଚଳେ ରଜା
ଲୁଚିଲେ ଅତି ବେଗେ ସେ ।
ତାର ତା ଦାର ଯେଣୁ ମଳିନ ବେଶ ତେଣୁ
କୌଶିକ ମନ୍ତ୍ରୀ ଭଗେ ସେ ।
ସେହି କାଳେ । ଦିନ ଡ଼ଗର କାକ ଯେ ।
ଗଲ ରେ ଧର ମାର କହିଲେ ନିରନ୍ତର
ଉଚ୍ଚେ ଯା ଦେଲେ ଡ଼ାକ ଯେ । ୨୬ ।

---

୨୪–ରମାମଣି–ଲାବଣ୍ୟବତୀ; ଗୁଣିକ–ଚନ୍ଦ୍ରଭାନୁ; ଦୁହେଁ ନବରସେ ( ବିଚ୍ଛେଦ ପରେ, ନୂତନ ରସରେ ) ରସିକ । ସଉଧ-କୋଠାଘର–ଏଠାରେ ଶୋଇବା ଘର;

୨୫–ବନ୍ଧ–(୪ର୍ଥ ଛାନ୍ଦ, ୩ୟ ପଦ ଟିକା ଦେଖ ।) ଛଇଳୀ–ଚତୁରୀ; ନିଦ ଭାଙ୍ଗିଲେ ସ୍ୱପ୍ନ ଯେପରି ଭିନ୍ନ ( ଅଲଗା ) ହୁଏ–ପାଶୋର ଯାଏ; ଅରୁଣ କିରଣ ଦିନର ପାଟ ଛତା ପରି ହେଲା । ଦିନ ( ଦରିଦ୍ର ) ପାଟ ଛତା ଧରି ରାଟ ( ରଜା ) ହେବାଟା ଅଭୂତ କଥା ହେଲା ଏହି ଶ୍ଳେଷାର୍ଥ ।

୨୬–ଏଣୁ ( ଦିନ ବା ଦୀନ ରଜା ହେବାରୁ ) ରଜା ( ଏଠାରେ ଦ୍ୱିଜରାଜ–ଚନ୍ଦ୍ର ) ଚରମା ଚଳେ ( ୧-ଅସ୍ତଗିରିରେ, ୨ ରାଜ୍ୟର ଶେଷ ସୀମା ପର୍ବତରେ ) ଲୁଚିଲେ । ତାର ସେହି ରାଜାର ଦାରା ( ରାଣୀ ) ହେବାରୁ ମଳିନ ବେଶ ହେଲେ । କୌଶିକ ( ୧-ପେଚା; ୨-ବିଶ୍ୱାମିତ୍ର ମହର୍ଷି ) ରୂପ ମନ୍ତ୍ରୀ ଭଗେ ( ପଳାଇଲା ) । ସେହି ଦିନ ରାଜାର ଡଗର ( ଚର ) ସେ ଯାହା ପାଟି କରୁଛି; କହୁଛି "ଗଲରେ ଧର ମାର " ।

ଏ କାଳେ ତେଜି ଶଯ୍ୟା                    କାଠି ଲଗି କି ରଜା
ଆସି ମନ୍ତ୍ରୀଙ୍କ ମିଳି ଯେ ।
ଆଜ୍ଞୁ ପ୍ରାନ୍ତ ପର୍ଯ୍ୟନ୍ତେ                  ସର୍ବ କହୁଁ ପୁରତେ
ତୋଷ–ସିନ୍ଧୁ ଉଛୁଳି ଯେ ।
ନୃପତିଙ୍କ; ନଗର ଜନେ ସୁଖୀ ସେ ।
ମୃଦୁସ୍ଥଳୀରେ ଶୁଣି                       ଆନନ୍ଦ ହେଲେ ରାଣୀ
ସଫଳ କଲେ ଆଖି ଯେ । ୨୭ ।
କୁମାର କୀର୍ତ୍ତି ସ୍ୱଚ୍ଛ                    ହୋଇ ପ୍ରକଟ ମତ୍ସ୍ୟ
ମଘ ଆଦି ଦେଶରେ ଯେ ।
ମିତ୍ର ନୃପତି ଯେତେ                     ହରଷ ହେଲେ ଚିତ୍ତେ
ଭୟ ଲଭିଲେ ପରେ ଯେ ।
ସାଧୁଜନେ ! ଶୁଣ ଏ ଛାନ୍ଦ ଶେଷ ଯେ ।
ସ୍ମରଣେ ରାମଚନ୍ଦ୍ର                      କହଇ ଉପେନ୍ଦ୍ର
ବୀରବର ଏ ରସ ଯେ । ୨୮ ।

---

୨୭–କାଠିଲଗି–ଦାନ୍ତ ଘଷିବା [ ୨୪ଶ ଛାନ୍ଦ ୧ମ ପଦ ଟୀକା ଦେଖ । ] ରାଜା ଦାନ୍ତ ଘଷିଲା ବେଳେ ( ମନ୍ତ୍ରୀ ପୁଅ ) ଆସି ମିଳି ( ପହଞ୍ଚି ) ଆଜ୍ଞୁ ( ଆଦ୍ୟ, ମୂଳରୁ ) ଶେଷଯାଏ ସବୁ କହିବାରୁ; ପୁରତେ–ସମ୍ମୁଖେ; ମୃଦୁସ୍ଥଳୀରେ–ଦାସୀ ଦ୍ୱାରା,–ଦାସୀ ପଠାଇ; କୀର୍ତ୍ତି ଶୁଣିଲେ । କୁମାରକୁ ଦେଖି ରାଣୀ ଆଖି ସଫଳ କଲେ ।

୨୮–ମତ୍ସ୍ୟ, ମଘ ଆଦି–ଦେଶର ନାମ ସବୁ [ ୮ମ ଛାନ୍ଦ ୨୧ ରୁ ୨୩ ପଦ ଟୀକା ଦେଖ । ] ପରେ–ଶତ୍ରୁ ରଜାମାନେ ।



# ଅଷ୍ଟ ଚତ୍ୱାରିଂଶ ଛାନ୍ଦ

## ( ଲାବଣ୍ୟବତୀ ଓ ଚନ୍ଦ୍ରଭାନୁଙ୍କ ଅଭିଷେକ ଓ ରାଜ୍ୟଶାସନ )

### ରାଗ–ମଙ୍ଗଳ

ମଣୋହି ଭିଆଇ କନକ ଗଯେ ବାଣୀରେ ଗାଇବ ।

ଶୁଣହେ ଚରିତ ଅବଶେଷରେ । କର୍ଣ୍ଣାଟ ମହୀପତି ତୋଷରେ । ୧ ।
ଦାନବ ପିଶିତ ଦାନ ପ୍ରେତକୁ । ଦେବାର ଆଣି ଚିତ୍ର ଚିତ୍ତକୁ । ୨ ।
ଏ କାଳେ ଯଶରେ ମଣ୍ଡିଲ ଧରା । ଶ୍ରୀରାମ ପାର୍ଥ ମାରୁତି ପରା । ୩ ।
ଏଣୁ ଆନନ୍ଦ ହୋଇ ଦଣ୍ଡଧର । ସଚିବ ସଙ୍ଗେ କରି ବିଚାର । ୪ ।
ନୃପତି ପଦବି ଦେଇଣ ପୁତ୍ରେ । ଚଳିଲେ ପୁରୁଷୋତ୍ତମ କ୍ଷେତ୍ରେ । ୫ ।
ଯାହା ତୁଳନାରେ ଅସମ ରତି । ହେଲାରୁ ଅଙ୍କପଙ୍କୁ କହନ୍ତି । ୬ ।
ପାଟ ମହିଷୀ ସେ ଲାବଣ୍ୟବତୀ । ହୋଇଲା ଗୁଣନିଧାନ ମନ୍ତ୍ରୀ । ୭ ।
ବସନ୍ତକ ହେଲା ଜ୍ୟୋତିଷ ରାଜ । ପୁରୋଧା ରତ୍ନଧ୍ୱଜ ଆର୍ଯ୍ୟ । ୮ ।
ସେ ନରେଶ୍ୱର ପାଳିବାରେ ଦେଶ । ନୋହିଲା ଆଉ ମିଥ୍ୟାବକାଶ । ୯ ।

---

ପାଠାନ୍ତର—୧, ପାର୍ଶ୍ୱେ । ୨, ମିଥ୍ୟାବକାଶ ।

---

୨–ଦାନବ ( ରାକ୍ଷସ ) ମାନଙ୍କର ପିଶିତ ( ମାଂସ ) ପ୍ରେତକୁ ଦେବା କଥାଶୁଣି ଚିତ୍ତଙ୍କୁ ଚିତ୍ର ( ମନରେ ଆଶ୍ଚର୍ଯ୍ୟ ମଣିଲେ );

୩– ପାର୍ଥ–( ଅର୍ଜୁନ ) ମାରୁତି ( ଭୀମ କିମ୍ବା ହନୁମାନ ) ଙ୍କ ପରି ପୃଥ ଚନ୍ଦ୍ରଭାନୁ ;

୪– ଦଣ୍ଡଧର–ବୃଦ୍ଧରାଜା ;

୬– ଯାହା ଶୋଭା ତୁଳନାରେ ରତିଦେବୀ ସମାନ ନ ହେବାରୁ 'ରତି' ନାମକୁ ଦ୍ୱେଇ ଅଙ୍କମାତ୍ରାରେ ଲଗାଇଲେ । ରତି–ଅଙ୍କଟିକିଏ ;

୭ । ୮–ଗୁଣନିଧି ମନ୍ତ୍ରୀ, ବସନ୍ତକ ଜ୍ୟୋତିଷ, ରତ୍ନଧ୍ୱଜ ଆର୍ଯ୍ୟ ପଦପାଇ ପୁରୋହିତ ହେଲେ । ୯ ପଦ ଠାରୁ ୬୦ ପଦ ପର୍ଯ୍ୟନ୍ତ ଗୁଣମାନଙ୍କର ଅତ୍ୟୁକ୍ତି । ଏହି ପ୍ରକାର ଲେଖା ନୈଷଧରେ ସ୍ପଷ୍ଟ ଦେଖାଯାଏ । ରଘୁବଂଶରେ ମଧ୍ୟ " ଶ୍ରୁତୌ ତପସିତା ସ୍ଥିତା "–୮ " ଶ୍ରୁତିରେ ଘୋର ଶବଦ ସତେ " । ୨ଚଳେ ୧୬ ପଦ । ପ୍ରଭୃତି ଉକ୍ତିରେ ଏହି ପ୍ରକାର ବର୍ଣ୍ଣନାର ସୂଚନା ମାତ୍ର ଦେଖାଯାଏ ।

୯– ମିଥ୍ୟା ବକାଶ–ମିଥ୍ୟା ଅବକାଶ–ମିଥ୍ୟାର ସ୍ଥାନ ରହିଲା ନାହିଁ ।

ଦିବସ ନାମରେ ଦୀନ ରହିଲ । ଦିନକୁ ଦଣ୍ଡ ଆଶ୍ରୟ କଲ । ୧୦ ।
ଭସ୍ମ ଚିତାରେ ମାତ୍ର ଶୋଭ ବହି । ଯାଜ୍ଞିକ ଦ୍ୱିଜ ଲଲାଟ ତହିଁ । ୧୧ ।
ଆଶ୍ରେ କଲ ମନ୍ଦ ମଳୟାନିଳେ । କଳଙ୍କ ଯାଇ ଚନ୍ଦ୍ର ମଣ୍ଡଳେ । ୧୨ ।
କୁଟିଳ ନଦୀ ବୀଚିରେ ଲୁଚିଲେ । ବିଟପୀ ବୃକ୍ଷ ହୋଇ ବଞ୍ଚିଲେ । ୧୩ ।
କଳୀ ସ୍ଥାନ କଲ ପୁଷ୍ପ ବଲ୍ଲୀକି । ମଧୁପ ପଦ ଶୋଭ ଅଳିକି । ୧୪ ।
ଶରଣ କଲ ବୈଦ୍ୟକୁ ମାରଣ । ଇନ୍ଧନେ ଦେଖା ଦେଲ ଦାରଣ । ୧୫ ।
ରହିଲ କୂଳ ଲଙ୍ଘନ ସରିତେ । ଶ୍ରୁତିରେ ସ୍ୱୈର ଶବଦ ସତେ । ୧୬ ।
ବିଷ ଭକ୍ଷଣ ହଂସେ ରହେ ଏକା । ସ୍ତନରେ କରପୀଡ଼ା ଆଶଙ୍କା । ୧୭ ।

---

୧୦—ଦୀନ ( ଦରିଦ୍ର ) ଶବ୍ଦ ଦିନ ( ଦିବସ ) ନାମରେ କେବଳ ରହିଲ । ଦରିଦ୍ର ରହିଲେ ନାହିଁ । ସେହିପରି ଦଣ୍ଡ ଶାସ୍ତିରେ ନ ରହି ଦିନର ସମୟ ଗଣନାରେ ରହିଲ ।

୧୧—ଭସ୍ମ ( ପାଉଁଶ ) ଚିତା ( ମଡ଼ାପୋଡ଼ା ) ରେ ନ ରହି ଯାଜ୍ଞିକ ବ୍ରାହ୍ମଣ ମାନଙ୍କ ଲଲାଟ ( କପାଳ ) ଚିତାରେ ରହିଲ ।

୧୨—ଚନ୍ଦ୍ରଭାନୁଙ୍କ ରାଜତ୍ୱରେ ମନ୍ଦ ( ଖରାପଗୁଣ ) କୌଣସି ଲୋକଠାରେ ଦେଖାଯାଉ ନ ଥିଲ । ମନ୍ଦ ( ଧୀର ଗୁଣ ) କେବଳ ମଳୟାନିଳ ( ମଳୟ ପବନ )ରେ ଆଶ୍ରା କଲ ( ରହିଲ ) । କଳଙ୍କ ( ୧. କାଳିମା, ୨. ପାପ, ) କେବଳ ଚନ୍ଦ୍ର ମଣ୍ଡଳରେ ଦେଖା ଯାଉଥିଲ । ଲୋକମାନେ ନିଷ୍ପାପ ଥିଲେ ।

୧୩—କୁଟିଳ—କୁଟିଳତା ( ୧. ବକ୍ରଭାବ, ୨. କପଟତା ) ବୀଚି ( ଲହରୀ )ରେ ରହିଲ । ଲୋକେ ନିଷ୍କପଟ ଥିଲେ । ବିଟପୀ ( ୧. ଦୋଷରୁଣୀ ସ୍ତ୍ରୀ, ୨. ବୃକ୍ଷ ) ଶବ୍ଦରେ କେବଳ ବୃକ୍ଷ ଅର୍ଥ ଲୋକେ ବୁଝିଲେ—ଦୋଷରୁଣୀ ସ୍ତ୍ରୀ କେହି ନ ଥିଲେ ।

୧୪—କଳୀ(୧. କଳହ, ୨. ଫୁଲ କଢ଼ୀ) କେବଳ ପୁଷ୍ପବଲ୍ଲୀ ଫୁଲଗଛ)ରେ ଦେଖାଗଲ । ମଧୁପ (୧. ମଦୁଆ, ୨. ଭ୍ରମର) ପଦ କେବଳ ଅଳିକି (ଭ୍ରମରକୁ) ଶୋଭ ହେଲ ।

୧୫—ମାରଣ (୧. ପ୍ରାଣ ନାଶ, ୨. ଔଷଧ ଶୋଧନ) କେବଳ ବୈଦ୍ୟଙ୍କ କାର୍ଯ୍ୟରେ ଦେଖାଗଲ । ଦାରଣ (୧. ଚିରିବା, ୨. ଧ୍ୱଂସ ବା ବିଦୀର୍ଣ୍ଣ) କେବଳ ଇନ୍ଧନେ (କାଠରେ) ଦେଖାଗଲ ।

୧୬—କୂଳ ଲଙ୍ଘନ (୧. ନଈ ତଟକୁ ଡେଇଁ ମାଡ଼ିବା, ୨. କୁଳ-ବଂଶଗତ ଆଚାର ନିୟମକୁ ବୁଡ଼ାଇବା) ସରିତେ (ନଈଠାରେ); ଶ୍ରୁତି (୧. ବେଦ ପୁରାଣାଦି, ୨. କାନ) ଲୋକେ ସ୍ୱୈର ଶବ୍ଦ କେବଳ ଶ୍ରୁତି (ଶୁଣାରେ)—ଦେଖାରେ ନ ଥିଲ—ଏହି ଭାବ ।

୧୭ ବିଷ (୧.ଜହର, ସଙ୍ଖୁଆ ପ୍ରଭୃତି, ୨. ପଦ୍ମ ନାଡ଼) ହଂସ ପଦ୍ମ ନାଡ଼ ଖାଏ । କର ପୀଡ଼ା (୧. ବେଶି ଖଜଣା ଆଦାୟ କରି ପ୍ରଜାଙ୍କୁ କଷ୍ଟ ଦେବା; ୨.ମର୍ଦ୍ଦନ କରିବା)

ବନ୍ଧନ ରହିଲା ବାହୁରେ ମାତ୍ର । ମୃଗୟାରେ ହିଁ ରହିଲା ଚିତ୍ର । ୧୮ ।
ରଣ ନିପୁଣେ ରହିଲେ ପ୍ରମୋଦେ । ନାଗରୀ କଟୀ କିଙ୍କିଣୀ ନାଦେ । ୧୯ ।
କେବଳ ମଦନ ବଇରୀ ପଦେ । ପାଞ୍ଚଇ ତାକୁ ଜିଣିମା ବାଦେ । ୨୦ ।
ନ୍ୟାୟ ବଳ ଗଜା ଆଗ ପଦାତି । ଦୁର୍ବଳ ଶଙ୍କା ତହିଁରେ ଘଟି । ୨୧ ।
ଜାତ ହୋଇ ଲୋଭ ପ୍ରେମ ଧନରେ । ଉଛନ ରତୁ ତିନି ଦିନରେ । ୨୨ ।
ନୀବୀ ମୋକ୍ଷ କାଳେ ଉପୁଜେ ନାହିଁ । ମାଗିବା ଦ୍ରବ୍ୟ ନୂମନ ଯହିଁ । ୨୩ ।

---

୧୮–ବନ୍ଧନ (୧. ବାନ୍ଧିବା, ୨. ଆଲିଙ୍ଗନ) ବାହୁ ବନ୍ଧନ (ଆଲିଙ୍ଗନ)ହିଁ ଏକମାତ୍ର ବନ୍ଧନ ଥିଲା । ଚିତ୍ର (୧. ଆଶ୍ଚର୍ଯ୍ୟ, ୨. ଠକିବା); ମୃଗୟା ଶୀକାର; କେହି କାହାରିକୁ ଠକୁ ନ ଥିଲେ । ଲୋକେ ଆଶ୍ଚର୍ଯ୍ୟ ଜନକ ମୃଗୟା କରୁଥିଲେ ।

୧୯–ରଣ ନିପୁଣେ (୧. ଶ୍ରେଷ୍ଠ ଯୋଦ୍ଧା; ୨. କିଙ୍କିଣୀ ଶବ୍ଦ) ଯୁଦ୍ଧ ନ ଥିଲା । ଲୋକେ ସୁଖରେ ସ୍ତ୍ରୀ ସମ୍ଭୋଗ କରି ରହିଥିଲେ ।

୨୦–ବଇରୀ (ଶତ୍ରୁ) କେବଳ ମଦନ ଥିଲା । ପାଞ୍ଚ (ବିଚାର ହି (କେବଳ) ।

୨୧–ନ୍ୟାୟ ବଳ ଏକ ପ୍ରକାର ଖେଳ । ଏହାକୁ ଏବେ ଏ ଦେଶରେ ଓ ପାରସ୍ୟରେ ଶତରଞ୍ଜ-ଶତରଙ୍ଗ କହନ୍ତି ଏବଂ ଇଉରୋପରେ ଚେସ୍ କହନ୍ତି । ଏହା ଅତି ପ୍ରାଚୀନ ଭାରତୀୟ ଖେଳ । ଭାରତରୁ ବାହାରି ଏହା ଏବେ ପୃଥିବୀ ବ୍ୟାପିଛି । ଏହାର ମୂଳ ନାମ ଥିଲା 'ଚତୁରଙ୍ଗ' 'ବା ଚତୁରଙ୍ଗ କ୍ରୀଡ଼ା' । ଏଥିରେ ହାତୀ ଘୋଡ଼ା ପାଇକ ଓ ରଥ ବା ନୌକା, ଏହି ଚତୁରଙ୍ଗ ସାର ଏବେ ମଧ୍ୟ ଦରକାର ହୁଏ । ଖେଳରେ ଏହି ଚତୁରଙ୍ଗ ଯେଣି ଏକ ରଜା ଅପର ରଜାର ସମ୍ମୁଖୀନ ହୁଏ ଏବଂ ହାରେ ବା ଜିଣେ । ଏହି ନ୍ୟାୟ ବଳ ଖେଳର ରଜା ଅଶ୍ୱ ଓ ପଦାତିରେ ହାରିବା ପକ୍ଷର ଦୁର୍ବଳ ଶଙ୍କା ହୁଏ । ରାଜ୍ୟର ରଜା, ଅଶ୍ୱ, ପଦାତିରେ କେବେ ସେ ଶଙ୍କା ହୁଏ ନାହିଁ । ରଜା ଆଗ ପଦାତି ଏପରି ପାଠ ହେଲେ–ରଜା ଆଗରେ ପଦାତି ରହିଲେ ସେ ଖେଳିରେ ଦୁର୍ବଳ ହୋଇଯାଏ ।

୨୨–ପ୍ରେମ ( ପ୍ରଣୟ ) ରୂପ ଧନ; ଲୋକଙ୍କର ଉଛନ ( ଉଦ୍‌ବେଗ ଭାବ ) କେବଳ ସ୍ତ୍ରୀମାନେ ରଜସ୍ୱଳା ହେବା ସମୟରେ ଦେଖାଯାଏ । ପ୍ରେମ କଦାପି ପରକୀୟା ନୁହେଁ ଏହି ସୂଚନା ।

୨୩–ନୀବୀ ମୋକ୍ଷ [ ୧୬ଶ ଛାନ୍ଦ ୨୪ ପଦ ଟୀକା ଦେଖ । ] ଉପୁଜେ ନାହିଁ–ସେତିକି-ବେଳେ 'ନାହିଁ' ଏହି ଶବ୍ଦ ବାହାରେ, ଆଉ କେତେବେଳେ ନୁହେଁ ।

ଲମ୍ପଟ ହୋଇଣ ପର ସ୍ତ୍ରୀରୀରେ । ରହିବା ରହେ ଚିତ୍ର ନାରୀରେ । ୨୪ ।
ନ ଛାଡ଼ିଲ ମାତ୍ର ପଶା ସାରକୁ । ବିମୁଖ କର୍ଣ୍ଣେ ଜପବାରକୁ । ୨୫ ।
ଶୁକ ଶକୁନି ଚରଣରେ ଦେଖି । ଶିକୁଳି ପରି ଶାଙ୍କୋଳି ଯୋଖି । ୨୬ ।
କାଗ ହୋଇ ଯହିଁ ପଞ୍ଜରୀ ଅଛି । ଭିତ୍ତିକି ଏକା ଗୃହ ଧରିଛି । ୨୭ ।
ବନ୍ଦୀ ଯହିଁ କୀର୍ତ୍ତି ନନ୍ଦନ ଜନ । ଏହାହିଁ ଜଣା ଯିବ ଏ ମାନ । ୨୮ ।
ଭରମ ହୋଇଛି ଶୁଦ୍ଧ ସୁବର୍ଣ୍ଣ । ଭୂତ ହିଁ ପଞ୍ଚ ପ୍ରକାରେ ଘେନ । ୨୯ ।
କୁଣ୍ଡ ଦେଖା ଦୁର୍ଗୋତ୍ସବେ ସହସ୍ରେ । ଗୁଡ଼ରୁ ଖଣ୍ଡ ମାତ୍ର ଉପୁଜେ । ୩୦ ।
ପରପର ରୂପ ଏକ ଆକାର । କରିଛି ଯହିଁ ନର ଈଶ୍ୱର । ୩୧ ।

---

୨୪—ପର ସ୍ତ୍ରୀ ଠାରେ ଲମ୍ପଟ ( ଲୋଭୀ) ହୋଇ ରହିବା କେବଳ ଚିତ୍ର ପଟରେ ଅଙ୍କା ଯାଇଥିବା ସ୍ତ୍ରୀ ମୂର୍ତ୍ତି ଦେଖିବାରେ ରହିଲା ।

୨୫—କେବଳ ପଶା ସାର ଉପରେ ମାତ୍ର ରହିଲା । କର୍ଣ୍ଣେ ଜପବାରଙ୍କୁ (ଖଚୁଆମାନଙ୍କୁ, କାନକୁହା ମାନଙ୍କୁ ) ବିମୁଖ ( ବିଷର୍ଣ୍ଣ ଭବ ) ଛାଡ଼ିଲା ନାହିଁ । ଖଚୁଆଙ୍କ ଚକ୍ରରେ କେହି ପଡୁ ନ ଥିଲେ ।

୨୬—ଶକୁନି—ପୋଷା ପକ୍ଷୀ; ଶାଙ୍କୋଳୀ—ବେଡ଼ି;

୨୭—ଭିତ୍ତି ( ୧·କାନ୍ଥ; ୨·ଭୀତି—ଭୟ ) ଭିତ୍ତି ଶବ୍ଦ କେବଳ କାନ୍ଥ ଅର୍ଥରେ ପ୍ରୟୋଗ ହେଉଥିଲା ।

୨୮—ବନ୍ଦୀ ( ୧·ବନ୍ଧା ହୋଇଥିବା ଲୋକ; ୨·ଭଟ ) ଏମାନ—ପୁଣି ତଳେ କୁହା ଯାଉଥିବା ଶବ୍ଦମାନ ଏହାହିଁ ଜଣା ( ଏହିପରି ଅର୍ଥରେ ମାତ୍ର ବଡ଼ ଥିଲ )

୨୯—ଭରମ (୧·ଭୁଲ, ୨·ସୁନା); ଭୂତ ( ୧·ଡ଼ାହାଣି ଗୋସାଣି ପ୍ରଭୃତି, ୨·ପଞ୍ଚ ମହାଭୂତ—କ୍ଷିତି, ଆପ; ତେଜ, ମରୁତ, ବ୍ୟୋମ )

୩୦—କୁଣ୍ଡ ( ୧ ଏକ ପ୍ରକାର ଜଳ ପାତ୍ର; ୨·ଜାରଜ, ଅଣବାବୁଆ ) । ବୋଧହୁଏ ଦୁର୍ଗୋତ୍ସବ ସହସ୍ର କୁମ୍ଭ ଦିନ ଦେବୀଙ୍କର ବିଗ୍ରହକୁ ଯେଉଁ କୁଣ୍ଡରେ ସହସ୍ରଧାର ସ୍ନାନ କରାଇ ଦିଆଯାଏ । ମାତ୍ର 'ଚନ୍ଦନୋତ୍ସବ' କହିଥିଲେ ଅର୍ଥ ସ୍ପଷ୍ଟ ହୋଇଥାନ୍ତା । ଚନ୍ଦନ ଯାତ୍ରାରେ ହିଁ ଧାତୁ ବିଗ୍ରହ ଦିନଯାକ ବୁଡ଼ାଇ ରଖିବା ପାଇଁ ଚନ୍ଦନ କୁଣ୍ଡ ବିଶେଷ ପ୍ରଚଳ । ଗୁଡ଼ରୁ ଖଣ୍ଡ ହୁଏ ° ବ୍ୟତୀତ ଖଣ୍ଡ ଶବ୍ଦ ଆଉ କେଉଁଠାରେ ନ ଥାଏ । ଆଉ ସମସ୍ତେ ଅଖଣ୍ଡ ( ପୂର୍ଣ୍ଣ ) ।

୩୧—ପରପର ( ଶତ୍ରୁ ମିତ୍ର ) ସମସ୍ତଙ୍କୁ ଏକାପରି କରି ଦେଇଛି । ନରେଶ୍ୱର—ଚନ୍ଦ୍ରଭାନୁ ; ନର ଈଶ୍ୱରଙ୍କ ପରି ଏହି ଉପମା ପରେ କୁହା ଯାଉଛି ।

ଚନ୍ଦ୍ର ସୂର୍ଯ୍ୟ ଭାସ ଶିରେ ରଜିତ । ସର୍ବଦା କଞ୍ଚୁକରେ ବେଷ୍ଟିତ ।୩୨।
ସଘନ ପୃଥୁ କାର୍ତ୍ତସ୍ୱର ପାତ୍ର । ରଜନି କରେ ଭୂଷିତ ଗାତ୍ର ।୩୩।
ମହିଷୀ ସଙ୍ଗେ ନଗରେ ବିଜସି । କେବଳ ଜନ ମନ୍ଦୁକୁ ତୋଷି ।୩୪।
ନିତି ଦେବାର୍ଚ୍ଚନ ସରିବା ଯାଏ । କରଇ ମେରୁ ଦାନକୁ ଭୟେ ।୩୫।
ବ୍ରହ୍ମା ବୋଧ ଯହୁଁ ଦେବଶାସନ । ସେ କିମ୍ପା ଭର୍ଗି ଦେବ ଭବନ ।୩୬।

---

୩୨।୩୩–ଈଶ୍ୱର ବା ମହାଦେବଙ୍କ ପକ୍ଷେ–ଚନ୍ଦ୍ର ଓ ସୂର୍ଯ୍ୟ ଭାସ ( ସୂର୍ଯ୍ୟ ପରି ତେଜିୟାନ ତୃତୀୟ ନେତ୍ରର ଅଗ୍ନି ମୁଣ୍ଡରେ ଅଛି । କଞ୍ଚୁକ–ସାପ କାତି; ଏଠାରେ ସାପ ମହାଦେବଙ୍କ ହାତରେ । ଚନ୍ଦ୍ରଭନୁ ପକ୍ଷରେ କଞ୍ଚୁକ ଅର୍ଥ ସାଞ୍ଜୁ ।
ସଘନ ( ଖାଣ୍ଟି ) ପୃଥୁ ( ମୋଟା ) କାର୍ତ୍ତସ୍ୱର ( ସୁନା ) ପାତ୍ର ବୋଧହୁଏ ଥାଏ । ରଜ ନିକର ( ଧୂଳି ସମୂହ ) ପରି ଭସ୍ମ ମହାଦେବଙ୍କ ଦେହରେ ଥାଏ । ଏଠାରେ ଆଉ ଗୋଟିଏ ଶ୍ଳେଷ ଅଛି । ପର ( ଶତ୍ରୁ ) ଭୂପ ( ରଜା )ଙ୍କୁ ଦରିଦ୍ର କରି ଅପର ( ମିତ୍ର ) ରଜାଙ୍କ ସଙ୍ଗେ ସମାନ କରିଛନ୍ତି । ଦରିଦ୍ର ପକ୍ଷରେ ଚନ୍ଦ୍ର ସୂର୍ଯ୍ୟ ଦୁହିଁଙ୍କର ଭାସ ( କିରଣ ) ମୁଣ୍ଡରେ ପଡୁଛି । ଅର୍ଥାତ୍ ଘରନାହିଁ ବା ଘର ଥିଲେ ଛପର ହୋଇ ପାରୁନାହିଁ ! କଞ୍ଚୁକରେ ( ଖାଲି ଲୁଗାରେ ) ଲଜ୍ଜା ନିବାରଣ କରୁଛନ୍ତି । ପୃଥୁକ ( ଶିଶୁ ମାନଙ୍କର ) ଆର୍ତ୍ତସ୍ୱର ( କ୍ଷୁଧା ବ୍ୟାକୁଳ ସ୍ୱର)ର ପାତ୍ର ( ସ୍ଥାନ ) ହୋଇଛନ୍ତି । ରଜନିକର ( ଧୂଳି ) ରେ ଅଯତ୍ନ ହେତୁ । ଚନ୍ଦ୍ରଭନୁ ପକ୍ଷ–ଭାସ ( ରାଜା ଓ ଦେବତାଙ୍କ ସାଙ୍ଗରେ ଛତି ସାଙ୍ଗେ ଏହି ଭାସ ଗଣେ ବୋହୁଥାଏ ) ଏହା ପାନ ଆକୃତିରେ ଗୋଟିଏ ଖୁବ୍ ବଡ଼ କନାରେ ଛିଆଣି ହୋଇ ତିଆରି ହୋଇଥିବା ଜିନିଷ । ଗୋଟିଏ ଖୁଣ୍ଟ ଉପରେ ଥାଇ ବୁହା ହେଉଥାଏ । ଏଥିରେ ସୁନା କିମ୍ବା ରୂପାରେ ଗୋଟିଏ ବଙ୍କା ଚନ୍ଦ୍ର ଏବଂ ତାହା ମଝିରେ ଛ ଦିଗକୁ ରସି ବାହାରିଲା ପରି ଏକ ସୁନା ବା ରୂପାର ସୂର୍ଯ୍ୟ ଖିଲଇ କରା ହୋଇଥାଏ । କଞ୍ଚୁକି ( ନଅର ରକ୍ଷକ ବୃଦ୍ଧ କର୍ମଚାରୀ ମାନେ ) । ଏ ଦେଖିବାକୁ ଖାଣ୍ଟି ସୁନାର ମୋଟା ମୂର୍ତ୍ତି ପରି । ରଜନୀକର ( କର୍ପୂର )

୩୫–ମେରୁ ସୁନାରେ ତିଆରି । କାଳେ ଦାନ କରୁ କରୁ ସୁନା ସରିଗଲେ ମେରୁକୁ ଆସି ଖୋଳି ଘେନି ଯିବେ । ରଜାଙ୍କର ସ୍ନାନ ପରେ ମଣୋହି ପୂର୍ବରୁ ଦେବାର୍ଚ୍ଚନ କ୍ରୀୟା ରୀତି ସିଦ୍ଧ । ଏତିକିବେଳେ ଦାନାଦି କରନ୍ତି ।

୩୬–ବ୍ରହ୍ମା ବୋଧ କରି କହେ ସେତ ନିଜେ ଦେବତା ସମାନ । ଦେବତାଙ୍କ ଭବନ (ଘର) ମେରୁକୁ କାହିଁକି ଭର୍ଗିବ ।

| | | |
|---|---|---|
| ହୟ ଆରୋହିଲେ ଯଉଁ ନୃପତି | । ଇଭଇ ହରିହୟ ଏ ଭାତି | । ୩୭ । |
| ମର୍ତ୍ତ୍ୟେ ତ ଏହାର ଅସାଧ୍ୟ ନାହିଁ । | ସ୍ୱର୍ଗେ ବା କଟକାଇ କରଇ | ।୩୮ । |
| ବଳୀ ଯେବେ ତୁମ୍ଭେ ବଳିକି ମାର । | କହିବା, ଜୀବ କହେ ବିଗ୍ରର | । ୩୯ । |
| ଅଶ୍ୱ ଖୁର ରେଣୁ ଉଡ଼ିବା ଗୃହିଁ | । ପୋତିବ ମୋତେ ସାଗର ଧ୍ୟାୟି | । ୪୦ । |
| ଧାତା ଦୁଢ଼ ଯିହୁଁ ରତନାକର | । ବୋଇଲ ଥାଉ ଏହା ଭଣ୍ଡାର | । ୪୧ । |
| ସାର୍ବ ଭୌମ ପଦ ବୀର ବହିଲ | । ଉତ୍ତର ଦନ୍ତୀ ଲଜ୍ଜା ପାଇଲ | । ୪୨ । |
| ମୁଁ ନୋହଇ ବୋଲି ଛାଡ଼ିଲ ରଡ଼ି । | ବରଷା କାଳେ ସେ ଘଡ଼ଘଡ଼ି | । ୪୩ । |
| ହୋଇଲ ସେ ରଜା ଏମନ୍ତ ତ୍ୟାଗୀ । | ଜାଣିଲେ ନାହିଁ ଯାଚକେ ମାଗି | । ୪୪ । |
| କେ ଯିବ କଳ୍ପତରୁ ସନ୍ନିଧାନ | । କାମନା ହେଲ ଉତାରୁ ପୂର୍ଣ୍ଣ | । ୪୫ । |
| ଉଚ୍ଚ ନୋହିଥିଲେ ପଲ୍ଲବ ମାନ | । କରନ୍ତେ ଅବା ମୃଗ ଅଶନ | । ୪୬ । |
| ମିଳନ୍ତେ ଫଳ ଥିଲେ ପକ୍ଷୀଗଣ | । ବିଅର୍ଥ ହେଲ ତା ଦାତା ପଣ | । ୪୭ । |

---

୩୭–ହରିହୟ (ଇନ୍ଦ୍ର ଯେ କି ଉଚ୍ଚୈଃଶ୍ରବା ଘୋଡ଼ା ଚଢନ୍ତି);

୩୮–କଟକାଇ–ରଜତ୍ୱ;

୩୯–ଜୀବ–(ବୃହସ୍ପତି, ଦେବ ଗୁରୁ)[ଇନ୍ଦ୍ରଙ୍କ ଭଲ ପାଇଁ]ଏହା କହି ଚନ୍ଦ୍ରଭାନୁଙ୍କୁ ଅବା ବିଗ୍ରର କହେ (ପରାମର୍ଶ ଅବା ଦେଉଛି)–କଣ କହି, ତୁମର ବଳ ଅଛି, ପାତାଳକୁ ଯାଇ ଆଗ ବଳିକୁ ମାର । କାରଣ ସେ ଦିନେ ବି ଇନ୍ଦ୍ର ହେବ ବୋଲି ବିଗ୍ରରି ଥିଲ ।

୪୦–୪୧–ଘୋଡ଼ା ଖୁର ଧୂଳିରେ ସମୁଦ୍ର ପୋତି ହୋଇ ପଡ଼ିବା ଭୟ । କିନ୍ତୁ ବିଧାତା ତ ଭୁଲରେ ତାକୁ ରତ୍ନ ଖଣି କରି ଦେଇଛି । ସେଥି ପାଇ ବିଧାତା ଭଣ୍ଡାର ଥାଉ ବୋଲି ପୋତୁ ନାହିଁ ।

୪୨–୪୩–ସାର୍ବଭୌମ–ସମସ୍ତ ପୃଥିବୀରେ ଚକ୍ରବର୍ତ୍ତୀ [୨୩ ଛାନ୍ଦ ୩୯ ପଦ ଟୀକା ଦେଖ ।] ମୋ ନାମ ସାର୍ବଭୌମ ହେଲେ ହେଁ ମୁଁ ପ୍ରକୃତରେ ସାର୍ବଭୌମ ନୁହେ ବୋଲି ଉତ୍ତର ଦିଗର ହସ୍ତୀ ଯେଉଁ ରଡ଼ି ଛାଡୁଛି ସେହି କେବଳ ଘଡ଼ ଘଡ଼ି ।

୪୪ରୁ୪୭–ଯାଚକେ–ଅର୍ଥୀ ଜନ, ମାଗିବା ଲୋକ (ବହୁତ ପାଇଲାରୁ) । କଳ୍ପତରୁ ପାଖକୁ ମଧ୍ୟ ଆଉ କେହି ମାଗିବାକୁ ଗଲେ ନାହିଁ । [୧୨ ଛାନ୍ଦ ୪ପଦ ଟୀକା ଦେଖ ।] ପତ୍ର ଖାଇବାକୁ ଅବା ମୃଗ ଯାନ୍ତେ । କିନ୍ତୁ ତାଙ୍କ ମୁହିଁ ପାଇବ ନାହିଁ । କଳ୍ପତରୁରେ ଫଳ ତ ନାହିଁ । ପକ୍ଷୀ ବା କାହିଁକି ଯିବେ । ଅତଏବ ସବୁ ମତେ ତା ଦାତା ପଣ ବ୍ୟର୍ଥ ହେଲ ।

ପ୍ରତାପ ଭାସିଲ୍ଲ ବଡ଼ବାନଳେ । ପଡ଼ିଲ୍ଲ ଯାଇ ସମୁଦ୍ର ଜଳେ । ୪୮ ।
କେ ଦେଖିବ ତାକୁ ଯେ ଲୁଚି ଅଛି । ହୃଦୟ ସନ୍ତାପ ତା କହୁଅଛି । ୪୯ ।
ଯଶ କୁ ହାରିଚି କୁମୁଦ ବିଧୁ । ହୋଇଛନ୍ତି ପରସ୍ପରରେ ବନ୍ଧୁ । ୫୦ ।
ଅଳି କଳଙ୍କ କାଳିକି ଧଇଲେ । ଗଙ୍ଗାହିଁ ଅଙ୍ଗେ ପଙ୍କ ବହିଲେ । ୫୧ ।
ହର ବିଗ୍ଭରିଲେ ଗଙ୍ଗାଚନ୍ଦ୍ରଙ୍କୁ । ପାଭବ କୀର୍ତ୍ତି କଲ ବେଳଙ୍କୁ । ୫୨ ।
ଅବଶ୍ୟ ଏହାକୁ ଥିବେ ତ ଛୁଇଁ । ଥିବେ ଏ କିଛି ଶୀତଳ ପାଇ । ୫୩ ।
ପୁଣି ତା କୀର୍ତ୍ତି ଶାନ୍ତିରସ ଠାବ । ଗରଳ ତାପ ଶାନ୍ତ କରିବ । ୫୪ ।
ଏମନ୍ତ ବୋଲିଣ ବହିଲେ ଶୀର୍ଷେ । ଚନ୍ଦ୍ରମାଚୂଡ଼ ଗଙ୍ଗାଧର ସେ । ୫୫ ।
ଶ୍ରବଣେ କେଳି କଉତୁକ ତାର । କିନ୍ନରୀ ହୋଇ ଭଜନ୍ତି ଭର । ୫୬ ।
କିଂପୁରୁଷଙ୍କୁ ଅନୁସ୍ୱାର ଦୂର । କରିଣ ଦେଲେ ପ୍ରାନ୍ତେ ଏକାର । ୫୭ ।
ସ୍ୱାଧୀନ ଭର୍ତ୍ତୃକା ନାରୀ ପାଇଛି । ନାୟକ ଅନୁକୂଳ ହୋଇଛି । ୫୮ ।
ସବୁ ଏକ ଠାବ କରିଛି ବିହି । ମଞ୍ଜିଷ୍ଠା ଗଗ ଉଦିତ ତହିଁ । ୫୯ ।

---

୪୮–୪୯–ସମୁଦ୍ର ଭିତରେ ଥିବା ଆଗ୍ନେୟ ଗିରିରୁ ବେଳେବେଳେ ଅଗ୍ନି ଉପରକୁ ବାହାରେ । ତାକୁ ବଡ଼ବାନଳ କହୁଥିଲେ । ବିଶ୍ୱାସ ଥିଲା ବଡ଼ବା ନାମକ ଘୋଟକୀ ସମୁଦ୍ରରେ ଲୁଚିଥାଏ । ତା ପେଟର ଅଗ୍ନି ବେଳେ ବେଳେ ଆଁ କରି ଦେଲେ ଦିଶିଯାଏ ।

୫୦ରୁ୫୫–ଏହାଙ୍କ ଯଶ ପାଖେ କୁମୁଦ ଓ ଚନ୍ଦ୍ର ଦୁହେଁ ହାରି ପରସ୍ପର ବନ୍ଧୁ ହେଲେ ଏବଂ ହାରିବାର କାଳିମା କୁମୁଦ ଠାରେ ଅଳି ଓ ଚନ୍ଦ୍ର ଠାରେ କଳଙ୍କ ରୂପେ ରହିଲା । ଉଜ୍ଜ୍ୱଳ ଗଙ୍ଗା ମଧ୍ୟ ହାରିବାରୁ ଦେହରେ ପଙ୍କ ରଖିଲେ । ହର (ମହାଦେବ) ବିଗ୍ଭରିଲେ ଶୀତଳ ଉଜ୍ଜ୍ୱଳ ଚନ୍ଦ୍ରଭାନୁର କୀର୍ତ୍ତି ଚନ୍ଦ୍ର ଆଉ ଗଙ୍ଗାକୁ ପ୍ରାଭବ (ପରାଭବ, ପରାସ୍ତ) କଲ ବେଳେ ଏ ଦୁହେଁ କୀର୍ତ୍ତିକୁ ଛୁଇଁ ଥିବେ ତ । ତେଣୁ ଶୀତଳ ହୋଇ ଥିବେ । ପୁଣି କୀର୍ତ୍ତି ତ ଶାନ୍ତି ରସର ସ୍ଥାନ । ଏହାଙ୍କ ଠାରେ ମଧ୍ୟ ଶାନ୍ତି ଥିବ । ଏଣୁ ଏ ମୋ ଗରଳ ତାପକୁ ଶାନ୍ତ କରିବ ବୋଲି ଦୁହିଁଙ୍କୁ ଶୀର୍ଷେ (ମୁଣ୍ଡରେ) ରଖିବାରୁ ଚନ୍ଦ୍ରଚୂଡ଼ ଏବଂ ଗଙ୍ଗାଧର ହେଲେ ।

୫୬ ରୁ ୫୯–କିନ୍ନରୀ–ଦେବ ଗାୟିକା; ତାଙ୍କର ପୁରୁଷ ମାନେ କିଂନର ବା କିଂପୁରୁଷ । ସେମାନଙ୍କୁ କିନ୍ନରୀମାନେ ଘୃଣାରେ କହିଲେ । ଏ କି ପୁରୁଷେ ? [ ଚନ୍ଦ୍ରଭାନୁ ତୁଳନାରେ ] । ସେ ( ଚନ୍ଦ୍ରଭାନୁ ) ସ୍ୱାଧୀନ ଭର୍ତ୍ତୃକା ନାରୀ ( ଯେଉଁ ସ୍ତ୍ରୀର ପୁରୁଷ ଅତ୍ୟନ୍ତ ଅନୁଗତ ) ପାଇଛି । ନିଜେ ଅନୁକୂଳ ନାୟକ ( ଏକପତ୍ନୀ ନିରତ ) ହୋଇଛି । ଏହିପରି ବିହି ସବୁ ଏକାଠି କରି ସେ ଦୁହିଁଙ୍କ ଭିତରେ

ଯାହା ଗୁଣ ରତ୍ନାଳଙ୍କାର ହେଲ । ମଣ୍ଡନ ଲୋକମାନ ସେ କଲ । ୬୦ ।
କହୁଥିଲେ ସେ ତ ନୋହିବ ଶେଷ । ସମ୍ପୂର୍ଣ୍ଣ ଛାନ୍ଦ ଅଠଚାଳିଶ । ୬୧ ।
ନାନା ଅଭିଧାନ ବିଧାନ ପରି । ନାଟକ କାବ୍ୟ ଅଙ୍ଗେ ମାଧୁରୀ । ୬୨ ।
ଦୃଷ୍ଟି ସୃଷ୍ଟିରେ ହୋଇଛି ବିଚିତ୍ର । ରସିକ ଚିତ୍ତ ମୋହନ ମନ୍ତ୍ର । ୬୩ ।
ଖଳ-ଖର୍ବ-ତୃଣ ଦାବଦହନ । ପଥିକ ମୂର୍ଖ-ଅଗମ୍ୟବନ । ୬୪ ।

---

ପାଠାନ୍ତର—୬୩, ଗଙ୍କ ।

---

ମଞ୍ଜିଷ୍ଠାରାଗ ( ଯେଉଁ ଅନୁରାଗ କେବେ କ୍ଷୟ ନ ପାଇ ସର୍ବଦା ଶୋଭପାଏ ) ଉଦିତ ହୋଇଛି ।

କିନ୍ନର କିନ୍ନରୀ ସୁନ୍ଦର ଗୀତ ଗାଆନ୍ତି । କିନ୍ତୁ ସେମାନେ ଦେଖିବାକୁ ଅତ୍ୟନ୍ତ ସୁନ୍ଦର ବୋଲି ତେତେ ପ୍ରସିଦ୍ଧ ନାହିଁ । ବରଂ ସେମାନଙ୍କର ଘୋଡ଼ା ପରି ମୁହଁ ବୋଲି ବର୍ଣ୍ଣିତ ଅଛି । ତେଣୁ ସେମାନଙ୍କୁ କିଂ ( କୁତ୍ସିତ ) ନର ବୋଲି କହନ୍ତି । ଏଠାରେ ଏବଂ ଅନ୍ୟତ୍ର ମଧ୍ୟ ଉପେନ୍ଦ୍ରଭଞ୍ଜ ସୁନ୍ଦର ବୋଲି ସେମାନଙ୍କ ସମ୍ବନ୍ଧରେ ସୂଚନା ଦେବା ସମ୍ପୂର୍ଣ୍ଣ ରୀତି ସିଦ୍ଧ ନୁହେଁ ।

ସାହିତ୍ୟ ଦର୍ପଣରେ ସ୍ୱାଧୀନ ଭର୍ତ୍ତୃକା ନାୟିକା ଅନୁକୂଳ ନାୟକ, ଓ ମଞ୍ଜିଷ୍ଠାରାଗ ତଳ ଲିଖିତ ମତେ କୁହା ଯାଇଛି । ସ୍ୱାଧୀନ ଭର୍ତ୍ତୃକା ଯଥା—

କାନ୍ତୋରତି ଗୁଣାକୃଷ୍ଟୋ ନ ଜହାତି ଯଦନ୍ତିକଂ
ବିଚିତ୍ର ବିଭ୍ରମାଶକ୍ତା ସାସ୍ୟାତ୍ ସ୍ୱାଧୀନ ଭର୍ତ୍ତୃକା ।

ଅନୁକୂଳ ନାୟକ ଯଥା— 'ଅନୁକୂଳ ଏକ ନିରତଃ' ।
ମଞ୍ଜିଷ୍ଠାରାଗ— 'ମଞ୍ଜିଷ୍ଠାରାଗ ମାହୁସ୍ତଂ ଯନ୍ନାପୈତ୍ୟତି ଶୋଭତେ' ।

୬୦—ରତ୍ନାଳଙ୍କାର ପରି ଲୋକ ମାନ ( ତ୍ରିଲୋକ—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ )କୁ ସେ ସୁନ୍ଦର କଲେ ।

୬୨—ଅଭିଧାନ ବିଧାନ—ପଦ ମାନଙ୍କର ନାନା ପ୍ରକାର ଅର୍ଥ । ନାଟକ କାବ୍ୟଅଂଗ ଅଳଙ୍କାର ଗତ କଥାମାନ; ଅର୍ଥାତ୍ ଯମକ ପ୍ରଭୃତି ଶବ୍ଦାଳଙ୍କାର ଓ ଉପମା ରୂପକାଦି ଅର୍ଥାଳଙ୍କାର କଥାମାନ: ।

୬୩—ଦୃଷ୍ଟି ସୃଷ୍ଟିରେ—ଦର୍ଶନୀୟ (ଦେଖିବାଯୋଗ୍ୟ) ବସ୍ତୁ ମାନଙ୍କ ମଧ୍ୟରେ; ଅର୍ଥାତ୍ ଅଳଙ୍କାରରେ ପୂର୍ଣ୍ଣ ହୋଇ ଏ କାବ୍ୟ ବଡ଼ ଦର୍ଶନୀୟ ହୋଇଛି । ତେଣୁ ରସିକ ମାନଙ୍କ ଚିତ୍ତକୁ ମୁଗ୍ଧ କରିବା ପାଇଁ ମନ୍ତ୍ର ପରି ହୋଇଛି ।

୬୪—ଖଳ ଯେ ନିନ୍ଦୁକ ସେ ଖର୍ବ ତୃଣ ( ଛୋଟ ଘାସ ପରି ), ତା ପକ୍ଷରେ ଏ ଦାବ—ଦହନ ( ବଣ ପୋଡ଼ି ଦେବା ନିଆଁ ) ପରି ହୋଇଛି । ମୂର୍ଖ, ପଥିକ ହେଲ । ତା ପକ୍ଷରେ ଏ ଅଗମ୍ୟ ବନ ପରି ହୋଇଛି—ସେ ଏଥିରେ ପଶି ପାରିବ ନାହିଁ ।

ଧନୀ ବଣିକ ପସର ସମାନ । ବିବିଧ ରସ ଦ୍ରବ୍ୟରେ ପୂର୍ଣ୍ଣ । ୬୫ ।
ଉପଇନ୍ଦ୍ର ଭଞ୍ଜ ମନ କୁମୁଦ । ବିଚିତ୍ର କର୍ମା ଆଗମଚନ୍ଦ୍ର । ୬୬ ।
ରଜନୀ ଦିବସେ ବିକାଶ କରି । ଅଧିକ ପଦ ଏଣୁ ବିହରି । ୬୭ ।
ପ୍ରବନ୍ଧ ଦୁଇ ସହସ୍ର ତିନିଶ । ଷାଠିଏ ଆଠ ପଦରେ ଶେଷ । ୬୮ ।

---

୬୫–ଧନୀ ବଣିକ (ବଣିଆ) ର ପସର (ଦୋକାନ) ପରି ଏଥିରେ ବହୁତ ରସ ଦ୍ରବ୍ୟ (୧. ରସାୟନ, ଔଷଧ ତିଆରି କରିବା ଜିନିଷ, ୨. ଶୃଙ୍ଗାରାଦି କାବ୍ୟରସ) ଅଛି ।

୬୭-୬୮–ଏଣୁ ଅଧିକ ପଦ ବିହରି–ଆଉ ବେଶି ନ ଲେଖି ୨୩୬୮ ପଦରେ ଏ ପ୍ରବନ୍ଧ (କାବ୍ୟ) ଶେଷ ହେଲା ।

କେତେକ ଛପା ବହିରେ 'ଷାଠିଏ ଏକ ପଦ' ବୋଲି ଲେଖା ଅଛି । ଆଉ କେତେକ ରେ 'ଷାଠିଏ ତିନିପଦ' ବୋଲି ମଧ୍ୟ ଲେଖା ଅଛି । ତାଳପତ୍ର ପୁସ୍ତକରେ ଷାଠିଏ ତିନି ପଦ ଦେଖାଯାଏ । ମାତ୍ର ଏ ପୁସ୍ତକରେ 'ଷାଠିଏ ଆଠ ପଦ' ହେଉଅଛି ଏବଂ ଛପା ପୁସ୍ତକ ମାନ ଗଣିଲେ 'ଷାଠିଏ ଦୁଇପଦ' ହେଉଅଛି । ସେମାନେ ଅଷ୍ଟାଦଶ ଛାନ୍ଦର ସତର ପଦଟି ଛାଡ଼ି ଯାଇଛନ୍ତି । ତାହା କୌଣସି ମତେ ପ୍ରକ୍ଷେପ ହୋଇ ନ ପାରେ । ମାତ୍ର ୪୪ ଛାନ୍ଦର ୧୬ ପଦଟି ତାଳପତ୍ର ପୋଥିରେ ମିଳୁନାହିଁ । କେତକୀର ବର୍ଣ୍ଣନା ୧୭ ପଦରେ ଥିବାରୁ ଏହା ପ୍ରକ୍ଷେପ ହୋଇ ପାରେ । ତାହା ହେଲେ ୪ର୍ଥ ଛାନ୍ଦର ୧୩ ପଦଟି ଛପା ପୋଥିରେ ନ ଥିଲେ ମଧ୍ୟ ତାହାକୁ ମୂଳ ଗ୍ରନ୍ଥର ଲେଖା ବୋଲି ଧରଯାଇ ପାରେ । ବାକି ୧୫ଶ ଛାନ୍ଦର ୨୫ ପଦ; ୨୬ଶ ଛାନ୍ଦର ୩୮ଶ ପଦ; ୨୮ ଛାନ୍ଦର ୨୦ଶ ପଦର ଶେଷ ଦୁଇପାଦ ଓ ୨୧ ପଦର ପ୍ରଥମ ଦୁଇପାଦ ମିଶି ଏକ ପଦ ଏବଂ ଏହି ୪୮ ଶ ଛାନ୍ଦର ସର୍ବଶେଷ ପଦ ତାଳପତ୍ର ପୋଥିରେ ମିଳୁଥିଲେ ମଧ୍ୟ କୌଣସି ଛପା ପୋଥିରେ ମିଳୁନାହିଁ । ଅତଏବ ଏମାନଙ୍କୁ ପ୍ରକ୍ଷେପ ବୋଲି ଧରିଲେ ପୂର୍ବାପର ସଙ୍ଗତି ଅନୁରୋଧରେ ବିଶେଷ ଆପତ୍ତି ହୋଇ ନ ପାରେ ।



# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧି | ଶୁଦ୍ଧି |
|---|---|---|---|
| ପାଠିକା | | | |
| ୨୩ | ୧୦ | କୋଣାର୍କ | କୋଣାର୍କେ |
| " | ୧୨ | ମଦ | ମୃଦ |
| ୩୨ | ୨୨ | କିଳା ବ୍ୟାଳ ମନୋହର | କିଳାଃବ୍ୟାଳ ମନୋହରଂ |
| ୩୯ | ୪ | 'ସହଜ ଯାନ'ରେ ହିତ୍ୟ | 'ସହଜ ଯାନ'ରେ-ସାହିତ୍ୟ |
| ଗ୍ରନ୍ଥ | | | |
| ୩ | ୨୬ | ଦେବତାନେ | ଦେବତାମାନେ. |
| ୪ | ୧୨ | ଢାତ | ଘୋର (୧୧ ଧାଡ଼ିରେ) |
| ୬ | ୧୩ | ଉବେ 'ଙ୍କ' | ଉବେ 'ଙ୍କ' |
| ୧୫ | ୧ | ଗଗ ପହଟ ମଞ୍ଜରୀ | ଗଗ–ପଟହ ମଞ୍ଜରୀ |
| " | ୧୮ | ବାକ୍ୟଂ ରସାମ୍ନକ | ବାକ୍ୟଂ ରସାତ୍ମକଂ |
| ୩୦ | ୬ | ହୋଇ ବାସରେ | କୁସୁମ ବିଜିତ ମୀନ ଜଳ ହାନରେ ଯାଇମରି |
| ୩୦ | ୭ | ମୀନ ଜଳ ହାନରେ ଯାଇମରି | ହୋଇ ବାସରେ " କୁସୁମ ବିଜିତ |
| ୩୨ | ୯ | ଗୋଳ ସାମନ୍ତ | ଷୋଳ ସାମନ୍ତ |
| ୪୩ | ୨୪ | ଥାଇ | ଆଉ ଥାଉ |
| ୪୭ | ୧୭ | ଇଗାଇ ହେବି | ଲଗାଇ ବେଶ ହେବି |
| ୬୩ | ୪ | ସ୍ଥାନ | ସ୍ନାନ |
| ୯୭ | ୨୫ | ବିକାରେ ବର୍ଜିତେ | ବିକାରୈ ର୍ବର୍ଜିତେ |
| ୯୮ | ୯ | ମନୋଃନ୍ୟଢିବ୍ୟ | ମନୋଃନ୍ୟଢିବ |
| " | ୧୧ | ସନ୍ଦିପନ | ସନ୍ଦୀପନ |
| " | ୧୯ | ବେଶୈ ରବୌ ଭୁଷଣୈଷ | ବେଶୈରଙ୍ଗୈ ର୍ଭୂଷଣୈଷ |
| " | ୨୩ | ବିଶେପଷ | ବିଶେଷସ୍ତୁ |
| ୧୦୧ | ୧୫ | ପ୍ରଭ ବା କୀର୍ତ୍ତି | ପ୍ରଭବ କୀର୍ତ୍ତି |
| ୧୪୨ | ୧୨ | ପୁସ | ପୁଂସ |
| ୧୫୪ | ୧୮ | କଣ୍ଠୋ ତଥିତା ସ୍ଵଗଃ । | କଣ୍ଠୋତ୍‌ଥିତାଃ ସ୍ଵଗଃ |
| ୧୬୯ | ୧୯ | 'କି ଦୁଇକରେଣ ଭୁଂକ୍ତେ' | 'କିଂ ଦ୍ଵିକରେଣ ଭୁଂକ୍ତେ' ? |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧି | ଶୁଦ୍ଧି |
|---|---|---|---|
| ୧୭୩ | ୧୦ | ଜୀବଥିଲେ | ଜୀବନେ'ଥିଲେ |
| ୧୭୪ | ୨ | ସର୍ବ ସମ୍ମତେ | ସୁର୍ବ ସମ୍ମତେ |
| ୧୯୪ | ୨୨ | ତାହାଙ୍କୁ ଚତ୍ରୁ | ତାହାଙ୍କୁ ଚତ୍ରୁ କହନ୍ତି । ସେହି ଚତ୍ରୁ |
| ୧୯୬ | ୬ | ସଜନୀ ଏ | ସଜନୀଏ . |
| ୨୦୫ | ୨୬ | ବୁରିଦେଲ | କରିଦେଲ |
| ୨୨୪ | ୯ | କହିବ | ରହିବ |
| ୨୩୮ | ୨୧ | ପଠତ୍ରୁ ଶୁଶାନଂଚ ନଦ୍ୟାଦନାଂ | ପଞ୍ଚ ଶୁଶାନଚଂ ନଦ୍ୟାଦୀନାଂ |
| ୨୪୪ | ୧୫।୧୬ | ଟାଣ୍ଡବ ପ୍ରାହୁଂ | ତାଣ୍ଡବଃ ପ୍ରାହୁଃ |
| ୨୪୮ | ୨୫ | "ପ୍ରଜାପୋ ନର୍ଥଙ୍କ ବଚଃ" | "ପ୍ରଜାପୋଽନର୍ଥକଂ ବଚଃ" |
| " | ୧୩।୧୪ | ବିରେଧକ୍ତି | ବିରୋଧୋକ୍ତି |
| ୨୫୧ | ୨୭ | ଚକ୍ର ବରଣାଃ | ବକ୍ର ବାରଣାଃ |
| ୨୫୪ | ୧୪ | ଗତି ଭର୍ତା | ଗତିର୍ଭର୍ତ୍ତା |
| ୨୫୪ | ୧୯ | 'ଅଭୋଗ୍ନିଃ' | "ଅମ୍ଭୋଽଗ୍ନିଃ" |
| ୩୦୮ | ୨୬ | ଧ୍ରୁଗେୟଃ" ଭ୍ରମର | ଧ୍ରୁଗେୟ" ଭ୍ରମରଃ |
| ୩୫୦ | ୨୦ | "ମଧୁରତି ମହୋତ୍ସବେ" | "ମଧୁ ରତିମହୋତ୍ସବେ" |
| ୩୫୩ | ୧୪ | ଭଲ୍ଲୁକ" | ଭଲ୍ଲୁକଃ" |
| ୩୭୪ | ୧୮ | ପାଣ୍ଡୁତ୍ର ଚନ୍ଦ୍ରାଦନାଂ | ପାଣ୍ଡୁତ୍ୱଂ ଚନ୍ଦ୍ରାଦୀନାଂ |
| " | ୨୮ | କୁମୁଦାନା କୁଟ୍ଜ | କୁମୁଦାନାଂ କୁଟ୍ଜଂ |
| ୩୯୮ | ୩ | ରିତୁ | ଋତୁ |
| ୪୧୯ | ୨୭ | "ପୁଂସାଧି ମାନବି ବ୍ୟଥା" | "ପୁଂସ୍ୟାଧି ର୍ମାନସ ବ୍ୟଥା" |
| ୪୩୦ | ୧୩ | "ପ୍ରକାରୌ ଭେଦ | ପ୍ରକାରୌ ଭେଦ |
| ୪୪୪ | ୨୧ | ଶୁଷ ମାଂସ | ଶୁଷ୍କୋ ମାଂସଃ |
| ୪୯୦ | ୧୧ | ପକ୍ଷୀଣା | ପ୍ରେକ୍ଷଣା |
| " | ୧୨ | ବିଂକଣି ବକୁଳ ସାଧୁ ରଣ୍ଡଷ | ବିଂକଶତି ବକୁଳଃ ସାଧୁଗଣ୍ଡୂଷ |
| ୫୦୧ | ୯ | ମିଥ୍ୟା ବକାଶ | ମିଥ୍ୟାବକାଶ୨ |
| ୫୦୫ | ୨ | ଜେନି କରେ | ରଜ ନିକରେ |

| ପୃଷ୍ଠା | ଧାଡ଼ି | ଶ୍ଳୋକ ମାନଙ୍କର ଶୁଦ୍ଧି ପାଠ |
|---|---|---|
| ୧୫ | ୧୯।୨୦ | " ଶୃଙ୍ଗାର-ହାସ୍ୟ କରୁଣ ରୌଦ୍ର ବୀର ଭୟାନକାଃ ବିଭତ୍ସାଦ୍ଭୁତ ସଜ୍ଞୌଚେତ୍ୟଷ୍ଟୌ ନାଟ୍ୟେ ରସାଃସ୍ମୃତାଃ" |
| ୭୬ | ୧୧।୧୨ | " ଛୀବେଶଚଚନାଶୋଭା ଭରତୀ ବିଷଶୁଦ୍ଧିଷ |

| ପୃଷ୍ଠା | ଧାଡ଼ି | ଶ୍ଲୋକମାନଙ୍କର ଶୁଦ୍ଧିପାଠ |
|---|---|---|
| ୭୯ | ୧୦ । ୧୧ | " ଅରବିନ୍ଦମଶୋକଂଚ ଚୂତଂ ଚ ନବମଲ୍ଲୀକା |
| | | ନୀଳୋତ୍ପଳଂ ଚ କାମସ୍ୟ ବାଣାଃ ପଞ୍ଚ ପ୍ରକୀର୍ତ୍ତିତାଃ" |
| ୯୮ | ୧୬ | ଭ୍ରୂନେତ୍ରାଦି ବିକାରୈସ୍ତୁ ସମ୍ଭୋଗେଚ୍ଛା ପ୍ରକାଶକଃ । |
| ,, | ୧୭ | ଭବଏବାଳ୍ପସଂଲକ୍ଷ୍ୟ ବିକାରେ ହାବ ଉଚ୍ୟତେ ।। |
| ,, | ୨୨ | ସ୍ଥାନ ଯାନାସନାଦୌ ଚ ମୁଖ ନେତ୍ରାଦି ବିଭ୍ରମେ |
| ,, | ୨୩ | ବିଶେଷସ୍ତୁ ବିଳାସ୍ୟାଦିଷ୍ଟ ସନ୍ଦର୍ଶନାଂ ଦିଭିଃ । |
| ୨୧୧ | ୨୦ରୁ ୨୩ | ' ନିସୃଷ୍ଟାର୍ଥୋ ମିତାର୍ଥଶ୍ଚ ତଥା ସନ୍ଦେଶ ହାରକଃ । |
| | | କାର୍ଯ୍ୟ ପ୍ରେଷ୍ୟ ସ୍ତିଧା ଦୂତୋ ଦୂତ୍ୟଶ୍ଚାପି ତଥାବିଧାଃ ।। |
| | | ଉଭୟୋର୍ଭାବମୁନ୍ନୀୟ ସ୍ୱୟଂ ବଦତି ଚୋତ୍ତରମ୍ । |
| | | ସୁଶ୍ଲିଷ୍ଟଂ କୁରୁତେ କାର୍ଯ୍ୟଂ ବିସୃଷ୍ଟାର୍ଥସ୍ତୁ ସସ୍ମୃତଃ ।। |
| | | ମିତାର୍ଥ ଭାଷୀ କାର୍ଯ୍ୟସ୍ୟ ସିଦ୍ଧିକାରୀ ମିତାର୍ଥକଃ । |
| | | ଯାବଦ୍ଭାଷିତ ସନ୍ଦେଶ-ହାରଃ ସନ୍ଦେଶହାରକଃ ।।" |
| ୨୩୧ | ୨୦ । ୨୧ | ଆକ୍ଷେପୋ ଭର୍ତ୍ସନା କୃଷ୍ଟିଃ କାବ୍ୟାଲଙ୍କୃତିଷୁ ସ୍ମୃତଃ |
| ୩୨୪ | ୨୨ | ଆଗନ୍ତଂ କୃତଚିରୋଽପି ଦୈବାନ୍ନାୟାତି ଚେତ୍ ପ୍ରିୟଃ । |
| ୩୫୨ | ୨୦ । ୨୧ | "ଦ୍ୱିରେଫଃ ପୁଷ୍ପଲିଡ୍ ଭୃଙ୍ଗୋ ମଧୁପାଳିନଃ" |
| ୪୧୬ | ୨୨ | ନରେନ୍ଦ୍ରଃ ପୁଂସି ଭୂପାଳେ ବିଷବୈଦ୍ୟେଽପିଚ ଦ୍ୱୟୋଃ" |
| ୪୫୯ | ୨୬ । ୨୭ | ଗୁଡ଼ବତ୍ତୁ ତତଃ ପ୍ରଣୟ କୋଷଃ ଖଣ୍ଡବତ୍ ତତୋ ଗଗଃ |
| | | ଶର୍କରବତ ତତୋଽନୁରାଗଃ ଶିତାବତ୍ ତତୋ ମହାନୁରାଗଃ |
| ୪୮୩ | ୧୯ରୁ ୨୫ | ' ଯୌବନେ ସତ୍ତ୍ୱଜା ସ୍ତ୍ରୀଣାମଷ୍ଟାବିଂଶତି ସଂଖ୍ୟକାଃ । |
| | | ଅଳଙ୍କାରସ୍ତତ୍ର ଭାବ ହାବ ହେଳା ସ୍ତ୍ରୟୋଽଙ୍ଗଜାଃ । |
| | | ଶୋଭା କାନ୍ତିଶ୍ଚ ଦୀପ୍ତିଶ୍ଚ ମାଧୁର୍ଯ୍ୟଂ ଚ ପ୍ରଗଲ୍ଭତା । |
| | | ଔଦାର୍ଯ୍ୟଂ ଧୈର୍ଯ୍ୟ ମିତ୍ୟେତେ ସପ୍ତୈଵସ୍ୟୁର ଯତ୍ନଜାଃ । |
| | | ଲୀଳା ବିଳାସୋ ବିଚ୍ଛିତ୍ତି ର୍ବିବ୍ବୋକଃ କିଳ କିଞ୍ଚିତଂ । |
| | | ମୋଟ୍ଟାୟିତଂ କୁଟ୍ଟମିତଂ ବିଭ୍ରମୋ ଲଳିତଂ ମଦଃ । |
| | | ବିହୃତଂ ତପନଂ ମୌଗ୍ଧ୍ୟଂ ବିକ୍ଷେପଶ୍ଚ କୁତୂହଳଂ । |
| | | ହସିତଂ ଚକିତଂ କେଳି ରିତ୍ୟଷ୍ଟା ଦଶ ସଂଖ୍ୟକାଃ ।" |
| | | "ତତ୍ର ତପନଂ—ତପନଂ ପ୍ରିୟ ବିଚ୍ଛେଦେ ସ୍ମରବେଗୋତ୍ଥ ଚେଷ୍ଟିତଂ । |
| ୪୯୮ | ୨୩ । ୨୪ | ସଲ୍ଲୀନା ସ୍ୱେଷୁଗାତ୍ରେଷୁ ମୂକୀକୃତ ବିଭୂଷଣା । |
| | | ଅବଗୁଣ୍ଠନ ସଂବୀତା କୁଳଜାଭି ସରେତ୍ ଯଦି । |

| ପୃଷ୍ଠା | ଧାଡ଼ି | ଶ୍ଲୋକମାନଙ୍କର ଶୁଦ୍ଧିପାଠ |
|---|---|---|
| ୭୯ | ୧୦ । ୧୧ | " ଅରବିନ୍ଦମଶୋକଂଚ ଚୂତଂ ଚ ନବ ମଲ୍ଲୀକା<br>ନୀଳୋତ୍ପଳଂ ଚ କାମସ୍ୟ ବାଣାଃ ପଞ୍ଚ ପ୍ରକୀର୍ତ୍ତିତାଃ" |
| ୯୮ | ୧୬ | ଭ୍ରୂନେତ୍ରାଦି ବିକାରୈସ୍ତୁ ସମ୍ଭୋଗେଚ୍ଛା ପ୍ରକାଶକଃ । |
| ,, | ୧୭ | ଭବଏବାଳ୍ପସଲକ୍ଷ୍ୟ ବିକାରେ ହାବ ଉଚ୍ୟତେ ॥ |
| ,, | ୨୨ | ସ୍ଥାନ ଯାନାସନାଦୌ ଚ ମୁଖ ନେତ୍ରାଦି ବିଭ୍ରମେ |
| ,, | ୨୩ | ବିଶେଷସ୍ତୁ ବିଳାସ୍ୟାଦିଷ୍ଟ ସନ୍ଦର୍ଶନାଂ ଦିଭିଃ । |
| ୨୧୧ | ୨୦ରୁ ୨୩ | 'ନିସୃଷ୍ଟାର୍ଥୋ ମିତାର୍ଥଶ୍ଚ ତଥା ସନ୍ଦେଶ ହାରକଃ ।<br>କାର୍ଯ୍ୟ ପ୍ରେଷ୍ୟ ସ୍ତ୍ରିଧା ଦୂତୋ ଦୂତ୍ୟଶ୍ଚାପି ତଥାବିଧାଃ ॥<br>ଉଭୟୋର୍ଭାବମୁନ୍ନୀୟ ସ୍ୱୟଂ ବଦତି ଚୋତ୍ତରମ୍ ।<br>ସୁଶ୍ଳିଷ୍ଟଂ କୁରୁତେ କାର୍ଯ୍ୟଂ ନିସୃଷ୍ଟାର୍ଥସ୍ତୁ ସସ୍ମୃତଃ ॥<br>ମିତାର୍ଥ ଭାଷୀ କାର୍ଯ୍ୟସ୍ୟ ସିଦ୍ଧିକାରୀ ମିତାର୍ଥକଃ ।<br>ଯାବଦ୍ଭାଷିତ ସନ୍ଦେଶ-ହାରଃ ସନ୍ଦେଶହାରକଃ ॥" |
| ୨୩୬ | ୨୦ । ୨୧ | ଆକ୍ଷେପୋ ଭର୍ସନା କୃଷ୍ଟିଃ କାବ୍ୟାଳଙ୍କୃତିଷୁ ସ୍ମୃତଃ |
| ୩୨୪ | ୨୨ | ଆଗନ୍ତୁଂ କୃତଚିରୋଽପି ଦୈବାନ୍ନାୟାତି ଚେଦ୍ ପ୍ରିୟଃ । |
| ୩୫୨ | ୨୦ । ୨୧ | "ଦ୍ୱିରେଫଃ ପୁଷ୍ପଲିଡ୍ ଭୃଙ୍ଗୋ ମଧୁପାଳିନଃ" |
| ୪୧୬ | ୨୨ | ନରେନ୍ଦ୍ରଃ ପୁଂସି ଭୂପାଳେ ବିଷବୈଦ୍ୟେଽପିଚ ଦ୍ୱୟୋଃ' |
| ୪୩୯ | ୨୬ । ୨୭ | ଗୁଡ଼ବଦ୍ ତତଃ ପ୍ରଣୟ କୋଷଃ ଖଣ୍ଡବଦ୍ ତତୋ ଗଗଃ<br>ଶର୍କଗବତ ତତୋଽନୁରାଗଃ ଶିତାବଦ୍ ତତୋ ମହାନୁରାଗଃ |
| ୪୮୩ | ୧୯ରୁ ୨୫ | 'ଯୌବନେ ସତ୍ତ୍ୱଜା ସ୍ତ୍ରୀମାମଷ୍ଟାବିଂଶତି ସଂଖ୍ୟକାଃ ।<br>ଅଳଙ୍କାଗସ୍ତତ୍ର ଭବ ହାବ ହେଳା ସ୍ତ୍ରୟୋଽଙ୍ଗଜାଃ ।<br>ଶୋଭା କାନ୍ତିଶ୍ଚ ଦୀପ୍ତିଶ୍ଚ ମାଧୁର୍ଯ୍ୟଂ ଚ ପ୍ରଗଲ୍ଭତା ।<br>ଔଦାର୍ଯ୍ୟଂ ଧୈର୍ଯ୍ୟ ମିତ୍ୟେତେ ସପ୍ତୈସ୍ୟୁର ଯତ୍ନଜା ।<br>ଲୀଳା ବିଳାସୋ ବିଚ୍ଛିତ୍ତି ର୍ବିବ୍ବୋକଃ କିଳ କିଞ୍ଚିତଂ ।<br>ମୋଟ୍ଟାୟିତଂ କୁଟ୍ଟମିତଂ ବିଭ୍ରମୋଲଲ୍ଲିତଂ ମଦଃ ।<br>ବିହୃତଂ ତପନଂ ମୌଗ୍ଧ୍ୟଂ ବିକ୍ଷେପଶ୍ଚକୁତୂହଳଂ ।<br>ହସିତଂ ଚକିତଂ କେଳି ରିତ୍ୟଷ୍ଟା ଦଶ ସଂଖ୍ୟକାଃ ।'<br>"ତତ୍ର ତପନଂ-ତପନଂ ପ୍ରିୟ ବିଚ୍ଛେଦେ ସ୍ମରବେଗୋତ୍ଥ ଚେଷ୍ଟିତଂ |
| ୪୯୮ | ୨୩ । ୨୪ | ସଲୀନା ସ୍ୱେଷ୍ୱଙ୍ଗେଷୁ ମୂକୀକୃତ ବିଭୂଷଣା ।<br>ଅବଗୁଣ୍ଠନ ସଂବିତା କୁଳଜାଭି ସରେଦ୍ ଯଦି । |